# ଭାରତରେ ବ୍ରିଟିଶ ରାଜ୍

ଲେଖକ

**ଗଂଗାଧର ରଥ**

ପୂର୍ବତନ ଆଡ୍‌ଭୋକେଟ୍ ଜେନେରାଲ୍



ଭାରତରେ ବ୍ରିଟିଶ ରାଜ୍
Bharatare British Raj

ଲେଖକ : ଶ୍ରୀ ଗଙ୍ଗାଧର ରଥ
Author : Sri Gangadhar Rath



ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ
Publisher : Sahadev Pradhan
*Friends' Publishers*, Binodbehari
Cuttack-753 002, Orissa (India)

ପ୍ରଥମ ସଂସ୍କରଣ : ୨୦୦୭
First Edition : 2007

ପ୍ରଚ୍ଛଦ : ଅସିତ ମୁଖାର୍ଜୀ
Artist : Asit Mukherjee

ଅକ୍ଷରସଜ୍ଜା : ୟୁନିଟେକ୍, କଟକ
Typeset : Unitech, Cuttack

ମୁଦ୍ରଣ : ଗୁରୁପ୍ରସନ୍ନ ପ୍ରେସ୍, କଟକ
Printer : Guruprasanna Press, Cuttack

ISBN 81-7401-644-9

Price : **Rs. 250**

ସପ୍ତଦଶ ଶତାବ୍ଦୀର ମଧ୍ୟାନ୍ତରରେ ଇଂରେଜମାନେ ଭାରତରେ ପଦାର୍ପଣ କରି ଇଷ୍ଟ ଇଣ୍ଡିଆ କମ୍ପାନୀ ମାଧ୍ୟମରେ ମୋଗଲ ସମ୍ରାଟଙ୍କ ବାହୁଚ୍ଛାୟା ତଳେ ବାଣିଜ୍ୟ ବ୍ୟବସାୟ ଆରମ୍ଭ କଲେ । ପ୍ରଥମେ ମାନ୍ଦ୍ରାଜ ଓ ପରେ କୋଲକାତାରେ ଇଷ୍ଟ ଇଣ୍ଡିଆ କମ୍ପାନୀର ବାଣିଜ୍ୟ କୋଠି ସ୍ଥାପିତ ହେଲା । ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ଆଉରଙ୍ଗଜେବ୍‌ଙ୍କ ମୃତ୍ୟୁ ପରେ ଇଂରେଜମାନେ ବାଣିଜ୍ୟରୁ ସାମ୍ରାଜ୍ୟ-ପ୍ରତିଷ୍ଠା କାର୍ଯ୍ୟକ୍ରମରେ ପ୍ରୟାସୀ ହେଲେ । ୧୮୫୭ ମସିହାର ସିପାହୀ ବିଦ୍ରୋହ ପରେ କମ୍ପାନୀ ପରିବର୍ତ୍ତେ ଖୋଦ୍ ବ୍ରିଟିଶ ସରକାର ହେଲେ ଭାରତର ସର୍ବମୟ କର୍ତ୍ତା ଓ ବ୍ରିଟିଶ ରାଜଗାଦିର ଅଧିକାରୀ ହେଲେ ଭାରତ ସାମ୍ରାଜ୍ୟର ସର୍ବଶକ୍ତିମାନ ସମ୍ରାଟ । ଏହାର ନବେ ବର୍ଷ ପରେ ସ୍ୱାଧୀନତା ସଂଗ୍ରାମର ଧକ୍କାରେ ବ୍ରିଟିଶ ରାଜଶକ୍ତି ଭାଙ୍ଗିପଡ଼ିଲା ଓ ୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା ।

ଏହି ଦୀର୍ଘ ଅଢ଼େଇଶହ ବର୍ଷର ଭାରତୀୟ ଜନଜୀବନର ଏକ କ୍ରମ-ବିକଶିତ ଧାରାବାହିକ ଇତିହାସର ଗତିଧାରା ନିର୍ଣ୍ଣୟ କରିବା ସହଜ ବ୍ୟାପାର ନୁହେଁ । ସେଥିପାଇଁ "ଭାରତରେ ବ୍ରିଟିଶ ରାଜ୍" ପୁସ୍ତକଟି ଲେଖିବାରେ ମତେ ବହୁ ତଥ୍ୟ ବହୁ ସୂତ୍ରରୁ ସଂଗ୍ରହ କରିବାକୁ ହୋଇଛି । ଜୱାହରଲାଲ ନେହୁରୁଙ୍କ ଲିଖିତ "ଗ୍ଲିମ୍ପ୍‌ସେସ ଅଫ୍ ୱାର୍ଲଡ଼ ହିଷ୍ଟ୍ରି" ; ଭାରତୀୟ ବିଦ୍ୟା ଭବନ ଦ୍ୱାରା ପ୍ରକାଶିତ ଏଗାର ହଜାର ପୃଷ୍ଠା ସମ୍ବଳିତ ଓ ଏଗାରଟି ଭାଗରେ ବିଭାଜିତ ଡକ୍ଟର ଆର୍.ସି. ମଜୁମଦାର ଓ ତାଙ୍କର ସହଯୋଗୀମାନଙ୍କ ଦ୍ୱାରା ସଂକଳିତ "ଦି ହିଷ୍ଟ୍ରି ଆଣ୍ଡ କଲଚର୍ ଅଫ୍ ଇଣ୍ଡିଆନ୍ ପିପ୍‌ଲ" ଶୀର୍ଷକ ପୁସ୍ତକମାଳାର ଶେଷ ତିନି ଭାଗ ; ସାର୍ ପେଣ୍ଡେରେଲ ମୁନ୍‌ଙ୍କ ଲିଖିତ "ଦି ବ୍ରିଟିଶ କନ୍‌କ୍ୱେଷ୍ଟ ଆଣ୍ଡ ଡୋମିନିୟନ୍ ଅଫ୍ ଇଣ୍ଡିଆ" ଏବଂ ଅନ୍ୟାନ୍ୟ ଅନେକ ପୁସ୍ତକରୁ ବହୁ ବିଷୟବସ୍ତୁ ସଂଗ୍ରହ କରିଛି । ଏହି ଗବେଷକ ଓ ଐତିହାସିକମାନଙ୍କ ନିକଟରେ ମୁଁ

ସର୍ବତୋଭାବେ ଋଣୀ । ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟ ଘଟଣାବଳୀ ବର୍ଣ୍ଣନା କରିବାରେ ସ୍ୱଲିଖିତ "ଜନନାୟକ ଜଓ୍ୱାହରଲାଲ" ପୁସ୍ତକରୁ ମୁଁ ବିଶେଷ ସାହାଯ୍ୟ ଗ୍ରହଣ କରିଛି ।

ଫ୍ରେଣ୍ଡସ୍ ପବ୍ଲିଶର୍ସର ସ୍ୱତ୍ୱାଧିକାରୀ ଶ୍ରୀ ସହଦେବ ପ୍ରଧାନ ଓ ତାଙ୍କର ସହଯୋଗୀମାନଙ୍କର ଅକୁଣ୍ଠିତ ଉଦ୍ୟମ ହେତୁ ପୁସ୍ତକଟି ଯଥାଶୀଘ୍ର ପ୍ରକାଶ ଲାଭ କରିଛି, ସେଥିପାଇଁ ଫ୍ରେଣ୍ଡସ୍ ପବ୍ଲିଶର୍ସଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

ଗଙ୍ଗାଧର ରଥ
୧୪।୦୬।୨୦୦୭

# ସୂଚୀ



| ବିଷୟ | ପୃଷ୍ଠା |
|---|---|

| ବିଷୟ | | ପୃଷ୍ଠା |
|---|---|---|
| ୩୭ । | ସଂଘର୍ଷର ଅଗ୍ନିଶିଖା | ୨୧୫ |
| ୩୮ । | ପ୍ରଳୟରୁ ଜୟଟିକା | ୨୨୯ |
| ୩୯ । | କମ୍ପାନୀରୁ କ୍ରାଉନ୍ | ୨୩୬ |
| ୪୦ । | ଜନ୍ ଲରେନ୍ସ | ୨୪୨ |
| ୪୧ । | ଲରେନ୍ସଙ୍କ ଉତ୍ତରାଧିକାରୀ ମେୟୋ | ୨୪୮ |
| ୪୨ । | ପୁଞ୍ଜିବାଦରୁ ସାମ୍ରାଜ୍ୟବାଦ | ୨୫୪ |
| ୪୩ । | ଜଣେ ଉଦାରପନ୍ଥୀ ଭାଇସରାୟ | ୨୫୯ |
| ୪୪ । | ଜନଜାଗରଣ ଓ ଜାତୀୟ କଂଗ୍ରେସର ଜନ୍ମ | ୨୬୪ |
| ୪୫ । | ସଫଳତାର ଶିଖରରେ ବ୍ରିଟିଶରାଜ | ୨୭୨ |
| ୪୬ । | ଦିଗ୍‌ବଳୟରେ କୃଷ୍ଣମେଘ | ୨୭୮ |
| ୪୭ । | ସାମ୍ରାଜ୍ୟବାଦର ଅବତାର ଲର୍ଡ଼ କର୍ଜନ୍ | ୨୮୧ |
| ୪୮ । | ବଙ୍ଗ ବିଭାଜନର ରକ୍ତାକ୍ତ ପରିଣତି | ୨୯୦ |
| ୪୯ । | ପ୍ରଥମ ବିଶ୍ୱଯୁଦ୍ଧ | ୨୯୫ |
| ୫୦ । | ମଣ୍ଟେଗ୍ୟୁ-ଚେମ୍‌ସଫୋର୍ଡ଼ ସଂସ୍କାର ଆଇନ୍ | ୩୦୩ |
| ୫୧ । | ଜାଲିଆନାୱାଲାବାଗ୍ ଗଣହତ୍ୟା | ୩୦୮ |
| ୫୨ । | ଅସହଯୋଗ ଓ ଚୌରୀଚୌରା | ୩୧୫ |
| ୫୩ । | ସାଇମନ କମିଶନ | ୩୧୯ |
| ୫୪ । | ଆଇନ ଅମାନ୍ୟ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହ | ୩୨୭ |
| ୫୫ । | ଗାନ୍ଧି-ଇରୱିନ୍ ଚୁକ୍ତି | ୩୩୦ |
| ୫୬ । | ଦ୍ୱିତୀୟ ଗୋଲ୍‌ଟେବୁଲ୍ ସମ୍ମିଳନୀର ବିଫଳତା ଓ ଭାରତରେ ନିର୍ମମ ଦମନଲୀଳା | ୩୩୬ |

# ୟୁରୋପୀୟମାନଙ୍କର ଭାରତ ଆଗମନ

ସପ୍ତଦଶ ଶତାବ୍ଦୀରେ ଭାରତ ସହ ବ୍ୟବସାୟ ବାଣିଜ୍ୟ ଆରମ୍ଭ କରିବା ପାଇଁ ୟୁରୋପୀୟ ରାଷ୍ଟ୍ରମାନଙ୍କ ମଧ୍ୟରେ ଦାରୁଣ ପ୍ରତିଯୋଗିତା ଆରମ୍ଭ ହୋଇଥିଲା । ଏହି ଉଦ୍ଦେଶ୍ୟରେ ୟୁରୋପର କେତେକ ଦେଶରେ ନୂଆ ନୂଆ ଯୌଥ କମ୍ପାନୀ ସବୁ ପ୍ରତିଷ୍ଠିତ ହେଲା । ଭାରତ ଦଖଲ କରିବା ବା ଏ ଦେଶରେ ଉପନିବେଶ ପ୍ରତିଷ୍ଠା କରିବା ଏ ପ୍ରତିଯୋଗିତାର ଉଦ୍ଦେଶ୍ୟ ନଥିଲା । ବାଣିଜ୍ୟ କାରବାର କରିଆରେ ୟୁରୋପୀୟ ବଣିକମାନେ ଯେପରି ଅଧିକରୁ ଅଧିକ ଲାଭବାନ ହେବେ, ତାହାହିଁ ଥିଲା ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ । ବାଣିଜ୍ୟିକ ସୁବିଧା ହାସଲ କରିବା ପାଇଁ ଯେଉଁ ରାଜନୈତିକ କ୍ଷମତା ଆବଶ୍ୟକ, ଆପଣା ଦେଶର ଶାସକମାନଙ୍କଠାରୁ ତାହା ହାସଲ କରିବା ପାଇଁ ଏହି କମ୍ପାନୀମାନେ ପ୍ରାଣପଣେ ଉଦ୍ୟମ କରୁଥିଲେ । ଅପର ପକ୍ଷରେ ଭାରତରେ ବ୍ୟବସାୟ ବାଣିଜ୍ୟ କରିବାକୁ ହେଲେ, ଏ ଦେଶରେ ରାଜୁତି କରୁଥିବା ମୋଗଲ ସମ୍ରାଟମାନଙ୍କୁ ଯଥାବିଧି ସମ୍ମାନ ଦେଖାଇବା ଓ ଅନ୍ୟଥା ସେମାନଙ୍କୁ ବିଭିନ୍ନ ଉପାୟରେ ସନ୍ତୁଷ୍ଟ କରିବା ବିଷୟରେ ଏହି ବିଦେଶୀ ବଣିକମାନେ ସଚେତନ ଥିଲେ ଏବଂ ସେଥିପାଇଁ ସତତ ପ୍ରୟାସ କରୁଥିଲେ ।

ଭାରତବର୍ଷରେ ବ୍ୟବସାୟ ବାଣିଜ୍ୟ କରିବା ଉଦ୍ଦେଶ୍ୟରେ ସପ୍ତଦଶ ଶତାବ୍ଦୀ ପ୍ରାରମ୍ଭରେ ବ୍ରିଟିଶ 'ଇଷ୍ଟ ଇଣ୍ଡିଆ' କମ୍ପାନୀ ଇଂଲଣ୍ଡରେ ପଞ୍ଜିକୃତ ହେଲା । କିନ୍ତୁ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତରେ ବିଧିବଦ୍ଧ ଭାବରେ ପ୍ରବେଶ କରିବା ପୂର୍ବରୁ ୟୁରୋପର ଭୂମଧ୍ୟସାଗର କୂଳରେ ଅବସ୍ଥିତ ଦୁଇଟି ରାଜ୍ୟ ସ୍ପେନ୍ ଓ ପର୍ତ୍ତୁଗାଲ ମଧ୍ୟରେ ଏଥିପାଇଁ ପ୍ରତିଯୋଗିତା ଆରମ୍ଭ ହୋଇଯାଇଥିଲା । ସ୍ପେନ୍‌ର ରାଜା ଫର୍ଡିନାଣ୍ଡ ଓ ରାଣୀ ଇଶାବେଲାଙ୍କ ସହାୟତାରେ ସୁପ୍ରସିଦ୍ଧ କପ୍ତାନ କ୍ରିଷ୍ଟୋଫର କଲମ୍ବସ ଭାରତ ଯାତ୍ରା ପଥରେ ପଶ୍ଚିମ ଅଭିମୁଖେ ତିନୋଟି କ୍ଷୁଦ୍ର ଜାହାଜରେ ନୌଯାତ୍ରା ଆରମ୍ଭ କଲେ । ଅଠାଅଶୀ ଜଣ ନାବିକଙ୍କୁ ସାଙ୍ଗରେ ଧରି ଦୀର୍ଘ ଅଣସ୍ତରି ଦିନ ଯାତ୍ରାପରେ ୧୪୯୨

ମସିହାରେ କଲମ୍ବସ ଆମେରିକା ନିକଟବର୍ତ୍ତୀ ଏକ ଦ୍ୱୀପପୁଞ୍ଜରେ ପହଞ୍ଚିଥିଲେ । କଲମ୍ବସ ଜାଣି ନଥିଲେ ଯେ, ସେ ଆମେରିକା ଆବିଷ୍କାର କରିବାକୁ ସମର୍ଥ ହୋଇଛନ୍ତି । ତାଙ୍କର ଧାରଣା ହେଲା ଯେ, ତାଙ୍କଦ୍ୱାରା ଆବିଷ୍କୃତ ଦେଶହିଁ ଇଣ୍ଡିଆ ବା ଭାରତବର୍ଷ । ତେଣୁ ସେ ଦ୍ୱୀପପୁଞ୍ଜର ନାମ ଦେଇଥିଲେ ୱେଷ୍ଟଇଣ୍ଡିଜ୍ ଓ ତା'ର ଅଧିବାସୀମାନଙ୍କର ନାମକରଣ କରିଥିଲେ 'ରେଡ୍ ଇଣ୍ଡିଆନ୍' ବା ଲୋହିତ ଭାରତୀୟ ।

ମାତ୍ର ସ୍ପେନିଆଡ୍‌ମାନଙ୍କ ବହୁ ପୂର୍ବରୁ ପର୍ତ୍ତୁଗୀଜମାନେ ଭାରତ ଯାତ୍ରାର ଉଦ୍ୟମ ଆରମ୍ଭ କରିଥିଲେ । କଲମ୍ବସଙ୍କର ଧାରଣା ଥିଲା ଯେ ପୃଥିବୀ ଗୋଲ୍, ତେଣୁ ସ୍ପେନ୍‌ରୁ ପଶ୍ଚିମ ଦିଗକୁ ଯାଇ ପ୍ରଶାନ୍ତ ମହାସାଗର ଅତିକ୍ରମ କଲେ ସେ ଭାରତରେ ପହଞ୍ଚି ପାରିବେ । ସ୍ପେନିଆଡ୍‌ମାନଙ୍କର ନୌଯାତ୍ରା ପଶ୍ଚିମାଭିମୁଖୀ ଥିଲା ବେଳେ, ପର୍ତ୍ତୁଗୀଜମାନେ ଦକ୍ଷିଣପୂର୍ବ ଦିଗକୁ ଯାତ୍ରା ଆରମ୍ଭ କଲେ । ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ ପର୍ତ୍ତୁଗୀଜ ନାବିକ ବାର୍ଥଲମେଓ ଦିଆଜ୍ ଆଫ୍ରିକାର ଶେଷାଂଶରେ ପହଞ୍ଚି ଅନୁଭବ କଲେ, ସେହିଠାରୁ ଆଫ୍ରିକା ଅତିକ୍ରମ କରି ଉତ୍ତର-ପୂର୍ବ ଦିଗକୁ ଗଲେ ହୁଏତ ଭାରତବର୍ଷରେ ପହଞ୍ଚି ହେବ । ଆଫ୍ରିକାର ଏହି ଦକ୍ଷିଣାଂଶକୁ ସେ ନାମ ଦେଇଥିଲେ 'କେପ୍ ଅଫ୍ ଗୁଡ୍ ହୋପ୍' । ତା'ର ଚାଳିଶବର୍ଷ ପରେ ଗୋଟିଏ ପର୍ତ୍ତୁଗୀଜ୍ ନୌଭେଳାର କ୍ୟାପ୍‌ଟେନ୍ ଭାସ୍କୋଡାଗାମା ପର୍ତ୍ତୁଗାଲର ରାଜା ଓ ଶାସକ ଗୋଷ୍ଠୀର ପୂର୍ଣ୍ଣ ସମ୍ମତି ଓ ସମର୍ଥନ କ୍ରମେ 'କେପ୍ ଅଫ୍ ଗୁଡ୍ ହୋପ୍' ଦେଇ ଭାରତ ଆବିଷ୍କାର ଅଭିଯାନ ଆରମ୍ଭ କଲେ ଓ ୧୪୯୮ ମସିହାରେ କେରଳ ଉପକୂଳରେ ଅବସ୍ଥିତ କାଲିକଟ୍‌ରେ ଭାରତ ଭୂଇଁରେ ପାଦ ଦେଲେ ।

ସ୍ଥାୟୀବସତି ଓ ବାଣିଜ୍ୟ କୋଠି ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ପର୍ତ୍ତୁଗୀଜ୍‌ମାନେ ଉତ୍ତରମୁହାଁ ହୋଇ ୧୫୧୦ ମସିହାରେ ଗୋଆରେ ପହଞ୍ଚିଲେ । କାଳକ୍ରମେ ଗୋଆରେ ପର୍ତ୍ତୁଗୀଜ୍ ଶାସନ ପ୍ରତିଷ୍ଠିତ ହେଲା । ଗୋଆ ଅଧିକାର କରିବା ପରେ ବମ୍ବେ (ମୁମ୍ବାଇ) ବନ୍ଦର ମଧ୍ୟ ଦଖଲ କଲେ । ୧୫୧୦ ମସିହାରୁ ୧୯୬୧ ମସିହା ପର୍ଯ୍ୟନ୍ତ ଦୀର୍ଘ ଚାରିଶହ ଏକାବନ ବର୍ଷ ଧରି ଗୋଆ ରହିଲା ପର୍ତ୍ତୁଗାଲର ଏକ ଉପନିବେଶ ଭାବରେ ।

ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ୧୬୦୪ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀର ସେୟାର ହୋଲଡର ଓ ଡାଇରେକ୍ଟରମାନେ ଥିଲେ ବ୍ରିଟିଶ

ରାଜାଙ୍କର ପାରିଷଦ, ସଂପର୍କୀୟ, ବନ୍ଧୁବାନ୍ଧବ ଓ ଅନ୍ୟଥା କ୍ଷମତାଶୀଳ ବ୍ୟକ୍ତି । ଏଣୁ ଭାରତରେ ବ୍ୟବସାୟ ବାଣିଜ୍ୟ କରିବା ପଥରେ ଯାହାକିଛି ଅନ୍ତରାୟ ସୃଷ୍ଟି ହେଉଥିଲା, ତାହା ଦୂର କରିବାପାଇଁ ବ୍ରିଟିଶ ରାଜଶକ୍ତି ଓ ପାର୍ଲିଆମେଣ୍ଟ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଯଥୋଚିତ କ୍ଷମତା ପ୍ରଦାନ କରିଥିଲେ । ଏପରିକି ସାତ ସମୁଦ୍ର ପାର ହୋଇ ଦୂରଦେଶରେ ସୁରୁଖୁରୁରେ ବାଣିଜ୍ୟ କରିବା ନିମନ୍ତେ କମ୍ପାନୀକୁ ପ୍ରଶାସନିକ କ୍ଷମତା, କର ଆଦାୟ କରିବାର କ୍ଷମତା, ସାମରିକ ବାହିନୀ ସଂଗଠିତ କରିବା ଓ ସାମରିକ ଅଭିଯାନ ଚଳାଇବାର କ୍ଷମତା ମଧ୍ଯ ପ୍ରଦାନ କରାଯାଇଥିଲା । ୧୬୬୧ ଖ୍ରୀଷ୍ଟାବ୍ଦର ସନନ୍ଦରେ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଯୁଦ୍ଧ ଘୋଷଣା ଓ ଶାନ୍ତି ପ୍ରତିଷ୍ଠା କରିବାର ଅଧିକାର ଓ ୧୬୮୬ ମସିହାର ସନନ୍ଦରେ କମ୍ପାନୀକୁ ମୁଦ୍ରା ତିଆରି କରିବା, ନିଜସ୍ୱ ସୈନ୍ୟବାହିନୀ ଓ ନୌବାହିନୀ ରଖିବାର ଅଧିକାର ପ୍ରଦାନ କରାଯାଇଥିଲା । ୧୬୪୦ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ଭାରତ ଶାସକମାନଙ୍କଠାରୁ ଦଖଲ କରିଥିବା କରମଣ୍ଡଳ ଉପକୂଳସ୍ଥ ମାଡ୍ରାସ (ବର୍ତ୍ତମାନ ଚେନ୍ନାଇ) ଥିଲା ଇଂରେଜମାନଙ୍କର ପ୍ରଧାନ ବାଣିଜ୍ୟ କୋଠି ଓ ସାମରିକ ଘାଟୀ । ୧୬୬୧ ମସିହାରେ ପର୍ତ୍ତୁଗୀଜ ରାଜକନ୍ୟା କ୍ୟାଥେରାଇନ୍ ଇଂଲଣ୍ଡର ରାଜା ଦ୍ୱିତୀୟ ଚାର୍ଲସଙ୍କୁ ବିବାହ କରିଥିଲେ ଏବଂ ଉପଢୌକନ ସ୍ୱରୂପ ପର୍ତ୍ତୁଗାଲର ରାଜା ବ୍ରିଟିଶ ରାଜଦମ୍ପତିଙ୍କୁ ବମ୍ବେ ବନ୍ଦର ପ୍ରଦାନ କରିଥିଲେ । ସେହି ସମୟରୁ ପର୍ତ୍ତୁଗାଲ ଓ ବ୍ରିଟେନ୍ ମଧ୍ୟରେ ପ୍ରଚଳିତ ବିବାଦ ଅନେକ ପରିମାଣରେ ହ୍ରାସ ପାଇଥିଲା ।

କିନ୍ତୁ ଏହି କାଳରେ ୟୁରୋପରେ ଆଉ କେତୋଟି ନୂତନ ନୌଶକ୍ତି ଜନ୍ମ ନେଲା । ଗ୍ରେଟ୍‌ବ୍ରିଟେନ୍‌ର ପ୍ରତିଯୋଗୀ ଭାବରେ ଫ୍ରାନ୍ସ, ଦିନାମାର ଓ ଓଲନ୍ଦାଜମାନେ ଆବିର୍ଭୂତ ହେଲେ । ଅବଶ୍ୟ ଶେଷୋକ୍ତ ଶକ୍ତି ଦୁଇଟିର ଭାରତୀୟ ଅଭିଯାନରେ ଉଲ୍ଲେଖଯୋଗ୍ୟ ଭୂମିକା ନଥିଲା । ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀ ପ୍ରତିଷ୍ଠିତ ହେବାର ପ୍ରାୟ ଷାଠିଏ ବର୍ଷ ପରେ ୧୬୬୪ ଖ୍ରୀଷ୍ଟାବ୍ଦରେ ଫ୍ରେଞ୍ଚ ଇଷ୍ଟ ଇଣ୍ଡିଆ କମ୍ପାନୀ ସ୍ଥାପିତ ହୋଇଥିଲା । କମ୍ପାନୀ ଦ୍ୱାରା ଅଧିକୃତ ଅଞ୍ଚଳରେ ପୂର୍ଣ୍ଣ କର୍ତ୍ତୃତ୍ୱ ସ୍ଥାପନ, ବିଚାର ବ୍ୟବସ୍ଥା ପ୍ରଚଳନ ଏବଂ ଯୁଦ୍ଧ ଘୋଷଣା ଓ ଶାନ୍ତି ପ୍ରତିଷ୍ଠା କରିବାର ଅଧିକାର ଏହି କମ୍ପାନୀକୁ ଫରାସୀ ସରକାର ପ୍ରଦାନ କରିଥିଲେ । ଏହି ଫ୍ରେଞ୍ଚ କମ୍ପାନୀ କରମଣ୍ଡଳ ଉପକୂଳର ପଣ୍ଡିଚେରୀଠାରେ ଘାଟି ସ୍ଥାପନ କଲେ ଏବଂ ସେହିଠାରୁ ବ୍ୟବସାୟ ବାଣିଜ୍ୟ ସମେତ ଯୁଦ୍ଧ ବିଗ୍ରହ ଆଦି ସମସ୍ତ ପ୍ରକାର କାର୍ଯ୍ୟକ୍ରମ ନିୟନ୍ତ୍ରଣ କରୁଥିଲେ । କିନ୍ତୁ ଏହି ଫ୍ରେଞ୍ଚ

ଇଷ୍ଟ ଇଣ୍ଡିଆ କମ୍ପାନୀ ବ୍ୟବସାୟ ବାଣିଜ୍ୟ ବା ଉପନିବେଶ ସ୍ଥାପନ କ୍ଷେତ୍ରରେ ବିଶେଷ ସଫଳତା ଅର୍ଜନ କରିପାରିନଥିଲେ । ସେତେବେଳେ ଚତୁର୍ଦ୍ଦଶ ଲୁଇ ଫ୍ରାନ୍ସର ରାଜା । କମ୍ପାନୀ ହାତରେ ଆବଶ୍ୟକତା ଅନୁଯାୟୀ କ୍ଷମତା ଅର୍ପଣ କରିବା ପାଇଁ ଫ୍ରାନ୍ସର ରାଜା କୁଣ୍ଠିତ ନଥିଲେ, କିନ୍ତୁ ରାଜା ଓ ତାଙ୍କର ପ୍ରଧାନ ପରାମର୍ଶଦାତାଗଣ ବହୁବିଧ ଆଦେଶ ଓ କ୍ଷେତ୍ର ବିଶେଷରେ ପରସ୍ପର-ବିରୋଧୀ ନିର୍ଦ୍ଦେଶ ପଠାଇ କମ୍ପାନୀର କାର୍ଯ୍ୟନିର୍ବାହରେ ବାଧାବିଘ୍ନ ସୃଷ୍ଟି କରୁଥିଲେ । ଅଷ୍ଟାଦଶ ଶତାବ୍ଦୀରେ ବ୍ରିଟେନ୍ ଓ ଫ୍ରାନ୍ସ ମଧ୍ୟରେ ୟୁରୋପରେ ଅନବରତ ଯୁଦ୍ଧ ଲାଗି ରହିଥିବା ହେତୁ, ତା'ର ପ୍ରତିକ୍ରିୟା ଭାରତରେ ମଧ୍ୟ ପ୍ରତିଫଳିତ ହୋଇଥିଲା ଓ ଦକ୍ଷିଣ ଭାରତରେ ଉଭୟ ଶକ୍ତି ମଧ୍ୟରେ ବହୁଦିନ ଧରି ସଂଘର୍ଷ ଲାଗି ରହିଥିଲା ।

ଏଣେ ମାନ୍ଦ୍ରାଜରେ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀ ନିଜର ଆସ୍ଥାନ ଦୃଢ଼ କରିବା ପରେ ବାଣିଜ୍ୟ ବୃଦ୍ଧି ପାଇଁ ବଙ୍ଗଦେଶ ଆଡ଼କୁ ଦୃଷ୍ଟିପାତ କଲେ । ହୁଗୁଳୀ ନଦୀ କୂଳରେ ସେମାନେ କଲିକତା (କୋଲକାତା), ସୂତନଟି ଓ ଗୋବିନ୍ଦପୁର ଶୀର୍ଷକ ତିନୋଟି ଗାଆଁ ଖରିଦ୍ କରି ସେଠାରେ ବାଣିଜ୍ୟ ଘାଟି ସ୍ଥାପନ କଲେ । ୧୬୯୦ ମସିହାରେ କଲିକତା ସହର ଏହି ତିନୋଟି ଗାଆଁକୁ ନେଇ ପ୍ରତିଷ୍ଠିତ ହେଲା । ଗୋଦାମ ଘରଗୁଡ଼ିକୁ ସୁରକ୍ଷିତ କରିବାପାଇଁ ଇଷ୍ଟ ଇଣ୍ଡିଆ କମ୍ପାନୀ କଲିକତାରେ ଏକ ଦୁର୍ଗ ନିର୍ମାଣ କଲେ । ଇଂଲଣ୍ଡର ତତ୍କାଳୀନ ରାଜା ଥିଲେ ତୃତୀୟ ଉଇଲିୟମ୍ ଏବଂ ତାଙ୍କର ସମ୍ମାନାର୍ଥେ ଏହି ଦୁର୍ଗର ନାମ ଦିଆଯାଇଥିଲା 'ଫୋର୍ଟ ଉଇଲିୟମ' । କଲିକତା ସହର ପ୍ରତିଷ୍ଠିତ ହେବାର ପ୍ରାୟ ସତେଇଶି ବର୍ଷ ପରେ ମୋଗଲ ସମ୍ରାଟ୍ ଔରଙ୍ଗଜେବଙ୍କ ଉତ୍ତରାଧିକାରୀ ଫାରୁକ୍‌ଶିଆର ଇଂରେଜମାନଙ୍କୁ ଆଉ ଅଠତିରିଶିଟି ଗ୍ରାମ ଇଜାରା ଦେଲେ । ମୋଗଲ ଦରବାରରେ ବାର୍ଷିକ ମାତ୍ର ତିନିହଜାର ଟଙ୍କା ସଲାମୀ ଦେବା ସର୍ତ୍ତରେ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ପଣ୍ୟ ଶୁଳ୍କ ଛାଡ଼ କରାଗଲା । କ୍ରମେ କଲିକତା ସହର ବଙ୍ଗଦେଶରେ ଇଂରେଜମାନଙ୍କର ବ୍ୟବସାୟ ବାଣିଜ୍ୟର ପ୍ରଧାନ କେନ୍ଦ୍ରରେ ପରିଣତ ହେଲା ।



# ଧ୍ୱଂସପଥରେ ମୋଗଲ ସାମ୍ରାଜ୍ୟ

୧୭୦୭ ମସିହାରେ ସମ୍ରାଟ ଔରଙ୍ଗଜେବଙ୍କ ମୃତ୍ୟୁପରେ ମୋଗଲ ସାମ୍ରାଜ୍ୟର ଅଧଃପତନ କ୍ଷିପ୍ରଗତିରେ ଆରମ୍ଭ ହେଲା । ଔରଙ୍ଗଜେବ ନିଜର ପିତା ଶାହାଜାହାନ୍‌ଙ୍କୁ ବନ୍ଦୀ କରି ରାଜଗାଦି ଅଧିକାର କରିଥିଲେ । ଔରଙ୍ଗଜେବଙ୍କ ଅନ୍ତେ ତାଙ୍କର ପୁତ୍ରମାନଙ୍କ ମଧ୍ୟରେ ସିଂହାସନ ପାଇଁ ରକ୍ତାକ୍ତ ସଂଘର୍ଷର ସୂତ୍ରପାତ ହେଲା । ମୁଆଜ୍ଜମ୍ ବାହାଦୁର ଶାହ ବିଜୟୀ ହୋଇ ଦିଲ୍ଲୀ ରାଜଗାଦି ଆରୋହଣ କଲେ ଓ ପାଞ୍ଚବର୍ଷ ରାଜୁତି କଲେ । ଅବଶ୍ୟ ଗୁରୁ ଗୋବିନ୍ଦ ସିଂହଙ୍କ ହତ୍ୟାପରେ ପ୍ରତିହିଂସାପରାୟଣ ଶିଖ୍‌ମାନଙ୍କୁ ଜବତ କରିବା ପାଇଁ ବିଶେଷତଃ ଶିଖ୍‌ନେତା ବାନ୍ଦାଙ୍କ ବିରୁଦ୍ଧରେ ଯୁଦ୍ଧ ପରିଚାଳନା କରି ସେ ଶିଖ୍‌ମାନଙ୍କର ପ୍ରଧାନଘାଟି ଶିରହିନ୍ଦ୍‌କୁ ଦଖଲ କରିନେଇଥିଲେ । ଶିଖ୍ ସେନାପତି ବାନ୍ଦା ଓ ତାଙ୍କର ଅନୁଚରମାନେ ଗୁରୁଦାସପୁର ଦୁର୍ଗରେ ଅବରୁଦ୍ଧ ହୋଇ, ଅନାହାର ଓ କ୍ଷୁଧାର ଜ୍ୱାଳା ସହି ନପାରି ପରିଶେଷରେ ଆତ୍ମସମର୍ପଣ କଲେ । ସେମାନଙ୍କୁ ବନ୍ଦୀ କରି ଦିଲ୍ଲୀ ଅଣାଯାଇଥିଲା ଓ ବହୁ ନିର୍ଯ୍ୟାତନା ପରେ ବାନ୍ଦା ଓ ତାଙ୍କର ସହଯୋଗୀମାନଙ୍କୁ ସମ୍ରାଟ୍‌ଙ୍କ ନିର୍ଦ୍ଦେଶରେ ହତ୍ୟା କରାଗଲା ।

ମୋଗଲ ଦରବାରରେ ଭ୍ରାତୃହତ୍ୟା ଓ ରକ୍ତପାତ ଥିଲା ଏକ କଳଙ୍କିତ ପରଂପରା । ହତ୍ୟାର ବିଭୀଷିକାରେ ଦରବାର ଥିଲା ରକ୍ତ-ରଂଜିତ । ବାହାଦୁର ଶାହଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ରମାନଙ୍କ ମଧ୍ୟରେ ପୁନଶ୍ଚ କ୍ଷମତା କନ୍ଦଳ ଆରମ୍ଭ ହୋଇଗଲା ଏବଂ ଜନୈକ ଅଯୋଗ୍ୟ ପୁତ୍ର ଜାହାନ୍ଦର ଶାହ ପ୍ରାୟ ଏକବର୍ଷ ରାଜଗାଦି ଦଖଲ କଲେ । ଅଳ୍ପଦିନ ମଧ୍ୟରେ ଭ୍ରାତୃଷ୍ପୁତ୍ର ଫାରୁକ୍‌ଶିଆରଙ୍କ ଦ୍ୱାରା କ୍ଷମତାଚ୍ୟୁତ ହୋଇ ସେ ବନ୍ଦୀ ହେଲେ ଓ କାରାଗାରରେ ନିହତ ହେଲେ । ନୂତନ ସମ୍ରାଟ୍ ଫାରୁକ୍‌ଶିଆରଙ୍କ ରାଜତ୍ୱ ମଧ୍ୟ ଛଅବର୍ଷ ଅତିକ୍ରମ କଲା ନାହିଁ । ବାର୍‌ହାର ସୟଦ୍ ସଂପ୍ରଦାୟର ଦୁଇଭାଇ ଶିଆରଙ୍କ ପ୍ରଧାନ ଶତ୍ରୁ ରୂପେ ଉଭା ହେଲେ । ସେମାନଙ୍କୁ ଅପସାରଣ କରିବାକୁ ଯାଇ ଫାରୁକ୍ ନିଜେ ଯୁଦ୍ଧରେ ପରାଜିତ ହେଲେ । ଅବଶେଷରେ ବାହାଦୁର ଶାହଙ୍କ

ତୃତୀୟ ପୌତ୍ର ମହମ୍ମଦ ଶାହ ଦରବାରର ପାରିଷଦମାନଙ୍କ ସହାୟତାରେ ରାଜଗାଦି ଦଖଲ କଲେ । କିନ୍ତୁ ମହମ୍ମଦଙ୍କ ଶାସନ ଥିଲା ଅତ୍ୟନ୍ତ ବ୍ୟୟବହୁଳ । ସମ୍ରାଟଙ୍କ ବ୍ୟକ୍ତିଗତ ଜୀବନଧାରା ଥିଲା ବିଳାସବ୍ୟସନରେ ପରିପୂର୍ଣ୍ଣ । ସେନାବାହିନୀକୁ ସୁସଜ୍ଜିତ ରଖିବା ପାଇଁ ଖର୍ଚ୍ଚ ଥିଲା ମାତ୍ରାଧିକ । ଆର୍ଥିକ ସ୍ଥିତି ବିପର୍ଯ୍ୟସ୍ତ ହେଲା ଓ ଶାସନ ଭାଙ୍ଗିପଡ଼ିଲା । ମୋଗଲ ସମ୍ରାଟ୍ ସାମ୍ରାଜ୍ୟର ଗୋଟିକ ପରେ ଗୋଟିଏ ଅଞ୍ଚଳ ହରାଇ ବସିଲେ ।

ଏହି ସମୟରେ ମରହଟ୍ଟାମାନେ ମୋଗଲମାନଙ୍କୁ ବିତାଡ଼ିତ କରି ଦିଲ୍ଲୀ ଶାସନଗାଦି ଦଖଲ କରିବା ପାଇଁ ପ୍ରଚଣ୍ଡ ଉଦ୍ୟମ ଆରମ୍ଭ କଲେ । ମୋଗଲ ସିଂହାସନର ଉତ୍ତରାଧିକାରୀମାନଙ୍କ ମଧ୍ୟରେ ରକ୍ତାକ୍ତ ସଂଘର୍ଷ ଚାଲିଥିବା ବେଳେ ମରହଟ୍ଟାମାନେ ପଶ୍ଚିମ-ଭାରତ ଦଖଲ କରି ମଧ୍ୟ-ଭାରତ ଆଡ଼କୁ ଆଗେଇ ଥିଲେ; କିନ୍ତୁ ଲକ୍ଷ୍ୟ ଥିଲା ଉତ୍ତରରେ ଦିଲ୍ଲୀର ସିଂହାସନ ।

ଶିବାଜୀଙ୍କ ଅନ୍ତେ ତାଙ୍କର ପୁତ୍ରମାନେ ଅବଶ୍ୟ ମହାରାଜା ଉପାଧିରେ ଭୂଷିତ ହେଉଥିଲେ, କିନ୍ତୁ ସେମାନଙ୍କର ଖ୍ୟାତି ଓ କରାମତି କେବଳ ଜନ୍ମସ୍ଥାନ କୋଲ୍‌ହାପୁରରେ ଆବଦ୍ଧ ରହିଥିଲା । ପ୍ରଧାନମନ୍ତ୍ରୀ ପେଶବାମାନେ କ୍ରମେ ମରହଟ୍ଟା ଶାସନର ମୁଖ୍ୟ ରୂପେ ବିବେଚ୍ଚିତ ହେଲେ । ପେଶବା ବଂଶର ସଂସ୍ଥାପକ ଥିଲେ ବାଲାଜୀ ବିଶ୍ୱନାଥ । ସେ ଅତ୍ୟନ୍ତ ପ୍ରଭାବଶାଳୀ ହୋଇପାରିଥିଲେ ମଧ୍ୟ ତାଙ୍କର ମୃତ୍ୟୁ ପରେ ଭାରତର ବିଶାଳ ଭୂଖଣ୍ଡରେ ପାଞ୍ଚୋଟି ବଡ଼ ମରହଟ୍ଟା ରାଜ୍ୟ ଗଢ଼ି ଉଠିଲା । ପୁନାରେ ପେଶବା, ନାଗପୁରରେ ଭୋନ୍‌ସ୍ଲା, ଗୋଆଲିୟରରେ ସିନ୍ଧିଆ, ଇନ୍ଦୋରରେ ହୋଲକାର୍ ଓ ବରୋଦାରେ ଗାଇକୋୱାଡ୍ ରାଜବଂଶ ପ୍ରତିଷ୍ଠିତ ହେଲା । କିନ୍ତୁ ମରହଟ୍ଟା ଶାସନ ଥିଲା ଅତ୍ୟାଚାରପ୍ରବଣ, ବିଶୃଙ୍ଖଳ ଓ ପ୍ରଜାପୀଡ଼କ । ଶାସନ ବା ସଂଗଠନ ପ୍ରତି ସେମାନଙ୍କର ଆଗ୍ରହ ନଥିଲା । କେବଳ ଲୁଣ୍ଠନ ଓ ଯେନତେନପ୍ରକାରେଣ ଅର୍ଥ ସଂଗ୍ରହ ଥିଲା ସେମାନଙ୍କର ଏକମାତ୍ର ଅଭିରୁଚି । ମରହଟ୍ଟା ସୈନ୍ୟ କୌଣସି ଅଞ୍ଚଳରେ ପ୍ରବେଶ କଲେ, ସେ ଅଞ୍ଚଳର ବାସିନ୍ଦାମାନେ ଭୟ ଓ ଆତଙ୍କରେ ଘରଦ୍ୱାର ଛାଡ଼ି ପଳାୟନ କରୁଥିଲେ । ଦିଲ୍ଲୀରେ ମୋଗଲ ଶାସନ ପତନୋନ୍ମୁଖୀ ଥିଲେ ମଧ୍ୟ ଦିଲ୍ଲୀ ଦଖଲ କରିବା ପାଇଁ ମରହଟ୍ଟାମାନଙ୍କର ପ୍ରଚେଷ୍ଟା ସଫଳ ହୋଇପାରିନଥିଲା ।

ପେଶବା ବାଲାଜୀଙ୍କ ପୁତ୍ର ବାଜିରାଓ ଯେତେବେଳେ ଦକ୍ଷିଣରୁ ଦିଲ୍ଲୀ ଅଭିମୁଖେ ଆଗେଇ ଚାଲିଥିଲେ, ସେତେବେଳେ ୧୭୩୯ ମସିହାରେ ପାରସ୍ୟର ରାଜା ନାଦୀର

ଶାହ ଭାରତ ଆକ୍ରମଣ କଲେ । ନାଦୀର ଶାହଙ୍କ ସୈନ୍ୟମାନେ ଦିଲ୍ଲୀର ଉପକଣ୍ଠ ପର୍ଯ୍ୟନ୍ତ ଆସିଥିଲେ ମଧ୍ୟ ମୋଗଲ ସମ୍ରାଟ୍ ମହମ୍ମଦ ଶାହ ଏ ଆକ୍ରମଣର ପ୍ରତିରୋଧ କରିବାରେ ବ୍ୟର୍ଥ ହୋଇଥିଲେ । ନାଦୀର ଶାହ ଦୁଇମାସ କାଳ ଦିଲ୍ଲୀରେ ଅବସ୍ଥାନ କରି ବ୍ୟାପକ ହତ୍ୟାକାଣ୍ଡ ଓ ଲୁଟ୍‌ତରାଜ୍ କରି ପ୍ରଚୁର ଧନଦୌଲତ ଧରି ସ୍ୱଦେଶକୁ ଫେରିଯାଇଥିଲେ । ସମ୍ରାଟ୍ ଶାହାଜାହାନଙ୍କ ଦ୍ୱାରା ନିର୍ମିତ ମୟୂର ସିଂହାସନ ମଧ୍ୟ ଲୁଣ୍ଠନରୁ ବାଦ୍ ପଡ଼ିଲା ନାହିଁ । ନାଦୀର ଶାହଙ୍କ ପ୍ରତ୍ୟାବର୍ତ୍ତନ ପରେ ଦିଲ୍ଲୀରେ ଲୁଣ୍ଠନକାରୀମାନଙ୍କର ରାଜତ୍ୱ ଚାଲିଲା ଓ ମୋଗଲ ସାମନ୍ତ ଓ ପାରିଷଦମାନେ ଅଯୋଧ୍ୟାର ରାଜଧାନୀ ଲକ୍ଷ୍ନୌରେ ଆଶ୍ରୟ ନେଲେ ।

ନାଦୀର ଶାହଙ୍କ ପ୍ରତ୍ୟାବର୍ତ୍ତନର ସତର ବର୍ଷ ପରେ ନାଦୀରଙ୍କ ଉତ୍ତରାଧିକାରୀ ଅହମ୍ମଦ ଶାହା ଦୁରାନୀ ଆଫଗାନିସ୍ଥାନର ଶାସକ ହେଲେ । ଏହି ସମୟରେ ମରହଟ୍ଟାମାନେ ଦକ୍ଷିଣରୁ ଯାଇ ପଞ୍ଜାବ ଅଧିକାର କରିଥିଲେ । କିନ୍ତୁ ଶାସନ ପ୍ରତିଷ୍ଠା ପରିବର୍ତ୍ତେ ସେମାନେ ପୂର୍ବବତ୍ ଚୌଥ କର ଆଦାୟରେ ବ୍ୟସ୍ତ ରହିଲେ । ମରହଟ୍ଟାମାନଙ୍କ ଦୁର୍ଭାଗ୍ୟକୁ ଲୁଣ୍ଠନାକରୀ ଅହମ୍ମଦ ଶାହା ଦୁରାନୀ ପୁନର୍ବାର ଭାରତ ଆକ୍ରମଣ କଲେ ଓ ମରହଟ୍ଟାମାନଙ୍କୁ ଯୁଦ୍ଧରେ ପରାଜିତ କରି ପଞ୍ଜାବରୁ ସେମାନଙ୍କୁ ବିତାଡ଼ିତ କରିଥିଲେ । ଇତିହାସର ଝିମିଟି ଖେଳରେ ଦିଲ୍ଲୀ ସିଂହାସନ ଦଖଲ କରିବା ପାଇଁ ମରହଟ୍ଟାମାନଙ୍କର ସ୍ୱପ୍ନ ଚିରଦିନ ପାଇଁ ନିର୍ବାପିତ ହେଲା । ୧୭୬୧ ମସିହାରେ ଦୁରାନୀ ପାନିପଥ ଯୁଦ୍ଧରେ ଜୟଲାଭ କଲାପରେ ସମଗ୍ର ଉତ୍ତର ଭାରତ ତାଙ୍କ ନିୟନ୍ତ୍ରଣକୁ ଆସିଲା ସତ୍ୟ, କିନ୍ତୁ ଠିକ୍ ସେତିକିବେଳେ ଆଫ୍‌ଗାନିସ୍ଥାନରେ ଅନ୍ତଃବିଦ୍ରୋହ ମୁଣ୍ଡ ଟେକିଲା । ଦୁରାନୀ ଆପଣା ଦେଶ ଅବସ୍ଥା ସମ୍ଭାଳିବା ପାଇଁ ତୁରନ୍ତ ଭାରତରୁ ପ୍ରତ୍ୟାବର୍ତ୍ତନ କଲେ ।

ଏହି ସମୟରେ ଦାକ୍ଷିଣାତ୍ୟର ମୋଗଲ ଗଭର୍ଣ୍ଣର ମୋଗଲ ସମ୍ରାଟଙ୍କର ପ୍ରଭୁତ୍ୱ ପ୍ରତ୍ୟାଖ୍ୟାନ କରି ହାଇଦ୍ରାବାଦ୍ ନାମରେ ଏକ ନୂତନ ରାଜ୍ୟ ପ୍ରତିଷ୍ଠା କଲେ । ଗୋଲକୋଣ୍ଡା ଦୁର୍ଗର ଅନତିଦୂରରେ ଏହାର ରାଜଧାନୀ ହାଇଦ୍ରାବାଦ୍ ସ୍ଥାପିତ ହେଲା । ହାଇଦ୍ରାବାଦ୍ ସିଂହାସନର ଅଧିକାରୀମାନେ "ନିଜାମ୍" ଉପାଧି ଗ୍ରହଣ କରି ଦାକ୍ଷିଣାତ୍ୟରେ ରାଜୁତି ଆରମ୍ଭ କଲେ । ଏତିକିବେଳେ ମୋଗଲ ସମ୍ରାଟଙ୍କର ଜଣେ ପୂର୍ବତନ ଅନୁଗତ ହାଇଦର ଅଲ୍ଲୀ ପୂର୍ବର ବିଜୟ ନଗର (ମହୀଶୂର ରାଜ୍ୟ) ଓ ସାମ୍ରାଜ୍ୟର ଅବଶିଷ୍ଟାଂଶ ଅଧିକାର କରି ନିଜକୁ ନବାବ ଘୋଷଣା କଲେ ।

ଦକ୍ଷିଣରେ ମୋଗଲ ସାମ୍ରାଜ୍ୟ ଯେପରି ଖଣ୍ଡବିଖଣ୍ଡିତ ହେଉଥିଲା, ଉତ୍ତର ଓ ପୂର୍ବ ଭାରତରେ ମଧ୍ୟ ସେହି ପ୍ରକ୍ରିୟା ପୂର୍ଣ୍ଣମାତ୍ରାରେ ଚାଲିଥିଲା । ୧୭୩୭ ଖ୍ରୀଷ୍ଟାବ୍ଦରେ ଅଯୋଧ୍ୟା ମଧ୍ୟ ଦିଲ୍ଲୀ ମୋଗଲମାନଙ୍କର ଦୌରାତ୍ମ୍ୟରୁ ମୁକ୍ତ ହେଲା ଏବଂ ଅଯୋଧ୍ୟାର ନବାବ ବସ୍ତୁତଃ ସ୍ୱାଧୀନ ଭାବରେ ଶାସନ କରିବାକୁ ଆରମ୍ଭ କଲେ । ମୋଗଲ ସାମ୍ରାଜ୍ୟ କେବଳ ଦିଲ୍ଲୀ ଓ ଆଗ୍ରା ଅଞ୍ଚଳ ମଧ୍ୟରେ ସୀମିତ ହୋଇ ରହିଲା । ଦକ୍ଷିଣ-ପୂର୍ବ ଭାରତରେ ବଙ୍ଗଦେଶ ଥିଲା ସବୁଠାରୁ ଅଧିକ ଶକ୍ତିଶାଳୀ । ୧୭୧୩ ଖ୍ରୀଷ୍ଟାବ୍ଦରେ ଆଉରଙ୍ଗଜେବ୍‌ଙ୍କ ଦ୍ୱାରା ନିଯୁକ୍ତ ବଙ୍ଗଳାର ଗଭର୍ଣ୍ଣର ମୁର୍ଶିଦ୍ କୁଲ୍ଲୀ ଖାଁ ଦିଲ୍ଲୀରୁ ପ୍ରେରିତ ତାଙ୍କର ଉତ୍ତରାଧିକାରୀମାନଙ୍କୁ ବଙ୍ଗଳାରୁ ତଡ଼ି ଦେଇ ମୁର୍ଶିଦାବାଦ ସହରରେ ଏକ ନୂଆ ରାଜଧାନୀ ସ୍ଥାପନ କଲେ । କିଛିଦିନ ମଧ୍ୟରେ ବିହାର ଓ ଓଡ଼ିଶା ମଧ୍ୟ ବଙ୍ଗଳା ସହିତ ସଂଯୁକ୍ତ ହେଲା । ବଙ୍ଗଦେଶ ଏହାପରେ ଆନୁଷ୍ଠାନିକ ଭାବରେ ମୋଗଲମାନଙ୍କର ବଶ୍ୟତା ସ୍ୱୀକାର କଲେ ମଧ୍ୟ, ବଙ୍ଗଳାର ନବାବମାନେ ସମ୍ପୂର୍ଣ୍ଣ ସ୍ୱାଧୀନ ଭାବରେ କାର୍ଯ୍ୟ କରିବାକୁ ଆରମ୍ଭ କଲେ ।

କିନ୍ତୁ ବଙ୍ଗଦେଶରେ ଏହି ନବାବମାନଙ୍କର ପ୍ରତିପତ୍ତି ଦୀର୍ଘଦିନ ସ୍ଥାୟୀ ହେଲା ନାହିଁ । ବ୍ୟବସାୟ ଓ ବାଣିଜ୍ୟ କ୍ଷେତ୍ରରେ ଇଂରେଜମାନଙ୍କର ଅଗ୍ରଗତି ଦେଖି ବଙ୍ଗଳାର ନବାବ ବିଚଳିତ ହୋଇପଡ଼ିଥିଲେ । ମୁର୍ଶିଦ୍ କୁଲ୍ଲୀ ଖାଁଙ୍କ ପରେ ନବାବ ଆଲ୍ଲୀବର୍ଦ୍ଦି ଖାଁ ଇଂରେଜ କମ୍ପାନୀର କାର୍ଯ୍ୟକଳାପକୁ ସମ୍ପୂର୍ଣ୍ଣ ସନ୍ଦେହ କରୁଥିଲେ । ଆଲ୍ଲୀବର୍ଦ୍ଦି ଖାଁଙ୍କର ପୁତ୍ର ନଥିଲା ଏବଂ ସେ ତାଙ୍କର ଭାଇର ପୁଅ ସିରାଜଉଦ୍ଦୌଲାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । କଥିତ ଅଛି ଯେ, ଆଲ୍ଲୀବର୍ଦ୍ଦି ଖାଁ ତାଙ୍କର ରୋଗଶଯ୍ୟା ନିକଟରେ ବନ୍ଧୁ ଓ ଶୁଭାକାଂକ୍ଷୀମାନଙ୍କ ସମ୍ମୁଖରେ ଇଂରେଜମାନଙ୍କ ପ୍ରତି ହୁସିଆର ରହିବା ପାଇଁ ସିରାଜଙ୍କୁ ଉପଦେଶ ଦେଇଥିଲେ ।



# ବ୍ରିଟିଶ ଓ ଫରାସୀ ସଂଘର୍ଷର ଅୟମାରମ୍ଭ

ମୋଗଲ ସାମ୍ରାଜ୍ୟର ଉଜ୍ଜ୍ୱଳତମ କାନ୍ତି ମଳିନ ହୋଇ ଆସିଲା ବେଳକୁ ଦକ୍ଷିଣ ଭାରତରେ ଅନେକ କ୍ଷୁଦ୍ର ହିନ୍ଦୁ ଓ ମୁସଲମାନ ରାଜ୍ୟ ଗଢ଼ି ଉଠିଥିଲା । ଏମାନଙ୍କ ମଧ୍ୟରେ ଥିଲେ ମୋଗଲମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ମରହଟ୍ଟା ଶାସକଗୋଷ୍ଠୀ, ଯଥା– ପୁନାର ପେଶ୍ୱା, ନାଗପୁରର ଭୋନ୍‌ସ୍ଲେ, ଗୋଓ୍ୱାଲିଅରର ସିନ୍ଧିଆ, ଇନ୍ଦୋରର ହୋଲକାର ଓ ବରୋଦାର ଗାଇକୋଓ୍ୱାଡ୍ ରାଜବଂଶ ଏବଂ ମୋଗଲମାନଙ୍କର ପୂର୍ବତନ ଗଭର୍ଣ୍ଣର ହାଇଦ୍ରାବାଦର ନିଜାମ୍ ଆସଫ୍ ଜା ଏବଂ ବିଜୟନଗରର ନବାବ ହାଇଦର ଅଲ୍ଲୀ ପ୍ରମୁଖ । ଏହିସବୁ ଶାସକ ରାଜା, ମହାରାଜା ଓ ନବାବମାନଙ୍କ ମଧ୍ୟରେ ଯେତେବେଳେ ବିବାଦ ଆରମ୍ଭ ହୁଏ, ଫ୍ରେଞ୍ଚ ଦଖଲରେ ଥିବା ଉପନିବେଶଗୁଡ଼ିକର ଡାଇରେକ୍ଟର ଜେନେରାଲ୍ ଓ ପଣ୍ଡିଚେରୀର ଗଭର୍ଣ୍ଣର ଯୋସେଫ୍ ଡୁପ୍‌ଲେ ତା'ର ସୁବିଧା ନେଇ ସାହାଯ୍ୟ ନାମରେ ଜଣକୁ ଅନ୍ୟଜଣକ ବିରୁଦ୍ଧରେ ପ୍ରୟୋଗ କରି ଫରାସୀ କମ୍ପାନୀ ପାଇଁ ଓ ତତ୍‌ସହ ନିଜପାଇଁ ଅନେକ ସୁବିଧା ଉଠାନ୍ତି । କାଳକ୍ରମେ ଇଂରେଜମାନେ ସେହି ଖଳବିଦ୍ୟାରେ ଡୁପ୍‌ଲେଙ୍କୁ ଟପିଗଲେ ଓ ତତ୍‌ସହ ଫ୍ରେଞ୍ଚ ପଥ ଅନୁସରଣ କରି ଭାରତରେ ସ୍ଥାୟୀ ବସତି ସ୍ଥାପନ କରିବା ପାଇଁ ଉଦ୍ୟମ କଲେ ।

୧୭୪୪ ମସିହାରେ ଫରାସୀ ଓ ଇଂରେଜମାନଙ୍କ ମଧ୍ୟରେ ୟୁରୋପରେ ଯେତେବେଳେ ଯୁଦ୍ଧ ଆରମ୍ଭ ହେଲା, ତା'ର ପ୍ରତିକ୍ରିୟା ମଧ୍ୟ ଭାରତ ଉପରେ ପଡ଼ିଲା । କିନ୍ତୁ ଭାରତରେ ବ୍ୟବସାୟ କରୁଥିବା ଫ୍ରେଞ୍ଚ ଓ ଇଂଲିଶ୍ କମ୍ପାନୀମାନେ ହଠାତ୍ ଯୁଦ୍ଧରେ ଯୋଗଦେବା ପାଇଁ ଆଗ୍ରହୀ ନଥିଲେ । ଉଭୟ କମ୍ପାନୀର ବହୁ ସଦସ୍ୟ ମନେ କରୁଥିଲେ, ଯୁଦ୍ଧରେ ହୁଏତ ଅପର ପକ୍ଷର ନୌଭେଳାକୁ ଧ୍ୱଂସ କରିଦେଇ ହେବ । କିନ୍ତୁ ଏହାଦ୍ୱାରା ବ୍ୟବସାୟ ବାଣିଜ୍ୟ ସମ୍ପୂର୍ଣ୍ଣ କ୍ଷତିଗ୍ରସ୍ତ ହେବ । ଫରାସୀ ଗଭର୍ଣ୍ଣର ଡୁପ୍‌ଲେ ସେଥିପାଇଁ ମାଡ୍ରାସରେ ଥିବା ବ୍ରିଟିଶ କମ୍ପାନୀର ଅଧିକାରୀମାନଙ୍କୁ ଏ ଯୁଦ୍ଧରେ ନିରପେକ୍ଷ ରହିବା ପାଇଁ ଅନୁରୋଧ କଲେ । ଇଂରେଜମାନଙ୍କର ପ୍ରତିକ୍ରିୟା ମଧ୍ୟ ଆଶାଜନକ ଥିଲା । ଏ ସମ୍ପର୍କରେ ଇଂରେଜମାନଙ୍କ ସହ ବିଧିବଦ୍ଧ ଭାବରେ ଚୁକ୍ତି କରିବା ପାଇଁ ଡୁପ୍‌ଲେଙ୍କୁ ପ୍ୟାରିସ୍‌ରୁ ନିର୍ଦ୍ଦେଶ ଆସିଲା । ମାତ୍ର ବ୍ରିଟିଶ୍ କମ୍ପାନୀ ଜଣାଇଦେଲେ ଯେ, ଏପରି ଚୁକ୍ତି କରିବା ସେମାନଙ୍କର କ୍ଷମତା ବହିର୍ଭୂତ । ୧୭୪୪

ମସିହା ଶେଷ ଭାଗରେ ସେନାପତି ବାର୍ଣ୍ଣେଟ୍‌ଙ୍କ ନେତୃତ୍ୱରେ ଚାରିଜଣ ବ୍ରିଟିଶ୍ ଅଫିସର୍ ମାଡ୍ରାସ୍‌ରେ ପହଞ୍ଚିଲେ ଏବଂ ଲଣ୍ଡନକୁ ରିପୋର୍ଟ ପଠାଇଲେ ଯେ, ତୁରନ୍ତ ଯଦି ଗୋଟିଏ ଯୁଦ୍ଧ ନୌଭେଳା ମାଡ୍ରାସରେ ଆସି ନ ପହଞ୍ଚେ, ତା'ହେଲେ ପଣ୍ଡିଚେରୀର ଗୋଟିଏ କ୍ଷୁଦ୍ର ସେନାବାହିନୀ ମଧ ଅତି ସହଜରେ ମାଡ୍ରାସ ଓ ଫୋର୍ଟ ସେଣ୍ଟ୍ ଡେଭିଡ୍ ଅଞ୍ଚଳକୁ ଦଖଲ କରିନେଇ ପାରିବେ । ଏ ସମ୍ବାଦ ପାଇ ଗୋଟିଏ ବ୍ରିଟିଶ୍ ଯୁଦ୍ଧ ଜାହାଜ ଭେଳା ମାଡ୍ରାସରେ ଆସି ପହଞ୍ଚିଲା । ଫଳରେ ବାର୍ଣ୍ଣେଟ୍ ଫ୍ରେଞ୍ଚ କମ୍ପାନୀର ଜାହାଜଗୁଡ଼ିକର ବିଶେଷ କ୍ଷତି କରିବାକୁ ସମର୍ଥ ହେଲେ ଏବଂ ଫରାସୀ ବାଣିଜ୍ୟ ସମ୍ପୂର୍ଣ୍ଣ ସ୍ଥିତାବସ୍ଥାରେ ପହଞ୍ଚିଲା । ଏହି ପ୍ରକ୍ରିୟାରେ କମ୍ପାନୀ ଓ ବ୍ୟକ୍ତିଗତ ଭାବରେ ଡୁପ୍‌ଲେଙ୍କର ମଧ ବହୁତ କ୍ଷତି ହେଲା । ଡୁପ୍‌ଲେ ସେହି ସମୟରୁ ଇଂରେଜମାନଙ୍କୁ ବ୍ୟକ୍ତିଗତ ଭାବରେ ତାଙ୍କର ପରମ ଶତ୍ରୁ ବୋଲି ବିଚାର କଲେ ।

ବାର୍ଣ୍ଣେଟ୍‌ଙ୍କର ନୌବାହିନୀର ମାଡ୍ରାସ ଆଗମନପରେ ପଣ୍ଡିଚେରୀର ଗଭର୍ଣ୍ଣର ହତବୁଦ୍ଧି ନହୋଇ ବୋର୍‌ବୋର୍ଣ୍ଣ ଓ ମରିସସ୍‌ର ଗଭର୍ଣ୍ଣର ଲା ବୋର୍ଦ୍ଦୋନାଇସ୍‌ଙ୍କଠାରୁ ତୁରନ୍ତ ସାହାଯ୍ୟ ଲୋଡ଼ିଲେ ଓ ତତ୍‌ସହିତ କର୍ଣ୍ଣାଟକର ନବାବ ଅନ୍‌ଓ୍ୱାରଉଦ୍ଦିନ୍‌ଙ୍କଠାରୁ ନିରାପତ୍ତା ଭିକ୍ଷା କଲେ । ଅନ୍‌ଓ୍ୱାରଉଦ୍ଦିନ୍ ସାହାଯ୍ୟ ଦେବା ପାଇଁ ପ୍ରତିଶ୍ରୁତି ଦେଇ ଇଂରେଜମାନଙ୍କୁ ଜଣାଇଦେଲେ ଯେ, ଫରାସୀ କମ୍ପାନୀ ତାଙ୍କର ସାହାଯ୍ୟପ୍ରାର୍ଥୀ, ଏଣୁ ଇଂରେଜମାନେ ଫରାସୀମାନଙ୍କ ସହିତ ବିବାଦରେ ଜଡ଼ିତ ହୁଅନ୍ତୁ ନାହିଁ । ୧୭୪୫ ଖ୍ରୀଷ୍ଟାବ୍ଦରେ ବୋର୍ଦ୍ଦୋନାଇସ୍ କେତେଗୁଡ଼ିଏ ଯୁଦ୍ଧ ଜାହାଜ ଧରି ପଣ୍ଡିଚେରୀରେ ପହଞ୍ଚିଲେ ଏବଂ ଇଂରେଜମାନଙ୍କ ସହିତ ଯେପରି ଦୃଢ଼ ମୁକାବିଲା କରାଯାଇପାରିବ, ସେଥିପାଇଁ ଏହି ଜାହାଜଗୁଡ଼ିକରେ ନୂଆ ନୂଆ କମାଣ ଖଞ୍ଜିବାର ବ୍ୟବସ୍ଥା କଲେ । ବୋର୍ଦ୍ଦୋନାଇସ୍‌ଙ୍କୁ ଜଣେ ଯୋଗ୍ୟ ନାବିକ, ସୁଦକ୍ଷ ମେକାନିକ୍ ଓ ତତ୍‌ସହ ସାମୁଦ୍ରିକ ଡାକୁ କହିଲେ ଭୁଲ୍ ହେବ ନାହିଁ । ଇଂରେଜମାନଙ୍କର ଦୁର୍ଭାଗ୍ୟ, ବାର୍ଣ୍ଣେଟ୍ ଠିକ୍ ଏତିକିବେଳେ ହଠାତ୍ ରୋଗରେ ପଡ଼ି ମୃତ୍ୟୁ ବରଣ କଲେ । ମାଡ୍ରାସ୍‌ରେ ଅବସ୍ଥିତ ଇଂରେଜମାନେ ହତାଶ ହୋଇ କର୍ଣ୍ଣାଟକର ନବାବ ଅନ୍‌ଓ୍ୱାରଉଦ୍ଦିନଙ୍କର ସାହାଯ୍ୟ ଲୋଡ଼ିଲେ । ଅନ୍‌ଓ୍ୱାରଉଦ୍ଦିନ୍ ପଣ୍ଡିଚେରୀ ଗଭର୍ଣ୍ଣର ଡୁପ୍‌ଲେଙ୍କୁ ମାଡ୍ରାସ ଉପରେ ଆକ୍ରମଣ ନ କରିବା ପାଇଁ ଅନୁରୋଧ କଲେ, କିନ୍ତୁ ଡୁପ୍‌ଲେ ଉତ୍ତର ପଠାଇବାରେ ଟାଳଟୁଳ ନୀତି ଅବଲମ୍ବନ କରି ତୁରନ୍ତ ମାଡ୍ରାସ ଉପରେ ଆକ୍ରମଣ କଲେ । ଅବଶ୍ୟ ଅନ୍‌ଓ୍ୱାରଉଦ୍ଦିନ୍ ନିଜର ବଡ଼ପୁଅ ମହଫୁମ୍ ଖାଁଙ୍କ ସେନାପତିତ୍ୱରେ ଇଂରେଜମାନଙ୍କୁ ସାହାଯ୍ୟ କରିବା ପାଇଁ ଦଶହଜାର ସୈନ୍ୟ ପଠାଇଲେ, କିନ୍ତୁ ତୁରନ୍ତ ବ୍ୟବହାର

ହୋଇପାରୁଥିବା ଦୁଇଟି ମାତ୍ର କମାଣରୁ ଗୁଳି ଫାୟାର୍ କରିବା ଫଳରେ କର୍ଣ୍ଣାଟକର ପଦାତିକ ବାହିନୀ ଛତ୍ରଭଙ୍ଗ ଦେଲେ । ଫରାସୀମାନେ ପ୍ରମାଣ କରିଦେଲେ ଯେ, ଆଧୁନିକ ରଣକୌଶଳ ପ୍ରୟୋଗ କରି ବିରାଟ ସୈନ୍ୟବାହିନୀକୁ ମଧ୍ୟ ଯୁଦ୍ଧରେ ଛିନ୍ନଛତ୍ର କରି ଦିଆଯାଇପାରେ । ମାଡ୍ରାସ ଦଖଲ କରିବା ପରେ ବିଜୟୋଲ୍ଲାସରେ ମତ୍ତ ହୋଇ ଡୁପ୍ଲେ ଇଂରେଜମାନଙ୍କର ସେଣ୍ଟ ଡେଭିଡ୍ ଦୁର୍ଗ ଉପରେ ଆକ୍ରମଣ ଆରମ୍ଭ କଲେ । ସେତେବେଳେ ଫୋର୍ଟ ଡେଭିଡ୍‌ରେ ଇଂରେଜମାନଙ୍କର ସାମରିକ ଶକ୍ତି ଥିଲା ଅତି ଦୁର୍ବଳ । ସେମାନଙ୍କର ସୈନ୍ୟବାହିନୀରେ ଥିଲେ ଅଳ୍ପସଂଖ୍ୟକ ସ୍ଥାନୀୟ ପଦାତିକ ସୈନ୍ୟ (ଯେଉଁମାନଙ୍କୁ ସେ ସମୟରେ କୁହାଯାଉଥିଲା 'ପିଅନ'), ପ୍ରାୟ ଏକ ଶହ ପର୍ତ୍ତୁଗୀଜ ସୈନ୍ୟ ଓ ଦୁଇଶହ ୟୁରୋପିଆନ୍ ସୈନ୍ୟ । ଏହି ୟୁରୋପିଆନ୍‌ମାନଙ୍କ ମଧ୍ୟରେ ଥିଲେ ୨୧ ବର୍ଷ ବୟସ୍କ ଜଣେ ଯୁବକ ରବର୍ଟ କ୍ଲାଇଭ୍, ଯେ କି ମାଡ୍ରାସ୍‌ରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଅଫିସ୍‌ରେ କିରାଣି ବା ରାଇଟର ଭାବରେ ନିଯୁକ୍ତ ହୋଇଥିଲେ ଓ ପରେ ଫୋର୍ଟ ଡେଭିଡ୍‌କୁ ରକ୍ଷା କରିବାକୁ ଯାଇ କମ୍ପାନୀର ସାମରିକ ବାହିନୀରେ ନିଯୁକ୍ତ ହେଲେ । ସମୟ କ୍ରମେ ସାମରିକ ବାହିନୀରେ କ୍ଲାଇଭ୍ ହେଲେ ଜଣେ ଅତି ସାହସୀ, ଦୁର୍ଦ୍ଧର୍ଷ, କୁଚକ୍ରୀ ଓ ବିଚକ୍ଷଣ ସେନା ନାୟକ ।

ଉପରୋକ୍ତ ଅଳ୍ପ ସଂଖ୍ୟକ ସୈନ୍ୟମାନଙ୍କୁ ନେଇ ଫ୍ରେଞ୍ଚ୍ ବାହିନୀକୁ ପରାଜିତ କରିବାର ସମ୍ଭାବନା ନଦେଖି ଇଂରେଜମାନେ ପୁନଶ୍ଚ କର୍ଣ୍ଣାଟକର ନବାବ ଅନ୍‌ୱାରଉଦ୍ଦିନ୍‌ଙ୍କର ସାହାଯ୍ୟ ଭିକ୍ଷା କଲେ । ଅନ୍‌ୱାରଉଦ୍ଦିନ୍ ତାଙ୍କ ସାନପୁଅ ମହମ୍ମଦ ଅଲ୍ଲୀଙ୍କ ନେତୃତ୍ୱରେ ପ୍ରାୟ ଅଢ଼େଇ ହଜାର ସୈନିକ ପଠାଇ ଫରାସୀ ସୈନ୍ୟଙ୍କ ଉପରେ ପ୍ରତିଆକ୍ରମଣ ଆରମ୍ଭ କଲେ । ଠିକ୍ ଏତିକିବେଳେ ଲା ବୋର୍ଦ୍ଦୋନାଇସ ଓ ଡୁପ୍ଲେଙ୍କ ମଧ୍ୟରେ ଅବାଞ୍ଛିତ ବ୍ୟକ୍ତିଗତ ବିବାଦର ସୂତ୍ରପାତ ହେଲା । ବୋର୍ଦ୍ଦୋନାଇସ୍ ରାଗ ଓ କ୍ଷୋଭରେ ତାଙ୍କର ଜାହାଜଗୁଡ଼ିକ ସହିତ ମରିସସ୍ ଫେରିଗଲେ । ଡୁପ୍ଲେ ଅସହାୟ ଅବସ୍ଥାରେ ମାଡ୍ରାସ ଓ ସେଣ୍ଟ ଡେଭିଡ୍ ଦୁର୍ଗ ଛାଡ଼ି ପଣ୍ଡିଚେରୀ ପଳାୟନ କଲେ; କିନ୍ତୁ ସାଙ୍ଗରେ ନେଇ ଆସିଥିଲେ ଇଂରେଜମାନଙ୍କ ଅଫିସ୍‌ରୁ ଲୁଟ୍ କରିଥିବା ବହୁ ମୂଲ୍ୟବାନ୍ ଧନ ସମ୍ପଦ । ମାଡ୍ରାସ ଓ ସେଣ୍ଟ୍ ଡେଭିଡ୍ ପୂର୍ବବତ୍ ଇଂରେଜମାନଙ୍କ ଦଖଲରେ ରହିଲା ।

ପଣ୍ଡିଚେରୀର ଗଭର୍ଣ୍ଣର ଡୁପ୍ଲେ ପୁଣିଥରେ ଫୋର୍ଟ ଡେଭିଡ୍‌ରୁ ଇଂରେଜମାନଙ୍କୁ ବିତାଡ଼ିତ କରିବା ପାଇଁ ଯୋଜନା କଲେ । ତା' ପୂର୍ବରୁ ସେ ଏକ ନୂତନ କୌଶଳ ଅବଲମ୍ବନ କଲେ । ମାନ୍ଦ୍ରାଜରୁ ଲୁଟ୍ କରିଥିବା ଧନରତ୍ନ ଓ ମୂଲ୍ୟବାନ୍ ସୌଖୀନ୍ ପଦାର୍ଥ କର୍ଣ୍ଣାଟକର ନବାବଙ୍କୁ ପାରିତୋଷିକ ରୂପେ ଅର୍ପଣ କରି ତାଙ୍କୁ

ସନ୍ତୁଷ୍ଟ କରିବାକୁ ଚେଷ୍ଟା କଲେ । ଅନ୍‌ୱାରଉଦ୍ଦିନ୍ ଡୁପ୍‌ଲେଙ୍କ ଉପରେ ଖୁସ୍ ହୋଇ ଇଂରେଜମାନଙ୍କୁ ଜଣାଇଦେଲେ ଯେ, ଇଂରେଜ ଓ ଫରାସୀ ବିବାଦରେ ସେ ଆଉ ହସ୍ତକ୍ଷେପ କରିବେ ନାହିଁ । ଫ୍ରେଞ୍ଚ କମ୍ପାନୀର ବେଳ ବୋଧହୁଏ ଭଲ ନଥିଲା । ଫୋର୍ଟ ଡେଭିଡ୍ ଉପରେ ପୁନରାକ୍ରମଣର ଯୋଜନା ଚାଲିଥିବା ବେଳେ ପୁନଶ୍ଚ ଏକ ଇଂରେଜ ନୌଭେଳା କମୋଡ୍‌ର ଗ୍ରୀଫିନ୍‌ଙ୍କ ନେତୃତ୍ୱରେ ଆସି ପହଞ୍ଚିଲା ମାଡ୍ରାସ୍ ଉପକୂଳରେ । ତତ୍‌ସହ ୧୭୪୮ ଜାନୁଆରୀ ମାସରେ ବ୍ରିଟିଶ୍ ସୈନ୍ୟବାହିନୀର ଜଣେ ବିଧିବଦ୍ଧ ସାମରିକ ଅଫିସର ମେଜର ଷ୍ଟ୍ରିଞ୍ଜର୍ ଲରେନ୍‌ସ୍ ଫୋର୍ଟ ସେଣ୍ଟ ଡେଭିଡ୍‌ର ସୈନିକମାନଙ୍କର ଦାୟିତ୍ୱ ନେଲେ । ସାମରିକ ବିଦ୍ୟାରେ ସମସ୍ତ ଶୃଙ୍ଖଳା ଓ କଳା କୌଶଳ ରବର୍ଟ କ୍ଲାଇଭ୍ ମେଜର୍ ଲରେନ୍‌ସଙ୍କଠାରୁ ତାଲିମ୍ ନେଇଥିଲେ ଓ ସେଥିରେ ପାରଦର୍ଶିତା ଲାଭ କରିଥିଲେ । ଇଂରେଜ କମ୍ପାନୀର ୟୁରୋପିଆନ୍ ସୈନ୍ୟ ସଂଖ୍ୟା ଏ ମଧ୍ୟରେ ତ୍ରିଗୁଣିତ ହେଲା । ବମ୍ବେ, ବେଙ୍ଗଲ ଓ ଇଂଲଣ୍ଡରୁ ନୂତନ ସୈନ୍ୟ ଆସି ଫୋର୍ଟ ସେଣ୍ଟ ଡେଭିଡ୍‌ରେ ପହଞ୍ଚିଲେ । କିନ୍ତୁ ଏହି ୟୁରୋପିଆନ୍ ସୈନ୍ୟମାନେ ଥିଲେ ସାଧାରଣତଃ ଇଂଲଣ୍ଡର ଅତି ନିମ୍ନସ୍ତରର ଲୋକ, ଅଫିସରମାନେ ମୁଖ୍ୟତଃ ଅଳସୁଆ, ମଦ୍ୟପ ଓ ଜୁଆପ୍ରିୟ ମଧ୍ୟବିତ୍ତ ଶ୍ରେଣୀର ଏବଂ ରବର୍ଟ କ୍ଲାଇଭ୍‌ଙ୍କୁ ବାଦ୍‌ଦେଲେ ଅନ୍ୟମାନେ ସାମରିକ କଳାକୌଶଳରେ ଅନଭିଜ୍ଞ । ଭାରତ ଭୂଇଁରେ ଫରାସୀମାନଙ୍କ ବିରୁଦ୍ଧରେ ଯୁଦ୍ଧ ଜୟକରି ସେମାନେ ଦେଶାତ୍ମବୋଧରେ ଅନୁପ୍ରାଣିତ ହୋଇପାରୁନଥିଲେ । ଫୋର୍ଟ ସେଣ୍ଟ୍ ଡେଭିଡ୍ ଯୁଦ୍ଧରେ ପ୍ରାଥମିକ ଅବସ୍ଥାରେ କେତେକ ଚାଞ୍ଚଲ୍ୟକର ସଫଳତା ଦେଖାଇଲେ ମଧ ଫରାସୀମାନଙ୍କୁ ବିତାଡ଼ିତ କରିବା ସମ୍ଭବ ହୋଇନଥିଲା । ଏତିକିବେଳେ କମ୍ପାନୀର ଅନୁରୋଧରେ ବ୍ରିଟିଶ୍ ସରକାର ଆଠଶହ ନୌସେନା ଓ ବାରଶହ ସ୍ଥଳସୈନ୍ୟ ପଣ୍ଡିଚେ଼ରୀ ଦଖଲ କରିବା ପାଇଁ ମେଜର ଜେନରାଲ୍ ବୋସ୍‌କାୱେନଙ୍କ ନେତୃତ୍ୱରେ ପଠାଇଲେ । କିନ୍ତୁ ପଣ୍ଡିଚେ଼ରୀ ଦଖଲର ଉଦ୍ୟମ ସ୍ଥିତାବସ୍ଥାରେ ରହିଲା ।

ବ୍ରିଟିଶ୍ ଓ ଫରାସୀମାନଙ୍କ ମଧ୍ୟରେ ଏଇ ପ୍ରକାରର ଯୁଦ୍ଧ ଚାଲିଥିଲାବେଳେ ସମ୍ବାଦ ଆସିଲା ଯେ, ୟୁରୋପରେ ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧବିରତି ହୋଇଛି ଓ ଶାନ୍ତି ପ୍ରତିଷ୍ଠିତ ହୋଇଛି । ମାଡ୍ରାସ ସହରକୁ ସମ୍ପୂର୍ଣ୍ଣ ରୂପେ ଇଂରେଜମାନଙ୍କୁ ପ୍ରତ୍ୟର୍ପଣ କରାଯିବ ବୋଲି ନିଷ୍ପତ୍ତି ହୋଇଛି । ଏହାପରେ ଫରାସୀ ବାହିନୀ ପଣ୍ଡିଚେ଼ରୀକୁ ପ୍ରତ୍ୟାବର୍ତ୍ତନ କଲେ ।



# ହାଇଦ୍ରାବାଦର ଅଭ୍ୟୁତ୍‌ଥାନ

ୟୁରୋପରେ ଶାନ୍ତି ପ୍ରତିଷ୍ଠା ଏବଂ ଇଂରେଜ ଓ ଫ୍ରେଞ୍ଚମାନଙ୍କ ମଧ୍ୟରେ ବିବାଦର ପରିସମାପ୍ତି ସତ୍ତ୍ୱେ, ଭାରତରେ ଇଷ୍ଟଇଣ୍ଡିଆ କମ୍ପାନୀର ଅଧିକାରୀମାନେ ସନ୍ଦେହ କରୁଥିଲେ ଯେ, ପଣ୍ଡିଚେରୀ ଗଭର୍ଣ୍ଣର ଡୁପ୍‌ଲେ ଦାକ୍ଷିଣାତ୍ୟର ଅନ୍ୟ କ୍ଷୁଦ୍ର ହିନ୍ଦୁ ମୁସଲମାନ ରାଷ୍ଟ୍ରମାନଙ୍କୁ ନେଇ ପୁନଶ୍ଚ ନୂଆ ଚାଲ୍ ଖେଳିବେ । ଏ ଆଶଙ୍କା ଅମୂଳକ ନଥିଲା । କିନ୍ତୁ ଡୁପ୍‌ଲେ ତାଙ୍କର କାରସାଦି ଦେଖାଇବା ପୂର୍ବରୁ ଇଂରେଜ ସେନାପତି ବୋସକାୱେନ୍‌ଙ୍କ ନିର୍ଦ୍ଦେଶ କ୍ରମେ ଫ୍ଲୋଏର୍ କେତେକ ଇଂରେଜ ସୈନ୍ୟଙ୍କୁ ଧରି ତାଞ୍ଜୋର୍ ରାଜ୍ୟରୁ ତାଙ୍କ ଭାଇଙ୍କ ଦ୍ୱାରା ବିତାଡ଼ିତ ଶାହଜୀଙ୍କୁ ସାହାଯ୍ୟ କରିବା ପାଇଁ ତାଞ୍ଜୋର ଆକ୍ରମଣ କଲେ ଓ କୋଲେରୁନ୍ ନଦୀ କୂଳରେ ଅବସ୍ଥିତ ଦେବୀକୋଟାଇ ଦୁର୍ଗ ଦଖଲ କଲେ । କିନ୍ତୁ ଇଂରେଜମାନେ ଅନୁଭବ କଲେ, ଯେଉଁ ଶାହଜୀଙ୍କୁ ସେମାନେ ସାହାଯ୍ୟ କରୁଛନ୍ତି, ସେ ସାଧାରଣ ଲୋକଙ୍କ ନିକଟରେ ଅତି ଅପ୍ରିୟ । ଏଣୁ ଶାହଜୀଙ୍କ ଭାଇଙ୍କଠାରୁ ଏକଲକ୍ଷ ଟଙ୍କା ସଲାମୀ ନେଇ ଓ ଦେବୀକୋଟାଇ ଦୁର୍ଗର ମାଲିକାନା ଲାଭ କରି ଶାହଜୀଙ୍କୁ ବିଦାୟ କରିଦେଲେ । ଏ ଯୁଦ୍ଧରେ କ୍ଲାଇଭ୍ ବିଶେଷ ଅଂଶ ଗ୍ରହଣ କରି ମେଜର୍ ଲରେନ୍‌ସଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲେ ।

ଏହି ସମୟରେ ଦାକ୍ଷିଣାତ୍ୟର ପରିସ୍ଥିତି ଥିଲା ଅତି ଅଶାନ୍ତ ଓ ଶୋଚ଼ନୀୟ । ମରହଟ୍ଟାମାନେ ସେମାନଙ୍କର ପୂର୍ବ ଖ୍ୟାତି ଫେରାଇ ଆଣିପାରିନଥିଲେ । ଯେଉଁ ରାଜ୍ୟ ଆକ୍ରମଣ କଲେ, ମରହଟ୍ଟାମାନେ ସେଠାରେ ଶାସନ ବ୍ୟବସ୍ଥା ପ୍ରତି ନଜର ନଦେଇ କେବଳ ଚୌଥ କର ଆଦାୟ କରିବାରେ ବ୍ୟସ୍ତ ରହୁଥିଲେ । ହାଇଦ୍ରାବାଦର ନିଜାମଙ୍କର ଜ୍ୟେଷ୍ଠପୁତ୍ର ଘାଜିଉଦ୍ଦିନ୍ ଦିଲ୍ଲୀରୁ ହାଇଦ୍ରାବାଦ ଫେରିବାକୁ ଚାହୁଁ ନଥିଲେ ।

ଏଣୁ ତାଙ୍କର ଦ୍ୱିତୀୟ ପୁତ୍ର ନସିର ଜଂଗ୍ ନିଜାମ ଗାଦି ଆରୋହଣ କଲେ । ତାଙ୍କର ବିରୋଧୀ ଭାବେ ଠିଆହେଲେ ପୂର୍ବତନ ନିଜାମଙ୍କର ଝିଅର ପୁଅ ମୁଜାଫର ଜଙ୍ଗ୍ । ମୁଜାଫର୍ କର୍ଣ୍ଣାଟକର ଜଣେ ସାହସୀ ଓ ଉଚ୍ଚାଭିଳାଷୀ ଯୋଦ୍ଧା ଚାନ୍ଦା ସାହେବଙ୍କ ସହ ମିଶି ଫ୍ରେଞ୍ଚ ସେନାବାହିନୀର ସହାୟତାରେ କର୍ଣ୍ଣାଟକ୍‌ର ନବାବ ଅନ୍‌ଓ୍ୱାରଉଦ୍ଦିନ୍‌ଙ୍କୁ ହତ୍ୟା କଲେ । ଅନ୍‌ଓ୍ୱାରଙ୍କ ପୁତ୍ର ମହମ୍ମଦ ଅଲ୍ଲୀ ଦକ୍ଷିଣ କର୍ଣ୍ଣାଟକର ତ୍ରିଚ଼ିନାପଲ୍ଲୀକୁ ପଳାୟନ କଲେ । ନିଜାମ୍ ନସିର ଜଙ୍ଗ୍ ଇଂରେଜମାନଙ୍କଠାରୁ କେତେକ ସୈନ୍ୟସାମନ୍ତ ସାହାଯ୍ୟ ଧରି ଦକ୍ଷିଣରୁ ମହମ୍ମଦ ଅଲ୍ଲୀଙ୍କୁ ସାଙ୍ଗରେ ନେଇ ପୁନଶ୍ଚ କର୍ଣ୍ଣାଟକ ଦଖଲ କଲେ ଓ ସେଠାରେ ମହମ୍ମଦ ଅଲ୍ଲୀଙ୍କୁ ନୂତନ ନବାବ ନିଯୁକ୍ତ କଲେ । ନସିର ଜଙ୍ଗ୍ ଇଂରେଜ ସେନାପତି ମେଜର ଲରେନ୍‌ସଙ୍କର ପରାମର୍ଶ ବିରୁଦ୍ଧରେ ପୁଣି ପଣ୍ଡିଚ଼େରୀ ଆକ୍ରମଣ କରିବା ପାଇଁ ଉଦ୍ୟତ ହେଲେ । ଗୋଟିଏ ଦିନ ଲଢ଼େଇ ପରେ ଫରାସୀ ସୈନ୍ୟ ପଛଘୁଞ୍ଚା ଦେଲେ । ପଣ୍ଡିଚ଼େରୀରେ ଫରାସୀ ସୈନ୍ୟମାନଙ୍କୁ ଯଥାଯୁକ୍ତ ପ୍ରାପ୍ୟ ନଦେବା ହେତୁ ସେମାନଙ୍କ ମଧ୍ୟରେ ଯେଉଁ ବିଶୃଙ୍ଖଳା ଦେଖା ଦେଇଥିଲା, ତାହାହିଁ ଥିଲା ଏହି ପଛଘୁଞ୍ଚା ଦେବାର ପ୍ରକୃତ କାରଣ । କିନ୍ତୁ ନସିର ଜଙ୍ଗ୍ ଏହି ପଛଘୁଞ୍ଚାର ପ୍ରକୃତ କାରଣ ନଜାଣି ଭାବିଲେ, ଫରାସୀ ସୈନ୍ୟମାନେ ତାଙ୍କର ବୀରତ୍ୱ ପ୍ରଦର୍ଶନ ଦେଖି ପଛଘୁଞ୍ଚା ଦେଇଛନ୍ତି ।

ଏ ମଧ୍ୟରେ ଡୁପ୍‌ଲେ ସମ୍ବାଦ ପାଇଲେ ଯେ, ନିଜାମ୍ ନସିର ଜଙ୍ଗ୍‌ଙ୍କ ଦରବାରରେ ମଧ୍ୟ ଘୋର ବିଶୃଙ୍ଖଳା ଓ ମନୋମାଳିନ୍ୟ ରହିଛି । ଚକ୍ରାନ୍ତ ଓ ଷଡ଼ଯନ୍ତ୍ରରେ ଡୁପ୍‌ଲେ ଥିଲେ ଧୁରନ୍ଧର । ତାଙ୍କର ଚକ୍ରାନ୍ତ ଫଳରେ ନସିର ଜଙ୍ଗ୍ ହାତୀ ଉପରେ ବସି ଯୁଦ୍ଧଯାତ୍ରା କରୁଥିବା ବେଳେ ତାଙ୍କ ଦରବାରର ଜଣେ ପଠାଣ ନବାବ ତାଙ୍କୁ ହତ୍ୟା କଲେ । ନସିର ଜଙ୍ଗ୍‌ଙ୍କ ମୃତ୍ୟୁ ଫଳରେ ଫରାସୀ ମହଲରେ ଆନନ୍ଦର ଢେଉ ଖେଳିଗଲା ଏବଂ ମୁଜାଫର୍ ଜଙ୍ଗ୍ ଫରାସୀ ସେନାପତି ବୁସିଙ୍କ ସହାୟତାରେ ହାଇଦ୍ରାବାଦ୍ ଯାଇ ନିଜାମ୍ ଗାଦି ଅଧିକାର କଲେ । ଶୁଣାଅଛି ନସିର ଜଙ୍ଗ୍‌ଙ୍କ ମୃତ୍ୟୁ ପରେ ଡୁପ୍ଲେ ମୁଜାଫର୍ ଜଙ୍ଗ୍‌ଙ୍କର ଦରବାରରୁ ବ୍ୟକ୍ତିଗତ ଭାବରେ ଦୁଇଲକ୍ଷ ପାଉଣ୍ଡ୍ ନଗଦ ଅର୍ଥ, ଏକଲକ୍ଷ ଟଙ୍କା ମୂଲ୍ୟର ଏକ ଜାଗିର୍ ପାଇଥିଲେ । ଫରାସୀ ବାହିନୀର ସେନାପତି ମାର୍କ୍ୟୁସ୍ ଡି ବୁସି ନବନିଯୁକ୍ତ ନିଜାମଙ୍କ ସହ ଚୁକ୍ତି କରି ଫରାସୀ ସୈନ୍ୟମାନଙ୍କର ଭରଣପୋଷଣ ପାଇଁ କରମଣ୍ଡଳ ଉପକୂଳର ଚାରୋଟି ସମୃଦ୍ଧ ଜିଲ୍ଲା ଆହରଣ କରିଥିଲେ ।

ସବୁପ୍ରକାର ଚକ୍ରାନ୍ତର ଏକ ପରିସୀମା ଅଛି । ମୁଜାଫର୍ ଜଙ୍ଗ୍ ମଧ୍ୟ ଅଧିକ ଦିନ ଗାଦିରେ ରହି ପାରିଲେ ନାହିଁ । ଯେଉଁ ପଠାଣ ନବାବମାନେ ନସିର ଜଙ୍ଗ୍‌ଙ୍କୁ ହତ୍ୟା କରିଥିଲେ, ସେମାନେ ମୁଜାଫର୍‌ଙ୍କଠାରୁ ଅଧିକ ଉପଢୌକନ ଓ ପୁରସ୍କାର ଦାବି କଲେ । ନିଜାମଙ୍କ ସହ ସେମାନଙ୍କର ସମ୍ପର୍କ ତିକ୍ତ ହୋଇ ଉଠିଲା । ଫରାସୀ ସେନାପତି ବୁସି କେତେକ ବଛାବଛା ସୈନିକ ଧରି ନିଜାମଙ୍କୁ ସାହାଯ୍ୟ କରିବା ପାଇଁ ଡୁପ୍ଲେଙ୍କ ନିର୍ଦ୍ଦେଶରେ ହାଇଦ୍ରାବାଦ୍ ଯାଇଥିଲେ । କିନ୍ତୁ ସବୁ କ୍ଷେତ୍ରରେ ଓ ସବୁ ସମୟରେ ସୁରକ୍ଷା ଦେବା ସମ୍ଭବ ହେଲାନାହିଁ । ଥରେ ମୁଜାଫର୍ ଜଙ୍ଗ୍ ତାଙ୍କର ରକ୍ଷାବାହିନୀ ସହ ଗୋଟିଏ ପାହାଡ଼ିଆ ରାସ୍ତା ଅତିକ୍ରମ କରୁଥିବା ସମୟରେ ଏହି ନବାବମାନେ ପୂର୍ବରୁ ଲୁଚି ରହି ତାଙ୍କ ଉପରେ ଆକ୍ରମଣ କଲେ । ବୁସିଙ୍କ ନେତୃତ୍ୱରେ ଫରାସୀ ସୈନ୍ୟମାନେ ପଠାଣ ନବାବଙ୍କ ସେନା ଉପରେ ପ୍ରତିଆକ୍ରମଣ କରନ୍ତେ ଦୁଇଜଣ ନବାବଙ୍କର ମୃତ୍ୟୁ ହେଲା; କିନ୍ତୁ ଏ ଯୁଦ୍ଧରେ ମୁଜାଫର୍ ଜଙ୍ଗ୍ ମଧ୍ୟ ପ୍ରାଣ ହରାଇଲେ । ହାଇଦ୍ରାବାଦ୍ ଦରବାରର ପୁରୁଖା ନେତାମାନେ ମୁଜାଫର୍‌ଙ୍କ ସ୍ଥାନରେ ତାଙ୍କର ଭାଇ ସଲାବତ୍ ଜଙ୍ଗ୍‌ଙ୍କୁ ସିଂହାସନାରୂଢ଼ କଲେ ।

ଅଳ୍ପ କେତେମାସ ପରେ ନିଜାମ୍ ସଲାବତ୍ ଜଙ୍ଗ୍‌ଙ୍କ ମୁସ୍‌ଲିମ୍ ଦେଓ୍ୱାନ୍ ଓ ଦରବାରିଆମାନେ ତାଙ୍କୁ ପରାମର୍ଶ ଦେଲେ ଯେ, ବୁସି ଓ ତାଙ୍କର ସୈନ୍ୟମାନଙ୍କୁ ହାଇଦ୍ରାବାଦ୍‌ରୁ ବିଦାୟ ଦେଲେ ଦେଶରକ୍ଷା ଖର୍ଚ୍ଚ ଅନେକ କମିଯିବ ଏବଂ ଆବଶ୍ୟକ ହେଲେ ସେମାନେ ଇଂରେଜମାନଙ୍କଠାରୁ ସାହାଯ୍ୟ ପାଇପାରିବେ । ବସ୍ତୁତଃ ସଲାବତ୍ ଜଙ୍ଗ୍‌ଙ୍କର ଖଜଣାଖାନା ଥିଲା ଶୂନ୍ୟ ଏବଂ ମାସମାସ ଧରି ଫରାସୀ ସୈନ୍ୟମାନେ ଦରମା ପାଇପାରୁ ନଥିଲେ । ସେମାନଙ୍କ ପାଇଁ ମାସିକ ଖର୍ଚ୍ଚ ଥିଲା ଅଢ଼େଇ ଲକ୍ଷ ଟଙ୍କା । ଶେଷରେ ନିଜାମଙ୍କ ସହିତ ଚୁକ୍ତି ହେଲା ଯେ, ଉତ୍ତର ସିର୍‌କାର୍ ଜିଲ୍ଲାଗୁଡ଼ିକରୁ ଖଜଣା ଆଦାୟ କରିବାର ଦାୟିତ୍ୱ ଫରାସୀମାନେ ବହନ କରିବେ ଓ ତାହା ସେମାନେ ସୈନ୍ୟମାନଙ୍କର ପ୍ରାପ୍ୟ ବାବଦକୁ ଖର୍ଚ୍ଚ କରିବେ । କିନ୍ତୁ ତା' ସତ୍ତ୍ୱେ ବୁସି ହାଇଦ୍ରାବାଦ୍‌ରେ ଖୁସିରେ ରହି ପାରିଲେ ନାହିଁ । ଦୁଇବର୍ଷ ପରେ ୧୭୫୬ ମସିହାରେ ତାଙ୍କ ବିରୁଦ୍ଧରେ ଦରବାରର ପରାମର୍ଶଦାତାମାନଙ୍କର ଷଡ଼ଯନ୍ତ୍ର ତୀବ୍ରତର ହେଲା । ସଲାବତ୍ ଜଙ୍ଗ୍ ତାଙ୍କୁ ହାଇଦ୍ରାବାଦ୍‌ରୁ ବିତାଡ଼ିତ କଲେ ଏବଂ ବହିର୍ଗମନ ପଥ ଅବରୋଧ କଲେ । ସଲାବତ୍ ଜଙ୍ଗ୍ ଇଂରେଜମାନଙ୍କଠାରୁ ସାମରିକ ସାହାଯ୍ୟ ପାଇଁ ମାଡ୍ରାସକୁ ପତ୍ର

ଲେଖିଲେ । ଏଥିପୂର୍ବରୁ ବୁସିଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟକ୍ରମ ଗ୍ରହଣ କରିବା ପାଇଁ ଉଭୟ ଲଣ୍ଡନ ଓ ମାଡ୍ରାସରେ ନିଷ୍ପତ୍ତି ହୋଇଥିଲା । ଇଷ୍ଟ ଇଣ୍ଡିଆ କମ୍ପାନୀର ମାଡ୍ରାସ କାଉନସିଲ୍ ସଲାବତ୍ ଜଙ୍ଗ୍‌ଙ୍କ ଅନୁରୋଧ ଗ୍ରହଣ କଲେ ମଧ୍ୟ ବଙ୍ଗଳା ପରିସ୍ଥିତି ହେତୁ କାର୍ଯ୍ୟତଃ କିଛି କରିପାରିଲେ ନାହିଁ । ବୁସି ମାସୁଲିପଟ୍ଟମରୁ କେତେକ ଫରାସୀ ସୈନ୍ୟ ଅଣାଇ ରାସ୍ତା ଅବରୋଧ ଭାଙ୍ଗିଦେଲେ । ଏଣେ ଇଂରେଜମାନଙ୍କଠାରୁ କୌଣସି ସାହାଯ୍ୟ ନ ଆସିବା ହେତୁ ସଲାବତ୍ ଜଙ୍ଗ୍ ବୁସିଙ୍କ ସହ ସଦ୍‌ଭାବ ଫେରାଇ ଆଣିବା ପାଇଁ ଉଦ୍ୟମ କଲେ ଓ ବୁସି ହାଇଦ୍ରାବାଦ୍‌ରେ ଆହୁରି ତିନିବର୍ଷ ରହିପାରିଲେ । କିନ୍ତୁ ପଣ୍ଡିଚେରୀର ଫ୍ରେଞ୍ଚ କମ୍ପାନୀକୁ କୌଣସି ପ୍ରକାର ଅର୍ଥ ସାହାଯ୍ୟ ବା ସାମରିକ ସାହାଯ୍ୟ ଦେବାକୁ ସେ ସମର୍ଥ ହେଲେ ନାହିଁ ।



# ଦକ୍ଷିଣରେ ଇଂରେଜମାନଙ୍କର ଅଗ୍ରଗତି

ହାଇଦ୍ରାବାଦ୍‌ରେ ନିଜାମ୍ ନସିର୍ ଜଙ୍ଗଙ୍କ ହତ୍ୟା ମାଡ୍ରାସରେ ଇଂରେଜମାନଙ୍କୁ ଅତ୍ୟନ୍ତ ବିଚ୍‌ଳିତ କରିଦେଇଥିଲା । ବାଣିଜ୍ୟର ସୁରକ୍ଷା ପାଇଁ କମ୍ପାନୀର ଡିରେକ୍ଟରମାନେ ଅତ୍ୟଧିକ ନିଶାପାନ ଓ ଜୁଆଖେଳ ଅଭିଯୋଗରେ ମାଡ୍ରାସର ଗଭର୍ଣ୍ଣର ଫ୍ଲୋଏର୍‌ଙ୍କୁ ତାଙ୍କ ପଦବୀରୁ ବିତାଡ଼ିତ କଲେ ଓ ତାଙ୍କ ସ୍ଥାନରେ ଥୋମାସ୍ ସଣ୍ଡର୍ସଙ୍କୁ ମାଡ୍ରାସର ଗଭର୍ଣ୍ଣର ନିଯୁକ୍ତ କଲେ । ସଣ୍ଡର୍ସ ଥିଲେ ଅତି ଶାନ୍ତଶିଷ୍ଟ ଓ ଦକ୍ଷ ଲୋକ । ଡୁପ୍ଲେଙ୍କର ବିଚକ୍ଷଣତା ତାଙ୍କର ନଥିଲା, କିନ୍ତୁ ଧୀରସ୍ଥିର ଭାବରେ ବୁଝିବିଚାରି ସେ ଯେଉଁ ନିଷ୍ପତ୍ତି ନେଉଥିଲେ, ତାକୁ କାର୍ଯ୍ୟକାରୀ କରିବାକୁ ସେ ଥିଲେ ବଦ୍ଧପରିକର । ଫରାସୀ କମ୍ପାନୀ ଭାରତୀୟ ବ୍ୟବସାୟରୁ ବିଶେଷ କିଛି ଲାଭ ନପାଇ ପଣ୍ଡିଚେରୀରେ ଅବସ୍ଥିତ ବାଣିଜ୍ୟକୋଠି ଓ ସେନାବାହିନୀର ଦୁର୍ଗକୁ ବିଶେଷ ସାହାଯ୍ୟ ଦେଉ ନଥିଲେ । ଅଥଚ ଇଷ୍ଟଇଣ୍ଡିଆ କମ୍ପାନୀର ଡାଇରେକ୍ଟରମାନେ ବ୍ରିଟିଶ ସରକାରଙ୍କୁ ପ୍ରଭାବିତ କରି ମାଡ୍ରାସ ସହର ଓ ସେଣ୍ଟ ଡେଭିଡ୍ ଦୁର୍ଗର ସୁରକ୍ଷା ପାଇଁ ଯଥେଷ୍ଟ ସଂଖ୍ୟକ ସୈନ୍ୟ, କମାଣ ଓ ଗୁଳିଗୋଳା ଭାରତକୁ ପଠାଉଥିଲେ । ବ୍ରିଟିଶ୍‌ମାନେ ଏ ମଧ୍ୟରେ ବଙ୍ଗଦେଶରେ ମଧ୍ୟ ତାଙ୍କର ଆସ୍ଥାନ ଦୃଢ଼ କରିବାକୁ ସମର୍ଥ ହୋଇଥିଲେ । ବଙ୍ଗଳାରୁ ମାଡ୍ରାସକୁ ଆବଶ୍ୟକ ହେଲେ ସୈନ୍ୟ ଆଣିବା ସମ୍ଭବ ହେଲା ।

ତ୍ରିଚିନାପଲ୍ଲୀରେ ଆଶ୍ରୟ ନେଇଥିବା ଅନ୍‌ୱାରଉଦ୍ଦିନ୍‌ଙ୍କର ପୁତ୍ର ମହମ୍ମଦ ଅଲ୍ଲୀ ପଣ୍ଡିଚେରୀର ଗଭର୍ଣ୍ଣର ଡୁପ୍ଲେ ଏବଂ ତାଙ୍କ ଆଶ୍ରୟରେ ଥିବା ଚାନ୍ଦା ସାହେବଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ଇଂରେଜମାନଙ୍କର ସାହାଯ୍ୟପ୍ରାର୍ଥୀ ହେଲେ । ସଣ୍ଡର୍ସଙ୍କ ନିର୍ଦ୍ଦେଶରେ କ୍ୟାପ୍‌ଟେନ୍ କୋପ୍ ଅଳ୍ପ କିଛି ସୈନ୍ୟସାମନ୍ତ ଧରି ତ୍ରିଚିନାପଲ୍ଲୀ ଯାତ୍ରା କଲେ । ଏ ସମ୍ବାଦ ଶୁଣି ଚାନ୍ଦା ସାହେବ ପଣ୍ଡିଚେରୀରୁ କେତେକ ଫରାସୀ ସୈନ୍ୟ ଓ ଭାରତୀୟ ସିପାହୀଙ୍କୁ ସାଙ୍ଗରେ ଧରି ତ୍ରିଚିନାପଲ୍ଲୀ ଅଭିଯାନ ଆରମ୍ଭ କଲେ । ଚାନ୍ଦାସାହେବଙ୍କୁ ପ୍ରତିରୋଧ କରିବା ପାଇଁ ସଣ୍ଡର୍ସ କ୍ଲାଇଭ୍‌ଙ୍କୁ ତ୍ରିଚିନାପଲ୍ଲୀ

ପଠାଇଥିଲେ । ସେଠାରେ ମହମ୍ମଦ ଅଲ୍ଲୀ ପରାମର୍ଶ ଦେଲେ ଯେ, ଚାନ୍ଦାସାହେବଙ୍କର ରାଜଧାନୀ ଆର୍‌କଟ୍ ସହର ଉପରେ ପ୍ରତିଆକ୍ରମଣ ନକଲେ ତ୍ରିଚିନାପଲ୍ଲୀକୁ ରକ୍ଷା କରିହେବ ନାହିଁ । କ୍ଲାଇଭ୍ ପୁନଶ୍ଚ ମାଡ୍ରାସ ଫେରି ସଣ୍ଡର୍ସଙ୍କ ନିକଟରେ ଏ ପ୍ରସ୍ତାବ ଉପସ୍ଥାପିତ କରିଥିଲେ ଏବଂ ଫୋର୍ଟ ସେଣ୍ଟ୍ ଡେଭିଡ୍‌ରୁ ତିନିଶହ ସିପାହୀ, ଦୁଇଶହ ୟୁରୋପୀୟ ସୈନ୍ୟ ଓ ତିନୋଟି କମାଣ ସଂଗ୍ରହ କରି କ୍ଲାଇଭ୍ ଆର୍‌କଟ୍ ଆକ୍ରମଣ କଲେ । ଏ ଆକ୍ରମଣ ଥିଲା ଏକ ସାହସିକ ପଦକ୍ଷେପ ଏବଂ କ୍ଲାଇଭ୍‌ଙ୍କ ସୈନ୍ୟସଂଖ୍ୟା କମ୍ ହେଲେ ମଧ୍ୟ ଆର୍‌କଟ୍‌ରେ ଥିବା ଚାନ୍ଦାସାହେବଙ୍କ ସୈନ୍ୟମାନେ ପଳାୟନ କଲେ । ଆପଣା ରାଜଧାନୀରୁ ବିତାଡ଼ିତ ହୋଇ ଚାନ୍ଦାସାହେବ ଅତ୍ୟନ୍ତ ମର୍ମାହତ ହେଲେ ଓ ତ୍ରିଚିନାପଲ୍ଲୀରୁ ଚାରିହଜାର ସୈନ୍ୟ ଧରି ତାଙ୍କ ପୁଅ ରାଜାସାହେବଙ୍କୁ ଆର୍‌କଟ୍‌କୁ ମୁକ୍ତ କରିବା ପାଇଁ ପ୍ରେରଣ କଲେ । ରାଜାସାହେବ ଅବଶ୍ୟ ଆର୍‌କଟ୍ ସହର ପୁନର୍ଦଖଲ କଲେ, କିନ୍ତୁ ଆର୍‌କଟ୍ ଦୁର୍ଗକୁ ଦଖଲ କରିପାରିଲେ ନାହିଁ । ରାଜାସାହେବ କ୍ଲାଇଭ୍‌ଙ୍କୁ ଯଥାଶକ୍ତି ଉତ୍କୋଚ୍ ଦେଇ ଆର୍‌କଟ୍ ଦୁର୍ଗ ପରିତ୍ୟାଗ କରିବା ପାଇଁ ପ୍ରସ୍ତାବ ଦେଇଥିଲେ । କିନ୍ତୁ ଏ ପ୍ରସ୍ତାବ କ୍ଲାଇଭ୍‌ଙ୍କ ଦ୍ୱାରା ଗ୍ରହଣୀୟ ହେଲାନାହିଁ । ଏହି ସମୟରେ କ୍ଲାଇଭ୍ ସମ୍ବାଦ ପାଇଲେ ଯେ, ମରହଟ୍ଟା ସେନାପତି ମୁରାରୀ ରାଓ ତାଙ୍କୁ ସାହାଯ୍ୟ କରିବା ପାଇଁ ଛଅହଜାର ସଂଖ୍ୟକ ଅଶ୍ୱାରୋହୀ ସୈନ୍ୟ ପଠାଉଅଛନ୍ତି । ଏଣେ ରାଜାସାହେବ ହାତୀ ଲଗାଇ ଆର୍‌କଟ୍ ଦୁର୍ଗର ପ୍ରାଚୀର ଦୁଇଜାଗାରେ ଭାଙ୍ଗିଦେଇଥିଲେ, କିନ୍ତୁ ଛୋଟ ବନ୍ଧୁକ ଚଳାଇ ସୈନ୍ୟବାହିନୀ ସାମ୍ନାରେ ଥିବା ହାତୀମାନଙ୍କୁ କ୍ଲାଇଭ୍ ଏପରି ପ୍ରତିଆକ୍ରମଣ କଲେ ଯେ, ସେମାନେ ବନ୍ଧୁକ ଶବ୍ଦ ଶୁଣି ପଛଆଡ଼କୁ ଧାଇଁଲେ ଏବଂ ରାଜାସାହେବଙ୍କର ସୈନ୍ୟମାନେ ପୃଷ୍ଠଭଙ୍ଗ ଦେଲେ । ତା' ପରଦିନ ମାଡ୍ରାସରୁ ଗୋଟିଏ କ୍ଷୁଦ୍ର ସେନାବାହିନୀ କ୍ଲାଇଭ୍‌ଙ୍କୁ ସାହାଯ୍ୟ କରିବା ପାଇଁ ଆର୍‌କଟ୍‌ରେ ପହଞ୍ଚିଲେ ଏବଂ ମରହଟ୍ଟା ସେନାପତି ମୁରାରୀ ରାଓଙ୍କର ଦଳେ ଅଶ୍ୱାରୋହୀ ସୈନ୍ୟ ତାଙ୍କ ସହ ଯୋଗଦେଲେ । କ୍ଲାଇଭ୍ ତାଙ୍କର ରଣକୌଶଳ ଏବଂ ବନ୍ଧୁକ, କମାଣ ଆଦି ବ୍ୟବହାର କରି ଆର୍‌କଟ୍‌କୁ ପୁନର୍ଦଖଲ କଲେ ।

ଏହାପରେ କର୍ଣ୍ଣାଟକରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ବେଶ୍ ଛକାପଞ୍ଝା ଚାଲିଲା । କ୍ଲାଇଭ୍ କାଞ୍ଜିଭରମ୍ ପାଗୋଡ଼ା ଦଖଲ କରି ସେଠାରୁ ମାଡ୍ରାସ ଫେରିଲେ । ପଛେ ପଛେ ଚାନ୍ଦାସାହେବ ଚାରିଶହ ଫରାସୀ ସୈନ୍ୟ ଓ ଚାରିହଜାର ପାଞ୍ଚଶହ ଭାରତୀୟ ସୈନ୍ୟଙ୍କୁ ନେଇ କାଞ୍ଜିଭରମ୍ ଲୁଟ୍ କଲେ ଓ ସେଠାରୁ ପୁନର୍ବାର

ଆର୍‌କଟ୍ ଅଭିମୁଖେ ଯାତ୍ରା କଲେ । କ୍ଲାଇଭ୍ ସେମାନଙ୍କୁ ଅନୁଧାବନ କରି ସନ୍ଧ୍ୟା ସମୟରେ ଅତି ଅପ୍ରତ୍ୟାଶିତ ଭାବରେ ସମ୍ବାଦ ପାଇଲେ ଯେ କାବେରିପାକ ଗାଁ ନିକଟରେ ସେମାନେ ଗୋଟିଏ ତୋଟାରେ ଡେରା ପକାଇ ଅଛନ୍ତି । ଏଠାରେ ଯେଉଁ ଯୁଦ୍ଧ ହେଲା ତାହା କ୍ଲାଇଭ୍‌ଙ୍କର ଚତୁରତା ଓ ବିଚକ୍ଷଣ ରଣକୌଶଳର ନିଦର୍ଶନ । କ୍ଲାଇଭ୍ ତାଙ୍କର ଅଳ୍ପ ସଂଖ୍ୟକ ସୈନ୍ୟସାମନ୍ତ ଧରି ଗୋଟିଏ ପାଣିନଳା ନିକଟରେ ଲୁଚି ରହି, ଶତ୍ରୁପକ୍ଷର ପଛପଟରେ କିଏ କ'ଣ କରୁଛି, ତାହା ଜାଣିବା ପାଇଁ କେତେଜଣ ସୈନ୍ୟଙ୍କ ସହ ଜଣେ ସୁବେଦାରଙ୍କୁ ପଠାଇଲେ । ସେମାନେ ଫେରିଆସି ଖବର ଦେଲେ ଯେ, ଚାନ୍ଦାସାହେବଙ୍କ ଆଶ୍ରୟ ସ୍ଥଳର ପଛପଟେ କେହି ଜଗୁଆଳି ନାହାଁନ୍ତି ବା କେହି ଜଗାରଖା କରୁନାହାଁନ୍ତି । ଅର୍ଦ୍ଧରାତ୍ରିରେ କ୍ଲାଇଭ୍ ଦଳେ ସୈନ୍ୟ ପଠାଇ ପଛପଟୁ ଗୁଳି ଚଳାଇଲେ ଏବଂ ନିଜେ ପାଣିନଳା ପାଖରେ ରହି ସାମ୍ନା ପଟୁ ଆକ୍ରମଣ କଲେ । ଉଭୟପଟୁ ଏହି ସଣ୍ଢୁଆଶି ଆକ୍ରମଣରେ ଆତଙ୍କିତ ହୋଇ ଚାନ୍ଦାସାହେବଙ୍କ ସୈନ୍ୟମାନେ ଛତ୍ରଭଙ୍ଗ ଦେଇ କମାଣ ବନ୍ଧୁକ ଓ ମାଲବାହୀ ଜାନୁଆର୍‌ମାନଙ୍କୁ ଛାଡ଼ି ପଳାୟନ କଲେ । ଆର୍‌କଟ୍ ଯୁଦ୍ଧରେ ଏ ସଫଳତା କ୍ଲାଇଭ୍‌ଙ୍କୁ ଖ୍ୟାତିର ଚରମସୀମାରେ ପହଞ୍ଚାଇ ଦେଲା । ଏ ସଫଳତା ଥିଲା ଦକ୍ଷିଣ ଭାରତରେ ଇଂରେଜମାନଙ୍କର ଭାଗ୍ୟନିର୍ଦ୍ଧାରକ ।

କାବେରିପାକ ଯୁଦ୍ଧରେ ବିଜୟ ପରେ ସମୁଦାୟ ଆର୍କଟ ଅଞ୍ଚଳ ଚାନ୍ଦାସାହେବଙ୍କ କର୍ତ୍ତୃତ୍ୱରୁ ମୁକ୍ତ ହେଲା । ମାଡ୍ରାସର ଇଂରେଜ ଗଭର୍ଣ୍ଣର ଓ ତାଙ୍କ କାଉନ୍‌ସିଲର ସଦସ୍ୟମାନେ ଏଥର ତ୍ରିଚିନାପଲ୍ଲୀକୁ ଫରାସୀ ନିୟନ୍ତ୍ରଣରୁ ମୁକ୍ତ କରିବାକୁ ନିଷ୍ପତ୍ତି ନେଲେ । ଡୁପ୍ଲେଙ୍କ ନିର୍ଦ୍ଦେଶରେ ଫରାସୀ ସେନାପତି ଜ୍ୟାକସ ଲ' ସେତେବେଳେ ତ୍ରିଚିନାପଲ୍ଲୀର ରକ୍ଷା ଦାୟିତ୍ୱରେ ଥିଲେ । କେତେ ମାସ ଧରି ଉଭୟ ପକ୍ଷ ମଧ୍ୟରେ ଖଣ୍ଡଯୁଦ୍ଧ ଚାଲିଲା । ସତର ଶହ ଏକାବନ ମସିହା ଶେଷ ଆଡ଼କୁ ନବାବ ମହମ୍ମଦ ଅଲ୍ଲୀ, ମରହଟ୍ଟା ସେନାପତି ମୁରାରୀ ରାଓ ଓ ମହୀଶୂର ଦରବାରର କେତେକ ସୈନ୍ୟ ଇଂରେଜମାନଙ୍କୁ ସାହାଯ୍ୟ ଦେବାକୁ ଧାଇଁ ଆସିଲେ । ଏଣେ ମାଡ୍ରାସରୁ ମେଜର ଲରେନ୍ସ ଓ ରବର୍ଟ କ୍ଲାଇଭ୍ ତ୍ରିଚିନାପଲ୍ଲୀକୁ ସୈନ୍ୟଚାଳନା କଲେ । ଲ' ବହୁ ଅଧିକ ସଂଖ୍ୟକ ସୈନ୍ୟମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ କାବେରୀ ନଦୀର ଉତ୍ତର ପଟେ ଅବସ୍ଥିତ ଶ୍ରୀରଂଗମ୍ ଦ୍ୱୀପରେ ଆଶ୍ରୟ ନେଲେ । କିନ୍ତୁ ଲରେନ୍‌ସ ସର୍ବକନିଷ୍ଠ କ୍ୟାପ୍‌ଟେନ୍ କ୍ଲାଇଭ୍‌ଙ୍କ ନେତୃତ୍ୱରେ କେତେକ ସୈନ୍ୟପଠାଇ ଫରାସୀମାନଙ୍କୁ ଉତ୍ତରପଟୁ ଆକ୍ରମଣ

କଲେ ଓ ଲରେନ୍ସ ନିଜେ ଦକ୍ଷିଣ ଦିଗରୁ ଆକ୍ରମଣର ଦାୟିତ୍ୱ ନେଲେ । ଉଭୟପଟୁ ଆକ୍ରମଣରେ ତ୍ରସ୍ତ ହୋଇ ଚାନ୍ଦାସାହେବଙ୍କର ବନ୍ଧୁ ସୈନ୍ୟ ମନୋବଳ ହରାଇ ପଳାୟନ କଲେ ଓ ଅନେକେ ଇଂରେଜମାନଙ୍କର ଶରଣ ପଶି କ୍ଲାଇଭ୍‌ଙ୍କ ସୈନ୍ୟବାହିନୀରେ ଯୋଗ ଦେଲେ । ଚାନ୍ଦାସାହେବ ତାଞ୍ଜୋରଠାରେ ମରହଟ୍ଟା ବାହିନୀ ନିକଟରେ ଆତ୍ମସମର୍ପଣ କଲେ ଓ ପରେ ମହମ୍ମଦ ଅଲ୍ଲୀଙ୍କ ନିର୍ଦ୍ଦେଶରେ ତାଙ୍କୁ ହତ୍ୟା କରାଗଲା । ଫରାସୀ ସେନାପତି ଲ' ୧୭୫୨ ମସିହା ଜୁନ୍ ୧୪ ତାରିଖରେ ୮୦୦ ଫ୍ରେଞ୍ଚ ସୈନ୍ୟ, ୨୦୦୦ ଭାରତୀୟ ସିପାହୀ ଓ ୩୧ଟି କମାଣ ସହ ଇଂରେଜମାନଙ୍କ ନିକଟରେ ଆତ୍ମସମର୍ପଣ କଲେ । ସୈନ୍ୟସାମନ୍ତ ଓ ଚାନ୍ଦାସାହେବଙ୍କ ପରି ସହଯୋଦ୍ଧାଙ୍କୁ ହରାଇ ମଧ୍ୟ ଡୁପ୍ଲେ ହତୋତ୍ସାହ ହେଲେ ନାହିଁ । କିନ୍ତୁ ୧୭୫୪ ଅଗଷ୍ଟ ମାସରେ ତାଙ୍କୁ ପଣ୍ଡିଚେରୀରୁ ଫେରାଇନେବା ପାଇଁ ଫରାସୀ ସରକାରଙ୍କ ନିଷ୍ପତ୍ତି ତାଙ୍କ ପାଇଁ କାଳ ହେଲା ।

ପଣ୍ଡିଚେରୀରେ ଅବସ୍ଥିତ ଫରାସୀ ବାଣିଜ୍ୟ ଅନୁଷ୍ଠାନ ଯେ କୌଣସି ଲାଭଜନକ ବ୍ୟବସାୟ କରିବାକୁ ସମର୍ଥ ନୁହଁନ୍ତି, ଏ ବିଷୟରେ ଫ୍ରେଞ୍ଚ ସରକାରଙ୍କର ଆଉ ସନ୍ଦେହ ରହିଲା ନାହିଁ । ଯୁଦ୍ଧ ଓ ରକ୍ତପାତରେ ମଗ୍ନ ରହି ଡୁପ୍ଲେଙ୍କୁ ବ୍ୟବସାୟ କରିବାକୁ ସମୟ ନଥିଲା । ଅଗଷ୍ଟ ୧୭୫୪ ମସିହାରେ ଏମ୍. ଗଡେହ୍ୟୁ ନାମକ ଫରାସୀ କମ୍ପାନୀର ଜଣେ ଡାଇରେକ୍ଟର ଡୁପ୍ଲେଙ୍କ ପ୍ରତ୍ୟାବର୍ତ୍ତନ ଓ ଇଂରେଜମାନଙ୍କ ସହ ସନ୍ଧି କରିବାପାଇଁ ଆଦେଶ ଧରି କେତେକ ୟୁରୋପିଆନ୍ ସୈନ୍ୟଙ୍କ ସମେତ ପଣ୍ଡିଚେରୀରେ ପହଞ୍ଚିଲେ । ଫ୍ରେଞ୍ଚ କମ୍ପାନୀ ଥିଲା ଏକ ସରକାରୀ ସଂସ୍ଥା, କିନ୍ତୁ ଇଷ୍ଟ ଇଣ୍ଡିଆ କମ୍ପାନୀ ଥିଲା ସରକାରୀ ସାହାଯ୍ୟପ୍ରାପ୍ତ ଏକ ବ୍ୟବସାୟିକ ଅନୁଷ୍ଠାନ । ଡୁପ୍ଲେଙ୍କର ବ୍ୟବସାୟ ବାଣିଜ୍ୟ ଅପେକ୍ଷା ଉପନିବେଶ ପ୍ରତିଷ୍ଠା ଉପରେ ଅଧିକ ଧ୍ୟାନ ଥିଲା । ସେଥିପାଇଁ ଗଡେହ୍ୟୁ ଡୁପ୍ଲେଙ୍କୁ ଭାରତରୁ ଫେରାଇ ନେଲେ । ଶୁଣାଅଛି ଡୁପ୍ଲେ ତାଙ୍କର ସମସ୍ତ ସମ୍ପତ୍ତି ହରାଇ ୧୭୬୩ ମସିହାରେ ପ୍ରାଣତ୍ୟାଗ କଲେ ।

ଇଂରେଜମାନଙ୍କ ସହିତ ସନ୍ଧି ସର୍ତ୍ତ ଆଲୋଚନା କରିବା ପାଇଁ ଦଳେ ଫରାସୀ ସୈନ୍ୟ ଆସିଥିଲେ ଏବଂ ଠିକ୍ ସେହି କାରଣରୁ ଆଡ୍‌ମିରାଲ୍ ୱାଟ୍‌ସନ୍‌ଙ୍କ ନେତୃତ୍ୱରେ ଗୋଟିଏ ନୌ-ବହର ଏବଂ କେତେକ କମାଣବାହିନୀ ଭାରତରେ ଆସି ପହଞ୍ଚିଲେ । ଗଡେହ୍ୟୁ ପହଞ୍ଚିବା ପରେ ତିନିସପ୍ତାହ ପାଇଁ ସ୍ଥିତାବସ୍ଥା ବଜାୟ ରଖିବା ନିମନ୍ତେ

ଇଂରେଜମାନଙ୍କ ସହିତ ଏକ ଅସ୍ଥାୟୀ ଚୁକ୍ତି ହେଲା । ବନ୍ଧୁ ବିଚାରବିମର୍ଶ ପରେ ଡିସେମ୍ବର ମାସ ଶେଷରେ ଉଭୟପକ୍ଷ ଏକ ଚୁକ୍ତିପତ୍ରରେ ଦସ୍ତଖତ କଲେ । ଏହି ଚୁକ୍ତିର ସର୍ତ୍ତ ଅନୁଯାୟୀ ଇଂରେଜମାନେ ଯାହା ଚାହୁଁଥିଲେ, ତାହା ସେମାନଙ୍କୁ ମିଳିଲା ଏବଂ ଫରାସୀମାନେ ଏଥିପୂର୍ବରୁ ଯାହା କିଛି ଯୁଦ୍ଧରେ ଲାଭ କରିଥିଲେ, ତାହା ପ୍ରତ୍ୟର୍ପଣ କଲେ । ମହମ୍ମଦ ଅଲ୍ଲୀଙ୍କୁ କର୍ଣ୍ଣାଟକର ନବାବ ଭାବରେ ସ୍ୱୀକୃତି ଦିଆଗଲା । କିନ୍ତୁ ଫରାସୀ ସୈନ୍ୟମାନଙ୍କର ଖର୍ଚ୍ଚ ବହନ ପାଇଁ ଉତ୍ତର ସରକାର ନାମକ ଯେଉଁ ଚାରୋଟି ଜିଲ୍ଲା ମୁଜାଫର ଜଙ୍ଗ୍‌ଙ୍କଠାରୁ ଫରାସୀ ସେନାପତି ବୁସି ଗ୍ରହଣ କରିଥିଲେ, ତାହା ଫେରସ୍ତ କରିବା ପାଇଁ ଫରାସୀ ସରକାର ଅନିଚ୍ଛୁକ ଥିଲେ ।

କିନ୍ତୁ ଏହି ଚୁକ୍ତି ଦୀର୍ଘଦିନ ଧରି କାର୍ଯ୍ୟକାରୀ ହୋଇପାରିଲା ନାହିଁ । ୧୭୫୬ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡ ଓ ଫ୍ରାନ୍ସ ମଧ୍ୟରେ ସାତବର୍ଷିଆ ଯୁଦ୍ଧ ଆରମ୍ଭ ହେଲା ଏବଂ ତା'ର ପ୍ରତିକ୍ରିୟା ଭାରତରେ ମଧ୍ୟ ପ୍ରତିଫଳିତ ହେଲା । ଫରାସୀ କମ୍ପାନୀର ବ୍ୟବସାୟରୁ ବିଶେଷ ଲାଭ ନପାଇ ଫ୍ରାନ୍ସ ସରକାର ପଣ୍ଡିଚେରୀରେ ଅବସ୍ଥିତ ବାଣିଜ୍ୟ କୋଠି ଓ ସେନାବାହିନୀର ପାଠକୁ ବିଶେଷ ସାହାଯ୍ୟ ଦେଉନଥିଲେ । ଅଥଚ ଇଷ୍ଟ ଇଣ୍ଡିଆ କମ୍ପାନୀ ବ୍ରିଟିଶ ସରକାରଙ୍କୁ ପ୍ରଭାବିତ କରି ମାଡ୍ରାସ ସହର ଓ ସେଣ୍ଟ ଡେଭିଡ୍ ଦୁର୍ଗର ସୁରକ୍ଷା ପାଇଁ ଯଥେଷ୍ଟ ସଂଖ୍ୟକ ସୈନ୍ୟ ଓ ଗୁଳିଗୋଳା ଭାରତକୁ ପଠାଉଥିଲେ । ୧୭୫୮ ମସିହାରେ ଲାଲିଙ୍କୁ ଫରାସୀ ସରକାର ପଣ୍ଡିଚେରୀର ଗଭର୍ଣ୍ଣର ନିଯୁକ୍ତ କଲେ । କିନ୍ତୁ ସେତେବେଳକୁ ଫରାସୀମାନଙ୍କ ପାଇଁ ଭାରତରେ ପରିସ୍ଥିତି ଅନୁକୂଳ ନଥିଲା ।



# କ୍ଲାଇଭ୍ ଓ ପଲାସି ଯୁଦ୍ଧ

୧୭୫୩ ମସିହାରେ ରବର୍ଟ କ୍ଲାଇଭ୍ ତାଙ୍କର ଜଣେ ବନ୍ଧୁଙ୍କର ଭଉଣୀକୁ ମାନ୍ଦ୍ରାସଠାରେ ବିବାହ କରିଥିଲେ । ବିବାହ ପରେ ସେ ବିଭିନ୍ନ ସୂତ୍ରରୁ ସ୍ଥାନୀୟ ରାଜା ବା ନବାବଙ୍କଠାରୁ ଉତ୍କୋଚ୍ ବା ଉପଢ଼ୌକନ ଭାବରେ ଯେଉଁ ଅର୍ଥ ସଂଗ୍ରହ କରିଥିଲେ, ସେ ସବୁ ଧନସମ୍ପତ୍ତି ସାଙ୍ଗରେ ଧରି ପରିବର୍ତ୍ତନ ପାଇଁ ଇଂଲଣ୍ଡ ଯାତ୍ରାକଲେ । ଆର୍କେଟ୍ ଯୁଦ୍ଧରେ ବିଜୟ ହେତୁ ଇଷ୍ଟ ଇଣ୍ଡିଆ କମ୍ପାନୀ ମହଲରେ କ୍ଲାଇଭ୍‌ଙ୍କ ଖ୍ୟାତି ଶୀର୍ଷସ୍ଥାନରେ ପହଞ୍ଚିଥିଲା । ସେ ପ୍ରଥମେ ପିତାଙ୍କର ଋଣ ପରିଶୋଧ କରି ଲଣ୍ଡନରେ କମ୍ପାନୀର ଡାଇରେକ୍ଟରମାନଙ୍କ ସହିତ ବିଭିନ୍ନ ସମସ୍ୟା ଉପରେ ଆଲୋଚନା କଲେ । କମ୍ପାନୀର କର୍ତ୍ତୃପକ୍ଷଙ୍କୁ ସେ ପରାମର୍ଶ ଦେଲେ, ଦାକ୍ଷିଣାତ୍ୟ ଅର୍ଥାତ୍ ହାଇଦ୍ରାବାଦ୍ ଅଞ୍ଚଳରୁ ଫରାସୀ ସେନାପତି ବୁସିଙ୍କୁ ନ ତଡ଼ିଲେ, ଦାକ୍ଷିଣାତ୍ୟରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଅବସ୍ଥା ସୁଧୁରିବ ନାହିଁ । ମାନ୍ଦ୍ରାସରୁ କମ୍ପାନୀର ଲଣ୍ଡନ ଅଫିସରେ ମଧ୍ୟ ଏହି ମର୍ମରେ ବାର୍ତ୍ତା ପହଞ୍ଚିଲା । ମରହଟ୍ଟା ମୁରାରୀ ରାଓଙ୍କ ସହ ମିଶି ନିଜାମ୍ ସଲାବତ୍ ଜଙ୍ଗ୍‌ଙ୍କୁ ସାମରିକ ସାହାଯ୍ୟ ଦେବା ପାଇଁ ପ୍ରତିଶ୍ରୁତି ଦେଲେ ହୁଏତ ଏ ଲକ୍ଷ୍ୟ ସାଧନ ହୋଇପାରିବ ଏବଂ ନିଜାମ ହାଇଦ୍ରାବାଦରୁ ବୁସି ଓ ଫରାସୀ ସେନାଙ୍କୁ ବିତାଡ଼ିତ କରିବେ । ଏଣୁ କ୍ଲାଇଭ୍‌ଙ୍କୁ ନିର୍ଦ୍ଦେଶ ଦିଆଗଲା ଯେ, ସେ ମାନ୍ଦ୍ରାସ ନ ଫେରି ବମ୍ବେ ବନ୍ଦରରେ ଅବତରଣ କରିବେ ଏବଂ ସେଠାରୁ ମୁରାରୀ ରାଓଙ୍କ ସହ ଆଲୋଚନା କରି ଦାକ୍ଷିଣାତ୍ୟ ଅଭିମୁଖେ ସୈନ୍ୟଚାଳନା କରିବେ । କ୍ଲାଇଭ୍ ୧୭୫୫ ଅକ୍ଟୋବର ମାସରେ ବମ୍ବେ ବନ୍ଦରରେ ଅବତରଣ କଲେ ।

କିନ୍ତୁ ବମ୍ବେ କାଉନ୍‌ସିଲ୍‌ର ଏ ଦାକ୍ଷିଣାତ୍ୟ ଯୁଦ୍ଧରେ କୌଣସି ଆଗ୍ରହ ନଥିଲା । ବମ୍ବେରେ ଆଡ୍‌ମିରାଲ୍ ୱାଟସନ୍ ଗୋଟିଏ ନୌବହର ଧରି ଅପେକ୍ଷା କରି ରହିଥିଲେ । ବମ୍ବେ କାଉନ୍‌ସିଲର ନିର୍ଦ୍ଦେଶ ଅନୁଯାୟୀ ତୁଲାଜୀ ଆଙ୍ଗ୍ରିଆ ନାମକ ଜଣେ ଜଳଦସ୍ୟୁର

ଅଧିକୃତ ଘେରିଆ ନାମକ ସ୍ଥାନକୁ ଅଧିକାର କରିବା ପାଇଁ ଉଦ୍ୟମ ହେଲା । କ୍ଲାଇଭ୍ ଓ ୱାଟସନ୍ ଅତି ସହଜରେ ଘେରିଆ ଆକ୍ରମଣ କରି ଦଖଲ କରିପାରିଥିଲେ । ଏହାପରେ ସେମାନେ ଦାକ୍ଷିଣାତ୍ୟ ନଯାଇ ସିଧା ମାଡ୍ରାସରେ ପହଞ୍ଚିଲେ । ମାଡ୍ରାସରେ ସମ୍ବାଦ ମିଳିଲା ଯେ, ମୁର୍ଶିଦାବାଦର ନବାବ ସିରାଜ୍ଉଦ୍ଦୌଲା କଲିକତା ଆକ୍ରମଣ କରିଛନ୍ତି ।

୧୭୫୬ ମସିହାରେ ଗାଦି ଆରୋହଣ କରିବା ସମୟରେ ଆଲ୍ଲୀବର୍ଦ୍ଦି ଖାଁଙ୍କର ଉତ୍ତରାଧିକାରୀ ସିରାଜଉଦ୍ଦୌଲା ଥିଲେ ଅତି ତରୁଣ, ଅନଭିଜ୍ଞ, ବିଳାସୀ, ବଦରାଗୀ ଓ ଅପାରଗ ବ୍ୟକ୍ତି । ଆଲ୍ଲୀବର୍ଦ୍ଦି ଖାଁଙ୍କ ପରି ତାଙ୍କର ଦକ୍ଷତା ନଥିଲା ବା ଦୂରଦୃଷ୍ଟି ନଥିଲା । ସିରାଜଉଦ୍ଦୌଲା ଫୋର୍ଟ ଉଇଲିୟମ୍‌ରେ ରହୁଥିବା ଇଷ୍ଟ ଇଣ୍ଡିଆ କମ୍ପାନୀର ଗଭର୍ଣ୍ଣର ଓ ଚନ୍ଦନ ନଗରରେ ଅଧିଷ୍ଠିତ ଫରାସୀ କମ୍ପାନୀର କର୍ତ୍ତୃପକ୍ଷଙ୍କୁ ଲିଖିତ ନିର୍ଦ୍ଦେଶ ଦେଲେ ଯେ, ୟୁରୋପରେ ବ୍ରିଟିଶ ଓ ଫ୍ରେଞ୍ଚ ସରକାରଙ୍କ ମଧ୍ୟରେ ଯୁଦ୍ଧ ଚାଲିବାର ସମ୍ଭାବନା ଦୃଷ୍ଟିରୁ ସେମାନେ ଆପଣାର ଦୁର୍ଗ ଓ ସେନାଛାଉଣୀକୁ ସୁଦୃଢ଼ କରିବାରୁ ବିରତ ରୁହନ୍ତୁ । ଫରାସୀ କର୍ତ୍ତୃପକ୍ଷ ଏକ ନରମ ଉତ୍ତର ପଠାଇ ନିର୍ଦ୍ଦେଶ ମାନିବାର ଛଳନା କଲେ । କିନ୍ତୁ ଇଷ୍ଟ ଇଣ୍ଡିଆ କମ୍ପାନୀର କଲିକତା ଗଭର୍ଣ୍ଣର ରୋଗର୍ ଡ୍ରେକ୍ ଜବାବ ଦେଲେ ଯେ, ଠିକ୍ ସେହି କାରଣରୁ ଅର୍ଥାତ୍ ବ୍ରିଟେନ୍ ଓ ଫ୍ରାନ୍ସ ମଧ୍ୟରେ ଯୁଦ୍ଧ ଲାଗିବାର ଆଶଙ୍କା ଥିବାରୁ ସେମାନେ ସେନାଛାଉଣୀକୁ ଅଧିକ ଦୃଢ଼ କରୁଅଛନ୍ତି । ଏହି ପତ୍ର ପାଇ ସିରାଜଉଦ୍ଦୌଲା ଉତ୍‌କ୍ଷିପ୍ତ ହେଲେ ଓ କାଶିମ୍ ବଜାରରେ ଥିବା ଏକ ବ୍ରିଟିଶ୍ ଫାକ୍‌ଟ୍ରିକୁ ଦଖଲ କରି ନେଇ କମ୍ପାନୀର କର୍ମଚାରୀମାନଙ୍କୁ ବନ୍ଦୀ କଲେ । ଏହାପରେ ପଚାଶ ହଜାର ସୈନ୍ୟ ଧରି ସେ କଲିକତା ଆକ୍ରମଣ କଲେ । ଭୟ ଓ ଆତଙ୍କରେ କଲିକତାରେ ଥିବା କମ୍ପାନୀର କର୍ମଚାରୀମାନେ ଫୋର୍ଟ ଉଇଲିୟମ୍‌ରେ ଆଶ୍ରୟ ନେଲେ । କିନ୍ତୁ ସେମାନେ ଅନୁଭବ କଲେ ଯେ, ଆକ୍ରମଣକାରୀମାନଙ୍କ ସଂଖ୍ୟା ଦୃଷ୍ଟିରୁ ଫୋର୍ଟ ମଧ୍ୟ ସେମାନଙ୍କ ପାଇଁ ନିରାପଦ ନୁହେଁ । ହୁଗୁଳୀ ନଦୀରେ ରଖାଯାଇଥିବା ଜାହାଜରେ ଅନେକ ଚଢ଼ି ପ୍ରାୟ ଚାଳିଶ ମାଇଲ ତଳକୁ ଫୁଲଟା ଗ୍ରାମରେ ଗୋଟିଏ ଡଚ୍ ଫାକ୍‌ଟ୍ରି ନିକଟରେ ଆଶ୍ରୟ ନେଲେ । ବାକି ଯେଉଁମାନେ ଫୋର୍ଟ ଉଇଲିୟମ୍‌ରେ ରହିଗଲେ, ସେମାନେ ଜେ. ଜେଡ୍. ହୋଲୱେଲଙ୍କୁ ଗଭର୍ଣ୍ଣର ନିର୍ବାଚିତ କରି ତାଙ୍କ ନେତୃତ୍ୱରେ ସିରାଜଙ୍କର ପ୍ରତିରୋଧ କଲେ । ମାତ୍ର

ସେମାନଙ୍କର ପ୍ରତିରୋଧ ବିଫଳ ହେଲା । ହୋଲ୍‌ୱେଲ୍ ଓ ତାଙ୍କର ସହଯାତ୍ରୀମାନେ ସିରାଜ୍‌ଉଦ୍ଦୌଲାଙ୍କ ନିକଟରେ ଆତ୍ମସମର୍ପଣ କଲେ ।

ଏହି ସମୟରେ ସିରାଜଉଦ୍ଦୌଲାଙ୍କ ସୈନ୍ୟମାନଙ୍କ ଦ୍ୱାରା 'ଅନ୍ଧକୂପ ହତ୍ୟା' ନାମକ ମର୍ମନ୍ତୁଦ ହତ୍ୟାକାଣ୍ଡ ଘଟିଥିଲା ବୋଲି କୁହାଯାଏ । ଜୁନ୍ ମାସର ଗରମ ଦିନରେ ସେନାଛାଉଣୀର ଶହେ ଛୟାଳିଶ ଜଣ ଲୋକଙ୍କୁ କୋଡ଼ିଏ ବର୍ଗଫୁଟ୍ ଆକୃତିର ଏକ ଘରେ ବନ୍ଦ କରି ରଖାଯାଇଥିଲା । ପରଦିନ ସକାଳୁ ସେ ଘର ଖୋଲି ଦେଖାଗଲା ଯେ, ଶହେ ତେଇଶିଜଣ ପ୍ରାଣ ହରାଇଛନ୍ତି । ବାକି ଯେଉଁ ତେଇଶି ଜଣ ବଞ୍ଚି ରହିଲେ, ସେମାନଙ୍କ ମଧ୍ୟରେ ଥିଲେ ଗଭର୍ଣ୍ଣର ହୋଲ୍‌ୱେଲ୍ । ସେ ପରେ ଏହି ଘଟଣା ବର୍ଣ୍ଣନା କରି ଯେଉଁ ବିବରଣୀ ଲେଖିଛନ୍ତି, ସେଥିରେ ନବାବ ସିରାଜ୍‌ଉଦ୍ଦୌଲାଙ୍କୁ ଦାୟୀ କରିନାହାନ୍ତି । ତାଙ୍କ ମତରେ ନବାବଙ୍କର କେତେକ କର୍ମଚାରୀ ଓ ଗାର୍ଡ଼ ଏପରି କରିଥିଲେ । 'ଅନ୍ଧକୂପ ହତ୍ୟା' କାହାଣୀକୁ ଆଧୁନିକ ଐତିହାସିକମାନେ ବିଶ୍ୱାସ କରନ୍ତି ନାହିଁ । ସେମାନଙ୍କ ମତରେ ଏପରି କାହାଣୀ ସମର୍ଥନର ଗ୍ରହଣଯୋଗ୍ୟ ପ୍ରମାଣ ନାହିଁ । ଏହା ଏକ ଅତିରଂଜିତ ବର୍ଣ୍ଣନା ।

କଲିକତା ଅବରୋଧ ଓ ଆତ୍ମସମର୍ପଣର କାହାଣୀ ଯେତେବେଳେ କମ୍ପାନୀର ମାଡ୍ରାସ ଅଫିସ ଓ ଲଣ୍ଡନ ହେଡକ୍ୱାର୍ଟର୍ସରେ ପହଞ୍ଚିଲା, କମ୍ପାନୀର ଡାଇରେକ୍ଟରମାନେ ଏ ସମ୍ବାଦରେ ବିଚଳିତ ହୋଇପଡ଼ିଲେ । ମାଡ୍ରାସ କାଉନସିଲ୍ ସେ ସମୟରେ ଦାକ୍ଷିଣାତ୍ୟରେ ସଲାବଜଙ୍ଗ୍‌ଙ୍କୁ ସାହାଯ୍ୟ ଦେବାକୁ ସ୍ଥିର କରିଥିଲେ । ହଠାତ୍ କଲିକତା ଯିବାର ଆବଶ୍ୟକତା ଉଠିବାରୁ ମାଡ୍ରାସ କାଉନସିଲ୍‌ର ଡାଇରେକ୍ଟରମାନଙ୍କ ମଧ୍ୟରେ ମତଭେଦ ହେଲା । ମାଡ୍ରାସରେ ସମସ୍ତେ ଆଶଙ୍କା କରୁଥିଲେ, ଯେକୌଣସି ଦିନ ୟୁରୋପରେ ବ୍ରିଟେନ୍ ଓ ଫ୍ରାନ୍ସ ମଧ୍ୟରେ ଯୁଦ୍ଧ ଲାଗିଯିବ ଏବଂ ସେପରି ହେଲେ ଫରାସୀମାନେ ନିଶ୍ଚିତ ଭାବରେ ମାଡ୍ରାସ ଆକ୍ରମଣ କରିବେ । ସବୁ ଦୁଶ୍ଚିନ୍ତା ଅତିକ୍ରମ କରି ସ୍ଥିରହେଲା, କଲିକତାର ସୁରକ୍ଷା ପାଇଁ ନିଶ୍ଚିତ ଭାବରେ ସୈନ୍ୟ ପଠାଯିବ ଏବଂ ମାଡ୍ରାସ ଉପରେ ବିପଦ ପଡ଼ିଲେ ସେମାନଙ୍କୁ ଫେରାଇ ଅଣାଯାଇପାରେ । ନୌବାହିନୀର ସେନାପତି ଆଡ୍‌ମିରାଲ୍ ୱାଟସନ୍ ନୌସେନା ଓ ଯଥାସମ୍ଭବ ଆର୍ଟିଲେରୀ ସୈନ୍ୟ ସାଙ୍ଗରେ ଧରି ବଙ୍ଗଦେଶ ଅଭିମୁଖେ ଯାତ୍ରା କଲେ । ସ୍ଥଳବାହିନୀର ଦାୟିତ୍ୱ ସାଧାରଣତଃ କମ୍ପାନୀର କମାଣ୍ଡର-ଇନ୍-ଚିଫ୍ ନେବା କଥା, କିନ୍ତୁ କମାଣ୍ଡର-

ଇନ୍-ଚିଫ୍ ଲରେନ୍ସ ସେତେବେଳେ ଅସୁସ୍ଥ । ପରବର୍ତ୍ତୀ ବରିଷ୍ଠ ଅଫିସର କର୍ଣ୍ଣେଲ ଆଡ୍‌ଲର୍ କ୍ରନ୍‌ଙ୍କ ସହିତ ମାଡ୍ରାସ କାଉନସିଲର ବହୁ ବିଷୟରେ ମତଭେଦ ହେଲା । ଏଣୁ କାଉନସିଲ୍ ସ୍ଥିର କଲେ ଯେ, ସ୍ଥଳବାହିନୀ କର୍ଣ୍ଣେଲ ରବର୍ଟ କ୍ଲାଇଭ୍‌ଙ୍କ ନେତୃତ୍ୱରେ କଲିକତା ଯିବେ ଏବଂ ସମର ପରିଚାଳନାର ପୂର୍ଣ୍ଣ ଦାୟିତ୍ୱ କ୍ଲାଇଭ୍‌ଙ୍କ ଉପରେ ନ୍ୟସ୍ତ ରହିବ । କ୍ଲାଇଭ୍ ଆସି ହୁଗୁଲୀ ନଦୀ କୂଳରେ ଫୁଲଟା ନିକଟରେ ପହଞ୍ଚିଲେ । ସେ ଦେଖିଲେ ଯେ, ତାଙ୍କ ପୂର୍ବରୁ ମେଜର କିଲ ପ୍ୟାଟ୍ରିକ୍‌ଙ୍କ ନେତୃତ୍ୱରେ ଯେଉଁ ଆଗୁଆ ବାହିନୀ କଲିକତା ଆସିଥିଲେ, ସେମାନେ ସମସ୍ତେ ଏହି ଫୁଲଟାରେ ଅବସ୍ଥାନ କରୁଛନ୍ତି । ସେମାନଙ୍କ ମଧ୍ୟରୁ ଦୁଇତୃତୀୟାଂଶ ସୈନ୍ୟ ହୁଏତ ରୋଗାକ୍ରାନ୍ତ ବା ମୃତ । ଏଣେ ବଙ୍ଗଳା କାଉନସିଲ୍ ଏବଂ କ୍ଲାଇଭ୍‌ଙ୍କ ମଧ୍ୟରେ ଯୁଦ୍ଧ ପରିଚାଳନାର କର୍ତ୍ତୃତ୍ୱ ସମ୍ପର୍କରେ ବିବାଦ ଆରମ୍ଭ ହୋଇଗଲା । ପରିଶେଷରେ ବହୁ ବିଚାରବିମର୍ଶ ପରେ କର୍ଣ୍ଣେଲ ରବର୍ଟ କ୍ଲାଇଭ୍‌ଙ୍କୁ ସୈନ୍ୟ ପରିଚାଳନାର ଦାୟିତ୍ୱ ଦିଆଗଲା । କମ୍ପାନୀର ଲଣ୍ଡନ ଡାଇରେକ୍ଟରମାନେ ମଧ୍ୟ ଠିକ୍ ଏହାହିଁ ଚାହୁଁଥିଲେ ।

ଫୁଲଟାରେ ପହଞ୍ଚି କ୍ଲାଇଭ୍ ନବାବ ସିରାଜଉଦ୍ଦୌଲାଙ୍କୁ ଖଣ୍ଡେ ପତ୍ର ଲେଖି ତୁରନ୍ତ କଲିକତା ଆକ୍ରମଣ କରିବାର କ୍ଷୟକ୍ଷତି ପାଇଁ କ୍ଷତିପୂରଣ ଦେବା ନିମନ୍ତେ ଦାବି କଲେ ଏବଂ ପତ୍ରଟି ନବାବଙ୍କର କଲିକତାର ଶାସକ ରାଜା ମାଣିକଚାନ୍ଦ୍‌ଙ୍କ ନିକଟକୁ ପଠାଇଲେ । ମାଣିକଚାନ୍ଦ୍ ଏହି ପତ୍ରଟିର କଠୋର ଓ ରୁକ୍ଷ ଭାଷା ପରିବର୍ତ୍ତନ କରିବାକୁ ଅନୁରୋଧ କରି ପତ୍ରଟି ଫେରାଇଦେଲେ । କ୍ଲାଇଭ୍ ତା'ର ଜବାବରେ ଲେଖିଲେ, ସେ ଭିକ୍ଷାଥାଳ ଧରି ଆସିନାହାନ୍ତି । କ୍ଷତିପୂରଣ ଦାବି କରିବା ପାଇଁ ଖୋସାମତ୍‌ର ପ୍ରୟୋଜନ ନାହିଁ । କିନ୍ତୁ ଏହି ପତ୍ରାଳାପରୁ ବୁଝାପଡ଼ିଲା ଯେ, ସିରାଜଉଦ୍ଦୌଲା କେବଳ ସମୟ ନେବାପାଇଁ ଏପରି ଚାଲବାଜି କରୁଅଛନ୍ତି । କ୍ଲାଇଭ୍ ଓ ୱାଟସନ୍ ତୁରନ୍ତ ଆକ୍ରମଣ ଆରମ୍ଭ କଲେ । ଅଧିକାଂଶ ୟୁରୋପିଆନ୍ ସୈନ୍ୟମାନଙ୍କୁ ଜାହାଜରେ ବସାଇ ୱାଟସନ୍ କଲିକତା ଆଡ଼କୁ ଜଳଯାତ୍ରା ଆରମ୍ଭ କଲେ ଏବଂ କ୍ଲାଇଭ୍ ନିଜେ ହୁଗୁଳୀ କୂଳେ କୂଳେ ବାକି ସୈନ୍ୟମାନଙ୍କୁ ଧରି ଆଗେଇଗଲେ । ଫୋର୍ଟ ଉଇଲିୟମ୍‌ରେ ପହଞ୍ଚିଲା ବେଳକୁ ୱାଟସନ୍ ଓ କ୍ଲାଇଭ୍‌ଙ୍କ ମଧ୍ୟରେ ସାମରିକ କ୍ଷମତାର ପରିସୀମା ସମ୍ପର୍କରେ ବିବାଦ ଆରମ୍ଭ ହେଲା । ସୈନ୍ୟମାନଙ୍କ ଦୃଷ୍ଟିରେ କ୍ଲାଇଭ୍ ଥିଲେ ଅଧିକ ସାହସୀ ଓ ସୁଦକ୍ଷ, କିନ୍ତୁ ତାଙ୍କର ସାମରିକ ଅଫିସରମାନେ ତାଙ୍କ ପ୍ରତି ପରଶ୍ରୀକାତର ଥିଲେ । କିନ୍ତୁ ରବର୍ଟ କ୍ଲାଇଭ୍ ନିଜର ନିପୁଣତା ଓ ସାମରିକ ଦକ୍ଷତା ପ୍ରତିପାଦିତ କରି ଏସବୁ ବାଧାବିଘ୍ନ ଅତିକ୍ରମ କରିପାରିଥିଲେ ।

ଏହି ସମୟରେ ସମ୍ବାଦ ମିଳିଲା– ବ୍ରିଟେନ୍ ଓ ଫ୍ରାନ୍ସ ମଧ୍ୟରେ ଯୁଦ୍ଧ ଆରମ୍ଭ ହୋଇଯାଇଛି ଏବଂ କଲିକତା ନିକଟସ୍ଥ ଚନ୍ଦନ ନଗରରେ ତିନିଶହ ୟୁରୋପୀୟ ସୈନ୍ୟ ଅଛନ୍ତି ଓ ସେମାନଙ୍କ ପାଖରେ କମାଣ ମଧ୍ୟ ରହିଅଛି । ଇଂରେଜମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ସିରାଜଉଦ୍ଦୌଲା ଫ୍ରେଞ୍ଚ କର୍ତ୍ତୃପକ୍ଷଙ୍କୁ ପ୍ରସ୍ତାବ ଦେଲେ, କିନ୍ତୁ ୟୁରୋପରେ ଯୁଦ୍ଧ ଆରମ୍ଭ ହୋଇଥିବା କଥା ସେମାନଙ୍କୁ ବୋଧେ ଜଣା ନଥିଲା । ଫରାସୀମାନେ ଏ ପ୍ରସ୍ତାବରେ କୌଣସି ଆଗ୍ରହ ପ୍ରକାଶ କଲେନାହିଁ । ଏ ମଧ୍ୟରେ କ୍ଲାଇଭ୍ କଲିକତା ଫୋର୍ଟ ଦଖଲ କରି ଯଥାସମ୍ଭବ ମରାମତି କରିବାକୁ ଆରମ୍ଭ କଲେ । ୟୁରୋପରେ ଯୁଦ୍ଧ ଆରମ୍ଭ ହୋଇଯାଇଥିବା ହେତୁ ଯେକୌଣସି ମୁହୂର୍ତ୍ତରେ ମାଡ୍ରାସ ଉପରେ ଫରାସୀ ଆକ୍ରମଣର ସମ୍ଭାବନା ଦୃଷ୍ଟିରୁ ସେ ଯେତେ ଶୀଘ୍ର ପାରନ୍ତି ସିରାଜଉଦ୍ଦୌଲାଙ୍କ ଉପରେ ଲମ୍ଫ ଦେବାପାଇଁ ବ୍ୟାକୁଳ ଥିଲେ । ସ୍ଥାନୀୟ ବଙ୍ଗାଳୀମାନଙ୍କୁ ବାଦ୍‌ଦେଇ ରୋହିଲା, ରାଜପୁତ୍ ଓ ଜାଠ୍‌ମାନଙ୍କୁ ନେଇ ସେ ନୂଆ ପଲଟନ୍ ନାମକ ସୈନ୍ୟବାହିନୀ ଗଠନ କଲେ । ଏହି ସୈନ୍ୟମାନେ ଲାଲ ରଙ୍ଗର ପୋଷାକ ପରିଧାନ କରୁଥିବା ହେତୁ ସେମାନଙ୍କୁ ଲାଲ୍ ପଲ୍‌ଟନ୍ ଆଖ୍ୟା ଦିଆଯାଇଥିଲା । ନବାବ ସିରାଜଉଦ୍ଦୌଲା ତିରିଶ ହଜାର ସୈନ୍ୟ ଧରି କଲିକତା ନିକଟରେ ପହଞ୍ଚିଲେ ଏବଂ ସମୟ ନେବାପାଇଁ ବନ୍ଧୁତା ପ୍ରଦର୍ଶନ ପୂର୍ବକ କ୍ଲାଇଭ୍‌ଙ୍କୁ ଛଳନାପୂର୍ଣ୍ଣ ଚିଠି ମଧ୍ୟ ଲେଖିଲେ । କିନ୍ତୁ ଏ ଛଳନାର ଜାଲ ଭେଦ କରିବାକୁ ତାଙ୍କୁ ଅଧିକ ସମୟ ଲାଗିଲା ନାହିଁ । କ୍ଲାଇଭ୍ ପରଦିନ ବଡ଼ି ପାହାନ୍ତିଆରୁ ୱାଟ୍‌ସନ୍‌ଙ୍କର ପାଞ୍ଚଶହ ନୌସେନା ସମେତ ପ୍ରାୟ ଦୁଇହଜାର ସୈନ୍ୟଙ୍କୁ ଧରି ନବାବଙ୍କର ତିରିଶ ହଜାରିଆ ସୈନ୍ୟବାହିନୀ ଉପରେ ଆକ୍ରମଣ କଲେ ।

କ୍ଲାଇଭ୍ ଯେ ବିଶେଷ ସଫଳତା ଲାଭ କରିଥିଲେ ତା' ନୁହେଁ, କିନ୍ତୁ ଏ ଆକ୍ରମଣର ଫଳାଫଳ ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସିରାଜଉଦ୍ଦୌଲା ତାଙ୍କର ନୈତିକ ବଳ ଓ ସାହସ ହରାଇ ବସିଲେ ଏବଂ ଇଂରେଜମାନେ ଯେ ତାଙ୍କର ଗୁରୁତର କ୍ଷତି କରିବାକୁ ସମର୍ଥ ଏ ଆଶଙ୍କା ତାଙ୍କର ବଢ଼ିଚାଲିଲା । କ୍ଲାଇଭ୍ ଦୁଇଶହ ସୈନ୍ୟ ହରାଇବା ସ୍ଥଳରେ ନବାବଙ୍କର ତେରଶହ ସୈନ୍ୟ ହତାହତ ହୋଇଥିଲେ । ସିରାଜଉଦ୍ଦୌଲା ଚାରିଟି ମୃତ ହାତୀ, ଶହ ଶହ ମୃତ ଘୋଡ଼ା ଓ ଓଟ ଇତ୍ୟାଦି ହରାଇ କଲିକତାଠାରୁ କିଛି ଦୂର ପଛକୁ ଫେରିଗଲେ ଓ କ୍ଲାଇଭ୍‌ଙ୍କୁ ସନ୍ଧି ସ୍ଥାପନ ପାଇଁ ଏକ ପତ୍ର ଲେଖିଲେ । କିଛିଦିନ ମଧ୍ୟରେ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ନବାବ କମ୍ପାନୀର ସମସ୍ତ ସୁବିଧା

ସୁଯୋଗ ଏବଂ ଧନସମ୍ପତ୍ତି ଫେରାଇ ଦେବାକୁ ସ୍ୱୀକୃତ ହେଲେ । ଅବଶ୍ୟ ଏହି ଚୁକ୍ତି ସହିତ ୱାଟସନ୍ ସହମତ ନଥିଲେ । କିନ୍ତୁ କ୍ଲାଇଭ୍‌ଙ୍କର ଆଶଙ୍କା ଥିଲା ପୁଣି ଯଦି ନବାବ ଅନୁରୋଧ କରନ୍ତି, ତା'ହେଲେ ଚନ୍ଦନ ନଗରର ଫରାସୀ କର୍ତ୍ତୃପକ୍ଷ ହୁଏତ ତାଙ୍କୁ ସାହାଯ୍ୟ ସହଯୋଗ ଦେବାପାଇଁ ଧାଇଁ ଆସିପାରନ୍ତି ।

ସିରାଜଉଦ୍ଦୌଲାଙ୍କ ସହ ଉପରୋକ୍ତ ପ୍ରକାରେ ବୁଝାମଣା କରିବା ପରେ କ୍ଲାଇଭ୍ ଚନ୍ଦନ ନଗରର ଫରାସୀମାନଙ୍କ ପ୍ରତି ଦୃଷ୍ଟିପାତ କଲେ । ୟୁରୋପରେ ଯୁଦ୍ଧ ଚାଲୁ ହେଲେ ମଧ୍ୟ ଭାରତରେ ଉଭୟପକ୍ଷ ନିରପେକ୍ଷତା ଅବଲମ୍ବନ କରିବେ, ଏହି ମର୍ମରେ ଏକ ଚୁକ୍ତି କରିବା ପାଇଁ ଉଭୟ ପକ୍ଷ ମଧ୍ୟରେ ଆଲୋଚ଼ନା ହେଲା । କିନ୍ତୁ ୱାଟସନ୍ ଏହାର ବିରୋଧ କରି ଯୁକ୍ତି ଦର୍ଶାଇଲେ ଯେ, ଚନ୍ଦନ ନଗରର ଫ୍ରେଞ୍ଚମାନଙ୍କର ଚୁକ୍ତି କରିବାପାଇଁ କ୍ଷମତା ନାହିଁ । ପରନ୍ତୁ ଏପରି ସମ୍ବାଦ ପାଇଲେ ବୁସି ବଙ୍ଗଳା ଉପରେ ଆକ୍ରମଣ କରିପାରନ୍ତି । କ୍ଲାଇଭ୍ ଏହି ଯୁକ୍ତିରେ ନାଚାର ହେଲେ ଏବଂ ଚନ୍ଦନ ନଗର ଉପରେ ଆକ୍ରମଣ କରିବା ପାଇଁ ପୁନଶ୍ଚ ପ୍ରସ୍ତୁତ ହେଲେ । ଏ ମଧ୍ୟରେ ୱାଟ୍‌ସନ୍ କେତୋଟି ଯୁଦ୍ଧ ଜାହାଜ ଧରି ଫରାସୀ ଛାଉଣୀ ଆଡ଼କୁ ଆଗେଇ ଚାଲିଲେ ଏବଂ କ୍ଲାଇଭ୍ ତାଙ୍କର ସୈନ୍ୟସାମନ୍ତ ଧରି ଚନ୍ଦନ ନଗର ଉପରେ ଚତୁର୍ଦ୍ଦିଗରୁ ଆକ୍ରମଣ କରି ଫରାସୀମାନଙ୍କୁ ତାଙ୍କ ଫୋର୍ଟ ମଧ୍ୟକୁ ତଡ଼ିନେଲେ । ଏତିକିବେଳେ ୱାଟ୍‌ସନ୍ ତାଙ୍କ ଯୁଦ୍ଧ ଜାହାଜରୁ ଫୋର୍ଟ ଉପରେ ଏପରି ଘନଘନ ବୋମା ଆକ୍ରମଣ କଲେ ଯେ, ମାତ୍ର ତିନିଘଣ୍ଟା ପରେ ଫରାସୀମାନେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହେଲେ ।

ସିରାଜଉଦ୍ଦୌଲା ଇଂରେଜମାନଙ୍କ ସହ ଚୁକ୍ତି କରିବା ସତ୍ତ୍ୱେ ସେ ଯେ ଇଂରେଜମାନଙ୍କୁ ବିଶ୍ୱାସ କରୁନଥିଲେ ତାହାର ଯଥେଷ୍ଟ ପ୍ରମାଣ କ୍ଲାଇଭ୍‌ଙ୍କର ହସ୍ତଗତ ହେଲା । ଚନ୍ଦନ ନଗର ଆକ୍ରମଣ ପୂର୍ବରୁ ସିରାଜଉଦ୍ଦୌଲା ଫରାସୀ ସେନାପତି ଲ'ଙ୍କ ସହିତ ଭିତିରି ପରାମର୍ଶ କରିବାର ସମ୍ବାଦ ଲୁଚି ରହିଲା ନାହିଁ । ଲ' ଓ ତାଙ୍କର ଅଧସ୍ତନ କର୍ମଚାରୀମାନଙ୍କୁ ବିହାର ଅଞ୍ଚଳରେ ଲୁଚାଇ ରଖି ନବାବ ଦାକ୍ଷିଣାତ୍ୟର ଫରାସୀ ସେନାପତି ବୁସିଙ୍କ ସହିତ ଇଂରେଜମାନଙ୍କ ବିରୁଦ୍ଧରେ ବିଚାରବିମର୍ଶ କରୁଥିବାର ସମ୍ବାଦ ମଧ୍ୟ ଗୁପ୍ତ ରହିଲା ନାହିଁ । ଏଣେ ସିରାଜଉଦ୍ଦୌଲା ଯେ ନିଜେ ଜଣେ ଅତ୍ୟାଚାରୀ, ଅମାନୁଷିକ ଦୁର୍ବ୍ୟବହାର କରିବାରେ ସିଦ୍ଧହସ୍ତ, ଏକଥା ସମସ୍ତଙ୍କୁ ଜଣାଥିଲା । ମୁର୍ଶିଦାବାଦରେ ଥିବା ଦେଓ୍ୱାନ ରାୟ ଦୁର୍ଲଭ ଓ ପ୍ରଧାନ ସେନାପତି ମୀରଜାଫର୍

ପ୍ରମୁଖ ସେଥିପାଇଁ ନବାବଙ୍କ ଉପରେ ଅତ୍ୟନ୍ତ କ୍ଷୁବ୍ଧ ଥିଲେ । ବଙ୍ଗଳାର ହିନ୍ଦୁ ମହାଜନମାନେ ଥିଲେ ନବାବଙ୍କର ବ୍ୟବହାରରେ ଅତ୍ୟନ୍ତ ଅସନ୍ତୁଷ୍ଟ । ଜଣେ ଉତ୍ତର ଭାରତୀୟ ହିନ୍ଦୁ ମହାଜନ ଜଗତ୍ ସେଠ୍ ନବାବଙ୍କଠାରୁ ଚାପୁଡ଼ା ଖାଇ ନିଜେ କଲିକତା ଯାଇ ଇଂରେଜମାନଙ୍କୁ ସବୁ ଭିତିରି ଖବର ଦେଲେ ଓ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଲେ । ସିରାଜଉଦ୍ଦୌଲାଙ୍କର ପ୍ରଧାନ ସେନାପତି, ପୂର୍ବତନ ନବାବ ଆଲୀବର୍ଦ୍ଦି ଖାଁଙ୍କର ଜଣେ ସମ୍ପର୍କୀୟ, ମୀରଜାଫର ନବାବ ଗାଦି ବଦଳରେ ଇଂରେଜମାନଙ୍କୁ ଭିତିରି ସାହାଯ୍ୟ କରିବେ ବୋଲି ଚୁକ୍ତିବଦ୍ଧ ନହେବା ପର୍ଯ୍ୟନ୍ତ କ୍ଲାଇଭ୍ ଏ ଷଡ଼ଯନ୍ତ୍ରରେ ଅଧିକ ବାଟ ଆଗେଇ ନଥିଲେ । ଏ ମଧ୍ୟରେ ଜଣେ ପଞ୍ଜାବୀ ବ୍ୟବସାୟୀ ଅମୀନଚାନ୍ଦ୍ ଯେ କି ମୁର୍ଶିଦାବାଦ ଏବଂ କଲିକତାରେ ବହୁ ବିଶିଷ୍ଟ ଲୋକଙ୍କ ସହିତ ସମ୍ପର୍କ ରଖୁଥିଲେ, ସେ ତିରିଶ ଲକ୍ଷ ଟଙ୍କା ଉତ୍କୋଚ୍ ବଦଳରେ ମୀରଜାଫରଙ୍କୁ ରାଜି କରାଇବାର ଦାୟିତ୍ୱ ନେଲେ । ମୀରଜାଫର କୋରାନ ଛୁଇଁ ଇଂରେଜମାନଙ୍କୁ ସାହାଯ୍ୟ କରିବାପାଇଁ ଶପଥ ନେଲେ । ଏହାପରେ କ୍ଲାଇଭ୍ ସିରାଜଉଦ୍ଦୌଲାଙ୍କୁ ଗୋଟିଏ ପତ୍ର ଲେଖି ସେ ଚୁକ୍ତିଭଙ୍ଗ କରିଥିବା ଓ ଫରାସୀମାନଙ୍କ ସହ ଭିତିରି ଷଡ଼ଯନ୍ତ୍ର କରୁଥିବାରୁ ଅଭିଯୋଗ କଲେ । ପତ୍ର- ବାହକ ମୁର୍ଶିଦାବାଦ ଯିବାପରେ ସେହିଦିନ ଜୁନ୍ ୧୩ ତାରିଖରେ କ୍ଲାଇଭ୍ ସାତଶହ ୟୁରୋପିଆନ୍ ସୈନ୍ୟ ଓ ଦୁଇହଜାର ସିପାହୀଙ୍କ ସହ ନବାବଙ୍କ ସହ ମୁକାବିଲା କରିବା ପାଇଁ ମୁର୍ଶିଦାବାଦ ଯାତ୍ରା କଲେ ।

ମୁର୍ଶିଦାବାଦରେ ଚହଳ ପଡ଼ିଲା, ସେନାପତି ମୀରଜାଫର ଇଂରେଜମାନଙ୍କ ସହ ହାତ ମିଳାଇଛନ୍ତି । ସିରାଜଉଦ୍ଦୌଲା ପ୍ରଥମେ ମୀରଜାଫରଙ୍କୁ ଗିରଫ କରିବା ପାଇଁ ଚାହିଁଥିଲେ, କିନ୍ତୁ ପରେ ସେ ମୀର୍‌ଜାଫରଙ୍କ ଘରେ ପହଞ୍ଚି ତାଙ୍କ ସହିତ ବିଚାରବିମର୍ଶ କଲେ । ଉଭୟ ଯାହା ପ୍ରକୃତରେ କରିବେ, ତା'ର ବିରୋଧୀ କଥା କହି କେହି କାହାର କ୍ଷତି କରିବେ ନାହିଁ ବୋଲି କୋରାନ୍ ଛୁଇଁ ଶପଥ ନେଲେ । କାର୍ଯ୍ୟତଃ ଇଂରେଜମାନେ ଚନ୍ଦନ ନଗର ଆକ୍ରମଣ କରିବା ପୂର୍ବରୁ ନବାବଙ୍କର ଦେଓ୍ୱାନ୍ ରାୟ ଦୁର୍ଲ୍ଲଭ ପଲାସି ନାମକ ଗୋଟିଏ ସ୍ଥାନ ଦଖଲ କରି ସେଠାରେ ନବାବଙ୍କର ସୈନ୍ୟମାନଙ୍କୁ ଏକତ୍ରିତ କରି ରଖିଥିଲେ । କ୍ଲାଇଭଙ୍କ ଚିଠି ପାଇବା ପରେ ନବାବ ତୁରନ୍ତ ବାକି ସୈନ୍ୟମାନଙ୍କୁ ପଲାସି ଯାତ୍ରା କରିବା ପାଇଁ ଆଦେଶ ଦେଲେ । କିନ୍ତୁ ସୈନ୍ୟମାନଙ୍କ ମଧ୍ୟରେ ପୂରା ପାଉଣା ପାଇନଥିବା ହେତୁ ବିଶୃଙ୍ଖଳା ଦେଖାଦେଲା । ପରିଶେଷରେ ସିରାଜଉଦ୍ଦୌଲା ଏ ସୈନ୍ୟମାନଙ୍କୁ ଅଧିକ ପାଉଣା- ପତ୍ର ଦେଇ

ପଲାସିରେ ଜମାଟ ବାନ୍ଧିବାକୁ ନିର୍ଦ୍ଦେଶ ଦେଲେ । ପଚାଶ ହଜାର ସୈନ୍ୟ ଓ ପଚାଶଟି ହେଭିଗନ୍ ସାଙ୍ଗରେ ଧରି ଏହି ସୈନ୍ୟମାନେ ପଲାସିରେ ଏକତ୍ରିତ ହେଲେ । କିନ୍ତୁ ପରିସ୍ଥିତି ଏପରି ହୋଇଥିଲା ଯେ, ସିରାଜଉଦ୍ଦୌଲା ତାଙ୍କର ସେନାପତିମାନଙ୍କୁ ବିଶ୍ୱାସ କରୁନଥିଲେ ଏବଂ କ୍ଲାଇଭ୍ ମଧ୍ୟ ମୀରଜାଫରଙ୍କ ଉପରେ ପୂର୍ଣ୍ଣ ସନ୍ଦେହ କରୁଥିଲେ । ମୀରଜାଫର କ୍ଲାଇଭ୍‌ଙ୍କ ସହ ଚୁକ୍ତି କରିବା ସତ୍ତ୍ୱେ ସିରାଜଉଦ୍ଦୌଲାଙ୍କ ଉପରେ ପ୍ରତିଆକ୍ରମଣ କରିନଥିଲେ, କିମ୍ବା ଇଂରେଜମାନଙ୍କ ବିରୁଦ୍ଧରେ ମଧ୍ୟ ଦୃଢ଼ କାର୍ଯ୍ୟାନୁଷ୍ଠାନ କରୁନଥିଲେ । କ୍ଲାଇଭ୍ ଅତ୍ୟନ୍ତ ସନ୍ଦେହରେ ବୁଡ଼ି ରହିଲେ । ସେ ତାଙ୍କର ଯୁଦ୍ଧ ମନ୍ତ୍ରଣାଳୟର ବୈଠକ ଡାକି ସେମାନଙ୍କ ସହିତ ପରାମର୍ଶ କଲେ । କିନ୍ତୁ କାଉନ୍‌ସିଲ୍ କୌଣସି ନିର୍ଦ୍ଦିଷ୍ଟ ନିଷ୍ପତ୍ତି ନେଇ ପାରିଲେ ନାହିଁ । କାଉନସିଲ୍‌ର ଅଧିକାଂଶ ସଭ୍ୟ ଏବଂ କ୍ଲାଇଭ୍ ନିଜେ ଅନୁଭବ କରୁଥିଲେ ଯେ, ଏହି ବିଶାଳ ସେନାବାହିନୀ ଉପରେ ଏତେ ଅଳ୍ପ ସଂଖ୍ୟକ ସୈନ୍ୟ ଧରି ଆକ୍ରମଣ କରିବା ବୋଧହୁଏ ନିରାପଦ ହେବନାହିଁ । ବୈଠକର ପରଦିନ ମୀରଜାଫରଙ୍କଠାରୁ ଗୋଟିଏ ପତ୍ର ଆସିଲା, ସେ ଚୁକ୍ତି ଅନୁଯାୟୀ ସିରାଜ୍‌ଙ୍କ ବିରୁଦ୍ଧରେ ଇଂରେଜମାନଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି । ପତ୍ର ପାଇ କ୍ଲାଇଭ୍ ଆଶ୍ୱସ୍ତ ହେଲେ ଏବଂ ନିଜର କ୍ଷୁଦ୍ର ସେନାବାହିନୀ ସହ ସେହିଦିନ ରାତିରେ ଭାଗୀରଥୀ ନଦୀ ପାର ହୋଇ ଯାତ୍ରା ଆରମ୍ଭ କଲେ ପଲାସି ଅଭିମୁଖେ ।

ପରଦିନ ଜୁନ୍ ୨୩ ତାରିଖରେ ପଲାସିରେ ଯୁଦ୍ଧ ଆରମ୍ଭ ହେଲା । ଏ ଯୁଦ୍ଧରେ ଇଂରେଜମାନଙ୍କ ପକ୍ଷରୁ ମାତ୍ର ୬୫ ଜଣ ସୈନ୍ୟ ପ୍ରାଣ ହରାଇଥିଲେ, କିନ୍ତୁ ନବାବଙ୍କର ପାଞ୍ଚଶହ ସୈନ୍ୟ ହତାହତ ହେବା ପରେ ସେମାନଙ୍କ ମଧ୍ୟରେ ବିଶୃଙ୍ଖଳା ଦେଖାଦେଲା । ଦ୍ୱିପ୍ରହର ବେଳକୁ ଅସରାଏ ଘୋର ବର୍ଷା ହେଲା ଏବଂ ତାହା ଫଳରେ ସିରାଜ୍‌ଙ୍କର ଗନ୍ ପାଉଡର୍ ମଧ୍ୟରେ ପାଣି ପଶି ତାହା ଅନେକାଂଶରେ ଅକାମୀ ହୋଇଗଲା । ସିରାଜଉଦ୍ଦୌଲା ହତୋତ୍ସାହ ହୋଇ ଗୋଟିଏ ଓଟ ଉପରେ ଚଢ଼ି ରାଜଧାନୀ ମୁର୍ଶିଦାବାଦକୁ ପଳାୟନ କଲେ । ତାଙ୍କର ସୈନ୍ୟମାନେ ମଧ୍ୟ ସମସ୍ତ ଶୃଙ୍ଖଳା ଭାଙ୍ଗି ନିଜର ବନ୍ଧୁକ ଓ ଜିନିଷପତ୍ର ଛାଡ଼ି ପଳାୟନ କଲେ । ଏଣେ ମୀରଜାଫର କୋରାନ୍ ଛୁଇଁ ଦୁଇ ପରସ୍ପର ବିରୋଧୀ ଶପଥ ନେଇଥିଲେ ମଧ୍ୟ କୌଣସିଟି ପାଳନ କରିବାକୁ ପ୍ରସ୍ତୁତ ନଥିଲେ । ସେଦିନ ସନ୍ଧ୍ୟାବେଳେ ଯୁଦ୍ଧର ପରିସମାପ୍ତି ପରେ ମୀରଜାଫର କ୍ଲାଇଭ୍‌ଙ୍କୁ ଗୋଟିଏ ପତ୍ର ଲେଖି ତାଙ୍କୁ ଅଭିନନ୍ଦନ ଜଣାଇଥିଲେ ଏବଂ ପରଦିନ ସକାଳେ ତାଙ୍କ ସହିତ ସାକ୍ଷାତ କଲେ । ମୀରଜାଫର ତାଙ୍କର ଚୁକ୍ତି ଭଙ୍ଗ କରିଥିଲେ ମଧ୍ୟ ଜୁନ୍

୨୯ ତାରିଖରେ କ୍ଲାଇଭ୍ ତାଙ୍କୁ ବଙ୍ଗଳାର ସୁବେଦାର ଭାବରେ ଘୋଷଣା କଲେ ଏବଂ କ୍ଲାଇଭ୍‌ଙ୍କ ପରାମର୍ଶ ଅନୁଯାୟୀ ମୀରଜାଫର କେତେକ ସୈନ୍ୟସାମନ୍ତ ଧରି ମୁର୍ଶିଦାବାଦ ଯାତ୍ରା କଲେ ।

ମୀରଜାଫର୍‌ଙ୍କ ଆକ୍ରମଣ ସମ୍ବାଦ ପାଇ ସିରାଜଉଦ୍ଦୌଲା ତାଙ୍କର ଜଣେ ରକ୍ଷିତା ଏବଂ ଜଣେ ବିଶ୍ୱସ୍ତ ନୌକରକୁ ସାଙ୍ଗରେ ଧରି ବିହାରକୁ ପଳାଇବାକୁ ଉଦ୍ୟତ ହେଲେ ଏବଂ ଆଶା କରୁଥିଲେ ଯେ, ସେଠାରେ ସେ ଫରାସୀ ସେନାପତି ଲ' ଏବଂ ତାଙ୍କର କ୍ଷୁଦ୍ର ସୈନ୍ୟବାହିନୀ ସହିତ ମିଳିତ ହେବେ । କିନ୍ତୁ ବାଟରେ ଧରାପଡ଼ିବାରୁ ତାଙ୍କୁ ପୁଣି ମୁର୍ଶିଦାବାଦ ଅଣାଗଲା । ମୀରଜାଫର ଜାଣିଥିଲେ ଯେ, ପଲାସି ଯୁଦ୍ଧରେ ପରାଜୟ ପରେ ସିରାଜଉଦ୍ଦୌଲାଙ୍କର ମନୋବଳ ଭାଙ୍ଗିପଡ଼ିଛି ଓ ସେ ସମସ୍ତ ଶକ୍ତି ଓ ସାହସ ହରାଇଛନ୍ତି । ସେ ଅନୁଭବ କଲେ, ଶତ୍ରୁକୁ ଜୀବନରେ ରଖିବା ନିରାପଦ ନୁହେଁ ଏବଂ ତାକୁ ନିଶ୍ଚିହ୍ନ କରିବାର ଉପଯୁକ୍ତ ସମୟ ଉପନୀତ । ମୀରଜାଫରଙ୍କ ଆଦେଶରେ ଜୁଲାଇ ଦୁଇ ତାରିଖରେ ଦୁଇଜଣ ଆତତାୟୀ ତାଙ୍କୁ ହତ୍ୟାକଲେ । ମୁର୍ଶିଦାବାଦବାସୀଙ୍କୁ ଭୟଭୀତ କରାଇବା ପାଇଁ ସିରାଜଙ୍କର ଶବକୁ ଏକ ହାତୀ ଉପରେ ରଖି ସହର ସାରା ପରିକ୍ରମା କରାଗଲା । ମୀରଜାଫର୍ ଅନୁଭବ କଲେ ତାଙ୍କ ନବାବ ଗାଦି ଏବେ ଦୃଢ଼ତର ହୋଇଛି ।

କ୍ଲାଇଭ୍ ଘୋଷଣା କଲେ, ଏଣିକି କମ୍ପାନୀର ବ୍ୟବସାୟ, ବାଣିଜ୍ୟ ପ୍ରତି ସେ ଦୃଷ୍ଟିଦେବେ ଏବଂ ସୁବେଦାର ମୀରଜାଫର ବଙ୍ଗଳାର ଶାସନ ଚଳାଇବେ । ଏ ସମ୍ପର୍କୀୟ ନିଷ୍ପତ୍ତିକୁ ସାବ୍ୟସ୍ତ କରିବାପାଇଁ କ୍ଲାଇଭ୍ ଦିଲ୍ଲୀ ସମ୍ରାଟଙ୍କୁ ପତ୍ର ଲେଖିଲେ ଏବଂ ବିଶିଷ୍ଟ ମହାଜନ ଓ ସାହୁକାର ଜଗତ୍ ସେଠ୍ ଦିଲ୍ଲୀରେ ସମ୍ରାଟଙ୍କୁ ପ୍ରଭାବିତ କରି ସମ୍ମତି ଆଣିବାର ଦାୟିତ୍ୱ ନେଲେ । କିନ୍ତୁ ମୀରଜାଫରଙ୍କ ପକ୍ଷରେ କ୍ଷମତା ହସ୍ତାନ୍ତର ସନ୍ତୋଷମୂଳକ ହେଲାନାହିଁ । ପୂର୍ବତନ ନବାବ ସିରାଜଉଦ୍ଦୌଲା ଇଂରେଜମାନଙ୍କ ସହିତ ଚୁକ୍ତି ମୁତାବକ କ୍ଷତିପୂରଣ ଦେବାକୁ ଯେଉଁ ଅଙ୍ଗୀକାର କରିଥିଲେ, ତାହା ସେ ପରିଶୋଧ କରିବାକୁ ଅସମର୍ଥ ଥିଲେ । ଯାହାହେଉ ଜଗତ୍ ସେଠ୍‌ଙ୍କ ଜରିଆରେ ତାଙ୍କ ସହିତ ଆଲୋଚ଼ନା କରାଯାଇ ସେ ତୁରନ୍ତ ଅଧେ ଟଙ୍କା ଏବଂ ବାକି ଅଧେ ଟଙ୍କା ତିନୋଟି ବର୍ଷିକିଆ କିସ୍ତି ଅନୁସାରେ ଦେବାକୁ ସ୍ଥିରହେଲା । ମୀରଜାଫର୍ କ୍ଲାଇଭ୍‌ଙ୍କୁ ମଧ୍ୟ ଏକଲକ୍ଷ ଷାଠିଏ ହଜାର ପାଉଣ୍ଡ ଓ ତାଙ୍କର ଅଧସ୍ତନ କର୍ମଚାରୀମାନଙ୍କୁ ଆଉ କିଛି କିଛି ଅର୍ଥ ପାରିତୋଷିକ ବାବଦକୁ ପ୍ରଦାନ କଲେ ।

ପଲାସି ଯୁଦ୍ଧରେ ବିଜୟ ହେତୁ କ୍ଲାଇଭ୍‌ଙ୍କର ଖ୍ୟାତି ଭାରତ ଓ ଇଂଲଣ୍ଡରେ ପରିବ୍ୟାପ୍ତ ହେଲା । ସମସ୍ତେ ସ୍ୱୀକାର କଲେ ଯେ ତାଙ୍କ ନେତୃତ୍ୱରେ ଏବଂ ତାଙ୍କର ସୁଦକ୍ଷ ସୈନ୍ୟ ପରିଚାଳନା ହେତୁ ଇଂରେଜମାନେ ପଲାସିରେ ଜୟଲାଭ କରିଅଛନ୍ତି । ସାମରିକ ଦୃଷ୍ଟିରୁ ପଲାସି ଯୁଦ୍ଧର କୌଣସି ବିଶେଷତ୍ୱ ନଥିଲେ ମଧ୍ୟ, ଭାରତର ଇତିହାସରେ ଏହା ଅବର୍ଣ୍ଣନୀୟ ଗୁରୁତ୍ୱ ଅର୍ଜନ କରିଥିଲା । କ୍ଲାଇଭ୍ ଓ ଇଂରେଜମାନେ ଅନୁଭବ କଲେ ଯେ ଭାରତୀୟ ସେନାପତି, ମନ୍ତ୍ରୀ, ରାଜା ଓ ନବାବମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରାଇ ଏବଂ ସେଥିପାଇଁ ଆବଶ୍ୟକ ହେଲେ ଉତ୍କୋଚ୍ ପ୍ରଦାନ କରି ବା ମିଥ୍ୟା ଆଶ୍ୱାସନା ଦେଇ ସେମାନଙ୍କୁ ବିଭ୍ରାନ୍ତ ଓ ଶକ୍ତିହୀନ କରାଯାଇପାରେ । କ୍ଲାଇଭ୍ ଏହି କାର୍ଯ୍ୟରେ ବିଶେଷ ସଫଳ ହୋଇଥିଲେ ଏବଂ ମୀରଜାଫରଙ୍କ ବିଶ୍ୱାସଘାତକାତା ଫଳରେ ପଲାସି ଯୁଦ୍ଧରେ ଏକ ବିରାଟ ସେନାବାହିନୀର ନାୟକ ସିରାଜଉଦ୍ଦୌଲାଙ୍କୁ ପରାସ୍ତ କଲେ । ଭାରତର ରାଜା, ମହାରାଜା ଏବଂ ନବାବଙ୍କର ଦୁର୍ବଳତାର ସମ୍ପୂର୍ଣ୍ଣ ସୁଯୋଗ ନେଇ, ବନ୍ଧୁତାର ଛଳନା କରି, ଜଣକୁ ଅନ୍ୟ ଜଣଙ୍କ ବିରୁଦ୍ଧରେ ପ୍ରୟୋଗ କରି ରାଜନୈତିକ କ୍ଷମତା ଯେ ଆହରଣ କରାଯାଇପାରେ, ଏହି ବିଷୟରେ କ୍ଲାଇଭ୍‌ଙ୍କ ମନରେ ଆଉ ସନ୍ଦେହ ରହିଲା ନାହିଁ । ବେପାର ବାଣିଜ୍ୟ ସହିତ ରାଜ୍ୟ ଶାସନ ପ୍ରତି ଇଷ୍ଟ ଇଣ୍ଡିଆ କମ୍ପାନୀ ଅଧିକ ଦୃଷ୍ଟି ଦେଲେ ଓ ବିନା ବାଧାରେ କମ୍ପାନୀର କର୍ମଚାରୀମାନେ ବଙ୍ଗଳାରୁ ଅର୍ଥ ଲୁଟ୍ ଆରମ୍ଭ କଲେ ।



# ବଙ୍ଗଳାରେ ଇଂରେଜଙ୍କ ଜୟଯାତ୍ରା

ପଲାସି ଯୁଦ୍ଧ ଶେଷ ହେବାପରେ ପ୍ରାୟ ଅଢ଼େଇବର୍ଷ କାଳ କ୍ଲାଇଭ୍‌ଙ୍କୁ ବଙ୍ଗଦେଶରେ ରହିବାକୁ ହେଲା । ଏହି ସମୟରେ କର୍ଣ୍ଣାଟକରେ ଫ୍ରେଞ୍ଚ ସେନାବାହିନୀ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଚାଲୁରଖିଥିଲେ । କର୍ଣ୍ଣାଟକରେ ଫରାସୀ ଶକ୍ତି ଜୟଲାଭ କରିଥିଲେ ବଙ୍ଗଳାରେ ମଧ୍ୟ ଇଂରେଜମାନଙ୍କର ପତନ ଘଟିଥାଆନ୍ତା । କିନ୍ତୁ କ୍ଲାଇଭ୍ ଥିଲେ ଅତ୍ୟନ୍ତ ଚତୁର ଓ ଦୃଢ଼ମନା ଲୋକ । ଉଭୟ ବଙ୍ଗଳା ଓ ଦକ୍ଷିଣ ଭାରତରେ ଯେପରି ଇଷ୍ଟଇଣ୍ଡିଆ କମ୍ପାନୀର ପ୍ରାଧାନ୍ୟ ବଜାୟ ରହିବ, ସେ ପ୍ରତି ସେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ମୀରଜାଫର ଇଂରେଜମାନଙ୍କ ସାହାଯ୍ୟରେ ନବାବ ଗାଦି ଦଖଲ କରିଥିଲେ ମଧ୍ୟ ସେ ଅସନ୍ତୁଷ୍ଟ ଥିଲେ ଏବଂ ସୁବିଧା ପାଇଲେ ଫରାସୀମାନଙ୍କ ସହ ହାତ ମିଳାଇ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼େଇ କରିବାକୁ କୁଣ୍ଠିତ ନଥିଲେ । ତେଣୁ କ୍ଲାଇଭ୍‌ଙ୍କୁ ବହୁ ଧୈର୍ଯ୍ୟ ଓ ଚତୁରତାର ସହ ମୀରଜାଫରଙ୍କ ସହ କାର୍ଯ୍ୟ ନିର୍ବାହ କରିବାକୁ ପଡୁଥିଲା । ମୀରଜାଫରଙ୍କୁ ଗାଦିରୁ ହଟାଇ କ୍ଲାଇଭ୍ ଚାହୁଁ ନଥିଲେ ଯେ, ଇଂରେଜମାନଙ୍କ ଉପରେ ଭାରତୀୟ ସଂଭ୍ରାନ୍ତ ଶ୍ରେଣୀର ଆସ୍ଥା ତୁଟିଯାଉ ।

ମୀରଜାଫରଙ୍କର ମୁଖ୍ୟ ସହକାରୀ ଥିଲେ ତିନିଜଣ ହିନ୍ଦୁ–ଦେଓ୍ୱାନ ରାୟଦୁର୍ଲଭ, ବିହାରର ଡେପୁଟି ଗଭର୍ଣ୍ଣର ରାମନାରାୟଣ ଏବଂ ସିରାଜଉଦ୍ଦୌଲାଙ୍କ ସମୟରୁ କଲିକତା ଦାୟିତ୍ୱରେ ଥିବା ମାଣିକଚାନ୍ଦ । ଏତଦ୍ ବ୍ୟତୀତ ନବାବ ଥିଲେ ଦୁଇଜଣ ହିନ୍ଦୁ ମହାଜନଙ୍କର ଦେଣାଦାର । ଏ ସମସ୍ତଙ୍କୁ ବିତାଡ଼ନ କରି ମୀରଜାଫର ଚାହୁଁଥିଲେ ମୁସଲମାନ କର୍ମଚାରୀଙ୍କୁ ନିଯୁକ୍ତ କରିବାପାଇଁ । ସେଥିପାଇଁ ଏହି ହିନ୍ଦୁ ଦେଓ୍ୱାନ ଓ ମହାଜନମାନେ ମୀରଜାଫରଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ରରେ ଲିପ୍ତହେଲେ । ସଂବାଦ ଆସୁଥିଲା ଯେ, ପୂର୍ଣ୍ଣିଆ ଓ ମେଦିନୀପୁର ଅଂଚଳରେ ରାଜା ରାମସିଂହ ବିଦ୍ରୋହ

ଘୋଷଣା କରିବାର ଚକ୍ରାନ୍ତ କରୁଛନ୍ତି ଏବଂ ରାଜା ରାମନାରାୟଣ ମଧ୍ୟ ବିହାରରେ ଅଯୋଧ୍ୟା ନବାବଙ୍କ ସହାୟତାରେ ବିଦ୍ରୋହ ଘୋଷଣା କରିବାର ଯୋଜନା କରୁଛନ୍ତି । ମୀରଜାଫର ନିଜକୁ ଅସହାୟ ମନେକରି କ୍ଲାଇଭ୍‌ଙ୍କର ସାହାଯ୍ୟପ୍ରାର୍ଥୀ ହେଲେ । ଏ ପରିସ୍ଥିତିରେ ନବାବଙ୍କଠାରୁ କ୍ଷତିପୂରଣ ବାବଦ କମ୍ପାନୀର ପ୍ରାପ୍ୟ ଆଦାୟ କରିବାର ସଂଭାବନା ନଦେଖି କ୍ଲାଇଭ୍ ଦେଓ୍ୱାନ ରାୟ ଦୁର୍ଲଭଙ୍କୁ ତିନୋଟି ଜିଲ୍ଲାର ରାଜସ୍ୱ କମ୍ପାନୀକୁ ଦେବାପାଇଁ ବାଧ୍ୟ କଲେ ଓ ଏଣିକି ଏ ରାଜସ୍ୱ ମୁର୍ଶିଦାବାଦ ପରିବର୍ତ୍ତେ କଲିକତାର କମ୍ପାନୀ ଅଫିସରେ ଦାଖଲ ହେଲା । ଏତଦ୍ ବ୍ୟତୀତ ମୀରଜାଫରଙ୍କୁ ସାହାଯ୍ୟ କରିବାର ପ୍ରତିଶ୍ରୁତି ବଦଳରେ କମ୍ପାନୀପାଇଁ କେତେକ ବାଣିଜ୍ୟିକ ସୁବିଧା ମଧ୍ୟ ହାସଲ ହେଲା ।

ଏହି ସମୟରେ ଇଂରେଜମାନେ ଦୁଇଆଡୁ ବିପଦର ସମ୍ମୁଖୀନ ହେଲେ । ଯଦିଓ ଫରାସୀମାନଙ୍କ ଆଡୁ ବଙ୍ଗଳାରେ କୌଣସି ବିପଦର ଆଶଙ୍କା ନଥିଲା, କିନ୍ତୁ ବିପଦ ଆସିଲା ଉତ୍ତର-ପଶ୍ଚିମ ଭାରତରୁ । ମୋଗଲ ସମ୍ରାଟ ଦ୍ୱିତୀୟ ଆଲାମଗିରିଙ୍କ ଜ୍ୟେଷ୍ଠପୁତ୍ର ଶାହଜାଦା ଅଯୋଧ୍ୟାର ନବାବଙ୍କ ସହାୟତା ଓ ପରାମର୍ଶକ୍ରମେ ବଙ୍ଗଳାକୁ ଦଖଲ କରି ମୀରଜାଫରଙ୍କର ସମସ୍ତ ସଂପତ୍ତି ଲୁଟ କରିବାକୁ ସ୍ଥିର କଲେ । ଏହି ସମୟରେ ବିହାରର ଦୁଇଜଣ ଜମିଦାର ମଧ୍ୟ ସମ୍ରାଟଙ୍କ ପୁତ୍ର ଶାହଜାଦାଙ୍କୁ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଲେ । ମୁର୍ଶିଦାବାଦରେ ଏ ସଂବାଦ ଶୁଣି ମୀରଜାଫର ଆତଙ୍କିତ ହେଲେ । ତାଙ୍କର ସୈନ୍ୟମାନେ ନିୟମିତ ଦରମା ଆଦି ପାଇନଥିବାରୁ ବିଦ୍ରୋହ ପାଇଁ ପ୍ରସ୍ତୁତ ହେଉଥିଲେ । ପାଟନାର ଶାସକ ରାମନାରାୟଣଙ୍କୁ ନବାବ ବିଶ୍ୱାସ କରୁନଥିଲେ ଏବଂ ରାମନାରାୟଣ ମଧ୍ୟ କେଉଁ ପକ୍ଷ ସମର୍ଥନ କରିବେ, ସେ ବିଷୟରେ ସ୍ଥିର ନିଷ୍ପତ୍ତି ନେଇପାରୁନଥିଲେ । କିନ୍ତୁ ଅସୁବିଧା ସମୟରେ ଉଭୟପକ୍ଷ କ୍ଲାଇଭ୍‌ଙ୍କର ସାହାଯ୍ୟପ୍ରାର୍ଥୀ ହେଲେ । ଶାହଜାଦା କ୍ଲାଇଭ୍‌ଙ୍କୁ ସନ୍ତୁଷ୍ଟ କରିବାପାଇଁ ତାଙ୍କ ସହିତ ପତ୍ରାଳାପ ଆରମ୍ଭ କରିଥିଲେ ମଧ୍ୟ କ୍ଲାଇଭ୍ ମୋଗଲ ସମ୍ରାଟଙ୍କ ପୁତ୍ରଙ୍କର କଅଁଳିଆ କଥାରେ ନଭୁଲି ତାଙ୍କୁ ସିଧା ପତ୍ର ଲେଖିଲେ ଯେ, ସେ ସମ୍ରାଟଙ୍କଠାରୁ ନିଶ୍ଚିତ ଆଦେଶ ପାଇନଥିବା ହେତୁ ମନ୍‌ସୁବାଦାର ଭାବରେ ତାଙ୍କୁ ସାକ୍ଷାତ କରି ପାରିବେ ନାହିଁ ଏବଂ ଏହି ଚିଠିର ନକଲ ମଧ୍ୟ ସେ ମୀରଜାଫରଙ୍କ ନିକଟକୁ ପଠାଇ ଦେଇଥିଲେ । ମୁର୍ଶିଦାବାଦରେ ଅବସ୍ଥାପିତ କମ୍ପାନୀର ପ୍ରତିନିଧି ଓ୍ୱାରେନ୍ ହେଷ୍ଟିଂସ୍‌ଙ୍କୁ ସେ ନିର୍ଦ୍ଦେଶ ଦେଲେ, ଇଂରେଜମାନଙ୍କ ଉପରେ ଆସ୍ଥା ରଖିବାପାଇଁ ସେ

ମୀରଜାଫରଙ୍କୁ ପରାମର୍ଶ ଦିଅନ୍ତୁ । ସମ୍ରାଟ୍-ପୁତ୍ର ଶାହଜାଦା କ୍ଲାଇଭ୍‌ଙ୍କ କଥା ନଶୁଣି ଆଗେଇ ଆସିବାରୁ କ୍ଲାଇଭ୍ ତୁରନ୍ତ ଚାରିଶହ ପଚାଶ ଜଣ ୟୁରୋପିଆନ୍ ସୈନ୍ୟ ଓ ଅଢ଼େଇ ହଜାର ସିପାହୀଙ୍କୁ ଧରି ମୁର୍ଶିଦାବାଦରେ ପହଞ୍ଚିଲେ । ସେ ମୀରଜାଫରଙ୍କର ସୈନ୍ୟମାନଙ୍କର ଆସ୍ଥା ଫେରାଇ ଆଣିବା ପାଇଁ ସେମାନଙ୍କର ବକେୟା ପାଉଣା ଆଦି ପରିଶୋଧ କରିବାକୁ ପ୍ରତିଶ୍ରୁତି ଦେଲେ । ମୁର୍ଶିଦାବାଦରେ ସ୍ଥିର ହେଲା ଯେ, ମୀରଜାଫରଙ୍କର ପୁତ୍ର ମିରାନ୍ କ୍ଲାଇଭ୍‌ଙ୍କ ସହ ପାଟନା ଅଭିମୁଖେ ଅଭିଯାନ ଚଳାଇବେ । ବିହାରର ଶାସକ-ଜମିଦାର ରାମନାରାୟଣ ଆତ୍ମସମର୍ପଣ କରିଛନ୍ତି ବୋଲି ସମ୍ବାଦ ଆସିଲା । କାର୍ଯ୍ୟତଃ ରାମନାରାୟଣ ଆତ୍ମସମର୍ପଣ କରିନଥିଲେ, ସେ କେବଳ ଅନିଶ୍ଚିତତାର ଚରମ ଶିଖରରେ ପହଞ୍ଚି କୌଣସି ନିଷ୍ପତ୍ତି ନେଇପାରୁନଥିଲେ । ଶାହଜାଦା ପାଟନାର ନିକଟବର୍ତ୍ତୀ ହେବା ପରେ ରାମନାରାୟଣ ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି, ସେ ତାଙ୍କର ସମ୍ବର୍ଦ୍ଧନା ଆୟୋଜନରେ ବ୍ୟସ୍ତ ଅଛନ୍ତି ବୋଲି କୈଫିୟତ ଦେଇ ପାଟନା ଫେରିଆସିଲେ ଏବଂ ଶାହଜାଦା ଯେପରି ପାଟନାରେ ପ୍ରବେଶ କରି ନପାରନ୍ତି, ସେଥିପାଇଁ ସହରକୁ ଆସିବାର ସମସ୍ତ ପ୍ରବେଶ ପଥ ବନ୍ଦ କରିଦେଲେ । କ୍ଲାଇଭ୍ ଏହି ସମୟରେ ଗୋଟିଏ ବାଟାଲିୟନ୍ ସିପାହୀଙ୍କୁ ଧରି ଶାହଜାଦାଙ୍କ ଉପରେ ଅତର୍କିତ ଆକ୍ରମଣ ଆରମ୍ଭ କରିଦେଲେ । ଶାହଜାଦା ଇଂରେଜମାନଙ୍କର ଆକ୍ରମଣର ସମ୍ବାଦ ପାଇ ଯୁଦ୍ଧସ୍ଥଳରୁ ପଳାୟନ କଲେ ଏବଂ ତାଙ୍କର ସୈନ୍ୟସାମନ୍ତମାନେ ମଧ୍ୟ ଛତ୍ରଭଙ୍ଗ ଦେଲେ । ଏହି ସମୟରେ ଶାହଜାଦାଙ୍କୁ ଗିରଫ କରିବା ପାଇଁ ଉଭୟ କ୍ଲାଇଭ୍ ଓ ମୀରଜାଫରଙ୍କ ନିକଟକୁ ମୋଗଲ ସମ୍ରାଟଙ୍କଠାରୁ ନିର୍ଦ୍ଦେଶ ଆସିଲା । କିନ୍ତୁ ରାମନାରାୟଣ କ୍ଲାଇଭ୍‌ଙ୍କୁ ପରାମର୍ଶ ଦେଲେ ଯେ, ଶାହଜାଦାଙ୍କୁ ବଙ୍ଗଳାରେ ପ୍ରବେଶ କରିବାକୁ ସୁଯୋଗ ଦେବା ଉଚିତ ନୁହେଁ । କ୍ଲାଇଭ୍ ଶାହଜାଦାଙ୍କୁ ପାଞ୍ଚଶହ ସୁନା ମୋହର ପଠାଇ ଅବିଳମ୍ବେ ବିହାର ଛାଡ଼ି ଚାଲିଯିବା ପାଇଁ ପରାମର୍ଶ ଦେଲେ । ପରାମର୍ଶ ଅନୁଯାୟୀ ପଳାୟନ କରିବା ବ୍ୟତୀତ ଶାହଜାଦାଙ୍କ ସମ୍ମୁଖରେ ଅନ୍ୟ ରାସ୍ତା ନଥିଲା ।

କ୍ଲାଇଭ୍ ଯେତେବେଳେ ମିରାନ୍‌ଙ୍କ ସହ ମୁର୍ଶିଦାବାଦ ଫେରିଲେ, ତାଙ୍କର ଜୟଗାନରେ ସହର ପ୍ରକମ୍ପିତ ହେଲା । ଜଣେ ଦୁର୍ଦ୍ଧର୍ଷ ସୈନିକ ଭାବରେ ତାଙ୍କର ଖ୍ୟାତି ବଙ୍ଗଳା ବାହାରେ ମଧ୍ୟ ପରିବ୍ୟାପ୍ତ ହେଲା । ମୀରଜାଫର ନିଜର କୃତଜ୍ଞତା ଦେଖାଇବା ପାଇଁ ବାର୍ଷିକ ତିରିଶ ହଜାର ପାଉଣ୍ଡ ଆୟ କରୁଥିବା ଗୋଟିଏ ଜାଗିର୍

କ୍ଲାଇଭ୍‌ଙ୍କୁ ଦେବାପାଇଁ ମନସ୍ଥ କଲେ । କଥିତ ଅଛି ଯେ, ଏହି ଜାଗିର୍ ନେବା ପାଇଁ କ୍ଲାଇଭ୍ ଜଗତ୍‌ଶେଠ୍ ପ୍ରମୁଖଙ୍କ ଜରିଆରେ ମୀରଜାଫରଙ୍କ ଉପରେ ଚାପ ପକାଇଥିଲେ । କଲିକତା ନିକଟବର୍ତ୍ତୀ ଯେଉଁ ଚବିଶି ପ୍ରଗଣା ଜିଲ୍ଲାକୁ ପୂର୍ବରୁ କମ୍ପାନୀକୁ ଲିଜ୍ ସୂତ୍ରେ ହସ୍ତାନ୍ତର କରାଯାଇଥିଲା ଏବଂ ଯାହାର ଦେୟ ଥିଲା ପ୍ରାୟ ତିନି ଲକ୍ଷ ଟଙ୍କା, ସେହି ଅଞ୍ଚଳର ଜାଗିର କ୍ଲାଇଭ୍‌ଙ୍କୁ ପ୍ରଦାନ କରି ମୀରଜାଫର ସନ୍ତୁଷ୍ଟ ହେଲେ ସତ, କିନ୍ତୁ ଇଷ୍ଟ ଇଣ୍ଡିଆ କମ୍ପାନୀର ସର୍ବ ବରିଷ୍ଠ କର୍ମଚାରୀ ଭାବରେ କ୍ଲାଇଭ୍ ଯେ ଘୁଷ ବା ଲାଞ୍ଚ ନିଅନ୍ତି ତାହା ପ୍ରମାଣିତ ହେଲା । କମ୍ପାନୀର ସବୁ କର୍ମଚାରୀମାନେ ଅଳ୍ପ ଦରମା ପାଉଥିବା ହେତୁ ବିଭିନ୍ନ ଉପାୟରେ ରୋଜଗାର କରୁଥିଲେ ଏବଂ କ୍ଲାଇଭ୍ ମଧ୍ୟ ସେହି ପନ୍ଥା ଅବଲମ୍ବନ କରିବାକୁ କୁଣ୍ଠିତ ହେଲେ ନାହିଁ ।

ମୀରଜାଫର କ୍ଲାଇଭ୍‌ଙ୍କୁ ସନ୍ତୁଷ୍ଟ କରିବାପାଇଁ ସବୁପ୍ରକାର ଉଦ୍ୟମ କରୁଥିଲେ ମଧ୍ୟ ସେ ଅନ୍ତରରେ ଇଂରେଜମାନଙ୍କୁ ଘୃଣା କରୁଥିଲେ ଓ ଯେ କୌଣସି ବାହ୍ୟଶକ୍ତି ସହିତ ମିଶି ବଙ୍ଗଳାରୁ ଇଂରେଜମାନଙ୍କୁ ବିତାଡ଼ିତ କରିବାପାଇଁ ଗୁପ୍ତ ଯୋଜନାମାନ ପ୍ରସ୍ତୁତ କରୁଥିଲେ । ଏହି ସମୟରେ ଡଚ୍‌ମାନଙ୍କର ହୁଗୁଳୀ ନଦୀ କୂଳରେ ଅବସ୍ଥିତ ଚିନ୍‌ସୁରାରେ ଗୋଟିଏ ଛୋଟ ବାଣିଜ୍ୟକେନ୍ଦ୍ର ଥିଲା । ସେମାନେ ମଧ୍ୟ ଇଂରେଜମାନଙ୍କ କର୍ତ୍ତୃତ୍ୱକୁ ବରଦାସ୍ତ କରୁନଥିଲେ । ମୀରଜାଫରଙ୍କ ଜ୍ଞାତସାରରେ ଏବଂ ତାଙ୍କର ପରୋକ୍ଷ ସମ୍ମତିକ୍ରମେ ଡଚ୍‌ମାନେ ଏକହଜାର ୟୁରୋପିଆନ୍ ଓ ମାଳୟ ସୈନ୍ୟସହ ଦକ୍ଷିଣଭାରତର ନାଗାପଟ୍ଟମ୍ ଅଭିମୁଖେ ଯାତ୍ରା କଲେ । ଜୁଲାଇ ୧୭୫୯ ମସିହାରେ ଏ ସଂବାଦ କ୍ଲାଇଭ୍‌ଙ୍କ ନିକଟରେ ପହଞ୍ଚିଲା । ଇଂରେଜମାନେ ନବାବ ମୀରଜାଫରଙ୍କୁ ଧମକ ଦେବାରୁ ସେ ଅତ୍ୟନ୍ତ ଅପ୍ରତିଭ ହୋଇ ଡଚ୍ ସୈନ୍ୟବାହିନୀକୁ ବଙ୍ଗଳାରେ ପ୍ରବେଶ କରିବାକୁ ନିଷେଧ କଲେ, କିନ୍ତୁ କାର୍ଯ୍ୟତଃ କୌଣସି ପଦକ୍ଷେପ ନନେଇ ସେ ମୁର୍ଶିଦାବାଦ ଫେରିଗଲେ । ମୁର୍ଶିଦାବାଦରୁ କମ୍ପାନୀର ପ୍ରତିନିଧି ୱାରେନ୍ ହେଷ୍ଟିଂସ୍ ସଂବାଦ ପଠାଇଲେ, ମୀରଜାଫର ଭିତରେ ଭିତରେ ଡଚମାନଙ୍କ ସହିତ ଗୁପ୍ତ ମନ୍ତ୍ରଣାରେ ବ୍ୟସ୍ତ, ସେ କୌଣସି ପ୍ରତ୍ୟକ୍ଷ ଡଚ୍ ବିରୋଧୀ ପଦକ୍ଷେପ ନେବାକୁ ପ୍ରସ୍ତୁତ ନାହାଁନ୍ତି । ଡଚ ନୌବାହିନୀ ନାଗାପଟ୍ଟମ୍ ନଯାଇ ବଙ୍ଗଳା ଉପକୂଳରେ ହୁଗୁଳୀ ନଦୀ ମୁହାଣ ଦେଇ କଲିକତା ଅଭିମୁଖେ ଅଭିଯାନ ଆରମ୍ଭ କଲେ । କ୍ଲାଇଭ୍ ନିଷ୍ପତ୍ତି ନେଲେ ଯେ ତୁରନ୍ତ ଡଚ୍‌ମାନଙ୍କ ଗତିରୋଧ କରିବାକୁ ହେବ । ହୁଗୁଳୀ ନଦୀ କୂଳରେ ଅବସ୍ଥିତ ବଡ଼ରାହ ଗ୍ରାମ ନିକଟରେ ଇଂରେଜ ଓ ଡଚ୍‌ମାନଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା ।

ମାତ୍ର ଅଧ ଘଣ୍ଟାଏ ମଧ୍ୟରେ ଡଚ୍‌ମାନେ ସଂପୂର୍ଣ୍ଣ ପରାସ୍ତ ହେଲେ । ହୁଗୁଳୀ ନଦୀରେ ମଧ ଡଚ୍‌ମାନେ ସମଦଶାର ସମ୍ମୁଖୀନ ହେଲେ । ଦୁଇଘଣ୍ଟା ଯୁଦ୍ଧପରେ ଇଂରେଜମାନଙ୍କର ତିନୋଟି ବଡ଼ ଯୁଦ୍ଧଜାହାଜ ନିକଟରେ ଡଚ୍‌ମାନଙ୍କର ସାତଟି ଜାହାଜରୁ ଛ'ଟି ଆତ୍ମସମର୍ପଣ କଲେ ଓ ଗୋଟିଏ ଜାହାଜ କେବଳ ସମୁଦ୍ର ଆଡ଼କୁ ପଳାଇଯିବାକୁ ସମର୍ଥ ହୋଇଥିଲା । କ୍ଲାଇଭ୍ ପ୍ରଥମଥର ବଙ୍ଗଳାର ଗଭର୍ଣ୍ଣର ଥିବା ସମୟରେ ଡଚ୍‌ମାନଙ୍କ ଏହି ଶୋଚନୀୟ ପରାଜୟ ଥିଲା ଏକ ଉଲ୍ଲେଖଯୋଗ୍ୟ ଘଟଣା ।

ଏହି ସମୟରେ କମ୍ପାନୀର ଲଣ୍ଡନ ପରିଚାଳନା ବୋର୍ଡ଼ ସହିତ କ୍ଲାଇଭ୍‌ଙ୍କର ଗୁରୁତର ମତଭେଦ ହେଲା । ବୋର୍ଡ଼ କର୍ତ୍ତୃପକ୍ଷ କ୍ଲାଇଭ୍ ଓ ବେଙ୍ଗଲ କାଉନ୍‌ସିଲର ସଭ୍ୟମାନଙ୍କୁ ଅତି ରୁକ୍ଷ ଭାଷାରେ ଏକ କଡ଼ା ଚିଠି ଲେଖିଲେ । ତାର ପ୍ରତ୍ୟୁତ୍ତରରେ କ୍ଲାଇଭ୍ ଓ କେତେଜଣ ସଦସ୍ୟ ତାର ଦୃଢ଼ ପ୍ରତିବାଦ କଲେ । ପରିସ୍ଥିତି ଏପରି ହେଲା ଯେ କ୍ଲାଇଭ୍ ଆଉ ଅଧିକ ଦିନ ଭାରତରେ ରହିବାକୁ ଇଚ୍ଛାକଲେ ନାହିଁ । ତାଙ୍କର ସ୍ୱାସ୍ଥ୍ୟ ମଧ୍ୟ ଭଲ ରହୁନଥିଲା । ସେ ଇଂଲଣ୍ଡ ଫେରିଯିବାକୁ ନିଷ୍ପତ୍ତି ନେଲେ । କ୍ଲାଇଭ୍ ଆଶା କରୁଥିଲେ ଯେ ସତ୍ ଓ ଅସତ୍ ଉପାୟରେ ଅର୍ଜନ କରିଥିବା ଅଚଳାଚଳ ସଂପତ୍ତିକୁ ସେ ଇଂଲଣ୍ଡରେ ରହି ଆରାମ୍‌ରେ ଉପଭୋଗ କରିପାରିବେ ଏବଂ ଆବଶ୍ୟକ ହେଲେ ରାଜନୀତିରେ ଭାଗ ନେବେ । ଶେଷରେ ୧୭୬୦ ମସିହା ଜାନୁଆରୀ ମାସରେ କ୍ଲାଇଭ୍‌ଙ୍କ ଜାହାଜ ଇଂଲଣ୍ଡ ଅଭିମୁଖେ ଯାତ୍ରା ଆରମ୍ଭ କଲା । କିନ୍ତୁ ଭାରତ ଛାଡ଼ିବା ପୂର୍ବରୁ ଦକ୍ଷିଣରେ ଫରାସୀମାନଙ୍କର ପରାଜୟ ପାଇଁ ସେ ଯଥାବିଧି ବ୍ୟବସ୍ଥା କରିଗଲେ ।



# କର୍ଣ୍ଣାଟକରେ ଲାଲିଙ୍କ ପରାଜୟ

୧୭୫୭ ମସିହାର ଶେଷ ଆଡ଼କୁ ପଣ୍ଡିଚେରୀର ଫ୍ରେଞ୍ଚ ଅଧିକାରୀମାନେ ଅନେକ ଯୁଦ୍ଧ ସରଞ୍ଜାମ ୟୁରୋପରୁ ସଂଗ୍ରହ କରିବାକୁ ସମର୍ଥ ହୋଇଥିଲେ । ପରବର୍ଷ ଡୁପ୍ଲେଙ୍କ ପରିବର୍ତ୍ତେ ଡି. ଲାଲି ଭାରତରେ ଥିବା ଫ୍ରେଞ୍ଚ୍ ଅଧିକୃତ ଅଞ୍ଚଳଗୁଡ଼ିକର ଗଭର୍ଣ୍ଣର ଜେନେରାଲ ଓ ପ୍ରଧାନ ସେନାପତି ପଦରେ ନିଯୁକ୍ତ ହେଲେ । ଲାଲି ମଧ୍ୟ ଭାରତ ଅଭିମୁଖେ ଆସିଲାବେଳେ ସାଙ୍ଗରେ କେତେକ ଯୁଦ୍ଧ କମାଣ, ବଛା ବଛା ସୈନ୍ୟ ଓ ଏକ ନୌଭେଳା ଧରି ପଣ୍ଡିଚେରୀରେ ଉପସ୍ଥିତ ହେଲେ । ଫରାସୀ କର୍ତ୍ତୃପକ୍ଷଙ୍କ ପ୍ରସ୍ତୁତିରେ ମାନ୍ଦ୍ରାସରେ ଅବସ୍ଥିତ ଇଷ୍ଟ ଇଣ୍ଡିଆ କମ୍ପାନୀ କର୍ତ୍ତୃପକ୍ଷ ଆତଙ୍କିତ ହୋଇ ଉଠିଲେ ଏବଂ ପୂର୍ବରୁ କ୍ଲାଇଭ୍‌ଙ୍କ ସହିତ ମାନ୍ଦ୍ରାସରୁ କଲିକତା ଆସିଥିବା ସୈନ୍ୟମାନଙ୍କୁ ଫେରାଇ ଦେବାପାଇଁ ଗଭର୍ଣ୍ଣର ପିଗଟ୍ କ୍ଲାଇଭ୍‌ଙ୍କୁ ଅନୁରୋଧ କଲେ । କ୍ଲାଇଭ୍ ବାଧ୍ୟ ହୋଇ କଲିକତାରେ ଅବସ୍ଥିତ ସୈନ୍ୟମାନଙ୍କ ମଧ୍ୟରୁ ଅର୍ଦ୍ଧାଧିକ ସୈନ୍ୟଙ୍କୁ ନେଇ ଗଠିତ ଏକ ସୁସଂଗଠିତ ସୈନ୍ୟବାହିନୀକୁ କର୍ଣ୍ଣେଲ ଫୋର୍ଡ୍‌ଙ୍କ ନେତୃତ୍ୱରେ ଅଗଷ୍ଟ ୧୭୫୮ ମସିହାରେ ମାନ୍ଦ୍ରାସ ପଠାଇଲେ ଏବଂ ନର୍ଥ ସିରକାର ଜିଲ୍ଲାଗୁଡ଼ିକୁ ଫରାସୀମାନଙ୍କଠାରୁ ପୁନଃଦଖଲ କରିବା ପାଇଁ ଫୋର୍ଡ୍‌ଙ୍କୁ ନିର୍ଦ୍ଦେଶ ଦେଲେ । ସେତେବେଳେ ଫରାସୀ ସେନାପତି ବୁସି ହାଇଦ୍ରାବାଦ୍‌ରୁ ପଣ୍ଡିଚେରୀ ପ୍ରତ୍ୟାବର୍ତ୍ତନ କରିଥିବା ହେତୁ ପରିସ୍ଥିତିର ସୁଯୋଗ ନେଇ ଜଣେ ସ୍ଥାନୀୟ ରାଜା ଫ୍ରେଞ୍ଚ୍ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ଇଂରେଜମାନଙ୍କ ସାହାଯ୍ୟପ୍ରାର୍ଥୀ ହୋଇଥାନ୍ତି । କ୍ଲାଇଭ୍ ଅନୁମାନ କଲେ ଯେ ନର୍ଥ ସିରକାର ଜିଲ୍ଲାଗୁଡ଼ିକ ଉପରେ ଆକ୍ରମଣ ହେଲେ ଲାଲି ଉତ୍ତର ଦିଗ ପ୍ରତି ଧ୍ୟାନ ଦେବାକୁ ବାଧ୍ୟ ହେବେ ଓ ଏକ ସମୟରେ ମାନ୍ଦ୍ରାସ ଉପରେ ଆକ୍ରମଣ କରିବାକୁ ସାହସ କରିବେ ନାହିଁ । ତାଙ୍କର ଅନୁମାନ ଯଥାର୍ଥ ପ୍ରମାଣିତ ହେଲା ।

କର୍ଣ୍ଣେଲ ଫୋର୍ଡ୍ ସେପ୍ଟେମ୍ବର ଶେଷ ଆଡ଼କୁ ବିଶାଖାପଟ୍ଟନମ୍ ଅଭିଯାନ ଆରମ୍ଭ କଲେ । ତାଙ୍କର ସହଯୋଗୀ ଥିଲେ ପାଞ୍ଚଶହ ୟୁରୋପୀୟ ସୈନ୍ୟ, ଦୁଇହଜାର ଭାରତୀୟ ସିପାହୀ ଏବଂ ସେମାନଙ୍କ ସହଥିଲା କମାଣ ଆଦି କେତେକ ଆଧୁନିକ ଯୁଦ୍ଧ ସରଞ୍ଜାମ । ଏହି ସିପାହୀମାନଙ୍କ ମଧ୍ୟରେ କ୍ଲାଇଭଙ୍କଦ୍ୱାରା ତାଲିମପ୍ରାପ୍ତ ଦୁଇ ବାଟାଲିୟନ ସିପାହୀ ଥିଲେ ଏବଂ ସେମାନଙ୍କ ମଧ୍ୟରୁ ଗୋଟିଏ ବାଟାଲିୟନ୍ ପଲାସି ଯୁଦ୍ଧରେ ଭାଗ ନେଇଥିଲେ । ଫୋର୍ଡ଼ଙ୍କର ଏହି ଅଭିଯାନ ଆଶାତୀତ ଭାବରେ ସଫଳ ହୋଇଥିଲା । ଯଦିଓ ଫରାସୀମାନଙ୍କର ସୈନ୍ୟସଂଖ୍ୟା ଓ କମାଣସଂଖ୍ୟା ଅଧିକ ଥିଲା, ଯୁଦ୍ଧ କୌଶଳ ଓ ସାମରିକ ତାଲିମ ଦୃଷ୍ଟିରୁ ଫୋର୍ଡ଼ଙ୍କର ସୈନ୍ୟବାହିନୀ ଅନେକ ଟାଣୁଆ ଥିଲେ । ବିଶାଖାପଟ୍ଟନମ୍ ଯୁଦ୍ଧରେ ଫରାସୀମାନେ ପରାସ୍ତ ହେଲେ ଏବଂ ସମସ୍ତ କମାଣ ଏବଂ ଯୁଦ୍ଧ ସରଞ୍ଜାମ ଆଦି ଛାଡ଼ି ମସୁଲିପଟ୍ଟମ୍‌କୁ ପଳାୟନ କଲେ । ଫୋର୍ଡ଼ ତୁରନ୍ତ ଫରାସୀମାନଙ୍କର ପିଛା ନକରି ଅତ୍ୟନ୍ତ ଅନୁତପ୍ତ ହେଲେ, କିନ୍ତୁ ତାଙ୍କର ନିଷ୍ପତ୍ତି ଥିଲା ଯଥାର୍ଥ । ଯାହାହେଉ କେତେମାସ ପରେ ଫୋର୍ଡ଼ ମସୁଲିପଟ୍ଟମ୍ ଅଭିଯାନ ପୁନଶ୍ଚ ଆରମ୍ଭ କଲେ । ବ୍ରିଟିଶ୍ କମାଣ ଆକ୍ରମଣରେ ତ୍ରସ୍ତ ହୋଇ ଫରାସୀମାନେ ସହର ଛାଡ଼ି ଫୋର୍ଟରେ ଆଶ୍ରୟ ନେଇଥିଲେ । କିନ୍ତୁ କମାଣ ଆକ୍ରମଣ ବିଶେଷ ଫଳପ୍ରଦ ହେବା ପୂର୍ବରୁ ଇଂରେଜମାନଙ୍କର ଗୋଳାବାରୁଦ ଆଦି ସରି ଆସିଲା । ଏହି ସମୟରେ ପୁଣି ଖବର ମିଳିଲା ଯେ ସଲାବତ ଜଙ୍ଗ୍ ହାଇଦ୍ରାବାଦରୁ ଚାଳିଶ ହଜାର ସୈନ୍ୟ ଧରି ଫରାସୀମାନଙ୍କୁ ସାହାଯ୍ୟ କରିବାପାଇଁ ଚାଳିଶ ମାଇଲ ଦୂରରେ ପହଞ୍ଚିଗଲେଣି । କର୍ଣ୍ଣେଲ ଫୋର୍ଡ଼ ଏକ ଅତି ସାହସିକ ପଦକ୍ଷେପ ନେଲେ । ଦିନସାରା ମସୁଲିପଟ୍ଟମ୍ ଉପରେ କମାଣରୁ ଗୋଳାବର୍ଷଣ କରି ରାତି ଗୋଟାଏ ବେଳେ ଏକ ଅତର୍କିତ ଆକ୍ରମଣ କରିବା ଫଳରେ ଫରାସୀମାନେ ଭୀତତ୍ରସ୍ତ ହୋଇ ଆତ୍ମସମର୍ପଣ କଲେ ଏବଂ ସୂର୍ଯ୍ୟୋଦୟ ପୂର୍ବରୁ ମସୁଲିପଟ୍ଟମ୍ ଦୁର୍ଗ ଇଂରେଜମାନଙ୍କର ହସ୍ତଗତ ହେଲା । ଏ ପରାଜୟ ଫରାସୀମାନଙ୍କ ପାଇଁ ଥିଲା ଏକ ଦାରୁଣ ଦୁର୍ବିପାକ ।

କର୍ଣ୍ଣେଲ ଫୋର୍ଡ଼ଙ୍କର ବିଜୟଯାତ୍ରା ଲାଲିଙ୍କର ସୈନ୍ୟବାହିନୀର ମନୋବଳ ଭାଙ୍ଗି ଦେଇଥିଲା ଏବଂ ଦାକ୍ଷିଣାତ୍ୟରେ ଦୀର୍ଘଦିନ ଧରି ଫରାସୀମାନଙ୍କର କର୍ତ୍ତୃତ୍ୱ ଉପରେ ଫୋର୍ଡ଼ଙ୍କର ଆକ୍ରମଣ ଥିଲା ଏକ ଚରମ ଆଘାତ । ଫରାସୀମାନଙ୍କର ଜୟଲାଭର ସମ୍ଭାବନା ନଦେଖି ସଲାବତ୍ ଜଙ୍ଗ ମଧ୍ୟ କ୍ରମେ ସେମାନଙ୍କଠାରୁ ଦୂରେଇ ଗଲେ ଓ ପୂର୍ବରୁ ଫରାସୀମାନଙ୍କର ଦଖଲରେ ଥିବା ବିସ୍ତୃତ ଅଞ୍ଚଳ ସାହାଯ୍ୟ ପାଇବା

ଆଶାରେ ଇଂରେଜମାନଙ୍କୁ ଛାଡ଼ି ଦେଇଥିଲେ । ଦୀର୍ଘସ୍ଥାୟୀ ସମର ପରିଚାଳନା କରିବା ପାଇଁ ଲାଲିଙ୍କର ଅର୍ଥବଳ ମଧ୍ୟ ନଥିଲା । କ୍ଲାଇଭ୍ ବଙ୍ଗଳାରୁ ମାଡ୍ରାସର ସୁରକ୍ଷାପାଇଁ ଅଧିକ ସୈନ୍ୟ ପଠାଇଥିଲେ ଓ ତତ୍‌ସହ ଅର୍ଥ ଓ ଯୁଦ୍ଧ ସରଞ୍ଜାମ ଆଦି ପଠାଇ ମାଡ୍ରାସ କମ୍ପାନୀକୁ ଯଥାଶକ୍ତି ସାହାଯ୍ୟ କରିଥିଲେ । ଲାଲିଙ୍କର ତାଞ୍ଜୋର ଅଭିଯାନ ମଧ୍ୟ ବିଫଳତାର ସମ୍ମୁଖୀନ ହେଲା । ସେ ତାଞ୍ଜୋର ରାଜାଙ୍କଠାରୁ ଛପନ ଲକ୍ଷ ଟଙ୍କା ଦାବି କରିଥିଲେ । ରାଜା ଛପନଲକ୍ଷ ବଦଳରେ ମାତ୍ର ତିନିଲକ୍ଷ ଓ ପରେ ତାକୁ ବଢ଼ାଇ ପାଞ୍ଚଲକ୍ଷ ଟଙ୍କା ଦେବାକୁ ସମ୍ମତ ହେଲେ । ଲାଲି କ୍ରୁଦ୍ଧ ହୋଇ ତାଞ୍ଜୋର ରାଜାଙ୍କୁ ଧମକ ଦେବାରୁ, ରାଜା ଶେଷରେ ଲଢ଼ିବାକୁ ନିଷ୍ପତ୍ତି ନେଲେ । ଏହି ସମୟରେ ଲାଲିଙ୍କ ନିକଟରେ ସଂବାଦ ମିଳିଲା ଯେ ଇଂରେଜମାନେ ମାଡ୍ରାସରୁ ବାହାରି ପଣ୍ଡିଚେରୀ ଆକ୍ରମଣ କରିବାପାଇଁ ଉଦ୍ୟତ ହେଉଛନ୍ତି । ଏ ସଂବାଦରେ ଅବଶ୍ୟ କୌଣସି ସତ୍ୟତା ନଥିଲା, କିନ୍ତୁ ଲାଲି ଏଥିରେ ବିଶ୍ୱାସ କରି ତାଞ୍ଜୋରରୁ ସୈନ୍ୟ ପ୍ରତ୍ୟର୍ପଣ କଲେ ।

ମାଡ୍ରାସ ଆକ୍ରମଣ କରିବାପାଇଁ ଏ ମଧ୍ୟରେ ଫ୍ରେଞ୍ଚମାନଙ୍କୁ ଅନେକ ସୁବିଧା ମିଳିଥିଲା, କିନ୍ତୁ ଅର୍ଥର ଅଭାବ ଓ ଅନ୍ୟାନ୍ୟ କାରଣରୁ ଲାଲି ଏହାର ସୁଯୋଗ ନେଇପାରିଲେ ନାହିଁ । ପରନ୍ତୁ ମାଡ୍ରାସ ଆକ୍ରମଣ ଉଦ୍ଦେଶ୍ୟରେ ସେନାପତି ବୁସିଙ୍କୁ ହାଇଦ୍ରାବାଦରୁ ପଣ୍ଡିଚେରୀ ନେଇଆସିବା ପରେ ଲାଲି ଓ ବୁସିଙ୍କ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ଦେଖାଦେଲା । ବୁସି ହାଇଦ୍ରାବାଦରେ ସ୍ୱାଧୀନ ଭାବରେ କାର୍ଯ୍ୟ କରୁଥିଲେ । ପଣ୍ଡିଚେରୀ ଫେରି ଲାଲିଙ୍କ ଅଧୀନରେ କାର୍ଯ୍ୟ କରିବାକୁ ସେ ଅପମାନଜନକ ବୋଧ କଲେ । ପରିଶେଷରେ ୧୭୫୮ ମସିହା ଡିସେମ୍ବର ମାସରେ ଲାଲି ଯେତେବେଳେ ମାଡ୍ରାସ ଅଭିଯାନ ଆରମ୍ଭ କଲେ, ସେତେବେଳକୁ ଇଂରେଜମାନେ ନିଜକୁ ଯଥାବିଧି ପ୍ରସ୍ତୁତ କରିସାରିଥିଲେ । ବଙ୍ଗ ଦେଶରୁ ଆସୁଥିବା ଅର୍ଥ ଏବଂ ଯୁଦ୍ଧ ସରଞ୍ଜାମ ଆଦି ମାଡ୍ରାସରେ ଅଧିଷ୍ଠିତ ଇଷ୍ଟ ଇଣ୍ଡିଆ କମ୍ପାନୀର କର୍ମକର୍ତ୍ତାମାନଙ୍କୁ ବିଶେଷ ସାହାଯ୍ୟପ୍ରଦ ହେଲା । ତଦ୍ଦୁପରି ମାଡ୍ରାସର ଗଭର୍ଣ୍ଣର ପିଗଟ୍, ସାମରିକ ସେନାପତି ଷ୍ଟ୍ରିଞ୍ଜର ଲରେନ୍‌ସ ଏବଂ ସାର ଜନ୍ ଆଦି ଇଂଜିନିୟରମାନେ ଥିଲେ ଅତି ଦକ୍ଷ ଓ ପରାକ୍ରମଶାଳୀ ଏବଂ ସେମାନଙ୍କର ସୁନିର୍ଦ୍ଦେଶ ହେତୁ ଫରାସୀ ବାହିନୀ ନିୟନ୍ତ୍ରଣରେ ଅଧିକ ସୈନ୍ୟ ଥିଲେ ମଧ୍ୟ, ଲାଲି ମାଡ୍ରାସ ଦଖଲ କରିବାର ଆଶା ତ୍ୟାଗ କଲେ । ୧୭୫୯ ମସିହା ଫେବୃଆରୀ ମାସରେ ଛଅଟି ଇଂରେଜ ଯୁଦ୍ଧଜାହାଜ ଛଅଶହ ସୈନ୍ୟଙ୍କୁ ନେଇ ମାଡ୍ରାସରେ ପହଞ୍ଚିଲା । ସେମାନଙ୍କ ଆଗମନ ଲାଲିଙ୍କୁ ଏପରି ଭୟଭୀତ କରିଥିଲା

ଯେ ସେ ଆହତ ସୈନ୍ୟ ଓ ଯୁଦ୍ଧ ସରଞ୍ଜାମ ଆଦି ପରିତ୍ୟାଗ କରି ପଣ୍ଡିଚେରୀକୁ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ ମଧ କୌଣସି ଶୃଙ୍ଖଳା ନଥିଲା । ଏ ପରାଜୟରେ ତାଙ୍କର ବିରୋଧୀମାନେ ବରଂ ଉଲ୍ଲସିତ ହୋଇଥିଲେ । ଲାଲି ଅବଶ୍ୟ ଜଣେ ଟାଣୁଆ ଯୋଦ୍ଧା ଥିଲେ । କିନ୍ତୁ ପରାଜୟର ହାହାକାର ମଧ୍ୟରେ ପଣ୍ଡିଚେରୀରେ ସ୍ୱପକ୍ଷ ସୈନ୍ୟ ଓ କର୍ମଚାରୀମାନଙ୍କର ଆନନ୍ଦ ଉଲ୍ଲାସ ଲାଲିଙ୍କୁ ସ୍ତମ୍ଭୀଭୂତ କରିଦେଇଥିଲା ।

ଏ ମଧ୍ୟରେ ମାଡ୍ରାସରେ ଅବସ୍ଥାପିତ ଇଂରେଜ କର୍ତ୍ତୃପକ୍ଷଙ୍କ ମଧ୍ୟରେ ବିବାଦ ଆରମ୍ଭ ହେବା ହେତୁ ପଣ୍ଡିଚେରୀ ଅଭିଯାନ ବିଳମ୍ବିତ ହେଲା । ମାଡ୍ରାସରେ ସାମରିକ କର୍ମଚାରୀମାନଙ୍କ ମଧ୍ୟରେ କର୍ଣ୍ଣେଲ କୁଟ୍ ଥିଲେ ସର୍ବ ବରିଷ୍ଠ ଏବଂ ଦ୍ୱିତୀୟ ସ୍ଥାନରେ ଥିଲେ କର୍ଣ୍ଣେଲ ମନ୍‌ସୋନ୍ । ମନସୋନ୍ ତାଙ୍କର ଜଣେ ସଂପର୍କୀୟଙ୍କ ଜରିଆରେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ପିଟ୍‌ଙ୍କୁ ପ୍ରଭାବିତ କରି ଲେଫ୍‌ଟନାଣ୍ଟ କର୍ଣ୍ଣେଲ ପଦବୀକୁ ଉନ୍ନୀତ ହେଲେ । ଇଷ୍ଟ ଇଣ୍ଡିଆ କମ୍ପାନୀର ବୋର୍ଡ୍ ଅଫ ଡାଇରେକ୍ଟର ମଣ୍ଡଳୀ କୁଟ୍‌ଙ୍କ ପ୍ରତି ଅନ୍ୟାୟ କରାଯାଇଛି ବୋଲି ପ୍ରତିବାଦ କଲେ । ପରିଶେଷରେ କୁଟ୍‌ଙ୍କୁ ମଧ୍ୟ ପଦୋନ୍ନତି ଦିଆଗଲା । କିନ୍ତୁ ଏହି ପ୍ରକ୍ରିୟାରେ ମନ୍‌ସୋନ୍‌ଙ୍କ ବରିଷ୍ଠତାରେ କୌଣସି ବାଧା ଆସିଲା ନାହିଁ । କମ୍ପାନୀଙ୍କ ନିର୍ଦ୍ଦେଶକ୍ରମେ କୁଟ୍‌ଙ୍କୁ ବଙ୍ଗଳାକୁ ସ୍ଥାନାନ୍ତରିତ କରାଗଲା । କିନ୍ତୁ ଭାଗ୍ୟର ବିଡ଼ମ୍ବନା ! ପଣ୍ଡିଚେରୀ ଆକ୍ରମଣରେ ମନ୍‌ସୋନ୍ ଗୁରୁତର ଆହତ ହୋଇ ସଂପୂର୍ଣ୍ଣ ଅକର୍ମଣ୍ୟ ହୋଇଗଲେ । କୁଟ୍‌ଙ୍କର ବଙ୍ଗଳାକୁ ସ୍ଥାନାନ୍ତର ଆଦେଶକୁ କମ୍ପାନୀ କର୍ତ୍ତୃପକ୍ଷ ରଦ୍ଦ କଲେ ଓ ସେ ପଣ୍ଡିଚେରୀ ଅଭିଯାନର ଦାୟିତ୍ୱ ନେଲେ ।

ଦୀର୍ଘ ଚାରିମାସ ଧରି ଫରାସୀମାନେ ପ୍ରତିରୋଧ ଚାଲୁ ରଖିଲେ । କିନ୍ତୁ କ୍ରମେ ସେମାନଙ୍କର ମହଜୁଦ୍ ଥିବା ଖାଦ୍ୟ ଓ ଯୁଦ୍ଧ ସରଞ୍ଜାମ ଶେଷ ହୋଇ ଆସିଲା । ଅବଶେଷରେ ୧୭୬୧ ମସିହା ଜାନୁଆରୀ ୧୫ ତାରିଖରେ ପଣ୍ଡିଚେରୀ କର୍ତ୍ତୃପକ୍ଷ ନିଃସର୍ତ୍ତ ଆତ୍ମସମର୍ପଣ କଲେ । ଇଂରେଜ ସୈନ୍ୟମାନେ ପଣ୍ଡିଚେରୀର ଫୋର୍ଟ ଓ କୋଠାବାଡ଼ି ଆଦି ଭାଙ୍ଗି ଧୂଳିସାତ୍ କରିଦେଲେ । ଫରାସୀ ସରକାର ଏ ପରାଜୟ ପାଇଁ ଲାଲିଙ୍କୁ ଦାୟୀ କଲେ । ତାଙ୍କ ବିରୁଦ୍ଧରେ ଦେଶର ସ୍ୱାର୍ଥ ବିନିମୟ କରିବାର ଅଭିଯୋଗ ହେଲା । ବିଚାରପରେ ଲାଲିଙ୍କୁ ଫାଶୀ ଦିଆଗଲା । ଫ୍ରେଞ୍ଚ୍ ଦାର୍ଶନିକ ଭୋଲଟାୟାରଙ୍କ ଭାଷାରେ "ନ୍ୟାୟର ଖଡ଼ଗ୍ ଧରି ଲାଲିଙ୍କୁ ହତ୍ୟା କରାଗଲା" ।



# ମୀରଜାଫର ଓ ମୀରକାଶିମ୍

ଦାକ୍ଷିଣାତ୍ୟରେ କର୍ଣ୍ଣାଟକର ନବାବ ମହମ୍ମଦ ଅଲ୍ଲୀ ଓ ବଙ୍ଗଳାର ନବାବ ମୀରଜାଫର, ଉଭୟ ଥିଲେ ଇଂରେଜମାନଙ୍କର ମିତ୍ର ଓ ସେମାନଙ୍କ ଉପରେ ନିର୍ଭରଶୀଳ । ଉଭୟ ଇଂରେଜମାନଙ୍କର ସହାୟତାରେ ନବାବ ଗାଦି ଆରୋହଣ କରିଥିଲେ, କିନ୍ତୁ ମୀରଜାଫରଙ୍କର ମତିଗତି ଥିଲା ଭିନ୍ନ । ଯଦିଓ ରବର୍ଟ କ୍ଲାଇଭ୍‌ଙ୍କ ପ୍ରତି ତାଙ୍କର ଖାତିର ଓ ଭୟ ଥିଲା ଏବଂ ତାଙ୍କୁ ଅସନ୍ତୁଷ୍ଟ କରି ସେ ଇଂରେଜମାନଙ୍କର ଶତ୍ରୁତା ଅର୍ଜନ କରିବାକୁ ଚାହୁଁନଥିଲେ; ତଥାପି ବିଦେଶୀ କର୍ତ୍ତୃତ୍ୱ ଓ ନିୟନ୍ତ୍ରଣ ତାଙ୍କ ପକ୍ଷରେ ଥିଲା ଅସହନୀୟ । ଏଣୁ ବହୁ ସମୟରେ ସେ ଇଂରେଜ-ବିରୋଧୀ ଶକ୍ତିମାନଙ୍କ ସହ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ । ସିରାଜଉଦ୍ଦୌଲାଙ୍କ ସମୟରୁ ଇଷ୍ଟ ଇଣ୍ଡିଆ କମ୍ପାନୀକୁ କ୍ଷତିପୂରଣ ବାବଦକୁ ଦେୟ ସେ ପରିଶୋଧ କରୁନଥିଲେ ଅଥଚ ବିପଦ ଆପଦ ପଡ଼ିଲେ ଇଂରେଜମାନଙ୍କ ନିକଟରେ ସାମରିକ ସାହାଯ୍ୟ ପାଇଁ ପ୍ରାର୍ଥୀ ହେଉଥିଲେ ।

୧୭୬୦ ମସିହା ଜାନୁଆରୀ ମାସରେ କ୍ଲାଇଭ୍ ଭାରତ ଛାଡ଼ିବାପରେ ମୋଗଲ ସମ୍ରାଟଙ୍କ ପୁତ୍ର ଶାହଜାଦା ବିହାରର ଜମିଦାରମାନଙ୍କ ପ୍ରରୋଚନାରେ ପୁନର୍ବାର ପାଟନା ଆକ୍ରମଣ ପାଇଁ ଯାତ୍ରା କଲେ । ସେତେବେଳକୁ ଫୋର୍ଡ଼ଙ୍କ ପରିବର୍ତ୍ତେ ମେଜର କାଇଲଏଡ୍ ଇଂରେଜ ସେନାବାହିନୀର ଦାୟିତ୍ୱରେ ଥିଲେ । ମୀରଜାଫରଙ୍କ ବଡ଼ପୁଅ ମିରାନ୍ ପନ୍ଦର ହଜାର ସୈନ୍ୟ ଓ ମେଜର କାଇଲଏଡ୍ ପାଞ୍ଚଶହ ୟୁରୋପିଆନ୍ ସୈନ୍ୟ ସହିତ ପାଟନା ଅଭିମୁଖେ ଅଗ୍ରସର ହେଲେ । ବିହାର ଗଭର୍ଣ୍ଣର ରାମନାରାୟଣ ମୋଗଲ ସେନାପତିଙ୍କ ପ୍ରତରୋଧ କରିବାକୁ ଯାଇ ଆହତ ହେଲେ । କାଇଲଏଡ୍‌ଙ୍କ ସୈନ୍ୟମାନଙ୍କ ଡାହାଣପଟେ ମିରାନ୍ ତାଙ୍କର ପନ୍ଦର ହଜାର ସୈନ୍ୟବାହିନୀକୁ ଧରି ଆକ୍ରମଣ ଆରମ୍ଭ କଲେ । କିନ୍ତୁ ଶାହଜାଦା ଇଂରେଜମାନଙ୍କ ପରିବର୍ତ୍ତେ ମିରାନ୍‌ଙ୍କ

ସୈନ୍ୟମାନଙ୍କ ଉପରେ ମୁଖ୍ୟତଃ ଆକ୍ରମଣ କଲେ । କାଇଲଏଡ୍ ଅବିଳମ୍ବେ ମିରାନ୍‌ଙ୍କ ଦକ୍ଷିଣ ପାର୍ଶ୍ୱକୁ ଯାଇ ଏପରି ତୀବ୍ର ପ୍ରତିଆକ୍ରମଣ କଲେ ଯେ, ଶାହଜାଦାଙ୍କୁ ବାଧ୍ୟ ହୋଇ ପଛଘୁଞ୍ଚା ଦେବାକୁ ପଡ଼ିଲା । କିନ୍ତୁ ମିରାନ୍ ଏ ବିଜୟର ସୁବିଧା ନେଇ ପାରିଲେ ନାହିଁ । ସେ ଶାହଜାଦାଙ୍କୁ ପ୍ରତିଆକ୍ରମଣ କଲେ ନାହିଁ ବା ଇଂରେଜ ସେନାପତି କାଇଲଏଡ୍‌ଙ୍କୁ ଶତ୍ରୁର ପିଛା କରିବାକୁ ଅନୁମତି ଦେଲେ ନାହିଁ । ଏହିପରି ଗୋଟାଏ ସପ୍ତାହ ବିତିଯିବା ପରେ ଶାହଜାଦା କୌଶଳ କରି ଅନ୍ୟ ରାସ୍ତା ଦେଇ ପୁଣିଥରେ ସିଧା ମୁର୍ଶିଦାବାଦ ଆଡ଼କୁ ଧାଇଁ ଚାଲିଲେ । ଏ ଖବର ପାଇ ମୀରଜାଫର କଲିକତାରୁ ୟୁରୋପୀୟ ସୈନ୍ୟଙ୍କର ସହାୟତା ଲୋଡ଼ିଲେ ସତ୍ୟ, କିନ୍ତୁ ଶାହଜାଦାଙ୍କ ସହିତ ଅର୍ଥ ବିନିମୟରେ ସନ୍ଧିପାଇଁ ଗୁପ୍ତମନ୍ତ୍ରଣା ଚାଲୁ ରଖିଲେ । ଶାହଜାଦା ହଠାତ୍ ଆକ୍ରମଣ କରିଥିଲେ ସହଜରେ ମୁର୍ଶିଦାବାଦ ଦଖଲ କରିପାରିଥାଆନ୍ତେ, କିନ୍ତୁ ଏ ମଧ୍ୟରେ କାଇଲଏଡ୍ ଓ ମିରାନ୍ ତାଙ୍କର ଅନୁସରଣ କରି ମୁର୍ଶିଦାବାଦରେ ପହଞ୍ଚିଯିବାରୁ ଶାହଜାଦା ପୁନଶ୍ଚ ପାଟନାକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ତୃତୀୟଥର ପାଇଁ ପାଟନା ଅବରୋଧ କଲେ ।

ଏ ପରିସ୍ଥିତିରେ କାଇଲଏଡ୍ କ୍ୟାପ୍‌ଟେନ୍ ନକ୍ସଙ୍କ ନେତୃତ୍ୱରେ ଦୁଇଶହ ୟୁରୋପୀୟ ସୈନ୍ୟ ଓ ଗୋଟିଏ ବାଟାଲିଅନ୍ ଲାଲ୍ ପଲଟନ୍ ଓ ମିରାନ୍‌ଙ୍କ ସେନା ସହ ପାଟନାରେ ଶାହଜାଦାଙ୍କର ସମ୍ମୁଖୀନ ହେଲେ । କାଇଲଏଡ୍ ବିହାରର ବିଦ୍ରୋହୀ ଜମିଦାରମାନଙ୍କୁ ଧମକ ଦେଇ ଶାହଜାଦାଙ୍କୁ ସାହାଯ୍ୟ ଦେବାରୁ ନିବୃତ୍ତ କରାଇଲେ । କ୍ୟାପ୍‌ଟେନ୍ ନକ୍ସଙ୍କର ଅତର୍କିତ ଆକ୍ରମଣରେ ଶାହଜାଦା ତ୍ରସ୍ତହୋଇ ଅବରୋଧରୁ ଓହରିଗଲେ । ଏହି ସମୟରେ ଖବର ଆସିଲା ଯେ, ମୋଗଲ ସମ୍ରାଟଙ୍କ ଉଜିର (ପ୍ରଧାନମନ୍ତ୍ରୀ) ସମ୍ରାଟଙ୍କୁ ହତ୍ୟା କରିଛନ୍ତି । ଶାହଜାଦା ମୋଗଲ ଗାଦି ପାଇବା ଆଶାରେ ପାଟନା ଛାଡ଼ି ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କଲେ । କିନ୍ତୁ ଏ ସତ୍ତ୍ୱେ ମୀରଜାଫରଙ୍କର ଦୁର୍ଯୋଗର ସମାପ୍ତି ଘଟିଲା ନାହିଁ । ତାଙ୍କ ପୁତ୍ର ମିରାନ୍ ଗୋଟିଏ ତମ୍ବୁ ମଧ୍ୟରେ ଶୋଇଥିବା ସମୟରେ ରାତିରେ ବିଜୁଳି ଚଡ଼ଚଡ଼ି ପଡ଼ି ତାଙ୍କର ମୃତ୍ୟୁ ହେଲା । କେହି କେହି କହନ୍ତି ଯେ, ମିରାନଙ୍କର ସାମରିକ ଅସହଯୋଗ ଓ ବିଶୃଙ୍ଖଳ ଆଚରଣ ହେତୁ କାଇଲଏଡ୍ ତାଙ୍କୁ ହତ୍ୟା କରାଇଥିଲେ । ଚଡ଼ଚଡ଼ି ପଡ଼ି ତାଙ୍କର ମୃତ୍ୟୁ ହେବା ସତ୍ୟ ନୁହେଁ ।

କ୍ଲାଇଭ୍ ଯିବା ପୂର୍ବରୁ ତାଙ୍କର ପରାମର୍ଶକ୍ରମେ ମାଡ୍ରାସର ଜଣେ ସୁଦକ୍ଷ ଅଫିସର ଭାନ୍‌ସିଟାର୍ଟ ବଙ୍ଗଳାର ଗଭର୍ଣ୍ଣର ରୂପେ ନିଯୁକ୍ତ ହୋଇଥିଲେ । କିନ୍ତୁ ଭାନ୍‌ସିଟାର୍ଟ ଜୁଲାଇ ମାସରେ ତାଙ୍କର ଦାୟିତ୍ୱ ଗ୍ରହଣ କଲେ । ଏଇ ମଧ୍ୟବର୍ତ୍ତୀ କାଳରେ କମ୍ପାନୀର କାର୍ଯ୍ୟ ପରିଚାଳନାର ମୁଖ୍ୟ ଦାୟିତ୍ୱରେ ଥିଲେ ମୁର୍ଶିଦାବାଦର ଅବସ୍ଥାପିତ ଇଂରେଜ ପ୍ରତିନିଧି ୱାରେନ୍ ହେଷ୍ଟିଂସ୍ ଓ ବଙ୍ଗଳା କାଉନ୍‌ସିଲର ସଦସ୍ୟ ହଲୱେଲ । ହଲୱେଲଙ୍କ ମତରେ ପରିସ୍ଥିତିର ସୁଯୋଗ ନେଇ ମୀରଜାଫରଙ୍କୁ ନବାବ ଗାଦିରୁ ବିତାଡ଼ିତ ନ କଲେ କମ୍ପାନୀର ଋଣ ଆଦାୟ ହୋଇପାରିବ ନାହିଁ । ଏଣୁ ତାଙ୍କ ମତରେ ମୀରଜାଫରଙ୍କ ଜ୍ୱାଇଁ ମୀରକାଶିମ୍‌ଙ୍କୁ ନବାବଙ୍କ ଦେୱାନ ରୂପେ ନିଯୁକ୍ତ କଲେ, ସେ ଦକ୍ଷତାର ସହ କାର୍ଯ୍ୟ ପରିଚାଳନା କରିପାରିବେ । ମିରାନଙ୍କ ମୃତ୍ୟୁପରେ ମୀରକାଶିମ୍‌ଙ୍କ ଭିତରେ ନବାବ ଗାଦି ଦଖଲ କରିବାର ସ୍ୱପ୍ନ ଉଙ୍କି ମାରୁଥିଲା । କଲିକତାଠାରେ ଭାନ୍‌ସିଟାର୍ଟଙ୍କ ସହିତ ଆଲୋଚନା ସମୟରେ ମୀରକାଶିମ୍ ପ୍ରସ୍ତାବ ଦେଲେ, ତାଙ୍କୁ ଯଦି ଶାସନ ପରିଚାଳନା କରିବାର ଦାୟିତ୍ୱ ଦିଆଯାଏ, ତାହାହେଲେ ସେ କମ୍ପାନୀର ଆର୍ଥିକ ସମସ୍ୟାର ସମାଧାନ କରିଦେଇପାରିବେ । ଭାନ୍‌ସିଟାର୍ଟଙ୍କର ପରାମର୍ଶଦାତା କାଉନ୍‌ସିଲ ନିଷ୍ପତ୍ତି ନେଲେ ଯେ, ମୀରଜାଫର ନାମକୁ ମାତ୍ର ନବାବ ହୋଇ ରହିବେ ଏବଂ ମୀରକାଶିମ୍ ଶାସନ ପରିଚାଳନା କରିବେ । କମ୍ପାନୀର ରାଜସ୍ୱ ଭରଣା କରିବା ପାଇଁ ମୀରକାଶିମ୍ ବର୍ଦ୍ଧମାନ, ମେଦିନୀପୁର ଓ ଚଟ୍ଟଗ୍ରାମ ଆଦି ତିନୋଟି ଜିଲ୍ଲା କମ୍ପାନୀଙ୍କୁ ହସ୍ତାନ୍ତର କରିବାପାଇଁ ସମ୍ମତ ହେଲେ ଏବଂ ଏହି ମର୍ମରେ ଇଷ୍ଟ ଇଣ୍ଡିଆ କମ୍ପାନୀ ସହିତ ଏକ ଚୁକ୍ତିପତ୍ରରେ ସ୍ୱାକ୍ଷର କଲେ । ଏଥି ସହିତ କାଉନ୍‌ସିଲ ସଦସ୍ୟମାନଙ୍କୁ ଦୁଇଲକ୍ଷ ପାଉଣ୍ଡ ଅର୍ଥାତ୍ କୋଡ଼ିଏ ଲକ୍ଷ ଟଙ୍କା ପାରିତୋଷିକ ଦେବାକୁ ଘୋଷଣା କଲେ । କିନ୍ତୁ କାଉନ୍‌ସିଲ ସଦସ୍ୟମାନେ ତରବର ହୋଇ ଏ ଉତ୍କୋଚ ଗ୍ରହଣ ନକରି ପ୍ରତ୍ୟୁତ୍ତରରେ କହିଲେ, ପରିସ୍ଥିତି ବଦଳିଗଲେ କମ୍ପାନୀର ଦେଏଣା ପରିଶୋଧ କରିସାରି ଏହି ପାରିତୋଷିକ ଅର୍ପଣ କଲେ, ତାହା ଗ୍ରହଣ କରିବାକୁ କାଉନ୍‌ସିଲ ସଦସ୍ୟମାନଙ୍କର ଆପତ୍ତି ରହିବ ନାହିଁ । ଜଣେ ନବାବଙ୍କୁ ଗାଦିରୁ ତଡ଼ି ଆଉ ଜଣକୁ ଗାଦିରେ ବସାଇଲେ କମ୍ପାନୀର ସ୍ଥାନୀୟ କର୍ମକର୍ତ୍ତାମାନେ କିପରି ଲାଭବାନ୍ ହେଉଥିଲେ ଏ ଘଟଣା ତା'ର ନିଦର୍ଶନ ।

ଏହାପରେ ନବାବ ମୀରଜାଫରଙ୍କୁ ଏ ନିଷ୍ପତ୍ତି ସପକ୍ଷରେ ପ୍ରଭାବିତ କରିବା ପାଇଁ ଗଭର୍ଣ୍ଣର ଭାନ୍‌ସିଟାର୍ଟ ଓ ସେନାପତି କାଇଲଏଡ଼ କେତେକ ୟୁରୋପୀୟ ସୈନ୍ୟ ଓ ସିପାହୀଙ୍କୁ ସାଙ୍ଗରେ ଧରି ମୁର୍ଶିଦାବାଦ୍ ଯାତ୍ରା କଲେ । କିନ୍ତୁ ମୀରଜାଫର ଏ ପ୍ରସ୍ତାବର ଘୋର ବିରୋଧ କଲେ । ଆଲୋଚ଼ନା ସମୟରେ କ୍ୱାଇଁ ମୀରକାଶିମ୍‌ଙ୍କ ପ୍ରତି ତାଙ୍କର ବିଦ୍ୱେଷ ପ୍ରତି ମୁହୂର୍ତ୍ତରେ ପ୍ରକାଶ ପାଉଥିଲା । ନାମକୁ ମାତ୍ର ନବାବ ରହି ଅସଲ ଶାସନ କ୍ଷମତା ଇଂରେଜମାନଙ୍କ ଦ୍ୱାରା ମନୋନୀତ ଜଣେ ସଂପର୍କୀୟଙ୍କୁ ଅର୍ପଣ କରିବାକୁ ସେ ପ୍ରସ୍ତୁତ ନଥିଲେ । ଏହାପରେ ଆରମ୍ଭ ହେଲା ଇଂରେଜମାନଙ୍କର ଚାପ ପ୍ରୟୋଗର ଖେଳ । ସନ୍ଧ୍ୟାପରେ କାଇଲ୍‌ଏଡ଼ଙ୍କ ଆଦେଶରେ ମୀରଜାଫରଙ୍କର ତିନିଜଣ ପରାମର୍ଶଦାତାଙ୍କୁ ଗିରଫ କରାହେଲା ଓ ନବାବଙ୍କ ପ୍ରାସାଦ ଚାରିପଟେ ୟୁରୋପୀୟ ସୈନ୍ୟମାନେ ଘେରି ରହିଲେ । ଏ ଚାପ ପ୍ରୟୋଗ ଓ ଧମକ ବେଶ୍ ଫଳପ୍ରଦ ହେଲା । ପରଦିନ ମୁର୍ଶିଦାବାଦରେ ଅବସ୍ଥିତ କମ୍ପାନୀର ମୁଖ୍ୟ ପ୍ରତିନିଧି ଓ୍ୱାରେନ୍ ହେଷ୍ଟିଂସ୍‌ଙ୍କ ସହ ଆଲୋଚନାରେ ମୀରଜାଫର ନବାବ ପଦ ତ୍ୟାଗ କରି ଶେଷଜୀବନ ମୁର୍ଶିଦାବାଦ ପରିବର୍ତ୍ତେ କଲିକତାରେ ଅତିବାହିତ କରିବା ପାଇଁ ଘୋଷଣା କଲେ । ଏହାପରେ ମୀରକାଶିମ୍‌ଙ୍କୁ ବଙ୍ଗଳାର ନବାବ ପଦରେ ଅବସ୍ଥାପିତ କରାଗଲା ।



# ମୀରକାଶିମ୍‌ଙ୍କ କଣ୍ଟକ-ମୁକୁଟ

ନବାବ ପଦର କଣ୍ଟକିତ ମୁକୁଟ ମୀରକାଶିମ୍‌ଙ୍କ ପାଇଁ ଦୀର୍ଘଦିନ ସହ୍ୟ ହେଲା ନାହିଁ । ବଙ୍ଗର ଗଭର୍ଣ୍ଣର ଭାନ୍‌ସିଟାର୍ଟ, ସେନାପତି କାଇଲଏଡ୍, ମୁର୍ଶିଦାବାଦ୍‌ରେ ଅବସ୍ଥାପିତ କମ୍ପାନୀର ପ୍ରତିନିଧି ୱାରେନ୍ ହେଷ୍ଟିଂସ୍ ଓ ବେଙ୍ଗଲ କାଉନସିଲର ମନୋନୟନ କମିଟିର ସମର୍ଥନରେ ମୀରକାଶିମ୍ ନବାବ ନିଯୁକ୍ତ ହୋଇଥିଲେ । ମୀରକାଶିମ୍ ଜଣେ ଦକ୍ଷ ସୁଶାସକ ଓ କମ୍ପାନୀର କଲିକତା କର୍ତ୍ତୃପକ୍ଷ ଆଶା କରୁଥିଲେ ଯେ ତାଙ୍କ ସହିତ ସମ୍ମାନଜନକ ବ୍ୟବହାର କଲେ ତାଙ୍କଠାରୁ ନିଶ୍ଚିତ ଭାବରେ ଯଥାସମ୍ଭବ ଉଚିତ ଆଚରଣ ଆଶା କରାଯାଇ ପାରିବ । କିନ୍ତୁ ଭାନ୍‌ସିଟାର୍ଟଙ୍କର ଆକଳନ ଚରିତାର୍ଥ ହେଲାନାହିଁ । କାଇଲଏଡ୍‌ଙ୍କ ପରେ ଯେଉଁ ସାମରିକ ଅଫିସରମାନେ ତାଙ୍କର ସ୍ଥାନପୂରଣ କଲେ, ସେମାନେ ଭାନ୍‌ସିଟାର୍ଟଙ୍କୁ ଏ ପ୍ରକ୍ରିୟାରେ ସାହାଯ୍ୟ ଦେଲେ ନାହିଁ । କ୍ଲାଇଭ୍‌ଙ୍କ ଲଣ୍ଡନ ପ୍ରତ୍ୟାବର୍ତ୍ତନ ପରେ କମ୍ପାନୀର ବୋର୍ଡ଼ ବଙ୍ଗଳା କାଉନ୍‌ସିଲକୁ ପୁନର୍ଗଠିତ କଲେ । କେତେକ ପୁରୁଣା ସଦସ୍ୟଙ୍କୁ ବିଦାୟ ଦେଇ କାଉନ୍‌ସିଲ୍‌ରେ କେତେକ ନୂତନ ସଦସ୍ୟ ନିଯୁକ୍ତ ହେଲେ । ଏହି ନବନିଯୁକ୍ତ ସାମରିକ ଅଫିସର ଓ କାଉନ୍‌ସିଲ୍ ସଦସ୍ୟମାନେ ଆରମ୍ଭରୁ ମୀରକାଶିମ୍‌ଙ୍କ ସହିତ ବେଖାତିରିଆ ଓ ବେପରୁଆ ଆଚରଣ ପ୍ରଦର୍ଶନ କଲେ । କ୍ରମେ ନୂତନ ନବାବ ଓ କମ୍ପାନୀ କର୍ତ୍ତୃପକ୍ଷଙ୍କ ମଧ୍ୟରେ ସଦ୍‌ଭାବପୂର୍ଣ୍ଣ ସଂପର୍କ ଛିନ୍ନ ହେଲା ।

ଭାନ୍‌ସିଟାର୍ଟ ମଧ୍ୟ ବହୁ ପ୍ରତିକୂଳ ଆହ୍ୱାନର ସମ୍ମୁଖୀନ ହେଲେ । କମ୍ପାନୀର ସାଧାରଣ ଅଫିସର ଓ ସିପାହୀଙ୍କ ଦୃଷ୍ଟିରେ ଭାନ୍‌ସିଟାର୍ଟଙ୍କର କ୍ଲାଇଭ୍‌ଙ୍କ ପରି ବ୍ୟକ୍ତିତ୍ୱ ଓ ମର୍ଯ୍ୟାଦା ନଥିଲା । ଏ ମଧ୍ୟରେ ଭାନ୍‌ସିଟାର୍ଟ ମୀରକାଶିମ୍‌ଙ୍କଠାରୁ ତାଙ୍କର ପାରିତୋଷିକ ବାବଦ ପ୍ରାପ୍ୟ ଅଂଶ, ଅର୍ଥାତ୍ ପଚାଶ ହଜାର ପାଉଣ୍ଡ ଗ୍ରହଣ କରିଥିଲେ । ଏ ଉତ୍କୋଚ ଗ୍ରହଣ କାଉନ୍‌ସିଲ ସଦସ୍ୟମାନଙ୍କ ମଧ୍ୟରେ ତୀବ୍ର ହିଂସା ଓ ପରଶ୍ରୀକାତରତା ସୃଷ୍ଟି କରିଥିଲା ଓ ତାହା ମୀରକାଶିମ୍‌ଙ୍କ ବିରୁଦ୍ଧରେ ବ୍ୟବହୃତ ହେଲା । ସେମାନେ କହିବୁଲିଲେ, ମୀରଜାଫରଙ୍କୁ ଗାଦିଚ୍ୟୁତ କରିବାକୁ ନିଷ୍ପତ୍ତି ନିଆଯାଇ ନଥିଲା । ମାତ୍ର କେତେଜଣ ଉପରିସ୍ଥ ଅଫିସରଙ୍କ ଚକ୍ରାନ୍ତରେ ମୀରକାଶିମଙ୍କୁ

ଗାଦିନାସୀନ କରାଯାଇଛି । ଏ ସବୁ ପରିପ୍ରଚାର ମୀରକାଶିମଙ୍କ ଗୋଚରକୁ ଆସୁଥିଲା । ମୀରକାଶିମ୍ ନବାବ ପଦ ଗ୍ରହଣ କଲାବେଳେ କମ୍ପାନୀର ଦେୟ ପୂରଣ କରିବା ନିମିତ୍ତ ଯେଉଁସବୁ ସର୍ତ୍ତ କରିଥିଲେ, ତାହା ପୂରଣ କରିବାରେ କୌଣସି ତ୍ରୁଟି ହୋଇନଥିଲା । ଗାଦିନାସୀନ ହେବାପରେ ସେ କମ୍ପାନୀର ପଣ୍ଡିଚେରୀ ଅଭିଯାନ ପାଇଁ ପାଞ୍ଚଲକ୍ଷ ଟଙ୍କା ଅନୁଦାନ ପ୍ରଦାନ କରିଥିଲେ ଓ ଅଠର ମାସ ମଧ୍ୟରେ କମ୍ପାନୀର ସମସ୍ତ ଦେୟ ପରିଶୋଧ କରିଦେଇଥିଲେ । ତା ସତ୍ତ୍ୱେ କମ୍ପାନୀ କର୍ମଚାରୀମାନଙ୍କର ସେ ଆସ୍ଥାଭାଜନ ହେଲେ ନାହିଁ । ୱାରେନ୍ ହେଷ୍ଟିଂସ୍‌ଙ୍କ ଭାଷାରେ ପ୍ରଶାସନିକ ଦକ୍ଷତା ବା ଅଭିଜ୍ଞତାର ଅଭାବ, ଏହାର କାରଣ ନୁହେଁ । ବଙ୍ଗ କାଉନ୍‌ସିଲ ସଭ୍ୟମାନଙ୍କର ଅଯୌକ୍ତିକ ଅର୍ଥଲାଳସା ଚରିତାର୍ଥ କରିବା ପାଇଁ ମୀରକାଶିମଙ୍କର ଅନିଚ୍ଛା ଓ କେତେକାଂଶରେ ଅପାରଗତା ଏହାର ମୁଖ୍ୟ କାରଣ ।

ଏହି ସମୟରେ ପାଟନା ମୁର୍ଶିଦାବାଦ ସୁବାର ଅନ୍ତର୍ଗତ ଥିଲା ଏବଂ ପାଟନାର ଡେପୁଟି ଗଭର୍ଣ୍ଣର ଥିଲେ ରାମନାରାୟଣ । ରାମନାରାୟଣ ପ୍ରଜାମାନଙ୍କଠାରୁ ବିଧିବଦ୍ଧ କର ଅସୁଲ କରୁଥିଲେ ମଧ୍ୟ ନବାବଙ୍କ ନିକଟରେ ତାହା ଦାଖଲ କରିବାରେ ସର୍ବଦା ଅବହେଳା କରୁଥିଲେ । ରାମନାରାୟଣଙ୍କୁ ଉପଯୁକ୍ତ ଶିକ୍ଷା ଦେବା ପାଇଁ ମୀରକାଶିମ୍ ମୁଙ୍ଗେରଠାରେ ଛାଉଣୀ ପକାଇଥିଲେ । ମୀରକାଶିମ୍ ମୁଙ୍ଗେରରେ ଥିବା ସମୟରେ କୁଟ ଓ କାର୍ଣ୍ଣାକ ନାମକ ଦୁଇଜଣ ଇଂରେଜ ସାମରିକ ଅଫିସରଙ୍କୁ ପାଟନା ପଠାଯାଇଥିଲା । କିନ୍ତୁ ସେମାନେ ମୀରକାଶିମ୍‌ଙ୍କ ସହିତ ଅକଥନୀୟ ଦୁର୍ବ୍ୟବହାର କଲେ । ପରିସ୍ଥିତି ଏପରି ହେଲା ଯେ ବଙ୍ଗଳା କାଉନସିଲ ରାମନାରାୟଣଙ୍କୁ ବରଖାସ୍ତ କରିବାପାଇଁ ଏବଂ କୁଟ ଓ କାର୍ଣ୍ଣାକ୍‌ଙ୍କୁ ପ୍ରତ୍ୟାବର୍ତ୍ତନ କରିବାପାଇଁ ନିର୍ଦ୍ଦେଶ ଦେଲେ ।

କଲିକତା କାଉନସିଲ୍‌ରେ ମୀରକାଶିମ୍‌ଙ୍କ ବିରୋଧୀଙ୍କ ସଂଖ୍ୟା ଥିଲା ଅଧିକ । ଭାନ୍‌ସିଟାର୍ଟଙ୍କ ନିର୍ଦ୍ଦେଶରେ ପାଟନାରେ ଅବସ୍ଥାପିତ କମ୍ପାନୀ ପ୍ରତିନିଧି ମ୍ୟାକ୍‌ଗାୱାରଙ୍କୁ ମଧ୍ୟ ବରଖାସ୍ତ କରାହେଲା । କିନ୍ତୁ କାଉନ୍‌ସିଲ ତାଙ୍କ ସ୍ଥାନରେ ମିଷ୍ଟର ଏଲିସ୍‌ଙ୍କୁ ପାଟନା ପ୍ରତିନିଧି ଭାବରେ ଅବସ୍ଥାପିତ କଲେ । ଏଲିସ ଘୋଷଣା କଲେ ଯେ ସେ ଇଂରେଜ ସ୍ୱାର୍ଥ ଓ ସମ୍ମାନ ରକ୍ଷା କରିବା ପାଇଁ ପାଟନା ଯାଉଛନ୍ତି । କିନ୍ତୁ ପାଟନାରେ ନବାବ ମୀରକାଶିମ୍‌ଙ୍କ ପ୍ରତି ଅତ୍ୟନ୍ତ ପ୍ରତିହିଂସାପରାୟଣ ଓ ତାଙ୍କର ଜଣେ କଠୋର ସମାଲୋଚକ ଭାବରେ ସେ ଅବତୀର୍ଣ୍ଣ ହେଲେ । ନବାବଙ୍କ ପ୍ରତି ରୁକ୍ଷ ବ୍ୟବହାର କରିବା ଓ ଅନ୍ୟଥା ତାଙ୍କର ଶାସନ ପରିଚାଳନାରେ ହସ୍ତକ୍ଷେପ କରିବା ହେଲା

ତାଙ୍କର ମୁଖ୍ୟ କାର୍ଯ୍ୟ । ଅବସ୍ଥା ଏପରି ହେଲା ଯେ ଶେଷରେ ଓ୍ୱାରେନ୍ ହେଷ୍ଟିଂସ୍‌ଙ୍କୁ ମୁଙ୍ଗେର ପଠାଇ ନବାବଙ୍କୁ ସନ୍ତୁଷ୍ଟ କରିବା ପାଇଁ କାଉନସିଲ ଉଦ୍ୟମ କଲେ । କିନ୍ତୁ ନେଡ଼ି ଗୁଡ଼ କହୁଣୀକୁ ବହିଯାଇଥିଲା । ହେଷ୍ଟିଂସ୍ ଏଲିସ୍‌ଙ୍କୁ ସାକ୍ଷାତ କରିବା ସମ୍ଭବ ହେଲାନାହିଁ । ଇଂରେଜ କମ୍ପାନୀର ସଂପୂର୍ଣ୍ଣ ଶତ୍ରୁତାପୂର୍ଣ୍ଣ ଆଚରଣ ଦେଖି ମୀରକାଶିମ୍ ମୁର୍ଶିଦାବାଦ ପରିବର୍ତ୍ତେ ମୁଙ୍ଗେରରୁ ଶାସନ କାର୍ଯ୍ୟ ପରିଚାଳନା କଲେ ।

ପରିବର୍ତ୍ତିତ ପରିସ୍ଥିତିରେ କମ୍ପାନୀର କର୍ମଚାରୀମାନେ ନାନାପ୍ରକାରର ଦୁର୍ନୀତିରେ ଲିପ୍ତ ଥିଲେ । ନିଜର ସରକାରୀ କାର୍ଯ୍ୟ ବାଦ୍ ସେମାନେ ନାନା ରକମର ଘରୋଇ ବ୍ୟବସାୟ ବାଣିଜ୍ୟ କରି ଅର୍ଥ ରୋଜଗାର କରୁଥିଲେ । ମୋଗଲ ସମ୍ରାଟ ଆଉରଙ୍ଗଜେବ୍‌ଙ୍କ ପୁତ୍ର ସମ୍ରାଟ ଶିୟାରାର ଇଷ୍ଟଇଣ୍ଡିଆ କମ୍ପାନୀକୁ ୧୭୧୫ ମସିହାରେ ଆମଦାନୀ ଓ ରପ୍ତାନୀ କରୁଥିବା ଦ୍ରବ୍ୟ ଉପରୁ ପଣ୍ୟକର ଛାଡ଼ କରିଦେଇଥିଲେ । ଏ ରିୟାତି କେବଳ କମ୍ପାନୀ ବିଦେଶରୁ ଆମଦାନୀ କରୁଥିବା ବା ଭାରତରୁ ବିଦେଶକୁ ରପ୍ତାନୀ ହେଉଥିବା ଦ୍ରବ୍ୟ ପ୍ରତି ଲାଗୁ ହେଉଥିଲା । କିନ୍ତୁ କାଳକ୍ରମେ କମ୍ପାନୀ ଅନ୍ତର୍ଦେଶୀୟ ବାଣିଜ୍ୟ ଓ ଜିନିଷପତ୍ର ଚଳାଚଳ ଉପରେ କୌଣସି କର ଦେଲେ ନାହିଁ । କର୍ମଚାରୀମାନଙ୍କର ଅବଶ୍ୟ ଆମଦାନୀ ବା ରପ୍ତାନୀ କରିବାର ସୁଯୋଗ ନଥିଲା; କିନ୍ତୁ ଅନ୍ତର୍ଦେଶୀୟ ବ୍ୟବସାୟ ବାଣିଜ୍ୟ ଉପରେ ସେମାନେ ସେହି ସୁବିଧା ଦାବି କଲେ ଓ ଜବରଦସ୍ତ ଉପଭୋଗ କଲେ । ସିରାଜଉଦ୍ଦୌଲା ଓ ତାଙ୍କପରେ ମୀରଜାଫର ଇଂରେଜ କର୍ମଚାରୀମାନଙ୍କର ଏହି ସୁବିଧା ଉପଭୋଗର ବିରୋଧ କରିଥିଲେ; କିନ୍ତୁ ସେମାନଙ୍କର ପ୍ରତିରୋଧ ନିଷ୍ଫଳ ହୋଇଥିଲା । ମୀରକାଶିମ୍ ଯେତେବେଳେ ସେ ପ୍ରଶ୍ନ ଉତ୍‌ଥାପନ କଲେ, କମ୍ପାନୀ କର୍ମଚାରୀମାନେ ଉତ୍‌କ୍ଷିପ୍ତ ହୋଇଉଠିଲେ । କଲିକତା କାଉନ୍‌ସିଲ୍ ବିବାଦର ସମାଧାନ ପାଇଁ ଯେଉଁ ପ୍ରତିନିଧି ଦଳ ପ୍ରେରଣ କରିଥିଲେ, ସେମାନେ ଶତକଡ଼ା ୯ ଭାଗ କର ଦେବା ପାଇଁ ପ୍ରସ୍ତାବ ଦେଲେ । ମୀରକାଶିମ୍ ବିରକ୍ତ ହୋଇ ସମସ୍ତଙ୍କୁ ଏହି କରଭାରରୁ ମୁକ୍ତ କରିଦେଲେ । ଫଳରେ ଇଂରେଜ କର୍ମଚାରୀ ଓ ତାଙ୍କ ସହଯୋଗୀମାନେ ଭାରତୀୟ ବ୍ୟବସାୟୀଙ୍କ ତୁଳନାରେ ଯେଉଁ ବିଶେଷ ସୁବିଧା ଉପଭୋଗ କରିଥିଲେ, ତାହା ଆଉ ସମ୍ଭବ ହେଲାନାହିଁ । ନବାବଙ୍କର ଏହି ନିଷ୍ପତ୍ତି ଫଳରେ ରାଜସ୍ୱ କ୍ଷତି ହେଲା ସତ୍ୟ, କିନ୍ତୁ ଭାରତୀୟ ବଣିକମାନେ ଇଂରେଜମାନଙ୍କ ସହ ସମାନ ସୁବିଧାସୁଯୋଗ ଭୋଗ କଲେ ।

ନବାବଙ୍କର ଉପରୋକ୍ତ ହୁକୁମନାମା ବିରୁଦ୍ଧରେ କମ୍ପାନୀର କର୍ମକର୍ତ୍ତାଗଣ ତୀବ୍ର ଅସନ୍ତୋଷ ପ୍ରକାଶ କଲେ ଏବଂ କଲିକତା କାଉନସିଲ ଦାବି କଲେ ଯେ ଭାରତୀୟ

ବଣିକମାନଙ୍କ ଉପରେ ଏ ପଣ୍ୟକର ପୂର୍ବବତ୍ ଚାଲୁ ରହୁ; ଅନ୍ୟଥା ନବାବ କମ୍ପାନୀ ସହିତ ସନନ୍ଦର ବିରୁଦ୍ଧାଚରଣ କରୁଛନ୍ତି ବୋଲି ବୁଝାଯିବ । ଦାର୍ଶନିକ ମିଲ୍‌ଙ୍କ ଭାଷାରେ କମ୍ପାନୀ କର୍ତ୍ତୃପକ୍ଷଙ୍କ ଏତାଦୃଶ ଆଚରଣ ଥିଲା ସଂପୂର୍ଣ୍ଣ ନିର୍ଲଜ୍ଜ ଓ ନ୍ୟାୟ ପରିସୀମାର ବାହାରେ । କମ୍ପାନୀ ପୁନଶ୍ଚ ପ୍ରସ୍ତାବ ଦେଲେ, ଅମ୍ୟାତ୍ ଓ ହେ ଶୀର୍ଷକ ଦୁଇଜଣ ପ୍ରତିନିଧିଙ୍କ ସହ ନବାବ ଆଲୋଚନା କରି ଏହାର ସମାଧାନ କରନ୍ତୁ । ମୀରକାଶିମ୍ ଉପରୋକ୍ତ ପ୍ରତିନିଧିମାନଙ୍କ ସହ ଆଲୋଚନା କରିବାକୁ ସମ୍ମତ ହେଲେ ସତ୍ୟ, କିନ୍ତୁ ତାଙ୍କର ସନ୍ଦେହ ଦୃଢ଼ୀଭୂତ ହେଲା ଯେ ଇଂରେଜ କମ୍ପାନୀ ତାଙ୍କୁ ନବାବ ଗାଦିରୁ ବିତାଡ଼ନ କରିବାକୁ ବଦ୍ଧ- ପରିକର । ଏ ମଧ୍ୟରେ ସଂବାଦ ମିଳିଲା, ଏଲିସ ପାଟନା ଦୁର୍ଗ ଉପରେ ଆକ୍ରମଣ କରିବାକୁ ଯୋଜନା କରୁଛନ୍ତି । ମୀରକାଶିମ୍ 'ଅମ୍ୟାତ' ଓ 'ହେ'ଙ୍କର ସମସ୍ତ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲେ ଓ ଅମ୍ୟାତ୍‌ଙ୍କୁ ଫେରିଯିବାକୁ ଅନୁମତି ଦେଇ 'ହେ'ଙ୍କୁ ପଣବନ୍ଦୀ ରୂପେ ମୁଙ୍ଗେରରେ ଅଟକ ରଖିଲେ, ଯେପର୍ଯ୍ୟନ୍ତ କଲିକତାରେ ଥିବା ନବାବଙ୍କର ପ୍ରତିନିଧିମାନେ ଫେରି ନ ଆସନ୍ତି ।

ମୀରକାଶିମ୍‌ଙ୍କର ସନ୍ଦେହ ଯଥାର୍ଥ ଥିଲା । ପ୍ରଥମେ ଆକ୍ରମଣ ଆରମ୍ଭ କଲେ ଏଲିସ । ଜୁନ ୨୪ ତାରିଖ ୧୭୬୩ ମସିହା ମଧ୍ୟରାତ୍ରରେ ଏଲିସ ପାଟନା ଆକ୍ରମଣ କରି ସମଗ୍ର ସହର ଦଖଲ କରିନେଲେ । ଏଥିପାଇଁ ସେ ଏପ୍ରିଲ ମାସରୁ ପ୍ରସ୍ତୁତ ହେଉଥିଲେ । ପାଟନାର ଗଭର୍ଣ୍ଣର ଅସହାୟ ଅବସ୍ଥାରେ ସହର ଛାଡ଼ି ମୁଙ୍ଗେର ପଳାୟନ କରୁଥିବା ବେଳେ ମୁଙ୍ଗେରରୁ ନବାବଙ୍କ ଦ୍ୱାରା ପ୍ରେରିତ କେତେକ ସୈନ୍ୟସାମନ୍ତଙ୍କ ସହ ପୁନଶ୍ଚ ପାଟନା ଫେରିଆସିଲେ । ପରଦିନ ଦ୍ୱିପ୍ରହରବେଳେ ଅତର୍କିତ ଆକ୍ରମଣ ଆରମ୍ଭ କରି ସେ ପାଟନା ସହର ପୁନର୍ଦଖଲ କଲେ । ଦୁଇଶହ ୟୁରୋପୀଆନ ସୈନ୍ୟ ଓ ପନ୍ଦର ଶହ ସିପାହୀଙ୍କ ସହ ଏଲିସ ପାଟନାର ଇଂରେଜମାନଙ୍କର ଏକ ଫାକ୍ଟରୀରେ ଆଶ୍ରୟ ନେଲେ । ମାତ୍ର ନବାବଙ୍କ ସେନାର ପ୍ରବଳ ଆକ୍ରମଣ ହେତୁ ଏଲିସ୍‌ଙ୍କ ସିପାହୀମାନେ ଛିନଛତ୍ର ହୋଇ ଆଉଧ (ଅଯୋଧ୍ୟା) ଅଭିମୁଖେ ପଳାୟନ କଲେ ଓ କେତେକ ମୀରକାଶିମ୍‌ଙ୍କ ସେନାପତିଙ୍କର ଶରଣାପନ୍ନ ହେଲେ । ଏଲିସ୍ ଓ ତାଙ୍କର ସହକାରୀମାନେ ବନ୍ଦୀ ହେଲେ । ବଙ୍ଗଳାରେ ପଲାସି ଯୁଦ୍ଧ ପରେ ଏହାଥିଲା ଇଂରେଜମାନଙ୍କର ଶୋଚନୀୟ ପରାଜୟ । ଐତିହାସିକମାନଙ୍କ ମତରେ ଏ ଆକ୍ରମଣ କରିବା ପାଇଁ ଏଲିସ୍‌ଙ୍କୁ ବିଧିବଦ୍ଧ କ୍ଷମତା ପ୍ରଦାନ କରାଯାଇନଥିଲା । କିନ୍ତୁ କଲିକତା କାଉନ୍‌ସିଲ୍‌ରେ ଏ ସଂପର୍କୀୟ ବିବାଦର ସୁଯୋଗ ନେଇ ସେ ନିଜ ଦାୟିତ୍ୱରେ ଏ ପଦକ୍ଷେପ ଗ୍ରହଣ କରିଥିଲେ ।

ମୁଙ୍ଗେରରେ ଏଲିସ୍‌ଙ୍କ ଅତର୍କିତ ଆକ୍ରମଣ ସମ୍ବାଦ ଶୁଣି ମୀରକାଶିମ୍ ଉତ୍‌କ୍ଷିପ୍ତ ହେଲେ ଏବଂ ଯେଉଁଠି ସମ୍ଭବ ଇଂରେଜମାନଙ୍କୁ ହତ୍ୟା କରିବା ପାଇଁ ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ । ଏହି ପ୍ରକ୍ରିୟାରେ ଗଙ୍ଗାନଦୀରେ ନୌକାରେ ବସି କଲିକତା ଯାତ୍ରା କରୁଥିବା କମ୍ପାନୀ ପ୍ରତିନିଧି 'ଅମ୍ୟାତ' ମଧ୍ୟ ଗୁଳିରେ ନିହତ ହେଲେ । ଅମ୍ୟାତ୍‌ଙ୍କ ମୃତ୍ୟୁ ସମ୍ବାଦ ଓ ପରେ ପରେ ପାଟନାରେ ଏଲିସ୍‌ଙ୍କର ପରାଜୟ ସମ୍ବାଦ କଲିକତାରେ ପହଞ୍ଚିଲା । କଲିକତା କାଉନସିଲ ସଭ୍ୟମାନଙ୍କ ମଧ୍ୟରେ ପୂର୍ବରୁ ଯେଉଁ ମତଭେଦ ଥିଲା, ତାହା କ୍ଷଣକେ ଦୂର ହୋଇଗଲା । ଗଭର୍ଣ୍ଣର ଭାନ୍ସିଟାର୍ଟ ଓ ୱାରେନ ହେଷ୍ଟିଂସ୍‌ଙ୍କ ପରି ଯେଉଁମାନେ ମୀରକାଶିମଙ୍କ ସହ ସଦ୍‌ଭାବପୂର୍ଣ୍ଣ ସମ୍ପର୍କ ରଖିବାକୁ ଚାହୁଁଥିଲେ, ସେମାନେ ମଧ୍ୟ କାଉନ୍‌ସିଲର ଅନ୍ୟ ସଦସ୍ୟମାନଙ୍କ ସହ ମିଶି ମୀରକାଶିମ୍‌ଙ୍କୁ ନବାବ ପଦରୁ ବିତାଡ଼ିତ କଲେ ଓ ମୀରଜାଫରଙ୍କୁ ସେହି ପଦରେ ନିଯୁକ୍ତ କରି ମୀରକାଶିମ୍‌ଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ।

ଇଂରେଜ କମ୍ପାନୀର କପାଳ ଥିଲା ତେଜ୍ । ସେନାପତି କ୍ଲାଇଭ୍ ବଙ୍ଗଳାରୁ ବିଦାୟ ନେବାପରେ ମେଜର ଥୋମାସ ଆଦାମ୍‌ସ ତାଙ୍କଠାରୁ ବେଙ୍ଗଲ ସେନାବାହିନୀର ଦାୟିତ୍ୱ ଗ୍ରହଣ କରିଥିଲେ । ତାଙ୍କର ସହକାରୀ ଥିଲେ କ୍ୟାପ୍‌ଟେନ୍ ନକ୍ସ । ଉଭୟ ଥିଲେ ଅତି ଦକ୍ଷ, ସାହସୀ ଓ ବିଚକ୍ଷଣ ସାମରିକ ଅଫିସର ଏବଂ ସେହିମାନେ ମୀରକାଶିମ୍ ବିରୋଧୀ ଅଭିଯାନର ଦାୟିତ୍ୱ ନେଲେ । ଆଦାମ୍‌ସ୍ ପ୍ରଥମେ ମୀରକାଶିମଙ୍କର ମୁର୍ଶିଦାବାଦ ସେନାଛାଉଣୀ ଉପରେ ଆକ୍ରମଣ କଲେ । ମୀରକାଶିମ୍‌ଙ୍କର ଅନ୍ୟତମ ସୁଦକ୍ଷ ସେନାପତି ମହମ୍ମଦ ଟକ୍କି ଖାନ୍‌ଙ୍କ ନେତୃତ୍ୱରେ ପ୍ରାୟ ଦଶହଜାର ସୈନ୍ୟ ଏ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ । ଟକ୍କି ଖାନ୍ ନିହତ ହେଲେ ଓ ତାଙ୍କର ସୈନ୍ୟମାନେ ବନ୍ଧୁକ କମାଣ ଆଦି ଛାଡ଼ି ଯୁଦ୍ଧଭୂମିରୁ ପଳାୟନ କଲେ । ବୃଦ୍ଧ ମୀରଜାଫର କଲିକତାରୁ ଯାଇ ମୁର୍ଶିଦାବାଦର ନବାବ ଗାଦିରେ ଆସୀନ ହେଲେ ।

ମୁର୍ଶିଦାବାଦ ଯୁଦ୍ଧରେ ବିଜୟ କମ୍ପାନୀ ସୈନ୍ୟମାନଙ୍କ ମଧ୍ୟରେ ଅସୀମ ସାହସ ଓ ଉତ୍ତେଜନା ଭରିଦେଲା । ଆଦାମସ୍ ଏକହଜାର ୟୁରୋପୀୟ ସୈନ୍ୟ ସହ ମୋଟ ପାଞ୍ଚହଜାର ସୈନ୍ୟ ଧରି ମୁଙ୍ଗେର ଅଭିମୁଖେ ଉତ୍ତରାଭିମୁଖୀ ହେଲେ । ମୁର୍ଶିଦାବାଦର ଉତ୍ତର ପଶ୍ଚିମରେ ସହରଠାରୁ ପଞ୍ଚତିରିଶ ମାଇଲ ଦୂର ସୂତୀ ନାମକ ସ୍ଥାନରେ ସଂଘର୍ଷ

ଆରମ୍ଭ ହେଲା । ମୀରକାଶିମଙ୍କର ପନ୍ଦର କୋଡ଼ିଏ ହଜାର ସୈନ୍ୟ ଇଂରେଜମାନଙ୍କର କମାଣ ଗୁଳିରେ ଆହତ ହୋଇ ପଳାୟନ କଲେ । ଏହି ସଫଳତାର ମୁଖ୍ୟ କାରଣ ଥିଲା ଉନ୍ନତ ଯୁଦ୍ଧ ପ୍ରଣାଳୀ ଏବଂ ଶତ୍ରୁ ବିରୁଦ୍ଧରେ କମାଣ ଓ ଗୁଳିଗୋଳାର ସଫଳ ପ୍ରୟୋଗ । କିନ୍ତୁ ଯୁଦ୍ଧରେ ପରାଜିତ ହୋଇ ମଧ୍ୟ ମୀରକାଶିମ୍‌ଙ୍କର ସୈନ୍ୟମାନେ ଉଣ୍ଡାନାଲା ନାମକ ସ୍ଥାନରେ ଜମାଟ ବାନ୍ଧିଲେ । ସେଠାରେ ପରାସ୍ତ ହୋଇ ମାତ୍ର ଦୁଇହଜାର ସୈନ୍ୟ ମୁଙ୍ଗେରରେ ରଖି ବାକି ସୈନ୍ୟସାମନ୍ତଙ୍କ ସହ ମୀରକାଶିମ୍ ପାଟନା ଯାତ୍ରା କଲେ । ଇଂରେଜମାନଙ୍କର ବିଶ୍ୱାସଘାତକତା ହେତୁ କ୍ରୋଧ ଜର୍ଜରିତ ହୋଇ ସେ ପ୍ରଥମେ ପାଟନାର ପୂର୍ବତନ ଗଭର୍ଣ୍ଣର ରାମନାରାୟଣ, ମହାଜନ ଜଗତ ସେଠ୍‌ଙ୍କ ପରିବାରର ଦୁଇଜଣ ଓ ଏଲିସ୍ ପ୍ରମୁଖ ପ୍ରାୟ ଦେଢ଼ଶହରୁ ଦୁଇଶହ ଇଂରେଜବନ୍ଦୀଙ୍କୁ ହତ୍ୟା କଲେ । ତାଙ୍କୁ ଅନୁଧାବନ କରି ଆଦାମସ୍ ଯେତେବେଳେ ପାଟନାରେ ପହଞ୍ଚିଲେ, ମୀରକାଶିମ୍ ଇଂରେଜମାନଙ୍କର ଆକ୍ରମଣର ଶିକାର ନହୋଇ ସୈନ୍ୟସାମନ୍ତ, ଗୁଳିଗୋଳା ଓ ଧନରତ୍ନ ଧରି କର୍ମନାଶା ନଦୀ ପାର ହୋଇ ଅଯୋଧ୍ୟାକୁ ପଳାୟନ କଲେ । ସାମରିକ ଦୃଷ୍ଟିରୁ କମ୍ପାନୀର ବିଜୟ ଥିଲା ଅତି ଗୁରୁତ୍ୱପୂର୍ଣ୍ଣ, କିନ୍ତୁ ନୈତିକତା ଦୃଷ୍ଟିରୁ ସଂପୂର୍ଣ୍ଣ କଳଙ୍କିତ । ବସ୍ତୁତଃ ଅର୍ଥ ଦେଇ ମୀରକାଶିମ୍ ବଙ୍ଗଳାର ସୁବେଦାର ପଦ ଖରିଦ୍ କରିଥିଲେ ଓ ଶେଷ ପର୍ଯ୍ୟନ୍ତ ଚୁକ୍ତି ଅନୁଯାୟୀ ସମସ୍ତ ଦେୟ ପରିଶୋଧ କରି କ୍ରୀଡ଼ାପୁତ୍ତଳିକା ନହୋଇ ପ୍ରକୃତ ସୁବେଦାର ଭାବେ ରାଜୁତି କରିବାକୁ ଚାହିଁଥିଲେ; କିନ୍ତୁ ଇଂରେଜମାନେ ନାନା କୁଚକ୍ରାନ୍ତ କରି ତାଙ୍କୁ ଶତ୍ରୁରେ ପରିଣତ କରିଥିଲେ । ମେଜର ଆଦାମସ୍ ତାଙ୍କୁ ଧମକ ଦେଇଥିଲେ ଯେ ସେ ଯଦି ଏଲିସ୍‌ଙ୍କୁ ହତ୍ୟା କରିବେ, ତାହେଲେ ସେ ତାଙ୍କୁ ପୃଥିବୀର ଶେଷସୀମା ପର୍ଯ୍ୟନ୍ତ ଅନୁଧାବନ କରିବେ । କିନ୍ତୁ ଧମକ କେବଳ କଥାରେ ରହିଗଲା । ମୀରକାଶିମ୍ ଅଯୋଧ୍ୟାରେ ଆଶ୍ରୟ ନେବାପରେ ଆଦାମ୍‌ସ ଯୁଦ୍ଧକ୍ଳାନ୍ତ ହୋଇ କ୍ୟାପ୍‌ଟେନ୍ ନକ୍ସଙ୍କୁ ଦାୟିତ୍ୱଦେଇ ପାଟନାରୁ କଲିକତା ଫେରିଆସିଲେ ଓ କିଛି ଦିନ ପରେ ନକ୍ସ ମଧ୍ୟ ତାଙ୍କର ଅନୁଗମନ କଲେ । ଉଭୟ ସ୍ୱାସ୍ଥ୍ୟୋନ୍ନତି ପାଇଁ ଇଂଲଣ୍ଡ ଫେରିବାକୁ ମନସ୍ଥ କରିଥିଲେ । କିନ୍ତୁ ଭାଗ୍ୟର କି ବିଡ଼ମ୍ବନା ! ରୋଗଗ୍ରସ୍ତ ହୋଇ ଉଭୟଙ୍କର ଭାରତ ଭୂଇଁରେ ମୃତ୍ୟୁ ହେଲା ।



# ବକ୍ସାର ଯୁଦ୍ଧ ଓ ଅଯୋଧ୍ୟା ଅଧିକାର

ମେଜର ଆଦାମ୍ସ ଓ କ୍ୟାପ୍ଟେନ୍ ନକ୍ସ ପାଟନାରୁ ପ୍ରତ୍ୟାବର୍ତ୍ତନ କରିବା ପରେ ଇଷ୍ଟଇଣ୍ଡିଆ କମ୍ପାନୀ ସେନାବାହିନୀର ମୁଖ୍ୟ ପଦରେ ଅନେକ ପରିବର୍ତ୍ତନ ହେଲା । ଇଂରେଜ ସେନାଧ୍ୟକ୍ଷମାନେ ମୀରକାଶିମ୍‌ଙ୍କୁ ଅଯୋଧ୍ୟା ପର୍ଯ୍ୟନ୍ତ ଅନୁଧାବନ ସମ୍ପର୍କରେ ବିଶେଷ ଚିନ୍ତିତ ଥିଲେ । ସମ୍ବାଦ ମିଳିଲା ଯେ ମୋଗଲ ସମ୍ରାଟ ସାହା ଆଲାମ୍, ଅଯୋଧ୍ୟାର ନବାବ ସୁଜାଉଦ୍‌ଦୌଲା ଓ ମୀରକାଶିମ୍ ଇଂରେଜଙ୍କ ବିରୁଦ୍ଧରେ ହାତ ମିଳାଇଛନ୍ତି । ଅଯୋଧ୍ୟା ସୀମାନ୍ତରେ ଅପେକ୍ଷାରତ କମ୍ପାନୀ ସିପାହୀ ନିଷ୍କର୍ମା ହୋଇ କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ରରେ ଲିପ୍ତ ହେଲେ । ଏପରିକି ୟୁରୋପୀୟ ସୈନ୍ୟମାନଙ୍କ ମଧ୍ୟରେ ବିଶୃଙ୍ଖଳା ବ୍ୟାପିବାକୁ ଆରମ୍ଭ କଲା । ୟୁରୋପୀୟ ସୈନ୍ୟମାନଙ୍କ ମଧ୍ୟରେ ଇଂରେଜଙ୍କ ସଂଖ୍ୟା ଥିଲା ଅର୍ଦ୍ଧେକରୁ କମ୍ । ଅନ୍ୟମାନେ ଥିଲେ ୟୁରୋପର ବିଭିନ୍ନ ଦେଶରୁ ସଂଗୃହୀତ ମର୍ସିନାରୀ ବା ଭଡ଼ାଟିଆ ସୈନ୍ୟ, ଯାହାଙ୍କର ଇଂଲଣ୍ଡ ପ୍ରତି କୌଣସି ସ୍ୱାଭାବିକ ମମତା ବା ଆନୁଗତ୍ୟ ନଥିଲା । ବେତନ ବୃଦ୍ଧି ଦାବିକରି ସେମାନେ ବିଦ୍ରୋହ ଘୋଷଣା କଲେ । ଇଂରେଜ ସେନାପତି କ୍ୟାପ୍ଟେନ୍ ଜେନିଂସ୍‌ଙ୍କୁ ଖବର ମିଳିଲା, ପଣ୍ଡିଚେରୀରେ ଫରାସୀ ବାହିନୀର ପତନ ପରେ ଯେଉଁ ଫରାସୀ ସୈନ୍ୟମାନେ ଇଂରେଜ ଶିବିରରେ ଯୋଗ ଦେଇଥିଲେ, ସେହିମାନେ ମୁଖ୍ୟତଃ ଏ ବିଦ୍ରୋହରେ ଆଗୁଆ ଅଛନ୍ତି । ବ୍ରିଟିଶ ଜାତୀୟତାବାଦ ଓ ଦେଶପ୍ରୀତିର ଆହ୍ୱାନ ଦେଇ କ୍ୟାପ୍ଟେନ୍ ଜେନିଂସ୍ ଇଂରେଜ ସୈନମାନଙ୍କୁ ଏ ବିଦ୍ରୋହରୁ ନିବୃତ୍ତ କରାଇଥିଲେ । କିନ୍ତୁ ପ୍ରାୟ ଦୁଇଶହ ଫରାସୀ ଓ ଅନ୍ୟ ୟୁରୋପୀଆନ୍ ଅଯୋଧ୍ୟା ଚାଲିଯାଇ ମୀରକାଶିମ୍‌ଙ୍କ ଶିବିରରେ ଯୋଗ ଦେଲେ ।

କ୍ୟାପଟେନ୍ ଜେନିଂସ୍‌ଙ୍କ ପରେ ମେଜର କାର୍ଣ୍ଣାକ୍ କମ୍ପାନୀର ପାଟନା ସେନାବାହିନୀର ଦାୟିତ୍ୱ ନେଲେ । କିନ୍ତୁ ସୈନ୍ୟମାନଙ୍କର ମଧ୍ୟରେ ବିଶୃଙ୍ଖଳା ହେତୁ ସେ ଅଯୋଧ୍ୟା ଆକ୍ରମଣ କରିବାକୁ କୁଣ୍ଠିତ ଥିଲେ । ଏହି ସମୟରେ ସମ୍ବାଦ ମିଳିଲା, ମୋଗଲ ସମ୍ରାଟ ସାହା ଆଲାମ୍, ନବାବ ସୁଜାଉଦ୍‌ଦୌଲା ଓ ମୀରକାଶିମ୍ ଗଙ୍ଗାନଦୀ ପାର ହୋଇ ପାଟନା ଆକ୍ରମଣ କରିବାକୁ ଉଦ୍ୟତ । ମେଜର କାର୍ଣ୍ଣାକ୍ ସୀମାନ୍ତରୁ ପଛକୁ ଫେରି ପାଟନା ନିକଟସ୍ଥ ପୂର୍ବ ନିର୍ଦ୍ଧାରିତ ଏକ ସୁବିଧାଜନକ ସ୍ଥାନରେ ଆସ୍ଥାନ ବାନ୍ଧିଲେ ଓ ସେହିଠାରୁ ଶତ୍ରୁପକ୍ଷ ଉପରେ ଗୁଳିଗୋଳା ବର୍ଷଣ କରି ଏକ ଆତ୍ମରକ୍ଷାମୂଳକ ଯୁଦ୍ଧ ଚାଲୁ ରଖିଲେ । ଏହି ଗୋଳାବର୍ଷଣରେ ତ୍ରସ୍ତ ହୋଇ ତ୍ରିପକ୍ଷ ସୈନ୍ୟମାନେ ପଛଘୁଞ୍ଚା ଦେଲେ ସତ୍ୟ, କିନ୍ତୁ ସେମାନଙ୍କୁ ଅନୁଧାବନ କରି ପ୍ରତିଆକ୍ରମଣ କରିବାକୁ କାର୍ଣ୍ଣାକ୍‌ଙ୍କର ସାହସ ନଥିଲା ।

ଯୁଦ୍ଧକ୍ଷେତ୍ରରେ ସାହା ଆଲାମଙ୍କର ବାଦ୍‌ଶାହା ପଦ ମର୍ଯ୍ୟାଦା ବ୍ୟତୀତ ଅନ୍ୟ କୌଣସି ବୈଶିଷ୍ଟ୍ୟ ନଥିଲା । ମୀରକାଶିମ୍ ଥିଲେ ଜଣେ ଅଭିଜ୍ଞ ସେନାନାୟକ ଓ ତାଙ୍କର ସିପାହୀମାନେ ଥିଲେ ୟୁରୋପୀଆନମାନଙ୍କ ଦ୍ୱାରା ତାଲିମପ୍ରାପ୍ତ । କିନ୍ତୁ ସିପାହୀମାନଙ୍କ ଦୃଷ୍ଟିରେ ବଙ୍ଗ ଦେଶରୁ ଇଂରେଜମାନଙ୍କ ଦ୍ୱାରା ବିତାଡ଼ିତ ଓ ଅଯୋଧ୍ୟା ନବାବଙ୍କର ଶରଣାଗତ ବ୍ୟକ୍ତିର କୌଣସି ସମ୍ମାନ ନଥିଲା । ଏକମାତ୍ର ଅଯୋଧ୍ୟା ନବାବ ସୁଜାଉଦ୍‌ଦୌଲା ଥିଲେ ବ୍ୟକ୍ତିଗତ ଭାବରେ ଅତି ଶକ୍ତିମାନ ପୁରୁଷ । କିନ୍ତୁ ଆଧୁନିକ ଯୁଦ୍ଧ କୌଶଳ ଓ ବନ୍ଧୁକ ବାରୁଦ ଆଗରେ ଦୈହିକ ଶକ୍ତିର ସ୍ଥାନ କେଉଁଠି ? ତାଙ୍କର ଅବଶ୍ୟ ପାଞ୍ଚହଜାର ଆଫଗାନ ଅଶ୍ୱାରୋହୀ ବାହିନୀ ଥିଲା ଓ ତିରିଶ ହଜାର ସୈନ୍ୟଙ୍କୁ ସେ ନିୟନ୍ତ୍ରଣ କରୁଥିଲେ । ମାତ୍ର ଆଧୁନିକ ଯୁଦ୍ଧ କୌଶଳରେ ସେମାନଙ୍କର ତାଲିମ୍ ନଥିଲା । ଏଣେ ମୀରକାଶିମ୍‌ଙ୍କର ଆଶ୍ରୟଦାତା ହୋଇ ମଧ୍ୟ ସେ ମୁର୍ଶିଦାବାଦର ନବନିଯୁକ୍ତ ନବାବ ମୀରଜାଫରଙ୍କୁ ନବାବ ଗାଦି ଫେରି ପାଇଥିବାରୁ ସାଧୁବାଦ ଜଣାଉଥିଲେ । ଏଣୁ ମୀରକାଶିମ୍‌ଙ୍କୁ ସାହାଯ୍ୟ କରିବାକୁ ଯାଇ ଇଂରେଜମାନଙ୍କର ଶତ୍ରୁତା ଅର୍ଜନ କରିବା ପାଇଁ ନବାବ କେତେଦୂର ପ୍ରସ୍ତୁତ, ତାହା ଥିଲା ସନ୍ଦେହ-ଦୋଳାରେ । ଏପରି ପରିସ୍ଥିତିରେ ଅଯୋଧ୍ୟା ଆକ୍ରମଣ କରିବାକୁ ମେଜର କାର୍ଣ୍ଣାକ୍‌ଙ୍କ ଅପାରଗତା କମ୍ପାନୀ କର୍ତ୍ତୃପକ୍ଷଙ୍କୁ ବ୍ୟଥିତ କରିଥିଲା । କଲିକତା କାଉନସିଲ କାର୍ଣ୍ଣାକ୍‌ଙ୍କ ସ୍ଥାନରେ ଜଣେ ଦୁର୍ଦ୍ଧର୍ଷ ସାମରିକ ନେତା ମେଜର ହେକ୍ଟର

ମୁନ୍‌ରୋଙ୍କୁ ପାଟନା ସୈନ୍ୟବାହିନୀ ମୁଖ୍ୟରୂପେ ନିଯୁକ୍ତ କଲେ ଓ ଭାରତୀୟ ସିପାହୀମାନଙ୍କ ମଧ୍ୟରେ ଯେଉଁ ବିଶୃଙ୍ଖଳାର ସୂତ୍ରପାତ ହେଉଥିଲା, ତାକୁ ଦମନ କରିବା ପାଇଁ ଦୃଢ଼ ନିର୍ଦ୍ଦେଶ ଦେଇଥିଲେ ।

ଭାରତୀୟ ସିପାହୀମାନଙ୍କ ମଧ୍ୟରେ ଅସନ୍ତୋଷ ଓ ତଜ୍ଜନିତ ବିଶୃଙ୍ଖଳାର ବହୁ କାରଣ ଥିଲା । ୟୁରୋପୀୟମାନଙ୍କ ତୁଳନାରେ ଭାରତୀୟ ସିପାହୀଙ୍କର ଦରମା ଥିଲା ଅନେକ ଊଣା । ଏପରିକି ପାଟନାରେ ଅବସ୍ଥାପିତ ସୈନ୍ୟମାନଙ୍କ ମଧ୍ୟରେ ବିତରଣ କରିବା ପାଇଁ ନବନିଯୁକ୍ତ ନବାବ ମୀରଜାଫର ଯେଉଁ ଏକ ଲକ୍ଷ ମୁଦ୍ରା ଦାନ କରିଥିଲେ, କ୍ୟାପଟେନ୍ ଜେନିଂସ ଅତି ଅବିବେକୀ ଭାବରେ ତାହା ବିତରଣ କରିଥିଲେ । ଜଣେ ଭାରତୀୟ ସିପାହୀକୁ ମୁଣ୍ଡପିଛା ଚାରିଟଙ୍କା ଦେଇ ୟୁରୋପୀଆନ୍ ସୈନିକଙ୍କୁ ଜଣପିଛା ଚାଳିଶ ଟଙ୍କା ଦିଆଯାଉଥିଲା । ଏ ଅନ୍ୟାୟ ଅବିଚାର ବିରୁଦ୍ଧରେ ସିପାହୀମାନଙ୍କର ଅସନ୍ତୋଷ ଅଧିକ ଦିନ ଲୁଚି ରହିଲା ନାହିଁ । ଏପରିକି 'ଲାଲ ପଲଟନ' ନାମରେ ଖ୍ୟାତ କ୍ଲାଇଭ୍‌ଙ୍କ ଦ୍ୱାରା ସଂଗଠିତ ପ୍ରଥମ ସିପାହୀ ସଂଗଠନର ସୈନ୍ୟମାନଙ୍କ ମଧ୍ୟରେ ଅସନ୍ତୋଷ ଉଗ୍ରରୂପ ଧାରଣ କଲା ଓ ବିଦ୍ରୋହର ବହ୍ନି ଜଳି ଉଠିଲା । ମେଜର ମୁନ୍‌ରୋ କେତେଜଣ ଖାଣ୍ଟି ଇଂରେଜ ସୈନ୍ୟ 'ମାରାଇନ'ଙ୍କୁ ନିଯୁକ୍ତ କରି ଏହି ବିଦ୍ରୋହୀ ସିପାହୀମାନେ ଶୋଇଥିବା ଅବସ୍ଥାରେ ତାଙ୍କ ଉପରେ ଆକ୍ରମଣ କରି ସେମାନଙ୍କୁ ନିରସ୍ତ୍ର କଲେ ଓ ୨୪ ଜଣ ଦଳପତିଙ୍କୁ ଗିରଫ କଲେ । କୋର୍ଟ ମାର୍ସିଆଲ ବିଚାର ପରେ ଏମାନଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା ଓ ମୃତ୍ୟୁଦଣ୍ଡ ଦିଆଗଲା । ବନ୍ଧୁକ ସାମନାରେ ଚାରିଜଣ ଲେଖାଏଁ ଅଭିଯୁକ୍ତଙ୍କୁ ଠିଆ କରି ସର୍ବ ସମକ୍ଷରେ ସେମାନଙ୍କୁ ଦଳ ଦଳ କରି ନିର୍ମମ ଭାବରେ ଗୁଳିକରି ହତ୍ୟା କରାଗଲା । ଦୋଷୀ କେବଳ ଦଣ୍ଡିତ ହେବେ ନାହିଁ, ଅନ୍ୟମାନେ ଯେପରି ଭବିଷ୍ୟତରେ ଏପରି ବିଶୃଙ୍ଖଳ ଆଚରଣରୁ ନିବୃତ୍ତ ରହିବେ, ସେଥିପାଇଁ ବୋଧହୁଏ ମେଜର ମୁନ୍‌ରୋ ଏପରି ବର୍ବରୋଚିତ ପଦକ୍ଷେପ ନେଇଥିଲେ । ଏହି ପ୍ରକ୍ରିୟାରେ ଅଯୋଧ୍ୟା ଆକ୍ରମଣ ବିଳମ୍ବିତ ହେଲା ସତ୍ୟ, କିନ୍ତୁ ଇଂରେଜ କମ୍ପାନୀ ତାଙ୍କର ସିପାହୀମାନଙ୍କୁ ଶୃଙ୍ଖଳିତ ଓ ଆଜ୍ଞାବହ କରିବାକୁ ସମର୍ଥ ହୋଇଥିଲେ ।

ଏହି ବିଳମ୍ବ ଗୋଟିଏ ଦୃଷ୍ଟିରୁ ଇଂରେଜମାନଙ୍କର ସହାୟକ ମଧ ହେଲା । ପାଟନାରୁ ପଳାତକ ମୀରକାଶିମ୍‌ଙ୍କର ସଞ୍ଚିତ ଅର୍ଥ କ୍ରମେ ନିଃଶେଷ ହେବାକୁ ଲାଗିଲା,

ଅଥଚ ଲକ୍ଷ୍ନୌରେ ଅଯୋଧ୍ୟା ନବାବଙ୍କ ଆଶ୍ରିତ ହୋଇ ତାଙ୍କର କୌଣସି ନୂତନ ଆୟର ପନ୍ଥା ନଥିଲା । ଏଣୁ ତାଙ୍କର ସୈନ୍ୟମାନେ କ୍ରମେ ତାଙ୍କୁ ପରିତ୍ୟାଗ କରି ଅଯୋଧ୍ୟା ନବାବଙ୍କ ସେନାବାହିନୀରେ ଯୋଗ ଦେଲେ । ଏପରିକି ତାଙ୍କର ୟୁରୋପୀଆନ୍ ସେନାପତି ସୋମ୍‌ରୁ ମଧ୍ୟ ନବାବଙ୍କ ଅଧୀନରେ ଚାକିରି ଗ୍ରହଣ କଲେ । ମୀରକାଶିମ୍‌ଙ୍କର ନେତୃତ୍ୱ ଲୋପ ପାଇଲା । ଏଣେ ଦିଲ୍ଲୀ ସମ୍ରାଟ୍ ସାହା ଆଲାମ୍ ଅଧିକ ଦିନ ଅଯୋଧ୍ୟା ନବାବଙ୍କ ଉପରେ ନିର୍ଭରଶୀଳ ନହୋଇ ଇଂରେଜଙ୍କ ସହ ଭିତିରି ମନ୍ତ୍ରଣା ଚଳାଇଲେ । ତ୍ରି-ଶକ୍ତି ମେଣ୍ଟର ଆଉ ଗୁରୁତ୍ୱ ରହିଲା ନାହିଁ ।

ଉତ୍ତର ବିହାରର ବକ୍‌ସାର ନିକଟରେ ନବାବ ସୁଜାଉଦ୍‌ଦୌଲା ଛାଉଣି ପକାଇଥିଲେ । ତାଙ୍କର ସୈନ୍ୟସଂଖ୍ୟା ଥିଲା ପାଞ୍ଚହଜାର ଆଫଗାନ୍ ଅଶ୍ୱାରୋହୀଙ୍କ ସମେତ ତିରିଶ ହଜାରରୁ ଅଧିକ ସିପାହୀ । ଏତଦ୍‌ବ୍ୟତୀତ ତାଙ୍କ ସହିତ ଥିଲେ ମିରକାଶୀମ୍‌ଙ୍କ ୟୁରୋପୀଆନ୍ ସେନାପତି ସୋମରୁ ଓ ତାଙ୍କର ତାଲିମପ୍ରାପ୍ତ ସେନା । ଏହିମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ଏକହଜାର ୟୁରୋପୀୟ ସୈନ୍ୟଙ୍କ ସମେତ ପାଞ୍ଚହଜାର ତିନିଶହ ପଦାତିକ ସୈନ୍ୟ ଓ କେତେକ କମାଣ ଚାଳକଙ୍କ ନେତୃତ୍ୱ ନେଇ ଆଗେଇ ଚାଲିଲେ ମେଜର ମୁନ୍‌ରୋ । ମୁନ୍‌ରୋ ଥିଲେ କଠୋର ଶୃଙ୍ଖଳାପ୍ରିୟ ଓ ଯୁଦ୍ଧକୌଶଳ ପ୍ରୟୋଗରେ ପାରଙ୍ଗମ । ଆଫଗାନ୍ ଅଶ୍ୱାରୋହୀ ସୈନ୍ୟ ଯେତେବେଳେ ଇଂରେଜ ବାହିନୀର ବାମପଟେ ଆକ୍ରମଣକଲେ, ମୁନ୍‌ରୋଙ୍କ ପୂର୍ବକଳ୍ପିତ ଯୋଜନା ଅନୁଯାୟୀ ସେମାନଙ୍କୁ କମାଣ ଗୋଳାରେ ପ୍ରତିହତ କରାହେଲା । ଅଶ୍ୱସହ ଅଶ୍ୱାରୋହୀମାନେ ଛିନ୍‌ଛତ୍ର ହୋଇ ପଳାୟନ କଲେ । ଦକ୍ଷିଣ ପାଖରେ ଆକ୍ରମଣରତ ସୈନ୍ୟମାନଙ୍କୁ ମୁନ୍‌ରୋଙ୍କ ସିପାହୀମାନେ ବେୟୋନେଟ୍ ଓ ବନ୍ଧୁକ ଗୁଳିରେ ପରାହତ କଲେ । ନବାବ ବାହିନୀର ମୁଖ୍ୟ ମଧ୍ୟଭାଗ ଦାୟିତ୍ୱରେ ଥିବା ସେନାପତି ସୋମରୁ ଯେତେବେଳେ ଦେଖିଲେ ଯେ, ଇଂରେଜଙ୍କ ଆକ୍ରମଣରେ ବାମ ଓ ଦକ୍ଷିଣ ପଟେ ଅବସ୍ଥାପିତ ସୈନ୍ୟଗୋଷ୍ଠୀ ବିଶୃଙ୍ଖଳ ହୋଇ ପଳାୟନ କରୁଛନ୍ତି, ସେ ମଧ୍ୟ ଅବିଳମ୍ବେ ସୁଜାଉଦ୍‌ଦୌଲାଙ୍କ ସହ ପଛଘୁଞ୍ଚା ଦେଲେ । ଦୁଇମାଇଲ ପୃଷ୍ଠଗମନ କରିବା ପରେ ଗୋଟିଏ କ୍ଷୁଦ୍ର ନଦୀ କେତେଗୁଡ଼ିଏ କ୍ଷୁଦ୍ର ନୌକାରେ ପାର ହେବାପରେ, ସେମାନେ କମାଣ ଗୁଳିରେ ନୌକା ସବୁ ଧ୍ୱଂସ କରିଦେଇଥିଲେ । ନୌକା ଅଭାବରେ ଇଂରେଜମାନେ ଅବଶ୍ୟ ପଳାୟମାନ ଶତ୍ରୁର ଅନୁଧାବନ କରିପାରିଲେ

ନାହିଁ କିନ୍ତୁ ନବାବଙ୍କର ହଜାର ହଜାର ସୈନ୍ୟ ମଧ୍ୟ ନଦୀ ଅତିକ୍ରମ କରି ନପାରି ଇଂରେଜଙ୍କ ଗୁଳିର ଶିକାର ହେଲେ । ସେକାଳରେ କମାଣ ଓ ବନ୍ଧୁକ ଥିଲା ଦୁଷ୍ପ୍ରାପ୍ୟ ଓ ଦୁର୍ମୂଲ୍ୟ । ଅଥଚ ନବାବ ଛାଡ଼ି ଯାଇଥିବା ଏକଶହ ବନ୍ଧୁକ ଓ ପ୍ରାୟ ବାରହଜାର ପାଉଣ୍ଡ ମୂଲ୍ୟର ଧନରତ୍ନ ଇଂରେଜମାନଙ୍କର ହସ୍ତଗତ ହେଲା ।

ବକ୍ସାର ଯୁଦ୍ଧ ଥିଲା ଇଂରେଜ ଅଭିଯାତ୍ରାର ଏକ ସଫଳ ମାଇଲଖୁଣ୍ଟ । ପଲାସିରେ ଯେଉଁ ପ୍ରକ୍ରିୟାର ସୂତ୍ରପାତ ହୋଇଥିଲା, ବକ୍ସାରରେ ତାହା ବାସ୍ତବ ରୂପ ନେଲା । ଉତ୍ତରଭାରତର ଶକ୍ତିଶାଳୀ ମୁସଲମାନ ସାମ୍ରାଜ୍ୟର ବିପର୍ଯ୍ୟୟ ଦକ୍ଷିଣ ଭାରତର ରାଜନୀତିକୁ ମଧ୍ୟ ପ୍ରଭାବିତ କଲା । ମୀରକାଶିମ୍ ସର୍ବସ୍ୱ ହରାଇ ଦିଲ୍ଲୀ ପଳାୟନ କଲେ ଓ ତେର ବର୍ଷ ପରେ ଘୋର ଦୁର୍ଦ୍ଦିନରେ ତାଙ୍କର ମୃତ୍ୟୁ ହେଲା । ସମ୍ରାଟ୍ ସାହା ଆଲାମ୍ ଭୟାତୁର ହୋଇ ଇଂରେଜମାନଙ୍କର ସାହାଯ୍ୟପ୍ରାର୍ଥୀ ହେଲେ ।



# ଇଷ୍ଟ ଇଣ୍ଡିଆ କମ୍ପାନୀର 'ଦେଓ୍ୱାନୀ' ପ୍ରାପ୍ତି

ରବର୍ଟ କ୍ଲାଇଭ୍ ଭାରତକୁ ଆସିଥିଲେ, ଇଷ୍ଟ ଇଣ୍ଡିଆ କମ୍ପାନୀର ଜଣେ ସାଧାରଣ କିରାଣି ଭାବରେ । କିନ୍ତୁ ପଲାସି ଯୁଦ୍ଧର ଅଢ଼େଇ ବର୍ଷ ପରେ ୧୭୬୦ ମସିହାରେ ସେ ଯେତେବେଳେ ଲଣ୍ଡନରେ ପଦାର୍ପଣ କଲେ, ତାଙ୍କୁ ଇଂଲଣ୍ଡର ଦ୍ୱିତୀୟ ସର୍ବୋଚ୍ଚ ଧନୀ ବ୍ୟକ୍ତି ଭାବରେ ବିବେଚନା କରାଗଲା । ବ୍ରିଟିଶ ସରକାର ତାଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ କରି ଜଣେ ଆଇରିଶ ଲର୍ଡ଼ ରୂପେ ଘୋଷଣା କଲେ ଏବଂ ଲର୍ଡ଼ କ୍ଲାଇଭ୍ ହାଉସ୍ ଅଫ୍ ଲର୍ଡ଼ସ୍‌ର ସଭ୍ୟ କଲା । ପାର୍ଲିଆମେଣ୍ଟ ସଭ୍ୟପଦ ଓ ଅର୍ଥର ପ୍ରାଚୁର୍ଯ୍ୟ ତାଙ୍କୁ ରାଜନୀତି ପ୍ରତି ଆକୃଷ୍ଟ କଲା ଏବଂ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ନିୟନ୍ତ୍ରଣ କରିବା ପାଇଁ ସେ ପ୍ରୟାସୀ ହେଲେ । ଏକ ଲକ୍ଷ ପାଉଣ୍ଡ ଖର୍ଚ୍ଚ କରି ସେ କେତେକ ବନ୍ଧୁ ଓ ସମ୍ପର୍କୀୟଙ୍କ ନାମରେ କମ୍ପାନୀର ଶେଆର ଖରିଦ କଲେ ଓ ପରିଚାଳନା ବୋର୍ଡ଼କୁ ଦଖଲ କରିବା ପାଇଁ ଉଦ୍ୟମ କଲେ । ଏହି ସମୟରେ ୧୭୬୩ ଜୁନ୍ ମାସରେ ଏକ ଦୁଃସମ୍ବାଦ ପହଞ୍ଚିଲା ଯେ ପାଟନା ଯୁଦ୍ଧରେ ମୀରକାଶିମ୍ ଇଂରେଜମାନଙ୍କୁ ପରାସ୍ତ କରିଛନ୍ତି । କମ୍ପାନୀ କର୍ତ୍ତୃପକ୍ଷ ପୁଣିଥରେ କ୍ଲାଇଭ୍‌ଙ୍କୁ ଗଭର୍ଣ୍ଣର ରୂପେ ବଙ୍ଗଳା ପଠାଇବା ପାଇଁ ପ୍ରସ୍ତାବ କଲେ । ପୁନର୍ବାର ଭାରତ ଆସିବା ପାଇଁ କ୍ଲାଇଭ୍ ଅନିଚ୍ଛୁକ ନଥିଲେ, କିନ୍ତୁ ପରିସ୍ଥିତିର ସୁବିଧା ନେଇ ସେ ଦାବି କଲେ ଯେ କଲିକତା କାଉନ୍‌ସିଲ ଉପରେ ତାଙ୍କର ପୂର୍ଣ୍ଣ ନିୟନ୍ତ୍ରଣ କ୍ଷମତା ରହିଲେ ସେ ଏ ପ୍ରସ୍ତାବରେ ରାଜି ହେବେ । କମ୍ପାନୀ କ୍ଲାଇଭ୍‌ଙ୍କୁ ନିରଙ୍କୁଶ ଶାସନକ୍ଷମତା ପ୍ରଦାନ କରିବାକୁ ସମ୍ମତ ହେଲେ ଏବଂ କ୍ଲାଇଭ୍ ଏହି ସର୍ତ୍ତରେ ଭାରତ ଯାତ୍ରା ଆରମ୍ଭ କଲେ । ଦୀର୍ଘ ଏଗାର ମାସର ଜଳଯାତ୍ରା ପରେ ତାଙ୍କ ଜାହାଜ ୧୭୬୫ ମସିହା ମଇ ମାସରେ କଲିକତାରେ ପହଞ୍ଚିଲା ।

ଲର୍ଡ କ୍ଲାଇଭ୍‌ଙ୍କ ପୁନରାଗମନରେ ଯେ ସବୁଠାରୁ ବେଶି ଆନନ୍ଦିତ ହୋଇଥାଆନ୍ତେ, ସେହି ବୃଦ୍ଧ ନବାବ ମୀରଜାଫର କିନ୍ତୁ ଜୀବଦ୍ଦଶାରେ ନଥିଲେ ।

ଦ୍ୱିତୀୟ ଥର ମୁର୍ଶିଦାବାଦର ନବାବ ପଦ ଗ୍ରହଣ କରିବା ପରେ କମ୍ପାନୀ କର୍ମଚାରୀମାନେ ତାଙ୍କୁ ଖୁବ୍ ହଇରାଣ ହରକତ୍ କରିଥିଲେ । ମୀରକାଶିମ୍ ବିରୋଧୀ ଯୁଦ୍ଧ ଖର୍ଚ୍ଚ ବାବତକୁ ତାଙ୍କଠାରୁ ନାନା ଉପାୟରେ ବେଆଇନ୍ ପାଉଣା ଆଦାୟ କରାଯାଉଥିଲା; ଅଥଚ ଇଂରେଜ କମ୍ପାନୀ ଯେ ନିଜ ସ୍ୱାର୍ଥ ପାଇଁ ଯୁଦ୍ଧରତ ଅଛନ୍ତି, ମୀରଜାଫରଙ୍କୁ ଏକଥା ଅଜଣା ନଥିଲା । ସେ ଭାବିଥିଲେ କ୍ଲାଇଭ୍ ପୁନର୍ବାର ଫେରିଲେ ଏହାର ପ୍ରତିକାର କରାଯାଇ ପାରିବ । କିନ୍ତୁ ୧୭୬୫ ମସିହା ଫେବୃଆରୀ ମାସରେ ତାଙ୍କର ଦେହାନ୍ତ ହେଲା । ଯାହାହେଉ, ମୃତ୍ୟୁ ପୂର୍ବରୁ ସେ କ୍ଲାଇଭ୍‌ଙ୍କ ପାଇଁ ପାଞ୍ଚଲକ୍ଷ ଟଙ୍କା ମୂଲ୍ୟର ସୁନା ଓ ଅନ୍ୟାନ୍ୟ ମୂଲ୍ୟବାନ୍ ରତ୍ନ 'ପାରିତୋଷିକ' ସ୍ୱରୂପ ରଖିଯାଇଥିଲେ ।

କମ୍ପାନୀ ପରିଚାଳନା ବୋର୍ଡ଼ କର୍ମଚାରୀମାନଙ୍କ ମଧ୍ୟରେ ପ୍ରବେଶ କରିଥିବା ଦୁର୍ନୀତି ଦୂର କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ଏଥିରେ ସ୍ପଷ୍ଟ ଉଲ୍ଲେଖ ଥିଲା ଯେ କୌଣସି ଇଂରେଜ କର୍ମଚାରୀ କାହାରିଠାରୁ ଚାରିହଜାର ଟଙ୍କାରୁ ଅଧିକ ପାରିତୋଷିକ ବୋର୍ଡ଼ଙ୍କ ବିନାନୁମତିରେ ଗ୍ରହଣ କରିପାରିବେ ନାହିଁ । କ୍ଲାଇଭ୍ ନିଶ୍ଚିତ ଭାବରେ ଏ ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ବଙ୍ଗ-ପାଳନର ଦାୟିତ୍ୱ ଏବେ ତାଙ୍କ ହାତରେ ନ୍ୟସ୍ତ ହେଲା । କ୍ଲାଇଭ୍ କଲିକତାରେ ପହଞ୍ଚି ଦେଖିଲେ, କର୍ମଚାରୀମାନେ ପରିଚାଳନା ବୋର୍ଡ଼ର ନିର୍ଦ୍ଧାରଣ ପ୍ରତି ଭ୍ରୂକ୍ଷେପ କରୁନାହାନ୍ତି । ମୀରଜାଫରଙ୍କ ମୃତ୍ୟୁ ପରେ ତାଙ୍କର ଜଣେ ନର୍ତ୍ତକୀ ପୁତ୍ରକୁ ନବାବ ପଦରେ ବସାଯାଇଛି ଓ ସେଥିପାଇଁ କାଉନ୍‌ସିଲ ସଦସ୍ୟମାନେ ତାଙ୍କଠାରୁ ପ୍ରଚୁର ଉତ୍କୋଚ ଆଦାୟ କରିଛନ୍ତି । ଅନୁସନ୍ଧାନରୁ ଜଣାପଡ଼ିଲା, ଏ ଅର୍ଥ ସଂଗ୍ରହ ସ୍ୱେଚ୍ଛାକୃତ ପାରିତୋଷିକ ନୁହେଁ । ନର୍ତ୍ତକୀ ପୁତ୍ର ନଜ୍‌ମଉଦ୍‌ଦୌଲାଙ୍କୁ ଧମକ ଚମକ ଦେଇ ଏ ଅର୍ଥ ଆଦାୟ କରାଯାଇଛି । ଏପରିକି ମୁର୍ଶିଦାବାଦ୍‌ର ପ୍ରଧାନମନ୍ତ୍ରୀ ପଦ ପାଇଁ କାଉନ୍‌ସିଲ୍ ସଦସ୍ୟମାନେ ମହମ୍ମଦ୍ ରେଜା ଖାନ୍‌ଙ୍କଠାରୁ କୋଡ଼ିଏ ଲକ୍ଷ ଟଙ୍କା ଘୁଷ୍ ନେଇଛନ୍ତି ।

ଜୁନ୍ ମାସ ଶେଷରେ କ୍ଲାଇଭ୍ ମୋଗଲ ସମ୍ରାଟ୍ ସାହା ଆଲାମ୍ ଓ ଅଯୋଧ୍ୟା ନବାବ ସୁଜାଉଦ୍‌ଦୌଲାଙ୍କ ସହ ଆଲୋଚନା କରିବା ପାଇଁ ଉତ୍ତର ଭାରତ ଯାତ୍ରା

କଲେ । ସାମରିକ ଦୃଷ୍ଟିରୁ ପରିସ୍ଥିତି ଥିଲା ଶାନ୍ତ ଓ ଅଯୋଧ୍ୟା ଥିଲା ଇଂରେଜମାନଙ୍କର ସମ୍ପୂର୍ଣ୍ଣ କରଗତ । ବକ୍ସାର ଯୁଦ୍ଧ ପରେ ବନାରସ୍‌ର ଶାସକ ମଧ୍ୟ ଚାଳିଶ ହଜାର ପାଉଣ୍ଡ ସଲାମୀ ଦେଇ ଇଂରେଜମାନଙ୍କର ଶରଣାଗତ ହୋଇଥିଲେ । ମୋଗଲ ସମ୍ରାଟ୍‌ଙ୍କ ସହ ସାକ୍ଷାତର ବ୍ୟବସ୍ଥା ହେଲା ଆଲ୍ଲାହାବାଦ ସହରରେ । କ୍ଲାଇଭ୍ ଭାରତ ଆସିବା ପୂର୍ବରୁ ଭାନ୍‌ସିଟାର୍ଟ ଓ ସ୍ପେନ୍‌ସର୍ ଅଯୋଧ୍ୟାକୁ ସାହା ଆଲାମ୍‌ଙ୍କୁ ଅର୍ପଣ କରିବା ପାଇଁ ଓ ତାଙ୍କୁ ସସମ୍ମାନେ ଦିଲ୍ଲୀ ନେଇ ସମ୍ରାଟ୍ ଗାଦିରେ ବସାଇବା ପାଇଁ ମନସ୍ଥ କରିଥିଲେ । କିନ୍ତୁ କ୍ଲାଇଭ୍ ଏ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ସାହା ଆଲାମ୍‌ଙ୍କ ଦକ୍ଷତା ଉପରେ ତାଙ୍କର ଆସ୍ଥା ନଥିଲା । ପରନ୍ତୁ ସେ ଆଶଙ୍କା କଲେ ଯେ ଆଉଧ୍ ବା ଅଯୋଧ୍ୟାକୁ ସାହା ଆଲାମଙ୍କୁ ଫେରାଇ ଦେଲେ, ତାଙ୍କୁ ଅନବରତ ସାମରିକ ସାହାଯ୍ୟ ଦେବାକୁ ହେବ । ଏଣୁ କ୍ଲାଇଭ୍ ସ୍ଥିର କଲେ ଯେ କୋରା ଓ ଆଲ୍ଲାହାବାଦ ଜିଲ୍ଲା ଦୁଇଟିକୁ ବାଦ୍ ଦେଇ ଅଯୋଧ୍ୟାକୁ ସୁଜାଉଦ୍‌ଦୌଲାଙ୍କୁ ପ୍ରତ୍ୟର୍ପଣ କରିବାକୁ ହେବ ଓ ତା ବଦଳରେ ଅଯୋଧ୍ୟା ନବାବ କମ୍ପାନୀକୁ ଯୁଦ୍ଧ କ୍ଷତିପୂରଣ ବାବତ ପଚାଶ ଲକ୍ଷ ଟଙ୍କା କ୍ଷତିପୂରଣ ଦେବେ ଓ କମ୍ପାନୀ ସହିତ ଏକ ପ୍ରତିରକ୍ଷାମୂଳକ ଚୁକ୍ତି ସମ୍ପାଦନ କରିବେ । ସୁଜାଉଦ୍‌ଦୌଲା ଏ ପ୍ରସ୍ତାବ ଆନନ୍ଦରେ ଗ୍ରହଣ କଲେ ।

ସାହା ଆଲାମ୍ ଅବଶ୍ୟ ଇଂରେଜମାନଙ୍କଠାରୁ ବହୁତ କିଛି ଆଶା କରୁଥିଲେ । ସାହା ଆଲାମ୍‌ଙ୍କୁ ସାହାଯ୍ୟ କରିବା ପାଇଁ କମ୍ପାନୀର କୌଣସି ନୈତିକ ଦାୟିତ୍ୱ ନଥିଲା । ବରଂ ଅତୀତରେ ସେ ବହୁବାର ଇଂରେଜମାନଙ୍କ ଉପରେ ଆକ୍ରମଣ କରି ପରାଜୟ ସ୍ୱୀକାର କରିଥିଲେ । କ୍ଲାଇଭ୍ ତାଙ୍କୁ ଅଯୋଧ୍ୟାର କୋରା ଓ ଆଲ୍ଲାହାବାଦ ଜିଲ୍ଲା ଦୁଇଟି ଅର୍ପଣ କଲେ । ଏ ଦୁଇ ଜିଲ୍ଲାର ରାଜସ୍ୱ ଥିଲା ଅଠେଇଶ ଲକ୍ଷ ଟଙ୍କା । ଏଥିସହିତ ବଙ୍ଗଳା ସୁବାର ରାଜସ୍ୱରୁ ବାର୍ଷିକ ଛବିଶ ଲକ୍ଷ ଟଙ୍କା ସଲାମୀ ସ୍ୱରୂପ ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଲେ । ପ୍ରତିବଦଳରେ ସେ ଦାବି କଲେ ଯେ ସାହା ଆଲାମ ବଙ୍ଗଳା ସୁବାର ଦେଓ୍ୱାନୀ ଅଧିକାର କମ୍ପାନୀକୁ ଅର୍ପଣ କରିବେ, ଯାହା ଫଳରେ କମ୍ପାନୀ ବଙ୍ଗଳା ଓ ବିହାରରୁ ରାଜସ୍ୱ ଆଦାୟ କରିବାର ଅଧିକାର ପ୍ରାପ୍ତ ହେବ । ମୁର୍ଶିଦାବାଦର ନବାବ ବହୁଦିନରୁ ମୋଗଲ ସମ୍ରାଟଙ୍କୁ ରାଜସ୍ୱ ଦେବା ପ୍ରଥା ବନ୍ଦ କରି ଦେଇଥିଲେ । ଏଣୁ ସାହା ଆଲାମ୍ ଏ ପ୍ରସ୍ତାବରେ ତୁରନ୍ତ ସମ୍ମତ ହେଲେ ।

୧୭୬୫ ମସିହା ଅଗଷ୍ଟ ୧୦ ତାରିଖରେ କ୍ଲାଇଭ୍‌ଙ୍କ ତମ୍ବୁରେ ଖାଇବା ଟେବୁଲ୍ ଉପରେ ଏକ ଅସ୍ଥାୟୀ ସିଂହାସନ ପ୍ରସ୍ତୁତ ହେଲା । ତହିଁ ଉପରେ ବସି ମୋଗଲ ସମ୍ରାଟ ସାହା ଆଲାମ୍ ବଙ୍ଗ ସୁବାର ଦେଓ୍ୱାନୀ କ୍ଲାଇଭ୍‌ଙ୍କୁ ପ୍ରଦାନ କଲେ । ଏହି ସନନ୍ଦ ପ୍ରଦାନ କରିବା ତାରିଖକୁ ଭାରତରେ ବ୍ରିଟିଶ-ରାଜର ଶୁଭାରମ୍ଭ ଦିବସ ବୋଲି କୁହାଯାଇଥାଏ । ସୁପ୍ରସିଦ୍ଧ ଅଧିବକ୍ତା ବ୍ରିଟିଶ ପାର୍ଲିଆମେଣ୍ଟର ସଦସ୍ୟ ବର୍କଙ୍କ ଭାଷାରେ–

*"ଏହି ଦିନଟିକୁ ଭାରତୀୟ ରାଷ୍ଟ୍ରରେ କମ୍ପାନୀର ବିଧିବଦ୍ଧ ସାମ୍ବିଧାନିକ ପ୍ରବେଶ ବୋଲି ବିବେଚନା କରାଯିବ । କାରଣ ଏହି ହୁକୁମନାମା ବଙ୍ଗଳାରେ କମ୍ପାନୀର ଶାସନ ପରିଚାଳନାକୁ ଆଇନସଙ୍ଗତ ରୂପ ଦେଇଥିଲା । କମ୍ପାନୀ ପକ୍ଷରେ ଏ ଆଦେଶ ଥିଲା ସର୍ବସ୍ୱୀକୃତ ଭାରତର ବିଧିବଦ୍ଧ ସମ୍ରାଟଙ୍କର ନିର୍ଦ୍ଦେଶ ।"*

କମ୍ପାନୀକୁ ଏହି ସନନ୍ଦ ପ୍ରଦାନ ଥିଲା ମୋଗଲ ଯୁଗର ଗୋଟିଏ ଲୁପ୍ତପ୍ରାୟ ପ୍ରଥାର ପୁନରୁତ୍‌ଥାନ । ମୋଗଲ ସମ୍ରାଟ୍‌ମାନେ ଅତୀତରେ ଶାସନର ସୁପରିଚାଳନା ପାଇଁ ବିଭିନ୍ନ ସୁବା ବା ପ୍ରଦେଶ ପାଇଁ ଜଣେ ସୁବେଦାର ନିଯୁକ୍ତ କରୁଥିଲେ ଓ ରାଜସ୍ୱ ଆଦାୟରେ ତାଙ୍କୁ ସାହାଯ୍ୟ କରିବା ପାଇଁ ଜଣେ ଦେଓ୍ୱାନ୍ ନିଯୁକ୍ତ ହେଉଥିଲେ । ଆଉରଙ୍ଗଜେବ୍‌ଙ୍କ ମୃତ୍ୟୁ ପରେ ମୋଗଲ ସାମ୍ରାଜ୍ୟ ଦିନୁଦିନ ଦୁର୍ବଳତର ହେବାକୁ ଲାଗିଲା । ସୁବେଦାରମାନେ ନିଜକୁ ନବାବ ଉପାଧି ଦେଇ ପ୍ରଶାସନ ସହ ରାଜସ୍ୱ ଆଦାୟ କ୍ଷମତା ମଧ୍ୟ ପ୍ରୟୋଗ କଲେ । ତେଣୁ ସମ୍ରାଟ୍ ସାହା ଆଲାମ କମ୍ପାନୀକୁ ଦେଓ୍ୱାନୀ କ୍ଷମତା ପ୍ରଦାନ କରି କମ୍ପାନୀ ଶାସନକୁ ଆଇନଗତ ରୂପ ଦେବାରେ ଆଗୁଧ ହୋଇଥିଲେ । କିନ୍ତୁ ଐତିହାସିକମାନଙ୍କ ମତରେ ଏ ଦେଓ୍ୱାନୀ ପ୍ରଦାନ ଥିଲା ଏକ ପ୍ରହସନ । ନିଜକୁ ସମ୍ରାଟ ଭାବରେ ଚିତ୍ର କରିବା ପାଇଁ ସାହା ଆଲାମଙ୍କର ଆଚରଣର କୌଣସି ଭିତ୍ତି ନଥିଲା । ନା ଥିଲା ତାଙ୍କର ରାଜନୈତିକ କ୍ଷମତା ବା ସାମରିକ ଶକ୍ତି, ଅସ୍ତସୂର୍ଯ୍ୟର କିରଣରେ ନଥିଲା ତେଜ ବା ଦୀପ୍ତି । ଇଂରେଜମାନଙ୍କ ହାତରେ ସେ ଥିଲେ ଜଣେ ଶକ୍ତିହୀନ କ୍ରୀଡ଼ନକ । ବଙ୍ଗଳା ରାଜସ୍ୱର କିଛି ଅଂଶ ନିଶ୍ଚିତ ଭାବରେ ପାଇବା ଆଶାରେ ସେ ଏହି ପଦକ୍ଷେପ ନେଇଥିଲେ ।

ଦ୍ୱିତୀୟ ଥର ପାଇଁ ଗଭର୍ଣ୍ଣର ଥିବା ସମୟରେ କ୍ଲାଇଭ୍ କମ୍ପାନୀର ପରିଚାଳନା, ବାଣିଜ୍ୟ ବିସ୍ତାର ଓ ଆଭ୍ୟନ୍ତରୀଣ ଶୃଙ୍ଖଳା ରକ୍ଷା ପ୍ରତି ବିଶେଷ ଧ୍ୟାନ ଦେଉଥିଲେ ।

ବଙ୍ଗଳା ସେନାବାହିନୀକୁ ଅଧିକ ସୁଶୃଙ୍ଖଳିତ ଓ କାର୍ଯ୍ୟୋପଯୋଗୀ କରିବା ଉଦ୍ଦେଶ୍ୟରେ ସେ ଗୋଟିଏ ଲେଖାଏଁ ବ୍ରିଗେଡ୍ ସୈନ୍ୟ ମୁଙ୍ଗେର୍, ପାଟନା ଓ ଆଲ୍ଲାହାବାଦରେ ଅବସ୍ଥାପିତ କରିଥିଲେ । ମୁର୍ଶିଦାବାଦ୍ ଗସ୍ତରେ ଥିବା ସମୟରେ ମୁଙ୍ଗେର ବ୍ରିଗେଡ୍‌ର କମାଣ୍ଡର ସାର ରବର୍ଟ ଫ୍ଲେଚରଙ୍କ ଠାରୁ ସମ୍ବାଦ ପାଇଲେ ଯେ ଉପରୋକ୍ତ ତିନି ସ୍ଥାନରେ ଅବସ୍ଥାପିତ ସୈନିକ ରେଜିମେଣ୍ଟର ଇଂରେଜ ଅଫିସରମାନେ ବିଦ୍ରୋହ କରିଛନ୍ତି ଓ ସୈନ୍ୟବାହିନୀରୁ ବିଦାୟ ନେବା ପାଇଁ ଚାକିରିରୁ ଇସ୍ତଫା ପ୍ରଦାନ କରିଛନ୍ତି । ସାଧାରଣ ସୈନ୍ୟମାନଙ୍କ ମଧ୍ୟରେ ଅଫିସରମାନଙ୍କ ପ୍ରତି ସହାନୁଭୂତି ଓ ସମର୍ଥନ ପ୍ରକାଶ ପାଉଛି । କ୍ଲାଇଭ୍ ତୁରନ୍ତ ମୁଙ୍ଗେର ଅଭିମୁଖେ ଯାତ୍ରା କଲେ । ସେଠାରେ ପହଞ୍ଚି ମରହଟ୍ଟାମାନଙ୍କ ବିରୁଦ୍ଧରେ ପ୍ରେରିତ ଓ ଏକଶହ ମାଇଲ ଦୂରରେ ଥିବା ଭାରତୀୟ ସିପାହୀ ବାଟାଲିଅନକୁ ସେ ୪୮ ଘଣ୍ଟା ମଧ୍ୟରେ ମୁଙ୍ଗେର ଫେରାଇ ଆଣିଲେ ଓ ଇଂରେଜ ଅଫିସରଙ୍କ ବିରୁଦ୍ଧରେ ଭାରତୀୟ ସିପାହୀଙ୍କୁ ପ୍ରୟୋଗ କରି ବିଦ୍ରୋହ ଦମନ କଲେ ଓ ଇସ୍ତଫା ଦେଇଥିବା ଅଫିସରମାନଙ୍କୁ ଗିରଫ କରି ସିପାହୀଙ୍କ ତତ୍ତ୍ୱାବଧାନରେ କଲିକତା ପଠାଇଦେଲେ । ପରେ ପାଟନା ଓ ଆଲ୍ଲାହାବାଦ୍‌ରେ ମଧ ସେହି କଠୋର ନୀତି ପ୍ରୟୋଗ କରି ସେ ଶୃଙ୍ଖଳା ଫେରାଇ ଆଣି ପାରିଥିଲେ । ଅନୁସନ୍ଧାନରୁ ଜଣାପଡ଼ିଲା, ମୁଙ୍ଗେର ବ୍ରିଗେଡ୍‌ର ମୁଖ୍ୟ ସାର୍ ରବର୍ଟ୍ ଫ୍ଲେଚର ଥିଲେ ଏହି ଷଡ଼ଯନ୍ତ୍ରର ମୁଖ୍ୟ ସହାୟକ ଓ ଅଂଶୀଦାର । ସାର୍ ଫ୍ଲେଚର୍‌ଙ୍କୁ କଲିକତା ଫେରାଇ ନିଆଗଲା ଓ ସେଠାରେ କୋର୍ଟ ମାର୍ଶିଆଲ୍ ବିଚାର ହୋଇ ତାଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା । ଉପଯୁକ୍ତ ଦଣ୍ଡବିଧାନ କରିବା ପାଇଁ ଫ୍ଲେଚର ଓ ତାଙ୍କର ବହୁ ସହଯୋଗୀଙ୍କୁ ଜାହାଜରେ ଇଂଲଣ୍ଡ ପଠାଇ ଦିଆଗଲା ।

ଅନ୍ତର୍ଦେଶୀୟ ବାଣିଜ୍ୟ କାରବାରରେ ଲିପ୍ତ ରହି କମ୍ପାନୀର କଲିକତା ଅଫିସ୍ ଅଧୀନସ୍ଥ କର୍ମଚାରୀମାନେ ଯେଉଁ ଦୁର୍ନୀତି ଆଚରଣ କରୁଥିଲେ ତା'ର ଉତ୍ପାଟନ କରିବା ଥିଲା କ୍ଲାଇଭ୍‌ଙ୍କର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ । ଏହି କାର୍ଯ୍ୟ କରିବାକୁ ଯାଇ ସେ କାଉନ୍‌ସିଲ୍ ସଦସ୍ୟ ଓ କର୍ମଚାରୀମାନଙ୍କ ମଧ୍ୟରେ ଶତ୍ରୁତା ସୃଷ୍ଟି କଲେ । ସହଯୋଗୀମାନେ ତାଙ୍କର ପୂର୍ବ ଦିନର କାର୍ଯ୍ୟକଳାପ ଓ ବ୍ୟାପକ ପାରିତୋଷିକ ଓ ଉତ୍କୋଚ ଗ୍ରହଣକୁ ଉଲ୍ଲେଖ କରି, ବର୍ତ୍ତମାନର ଦୁର୍ନୀତିବିରୋଧୀ ଆହ୍ୱାନକୁ ଗୁରୁତ୍ୱ

ଦେଲେନାହିଁ । ସେଥିପାଇଁ କ୍ଲାଇଭ୍‌ଙ୍କୁ ବହୁ ଅପ୍ରିୟ ଓ କଠୋର ପଦକ୍ଷେପ ନେବାକୁ ପଡ଼ିଥିଲା । ଯେଉଁ କାଉନ୍‌ସିଲ ସଦସ୍ୟମାନେ ଦୁର୍ନୀତିଗ୍ରସ୍ତ ବିବେଚିତ ହୋଇ କଲିକତାରୁ ବିତାଡ଼ିତ ହେଲେ, ଲଣ୍ଡନରେ ପହଞ୍ଚି ସେମାନେ କ୍ଲାଇଭ୍-ବିରୋଧୀ ପରିପ୍ରଚାରରେ ଝାସ ଦେଲେ । ଏଥିପାଇଁ ୧୭୬୮ ମସିହାରେ ଭାରତରୁ ପ୍ରତ୍ୟାବର୍ତ୍ତନ କରିବା ପରେ, କ୍ଲାଇଭ୍‌ଙ୍କୁ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ମହା-ଅଭିଯୋଗ ବା ଇଂପିଚ୍‌ମେଣ୍ଟ ପ୍ରୋସିଡ଼ିଂର ସମ୍ମୁଖୀନ ହେବାକୁ ପଡ଼ିଲା । କିନ୍ତୁ ଭାରତରେ ବ୍ରିଟିଶ୍ ରାଷ୍ଟ୍ରର ପ୍ରତିଷ୍ଠା ଓ ସ୍ୱଜାତି ପାଇଁ ଏତେଗୁଡ଼ିଏ ଉଲ୍ଲେଖନୀୟ ସଫଳ କାର୍ଯ୍ୟ କରିଥିବା ଦୃଷ୍ଟିରୁ, ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରାଗଲା ନାହିଁ । ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଗୃହୀତ ପ୍ରସ୍ତାବର ଶେଷାଂଶରେ ଲେଖାଥିଲା–

> *"ରବର୍ଟ ଲର୍ଡ଼ କ୍ଲାଇଭ୍ ଏ ଦେଶ ପାଇଁ ବହୁ ମହନୀୟ ଓ ପ୍ରଶଂସନୀୟ କାର୍ଯ୍ୟ କରିଅଛନ୍ତି ।"*



# ଦକ୍ଷିଣ ଭାରତରେ ମୁସ୍‌ଲିମ୍ ଶକ୍ତି

୧୭୬୧ ଜାନୁଆରୀ ମାସରେ ପଣ୍ଡିଚେରୀର ଫରାସୀ କର୍ତ୍ତୃପକ୍ଷଙ୍କ ଆତ୍ମସମର୍ପଣ ପରେ ୟୁରୋପରେ ବ୍ରିଟେନ୍ ଓ ଫ୍ରାନ୍ସ ମଧ୍ୟରେ ଚାଲିଥିବା ସାତବର୍ଷିଆ ଯୁଦ୍ଧର ମଧ୍ୟ ପରିସମାପ୍ତି ଘଟିଲା । ଉଭୟ ପକ୍ଷ ମଧ୍ୟରେ ସ୍ୱାକ୍ଷରିତ ସନ୍ଧିର ସର୍ତ୍ତ ଅନୁଯାୟୀ ଫରାସୀମାନେ ପଣ୍ଡିଚେରୀ ଓ ଚନ୍ଦନନଗର ଆଦି ସେମାନଙ୍କର ପୂର୍ବ ଅଧିଷ୍ଠାନଗୁଡ଼ିକ ଫେରିପାଇଲେ ଓ ଏହି କେତୋଟି ବସତିକୁ ବାଦ୍ ଦେଇ ଇଂରେଜମାନଙ୍କ ଦଖଲରେ ଥିବା ସମସ୍ତ ଭାରତୀୟ ଅଞ୍ଚଳ ଉପରେ ବ୍ରିଟିଶ୍ କର୍ତ୍ତୃତ୍ୱ ସ୍ୱୀକୃତ ହେଲା । ସେହିଦିନଠାରୁ ଫ୍ରାନ୍ସ ସହିତ ଇଷ୍ଟ ଇଣ୍ଡିଆ କମ୍ପାନୀର ସଶସ୍ତ୍ର ସଂଗ୍ରାମର ବିରତି ଘଟିଲା । କିନ୍ତୁ ଦାକ୍ଷିଣାତ୍ୟରେ ଇଂରେଜମାନଙ୍କ ପାଇଁ ବିପଦ ଆସିଲା ପ୍ରତିଷ୍ଠିତ ମୁସଲିମ୍ ଶାସକଗୋଷ୍ଠୀ ଓ କେତେକାଂଶରେ ମରହଟ୍ଟାମାନଙ୍କଠାରୁ ।

ଏହି ସମୟରେ ତିନୋଟି ମୁସ୍‌ଲିମ୍ ଶକ୍ତି ଦାକ୍ଷିଣାତ୍ୟରେ ରାଜୁତି କରୁଥିଲେ । କର୍ଣ୍ଣାଟକ ଥିଲା ନବାବ ଅନୱାରଉଦ୍ଦିନଙ୍କ ପୁତ୍ର ମହମ୍ମଦ ଅଲ୍ଲୀଙ୍କ ଅଧୀନରେ ଏବଂ ଆର୍କଟ ଥିଲା ତାର ରାଜଧାନୀ । ହାଇଦ୍ରାବାଦର ସୁବେଦାର ଥିଲେ ସଲାବତ୍ ଜଙ୍ଗ୍ ଓ ଅଳ୍ପ କେତେବର୍ଷ ଶାସନ କରିବା ପରେ ନିଜର ସାନଭାଇ ନିଜାମ ଅଲ୍ଲୀଙ୍କ ଦ୍ୱାରା ପଦଚ୍ୟୁତ ହୋଇ କାରାଗାରରେ ବନ୍ଦୀ ହେଲେ ଓ ସେହି ଅବସ୍ଥାରେ ତାଙ୍କୁ ବନ୍ଦିଶାଳାରେ ହତ୍ୟା କରାଗଲା । ପୂର୍ବ ଓ ପଶ୍ଚିମ ଘାଟ ପର୍ବତମାଳା ମଧ୍ୟରେ ଅବସ୍ଥିତ ମହୀଶୂର ଓ୍ୱାଦିଆର ବଂଶର ହିନ୍ଦୁ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ତାଙ୍କର ପ୍ରଧାନ ସେନାପତି ହାଇଦର ଅଲ୍ଲୀ ୧୭୬୧ ମସିହାରେ ରାଜାଙ୍କୁ ହତ୍ୟା କରି ରାଜଗାଦି ଦଖଲ କଲେ । ଦାକ୍ଷିଣାତ୍ୟରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଭବିଷ୍ୟତ ନିର୍ଭର କରୁଥିଲା ମୁଖ୍ୟତଃ କର୍ଣ୍ଣାଟକର ମହମ୍ମଦ ଅଲ୍ଲୀ, ହାଇଦ୍ରାବାଦର ନିଜାମ ଅଲ୍ଲୀ ଓ ମହୀଶୂରର ହାଇଦର ଅଲ୍ଲୀଙ୍କ ଉପରେ ।

ମହମ୍ମଦ ଅଲ୍ଲୀଙ୍କର ନିରନ୍ତର ଅଭିଯୋଗ ଥିଲା ଯେ, ସେ ଇଂରେଜ କମ୍ପାନୀ ପ୍ରତି ସମ୍ପୂର୍ଣ୍ଣ ଅନୁଗତ ଥିଲେ ମଧ୍ୟ ମାଡ୍ରାସ୍ ଗଭର୍ଣ୍ଣର ପିଗଟ୍ ତାଙ୍କ ପ୍ରତି କଠୋରତା ପ୍ରଦର୍ଶନ କରିଛନ୍ତି । ଏକଥା ସ୍ୱୀକାର କରିବାକୁ ହେବ, ଫରାସୀମାନଙ୍କ ବିରୁଦ୍ଧରେ ମହମ୍ମଦ ଅଲ୍ଲୀ ଇଂରେଜମାନଙ୍କୁ ସହାୟତା ଦେଇଆସିଛନ୍ତି ଓ ସହାୟତା ମଧ୍ୟ ଗ୍ରହଣ କରିଛନ୍ତି । ସେନାପତି ଲରେନ୍ସ ଓ ତାଙ୍କର ସହକାରୀ କ୍ଲାଇଭ୍ (ରବର୍ଟ କ୍ଲାଇଭ୍‌ଙ୍କ ପୁତ୍ର) ସବୁ ସମୟରେ କର୍ଣ୍ଣାଟକ ନବାବଙ୍କ ସହିତ ସଦ୍‌ଭାବପୂର୍ଣ୍ଣ ସମ୍ପର୍କ ରକ୍ଷା କରୁଥିଲେ ଓ ଇଂରେଜମାନଙ୍କ ସହିତ ଏହି ସୁସମ୍ପର୍କ ୧୭୯୫ ମସିହାରେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ଫରାସୀ ଶକ୍ତିର ପତନ ପରେ ସ୍ଥାନୀୟ ଶାସକମାନଙ୍କଠାରୁ ସବୁବେଳେ ବିପଦର ଆଶଙ୍କା ଥିଲେ ମଧ୍ୟ ମହମ୍ମଦ୍ ଅଲ୍ଲୀ ବିଳାସବ୍ୟସନରେ ଦିନ କଟାଇବାକୁ ସୁଖକର ମଣୁଥିଲେ । ଶେଷ ଜୀବନରେ ସେ ଆର୍କଟ ପରିତ୍ୟାଗ କରି ମାଡ୍ରାସ୍ ନିକଟରେ ଏକ ବିଳାସପୂର୍ଣ୍ଣ ପ୍ରାସାଦ ନିର୍ମାଣ କରି ସେହିଠାରେ ବସବାସ କରିବାକୁ ଆରମ୍ଭ କଲେ । ୱାରେନ୍ ହେଷ୍ଟିଂସ୍‌ଙ୍କ ଭାଷାରେ– ମହମ୍ମଦ ଅଲ୍ଲୀ ମଣିଷ ଭାବରେ ଅତି ଭଦ୍ର, ମାତ୍ର ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ସେ ଥିଲେ ସମ୍ପୂର୍ଣ୍ଣ ଅପାରଗ । ବସ୍ତୁତଃ ଇଷ୍ଟ ଇଣ୍ଡିଆ କମ୍ପାନୀର କର୍ମଚାରୀମାନଙ୍କଠାରୁ ଅତି ଚଢ଼ା ସୁଧରେ ଋଣ ନେଇ ସେ କମ୍ପାନୀର ଯୁଦ୍ଧ କ୍ଷତିପୂରଣ ଦେୟ ପରିଶୋଧ କରୁଥିଲେ । ଏଣେ କରଜ ବଢ଼ି ବଢ଼ି ଚାଲିଥିଲା । କଲିକତା ପରି ମାଡ୍ରାସ୍‌ର କର୍ମଚାରୀମାନେ ଥିଲେ ଅତି ଦୁର୍ନୀତିଗ୍ରସ୍ତ । କିନ୍ତୁ ମାଡ୍ରାସ୍ କର୍ମଚାରୀଙ୍କ ମଧ୍ୟରେ ଦୁର୍ନୀତି ଭିନ୍ନରୂପ ନେଇଥିଲା । ଯେଉଁ ଶାସକମାନଙ୍କୁ ସେମାନେ ଋଣ ଦେଉଥିଲେ, କମ୍ପାନୀର ସହାୟତାରେ ସେମାନଙ୍କୁ ନୂଆ ନୂଆ ରାଜ୍ୟ ଜୟ କରି ଅଧିକ ରାଜସ୍ୱ ଓ ଅର୍ଥ ସଂଗ୍ରହ କରିବାକୁ ସୁଯୋଗ ଦେଉଥିଲେ ; ଯେପରିକି ଋଣଗ୍ରହୀତା ନବାବ କର୍ମଚାରୀଙ୍କଠାରୁ ନେଇଥିବା ଋଣ ପରିଶୋଧ କରିବାକୁ ସମର୍ଥ ହେବେ । ସବୁ ମୁହୂର୍ତ୍ତରେ ଦେଣାଦାର ଥାଇ ମଧ୍ୟ ମହମ୍ମଦ ଅଲ୍ଲୀ ରାଜଯୋଗର ସ୍ୱପ୍ନ ଦେଖୁଥିଲେ ଏବଂ କମ୍ପାନୀ କାଉନ୍‌ସିଲର ବାରଣ ସତ୍ତ୍ୱେ ହାଇଦ୍ରାବାଦ୍‌ର ନିଜାମ, ହାଇଦର ଅଲ୍ଲୀ ଓ ମରହଟ୍ଟାମାନଙ୍କର ରାଜ୍ୟ ଦଖଲ କରିବାର ଯୋଜନା କରୁଥିଲେ । କମ୍ପାନୀ ଅଧିକ ଯୁଦ୍ଧ ବିଗ୍ରହରେ ଲିପ୍ତ ନରହି ବରଂ ଆଶା କରୁଥିଲେ ଯେ ସ୍ଥାନୀୟ ଶାସକମାନେ ପରସ୍ପର ବିରୁଦ୍ଧରେ ସଂଘର୍ଷ କରି ଯେପରି ଇଂରେଜମାନଙ୍କର ସାହାଯ୍ୟପ୍ରାର୍ଥୀ ହୁଅନ୍ତୁ ।

ହାଇଦ୍ରାବାଦର ନିଜାମ ଅଲ୍ଲୀ ପ୍ରାରମ୍ଭରୁ ମରହଟ୍ଟା ବିରୋଧୀ ସଂଗ୍ରାମରେ କିଛିଟା ସଫଳତା ହାସଲ କରିଥିଲେ । କମ୍ପାନୀର ମାଡ୍ରାସ କାଉନ୍‌ସିଲ ଏତିକିରେ ଆତଙ୍କିତ ହୋଇ ନିଜାମ ଅଲ୍ଲୀଙ୍କ ସହ ମିଳାମିଶା ପାଇଁ ସେନାପତି କାଇଲଏଡ୍‌ଙ୍କୁ ହାଇଦ୍ରାବାଦ ପଠାଇଲେ । ଦୀର୍ଘ ଆଲୋଚନା ପରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା । ଏହି ଚୁକ୍ତିର ଅନେକ ଗୁଡ଼ିଏ ସର୍ତ୍ତ ନିଜାମଙ୍କ ପକ୍ଷରେ ଥିଲା । କିନ୍ତୁ କ୍ଲାଇଭ୍‌ଙ୍କୁ ପ୍ରଦାନ କରିଥିବା ମୋଗଲ ସମ୍ରାଟ ସାହା ଆଲାମ୍‌ଙ୍କର ହୁକୁମନାମା ଦର୍ଶାଇ କାଇଲଏଡ୍ କର୍ଣ୍ଣାଟକର ମହମ୍ମଦ ଅଲ୍ଲୀଙ୍କୁ ହାଇଦ୍ରାବାଦର ସୁବେଦାରୀ ଆନୁଗତ୍ୟରୁ ମୁକ୍ତ କରିଥିଲେ ।

ହାଇଦର ଅଲ୍ଲୀ ଥିଲେ ଜଣେ ନିରକ୍ଷର ପଞ୍ଜାବୀ । ସେ ମହୀଶୂର ରାଜାଙ୍କର ସୈନ୍ୟବାହିନୀରେ ଜଣେ ସାଧାରଣ ସୈନିକରୁ ପଦୋନ୍ନତି ପାଇ ସେନାପତି ପଦରେ ନିଯୁକ୍ତ ହୋଇଥିଲେ । ନିରକ୍ଷର ହେଲେ ମଧ୍ୟ ସେ ଥିଲେ ଅତି ବୁଦ୍ଧିମାନ୍, ଧୂର୍ତ୍ତ, ସାହସୀ ଓ ସୁଦକ୍ଷ । ରାଜାଙ୍କୁ ହତ୍ୟା କରି ରାଜଗାଦି ଦଖଲ କଲାପରେ ସେ ପ୍ରଥମେ ନିଜର ସୈନ୍ୟବାହିନୀକୁ ସୁସଙ୍ଗଠିତ କରିଥିଲେ । ଜାଗିରଦାରମାନଙ୍କ ପ୍ରତି ଅନୁଗତ ଭଡ଼ାଟିଆ ସୈନ୍ୟମାନଙ୍କୁ ବିଦାୟ ଦେଇ ସେ ସମ୍ପୂର୍ଣ୍ଣ ସ୍ୱନିୟନ୍ତ୍ରଣରେ ନବାବସାହୀ ପ୍ରତି ଅନୁରକ୍ତ ଯୋଦ୍ଧା ଓ ଅଫିସରଙ୍କୁ ନେଇ ସୈନ୍ୟବାହିନୀକୁ ପୁନର୍ଗଠିତ କରିଥିଲେ । ଜାଗିର ବଣ୍ଟନ ପ୍ରଥା ରଦ୍ଦ କରି ସୈନ୍ୟମାନଙ୍କୁ ସରକାରୀ ପାଣ୍ଠିରୁ ବେତନ ଦେବାର ବ୍ୟବସ୍ଥା କଲେ । ହାଇଦର ଅଲ୍ଲୀ ଥିଲେ ପ୍ରଥମ ଭାରତୀୟ ଶାସକ, ଯେ ଅଶ୍ୱାରୋହୀଙ୍କ ବଦଳରେ ପଦାତିକ ସୈନ୍ୟଙ୍କ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ତାଙ୍କର କମାଣ ବାହିନୀ ଥିଲା ବ୍ରିଟିଶ୍‌ମାନଙ୍କର ସମକକ୍ଷ । ରାଜ୍ୟବିସ୍ତାର ପ୍ରତି ଧ୍ୟାନ ଦେବା ପୂର୍ବରୁ ସେ ବିରୋଧୀ ଶକ୍ତିମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବାକୁ ଦୃଢ଼ପରିକର ଥିଲେ । ପଞ୍ଚତ୍ରିଶ ଲକ୍ଷ ମୁଦ୍ରା ଉତ୍କୋଚ ଦେଇ ସେ ମରହଟ୍ଟାମାନଙ୍କୁ ଦାକ୍ଷିଣାତ୍ୟର ଅନ୍ତର୍ବିବାଦରୁ ଦୂରେଇ ରଖିବାକୁ ସମର୍ଥ ହୋଇଥିଲେ । ମହମ୍ମଦ୍ ଅଲ୍ଲୀଙ୍କର ଜଣେ ପରିତ୍ୟକ୍ତ ଭ୍ରାତା ମହଫୁସ୍ ଖାଁନ୍‌ଙ୍କ ଜରିଆରେ ସେ ନିଜାମ ଅଲ୍ଲୀଙ୍କୁ ବୁଝାଇ ଦେଇଥିଲେ ଯେ ହାଇଦର ଅଲ୍ଲୀଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ଅପେକ୍ଷା ହାଇଦରଙ୍କ ସହ ମିଶି ଇଂରେଜ ସମର୍ଥିତ କର୍ଣ୍ଣାଟକର ନବାବ ମହମ୍ମଦ ଅଲ୍ଲୀଙ୍କ ବିରୁଦ୍ଧରେ ଯୁଦ୍ଧରେ ଯୋଗଦେଲେ, ସେ କର୍ଣ୍ଣାଟକର ଆନୁଗତ୍ୟ ପୁନରୁଦ୍ଧାର କରିପାରିବେ ଓ ହାଇଦ୍ରାବାଦର ନବାବ କର୍ଣ୍ଣାଟକର

ସୁବେଦାର ବିବେଚିତ ହେବେ । ନିଜାମ ଅଲ୍ଲୀ ହାଇଦର ଅଲ୍ଲୀଙ୍କ ସହ ଯୋଗଦେବାକୁ ସମ୍ମତ ହେଲେ ।

ମହମ୍ମଦ ଅଲ୍ଲୀ ଏହି ଷଡ଼ଯନ୍ତ୍ର ବିଷୟରେ ସମ୍ବାଦ ପାଇ କମ୍ପାନୀର ମାଡ୍ରାସ୍ କାଉନ୍‌ସିଲ୍‌କୁ ଜଣାଇଦେଲେ ଓ ତୁରନ୍ତ ହାଇଦ୍ରାବାଦ ଉପରେ ଆକ୍ରମଣ କରିବା ପାଇଁ ଅନୁରୋଧ କଲେ । କର୍ଣ୍ଣେଲ୍ ସ୍ମିଥ୍ ମଧ୍ୟ ଅନୁରୂପ ସନ୍ଦେହ ପ୍ରକାଶ କରି ତାଙ୍କ ସୈନ୍ୟବାହିନୀକୁ କର୍ଣ୍ଣାଟକ ଫେରାଇ ନେବାକୁ ପରାମର୍ଶ ଦେଲେ । କିନ୍ତୁ ନିଜାମଙ୍କ କଅଁଳିଆ କଥାରେ ବିଶ୍ୱାସ କରି ମାଡ୍ରାସ୍ କାଉନ୍‌ସିଲ କୌଣସି ସତର୍କତା ଅବଲମ୍ବନ କଲେ ନାହିଁ । ନିଜାମ ଅଲ୍ଲୀଙ୍କ ସୈନ୍ୟମାନେ ହାଇଦର ଅଲ୍ଲୀଙ୍କ ମହୀଶୂର ସେନା ସହ ମିଳିତ ହୋଇ ଯେତେବେଳେ କର୍ଣ୍ଣାଟକ ଆକ୍ରମଣ ପାଇଁ ଉଦ୍ୟତ ହେଲେ, ମାଡ୍ରାସ୍ କାଉନ୍‌ସିଲ ମୁଣ୍ଡରେ ଚେତା ପଶିଲା ।

ମାଡ୍ରାସ୍ କାଉନସିଲ କର୍ଣ୍ଣେଲ ଯୋସେଫ୍ ସ୍ମିଥ୍‌ଙ୍କୁ ହାଇଦର ଅଲ୍ଲୀଙ୍କ ବିରୁଦ୍ଧରେ ଆକ୍ରମଣ କରିବାର ଦାୟିତ୍ୱ ଅର୍ପଣ କଲେ । ସ୍ମିଥ୍ ଥିଲେ କ୍ଲାଇଭ୍‌ଙ୍କର ଜଣେ ଘନିଷ୍ଠ ବନ୍ଧୁ ଓ ସ୍ତାବକ । କ୍ଲାଇଭ୍ ମାଡ୍ରାସ୍‌ରେ ଥିବା ସମୟରେ ସେ କିଛି କାଳ ତାଙ୍କ ଅଧୀନରେ କାର୍ଯ୍ୟ କରିଥିଲେ । ସ୍ମିଥ୍ ଯେତିକି ସାହସୀ ଓ ଯୋଦ୍ଧା, ମାଡ୍ରାସ୍ କାଉନ୍‌ସିଲ୍ ଥିଲେ ସେତିକି ଅକର୍ମଣ୍ୟ, ଅପଦାର୍ଥ ଓ ଦୁର୍ନୀତିଗ୍ରସ୍ତ । ସ୍ମିଥ୍ ମହୀଶୂରରୁ କର୍ଣ୍ଣାଟକର ଚାଙ୍ଗ୍‌ମାରେ ପହଞ୍ଚି ଦେଖନ୍ତି, ସେଠାରେ ଖାଇବା ରହିବା ବା ଅନ୍ୟ ସରଞ୍ଜାମର କୌଣସି ବ୍ୟବସ୍ଥା ନାହିଁ, ଯଦିଓ ମହମ୍ମଦ୍ ଅଲ୍ଲୀଙ୍କ ଦ୍ୱାରା ଏସବୁ ବ୍ୟବସ୍ଥା ହୋଇଥିବ ବୋଲି ମାଡ୍ରାସ୍ କାଉନ୍‌ସିଲ୍ ତାଙ୍କୁ ସୂଚନା ଦେଇଥିଲେ । ଏଣୁ କର୍ଣ୍ଣେଲ୍ ସ୍ମିଥ୍ ସେଠାରୁ ତ୍ରିନୋମାଲିକୁ ପଛଘୁଞ୍ଚା ଦେଲେ । ରାସ୍ତାରେ ହାଇଦର ଅଲ୍ଲୀ ଓ ନିଜାମ ଅଲ୍ଲୀଙ୍କ ମିଳିତ ସୈନ୍ୟବାହିନୀ ଇଂରେଜମାନଙ୍କ ଉପରେ ଆକ୍ରମଣ କଲେ । ସ୍ମିଥ୍ ତାଙ୍କର କ୍ଷୁଦ୍ର ସେନାର ସହାୟତାରେ ଏପରି କଠୋର ପ୍ରତିଆକ୍ରମଣ କଲେ ଯେ ମହୀଶୂର ଓ ହାଇଦ୍ରାବାଦ୍ ସେନାଙ୍କୁ ପଛଘୁଞ୍ଚା ଦେବାକୁ ହେଲା । ତ୍ରିନୋମାଲିରେ ପହଞ୍ଚି ପୁନର୍ବାର ସେହି ଅବ୍ୟବସ୍ଥାର ସମ୍ମୁଖୀନ ହେଲେ । ପ୍ରତିଶ୍ରୁତି ସତ୍ତ୍ୱେ ମହମ୍ମଦ୍ ଅଲ୍ଲୀଙ୍କ ପକ୍ଷରୁ କୌଣସି ଆୟୋଜନ ନଥିଲା । ଯାହାହେଉ ତ୍ରିନୋମାଲିରେ କେତେ ସପ୍ତାହ ଅପେକ୍ଷା କରିବା ପରେ ସ୍ମିଥ୍ କର୍ଣ୍ଣେଲ୍ ଉଡ୍‌ଙ୍କ ସହ ପୁନର୍ବାର ଶତ୍ରୁସେନା ଉପରେ ଆକ୍ରମଣ କଲେ । ଏ ଯୁଦ୍ଧରେ ହାଇଦର ଅଲ୍ଲୀ ଓ ନିଜାମ ଅଲ୍ଲୀଙ୍କର ପ୍ରାୟ ଚାରିହଜାର ସୈନ୍ୟ ନିହତ ହେଲେ ଏବଂ ୬୪ଟି କମାଣ ପରିତ୍ୟାଗ କରି ସେମାନେ ପଳାୟନ କଲେ ।

ଦୁଇଥର ପରାଜୟ ପରେ ନିଜାମ ଅଲ୍ଲୀ ହତୋତ୍ସାହ ହୋଇପଡ଼ିଲେ । ସମ୍ବାଦ ମିଳିଲା, ଉତ୍ତର ସିର୍କାର ଜିଲ୍ଲାଗୁଡ଼ିକୁ ଆକ୍ରମଣ କରିବାପାଇଁ ଗୋଟିଏ ଇଂରେଜ ସେନାଦଳ ବଙ୍ଗଳାରୁ ଜାହାଜରେ ଆସୁଛନ୍ତି । ନିଜାମ ବିଚାର କଲେ, ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ଯୋଗଦେଇ ସେ ବୋଧହୁଏ ଭୁଲ୍ କରିଛନ୍ତି । ତୁରନ୍ତ ମିଳାମିଶା କରିବା ପାଇଁ ସେ ସ୍ମିଥ୍‌ଙ୍କୁ ସମ୍ବାଦ ପଠାଇଲେ । କିନ୍ତୁ ସ୍ମିଥ୍ ଦାବି କଲେ, ନିଜାମ ଅଲ୍ଲୀ ଅବିଳମ୍ବେ ତାଙ୍କର ସେନାବାହିନୀକୁ ମହୀଶୂରରୁ ଫେରାଇ ନଆଣିଲେ, ତାଙ୍କ ସହ ଆଲୋଚନା ହୋଇପାରିବ ନାହିଁ । ତାହାହିଁ ହେଲା । ଫେବୃଆରୀ ୧୭୬୮ ମସିହାରେ ଇଂରେଜ କମ୍ପାନୀ ଓ ହାଇଦ୍ରାବାଦ ମଧ୍ୟରେ ସନ୍ଧି ଚୁକ୍ତି ସ୍ୱାକ୍ଷରିତ ହେଲା । ଏ ଚୁକ୍ତି ଥିଲା ଇଂରେଜମାନଙ୍କ ସହ ବନ୍ଧୁତାର ପ୍ରଥମ ସୋପାନ । ଏହାପରେ ନିଜାମ ଅଲ୍ଲୀଙ୍କ ବଂଶଧରମାନେ ବ୍ରିଟିଶ ସରକାରଙ୍କ ପରମ ମିତ୍ର ଭାବରେ ବିବେଚିତ ହେଲେ ।

ଏଣେ ମହୀଶୂର ଆକ୍ରମଣରେ କର୍ଣ୍ଣେଲ୍ ସ୍ମିଥ୍ କେତେକ ସଫଳତା ହାସଲ କରିଥିଲେ । ତାଙ୍କର ସହକାରୀ କର୍ଣ୍ଣେଲ୍ ଉଡ୍ ଦକ୍ଷିଣରେ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ଅଧିକାର କଲେ ଓ ସ୍ମିଥ୍ ବାଙ୍ଗାଲୋର ଅଭିମୁଖେ ସୈନ୍ୟ ଚାଳନା କଲେ । ଏହି ସମୟରେ ହାଇଦର୍ ଅଲ୍ଲୀ ମରହଟ୍ଟାମାନଙ୍କ ପକ୍ଷରୁ ମହୀଶୂର ଆକ୍ରମଣର ଆଶଙ୍କା କରୁଥିଲେ । ସେ ଉଭୟ ପଟୁ ଦୁଇଟି ବିଭିନ୍ନ ଶତ୍ରୁଙ୍କର ମୁକାବିଲା କରିବାକୁ ଉଚିତ ମନେକଲେ ନାହିଁ । ଏଣୁ ହାଇଦର୍ ଇଂରେଜଙ୍କ ସହ ମିଳାମିଶା ପାଇଁ ପ୍ରସ୍ତାବ ଦେଲେ । କିନ୍ତୁ ମାଡ୍ରାସ୍ କାଉନ୍‌ସିଲ୍ ଏଥିରେ ରାଜି ହେଲେନାହିଁ । ଇଂରେଜମାନଙ୍କୁ ଶିକ୍ଷା ଦେବା ପାଇଁ ହାଇଦର ଅଲ୍ଲୀ ୬୦୦୦ ଅଶ୍ୱାରୋହୀ ଓ ୨୦୦ ବଛାବଛା ପଦାତିକ ସୈନ୍ୟଙ୍କୁ ସାଙ୍ଗରେ ଧରି, ତିନିଦିନ ମଧ୍ୟରେ ଏକଶହ ତିରିଶ ମାଇଲ ରାସ୍ତା ଅତିକ୍ରମ କରି ମାଡ୍ରାସ୍ ଉପକଣ୍ଠରେ ଝାମ୍ପ ଦେଲେ ଓ ଲୁଟତରାଜ ଆରମ୍ଭ କଲେ । ତାଙ୍କ ସହ ସନ୍ଧି ସର୍ତ୍ତ ଆଲୋଚନା କରିବାକୁ ହାଇଦର ଦାବି କଲେ । ଆପଣାର ସୈନ୍ୟବାହିନୀଠାରୁ ବିଚ୍ଛିନ୍ନ ହୋଇ ହାଇଦର ଅଲ୍ଲୀଙ୍କ ସହ ଆପୋସ ମୀମାଂସା କରିବା ବ୍ୟତୀତ ମାଡ୍ରାସ୍ କାଉନ୍‌ସିଲ୍‌ର ଅନ୍ୟଗତି ନଥିଲା । ଉଭୟଙ୍କ ମଧ୍ୟରେ ମାଡ୍ରାସ୍ ଚୁକ୍ତି ୧୭୬୯ ମସିହାରେ ସ୍ୱାକ୍ଷରିତ ହେଲା । ଏହି ଚୁକ୍ତି ଅନୁଯାୟୀ ପ୍ରତ୍ୟେକେ ଅପରର ଅଧିକୃତ ଅଞ୍ଚଳଗୁଡ଼ିକୁ ଫେରାଇଦେଲେ ଏବଂ ତୃତୀୟ ପକ୍ଷ ଦ୍ୱାରା ଆକ୍ରାନ୍ତ ହେଲେ ପରସ୍ପରକୁ ସାହାଯ୍ୟ କରିବାକୁ ସ୍ୱୀକୃତ ହୋଇଥିଲେ । ଏହିପରି ଭାବରେ ପ୍ରଥମ ମହୀଶୂର ଯୁଦ୍ଧ ସମାପ୍ତ ହେଲା ।

●

# ବ୍ରିଟିଶ ଶାସନର ଭିତ୍ତି ଓ ୱାରେନ୍ ହେଷ୍ଟିଂସ୍

ଇଷ୍ଟ ଇଣ୍ଡିଆ କମ୍ପାନୀ ମୋଗଲ ସମ୍ରାଟଙ୍କଠାରୁ ବଙ୍ଗଳା ବିହାରର ଦେୱାନୀ ବା ରାଜସ୍ୱ ଆଦାୟ ଅଧିକାର ପ୍ରାପ୍ତ ହେବା ପରେ ଲଣ୍ଡନରେ କମ୍ପାନୀର ଆର୍ଥିକ ସ୍ୱଚ୍ଛଳତା ପରିବୃଦ୍ଧି ସଂକ୍ରାନ୍ତରେ ନାନା କଳ୍ପନା ଜଳ୍ପନା ପ୍ରଚାରିତ ହେଲା । କମ୍ପାନୀର କର୍ମଚାରୀମାନେ ଭାରତରୁ ବିଲାତ ଫେରି ଯେଉଁଳି ସ୍ୱଚ୍ଛଳତା ପ୍ରଦର୍ଶନ କରୁଥିଲେ ଓ ସମ୍ପତ୍ତିବାଡ଼ି ଖରିଦ୍ କରି, ଏପରିକି ଅର୍ଥବଳରେ ପାର୍ଲିଆମେଣ୍ଟ ସଭ୍ୟ ପଦ ହାସଲ କରି ନିଜର ପ୍ରତିପତ୍ତି ବଢ଼ାଇ ପାରୁଥିଲେ, ତାହା ଲୋକମୁଖରେ ଚର୍ଚ୍ଚାର ବିଷୟ ଥିଲା । କାର୍ଯ୍ୟତଃ ୧୭୬୮ ମସିହାରେ ବ୍ରିଟିଶ୍ ପାର୍ଲିଆମେଣ୍ଟର ସଭ୍ୟମାନଙ୍କ ମଧ୍ୟରୁ ୨୦ ଜଣ ଥିଲେ ଇଷ୍ଟ ଇଣ୍ଡିଆ କମ୍ପାନୀର ପୂର୍ବତନ କର୍ମଚାରୀ । ସେମାନଙ୍କ ମଧ୍ୟରେ କ୍ଲାଇଭ୍, ପିଗଟ୍, କୁଟ୍, କାର୍ଣ୍ଣାକ୍, ଫ୍ଲେଚର, ଭାନ୍ସିଟାର୍ଟ ଓ ମେଜର ମୁନ୍‌ରୋ ପ୍ରଭୃତି ଅନ୍ତର୍ଭୁକ୍ତ । କମ୍ପାନୀର ଡାଇରେକ୍ଟର, ଅଂଶୀଦାର ଓ ବ୍ରିଟିଶ ମନ୍ତ୍ରୀ ପରିଷଦର ଧାରଣା ହେଲା ଯେ ଭାରତରେ ଅଚଳାଚଳ ଧନସମ୍ପଦ ଭରି ରହିଛି, କେବଳ ନେଇ ଆଣି ପାରିବାର ଯୋଗ୍ୟତା ଆବଶ୍ୟକ । କମ୍ପାନୀର ଶେଆର ହୋଲ୍‌ଡରମାନେ ତାଙ୍କର ବାର୍ଷିକ ଡିଭିଡେଣ୍ଡ ବା ଲାଭାଂଶ ବୃଦ୍ଧି ପାଇଁ ଦାବି କଲେ ଓ ଡିଭିଡେଣ୍ଡ ଶତକଡ଼ା ୬ ଭାଗରୁ ୧୦ଭାଗ ବଢ଼ାଇ ଦିଆଗଲା । ବ୍ରିଟିଶ୍ ପାର୍ଲିଆମେଣ୍ଟ ମଧ୍ୟ ନିର୍ଦ୍ଧାରଣ ନେଲେ ଯେ କମ୍ପାନୀ ତାଙ୍କ ଆୟରୁ ବାର୍ଷିକ ଚାରି ଲକ୍ଷ ପାଉଣ୍ଡ ସରକାରଙ୍କୁ ଦେବେ । କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଦେଖାଗଲା ଯେ ବଙ୍ଗ, ବିହାରରେ ରାଜସ୍ୱ ଆଦାୟ ଆଶାଜନକ ନୁହେଁ । କମ୍ପାନୀର ଡାଇରେକ୍ଟରମାନେ ଆଶଙ୍କା କଲେ ଯେ ସ୍ଥାନୀୟ କର୍ମଚାରୀମାନଙ୍କର ଦୁର୍ନୀତି ଓ ଅବହେଳା ହେତୁ ରାଜସ୍ୱ ବିଧିବଦ୍ଧ ଭାବରେ ଆଦାୟ ହୋଇପାରୁନାହିଁ । ଡାଇରେକ୍ଟର ବୋର୍ଡ଼ ନିଷ୍ପତ୍ତି ନେଲେ, ରାଜସ୍ୱ ଯଦି କମ୍ପାନୀର

ପ୍ରାପ୍ୟ, ତାହାହେଲେ ରାଜସ୍ୱ ଆଦାୟ ପାଇଁ ନବାବ ଓ ତାଙ୍କର କର୍ମଚାରୀମାନଙ୍କ ଉପରେ ନିର୍ଭର ନକରି, କମ୍ପାନୀକୁ ସେ ଦାୟିତ୍ୱ ପୂର୍ଣ୍ଣ ବହନ କରିବାକୁ ହେବ । ଏହି ନୂତନ ନୀତି କାର୍ଯ୍ୟକାରୀ କରିବା ପାଇଁ ଡାଇରେକ୍ଟର ବୋର୍ଡ଼ ଜଣେ ଅତି ଅଭିଜ୍ଞ କର୍ମଚାରୀ ୱାରେନ୍ ହେଷ୍ଟିଂସ୍‌ଙ୍କୁ ବଙ୍ଗଳାର ଗଭର୍ଣ୍ଣର ନିଯୁକ୍ତ କଲେ । ପାର୍ଲିଆମେଣ୍ଟ ମଧ୍ୟ ଏଥିପାଇଁ ନୂତନ ଆଇନ ପ୍ରଣୟନ କରିବାକୁ ସରକାରୀ ସ୍ତରରେ ନିଷ୍ପତ୍ତି ନିଆଗଲା ।

ୱାରେନ୍ ହେଷ୍ଟିଂସ୍ ଥିଲେ ୱେଷ୍ଟମିନିଷ୍ଟରର ଜଣେ ଅତି ମେଧାବୀ ଛାତ୍ର, ବିଚକ୍ଷଣ ବୁଦ୍ଧିଜୀବୀ ଓ ସୁଦକ୍ଷ ବ୍ୟକ୍ତି । ଗଭର୍ଣ୍ଣର ନିଯୁକ୍ତ ହେବା ପୂର୍ବରୁ ପ୍ରାୟ ଚଉଦ ବର୍ଷ ଧରି ବଙ୍ଗଳାରେ କାର୍ଯ୍ୟ କରି ସ୍ଥାନୀୟ ସମସ୍ୟା ବିଷୟରେ ସେ ଥିଲେ ଅତି ଅଭିଜ୍ଞ । ବଙ୍ଗଳା ଭାଷା ତାଙ୍କୁ ଜଣାଥିଲା ଓ ବଙ୍ଗଳାରେ ସେ ସ୍ପଷ୍ଟ କଥାବାର୍ତ୍ତା କରିପାରୁଥିଲେ । ଉର୍ଦ୍ଦୁ ଓ ପର୍ସିଆନ୍ ଭାଷା ମଧ୍ୟ ଅଳ୍ପ ବହୁତ ଜଣାଥିଲା । ମୁର୍ଶିଦାବାଦ୍, କାଶୀମ୍ ବଜାର ଓ କଲିକତା ଆଦି ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ପଦ ପଦବୀରେ କାର୍ଯ୍ୟକରି ମୁସ୍‌ଲିମ୍ ନବାବ, ତାଙ୍କର କର୍ମଚାରୀ, ଶାସନ ପ୍ରଣାଳୀ ଓ ସ୍ଥାନୀୟ ଲୋକଙ୍କ ସମ୍ପର୍କରେ ସେ ଯେଉଁ ଅନୁଭୂତି ଅର୍ଜନ କରିଥିଲେ, ତାହା ଗଭର୍ଣ୍ଣର ଦାୟିତ୍ୱ ପରିପୂରଣ କରିବାରେ ବିଶେଷ ସହାୟକ ହେଲା ।

ଲଣ୍ଡନ ଡିରେକ୍ଟର ବୋର୍ଡ଼ ହେଷ୍ଟିଂସ୍‌ଙ୍କୁ ବିଧିବଦ୍ଧ ଭାବରେ ଦେୱାନୀ କ୍ଷମତା ପ୍ରୟୋଗ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ୧୭୭୨ ମସିହାରେ ଗଭର୍ଣ୍ଣର ପଦରେ ଯୋଗ ଦେଇ ସେ ସ୍ଥିର କଲେ ଯେ ନବାବଙ୍କ ପରିବର୍ତ୍ତେ ଏଣିକି କମ୍ପାନୀକୁ ରାଜସ୍ୱ ଆଦାୟର ପୂର୍ଣ୍ଣ ଦାୟିତ୍ୱ ନେବାକୁ ହେବ । ତତ୍‌ସହ ପ୍ରଶାସନ ଓ ନ୍ୟାୟ ବିଚାର କ୍ଷମତା ମଧ୍ୟ କମ୍ପାନୀ ପ୍ରୟୋଗ କରିବେ । ନବାବ ନିଜାମତ୍ ବା କାଜି ବିଚାର କ୍ଷମତା ପ୍ରୟୋଗ କରିବାର ଆବଶ୍ୟକତା ନାହିଁ । ହେଷ୍ଟିଂସ୍ ଜମିଦାରମାନଙ୍କ ଦ୍ୱାରା ଛୋଟ ଛୋଟ ବିବାଦ ନିଷ୍ପତ୍ତି କରିବା ପଦ୍ଧତିରେ ହସ୍ତକ୍ଷେପ କରିନଥିଲେ । କିନ୍ତୁ ପ୍ରତି ଜିଲ୍ଲାରେ କଲେକ୍ଟର ଓ ଦେୱାନ୍‌ଙ୍କୁ ନେଇ ଦେୱାନୀ ଅଦାଲତ୍ ପ୍ରତିଷ୍ଠିତ ହେଲା ଓ ଫୌଜଦାରୀ ବିବାଦର ନିଷ୍ପତ୍ତି ପାଇଁ କଲେକ୍ଟରଙ୍କ ଅଧୀନରେ କାଜି ଓ ମୁଫ୍‌ତିମାନଙ୍କୁ ନେଇ ଫୌଜଦାରୀ ଅଦାଲତ ସ୍ଥାପିତ ହେଲା । ଏତଦ୍‌ବ୍ୟତୀତ ଅପିଲ ଆବେଦନ ବିଚାର କରିବା ପାଇଁ କଲିକତାରେ ସଦର ଦେୱାନୀ ଅଦାଲତ ଓ ସଦର ନିଜାମତ୍ ଅଦାଲତ୍ ପ୍ରତିଷ୍ଠିତ

ହେଲା । ରାଜସ୍ୱ ଆଦାୟକୁ ଶୃଙ୍ଖଳିତ କରିବା ପାଇଁ ସେ କେତେକ ନୂତନ ବିଧିବିଧାନ ପ୍ରବର୍ତ୍ତନ କଲେ । ମୁର୍ଶିଦାବାଦରେ ଅବସ୍ଥିତ ନବାବଙ୍କ ଖଜଣାଖାନା କଲିକତାକୁ ସ୍ଥାନାନ୍ତରିତ କରାଗଲା ଓ କାର୍ଯ୍ୟତଃ ସବୁ ଶାସନ ପରିଚାଳନା କେନ୍ଦ୍ର କଲିକତାରେ ସ୍ଥାପିତ ହେଲା । ମୁର୍ଶିଦାବାଦ ପରିବର୍ତ୍ତେ 'କୋଲକାତା' ହେଲା ଭାରତର ରାଜଧାନୀ । ଧୀରେ ଧୀରେ ମୁର୍ଶିଦାବାଦ ନବାବଙ୍କ ଅସ୍ତିତ୍ୱ ଇତିହାସ ଗର୍ଭରେ ଲୀନ ହେଲା ଓ ଇଂରେଜମାନେ ହେଲେ ସର୍ବମୟ କ୍ଷମତାର ଅଧିକାରୀ ।

ଏକ ବ୍ୟବସାୟିକ ସଂସ୍ଥାର ସ୍ଥାନୀୟ ମୁଖ୍ୟ ହେବା ପରିବର୍ତ୍ତେ ଭାରତରେ ଏକ ଶୃଙ୍ଖଳିତ ଶାସନ ବ୍ୟବସ୍ଥା ପ୍ରତିଷ୍ଠା କରିବା ପାଇଁ ହେଷ୍ଟିଂସ୍‌ଙ୍କ ଉଦ୍ୟମ ଲଣ୍ଡନ ଡିରେକ୍ଟର ବୋର୍ଡ଼ ଦ୍ୱାରା ବିଶେଷ ଆଦୃତ ହେଲାନାହିଁ । ଡିରେକ୍ଟରମାନେ ଚାହୁଁଥିଲେ କେବଳ ଅଧିକ ଲାଭ ଓ ଶେଆର ହୋଲ୍‌ଡରମାନଙ୍କ ମଧ୍ୟରେ ଉଚ୍ଚ ହାରରେ ଡିଭିଡେଣ୍ଡ ବିତରଣ କରିବାପାଇଁ ଅଧିକ ଅର୍ଥ । ସେଥିପାଇଁ ଗଭର୍ଣ୍ଣରଙ୍କୁ ତାଗିଦା କରି ମଝିରେ ମଝିରେ ଲଣ୍ଡନରୁ ଆଜ୍ଞାପତ୍ର ଆସୁଥିଲା । କମ୍ପାନୀର ଭାରତୀୟ ପ୍ରଜାମାନଙ୍କର ସୁଖଦୁଃଖ, ଭଲମନ୍ଦ ବା ଭବିଷ୍ୟତ ସମ୍ପର୍କରେ ଡିରେକ୍ଟରମାନଙ୍କ ପତ୍ରରେ ନିର୍ଦ୍ଦେଶ ତ ଦୂରର କଥା, କୌଣସି ସୂଚନା ମଧ୍ୟ ନଥିଲା ।

କମ୍ପାନୀର ଆୟ ବଢ଼ାଇବା ପାଇଁ ହେଷ୍ଟିଂସ୍ ମୋଗଲ ସମ୍ରାଟ୍ ସାହା ଆଲାମ୍‌ଙ୍କର ବାର୍ଷିକ ସଲାମୀ ଛବିଶ ଲକ୍ଷ ଟଙ୍କା ବନ୍ଦ କରିଦେଲେ । ତାଙ୍କ ମତରେ ଯେଉଁ ବ୍ୟକ୍ତି ଯେକୌଣସି ସମୟରେ ଇଂରେଜଙ୍କ ଶତ୍ରୁମାନଙ୍କ ସହ ହାତ ମିଳାଇପାରେ, ତାଙ୍କୁ କମ୍ପାନୀ ତହବିଲ୍‌ରୁ ଅର୍ଥ ଦେଇ ପୋଷିବାର ପ୍ରୟୋଜନ ନାହିଁ । ପରବର୍ଷ ସାହା ଆଲାମ ଆଲ୍ଲାହାବାଦ ପରିତ୍ୟାଗ କରି ମରହଟ୍ଟାମାନଙ୍କ ଗୋଷ୍ଠୀରେ ଯୋଗ ଦେଲେ ଏବଂ ଅଯୋଧ୍ୟାର ଯେଉଁ କୋରା ଓ ଆଲ୍ଲାହାବାଦ ଜିଲ୍ଲା ଦୁଇଟିର କର୍ତ୍ତୃତ୍ୱ କ୍ଲାଇଭ୍ ସାହା ଆଲାମ୍‌ଙ୍କୁ ଅର୍ପଣ କରିଥିଲେ, ସେ ସେହି ଦୁଇଟି ଜିଲ୍ଲା ମରହଟ୍ଟାମାନଙ୍କୁ ପ୍ରଦାନ କଲେ । ହେଷ୍ଟିଂସ୍ ଓ ତାଙ୍କ କାଉନ୍‌ସିଲ୍‌ର ନିର୍ଦ୍ଦେଶରେ ସେନାପତି ରବର୍ଟ ବାର୍କର ଏହି ଜିଲ୍ଲା ଦୁଇଟି ପୁନରୁଦ୍ଧାର କରିଥିଲେ । ଶାସନ ଦୃଷ୍ଟିରୁ ଏ ଦୁଇଟି ଜିଲ୍ଲା ଥିଲା ଇଂରେଜ ଅଧିକୃତ ଅଞ୍ଚଳଠାରୁ ବହୁ ଦୂରରେ । ଏଣୁ ହେଷ୍ଟିଂସ୍ ଏ ଜିଲ୍ଲା ଦୁଇଟି ଅଯୋଧ୍ୟା ନବାବ ସୁଜାଉଦ୍‌ଦୌଲାଙ୍କୁ ୫୦ ଲକ୍ଷ ଟଙ୍କା ମୂଲ୍ୟରେ ବିକ୍ରୟ କରିଦେଲେ । କମ୍ପାନୀର ଆୟ

ବଢ଼ାଇବା ପାଇଁ ଉପରୋକ୍ତ ପଦକ୍ଷେପ ଡାଇରେକ୍ଟରମାନଙ୍କ ଦୃଷ୍ଟିରେ ସନ୍ତୋଷଜନକ ବିବେଚିତ ହୋଇଥିଲା ।

ରୋହିଲାଖଣ୍ଡ ଯୁଦ୍ଧରେ ସଫଳତା ହେଷ୍ଟିଂସ୍‌ଙ୍କ ଅମଳର ଅନ୍ୟ ଏକ ଉଲ୍ଲେଖନୀୟ ଘଟଣା, ଯାହାକି ପରକାଳରେ ପାର୍ଲିଆମେଣ୍ଟରେ ତାଙ୍କ ବିରୁଦ୍ଧରେ ଆଗତ ମହା ଅଭିଯୋଗ ବା ଇଂପିଚମେଣ୍ଟ କାର୍ଯ୍ୟକ୍ରମରେ ବ୍ୟବହୃତ ହୋଇଥିଲା । ଉଭୟ ବର୍କ ଓ ମାକ୍ୟୁଲେ ଉଚ୍ଚକଣ୍ଠରେ ରୋହିଲାମାନଙ୍କର ପ୍ରଶଂସା କରି ପାର୍ଲିଆମେଣ୍ଟରେ ଅଭିଯୋଗ କରିଥିଲେ ଯେ ରୋହିଲାମାନେ ଭାରତର ଏକ ମହାନ୍ ଜାତି, ଯେଉଁମାନେ ଯୁଦ୍ଧରେ ଯେତିକି ସାହସୀ, ଶାନ୍ତି ପାଇଁ ସେତିକି ପ୍ରୟାସୀ ଓ ସେମାନେ ହେଷ୍ଟିଂସ୍‌ଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇଛନ୍ତି । କିନ୍ତୁ ବର୍କ ଓ ମାକ୍ୟୁଲେଙ୍କର ଏ ମୂଲ୍ୟାୟନ ଥିଲା ତ୍ରୁଟିପୂର୍ଣ୍ଣ । ପ୍ରକୃତରେ ରୋହିଲାମାନେ ଥିଲେ ଏକ ଦୁର୍ଦ୍ଧର୍ଷ ଆଫଗାନ ଗୋଷ୍ଠୀ, ଯେଉଁମାନେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ମୋଗଲ ସମ୍ରାଟମାନଙ୍କ ଅଧୀନରେ ନୌକରୀ କରୁଥିଲେ ଓ ବାଦଶାହାଙ୍କଠାରୁ ଜାଗିର ସ୍ୱରୂପ ଅଯୋଧ୍ୟାର ଉତ୍ତର ପଶ୍ଚିମ ଅଞ୍ଚଳ ପାଇ ସେଠାରେ ବସବାସ କରୁଥିଲେ । ୧୭୬୧ ମସିହାରେ ସେମାନେ ଲୁଣ୍ଠନକାରୀ ଆଫଗାନ ସେନାପତି ଅହମ୍ମଦ ଶାହାଙ୍କୁ ପାନିପଥ ଯୁଦ୍ଧରେ ମରହଟ୍ଟାମାନଙ୍କ ବିରୁଦ୍ଧରେ ସହାୟତା ଦେଇଥିଲେ । ଦଶବର୍ଷ ପରେ ମରହଟ୍ଟାମାନେ ଦିଲ୍ଲୀ ପୁନଃଦଖଲ କଲାପରେ ରୋହିଲାମାନଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବାକୁ ପ୍ରୟାସ କଲେ । ସେମାନେ ରୋହିଲାଖଣ୍ଡର ପଶ୍ଚିମରେ ପ୍ରବାହିତ ଗଙ୍ଗା ନଦୀ ପାରହେବାକୁ ଉଦ୍ୟମ କରିବା ସମୟରେ ଅଯୋଧ୍ୟାର ନବାବ କମ୍ପାନୀ ସେନାଙ୍କ ସହାୟତାରେ ସେମାନଙ୍କୁ ପ୍ରତି- ଆକ୍ରମଣ କରନ୍ତେ ମରହଟ୍ଟାମାନେ ପଳାୟନ କଲେ । ଏହାପରେ ସୁଜାଉଦ୍‌ଦୌଲା ରୋହିଲାଖଣ୍ଡ ଦଖଲ କରିବା ପାଇଁ କମ୍ପାନୀ ସେନାର ସହାୟତା ଲୋଡ଼ିଲେ । ହେଷ୍ଟିଂସ ବିଚାର କଲେ ଇଂରେଜ ଅଧିକୃତ ଅଞ୍ଚଳ ଓ ଉତ୍ତର ଭାରତ ମଧ୍ୟରେ ଯଦି ଏକ ଶକ୍ତିଶାଳୀ ବନ୍ଧୁ ରାଷ୍ଟ୍ର ରହେ, ତାହା ଭବିଷ୍ୟତରେ ଇଂରେଜ ସ୍ୱାର୍ଥ ପ୍ରତି ଅନୁକୂଳ ହେବ । ଏଣୁ ରୋହିଲାଖଣ୍ଡ ଯୁଦ୍ଧରେ ଅଯୋଧ୍ୟାକୁ କମ୍ପାନୀ ସାମରିକ ସାହାଯ୍ୟ ଦେଲେ ଓ ନବାବ ରୋହିଲାଖଣ୍ଡ ଦଖଲ କରି ତାକୁ ନିଜ ରାଜ୍ୟରେ ମିଶାଇ ଦେଲେ ।

୧୭୭୩ ମସିହାରେ ବ୍ରିଟିଶ୍ ପାର୍ଲିଆମେଣ୍ଟ ରେଗୁଲେଟିଂ ଆଇନ ପ୍ରଣୟନ କଲେ । ଏହି ଆଇନରେ ବଙ୍ଗଳାର ଶାସନ ପାଇଁ ଜଣେ ଗଭର୍ଣ୍ଣର ଜେନେରାଲ ଓ ଚାରିଜଣ କାଉନ୍‌ସିଲରଙ୍କୁ ନେଇ ଗୋଟିଏ କାଉନ୍‌ସିଲ୍ ଗଠନ କରିବାର ବ୍ୟବସ୍ଥା ଥିଲା । ବିଚାର ବିଭାଗକୁ ସୁନିୟନ୍ତ୍ରିତ କରିବା ପାଇଁ ଜଣେ ଚିଫ୍ ଜଷ୍ଟିସ୍ ଓ ତିନିଜଣ ଅନ୍ୟ ବିଚାରପତିଙ୍କୁ ନେଇ କଲିକତାରେ ଏକ ସୁପ୍ରିମ୍ କୋର୍ଟ ପ୍ରତିଷ୍ଠା କରିବାର ଯୋଜନା ରହିଥିଲା । ବଙ୍ଗଳାର ଗଭର୍ଣ୍ଣର ଜେନେରାଲ୍‌ଙ୍କର ମାଡ୍ରାସ୍ ଓ ବମ୍ବେ ଗଭର୍ଣ୍ଣରଙ୍କ ଉପରେ କେତେକ କର୍ତ୍ତୃତ୍ୱ ଥିବାର ସୂଚନା ଥିଲେ ମଧ୍ୟ ଆଇନ୍‌ଟି ଥିଲା ବହୁ ବିଷୟରେ ଅସ୍ପଷ୍ଟ । ଗଭର୍ଣ୍ଣର ଜେନେରାଲ୍‌ଙ୍କର କୌଣସି ବିଶେଷ କ୍ଷମତା ନଥିଲା ଓ କାଉନ୍‌ସିଲ୍ ସଦସ୍ୟମାନଙ୍କର ସମ୍ମତି ବିନା ସେ କୌଣସି ପଦକ୍ଷେପ ନେବାକୁ ଅକ୍ଷମ ଥିଲେ । ପ୍ରଥମ ଗଭର୍ଣ୍ଣର ଜେନେରାଲ ପଦରେ ଅଧିଷ୍ଠିତ ହୋଇ ହେଷ୍ଟିଂସ୍ ଖୁସି ଥିଲେ ମଧ୍ୟ କାଉନ୍‌ସିଲ୍ ସହିତ ଓ ସୁପ୍ରିମକୋର୍ଟ ସହିତ ଭବିଷ୍ୟତ ସମ୍ପର୍କ କ'ଣ ହେବ, ସେ ବିଷୟରେ ସନ୍ଦିହାନ ଥିଲେ । ତାଙ୍କର ଜଣେ ୱେଷ୍ଟମିନିଷ୍ଟର ସ୍କୁଲ୍ ସାଥୀ ସାର୍ ଏଲିଜା ଇମ୍ପେ ପ୍ରଥମ ଚିଫ୍‌ଜଷ୍ଟିସ୍ ନିଯୁକ୍ତ ହେବା ସମ୍ବାଦରେ ସେ ଆଶ୍ୱସ୍ତ ହେଲେ । ଅକ୍ଟୋବର ୧୭୭୪ ମସିହାରେ ନବନିଯୁକ୍ତ କାଉନ୍‌ସିଲ୍‌ରମାନେ କଲିକତାରେ ପଦାର୍ପଣକଲେ ଓ ସେହିଦିନଠାରୁ ଆରମ୍ଭ ହେଲା ହେଷ୍ଟିଂସ୍‌ଙ୍କର ସଂଘର୍ଷପୂର୍ଣ୍ଣ କଣ୍ଟକମୟ ଜୀବନର ଆଦିପର୍ବ ।

ଏହି ଚାରିଜଣ କାଉନସିଲ୍‌ର ବ୍ରିଟିଶ୍ କ୍ୟାବିନେଟ୍ ମନ୍ତ୍ରୀ ନର୍ଥଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ଏହି ଚାରିଜଣଙ୍କ ମଧ୍ୟରୁ ଜଣେ ସଦସ୍ୟ ବାରୱେଲ ହେଷ୍ଟିଂସ୍‌ଙ୍କୁ ସମର୍ଥନ କରୁଥିଲେ, ଅବଶିଷ୍ଟ ତିନିଜଣ ଫିଲିପ୍ ଫ୍ରାନ୍‌ସିସ୍, କ୍ଲେଭରିଂ ଓ ମନ୍‌ସୋନ୍, ଫ୍ରାନ୍‌ସିସ୍‌ଙ୍କ ନେତୃତ୍ୱରେ ସବୁ କ୍ଷେତ୍ରରେ ତାଙ୍କୁ ବିରୋଧ କରି ଅପଦସ୍ଥ କରିବାକୁ ବଦ୍ଧପରିକର ଥିଲେ । ରୋହିଲାଖଣ୍ଡ ଯୁଦ୍ଧରେ ବ୍ରିଟେନ୍‌ର ସ୍ୱାର୍ଥ ନଥାଇ କମ୍ପାନୀ ସୈନ୍ୟମାନଙ୍କୁ କାହିଁକି ବ୍ୟବହାର କରାହେଲା, ସେ ବିଷୟରେ କାଉନ୍‌ସିଲ୍ ଅନୁସନ୍ଧାନ କରି ହେଷ୍ଟିଂସ୍‌ଙ୍କ ବିରୁଦ୍ଧରେ ଏକ ରିପୋର୍ଟ ଦେଲେ । ଅଯୋଧ୍ୟା ନବାବ ସୁଜାଉଦ୍‌ଦୌଲାଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଆସଫଉଦ୍‌ଦୌଲା ଯେତେବେଳେ ନବାବ ଗାଦି ଆରୋହଣ କଲେ, କାଉନ୍‌ସିଲ ତାଙ୍କ ପିତାଙ୍କ ସହ କମ୍ପାନୀର ଚୁକ୍ତିଗୁଡ଼ିକୁ ପୁନର୍ବାର ସମୀକ୍ଷା କଲେ ଓ କମ୍ପାନୀଙ୍କ ସୈନ୍ୟ ବ୍ୟବହାର କରିବା ପାଇଁ ନବାବଙ୍କ ଦେୟର ପରିମାଣ ବୃଦ୍ଧି କଲେ ।

ସାମ୍ପ୍ରତିକ ପରିସ୍ଥିତିରେ ଅଯୋଧ୍ୟାକୁ ଦୁର୍ବଳ କରିବାକୁ ହେଷ୍ଟିଂସ୍ ଚାହୁଁନଥିଲେ ମଧ୍ୟ ନୂତନ ନବାବଙ୍କୁ ସାହାଯ୍ୟ କରିବାକୁ ସେ ଥିଲେ ସମ୍ପୂର୍ଣ୍ଣ ଅସମର୍ଥ । କାଉନ୍‌ସିଲ ଏପରି ପରିସ୍ଥିତି ସୃଷ୍ଟି କରିବାକୁ ଚାହୁଁଥିଲେ, ଯେପରି ହେଷ୍ଟିଂସ୍ ଇସ୍ତଫା ଦେବାକୁ ବାଧ ହେବେ କିମ୍ବା ତାଙ୍କୁ ଅସଦାଚରଣ ଅଭିଯୋଗରେ ଭାରତରୁ ବିତାଡ଼ିତ କରାଯିବ ଓ ସେହି ସ୍ଥାନରେ ବ୍ରିଟିଶ୍ ରାଜପରିବାରର ନିକଟତମ କାଉନସିଲର କ୍ଲେଭରିଂ ଗଭର୍ଣ୍ଣର ଜେନେରାଲ ନିଯୁକ୍ତ ହେବେ । ସେମାନଙ୍କ ପ୍ରରୋଚନାରେ ନନ୍ଦକୁମାର ନାମକ ଜଣେ ଧୂର୍ତ୍ତ ଧନଶାଳୀ ଖ୍ୟାତନାମା ବଙ୍ଗାଳୀ ବ୍ରାହ୍ମଣ ହେଷ୍ଟିଂସଙ୍କ ନାମରେ ଅଭିଯୋଗ ଆଗତ କଲେ ଯେ ସେ ମୁର୍ଶିଦାବାଦର ମଣି ବେଗମ୍‌ଙ୍କ ଠାରୁ ସାଢ଼େ ତିନିଲକ୍ଷ ଟଙ୍କାର ଉତ୍କୋଚ ଗ୍ରହଣ କରିଛନ୍ତି । ଏ ଅଭିଯୋଗରେ ଆଂଶିକ ସତ୍ୟତା ଥିଲା । କାଉନ୍‌ସିଲର୍‌ମାନେ ହେଷ୍ଟିଂସଙ୍କୁ ସମନ କରି ଏ ବିଷୟରେ ଅଧିକ ଅନୁସନ୍ଧାନ କରିବାକୁ ଚାହୁଁଥିଲେ । କିନ୍ତୁ କମ୍ପାନୀ ଡିରେକ୍ଟର ବୋର୍ଡ଼ଙ୍କ ଆଦେଶ ଫଳରେ ପରବର୍ତ୍ତୀ କାର୍ଯ୍ୟକ୍ରମ ବନ୍ଦ ହେଲା ।

କିଛିଦିନ ପରେ ନନ୍ଦକୁମାରଙ୍କ ବିରୁଦ୍ଧରେ ଅଭିଯୋଗ ହେଲା, ସେ ଏକ ଦଲିଲ ଜାଲ୍ କରି କୋର୍ଟରେ ପ୍ରମାଣ ସ୍ୱରୂପ ବ୍ୟବହାର କରିଅଛନ୍ତି । ସୁପ୍ରିମ୍ କୋର୍ଟରେ ନନ୍ଦକୁମାରଙ୍କ ବିଚାର ହେଲା । ଚିଫ୍ ଜଷ୍ଟିସ୍ ଏଲିଜା ଇମ୍ପେ ଓ ତାଙ୍କର ସହଯୋଗୀ ବିଚାରପତିମାନେ ନନ୍ଦକୁମାରଙ୍କୁ ଦୋଷୀ ସାବ୍ୟସ୍ତ କରି ତାଙ୍କୁ ଫାଶୀଦଣ୍ଡ ଦେଲେ । ଦଲିଲ୍ ଜାଲ କରିବା ଅଭିଯୋଗରେ ହିନ୍ଦୁ ବା ମୁସଲିମ୍ ଆଇନ୍‌ରେ ପ୍ରାଣଦଣ୍ଡ ଦେବାର ବ୍ୟବସ୍ଥା ନାହିଁ, ଯଦିଓ ଇଂଲଣ୍ଡର ଆଇନ୍‌ରେ ସେ ପ୍ରକାର ବ୍ୟବସ୍ଥା ଅଛି ଏବଂ ଇଂଲଣ୍ଡର ଆଇନ କଲିକତା ସହର ପ୍ରତି ପ୍ରଯୁଜ୍ୟ । ନନ୍ଦକୁମାରଙ୍କ ଫାଶୀ ପରେ ବଙ୍ଗଳାରେ ଅନ୍ୟ କେହି ହେଷ୍ଟିଂସ୍‌ଙ୍କ ବିରୁଦ୍ଧରେ ଅଭିଯୋଗ ଆଣିବାକୁ ସାହସ କଲେ ନାହିଁ । କିନ୍ତୁ ଲୋକମୁଖରେ ପ୍ରଚାର ହେଲା ଏ ଫାଶୀଦଣ୍ଡ ସହିତ ହେଷ୍ଟିଂସ୍ ଜଡ଼ିତ ।

୧୭୭୭ ମସିହାରେ କାଉନ୍‌ସିଲର୍ ମନସୋନଙ୍କର ମୃତ୍ୟୁ ହେଲା ଓ ତାର କିଛି ଦିନ ପରେ କ୍ଲେଭରିଂ ମଧ୍ୟ ଇହଧାମରୁ ବିଦାୟ ନେଲେ । ସେତେବେଳେ ବ୍ରିଟିଶ ସରକାର ଆମେରିକାରେ ଉପନିବେଶବାଦ ବିରୋଧୀ ଯୁଦ୍ଧରେ ବ୍ୟାପୃତ ଥିଲେ । ବ୍ରିଟିଶ୍ ମନ୍ତ୍ରୀ ନର୍ଥ ଭାରତୀୟ ସମସ୍ୟାରେ ଅଧିକ ଦୂର ଜଡ଼ିତ ହେବାକୁ ଚାହିଁଲେ ନାହିଁ । ୧୭୭୯ ମସିହାରେ ଗଭର୍ଣ୍ଣର ଜେନେରାଲ ଭାବରେ ହେଷ୍ଟିଂସ୍‌ଙ୍କ କାର୍ଯ୍ୟକାଳ ପୁନର୍ବାର ବୃଦ୍ଧି କରିବା ପାଇଁ ସେ ଆଦେଶ ଦେଲେ ।

କ୍ଲେଭରିଂ ଓ ମନସୋନଙ୍କ ଅକାଳ ମୃତ୍ୟୁ ପରେ ବଙ୍ଗଳା କାଉନ୍‌ସିଲରେ ହେଷ୍ଟିଂସ୍‌ଙ୍କ ପ୍ରତିପତ୍ତି ଯଥେଷ୍ଟ ବୃଦ୍ଧି ପାଇଥିଲା । ମନସୋନଙ୍କ ସ୍ଥାନରେ ଏଡ୍‌ୱାର୍ଡ୍ ହ୍ୱେଲର ନାମକ ଜଣେ ନୂତନ କାଉନ୍‌ସିଲର୍ ନିଯୁକ୍ତ ହେଲେ । ସେ ଥିଲେ ଜଣେ ଅପଦାର୍ଥ । ପ୍ରଥମରେ ସେ ହେଷ୍ଟିଂସ୍‌ଙ୍କ ବିରୁଦ୍ଧରେ ଫ୍ରାନ୍‌ସିସଙ୍କୁ ସମର୍ଥନ କରୁଥିଲେ । ଫ୍ରାନ୍‌ସିସ ୧୭୮୦ ମସିହାରେ ଭାରତରୁ ବିଦାୟ ନେବାପରେ ହ୍ୱେଲର ହେଷ୍ଟିଂସ୍‌ଙ୍କ ପଟକୁ ନିର୍ବିବାଦରେ ଝାମ୍ପ ଦେଲେ । ଫ୍ରାନ୍‌ସିସ ଅବଶ୍ୟ ଥିଲେ ଜଣେ ବିଚକ୍ଷଣ ବୁଦ୍ଧିଜୀବୀ । ଭାରତରେ ଛ'ବର୍ଷ କଟାଇ ସେ ଭାବୁଥିଲେ ତାଙ୍କୁ ଗଭର୍ଣ୍ଣର ଜେନେରାଲ ନିଯୁକ୍ତ କରାଯିବ । ସରକାରରେ ତାଙ୍କର କିଛିଟା ସମର୍ଥନ ଥିଲେ ମଧ୍ୟ ଇଷ୍ଟ ଇଣ୍ଡିଆ କମ୍ପାନୀର ଅଂଶୀଦାରମାନଙ୍କ ମଧ୍ୟରେ ହେଷ୍ଟିଂସ୍‌ଙ୍କର ଅଧିକ ସମର୍ଥନ ଥିଲା । ଉଭୟ ଫ୍ରାନ୍‌ସିସ୍ ଓ ହେଷ୍ଟିଂସ୍‌ଙ୍କ ବିଚାରରେ ବଙ୍ଗଳା ପରି ଏକ ବିରାଟ ଦେଶକୁ ଇଷ୍ଟ ଇଣ୍ଡିଆ କମ୍ପାନୀ ପରି ଗୋଟିଏ ବ୍ୟବସାୟୀ ଗୋଷ୍ଠୀ ଚଳାଇ ପାରିବେ ନାହିଁ, ଏଥିପାଇଁ ପ୍ରଶାସନ ଦାୟିତ୍ୱ ସରକାରଙ୍କୁ ବହନ କରିବାକୁ ହେବ । କିନ୍ତୁ ସେମାନଙ୍କ ମଧ୍ୟରେ ବିବାଦ ଥିଲା ସମ୍ପୂର୍ଣ୍ଣ ବ୍ୟକ୍ତିଗତ । ଉଭୟ ଥିଲେ ଅତି ଉଚ୍ଚାଭିଳାଷୀ, ପଦପ୍ରୟାସୀ ଓ କ୍ଷମତାଲିପ୍ସୁ । ସେଥିପାଇଁ ସେମାନଙ୍କ ମଧ୍ୟରେ ପ୍ରତି ମୁହୂର୍ତ୍ତରେ ସଂଘର୍ଷ ।



# ମରହଟ୍ଟା ଓ ମହୀଶୂର ଯୁଦ୍ଧ

କର୍ଣ୍ଣାଟକର ନବାବ ମହମ୍ମଦ ଅଲ୍ଲୀ ଯେତେ ଅଧିକ ଦିନ ରାଜୁତି କରୁଥିଲେ, ତାଙ୍କର ଋଣଭାର ତଦନୁଯାୟୀ ବଢ଼ିବଢ଼ି ଚାଲିଥିଲା । ଇଷ୍ଟଇଣ୍ଡିଆ କମ୍ପାନୀର ମାନ୍ଦ୍ରାସ କର୍ମଚାରୀମାନେ ଥିଲେ ତାଙ୍କର ମହାଜନ ବା ଋଣଦାତା । ପଲ ବେନଫିଲ୍ଡଙ୍କ ନେତୃତ୍ୱରେ ମହାଜନୀ ବ୍ୟବସାୟ ଚାଲୁ ରଖିବା ପାଇଁ ଏହି କର୍ମଚାରୀମାନେ ମହମ୍ମଦ ଅଲ୍ଲୀଙ୍କୁ ତାଙ୍କର ରାଜ୍ୟ ବିସ୍ତାର କାର୍ଯ୍ୟକ୍ରମରେ ପୂର୍ଣ୍ଣ ସମର୍ଥନ କରୁଥିଲେ । ତଦ୍ୱାରା ଋଣ ଆଦାୟର ପ୍ରକ୍ରିୟା ସହଜସାଧ୍ୟ ହେଉଥିଲା । ୧୭୭୧ ମସିହାରେ ମହମ୍ମଦ ଅଲ୍ଲୀ ତାଞ୍ଜୋର ରାଜ୍ୟ ଦଖଲ କରିବା ପାଇଁ କମ୍ପାନୀର ସାହାଯ୍ୟପ୍ରାର୍ଥୀ ହେଲେ । ଡୁପ୍ରେ ସେତେବେଳେ ମାନ୍ଦ୍ରାସର ଗଭର୍ଣ୍ଣର । ସେ ପ୍ରଥମେ ମହମ୍ମଦ ଅଲ୍ଲୀଙ୍କ ଅନୁରୋଧ ଗ୍ରହଣ କରିବାକୁ କୁଣ୍ଠିତ ଥିଲେ ମଧ୍ୟ ପରେ କର୍ମଚାରୀମାନଙ୍କ ଚାପରେ ଜେନେରାଲ ଯୋସେଫ ସ୍ମିଥ୍‌ଙ୍କ ନେତୃତ୍ୱରେ ଦଳେ କମ୍ପାନୀ ସୈନ୍ୟଙ୍କୁ ଏ ଅଭିଯାନରେ ସହଯୋଗ କରିବା ପାଇଁ ପ୍ରେରଣ କଲେ । ସ୍ମିଥ୍‌ଙ୍କ ସୈନ୍ୟମାନେ ଯେତେବେଳେ ତାଞ୍ଜୋର ଦୁର୍ଗର ପ୍ରାଚୀର ଭାଙ୍ଗିବାକୁ ଉଦ୍ୟତ, ମହମ୍ମଦ ଅଲ୍ଲୀ ତାଞ୍ଜୋର ରାଜାଙ୍କଠାରୁ ପଚାଶ ଲକ୍ଷ ଟଙ୍କା ଉତୋଚ ନେଇ ଆକ୍ରମଣ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ରାଜାଙ୍କର ଗଚ୍ଛିତ ଅର୍ଥ ଓ ଧନସମ୍ପଦ ଉପରେ ମହମ୍ମଦ ଅଲ୍ଲୀଙ୍କର ଲୋଲୁପଦୃଷ୍ଟି ନିବିଷ୍ଟ ଥିଲା । ଦୁଇବର୍ଷ ପରେ ପୁଣି ତାଞ୍ଜୋର ରାଜ୍ୟ ଆକ୍ରମଣ କରିବା ପାଇଁ ନବାବଙ୍କଠାରୁ ଅନୁରୋଧ ଆସିଲା ଓ କମ୍ପାନୀ ସେନାଙ୍କ ସହାୟତାରେ ତାଞ୍ଜୋରର ପତନ ଘଟିଲା ।

ତାଞ୍ଜୋର ବିଜୟର ସମ୍ବାଦ ଲଣ୍ଡନରେ ପହଞ୍ଚିଲା । କମ୍ପାନୀର ଡିରେକ୍ଟରମାନେ ମାନ୍ଦ୍ରାସ କାଉନ୍‌ସିଲ୍‌ର ଏତାଦୃଶ କାର୍ଯ୍ୟରେ ଘୋର ଅସନ୍ତୋଷ ପ୍ରକାଶ କଲେ ଓ ମାନ୍ଦ୍ରାସ ଗଭର୍ଣ୍ଣରଙ୍କୁ ପଦଚ୍ୟୁତ କଲେ । ଡୁପ୍ରେଙ୍କ ସ୍ଥାନରେ ମାନ୍ଦ୍ରାସର ପୂର୍ବତନ ଗଭର୍ଣ୍ଣର

ଲର୍ଡ଼ ପିଗଟ୍‌ଙ୍କୁ ଗଭର୍ଣ୍ଣର ନିଯୁକ୍ତ କରାଗଲା ଏବଂ ତାଞ୍ଜୋରକୁ ତା'ର ଶାସକ ରାଜାଙ୍କୁ କେତେକ ସର୍ତ୍ତରେ ଫେରାଇ ଦେବାକୁ ନିର୍ଦ୍ଦେଶ ଦିଆହେଲା । ପିଗଟ୍ ମାଡ୍ରାସରେ ପହଞ୍ଚି ଡିରେକ୍ଟର ବୋର୍ଡ଼ଙ୍କ ନିର୍ଦ୍ଦେଶ ଅନୁଯାୟୀ ତାଞ୍ଜୋରକୁ ତା'ର ପୂର୍ବତନ ରାଜାଙ୍କୁ ପ୍ରତ୍ୟର୍ପଣ କଲେ । ପିଗଟ୍‌ଙ୍କ ପ୍ରତି ମହମ୍ମଦ ଅଲ୍ଲୀ ଓ କମ୍ପାନୀ କର୍ମଚାରୀମାନଙ୍କର ଅସନ୍ତୋଷର ସୀମା ରହିଲା ନାହିଁ । ମହମ୍ମଦ ଅଲ୍ଲୀଙ୍କ ତାଞ୍ଜୋର ବିଜୟଲବ୍ଧ ଅର୍ଥରୁ ବେନ୍‌ଫିଲ୍‌ଡ ତାଙ୍କର ଭାଗ ଦୁଇଲକ୍ଷ ତିରିଶ ହଜାର ପାଉଣ୍ଡ ତାଞ୍ଜୋର ରାଜାଙ୍କଠାରୁ ଆଦାୟ କରିବାକୁ ଦାବି କଲେ । କିନ୍ତୁ ପିଗଟ୍ ଏସବୁ ବ୍ୟକ୍ତିଗତ କାରବାର ସହିତ କାଉନ୍‌ସିଲ୍‌କୁ ଜଡ଼ିତ କରିବାକୁ ଇଚ୍ଛା କଲେ ନାହିଁ । ମାଡ୍ରାସ କାଉନ୍‌ସିଲ୍ କର୍ମଚାରୀମାନଙ୍କ ଦାବିକୁ ସମର୍ଥନ କରୁଥିବା ହେତୁ ଗଭର୍ଣ୍ଣର ଯେତେବେଳେ କାଉନ୍‌ସିଲ୍ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଆରମ୍ଭ କଲେ, ମହମ୍ମଦ ଅଲ୍ଲୀଙ୍କ ଗୁପ୍ତ ପ୍ରରୋଚନାରେ ବେନ୍‌ଫିଲ୍‌ଡ୍ ଓ ଅନ୍ୟ କର୍ମଚାରୀମାନେ ଉତ୍ତ୍ୟକ୍ତ ହୋଇ ଗଭର୍ଣ୍ଣର ପିଗଟ୍‌ଙ୍କୁ ବନ୍ଦୀ କଲେ । ଆଠମାସ କାରାଗାରରେ ରହିବା ପରେ ୧୭୭୭ ମସିହା ମେ' ମାସରେ ବନ୍ଦିଶାଳାରେ ତାଙ୍କର ମୃତ୍ୟୁ ହେଲା । କିନ୍ତୁ କମ୍ପାନୀର ପ୍ରଶାସନ ଏତେଦୂର କଳୁଷିତ ହୋଇଥିଲା ଯେ, ଦୀର୍ଘ ଦିନ ଧରି ପିଗଟ୍‌ଙ୍କ ମୃତ୍ୟୁର ଦାୟିତ୍ୱ ନିର୍ଣ୍ଣୟ କରାଯାଇ ପାରିଲା ନାହିଁ । ଯାହାହେଉ ଡିରେକ୍ଟରମାନେ ଶେଷରେ ସାର୍ ଥମାସ୍ ରମ୍‌ବୋଲ୍‌ଡଙ୍କୁ ଗଭର୍ଣ୍ଣର ନିଯୁକ୍ତ କଲେ । କିନ୍ତୁ ଉତ୍କୋଚ୍ ନେବାରେ ସେ ଥିଲେ ସବୁଠାରୁ ଧୁରନ୍ଧର ।

ମାଡ୍ରାସରେ ଯାହାସବୁ ଘଟିଲା, ସେ ବିଷୟରେ ଗଭର୍ଣ୍ଣର ଜେନେରାଲ ହେଷ୍ଟିଂସ୍‌ଙ୍କ ସହ ପରାମର୍ଶ କରାଯାଇନଥିଲା । ୧୭୭୩ ମସିହା ରେଗୁଲେସନ୍‌ରେ ବହିଃଦେଶ ବ୍ୟାପାରରେ ବମ୍ବେ ଓ ମାଡ୍ରାସ କାଉନ୍‌ସିଲ୍ ଉପରେ ଗଭର୍ଣ୍ଣର ଜେନେରାଲ୍‌ଙ୍କ କର୍ତ୍ତୃତ୍ୱ ସମ୍ପର୍କରେ ଉଲ୍ଲେଖ ଥିଲେ ମଧ, ଆଇନ ଥିଲା ଅସ୍ପଷ୍ଟ ଓ ତା'ର ସୁବିଧା ନେଇ କମ୍ପାନୀର ବମ୍ବେ ଓ ମାଡ୍ରାସ କର୍ମକର୍ତ୍ତାମାନେ ବହୁକ୍ଷେତ୍ରରେ ସ୍ୱାଧୀନ ଭାବରେ କାର୍ଯ୍ୟ କରୁଥିଲେ । ୧୭୭୩ ଖ୍ରୀଷ୍ଟାବ୍ଦରେ ପୁନାର ଯୁବକ ପେଶ୍ୱା ନାରାୟଣ ରାଓ ଆତତାୟୀ ଦ୍ୱାରା ନିହତ ହେଲେ ଓ ତାଙ୍କର ପିତୃବ୍ୟ ରଘୁନାଥ ରାଓ (ରାଘୋବା) ପେଶ୍ୱା ପଦରେ ଅଧିଷ୍ଠିତ ହେଲେ । କିନ୍ତୁ ହତ୍ୟା ଷଡ଼ଯନ୍ତ୍ରରେ ରଘୁନାଥ ରାଓ ଲିପ୍ତ ବୋଲି ସନ୍ଦେହ ସୃଷ୍ଟି ହେଲା । ନାରାୟଣ ରାଓଙ୍କର ଅନ୍ତଃସତ୍ତ୍ୱା ପତ୍ନୀଙ୍କର ଅଳ୍ପଦିନ

ପରେ ଗୋଟିଏ ପୁତ୍ର ସନ୍ତାନ ଜାତ ହେଲା । ରଘୁନାଥ ରାଓଙ୍କ ଅନୁପସ୍ଥିତିରେ ପୁନାର ମରହଟ୍ଟା ନେତାମାନେ ଏହି ଶିଶୁପୁତ୍ରକୁ ପେଶ୍ୱା ଘୋଷଣା କରି ନାନା ଫର୍ଣ୍ଣାଭିସ୍‌ଙ୍କ ନେତୃତ୍ୱରେ ଗୋଟିଏ କ୍ଷୁଦ୍ର ପରାମର୍ଶଦାତା ମଣ୍ଡଳୀ ଗଠନ କଲେ ଓ ଏହି ପରାମର୍ଶଦାତା ମଣ୍ଡଳୀ ଶିଶୁ ପେଶ୍ୱାଙ୍କ ତରଫରୁ ରାଜ୍ୟ ଶାସନ ଦାୟିତ୍ୱ ଗ୍ରହଣ କଲେ । ରାଘୋବା ବିତାଡ଼ିତ ହୋଇ କମ୍ପାନୀର ବମ୍ବେ କାଉନ୍‌ସିଲ୍‌ର ଶରଣାପନ୍ନ ହେଲେ ।

୧୭୭୭ ମସିହାରେ ସମ୍ବାଦ ମିଳିଲା, ଫରାସୀ ସେନାପତି ଲୁବିନ୍ ପୁନାରେ ପହଞ୍ଚି ମରହଟ୍ଟାମାନଙ୍କ ସହିତ ଇଂରେଜ-ବିରୋଧୀ ଚୁକ୍ତି କରିବା ପାଇଁ ନାନା ଫର୍ଣ୍ଣାଭିସ୍‌ଙ୍କ ସହ ଆଲୋଚନା କରୁଛନ୍ତି । କଲିକତାରେ ମଧ୍ୟ ସେହି ମର୍ମରେ ସମ୍ବାଦ ପହଞ୍ଚିଲା । ଉଭୟ ଗଭର୍ଣ୍ଣର ଜେନେରାଲ ହେଷ୍ଟିଂସ୍ ଓ ବମ୍ବେ କାଉନ୍‌ସିଲ୍ ଆତଙ୍କିତ ହେଲେ । ଫ୍ରାନ୍‌ସିସ୍‌ଙ୍କ ବିରୋଧ ସତ୍ତ୍ୱେ ହେଷ୍ଟିଂସ୍ ବମ୍ବେ କାଉନ୍‌ସିଲ୍‌କୁ ସାହାଯ୍ୟ କରିବା ପାଇଁ ନିଷ୍ପତ୍ତି ନେଲେ । ଅଯୋଧ୍ୟାରେ ଅବସ୍ଥାପିତ କର୍ଣ୍ଣେଲ୍ ଲେସ୍‌ଲିଙ୍କୁ କେତେକ ଅଶ୍ୱାରୋହୀ ଓ ଛ' ବାଟାଲିଅନ୍ ପଦାତିକ ସୈନ୍ୟଙ୍କୁ ନେଇ ମଧ୍ୟଭାରତର ବୁନ୍ଦେଲଖଣ୍ଡ ବାଟେ ବମ୍ବେ ଯିବାକୁ ନିର୍ଦ୍ଦେଶ ଦିଆହେଲା । କିନ୍ତୁ ଲେସ୍‌ଲି ଏଡ଼େ ଅପଦାର୍ଥ ଯେ ମଇ ମାସରେ ଅଯୋଧ୍ୟା ଛାଡ଼ି ପ୍ରାୟ ପାଞ୍ଚମାସ ମଧ୍ୟରେ ସେ ମାତ୍ର ୧୨୦ ମାଇଲ୍ ରାସ୍ତା ଅତିକ୍ରମ କରିବାକୁ ସମର୍ଥ ହୋଇଥିଲେ । ଏଣେ ୧୭୭୮ ମସିହା ଜୁଲାଇ ମାସରେ ଫ୍ରାନ୍ସ ୟୁରୋପରେ ବ୍ରିଟେନ୍ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛି ବୋଲି ସମ୍ବାଦ ପହଞ୍ଚିଲା । ତୁରନ୍ତ ପୂର୍ବରେ ଚନ୍ଦନ ନଗର ଓ ଦକ୍ଷିଣରେ ପଣ୍ଡିଚେରୀ ପୁନଃଦଖଲ କରାଗଲା । ଲେସ୍‌ଲିଙ୍କ ଅପାରଗତାରେ କ୍ଷୁବ୍ଧ ହୋଇ ହେଷ୍ଟିଂସ୍ ତାଙ୍କ ସ୍ଥାନରେ ଜଣେ ଉଗ୍ର ଓ ଦୁର୍ଦ୍ଧର୍ଷ ସାମରିକ ଅଫିସର କର୍ଣ୍ଣେଲ ଗର୍ଡ଼ାଡ୍‌ଙ୍କୁ ନିଯୁକ୍ତ କଲେ ଓ ଗର୍ଡ଼ାଡ୍ ବମ୍ବେରେ ପହଞ୍ଚିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ବମ୍ବେ କାଉନ୍‌ସିଲ୍‌କୁ ନିର୍ଦ୍ଦେଶ ଦେଲେ । କିନ୍ତୁ ମରହଟ୍ଟାମାନଙ୍କ ସହ ସଂଘର୍ଷ ଭିନ୍ନ ରୂପ ନେଲା । ହୁଏତ ବାହାଦୁରି ନେବାକୁ ହେଉ ବା ରାଘୋବାଙ୍କ ଚାପରେ ହେଉ, ବମ୍ବେ କାଉନ୍‌ସିଲ୍ ଗର୍ଡ଼ାଡ୍‌ଙ୍କୁ ଅପେକ୍ଷା ନ କରି ସେନାପତି ଏଗରଟନ୍‌ଙ୍କ ନେତୃତ୍ୱରେ ପୁନା ଅଭିମୁଖେ ସୈନ୍ୟ ଚାଳନା କଲେ । ଏଗରଟନ୍ ଭାରତରେ ନବାଗତ ଓ ସ୍ଥାନୀୟ ପରିସ୍ଥିତି ସମ୍ପର୍କରେ ତାଙ୍କର ବିଶେଷ ଜ୍ଞାନ ନଥିଲା । ଯାହାହେଉ ଦିନକୁ ଦୁଇ ମାଇଲ ଗତିରେ ପଶ୍ଚିମ ଘାଟ ପର୍ବତମାଳା ଅତିକ୍ରମ କରିବା ସମୟରେ ସେମାନେ କୌଣସି ବିରୋଧର ସମ୍ମୁଖୀନ

ହୋଇନଥିଲେ । ମାତ୍ର ପୁନାଠାରୁ ଷୋହଳ ମାଇଲ ଦୂରରେ ଜାନୁଆରୀ ୧୭୭୯ ମସିହାରେ ପ୍ରାୟ ପଚାଶ ହଜାର ସୈନ୍ୟ ସମ୍ବଳିତ ମରହଟ୍ଟା ବାହିନୀ ପ୍ରତିଆକ୍ରମଣ ଆରମ୍ଭ କଲେ । ଇଂରେଜମାନେ ମରହଟ୍ଟା ଶକ୍ତି ପ୍ରଦର୍ଶନରେ ଭୟଭୀତ ହୋଇ, ବଡ଼ ବଡ଼ କମାଣ ସବୁ ଗୋଟିଏ ପୋଖରୀରେ ପକାଇ ଦେଇ ଓରଗାଁ ପର୍ଯ୍ୟନ୍ତ ପଛଘୁଞ୍ଚା ଦେଲେ । ସେଠାରେ ଇଂରେଜ ସେନାପତି ଏଗରଟନ୍ ଓ ତାଙ୍କର ପରାମର୍ଶଦାତାମାନେ ନିଷ୍ପତ୍ତି ନେଲେ ଯେ ପରାଜୟ ଅବଶ୍ୟମ୍ଭାବୀ ଓ ମରହଟ୍ଟାମାନଙ୍କ ସହ ସନ୍ଧି କରିବା ଏକମାତ୍ର ପନ୍ଥା ।

ଗୋଆଲିଅର୍‌ର ସିନ୍ଧିଆଙ୍କ ମଧ୍ୟସ୍ଥତାରେ ଏହି ଚୁକ୍ତି ସ୍ୱାକ୍ଷରିତ ହେଲା । ଚୁକ୍ତି ସର୍ତ୍ତ ଅନୁଯାୟୀ ଇଂରେଜ କମ୍ପାନୀ ଅଙ୍ଗୀକାର କଲେ ଯେ ୧୭୭୫ ମସିହାଠାରୁ ସେପର୍ଯ୍ୟନ୍ତ ଯେତେ ମରହଟ୍ଟା ଅଞ୍ଚଳ ସେମାନେ ଦଖଲ କରିଛନ୍ତି, ସେସବୁ ଅଞ୍ଚଳରୁ ଅବିଳମ୍ବେ ପ୍ରତ୍ୟାବର୍ତ୍ତନ କରିବେ । କର୍ଣ୍ଣେଲ ଗର୍ଡ଼ାଡ୍ ଆଉ ଅଧିକ ଦୂର ନ ଆସି ବଙ୍ଗଳା ଫେରିଯିବେ ଓ ଇଂରେଜମାନେ ରଘୁନାଥ ରାଓଙ୍କୁ (ରାଘୋବା) ସିନ୍ଧିଆଙ୍କୁ ପ୍ରତ୍ୟର୍ପଣ କରିବେ । ଚୁକ୍ତିର ସର୍ତ୍ତ ପାଠ କରି ଲଜ୍ଜାରେ ହେଷ୍ଟିଂସ୍‌ଙ୍କ ମୁଣ୍ଡ ତଳକୁ ହୋଇଗଲା । ଲଣ୍ଡନ ଡିରେକ୍ଟର ବୋର୍ଡ଼ ଏ ଚୁକ୍ତିକୁ ତୁରନ୍ତ ପ୍ରତ୍ୟାଖ୍ୟାନ କରିବା ପାଇଁ ନିର୍ଦ୍ଦେଶ ଦେଲେ ଏବଂ ଏ ସନ୍ଧିସହ ସଂପୃକ୍ତ କର୍ଣ୍ଣେଲ ଏଗରଟନ୍, କାର୍ଣ୍ଣାକ୍ ଓ କକ୍‌ବର୍ଣ୍ଣଙ୍କୁ ସୈନ୍ୟବାହିନୀରୁ ବରଖାସ୍ତ କଲେ । ବଙ୍ଗଳା ଓ ବମ୍ବେ କାଉନ୍‌ସିଲ୍ ମଧ୍ୟ ଏ ଚୁକ୍ତିକୁ ଅଗ୍ରାହ୍ୟ କଲେ ।

ଉପରୋକ୍ତ କାର୍ଯ୍ୟାନୁଷ୍ଠାନ ସତ୍ତ୍ୱେ ପରାଜୟର ଗ୍ଲାନି ଇଂରେଜଙ୍କ କପାଳରୁ ବହୁଦିନ ଧରି ଲିଭି ନଥିଲା । ବରୋଦାର ଗାଇକୋଆଡ୍ ଫତେସିଂ ଓ ବେରାରର ରାଜା ପ୍ରମୁଖ ଯେଉଁମାନେ ଗର୍ଡ଼ାଡ୍ ଓ ଲେସ୍‌ଲିଙ୍କୁ ଅଯୋଧ୍ୟାରୁ ମଧ୍ୟଭାରତ ଅତିକ୍ରମ କରିବାରେ ସାହାଯ୍ୟ କରିଥିଲେ, ସେମାନେ ବିଜୟୀ ନାନା ଫର୍ଣ୍ଣାଭିସ୍‌ଙ୍କର ପ୍ରତିରୋଧ କରିବାକୁ ଏବେ ଅନିଚ୍ଛୁକ ହେଲେ । ଇଂରେଜଙ୍କ ଭାଗ୍ୟ ଭଲ, ଗର୍ଡ଼ାଡ୍ ବମ୍ବେ ସେନାବାହିନୀର ପରାଜୟର ଖବର ଶୁଣି ଯଥାଶୀଘ୍ର ଗୁଜୁରାଟର ସୁରାଟରେ ପହଞ୍ଚିଲେ । ମାତ୍ର ୧୯ ଦିନ ମଧ୍ୟରେ ସେ ୩୦୦ ମାଇଲ୍ ଦୂରତା ଅତିକ୍ରମ କରିବାକୁ ସମର୍ଥ ହୋଇଥିଲେ । ହେଷ୍ଟିଂସ୍‌ଙ୍କ ପରାମର୍ଶରେ ବମ୍ବେ କାଉନ୍‌ସିଲ୍ ଗର୍ଡ଼ାଡ୍‌ଙ୍କୁ ସ୍ଥାନୀୟ

ସେନାବାହିନୀର ଦାୟିତ୍ୱ ଅର୍ପଣ କରିଥିଲେ, ଯଦିଓ ବ୍ୟକ୍ତିଗତ ଭାବରେ ସେ ଥିଲେ ଗଭର୍ଣ୍ଣର ଜେନେରାଲ୍‌ଙ୍କ ଅଧୀନସ୍ଥ କର୍ମଚାରୀ । କିନ୍ତୁ ଏହି ସୂତ୍ରରେ ଗଭର୍ଣ୍ଣର ଜେନେରାଲ୍ ସାମରିକ ଓ ବହିଃଦେଶୀୟ ବ୍ୟାପାରରେ ବମ୍ବେ କାଉନ୍‌ସିଲ୍ ଉପରେ ନିଜର କର୍ତ୍ତୃତ୍ୱ ସ୍ଥାପନ କରିପାରିଥିଲେ । ହେଷ୍ଟିଂସ୍‌ଙ୍କ ନିର୍ଦ୍ଦେଶରେ ଗଡ଼ାର୍ଡ୍ ବରୋଦାର ଗାଇକୋଆଡ଼୍ ଫତେସିଂଙ୍କ ସହ ବନ୍ଧୁତା ଫେରାଇ ଆଣିବାକୁ ଉଦ୍ୟମ କଲେ ଓ ସେ ଉଦ୍ୟମରେ ସଫଳ ହେଲେ । ଫତେସିଂଙ୍କ ସହାୟତାରେ ସେ ସୁରାଟରୁ ଅହମ୍ମଦାବାଦ ଉପରେ ଆକ୍ରମଣ କରି ଗୁଜୁରାଟ ସମ୍ପୂର୍ଣ୍ଣ ରୂପେ ଆୟତ୍ତ କରିଥିଲେ ଏବଂ ଗୁଜୁରାଟର ଅର୍ଦ୍ଧେକ ଅଞ୍ଚଳ ଫତେସିଂଙ୍କୁ ଅର୍ପଣ କରିଥିଲେ ।

ଏଣେ ଗଡ଼ାର୍ଡ୍‌ଙ୍କ ପରାମର୍ଶ ଅନୁଯାୟୀ ନିଷ୍ପତ୍ତି ହେଲା ଯେ, ଗଡ଼ାର୍ଡ୍ ପଶ୍ଚିମ ପଟରୁ ଓ ହେଷ୍ଟିଂସ୍‌ଙ୍କ ଦ୍ୱାରା ପ୍ରେରିତ କ୍ୟାପ୍‌ଟେନ୍ ପୋଫମ୍ ଓ ମେଜର କାମାକ୍ ପୂର୍ବ ଦିଗରୁ ସିନ୍ଧିଆଙ୍କର ଗୋଆଲିଅର୍ ଫୋର୍ଟ ଉପରେ ଆକ୍ରମଣ କରିବେ । ଏହି ଅଭିପ୍ରାୟରେ ପୋଫମ୍ ଗୋଆଲିଅର୍ ଯାତ୍ରା କଲେ । କିନ୍ତୁ ଏ ଯୋଜନା ସମ୍ପୂର୍ଣ୍ଣ କାର୍ଯ୍ୟକାରୀ ହେବା ପୂର୍ବରୁ ସେପ୍ଟେମ୍ବର ମାସରେ ଦକ୍ଷିଣରୁ ଦାରୁଣ ବିପର୍ଯ୍ୟୟର ସମ୍ବାଦ ଆସିଲା ଯେ ମହୀଶୂରର ନବାବ ହାଇଦର ଅଲ୍ଲୀ କର୍ଣ୍ଣାଟକ ଉପରେ ଆକ୍ରମଣ କରି କମ୍ପାନୀର ସୈନ୍ୟମାନଙ୍କୁ ପରାଜିତ କରିଅଛନ୍ତି ଓ କର୍ଣ୍ଣେଲ୍ ବେଲିଙ୍କ ଅଧୀନରେ ସଂଗ୍ରାମରତ ଚାରିହଜାର ସୈନ୍ୟଙ୍କ ମଧ୍ୟରୁ ସମସ୍ତେ ନିହତ ବା ବନ୍ଦୀ ହୋଇଛନ୍ତି । ବକ୍ସାର ଯୁଦ୍ଧର ସ୍ୱନାମଧନ୍ୟ ସେନାପତି ସାର୍ ହେକ୍ଟର ମୁନ୍‌ରୋ ଆତଙ୍କଗ୍ରସ୍ତ ହୋଇ ମାଡ୍ରାସକୁ ପଛଘୁଞ୍ଚା ଦେଇଛନ୍ତି ।

ହାଇଦର୍ ଅଲ୍ଲୀଙ୍କ କର୍ଣ୍ଣାଟକ ଆକ୍ରମଣର ଆଶୁ ପରିଣତି ହେଲା, ମରହଟ୍ଟାମାନଙ୍କ ସହ ଇଂରେଜମାନଙ୍କ ସଂଘର୍ଷର କ୍ରମ-ଅବସାନ । ଗଭର୍ଣ୍ଣର ଜେନେରାଲ୍ ହେଷ୍ଟିଂସ୍ ବିଚାର କଲେ, ମହୀଶୂର ସହ ଯୁଦ୍ଧ ଦୃଷ୍ଟିରୁ ମରହଟ୍ଟାମାନଙ୍କ ସହ ଯେକୌଣସି ପ୍ରକାରେ ମିଳାମିଶା କରିବା ଉଚିତ । ତଦନୁଯାୟୀ ସେ ବମ୍ବେ କାଉନ୍‌ସିଲ୍‌କୁ ନିର୍ଦ୍ଦେଶ ପଠାଇଲେ । କିନ୍ତୁ ପୁନାରେ ପ୍ରତିଷ୍ଠିତ ପେଶ୍ୱା ବଂଶର ତତ୍ତ୍ୱାବଧାରକ ନାନା ଫର୍ଣ୍ଣାଭିସ୍, ଏଥିପୂର୍ବରୁ ପୁନାରେ ଓ ନିକଟରେ ମହୀଶୂର ଯୁଦ୍ଧରେ ପରାଜିତ ଇଂରେଜମାନଙ୍କ ସହ ମିଳାମିଶା ପାଇଁ ଉଦ୍ୟମୀ ହେବାର କୌଣସି କାରଣ ନଥିଲା । ନାଚାର ହୋଇ କର୍ଣ୍ଣେଲ୍ ଗଡ଼ାର୍ଡ୍ ପୁଣି ଥରେ ପୁନା ଆକ୍ରମଣ କରିବାକୁ

ପ୍ରଚେଷ୍ଟା କଲେ । ମାତ୍ର ପଶ୍ଚିମଘାଟ ପର୍ବତମାଳାରେ ପହଞ୍ଚିବା ପରେ ମରହଟ୍ଟା ଶକ୍ତିର ପ୍ରତିଆକ୍ରମଣର ସମ୍ମୁଖୀନ ହୋଇ ତାଙ୍କୁ ମଧ୍ୟ ପଛଘୁଞ୍ଚା ଦେବାକୁ ପଡ଼ିଲା । ଏତିକିବେଳେ ଗୋଆଲିଅର୍ ଆକ୍ରମଣ ପାଇଁ ପ୍ରେରିତ ସେନାପତି କାମାକ୍‌ଙ୍କର ଏକ ସଫଳ ଅଭିଯାନ ପରିସ୍ଥିତିରେ ଚାଞ୍ଚଲ୍ୟକର ପରିବର୍ତ୍ତନ ଆଣିଲା । କାମାକ୍ ସିନ୍ଧିଆ ସେନାଙ୍କ ଆକ୍ରମଣରେ ପ୍ରଥମେ ପ୍ରତିହତ ହୋଇଥିଲେ । କିନ୍ତୁ ପରେ ଦିନେ ଅର୍ଦ୍ଧରାତ୍ରିରେ ଅତର୍କିତ ଆକ୍ରମଣ କରି ସେ ସିନ୍ଧିଆ ସୈନ୍ୟମାନଙ୍କୁ ଛିନ୍ନଛତ୍ର କରିବାରେ ସମର୍ଥ ହୋଇଥିଲେ ଓ ଗୋଆଲିଅର୍ ଦଖଲ କରିଥିଲେ । ଏହି ଘଟଣା ପରେ ସିନ୍ଧିଆ ଇଂରେଜମାନଙ୍କ ସହ ଶାନ୍ତି ପାଇଁ ଆଗେଇ ଆସିଲେ ଓ ୧୭୮୧ ମସିହା ଅକ୍ଟୋବର ମାସରେ ଯୁଦ୍ଧବିରତି ଚୁକ୍ତି ସ୍ୱାକ୍ଷରିତ ହେଲା । ଅନ୍ତରରେ ସିନ୍ଧିଆଙ୍କର ନାନା ଫର୍ଣ୍ଣାଭିସ୍‌ଙ୍କ ସହ ଭଲ ସମ୍ପର୍କ ନଥିଲା ଏବଂ ନାନାଙ୍କ ପରିବର୍ତ୍ତେ ସେ ନିଜେ ମରହଟ୍ଟା ମଣ୍ଡଳର କର୍ତ୍ତା ଭାବରେ ସ୍ୱୀକୃତ ହେବାକୁ ଆଶାୟୀ ଥିଲେ । ଯାହାହେଉ ସିନ୍ଧିଆଙ୍କ ସହାୟତାରେ ପରବର୍ଷ ମରହଟ୍ଟାମାନଙ୍କ ସହ ଇଂରେଜ କମ୍ପାନୀର ସନ୍ଧି-ଚୁକ୍ତି ସ୍ୱାକ୍ଷରିତ ହେଲା । ୧୭୮୩ ଫେବୃଆରୀ ମାସରେ ନାନା ଫର୍ଣ୍ଣାଭିସ୍ ମଧ୍ୟ ଏହି ଚୁକ୍ତିକୁ ଅନୁମୋଦନ କଲେ ।

ଏହି ଅବସରରେ ହାଇଦର ଅଲ୍ଲୀ ଏକ ମହାଶକ୍ତିଶାଳୀ ସୈନ୍ୟବାହିନୀ ଗଠନ କରିଥିଲେ । ଏ ବାହିନୀରେ ଥିଲେ ୮୦ରୁ ୯୦ ହଜାର ଶୃଙ୍ଖଳିତ ସୈନିକ ଓ ୧୫,୦୦୦ ଅଶ୍ୱାରୋହୀ । ଏ ମଧ୍ୟରୁ ୫,୦୦୦ ହଜାର ଅଶ୍ୱାରୋହୀ ଇଂରେଜମାନଙ୍କ ଦ୍ୱାରା ମହମ୍ମଦ ଅଲ୍ଲୀଙ୍କ ପାଇଁ ତାଲିମପ୍ରାପ୍ତ ହୋଇଥିଲେ । ମାତ୍ର ମହମ୍ମଦ ଅଲ୍ଲୀ ସେମାନଙ୍କୁ ନିୟମିତ ବେତନ ନଦେବା ହେତୁ ପଟ ପରିବର୍ତ୍ତନ କରି ସେମାନେ ହାଇଦରଙ୍କ ସେନାବାହିନୀରେ ଯୋଗ ଦେଇଥିଲେ । ପଣ୍ଡିଚେରୀର ପୂର୍ବତନ ଫରାସୀ ଗଭର୍ଣ୍ଣର ଲାଲିଙ୍କ ପୁତ୍ର ଚାରିହଜାର ଭଡ଼ାଟିଆ ୟୁରୋପୀୟ ସୈନ୍ୟଙ୍କ ସହ ହାଇଦରଙ୍କ କମାଣଚାଳକ ଥିଲେ । ନିଜେ ହାଇଦର୍ ଅଲ୍ଲୀ ଓ ତାଙ୍କ ପୁତ୍ର ଟିପୁ ସୁଲତାନ୍ ଥିଲେ ଅତି ସୁଦକ୍ଷ ଓ ଚତୁର ସେନାପତି । ଅଥଚ ମହୀଶୂର ସହ ଲଢ଼େଇ ପାଇଁ ଇଷ୍ଟ ଇଣ୍ଡିଆ କମ୍ପାନୀର ମାଡ୍ରାସ କାଉନ୍‌ସିଲ୍ କୌଣସି ପ୍ରକାରେ ପ୍ରସ୍ତୁତ ନଥିଲେ ।

କର୍ଣ୍ଣେଲ୍ ବେଲିଙ୍କ ବିପର୍ଯ୍ୟୟ ଥିଲା ଗୋଟିଏ ସମ୍ପୂର୍ଣ୍ଣ ଭାରତୀୟ ସେନାବାହିନୀ ନିକଟରେ ଇଂରେଜମାନଙ୍କ ପରାଜୟର ମର୍ମନ୍ତୁଦ କାହାଣୀ । କଲିକତାରେ ଏ ସମ୍ବାଦ

ପହଞ୍ଚିବା ମାତ୍ରେ ଗଭର୍ଣ୍ଣର ଜେନେରାଲ ହେଷ୍ଟିଂସ୍ ଦାକ୍ଷିଣାତ୍ୟ ଯୁଦ୍ଧରେ ପୂର୍ବରୁ ଖ୍ୟାତି ଅର୍ଜନ କରିଥିବା ସେନାପତି କୁଟ୍‌କୁ ତୁରନ୍ତ ମାଡ୍ରାସ ପଠାଇଲେ । କୁଟ୍ ୧୭୮୦ ଅକ୍ଟୋବର ମାସରେ ୫୫୦ ଜଣ କମାଣ ଚାଳକ ଓ ପଦାତିକ ସୈନ୍ୟଙ୍କ ସହିତ କଲିକତାରୁ ଜାହାଜ ଯୋଗେ ଓ ୫,୦୦୦ ସିପାହୀ କର୍ଣ୍ଣେଲ ପିଅର୍‌ସେନ୍‌ଙ୍କ ଅଧୀନରେ ମେଦିନୀପୁରରୁ ସ୍ଥଳପଥରେ ଓଡ଼ିଶା ଓ ଉତ୍ତର ସର୍କାର ଜିଲ୍ଲା ଦେଇ ମାଡ୍ରାସ ଅଭିମୁଖେ ଯାତ୍ରା କଲେ । ଏଣେ ମହୀଶୂର, ମରହଟ୍ଟା ଓ ହାଇଦ୍ରାବାଦ ନିଜାମଙ୍କର ମିଳିତ ପ୍ରତିଆକ୍ରମଣର ସମ୍ଭାବନାକୁ ଏଡ଼ାଇବା ପାଇଁ ହେଷ୍ଟିଂସ୍ ଆରମ୍ଭ କଲେ କଲିକତାରୁ ତାଙ୍କର କୂଟନୈତିକ ଅଭିଯାନ । ସିନ୍ଧିଆ ଓ ମରହଟ୍ଟାଙ୍କ ସହ ଶାନ୍ତିଚୁକ୍ତି ସମ୍ପାଦିତ ହେବା ପରେ, ବେରାରର ରାଜାଙ୍କ ସହ ପୂର୍ବ ସଦ୍‌ଭାବ ଫେରାଇ ଆଣିବାକୁ ଉଦ୍ୟମ କରାହେଲା ଏବଂ ପରିଶେଷରେ ବେରାର୍ ରାଜାଙ୍କ ସହାୟତାରେ ନିଜାମଙ୍କ ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠା କରାଗଲା । ମହୀଶୂର ଯୁଦ୍ଧରେ ଇଂରେଜ କମ୍ପାନୀର ଅନ୍ତିମ ସଫଳତା ପାଇଁ ଗଭର୍ଣ୍ଣର ଜେନେରାଲ୍ ୱାରେନ୍ ହେଷ୍ଟିଂସ୍‌ଙ୍କର କୂଟନୈତିକ କାର୍ଯ୍ୟକ୍ରମ ବହୁଭାବରେ ସହାୟକ ହୋଇଥିଲା ।

କଲିକତାରୁ ପ୍ରେରିତ ସେନାପତି କୁଟ୍ ମାଡ୍ରାସରେ ପହଞ୍ଚି ତାଙ୍କର ପୂର୍ବ ପ୍ରତିଷ୍ଠା ଦୃଷ୍ଟିରୁ ସୈନ୍ୟମାନଙ୍କର ମନୋବଳ ଫେରାଇ ଆଣିବାକୁ ସମର୍ଥ ହୋଇଥିଲେ । କିନ୍ତୁ ସାମରିକ ବିଭାଗ ଓ ପ୍ରଶାସନ ବିଭାଗରେ ଚରମ ବିଶୃଙ୍ଖଳା ତାଙ୍କୁ ବିଚଳିତ କରିଥିଲା । ଏହି ପରିସ୍ଥିତିରେ ଦୀର୍ଘ ସାଢ଼େ ତିନି ବର୍ଷ ଧରି ମହୀଶୂର ଯୁଦ୍ଧ ଲାଗି ରହିଲା । କୁଟ୍‌ଙ୍କ ଅଧୀନରେ ମାତ୍ର ସାତହଜାର ସୈନ୍ୟ ଥିବାବେଳେ, ହାଇଦର୍ ଅଲ୍ଲୀ ନବେ ହଜାର ସୈନ୍ୟଙ୍କୁ ନିୟନ୍ତ୍ରଣ କରୁଥିଲେ । କୁଟ୍ ଦାକ୍ଷିଣାତ୍ୟରେ ପୂର୍ବରୁ ପଶ୍ଚିମ ପର୍ଯ୍ୟନ୍ତ ବହୁବାର ଅତିକ୍ରମ କଲେ ମଧ ହାଇଦର ଅଲ୍ଲୀଙ୍କ ସହିତ କୌଣସି ବଡ଼ ଯୁଦ୍ଧରେ ସମ୍ମୁଖୀନ ହେବାର ସୁଯୋଗ ପାଇ ନଥିଲେ । ହାଇଦର୍‌ଙ୍କ ବିରୁଦ୍ଧରେ ପରିଚାଳିତ ତିନୋଟି ଖଣ୍ଡଯୁଦ୍ଧରୁ ଗୋଟିଏ ଯୁଦ୍ଧର ଫଳାଫଳ ଥିଲା ଅମୀମାଂସିତ ଓ ନୈରାଶ୍ୟଜନକ । କେବଳ ପୋର୍ଟୋନୋଭା ଓ ସୋଳିଂଘର ଯୁଦ୍ଧରେ ଇଂରେଜମାନେ ଆଂଶିକ ଜୟଲାଭ କରିଥିଲେ । ଏହା ସତ୍ତ୍ୱେ ଯୁଦ୍ଧ ପରିସମାପ୍ତିର କୌଣସି ସୂଚନା ନଥିଲା । ୧୭୮୨ ମସିହା ପ୍ରାରମ୍ଭରେ କୁଟ୍ ନିଜେ ମସ୍ତିଷ୍କ ଷ୍ଟ୍ରୋକ୍‌ରେ ଆକ୍ରାନ୍ତ ହେଲେ । ମାତ୍ର ଦୁଇଘଣ୍ଟା ମଧରେ ସୁସ୍ଥ ହେବା ପରେ, ତାଙ୍କୁ ଗୋଟିଏ ପାଲିଙ୍କିରେ ବସାଇ ଭେଲୋର

ନିଆହେଲା । ଏତିକିବେଳେ ତାଞ୍ଜୋରଠାରେ କର୍ଣ୍ଣେଲ୍ ବ୍ରେଥ୍‌ୱେଟ୍‌ଙ୍କ ଅଧୀନରେ ସଂଗ୍ରାମରତ ୧୭୦୦ କମ୍ପାନୀ ସୈନ୍ୟ ହାଇଦର୍ ଅଲ୍ଲୀଙ୍କ ପୁତ୍ର ଟିପୁ ସୁଲ୍‌ତାନ୍‌ଙ୍କ ଆକ୍ରମଣରେ ପ୍ରତିହତ ହୋଇ ଆତ୍ମସମର୍ପଣ କଲେ । ଏଣେ ଦୁଇ ହଜାର ଫରାସୀ ସୈନ୍ୟ ହାଇଦର୍‌ଙ୍କ ସାହାଯ୍ୟାର୍ଥେ ପୋର୍ଟୋନୋଭାରେ ଅବତରଣ କରି କୁଡାଲୋର ସହର ଦଖଲ କରିନେଲେ । ଏହି ବିପଜ୍ଜନକ ପରିସ୍ଥିତିରେ ମାଡ୍ରାସର ଗଭର୍ଣ୍ଣର ଗାଦିରେ ପରିବର୍ତ୍ତନ ହେଲା । ପ୍ରଥମଥର ପାଇଁ କମ୍ପାନୀର କର୍ମଚାରୀ ନଥିବା ଜଣେ ବ୍ୟକ୍ତି, ପ୍ରଶାସନିକ ଓ କୂଟନୈତିକ କ୍ଷେତ୍ରରେ ଯତ୍‌ସାମାନ୍ୟ ଖ୍ୟାତି ଅର୍ଜନ କରିଥିବା ଲର୍ଡ଼ ମ୍ୟାକାର୍ଟ୍‌ନିଙ୍କୁ ଗଭର୍ଣ୍ଣର ପଦରେ ନିଯୁକ୍ତ କରାଗଲା । ମ୍ୟାକ୍‌ଟ୍‌ନିଙ୍କର କୌଣସି ସାମରିକ ତାଲିମ ବା ଅଭିଜ୍ଞତା ନଥିଲା, ଅଥଚ୍ କିଛି ଦିନ ମାଡ୍ରାସରେ ରହିବା ପରେ ସେ ସାମରିକ ନିଷ୍ପତ୍ତିରେ ହସ୍ତକ୍ଷେପ କରିବାକୁ ଆରମ୍ଭ କଲେ । ସେହି କାରଣରୁ ସେନାପତି କୁଟ୍‌ଙ୍କ ସହ ତାଙ୍କର ତୀବ୍ର ମନାନ୍ତର ହେଲା । ଅସୁସ୍ଥ କୁଟ୍ ଜଳବାୟୁ ପରିବର୍ତ୍ତନ ଓ ଚିକିତ୍ସା ପାଇଁ ୧୭୮୨ ଶେଷ ଆଡ଼କୁ କଲିକତା ଯାତ୍ରା କଲେ । କୁଟ୍ କଲିକତାରେ ଥିବା ସମୟରେ ହାଇଦର ଅଲ୍ଲୀଙ୍କର ୧୭୮୨ ଡିସେମ୍ବର ମାସରେ ମୃତ୍ୟୁ ହେଲା । ପୁତ୍ର ଟିପୁ ସୁଲତାନ ମହୀଶୂର ନବାବ ଗାଦିରେ ଆସୀନ ହେଲେ । ପିତାଙ୍କ ପରି ସେ ଥିଲେ ଚରମ ଇଂରେଜ-ବିରୋଧୀ ।

ହାଇଦର୍ ଅଲ୍ଲୀଙ୍କ ମୃତ୍ୟୁ ଖବର ଶୁଣି କମ୍ପାନୀର ବମ୍ବେ କାଉନ୍‌ସିଲ୍ ତାଙ୍କର ସେନାପତି ଜେନେରାଲ୍ ମାଥ୍ୟୁଙ୍କୁ ତୁରନ୍ତ ମହୀଶୂରର ବେଦ୍‌ନୋର ସହର ଦଖଲ କରିବା ପାଇଁ ନିର୍ଦ୍ଦେଶ ଦେଲେ । ବମ୍ବେ କାଉନ୍‌ସିଲ୍‌ର ଧାରଣା ଥିଲା, ବେଦ୍‌ନୋର ସହରରେ ହାଇଦର୍ ଅଲ୍ଲୀଙ୍କର ବହୁ ଧନରତ୍ନ ଗଚ୍ଛିତ ଅଛି । ମାଥ୍ୟୁଙ୍କ ଅତର୍କିତ ଆକ୍ରମଣରେ ପ୍ରଥମେ ବେଦ୍‌ନୋର ଓ ପରେ ମାଙ୍ଗାଲୋର ସହରର ପତନ ଘଟିଲା । ଟିପୁ ସୁଲତାନ ଏ ସହର ଦୁଇଟି ପୁନରୁଦ୍ଧାର କରିବା ପାଇଁ କର୍ଣ୍ଣାଟକରୁ ୨୦ ହଜାର ସୈନ୍ୟ ପଶ୍ଚିମ ଉପକୂଳକୁ ପ୍ରେରଣ କଲେ । କିନ୍ତୁ ମାଙ୍ଗାଲୋର ଦଖଲ କରିବା ପାଇଁ ଟିପୁଙ୍କର ସୈନ୍ୟମାନଙ୍କୁ ଏକ ବର୍ଷରୁ ଅଧିକ ସମୟ ଲାଗିଗଲା । ଏଥିପୂର୍ବରୁ କର୍ଣ୍ଣେଲ ହମ୍ବରଷ୍ଟୋନ୍‌ଙ୍କ ନେତୃତ୍ୱରେ ପ୍ରାୟ ଏକ ହଜାର ଇଂରେଜ ସୈନ୍ୟ ମାଲାବାରର କାଲିକଟ ଉପକୂଳରେ ଅବତରଣ କରି ମହୀଶୂର ସେନା ଉପରେ ଆକ୍ରମଣ ଆରମ୍ଭ କରି ଦେଇଥିଲେ । ମାଡ୍ରାସ ବାହିନୀର ସେନାପତି କୁଟ୍ ହମ୍ବରଷ୍ଟୋନ୍‌ଙ୍କ ସାମରିକ

କୃତିତ୍ୱରେ ସନ୍ତୁଷ୍ଟ ହୋଇ ତାଙ୍କୁ ବମ୍ବେ କାଉନ୍‌ସିଲ୍ ଅଧୀନରେ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏ ମଧ୍ୟରେ ୟୁରୋପରେ ଫ୍ରେଞ୍ଚ୍ ଓ ବ୍ରିଟେନ୍ ମଧ୍ୟରେ ଯୁଦ୍ଧର ପରିସମାପ୍ତି ଘଟିଲା । ଇଂରେଜମାନଙ୍କର ସାମରିକ ସ୍ଥିତିରେ ଉନ୍ନତି ଘଟୁଥିବା ବେଳେ ଟିପୁ ସୁଲତାନ ଫରାସୀମାନଙ୍କ ସାହାଯ୍ୟରୁ ସମ୍ପୂର୍ଣ୍ଣ ବଞ୍ଚିତ ହୋଇଥିଲେ । ଏହା ସତ୍ତ୍ୱେ ଗଭର୍ଣ୍ଣର ଜେନେରାଲ୍‌ଙ୍କ ସହ ପରାମର୍ଶ ନ କରି, ମାଡ୍ରାସ ଗଭର୍ଣ୍ଣର ମ୍ୟାକାର୍ଟ୍‌ନି ତରବରରେ ଟିପୁ ସୁଲ୍‌ତାନ୍‌ଙ୍କ ସହ ସନ୍ଧି କରିବା ପାଇଁ ଆଲୋଚନା ଆରମ୍ଭ କରିଦେଲେ । ମାର୍ଚ୍ଚ ୧୭୮୪ ମସିହାରେ ମାଙ୍ଗାଲୋର ଚୁକ୍ତି ସ୍ୱାକ୍ଷରିତ ହେଲା । ଏହି ଚୁକ୍ତି ଅନୁଯାୟୀ କମ୍ପାନୀ ଓ ଟିପୁ ସୁଲତାନ୍ ଯୁଦ୍ଧକାଳରେ ଅଧିକୃତ ଅପରର ରାଜ୍ୟ ପରସ୍ପରକୁ ପ୍ରତ୍ୟର୍ପଣ କରିବାକୁ ସମ୍ମତ ହେଲେ । ଦ୍ୱିତୀୟ ମହୀଶୂର ଯୁଦ୍ଧର ପରିସମାପ୍ତି ଘଟିଲା ।



# ବନାରସ ଦଖଲ ଓ ହେଷ୍ଟିଂସ୍‌ଙ୍କ ବିଦାୟ

ମରହଟ୍ଟା ଓ ମହୀଶୂର ବିରୋଧୀ ଯୁଦ୍ଧରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଅତ୍ୟନ୍ତ ଖର୍ଚ୍ଚାନ୍ତ ହେଲେ । ମାଡ୍ରାସ ଓ ବମ୍ବେ କାଉନ୍‌ସିଲ୍ ଯୁଦ୍ଧର ବ୍ୟୟଭାର ବହନ କରିବାକୁ ସମର୍ଥ ନଥିଲେ । ବଙ୍ଗଳା କାଉନ୍‌ସିଲ୍‌କୁ ଏ ଦାୟିତ୍ୱ ନେବାକୁ ପଡ଼ିଲା । ଗଭର୍ଣ୍ଣର ଜେନେରାଲ୍ ୱାରେନ୍ ହେଷ୍ଟିଂସ୍ ଏଥିପାଇଁ ସ୍ଥାନୀୟ ରାଜା ଓ ନବାବମାନଙ୍କଠାରୁ ଅଧିକ ଅର୍ଥ ଆଦାୟ କରିବାକୁ ଉଦ୍ୟମ କଲେ । କ୍ଲାଇଭ୍‌ଙ୍କ ସମୟରୁ ବନାରସ ଅଯୋଧ୍ୟାରୁ ବିଚ୍ଛିନ୍ନ ହୋଇ କମ୍ପାନୀ ଅଧୀନରେ ଏକ ସ୍ୱତନ୍ତ୍ର ଜମିଦାରୀ ରୂପେ ରହିଥିଲା ଓ ବନାରସର ରାଜା ଚୈତ ସିଂ କମ୍ପାନୀକୁ ବାର୍ଷିକ ସାଢ଼େ ବାଇଶ ଲକ୍ଷ ଟଙ୍କା ରାଜସ୍ୱ ଦେଉଥିଲେ । ହେଷ୍ଟିଂସ୍ ଚୈତ ସିଂଙ୍କ ଦେୟ ଆଉ ପାଞ୍ଚଲକ୍ଷ ବଢ଼ାଇ ଦେଲେ । ସେନାପତି କୁଟ୍‌ଙ୍କ ପରାମର୍ଶ ଅନୁଯାୟୀ ଯୁଦ୍ଧ ସାହାଯ୍ୟ ବାବତକୁ ଚୈତ ସିଂଙ୍କଠାରୁ ପ୍ରଥମେ ଦୁଇହଜାର ଅଶ୍ୱାରୋହୀ ସୈନ୍ୟ ଓ ପରେ ତାହା କମାଇ ଅନ୍ତତଃ ଏକହଜାର ଅଶ୍ୱାରୋହୀ କମ୍ପାନୀକୁ ଦେବା ପାଇଁ ଦାବି କରାଗଲା । ରାଜା ଏଥିରେ ସମ୍ମତ ହେଲେ ସତ୍ୟ, କିନ୍ତୁ କାର୍ଯ୍ୟତଃ କୌଣସି ଅଶ୍ୱାରୋହୀ ପଠାଇପାରିଲେ ନାହିଁ । କମ୍ପାନୀ କର୍ତ୍ତୃପକ୍ଷ ଅତ୍ୟନ୍ତ କ୍ରୁଦ୍ଧ ହେଲେ ।

ଏ ମଧ୍ୟରେ ଚୈତ ସିଂ ସମ୍ବାଦ ପାଇଲେ ଯେ ହେଷ୍ଟିଂସ୍ ଓ ତାଙ୍କ କାଉନ୍‌ସିଲର୍‌ମାନଙ୍କ ମଧ୍ୟରେ ଯେଉଁ ବିବାଦ ଚାଲୁଥିଲା ତା'ର ଏକ ସମାଧାନ ହୋଇଅଛି ଓ ତାଙ୍କର ବରିଷ୍ଠ ବିରୋଧୀ ଫ୍ରାନ୍‌ସିସ୍ ୧୭୮୦ ମସିହାରେ ଭାରତରୁ ପ୍ରତ୍ୟାବର୍ତ୍ତନ କରୁଛନ୍ତି । ଚୈତ ସିଂ ପ୍ରଚ୍ଛନ୍ନ ଭାବରେ ହେଷ୍ଟିଂସ୍ ବିରୋଧୀ ଗୋଷ୍ଠୀକୁ ସମର୍ଥନ କରୁଥିଲେ ଓ ତାହା ମଧ୍ୟ ହେଷ୍ଟିଂସ୍‌ଙ୍କୁ ଜଣାଥିଲା । ତେଣୁ ଫ୍ରାନ୍‌ସିସ୍‌ଙ୍କ ବିଦାୟ ସମ୍ବାଦ ଶୁଣି ସେ ଅତି ଆତଙ୍କିତ ହେଲେ ଓ ଅଚିରେ ହେଷ୍ଟିଂସ୍‌ଙ୍କର ଶରଣାପନ୍ନ ହେଲେ । ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚୈତ ସିଂ ଦୁଇଲକ୍ଷ ଟଙ୍କା ଉତ୍କୋଚ ପ୍ରଦାନ କଲେ ଓ

ଆନୁଗତ୍ୟର ପ୍ରତୀକ ସ୍ୱରୂପ ବକ୍ସାରଠାରେ ହେଷ୍ଟିଂସ୍‌ଙ୍କୁ ସାକ୍ଷାତ କରିବା ସମୟରେ ମୁଣ୍ଡରୁ ପଗଡ଼ି କାଢ଼ି ତାଙ୍କ ପାଦ ତଳେ ରଖିଲେ । କିନ୍ତୁ ଏସବୁ ସତ୍ତ୍ୱେ ହେଷ୍ଟିଂସ୍‌ଙ୍କର କ୍ରୋଧ ପ୍ରଶମିତ ହେଲା ନାହିଁ । ସେ ବୋଧହୁଏ ପ୍ରମାଣ କରିବାକୁ ଚାହୁଁଥିଲେ ଯେ ତାଙ୍କର ବିରୁଦ୍ଧାଚରଣ କରି ଭାରତରେ କେହି ରାଜଗାଦିରେ ରହି ପାରିବେ ନାହିଁ । ତାଙ୍କର ନିର୍ଦ୍ଦେଶରେ ଚୈତ ସିଂଙ୍କୁ ପଦଚ୍ୟୁତ କରାଗଲା ଓ ତାଙ୍କର ଜଣେ ନାବାଳକ ପୁତୁରାକୁ ରାଜମୁକୁଟ ପ୍ରଦାନ କରାହେଲା । କାର୍ଯ୍ୟତଃ ବନାରସ ସେହିଦିନଠାରୁ ଇଂରେଜ କମ୍ପାନୀର ଅଧୀନସ୍ଥ ହେଲା ।

ଚୈତ ସିଂଙ୍କ ପଦଚ୍ୟୁତି ସମୟରେ ହେଷ୍ଟିଂସ୍ ବନାରସରେ ଉପସ୍ଥିତ ଥିଲେ । ଚୈତ ସିଂଙ୍କ ପ୍ରତି ଅପମାନଜନକ ବ୍ୟବହାରର ପ୍ରତିବାଦ କରି ବନାରସବାସୀ ଓ ଆଖପାଖର ଲୋକେ ବିଦ୍ରୋହ ଘୋଷଣା କଲେ ଓ ଇଂରେଜମାନଙ୍କୁ ଦେଖିବା ମାତ୍ରେ ହତ୍ୟା କଲେ । ହେଷ୍ଟିଂସ୍ ବନାରସରୁ ଚୁନାରଗଡ଼ ଦୁର୍ଗକୁ ପଳାୟନ କଲେ । ଏହି ପଳାୟନ ଉପଲକ୍ଷେ ବନାରସରେ ଗୋଟିଏ ଢଗ ପ୍ରଚଳିତ ଅଛି–

"ଘୋଡ଼େ ପର ହାଉଦା, ହାତୀ ପର ଜିନ୍
ଜଲଦି ଚଲେଗୟୀ ଓ୍ୱାରେନ୍ ହେଷ୍ଟିଂ ।"

ଏ ବିଦ୍ରୋହ କ୍ରମେ ବନାରସରୁ ପୂର୍ବ ଅଯୋଧ୍ୟାକୁ ପରିବ୍ୟାପ୍ତ ହେଲା । ପୂର୍ବାଞ୍ଚଳରେ ଥିବା ଅଯୋଧ୍ୟା ବେଗମ୍‌ମାନଙ୍କର ଜାଗିର୍‌ରୁ ବହୁ ସୈନ୍ୟ ଇଂରେଜ-ବିରୋଧୀ ସଂଗ୍ରାମରେ ଯୋଗ ଦେଲେ । ଶୁଣାଅଛି, ଜଣେ ଇଂରେଜର ଛିନ୍ନ ମସ୍ତକ ବଦଳରେ ଅଯୋଧ୍ୟାର କନିଷ୍ଠ ବେଗମ୍ (ଅର୍ଥାତ୍ ତତ୍‌କାଳୀନ ନବାବଙ୍କର ମା') ହତ୍ୟାକାରୀକୁ ଏକହଜାର ଟଙ୍କା ପୁରସ୍କାର ପ୍ରଦାନ କରୁଥିଲେ । ଅଯୋଧ୍ୟାର ବେଗମ୍‌ମାନଙ୍କ ଜାଗିର୍‌ରୁ ବହୁ ଅସ୍ତ୍ରଧାରୀ ବ୍ୟକ୍ତି ଇଂରେଜ ବିରୋଧୀ ବିଦ୍ରୋହରେ ଭାଗ ନେଇଥିଲେ ସତ୍ୟ, କିନ୍ତୁ ସେମାନଙ୍କୁ ବେଗମ୍‌ମାନେ ପଠାଇଥିବାର କୌଣସି ପ୍ରମାଣ ନଥିଲା । କିନ୍ତୁ ଜନରବରେ ବିଶ୍ୱାସ କରି ହେଷ୍ଟିଂସ୍ ଏହି ବେଗମ୍‌ମାନଙ୍କୁ ନିର୍ବଳ କରିବା ଦିଗରେ ପ୍ରୟାସୀ ହେଲେ । ବେଗମ୍‌ମାନଙ୍କର ଧନରତ୍ନ ଲୁଟ୍ କରିବା ପାଇଁ ସେନାପତି ମିଡିଲଟନ୍‌ଙ୍କ ଜରିଆରେ ନବାବଙ୍କ ଉପରେ ଚାପ ଦିଆହେଲା । ନବାବ ଅନିଚ୍ଛା ସତ୍ତ୍ୱେ ସୈନ୍ୟ ପଠାଇ ବେଗମ୍‌ମାନଙ୍କର ଗଚ୍ଛିତ ସମ୍ପଦ ଅପହରଣ କଲେ । ଏହି ପ୍ରକ୍ରିୟାରେ କମ୍ପାନୀର ତହବିଲ୍‌କୁ ୭୬ଲକ୍ଷ ଟଙ୍କା ଆଦାୟ ହେଲା । ଏହାର କିଛି

ମାସ ପରେ ସେହି ପ୍ରକାରେ ବଳ ପ୍ରୟୋଗ କରି ତତୋଽଧିକ ଅର୍ଥ ସଂଗୃହୀତ ହୋଇଥିଲା ଓ ଏ ସବୁ ଅର୍ଥ ନବାବଙ୍କର ବକେୟା ଋଣ ବାବତକୁ ମଜୁରା କରାହେଲା ।

ଅଯୋଧ୍ୟା ନବାବ ଆସଫ୍‌ଉଦ୍ଦୌଲ୍ଲା ଥିଲେ ଅତି ବେହିସାବୀ ଓ ବଦ୍‌ଖର୍ଚ୍ଚି । ତାରୁଣ୍ୟର ସମସ୍ତ ଦୁର୍ଗୁଣ ତାଙ୍କଠାରେ ପରିପୂର୍ଣ୍ଣ ଥିଲା । ନବାବଙ୍କୁ ଠିକ୍ ବାଟରେ ପରିଚାଳିତ କରିବା ପାଇଁ ହେଷ୍ଟିଂସ୍‌ଙ୍କର ସମସ୍ତ ଉଦ୍ୟମ ବ୍ୟର୍ଥ ହେବା ପରେ ସେ ନିଜେ ଲକ୍ଷ୍ନୌ ଯାତ୍ରାକଲେ । ସେତେବେଳେ ଉତ୍ତର ଭାରତରେ ଦାରୁଣ ଦୁର୍ଭିକ୍ଷ । ବର୍ଷା ଅଭାବରେ ମରୁଡ଼ି ଓ ଲୋକେ ଅତି ଦୁଃଖରେ କାଳ କାଟୁଥାନ୍ତି । ଦରିଦ୍ର ଜନତାର କଷ୍ଟମୋଚନ ପାଇଁ ହେଷ୍ଟିଂସ୍ ବ୍ୟାକୁଳ ନଥିଲେ । ନବାବଙ୍କର ଶାସନ ପରିଚାଳନା ଉନ୍ନତ ହେଲେ କମ୍ପାନୀର ପ୍ରାପ୍ୟ କିପରି ସହଜରେ ଆଦାୟ ହୋଇପାରିବ, ତାହାହିଁ ଥିଲା ତାଙ୍କର ଚିନ୍ତା । ଆସଫ୍‌ଉଦ୍ଦୌଲ୍ଲାଙ୍କ ଖାମ୍‌ଖିଆଲି ଶାସନର ସ୍ୱରୂପ ଦେଖି ସେ ସ୍ତମ୍ଭୀଭୂତ ହେଲେ । ନବାବଙ୍କ ବିରାଟ ରାଜପ୍ରାସାଦ ପରିସରରେ ନିଯୁକ୍ତ ଥିଲେ ଉଦ୍ୟାନର ରକ୍ଷଣାବେକ୍ଷଣ ପାଇଁ ୪୦୦୦ ମାଳୀ, ସୁରକ୍ଷା ପାଇଁ ଥିଲେ ୧୨୦୦ ହାତୀ, ୧୦୦୦ ଘୋଡ଼ା ଓ ଆମୋଦ ପାଇଁ ଥିଲେ ଲଢ଼େଇରେ ତାଲିମପ୍ରାପ୍ତ ଶହ ଶହ କୁକୁଡ଼ା, ପାରା ଓ ସର୍ପ ଇତ୍ୟାଦି । ଏଣୁ ପ୍ରଶାସନକୁ ନିୟନ୍ତ୍ରିତ କରିବା ପାଇଁ ସମସ୍ତ ସୁପରାମର୍ଶ କେତେଦୂର ସଫଳ ହେବ, ସେ ବିଷୟରେ ସେ ସନ୍ଦେହମୁକ୍ତ ହୋଇପାରିଲେ ନାହିଁ । ଯାହାହେଉ ଲକ୍ଷ୍ନୌରେ ପାଞ୍ଚମାସ ରହିବା ପରେ, ନିଜର ସେକ୍ରେଟାରୀ ମେଜର୍ ପାମରଙ୍କୁ ନବାବଙ୍କର ପରାମର୍ଶଦାତା ନିଯୁକ୍ତ କରି ହେଷ୍ଟିଂସ୍ କଲିକତା ପ୍ରତ୍ୟାବର୍ତ୍ତନ କଲେ ।

କଲିକତା ପରିସ୍ଥିତି ଥିଲା ହେଷ୍ଟିଂସ୍‌ଙ୍କ ପାଇଁ ଆହୁରି ନିଦାରୁଣ । ଏ ମଧ୍ୟରେ ତାଙ୍କର ସମର୍ଥକ କାଉନ୍‌ସିଲ୍ ସଦସ୍ୟ ହ୍ୱେଲରଙ୍କର ଦେହାନ୍ତ ହୋଇଥିଲା । ଅନ୍ୟ ଦୁଇଜଣ କାଉନ୍‌ସିଲର୍ ମ୍ୟାକ୍‌ଫରସନ୍ ଓ ଷ୍ଟେବ୍ଲସ୍‌ଙ୍କ ସହଯୋଗ ଓ ସମର୍ଥନ ବିଷୟରେ ସେ ସନ୍ଦିହାନ ଥିଲେ । ପାର୍ଲିଆମେଣ୍ଟରେ ମଧ୍ୟ ତାଙ୍କ ସମର୍ଥନକାରୀଙ୍କ ସଂଖ୍ୟା ହ୍ରାସ ପାଉଥିଲା । ୧୭୮୪ ମସିହାରେ ଟୋରୀ ଦଳର ନେତା ୟଙ୍ଗର ପିଟ୍ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ହେଲେ । ପିଟ୍ ପାର୍ଲିଆମେଣ୍ଟରେ ଯେଉଁ ଇଷ୍ଟ ଇଣ୍ଡିଆ ବିଲ୍ ଆଗତ କଲେ, ସେଥିରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଉପନିବେଶ ଶାସନ ଉପରେ ସରକାରୀ ନିୟନ୍ତ୍ରଣକୁ ଅଧିକ ଦୃଢ଼ୀଭୂତ କରାଯାଇଥିଲା, ଅଥଚ କାଉନ୍‌ସିଲ୍ ଓ ଉପନିବେଶର

ଗଭର୍ଣ୍ଣର ଜେନେରାଲ୍‌ଙ୍କ ମଧ୍ୟରେ ବିବାଦ ହେଲେ, ତା'ର ସମାଧାନ କରିବାକୁ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ କୌଣସି ସ୍ୱତନ୍ତ୍ର କ୍ଷମତା ଦିଆଯାଇ ନଥିଲା । ବିଲ୍ ଆଗତ କରି ପ୍ରଧାନମନ୍ତ୍ରୀ ପିଟ୍ ପାର୍ଲିଆମେଣ୍ଟରେ ଯେଉଁ ଭାଷଣ ଦେଇଥିଲେ, ତାକୁ ଅନୁଧ୍ୟାନ କରି ହେଷ୍ଟିଂସ୍‌ଙ୍କର ହୃଦ୍‌ବୋଧ ହେଲା ଯେ ଭାରତରେ ଅଧିକ ଦିନ ରହିବା ତାଙ୍କ ପକ୍ଷରେ ସମ୍ଭବ ହେବ ନାହିଁ । ସେ ଇସ୍ତଫା ଦେଲେ ଓ ୧୭୮୫ ମସିହା ଫେବୃଆରୀ ମାସରେ ମ୍ୟାକ୍‌ଫରସନ୍‌ଙ୍କୁ ଦାୟିତ୍ୱ ଅର୍ପଣ କରି ଇଂଲଣ୍ଡ ପ୍ରତ୍ୟାବର୍ତ୍ତନ କଲେ ।

ୱାରେନ୍ ହେଷ୍ଟିଂସ୍ ତେର ବର୍ଷ ବଙ୍ଗଳାର ଗଭର୍ଣ୍ଣର ଓ ସେଥିରୁ ଦଶବର୍ଷ ଥିଲେ ଭାରତର ଗଭର୍ଣ୍ଣର ଜେନେରାଲ୍ । ଖଣ୍ଡବିଖଣ୍ଡିତ ଭାରତର ନବାବ ବାଦଶାହ ଓ ରାଜା ମହାରାଜାମାନଙ୍କ ସମାଧି ଉପରେ ବ୍ରିଟିଶ୍ ସାମ୍ରାଜ୍ୟର ମୂଳଦୁଆ ସ୍ଥାପନ କରିବାରେ ଓ ଉପନିବେଶ ଶାସନକୁ ସୁଦୃଢ଼ କରିବାରେ ତାଙ୍କର ଅବଦାନ ଥିଲା ଅସୀମ । ସେ ଆଶା କରୁଥିଲେ, ଇଂଲଣ୍ଡ ଫେରିଲେ ତାଙ୍କୁ ହୁଏତ ଲର୍ଡ଼ ଉପାଧିରେ ବା ଅନ୍ୟ କୌଣସି ଉଚ୍ଚ ସମ୍ମାନରେ ବିଭୂଷିତ କରାଯିବ । କିନ୍ତୁ ସେ ଇଂଲଣ୍ଡରେ ପହଞ୍ଚିବା ମାତ୍ରେ ପାର୍ଲିଆମେଣ୍ଟରେ ଆଗତ ହେଲା ମହାଭିଯୋଗ ବା ଇମ୍ପିଚ୍‌ମେଣ୍ଟ—ଦୁର୍ନୀତି ଓ କଳଙ୍କର ଅଭିଯୋଗମାଳା । ଭାରତରେ କାଉନ୍‌ସିଲର୍ ଥିବା ଫ୍ରାନ୍‌ସିସ୍ ଓ ହେଷ୍ଟିଂସ୍‌ଙ୍କର ଅନ୍ୟ ବହୁ ଶତ୍ରୁ ଏହି ଅଭିଯୋଗ ଫର୍ଦ୍ଦ ପ୍ରସ୍ତୁତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ବର୍କ ଓ ମ୍ୟାକ୍‌ଲେ ପ୍ରମୁଖ ପାର୍ଲିଆମେଣ୍ଟ ସଦସ୍ୟମାନେ ତାଙ୍କ ବିରୁଦ୍ଧରେ ସୁଆଲ୍-ଜବାବ କରିଥିଲେ । ରୋହିଲା ଯୁଦ୍ଧ, ବନାରସ ବିଦ୍ରୋହ ଆଦି ଘଟଣାରେ ତାଙ୍କର କାର୍ଯ୍ୟକଳାପ ଉପରେ ଗୁରୁତର ଆକ୍ଷେପ କରାଯାଇଥିଲା । ଦୀର୍ଘ ପାଞ୍ଚବର୍ଷବ୍ୟାପୀ ଅନୁସନ୍ଧାନ ପରେ ବ୍ରିଟିଶ୍ ପାର୍ଲିଆମେଣ୍ଟ ତାଙ୍କୁ ସବୁ ଅଭିଯୋଗରୁ ମୁକ୍ତ କରିଥିଲେ ।



# ଚିରସ୍ଥାୟୀ ବନ୍ଦୋବସ୍ତ ଓ କର୍ଣ୍ଣୱାଲିସ୍

ପଲାସି ଯୁଦ୍ଧରେ ଜୟଯୁକ୍ତ ହୋଇ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତରେ ଉପନିବେଶ ସ୍ଥାପନ କରିବାର ତିରିଶ ବର୍ଷ ଗତ ହୋଇଥିଲେ ମଧ୍ୟ ଏକ ଜନମଙ୍ଗଳକାରୀ ରାଷ୍ଟ୍ର ପ୍ରତିଷ୍ଠା ପାଇଁ କୌଣସି ଉଦ୍ୟମ କରିନଥିଲେ । ବ୍ୟବସାୟ ବାଣିଜ୍ୟରୁ ଅଧିକ ଫାଏଦା ଉଠାଇବା, ଭାରତରୁ ଶସ୍ତାରେ ଆବଶ୍ୟକୀୟ କଞ୍ଚାମାଲ୍ ସଂଗ୍ରହ କରି ନିଜ ଦେଶକୁ ରପ୍ତାନୀ କରିବା ଓ ଭାରତୀୟ ବସ୍ତ୍ରଶିଳ୍ପ ଓ ଅନ୍ୟାନ୍ୟ କ୍ଷୁଦ୍ର ଶିଳ୍ପ ସଂସ୍ଥାଗୁଡ଼ିକୁ ବିନଷ୍ଟକରି ଏ ଦେଶରେ ବ୍ରିଟେନ୍ ପ୍ରସ୍ତୁତ ସାମଗ୍ରୀ ବିକ୍ରି କରିବା ଥିଲା କମ୍ପାନୀର ଏକମାତ୍ର ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମ । ଏ ଦେଶର ଚାଷୀ, ବୁଣାକାର ଓ କାରିଗରମାନଙ୍କ ଆର୍ଥିକ ଅବସ୍ଥାରେ କିପରି ଉନ୍ନତି ହେବ, ସେ ପ୍ରତି ଆଦୌ ଧ୍ୟାନ ନଥିଲା । ବରଂ ସର୍ବାଧିକ ଲାଭ ସଂଗ୍ରହ ପ୍ରକ୍ରିୟାରେ କମ୍ପାନୀର କର୍ମକର୍ତ୍ତା ଓ ସେମାନଙ୍କର ସହଯୋଗକାରୀ ରାଜା, ଜମିଦାର ଓ ନବାବଙ୍କର ଅତ୍ୟାଚାରରେ ଚାଷୀକୁଳ ଦିନକୁଦିନ ଅଧିକ ସର୍ବସ୍ୱାନ୍ତ ହେଉଥିଲେ । ଏଣେ କମ୍ପାନୀର ଶାସନ ଥିଲା ସମ୍ପୂର୍ଣ୍ଣ କଳୁଷିତ, କଳଙ୍କିତ ଓ ଦୁର୍ନୀତିପୂର୍ଣ୍ଣ । ଉପରୁ ତଳ ପର୍ଯ୍ୟନ୍ତ ସବୁ କର୍ମଚାରୀ ଭାରତକୁ ଆସି ହଠାତ୍ କିପରି ବିତ୍ତଶାଳୀ ଓ ଧନବାନ୍ ହୋଇପାରିବେ, ସେଥିପାଇଁ ଉତ୍କୋଚ ସଂଗ୍ରହ କରିବାରେ ଥିଲେ ସିଦ୍ଧହସ୍ତ । ଏହି ପରିସ୍ଥିତିରେ ଭାରତ ଶାସନ ସଂସ୍ଥାରୁ ଦୁର୍ନୀତି ଲୋପ କରିବା ପାଇଁ ପ୍ରଧାନମନ୍ତ୍ରୀ ପିଟ୍‌ଙ୍କ ନେତୃତ୍ୱରେ ବ୍ରିଟିଶ୍ ସରକାର ନିଷ୍ପତ୍ତି ନେଲେ । ଏହି ଉଦ୍ଦେଶ୍ୟରେ ଭାରତର ସର୍ବୋଚ୍ଚ ଶାସନ କର୍ତ୍ତାଙ୍କ ନିଯୁକ୍ତି କମ୍ପାନୀ ବୋର୍ଡ଼ ହାତରୁ କାଢ଼ି ନେଇ ଖୋଦ୍ ସରକାରଙ୍କ କ୍ଷମତାର ଅନ୍ତର୍ଭୁକ୍ତ କରାହେଲା । ପୂର୍ବରୁ କମ୍ପାନୀର ବରିଷ୍ଠ ଓ ଅଭିଜ୍ଞ କର୍ମଚାରୀଙ୍କୁ ଏହି ପଦରେ ନିଯୁକ୍ତ କରାଯାଉଥିଲା । ଏଣିକି କମ୍ପାନୀର କର୍ମଚାରୀମାନଙ୍କୁ ବିଚାରରୁ ବାଦ୍ ଦେଇ ଇଂଲଣ୍ଡର ସାଧାରଣ ଜୀବନରେ ପ୍ରସିଦ୍ଧି ଲାଭ କରିଥିବା ଜଣେ ସଂଭ୍ରାନ୍ତ ଶ୍ରେଣୀର ବ୍ୟକ୍ତିଙ୍କୁ ଏହି ଉଚ୍ଚ

ପଦବୀରେ ନିଯୁକ୍ତି କରିବାକୁ ସ୍ଥିର ହେଲା । ଏପରିକି, ବୈଷୟିକ କ୍ଷେତ୍ରରେ ମଧ୍ୟ କମ୍ପାନୀର କାର୍ଯ୍ୟକଳାପକୁ ନିୟନ୍ତ୍ରିତ କରିବା ପାଇଁ, ଆଇନ୍ ପ୍ରଣୟନ ଜରିଆରେ ଏକ 'ବୋର୍ଡ୍ ଅଫ୍ କଣ୍ଟ୍ରୋଲ୍' ପ୍ରତିଷ୍ଠା କରାଗଲା ।

ନୂତନ ଗଭର୍ଣ୍ଣର ଜେନେରାଲ୍ କର୍ଣ୍ଣୱାଲିସ୍ ଥିଲେ ଜଣେ ସଚ୍ଚୋଟ ବ୍ୟକ୍ତି । ଦକ୍ଷ ପ୍ରଶାସକ ଭାବରେ ଇଂଲଣ୍ଡରେ ତାଙ୍କର ପ୍ରସିଦ୍ଧି ଥିଲା । ହେଷ୍ଟିଂସ୍‌ଙ୍କ ପରେ ମ୍ୟାକ୍‌ଫରସନ୍ ୨୦ ମାସ ଅସ୍ଥାୟୀ ଦାୟିତ୍ୱରେ ରହିବା ପରେ କର୍ଣ୍ଣୱାଲିସ୍ ଭାରତରେ ପହଞ୍ଚିଲେ । ଆବଶ୍ୟକ ହେଲେ କାଉନ୍‌ସିଲ୍‌ର ନିଷ୍ପତ୍ତିକୁ ପ୍ରତ୍ୟାଖ୍ୟାନ କରିବାକୁ ତାଙ୍କୁ କେତେକ କ୍ଷମତା ଦିଆଯାଇଥିଲା । କମ୍ପାନୀର ପ୍ରଶାସନ ଓ କର୍ମଚାରୀମାନଙ୍କର ଆଚରଣକୁ ଦୁର୍ନୀତିମୁକ୍ତ କରିବା ପାଇଁ ପଦକ୍ଷେପ ତାଙ୍କର ମୁଖ୍ୟ କାର୍ଯ୍ୟକ୍ରମ ହେଲା । ଶାସନ କ୍ଷେତ୍ରରେ ବିଶେଷତଃ ବିଚାର ବିଭାଗ ଓ ପୋଲିସ୍ ବିଭାଗରେ ବହୁବିଧ ସଂସ୍କାର ଆଣିବା ପାଇଁ ସେ ପ୍ରଯତ୍ନ କଲେ । କମ୍ପାନୀର ରାଜସ୍ୱ ଆୟ ଯେପରି ବୃଦ୍ଧି ପାଇବ ଏବଂ ରାଜସ୍ୱ ଆଦାୟରେ ଯେପରି ତ୍ରୁଟି ନହେବ, ସେଥିପାଇଁ ୧୭୯୩ ଖ୍ରୀଷ୍ଟାବ୍ଦରେ ବଙ୍ଗ ଓ ବିହାରର ଜମିଦାରମାନଙ୍କ ସହିତ 'ଚିରସ୍ଥାୟୀ ବନ୍ଦୋବସ୍ତ' କରିବା ପାଇଁ ଏକ ରେଗୁଲେସନ୍ ପ୍ରବର୍ତ୍ତିତ ହେଲା । କର୍ଣ୍ଣୱାଲିସ୍‌ଙ୍କ ମତରେ ଏ ନୂତନ ବ୍ୟବସ୍ଥା ଜମିଦାରମାନଙ୍କୁ ଚିରକାଳ ପାଇଁ ବଂଶାନୁକ୍ରମିକ ମାଲିକାନା ପ୍ରଦାନ କରିବ ଓ ସେମାନେ ନିଜର ଅଧିକାର ସମ୍ପର୍କରେ ଆଶ୍ୱସ୍ତ ହେଲେ ସରକାରୀ ରାଜସ୍ୱ ଦାଖଲ କରିବା ପାଇଁ ଅଧିକ ତତ୍ପର ହେବେ । ସେ ମନେକରୁଥିଲେ, ସରକାର ଓ କୃଷକ ସଂପ୍ରଦାୟ ମଧ୍ୟରେ ଏକ ମଧ୍ୟସ୍ଥ ଭୂମ୍ୟାଧିକାରୀ ଶ୍ରେଣୀ ସୃଷ୍ଟି ହେଲେ ସେମାନେ ଔପନିବେଶିକ ସପକ୍ଷବାଦୀ ବାତାବରଣ ସୃଷ୍ଟି କରିପାରିବେ ଓ ଚାଷୀକୁଳର ଅଭାବ ଅଭିଯୋଗ ପ୍ରତିବାଦ ଓ ଦାବିର ପ୍ରାଥମିକ ଧକ୍କା ଇଂରେଜ ଶାସନକୁ ଆଘାତ ନ କରି ମଧ୍ୟସ୍ଥ ଜମିଦାରମାନଙ୍କ ସ୍ତରରେ ମଉଳିଯିବ । ସେଥିପାଇଁ ଜମିଦାରମାନଙ୍କ ଦେୟ ଉଚ୍ଚ ହାରରେ ସ୍ଥିର କରିଥିଲେ ମଧ୍ୟ କୃଷିର ବିକାଶ ଓ ଅନ୍ୟ ଆନୁଷଙ୍ଗିକ କାରଣ ହେତୁ କୃଷକର ଦେୟ 'ଖଜଣା' ବୃଦ୍ଧି କରିବାର ଅଧିକାର କର୍ଣ୍ଣୱାଲିସ୍ ଜମିଦାରମାନଙ୍କୁ ଅର୍ପଣ କରିଥିଲେ ।

ଅବଶ୍ୟ ପ୍ରଥମାବସ୍ଥାରେ ସମୟାନୁଯାୟୀ ରାଜସ୍ୱ ଦାଖଲ କରି ନପାରିବା ହେତୁ ବହୁ ଜମିଦାରୀ ବିକ୍ରି ହୋଇଯାଉଥିଲା । ଧାର୍ଯ୍ୟ ତାରିଖର ସୂର୍ଯ୍ୟାସ୍ତ ପୂର୍ବରୁ

ଦେୟ ଦାଖଲ କରି ନ ପାରିଲେ ଜମିଦାର ସ୍ୱତ୍ୱ ବାଜ୍ୟାପ୍ତ ହେଉଥିଲା ଓ ପରେ ତାକୁ ନିଲାମରେ ବିକ୍ରୀ କରାଯାଉଥିଲା । ଏହି ନିୟମକୁ କୁହାଯାଉଥିଲା 'ସନ୍ ସେଟ୍ ଲ' । 'ସନ୍ ସେଟ୍ ଲ' ବଳରେ ବହୁ ଜମିଦାର ନିଜର ପାରମ୍ପରିକ ଅଧିକାରରୁ ବଞ୍ଚିତ ହୋଇଥିଲେ । ଅନେକେ ଅଜ୍ଞତା ହେତୁ ହେଉ ବା ଅବହେଳା ହେତୁ ହେଉ, ରାଜସ୍ୱ ଅନାଦାୟେ ଜମିଦାରୀ ସ୍ୱତ୍ୱ ହରାଇଥିଲେ । ସେମାନଙ୍କ ସ୍ଥାନରେ କମ୍ପାନୀର ଭାରତୀୟ ଦଲାଲ୍, ଅଦାଲତ୍ ଓ କଲେକ୍ଟରେଟ୍‌ର ଅମଲା ବା ମହାଜନମାନେ ନିଲାମରେ ଜମିଦାରୀ କିଣି ନେଉଥିଲେ । ଏହି ପ୍ରକ୍ରିୟାରେ ଦେଶରେ ଏକ ଅବାଞ୍ଛିତ ମଧ୍ୟସତ୍ତ୍ୱାଧିକାରୀ ଶ୍ରେଣୀର ଉଦ୍‌ଭବ ହେଲା, ଯେଉଁମାନଙ୍କର ଅତୀତରେ କୃଷି ସହିତ ବା କୃଷକ ସହିତ କୌଣସି ସମ୍ପର୍କ ନଥିଲା ।

'ଚିରସ୍ଥାୟୀ ବନ୍ଦୋବସ୍ତ' ବା ପର୍‌ମାନେଣ୍ଟ୍ ସେଟ୍‌ଲମେଣ୍ଟ ଦ୍ୱାରା କମ୍ପାନୀର ରାଜସ୍ୱ ଆଦାୟ ବ୍ୟବସ୍ଥା ସୁଦୃଢ଼ ହେଲା ସତ୍ୟ, କିନ୍ତୁ କୃଷକମାନେ ଜମି ଉପରେ ଥିବା ପୁରୁଷାନୁକ୍ରମିକ ଦଖଲ ଅଧିକାରରୁ ବଞ୍ଚିତ ହେଲେ । ଚାଷୀମାନେ କେଉଁ ହାରରେ ଖଜଣା ଦେବେ, ତାହା ଏଣିକି ଜମିଦାର ସ୍ଥିର କଲେ ଏବଂ କୌଣସି କାରଣରୁ ଖଜଣା ଦେଇ ନ ପାରିଲେ ଚାଷୀକୁ ବେଦଖଲ କରାଗଲା । ଜମିଦାରୀ ହସ୍ତାନ୍ତର ହେଲେ ନୂତନ ଜମିଦାର ଚାଷୀ ସହିତ ପୂର୍ବରୁ ଚୁକ୍ତିକୁ ବାତିଲ୍ କରି ଇଚ୍ଛା ମୁତାବକ ଖଜଣା ବଢ଼ାଇ ପାରୁଥିଲେ । ଏହା ବ୍ୟତୀତ ବଡ଼ ବଡ଼ ଜମିଦାରମାନେ ମଉଜ ମଜ୍‌ଲିସ୍‌ରେ ଦିନ କଟାଇ, ଖଜଣା ଆଦାୟ ଦାୟିତ୍ୱ ଇଜାରାଦାରମାନଙ୍କୁ ବିକ୍ରି କରି ଦେଉଥିଲେ । ଇଜରାଦାରଙ୍କ ଅଧୀନରେ କେତେଜଣ ଉପ-ଇଜାରାଦାରଙ୍କୁ ମଧ୍ୟ ଏ ଦାୟିତ୍ୱ ହସ୍ତାନ୍ତର କରାଯାଉଥିଲା । ଏହି ଭାବରେ ଜମିଦାର ଓ ତାଙ୍କ ଇଜାରାଦାରଙ୍କ ସମସ୍ତ ପ୍ରକାର ଉତ୍ପୀଡ଼ନର ଭାର ଚାଷୀକୁ ବହନ କରିବାକୁ ହେଉଥିଲା । 'ଚିରସ୍ଥାୟୀ ବନ୍ଦୋବସ୍ତ' ପରିଶେଷରେ ଚାଷୀମାନଙ୍କ ପାଇଁ ଲୌହଶୃଙ୍ଖଳରେ ପରିଣତ ହେଲା ।

ବିଚାର ବିଭାଗରେ ଆମୂଳଚୂଳ ପରିବର୍ତ୍ତନ କରିବାକୁ ଯାଇ କର୍ଣ୍ଣୱାଲିସ୍ ଯେଉଁ ନୂତନ ସଂସ୍କାର ପ୍ରବର୍ତ୍ତନ କଲେ, ଆଇନ୍‌ର ଶାସନ ପ୍ରତିଷ୍ଠା କରିବା ତା'ର ମୁଖ୍ୟ ଉଦ୍ଦେଶ୍ୟ ଥିଲା । କିନ୍ତୁ ଦେୱାନୀ ମୋକଦ୍ଦମା ବିଚାରରେ ଏହା ଆଇନ୍‌ର ଶାସନ ପରିବର୍ତ୍ତେ ବିଳମ୍ବର ପ୍ରତିଘାତ ସୃଷ୍ଟି କଲା । ସମସ୍ତ ପ୍ରକାର ଦେୱାନୀ ମୋକଦ୍ଦମା ଓ ରାଜସ୍ୱ ସମ୍ପର୍କିତ ରେଭେନିଉ ମୋକଦ୍ଦମା କଲେକ୍ଟରଙ୍କ ପରିବର୍ତ୍ତେ ଏଣିକି

ୟୁରୋପୀଆନ୍ ଜିଲ୍ଲା ଜଜ୍‌ଙ୍କ ନ୍ୟାୟାଳୟକୁ ସ୍ଥାନାନ୍ତରିତ ହେଲା । ଏହି ଜିଲ୍ଲା ଜଜ୍‌ମାନେ ଥିଲେ କମ୍ପାନୀର ବରିଷ୍ଠ କର୍ମଚାରୀ । ହିନ୍ଦୁ ଓ ମୁସଲମାନ ଆଇନ୍ ବିଷୟରେ ସେମାନେ ଥିଲେ ସମ୍ପୂର୍ଣ୍ଣ ଅଜ୍ଞ । ଅବଶ୍ୟ ହିନ୍ଦୁ ଓ ମୁସ୍‌ଲିମ୍ ଆଇନ୍ ପ୍ରୟୋଗ କ୍ଷେତ୍ରରେ ସେମାନେ କେତେଜଣ ଭାରତୀୟ ଆସେସରଙ୍କ ସାହାଯ୍ୟ ନେଉଥିଲେ । ବିଚାର ବିଭାଗର ସର୍ବନିମ୍ନ ଶ୍ରେଣୀର ଅଫିସର ଥିଲେ ଭାରତୀୟ, ଯେଉଁମାନଙ୍କର ବିଚାର କ୍ଷମତା ମାତ୍ର ୫୦ ଟଙ୍କା ବା ତହିଁରୁ ଊଣା ମୂଲ୍ୟର ମୋକଦ୍ଦମାରେ ଆବଦ୍ଧ ଥିଲା । ଏହି ନ୍ୟାୟାଳୟମାନେ ଯୁଗଯୁଗରୁ ପ୍ରଚଳିତ ହିନ୍ଦୁ ଓ ମୁସ୍‌ଲିମ୍ ଆଇନ୍‌ର ପ୍ରୟୋଗ ସଂକ୍ରାନ୍ତୀୟ ବିବାଦ ନିଷ୍ପତ୍ତି କରୁଥିଲେ, ଅଥଚ ଭାରତରେ ପ୍ରଚ୍‌ଳିତ ଆଇନ୍ ନିୟମ, ଭାରତୀୟ ସମାଜ ଓ ସଂସ୍କୃତି ଓ ଭାଷା ବିଷୟରେ ଏମାନଙ୍କର କୌଣସି ଧ୍ୟାନଧାରଣା ନଥିଲା । ଏପରି କ୍ଷେତ୍ରରେ ନିଜର ବିବେକ ଓ ବୋଧଶକ୍ତି ଉପରେ ନିର୍ଭର କରିବା ବ୍ୟତୀତ ଏହି ୟୁରୋପୀୟ ବିଚାରପତିମାନଙ୍କର ଅନ୍ୟ କୌଣସି ଚାରା ନଥିଲା । ଏଥିପୂର୍ବରୁ ମୋକଦ୍ଦମା ଦାଖଲ କରିବା ବା ବିଚାର ପଦ୍ଧତି ସମ୍ପର୍କରେ ଏ ଦେଶରେ କୌଣସି ନିୟମାବଳୀ ପ୍ରଚ୍‌ଳିତ ନଥିଲା । ପ୍ରଥମଥର ପାଇଁ କର୍ଣ୍ଣୱାଲିସ୍ ତାଙ୍କ ଚିଫ୍ ସେକ୍ରେଟାରୀଙ୍କ ଦ୍ୱାରା ପ୍ରଣୀତ ଦେୱାନୀ କାର୍ଯ୍ୟବିଧି ପଦ୍ଧତି ରେଗୁଲେସନ୍ ଜାରୀ କଲେ । ଏ ରେଗୁଲେସନ୍ ଥିଲା ଇଂଲଣ୍ଡରେ ପ୍ରଚଳିତ କାର୍ଯ୍ୟବିଧି ଆଇନ୍‌ର ଏକ ସମୀକରଣ । ସାଧାରଣ ମକଦ୍ଦମାକାରୀ ବା ଲିଟିଗାଣ୍ଟ ପକ୍ଷରେ ଏ ରେଗୁଲେସନ୍ ହେଲା ସମ୍ପୂର୍ଣ୍ଣ ଅବୋଧ । ଏଣୁ ବାଦୀ ହୁଅନ୍ତୁ ବା ପ୍ରତିବାଦୀ ହୁଅନ୍ତୁ, ମାମଲାରେ ଜଡ଼ିତ ବ୍ୟକ୍ତିଙ୍କୁ ଅଧିବକ୍ତା ବା ଆଇନ୍‌ଜୀବୀଙ୍କ ଆଶ୍ରୟ ନେବାକୁ ପଡ଼ିଲା । କର୍ଣ୍ଣୱାଲିସ୍ ଭାବିଥିଲେ, ଏହାଦ୍ୱାରା ଜନସାଧାରଣଙ୍କୁ ଶସ୍ତା ଓ ସୁବିଧାରେ ନ୍ୟାୟ ବିଚାର ମିଳିପାରିବ । କିନ୍ତୁ ଫଳ ହେଲା ଓଲଟା । ଭାରତୀୟ ଆଇନ୍, ସମାଜ ଓ ସଂସ୍କୃତି ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ୟୁରୋପୀୟ ବିଚାରପତିମାନଙ୍କ ଦ୍ୱାରା ଇଂଲଣ୍ଡର ବିଚାର ପଦ୍ଧତି ଓ କାର୍ଯ୍ୟବିଧି ଆଇନ୍ ଅନୁସରଣ କରି ନ୍ୟାୟଦାନ କରିବା ସହଜସାଧ୍ୟ ହେଲା ନାହିଁ । ବରଂ ମୋକଦ୍ଦମା ଫଏସଲା କରିବାରେ ବିଳମ୍ବ ହେଲା । କେବଳ ଜମିଦାର ଓ ମହାଜନ ଆଦି ଧନିକ ଶ୍ରେଣୀର ବାଦୀ ପ୍ରତିବାଦୀମାନେ ମୋକଦ୍ଦମାରୁ ଫାଏଦା ଉଠାଇଲେ । ସାଧାରଣ ନିର୍ଦ୍ଧନ ଲୋକ ପାଇଁ ନ୍ୟାୟାଳୟ ହେଲା ଏକ ମରଣଯନ୍ତା ।

ଫୌଜଦାରୀ ଆଇନ୍ କ୍ଷେତ୍ରରେ କର୍ଣ୍ଣୱାଲିସ୍‌ଙ୍କ ସଂସ୍କାର ଅଧିକ ଫଳପ୍ରଦ ହୋଇଥିଲା । ହେଷ୍ଟିଂସ୍‌ଙ୍କ ସମୟରେ କଲିକତା ସହର ସୀମା ବାହାରେ ପ୍ରତିଷ୍ଠିତ

ଫୌଜଦାରୀ ଅଦାଲତ୍‌ରେ ମୁସଲମାନ୍ କାଜିମାନେ ମୁଖ୍ୟ ବିଚାରପତି ଥିଲେ । ଦଣ୍ଡବିଧାନ ରୀତି ଥିଲା ଅତି କ୍ରୁର ଓ ନିର୍ମମ । ମୁଦାଲା ଦୋଷୀ ସାବ୍ୟସ୍ତ ହେଲେ ସାମାନ୍ୟ ଅପରାଧ ପାଇଁ ତା'ର ଅଙ୍ଗପ୍ରତ୍ୟଙ୍ଗ କ୍ଷତବିକ୍ଷତ କରାଯାଉଥିଲା ବା ଶରୀରର କୌଣସି ଅଙ୍ଗ ସର୍ବ ସମକ୍ଷରେ କାଟି ଦିଆଯାଉଥିଲା, ଯେଉଁ ପ୍ରକାରର ଦଣ୍ଡ ଏବେ ସାଉଦୀ ଆରବ ପରି ମୁସ୍‌ଲିମ୍ ରାଜ୍ୟମାନଙ୍କରେ ପ୍ରଦାନ କରାଯାଏ । କର୍ଣ୍ଣୱାଲିସ୍‌ଙ୍କ ନୂତନ ରେଗୁଲେସନ୍ ଅନୁଯାୟୀ ସବୁ ଫୌଜଦାରୀ ଅଦାଲତ୍‌ରେ କାଜିଙ୍କ ପରିବର୍ତ୍ତେ ଇଂରେଜ ବିଚାରପତି ନିଯୁକ୍ତ ହେଲେ । ଗୌଣ ଅପରାଧର ବିଚାର ପାଇଁ ଜିଲ୍ଲା ଜଜ୍‌ମାନଙ୍କୁ ମାଜିଷ୍ଟେରିଆଲ କ୍ଷମତା ପ୍ରଦାନ କରାଗଲା । ନରହତ୍ୟା ଆଦି ଗୁରୁତର ଅପରାଧର ବିଚାର ପାଇଁ ଚାରୋଟି ସର୍କିଟ୍ କୋର୍ଟ ପ୍ରତିଷ୍ଠିତ ହେଲା ଓ ସର୍ବୋପରି ଅପିଲ୍ କ୍ଷମତା ନ୍ୟସ୍ତ ହେଲା ଗଭର୍ଣ୍ଣର ଜେନେରାଲ୍ ଓ ତାଙ୍କ କାଉନ୍‌ସିଲ୍ ଉପରେ । ଏହି ସର୍ବୋଚ୍ଚ ଅପିଲ୍ ସଂସ୍ଥାର ନାମ ହେଲା 'ନିଜାମତ୍ ଅଦାଲତ୍' । ଅଙ୍ଗପ୍ରତ୍ୟଙ୍ଗ କାଟିବା ବା ଶାରୀରିକ ଯନ୍ତ୍ରଣା ଦେବା ପରିବର୍ତ୍ତେ ଦୋଷୀ ସାବ୍ୟସ୍ତ ବ୍ୟକ୍ତି ପାଇଁ 'କାରାବାସ' ହେଲା ପ୍ରଧାନ ଦଣ୍ଡ ବ୍ୟବସ୍ଥା । କାଜି ବିଚାର ପ୍ରଥା ଲୋପ ହେଲା ସତ୍ୟ, କିନ୍ତୁ ବିଚାର ବିଭାଗରୁ ଭାରତୀୟମାନେ ପ୍ରାୟତଃ ବାଦ୍ ପଡ଼ିଲେ ।

ପୋଲିସ୍ ବିଭାଗର ସୁସଂଗଠନ କର୍ଣ୍ଣୱାଲିସ୍‌ଙ୍କର ଅନ୍ୟ ଏକ କୃତି । ଏଥି-ପୂର୍ବରୁ ଜମିଦାରଙ୍କ ପିଆଦାମାନେ ନିଜ ଅଞ୍ଚଳରେ ଆଇନ୍ ଶୃଙ୍ଖଳା ରକ୍ଷାକରୁଥିଲେ । ଜମିଦାରମାନେ ଖଜଣା ଆଦାୟ ସହିତ ଜନସାଧାରଣଙ୍କ ଉପରେ ବଳ ପ୍ରୟୋଗର କ୍ଷମତା ପ୍ରୟୋଗ କରୁଥିବାରୁ, ବହୁକ୍ଷେତ୍ରରେ ତା'ର ଅପବ୍ୟବହାର କରାଯାଉଥିଲା ଓ ଜମିଦାରମାନେ ସ୍ୱେଚ୍ଛାଚାରୀ ଅତ୍ୟାଚାରୀ ଗୋଷ୍ଠୀ ଭାବରେ କାର୍ଯ୍ୟ କରୁଥିଲେ । କର୍ଣ୍ଣୱାଲିସ୍ ଜମିଦାରଙ୍କଠାରୁ ଆଇନ୍ ଶୃଙ୍ଖଳା ରକ୍ଷା କରିବାର ଦାୟିତ୍ୱ କାଢ଼ି ନେଇଥିଲେ । ତତ୍‌ପରିବର୍ତ୍ତେ ପ୍ରାୟ ୪୦୦ ବର୍ଗମାଇଲ୍ ଅଞ୍ଚଳରେ ଗୋଟିଏ ଲେଖାଏଁ ଥାନା ପ୍ରତିଷ୍ଠିତ ହେଲା ଓ ପ୍ରତି ଥାନାର ତତ୍ତ୍ୱାବଧାରକ ହେଲେ ସରକାରଙ୍କ ଦ୍ୱାରା ନିଯୁକ୍ତ ଜଣେ ଦାରୋଗା ଓ ତାଙ୍କ ଅଧୀନରେ କେତେଜଣ ଲାଠି ବା ଅସ୍ତ୍ରଧାରୀ ସିପାହୀ । ମାଜିଷ୍ଟ୍ରେଟ୍‌ଙ୍କ ପରୱାନା ନଥାଇ ମଧ୍ୟ ଦାରୋଗାମାନେ ସନ୍ଦେହରେ ଅପରାଧୀକୁ ଗିରଫ୍ କରି ପାରୁଥିଲେ ଓ ବହୁ କ୍ଷେତ୍ରରେ ଏ କ୍ଷମତାର ଅପବ୍ୟବହାର କରାଯାଉଥିଲା । ତଥାପି ଭାରତୀୟମାନଙ୍କ ପାଇଁ ଦାରୋଗା ପଦ ଥିଲା ଏକ ଲୋଭନୀୟ ନୌକରି ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଇଂରେଜ ଶାସନକର୍ତ୍ତାମାନଙ୍କ ଦୃଷ୍ଟିକୋଣରେ ବହୁ ପରିବର୍ତ୍ତନ ପରିଲକ୍ଷିତ ହେଲା । କ୍ଲାଇଭ୍ ବା ହେଷ୍ଟିଂସଙ୍କ କେହି ଭାରତ ହିତୈଷୀ ନଥିଲେ । କିନ୍ତୁ ସେମାନଙ୍କ ସମୟରେ କମ୍ପାନୀ କର୍ତ୍ତୃପକ୍ଷ ଉପନିବେଶ ସ୍ଥାପନ କରିବାକୁ ଯାଇ ଭାରତୀୟ ରାଜା ଓ ନବାବମାନଙ୍କର ସହାୟତା ଗ୍ରହଣ କରୁଥିଲେ । କମ୍ପାନୀର କର୍ମଚାରୀମାନେ ଅବଶ୍ୟ ନବଅର୍ଜିତ ରାଜନୈତିକ କ୍ଷମତାର ସୁଯୋଗ ନେଇ ନିଜପାଇଁ ଅଧିକ ସମ୍ପଦ ଠୁଳ କରିବାରେ ମଜ୍ଜିତ ରହୁଥିଲେ, ମାତ୍ର ଶାସନ ଦାୟିତ୍ୱ ନବାବ ଓ ତାଙ୍କର ସହଯୋଗୀମାନଙ୍କ ଉପରେ ନ୍ୟସ୍ତ ରହୁଥିଲା । କାଳକ୍ରମେ କମ୍ପାନୀର ସ୍ଥିତି ଯେତିକି ଦୃଢ଼ ହେଲା, ବ୍ରିଟିଶ ସରକାରଙ୍କ ନିର୍ଦ୍ଦେଶରେ କମ୍ପାନୀ କର୍ତ୍ତୃପକ୍ଷ ଶାସନ ପରିଚାଳନାରେ ଅଧିକ ଭାବରେ ଜଡ଼ିତ ହେଲେ । ତତ୍‌ସହିତ ଇଂରେଜମାନେ ଅଧିକ ଆତ୍ମମ୍ଭରୀ ଓ ଅହଂକାରୀ ହୋଇ ଉଠିଲେ ଓ ସେମାନଙ୍କର ଉଗ୍ର ସାମ୍ରାଜ୍ୟବାଦୀ ସ୍ୱରୂପ ନଗ୍ନଭାବରେ ପ୍ରକାଶିତ ହେଲା । ହେଷ୍ଟିଂସ୍‌ଙ୍କ ସମୟରେ ଭାରତୀୟମାନଙ୍କ ପ୍ରତି ହତାଦର ନଥିଲା । ବସ୍ତୁତଃ ବିଚାର ବିଭାଗ ଓ ରାଜସ୍ୱ ବିଭାଗରେ ବହୁ ଭାରତୀୟ କମ୍ପାନୀ ଅଧୀନରେ କାର୍ଯ୍ୟ କରୁଥିଲେ । କିନ୍ତୁ ଶାସନ ପରିଚାଳନାରେ ନାନା ସଂସ୍କାର ପ୍ରବର୍ତ୍ତନ କଲେ ମଧ୍ୟ, କର୍ଣ୍ଣୱାଲିସ୍ ଥିଲେ ଅତ୍ୟନ୍ତ ଭାରତ-ବିଦ୍ୱେଷୀ । ଭାରତୀୟମାନଙ୍କୁ ସେ ହେୟଦୃଷ୍ଟିରେ ଦେଖୁଥିଲେ ଓ ଭାରତୀୟମାନେ ଥିଲେ ତାଙ୍କର ଅବଜ୍ଞାର ପାତ୍ର । ସେଥିପାଇଁ କମ୍ପାନୀ ଶାସନର ସବୁ ସ୍ତରରେ ସେ ଇଂରେଜମାନଙ୍କୁ ପ୍ରାଧାନ୍ୟ ଦେଉଥିଲେ । ତାଙ୍କ ମତରେ ଇଂରେଜମାନେ ଦୁର୍ନୀତିପରାୟଣ ହେଲେ ମଧ୍ୟ ସେମାନଙ୍କୁ ସଂଶୋଧନ କରାଯାଇ ପାରିବ, କିନ୍ତୁ ଭାରତୀୟ ସମାଜରୁ ଦୁର୍ନୀତିର ମୂଳୋତ୍ପାଟନ କରାଯାଇପାରିବ ନାହିଁ ।

ବଙ୍ଗଳାର ଶାସନ ସଂସ୍କାରର କୌଣସି ପ୍ରଭାବ ଦକ୍ଷିଣ ଭାରତରେ ପଡ଼ି ନଥିଲା । ସେ ସମୟରେ ମାଡ୍ରାସର ଗଭର୍ଣ୍ଣର ଥିଲେ ମେଜର ଜେନେରାଲ ସାର୍ ଆର୍କିବାଲ୍ଡ୍ କ୍ୟାମ୍ପବେଲ୍ । ସେ ଏହି ପଦ ପାଇଁ 'ବୋର୍ଡ୍ ଅଫ୍ କଣ୍ଟ୍ରୋଲ୍'ର ସଭାପତି ଡୁଣ୍ଡାସ୍‌ଙ୍କ ଦ୍ୱାରା ମନୋନୀତ ହୋଇଥିଲେ । ଗଭର୍ଣ୍ଣର ଜେନେରାଲ୍ କର୍ଣ୍ଣୱାଲିସ୍‌ଙ୍କ ସହ ତାଙ୍କର ସୁସମ୍ପର୍କ ଥିଲା । ୧୭୮୮ ମସିହାରେ ଉଭୟଙ୍କର ମିଳିତ ଉଦ୍ୟମରେ ମାଡ୍ରାସ କର୍ମଚାରୀମାନଙ୍କର ଋଣଦାତା ଗୋଷ୍ଠୀର ନେତା ବେନ୍‌ଫିଲ୍ଡ୍ ଓ ତାଙ୍କର କେତେକ ସହଯୋଗୀଙ୍କୁ ମାଡ୍ରାସରୁ ବିତାଡ଼ିତ କରାଗଲା । ମାଡ୍ରାସ କାଉନ୍‌ସିଲ୍‌ର ଯେଉଁ କର୍ମଚାରୀମାନେ କର୍ଣ୍ଣାଟକର ନବାବ ମହମ୍ମଦ ଅଲ୍ଲୀଙ୍କୁ ଉଚ୍ଚ ହାରର ସୁଧ

ବିନିମୟରେ ଋଣ ଦାନ କରୁଥିଲେ ଓ ସେହି ଋଣ ଆଦାୟ ସହଜସାଧ କରିବା ପାଇଁ ମହମ୍ମଦ ଅଲ୍ଲୀଙ୍କୁ ନାନାପ୍ରକାର ରାଜନୈତିକ ସୁବିଧା ଓ ରାଜ୍ୟ ବିସ୍ତାର କାର୍ଯ୍ୟକ୍ରମରେ କମ୍ପାନୀ ତରଫରୁ ସାମରିକ ସାହାଯ୍ୟ ପ୍ରଦାନ କରୁଥିଲେ, ପଲ୍ ବେନ୍‌ଫିଲ୍ଡ ଥିଲେ ସେହି ଗୋଷ୍ଠୀର ନେତା । ବେନ୍‌ଫିଲ୍ଡ୍ ସିନା ମାନ୍ଦ୍ରାସରୁ ବିଦାୟ ନେଲେ, କିନ୍ତୁ ତାଙ୍କ ଦୁର୍ନୀତିର ଚେର ମାନ୍ଦ୍ରାସ ପ୍ରଶାସନରେ ଜଡ଼ି ରହିଥିଲା । ମାନ୍ଦ୍ରାସ କାଉନ୍‌ସିଲ୍‌ର ଜଣେ ବରିଷ୍ଠ ସଦସ୍ୟ ଥିଲେ ଏହି ଋଣଦାତାମାନଙ୍କର ଅନ୍ୟତମ ପ୍ରମୁଖ ନେତା । ଏଣେ ବେନ୍‌ଫିଲ୍ଡ୍ ଓ ତାଙ୍କର ସହଯୋଗୀମାନେ ଲଣ୍ଡନରେ ପହଞ୍ଚି ନିଜର ଅପର୍ଯ୍ୟାପ୍ତ ଅର୍ଥ ବଳରେ ପାର୍ଲିଆମେଣ୍ଟ ସଦସ୍ୟ ପଦ ହାସଲ କଲେ ଏବଂ ପ୍ରଧାନମନ୍ତ୍ରୀ ପିଟ୍ ଓ ବୋର୍ଡ୍ ଅଫ୍ କଣ୍ଟ୍ରୋଲର ସଭାପତି ଦୁଣ୍ଡାସଙ୍କୁ ମଧ୍ୟ ପ୍ରଭାବିତ କରିବାକୁ ସମର୍ଥ ହୋଇଥିଲେ ।

୧୭୮୪ ଖ୍ରୀଷ୍ଟାବ୍ଦରେ ପିଟ୍‌ଙ୍କ ନେତୃତ୍ୱରେ ଯେଉଁ ଇଣ୍ଡିଆ ଆକ୍ଟ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଗୃହୀତ ହୋଇଥିଲା, ସେଥିରେ କମ୍ପାନୀର ମାନ୍ଦ୍ରାସ କର୍ମଚାରୀଙ୍କ ଦ୍ୱାରା ନବାବଙ୍କୁ ଦିଆଯାଇଥିବା ଋଣ ସମ୍ପର୍କରେ ଅନୁସନ୍ଧାନ କରିବା ପାଇଁ ଗୋଟିଏ ସ୍ୱତନ୍ତ୍ର ଦଫା ସଂଯୋଗ କରାଯାଇଥିଲା । କାରଣ, ସେତେବେଳେ ଏହି ଋଣ ଦାନ ଓ ଋଣ ଆଦାୟ ଏକ ବିରାଟ ପ୍ରତାରଣା ରୂପେ ବିବେଚିତ ହେଉଥିଲା । କମ୍ପାନୀର ବୋର୍ଡ୍ ଅଫ୍ ଡାଇରେକ୍ଟରମାନେ ଯେତେବେଳେ ଋଣ ସଂକ୍ରାନ୍ତୀୟ ଅନୁସନ୍ଧାନ ଆରମ୍ଭ କଲେ, ସରକାରଙ୍କ 'ବୋର୍ଡ୍ ଅଫ୍ କଣ୍ଟ୍ରୋଲ୍'ଙ୍କ ନିର୍ଦ୍ଦେଶରେ ଏ ଅନୁସନ୍ଧାନକୁ ବାତିଲ୍ କରିଦିଆଗଲା । ବୋର୍ଡ୍ ଅଫ୍ କଣ୍ଟ୍ରୋଲ୍ ପୁନଶ୍ଚ ନିଷ୍ପତ୍ତି ଦେଲେ ଯେ ମହମ୍ମଦ ଅଲ୍ଲୀଙ୍କୁ ଦିଆଯାଇଥିବା ଋଣ ଯଥାର୍ଥ ଓ ପରିଶୋଧ ଯୋଗ୍ୟ । ଅର୍ଥାତ୍, ବେନ୍‌ଫିଲ୍ଡ୍ ମାନ୍ଦ୍ରାସରେ ରହି ଯାହା ସ୍ୱଚ୍ଛନ୍ଦରେ କରିପାରୁ ନଥିଲେ, ଲଣ୍ଡନରେ ରହି ତାହା କରିବାକୁ ସମର୍ଥ ହେଲେ । ଏଥି ପୂର୍ବରୁ ମ୍ୟାକାର୍ଟ୍‌ନି ଗଭର୍ଣ୍ଣର ଥିବା ସମୟରେ କୁଶାସନ ଓ ପ୍ରଜା ନିପୀଡ଼ନ ଅଭିଯୋଗରେ କର୍ଣ୍ଣାଟକର ନବାବଙ୍କଠାରୁ ରାଜସ୍ୱ ଆଦାୟ କ୍ଷମତା କାଢ଼ି ନିଆଯାଇଥିଲା ଓ କମ୍ପାନୀ ସେ ଦାୟିତ୍ୱ ନିଜେ ଗ୍ରହଣ କରିଥିଲେ । କିନ୍ତୁ ଦ୍ୱିତୀୟ ମହୀଶୂର ଯୁଦ୍ଧର ପରିସମାପ୍ତି ପରେ ପୁନଶ୍ଚ ସେହି କ୍ଷମତା ମହମ୍ମଦ ଅଲ୍ଲୀଙ୍କୁ ପ୍ରତ୍ୟର୍ପଣ କରାଗଲା । ନବାବଙ୍କ ଦୁର୍ନୀତିପୂର୍ଣ୍ଣ ଶାସନ ଓ ନିର୍ମମ ନିପୀଡ଼ନରୁ ପ୍ରଜାମାନଙ୍କୁ ମୁକ୍ତି ମିଳିଲା ନାହିଁ । ଏ ସତ୍ତ୍ୱେ, କର୍ଣ୍ଣୱାଲିସ୍‌ଙ୍କ ମତରେ ଭାରତୀୟମାନେ ଥିଲେ ଦୁର୍ନୀତିଗ୍ରସ୍ତ ଓ ଇଂରେଜମାନେ ସାଧୁ ଓ ସଚ୍ଚୋଟ ।

•

# ତୃତୀୟ ମହୀଶୂର ଯୁଦ୍ଧ

କର୍ଣ୍ଣୱାଲିସ୍ ସେପ୍ଟେମ୍ବର ୧୭୮୬ ମସିହାରେ ଭାରତରେ ପହଞ୍ଚିଲା ବେଳକୁ ମହୀଶୂର ନବାବ ଟିପୁ ସୁଲତାନ ପୁନାର ପେଶ୍ୱା ଓ ହାଇଦ୍ରାବାଦ୍‌ର ନିଜାମଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିଲେ । ପରବର୍ଷ ଏ ଯୁଦ୍ଧ ଶେଷ ହେଲା । ଉଭୟ ପକ୍ଷରୁ କେହି ଏ ଯୁଦ୍ଧରେ ବିଶେଷ ଲାଭବାନ୍ ହୋଇନଥିଲେ । କର୍ଣ୍ଣୱାଲିସ୍ ଅନୁଭବ କଲେ ଯେ, ଭାରତର ରାଜା ଓ ନବାବଙ୍କ ମଧ୍ୟରେ ଟିପୁ ସୁଲତାନ ସବୁଠାରୁ ବେଶି ଶକ୍ତିଶାଳୀ । ଏଣୁ ସେ ଯଥାସମ୍ଭବ ମହୀଶୂର ସହ ଯୁଦ୍ଧରେ ଲିପ୍ତ ହେବାକୁ ଚାହୁଁ ନଥିଲେ । କିନ୍ତୁ ଟିପୁ ସୁଲ୍‌ତାନ୍ ଏପରି କେତେକ ଉତ୍ତେଜକ ଓ ଉଦ୍ଦୀପନାମୂଳକ କାର୍ଯ୍ୟ କଲେ ଯେଉଁଥିପାଇଁ ଭବିଷ୍ୟତ ଯୁଦ୍ଧ ସକାଶେ ପ୍ରସ୍ତୁତ ରହିବା ନିମନ୍ତେ ଗଭର୍ଣ୍ଣର ଜେନେରାଲ୍ ନିର୍ଦ୍ଦେଶ ଦେଲେ । ସମ୍ବାଦ ମିଳିଲା ଯେ ଟିପୁ ସାମରିକ ସାହାଯ୍ୟ ପାଇଁ ଫ୍ରାନ୍ସକୁ ରାଜଦୂତ ପ୍ରେରଣ କରିଛନ୍ତି ଓ ଦକ୍ଷିଣରେ ତ୍ରାଭାଙ୍କୋର ରାଜ୍ୟ ଉପରେ ଆକ୍ରମଣ କରି ସ୍ଥାନୀୟ ରାଜାଙ୍କୁ ଗାଦିଚ୍ୟୁତ କରିବାକୁ ଉଦ୍ୟମ କରୁଛନ୍ତି । ଦ୍ୱିତୀୟ ମହୀଶୂର ଯୁଦ୍ଧ ଶେଷରେ ସ୍ୱାକ୍ଷରିତ ବାଙ୍ଗାଲୋର ଶାନ୍ତି ଚୁକ୍ତିରେ ସ୍ପଷ୍ଟ ଉଲ୍ଲେଖ ଥିଲା ଯେ ତ୍ରାଭାଙ୍କୋର ଇଂରେଜ କମ୍ପାନୀର ମିତ୍ରରାଜ୍ୟ ରୂପେ ବିବେଚିତ ହେବ । ଏଣୁ କର୍ଣ୍ଣୱାଲିସ୍ ଓ ମାଡ୍ରାସ ଗଭର୍ଣ୍ଣର କ୍ୟାମ୍ପବେଲ୍ ନିଷ୍ପତ୍ତି ନେଲେ ମହୀଶୂର ତ୍ରାଭାଙ୍କୋର ଉପରେ ଆକ୍ରମଣ କଲେ, ଇଂରେଜମାନେ ତ୍ରାଭାଙ୍କୋରକୁ ନିଶ୍ଚିତ ଭାବରେ ସାହାଯ୍ୟ କରିବେ ଏବଂ ପେଶ୍ୱା ଓ ନିଜାମ୍‌ଙ୍କ ସହ ସଦ୍‌ଭାବ ପ୍ରତିଷ୍ଠା କରି ସେମାନଙ୍କୁ ଟିପୁଙ୍କ ବିରୁଦ୍ଧରେ ପ୍ରୟୋଗ କରିବାକୁ ଉଦ୍ୟମ କରିବେ ।

ଟିପୁ ସୁଲ୍‌ତାନ୍‌ଙ୍କ ସାମରିକ ଶକ୍ତି ସମ୍ପର୍କରେ ଇଂରେଜମାନଙ୍କର ଆକଳନ ଯଥାର୍ଥ ଥିଲା । ଭାରତରେ ମହୀଶୂର ସେନାବାହିନୀ ଥିଲା ସବୁଠାରୁ ଶକ୍ତିଶାଳୀ । କିନ୍ତୁ ଟିପୁଙ୍କର ପ୍ରଧାନ ଶତ୍ରୁ ଥିଲା ତାଙ୍କର ରାଗ, ଅହଙ୍କାର, ଦୁର୍ଦ୍ଦମନୀୟ ଉଚ୍ଚାଭିଳାଷ ଓ ପଡ଼ୋଶୀ ରାଜ୍ୟ ଜୟ କରିବାର ଦୁର୍ବାର ଲାଳସା । ପିତା ହାଇଦର ଅଲ୍ଲୀଙ୍କର ସବୁ

ଗୁଣର ଟିପୁ ଅଧିକାରୀ ଥିଲେ ମଧ, ହାଇଦରଙ୍କର ଶତ୍ରୁପକ୍ଷର ଶକ୍ତି ଆକଳନ କରିବାର କ୍ଷମତା ଟିପୁଙ୍କର ନଥିଲା । ବ୍ରିଟିଶ ସେନାବାହିନୀ ଯେ ଆଧୁନିକ ରଣକୌଶଳ ପ୍ରୟୋଗ କରିବାରେ ପାରଙ୍ଗମ ଏକ ଶୃଙ୍ଖଳିତ ବାହିନୀ, ଏ ବିଷୟରେ ହାଇଦର ସଚେତନ ଥିଲେ ଓ ସେଥିପାଇଁ ଇଂରେଜମାନଙ୍କ ସହ ସିଧାସଳଖ ଯୁଦ୍ଧରୁ ଯଥାସମ୍ଭବ ନିବୃତ୍ତ ରହୁଥିଲେ । କିନ୍ତୁ ଟିପୁ ସୁଲତାନଙ୍କର ହାମ୍‌ବଡ଼ା ସ୍ୱଭାବ ତାଙ୍କର ସବୁ ବିପଦ ଆପଦର ମୂଳ କାରଣ ହେଲା । ମହୀଶୂରର ହିନ୍ଦୁ ରାଜାଙ୍କୁ ବିତାଡ଼ିତ କରି ହାଇଦର ଅଲ୍ଲୀ ନିଜକୁ ନବାବ ଘୋଷଣା କରିବା ପରେ ଟ୍ରାଭାଙ୍କୋର ରାଜା ମହୀଶୂର ପଟୁ ଆକ୍ରମଣର ସମ୍ଭାବନା ସମ୍ପର୍କରେ ସଜାଗ ହେଲେ । ସେ ଟ୍ରାଭାଙ୍କୋରର ସୁରକ୍ଷା ପାଇଁ ଉତ୍ତର ସୀମାରେ ଦୀର୍ଘ ଚାଳିଶ ମାଇଲ ଲମ୍ବ ଏକ ପ୍ରାଚୀର ଓ ଗଡ଼ଖାଇ ନିର୍ମାଣ କରିଥିଲେ । ପ୍ରତିରକ୍ଷା ଦୃଷ୍ଟିରୁ ଏହାକୁ "ଟ୍ରାଭାଙ୍କୋର ଲାଇନ୍" ବୋଲି କୁହାଯାଉଥିଲା । ଟିପୁ ଯେତେବେଳେ ମାଲାବାର ଓ କୋଚିନ୍‌ରେ ବିଦ୍ରୋହ ଦମନ କରିବା ପାଇଁ ସୈନ୍ୟ ପ୍ରେରଣ କଲେ, ଟ୍ରାଭାଙ୍କୋର ରାଜା ସୁରକ୍ଷା ଲାଇନ୍‌ର ଉତ୍ତରରେ ଥିବା ଦୁଇଟି ଦୁର୍ଗ ଡଚ୍‌ମାନଙ୍କଠାରୁ ଖରିଦ୍ କରିଥିଲେ । ଏହା ଟିପୁଙ୍କ ପକ୍ଷରେ ସହ୍ୟ ହେଲା ନାହିଁ । ଡିସେମ୍ବର ୧୭୮୯ ମସିହାରେ ସେ ଉପରୋକ୍ତ ଟ୍ରାଭାଙ୍କୋର ଲାଇନ୍ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଏ ଆକ୍ରମଣ ଥିଲା ସମ୍ପୂର୍ଣ୍ଣ ଅହେତୁକ ଓ ତାହା ମଧ ସଫଳ ହେଲା ନାହିଁ । ଟିପୁ କୈଫିୟତ୍ ଦେବାକୁ ଆରମ୍ଭ କଲେ, ଏ ଆକ୍ରମଣ ପୂର୍ବ ପରିକଳ୍ପିତ ନୁହେଁ, ଏହା ଏକ ଭ୍ରମାତ୍ମକ ଦୁର୍ଘଟଣା । ଟିପୁ ଯେ କେବଳ ସମୟ ନେବା ପାଇଁ ଏପରି ପରିପ୍ରଚାର କରୁଥିଲେ, ଏ ବିଷୟରେ କାହାର ସନ୍ଦେହ ନଥିଲା ।

ଏ ମଧରେ ବହୁ ବିଚାରବିମର୍ଶ ପରେ ପୁନାର ମରହଟ୍ଟା ନାୟକ ପେଶ୍ୱା, ହାଇଦ୍ରାବାଦ୍‌ର ନିଜାମ ଓ ଇଂରେଜ କମ୍ପାନୀ ମଧରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା । ଏହି ଚୁକ୍ତି ଅନୁଯାୟୀ ଉଭୟ ପେଶ୍ୱା ଓ ନିଜାମ ମହୀଶୂରବିରୋଧୀ ଯୁଦ୍ଧରେ ପ୍ରତ୍ୟେକ ୨୫ ହଜାର ସୈନ୍ୟ ସହ ଇଂରେଜମାନଙ୍କୁ ସହାୟତା ଦେବା ପାଇଁ ଅଙ୍ଗୀକାର କଲେ । ଏହା ମଧ ସ୍ଥିର ହେଲା ଯେ ଯୁଦ୍ଧ ଶେଷରେ ମହୀଶୂର ଜବରଦଖଲ କରିଥିବା ସେମାନଙ୍କର ପୂର୍ବ ଇଲାକା ପେଶ୍ୱା ଓ ନିଜାମ ଫେରି ପାଇବେ ଏବଂ ମହୀଶୂରର ଅନ୍ୟ ଅଞ୍ଚଳଗୁଡ଼ିକ ଏହି ତିନି ଶକ୍ତି ମଧରେ ବଣ୍ଟନ କରାଯିବ । ଏହି କୌଶଳପୂର୍ଣ୍ଣ କୂଟନୈତିକ ପ୍ରସ୍ତୁତି ପରେ ଫେବୃଆରୀ ୧୭୯୧ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣର ଜେନେରାଲ୍ କର୍ଣ୍ଣୱାଲିସ୍‌ଙ୍କ ନେତୃତ୍ୱରେ ଇଂରେଜ ସୈନ୍ୟମାନେ ମହୀଶୂର ଉପରେ ଝାମ୍ପ ଦେଲେ ।

ଟିପୁ ସୁଲ୍ତାନ୍ ସେତେବେଳେ ପଣ୍ଡିଚେରୀରେ ଫରାସୀମାନଙ୍କ ସହ ନିରର୍ଥକ ଆଲୋଚନାରେ ବ୍ୟାପୃତ ଥାଆନ୍ତି । ଆକ୍ରମଣ ସମ୍ବାଦ ଥିଲା ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଓ ସେ ତୁରନ୍ତ ମହୀଶୂର ପ୍ରତ୍ୟାବର୍ତ୍ତନ କଲେ । କିନ୍ତୁ କ୍ଷିପ୍ର ଆକ୍ରମଣର ସୁବିଧା ଥିଲା ଇଂରେଜମାନଙ୍କ ପକ୍ଷରେ ଓ ସେମାନେ ସହଜରେ ବାଙ୍ଗାଲୋର ଦଖଲ କଲେ । ବାଙ୍ଗାଲୋରର ପତନ ଟିପୁ ସୁଲ୍ତାନ୍ଙ୍କ ସୁରକ୍ଷା, ସମ୍ମାନ ଓ ପ୍ରତିଷ୍ଠା ପ୍ରତି ଥିଲା ବିରାଟ ଧକ୍କା । ଐତିହାସିକମାନେ କହନ୍ତି, କର୍ଣ୍ଣୱାଲିସ୍ ଯଦି ତୁରନ୍ତ ରାଜଧାନୀ ଶ୍ରୀରଙ୍ଗପତ୍ତନମ୍ ଆକ୍ରମଣ କରିଥାନ୍ତେ, ତେବେ ସେହିଠାରେ ହିଁ ଟିପୁଙ୍କ ସୁନିଶ୍ଚିତ ପରାଜୟ ଓ ଯୁଦ୍ଧର ପରିସମାପ୍ତି ଘଟିଥାନ୍ତା । କିନ୍ତୁ ଶ୍ରୀରଙ୍ଗପତ୍ତନମ୍ ଅଭିଯାନରେ ଆଗେଇବା ପାଇଁ କର୍ଣ୍ଣୱାଲିସ୍ ସାହସ କଲେ ନାହିଁ । ଏକେତ ଖାଦ୍ୟାଭାବ, ପରନ୍ତୁ ଯୁଦ୍ଧ ସରଞ୍ଜାମ ବୋହିନେବା ପାଇଁ ବଳଦ ବା ଅନ୍ୟ ଯାନବାହନର ଅଭାବ ଓ ଘନଘୋର ବର୍ଷା ତାଙ୍କ ପାଇଁ ପ୍ରତିବନ୍ଧକ ସୃଷ୍ଟି କଲା । ତ୍ରିଶକ୍ତି ଚୁକ୍ତି ଅନୁଯାୟୀ ନିଜାମ ବିଳମ୍ବରେ ହେଲେ ମଧ ଦଶହଜାର ଅଶ୍ୱାରୋହୀ ସୈନ୍ୟ ପଠାଇଲେ, କିନ୍ତୁ ସେମାନେ ସଜ୍ଜିତ ଥିଲେ ଅତି ପୁରୁଣାକାଳିଆ ଅସ୍ତ୍ରଶସ୍ତ୍ର ଦ୍ୱାରା, ଯାହାକି ତତ୍କାଳୀନ ଯୁଦ୍ଧରେ ବ୍ୟବହାର ପାଇଁ ସମ୍ପୂର୍ଣ୍ଣ ଅନୁପଯୋଗୀ । କର୍ଣ୍ଣୱାଲିସ୍ ବାଧ ହୋଇ ବାଙ୍ଗାଲୋରରେ ଅପେକ୍ଷା କରି ରହିଲେ ।

ବର୍ଷାଦିନ ଗତ ହେବା ପରେ, ପରବର୍ଷ ୧୭୯୨ ମସିହା ଜାନୁଆରୀ ମାସରେ କର୍ଣ୍ଣୱାଲିସ୍ ପୁନର୍ବାର ବାଙ୍ଗାଲୋରଠାରୁ ଶ୍ରୀରଙ୍ଗପତ୍ତନମ୍ ଅଭିଯାନ ଆରମ୍ଭ କଲେ । କମ୍ପାନୀର ସୈନ୍ୟ ସଂଖ୍ୟା ଥିଲା ୨୨,୦୦୦ ଓ ସେଥିମଧ୍ୟରୁ ୬,୦୦୦ ସୈନ୍ୟ ଥିଲେ ୟୁରୋପୀଆନ୍ । ଏଥିସହ ଥିଲେ ନିଜାମଙ୍କ ପ୍ରେରିତ ଅଶ୍ୱାରୋହୀ ଓ ୧୨,୦୦୦ ମରହଟ୍ଟା ସୈନ୍ୟ । କିନ୍ତୁ ଆକ୍ରମଣ ଆରମ୍ଭ ସମୟରେ ମୁଖ୍ୟ ମରହଟ୍ଟା ବାହିନୀ ସମୟ ନିର୍ଘଣ୍ଟ ଅନୁଯାୟୀ ବାଙ୍ଗାଲୋର୍ରେ ପହଞ୍ଚି ପାରିନଥିଲେ । ସେମାନେ ଧନଶାଳୀ ବେଦ୍‌ନୁର୍ ଅଞ୍ଚଳ ଲୁଟ୍ କରିବାରେ ବ୍ୟସ୍ତ ଥିଲେ । କର୍ଣ୍ଣୱାଲିସ୍ ମରହଟ୍ଟାମାନଙ୍କ ପାଇଁ ଅଧିକ ଅପେକ୍ଷା ନ କରି ଶ୍ରୀରଙ୍ଗପତ୍ତନମ୍ ଅଭିମୁଖେ ଯାତ୍ରା କଲେ ।

ଟିପୁ ସୁଲ୍ତାନ୍ଙ୍କ ଅଧୀନସ୍ଥ ସୈନ୍ୟ ସଂଖ୍ୟା ଥିଲା ୫୦,୦୦୦ରୁ ଅଧିକ । ଏଥିପୂର୍ବରୁ ଟିପୁ କୋଇମ୍ବାଟୁର ସହର ଉପରେ ଆକ୍ରମଣ କରି ସେଠାରୁ ଇଂରେଜମାନଙ୍କୁ ବିତାଡ଼ିତ କରିଥିଲେ କିନ୍ତୁ ତା ଦ୍ୱାରା ଇଂରେଜମାନେ ବିଶେଷ କ୍ଷତିଗ୍ରସ୍ତ

ହୋଇନଥିଲେ । ଇଂରେଜମାନଙ୍କର ମାଲ ଓ ସରଞ୍ଜାମ ଦକ୍ଷିଣ-ପୂର୍ବ କର୍ଣ୍ଣାଟକ ଅଞ୍ଚଳରୁ ଆସୁଥିଲା । ଶ୍ରୀରଙ୍ଗପତ୍ତନମ୍‌ରେ ଟିପୁ ଏକ ସମୟରେ ଏକ ସ୍ଥାନରେ ସମସ୍ତ ଶକ୍ତି ପ୍ରୟୋଗ କରି ଇଂରେଜମାନଙ୍କର ମୁକାବିଲା କରିବାକୁ ଚାହୁଁନଥିଲେ । ମନ୍ଥର ଗତିରେ ଯୁଦ୍ଧ ଚଳାଇ ବର୍ଷାରମ୍ଭ ପର୍ଯ୍ୟନ୍ତ ସମୟ ଗଡ଼ାଇବାକୁ ଉଦ୍ୟମ କରୁଥିଲେ । କର୍ଣ୍ଣୱାଲିସ୍ ଜାଣିଥିଲେ ଯେ 'ଶୁଭସ୍ୟ ଶୀଘ୍ରଂ' ନଚେତ୍ ବର୍ଷା ଆଗମନ ହେଲେ ପରାଜୟ ସୁନିଶ୍ଚିତ । ତେଣୁ ସେ ଦିନେ ରାତିଅଧରେ ଶ୍ରୀରଙ୍ଗପତ୍ତନମ୍ ଉପରେ ଅପ୍ରତ୍ୟାଶିତ ଆକ୍ରମଣ କଲେ । ଟିପୁଙ୍କ ସୈନ୍ୟମାନଙ୍କ ମଧ୍ୟରୁ ଅନେକେ ଭୟରେ ଯୁଦ୍ଧ ଭୂମିରୁ ପଳାୟନ କଲେ । ବିଶେଷତଃ ଟିପୁଙ୍କର ଭଡ଼ାଟିଆ ୟୁରୋପୀୟ ସୈନ୍ୟମାନେ ବିଶ୍ୱାସଘାତକତାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଟିପୁ ବାଧ୍ୟହୋଇ ସନ୍ଧି ପାଇଁ ପ୍ରସ୍ତାବ ଦେଲେ । କୋଇମ୍ବାଟୁରରେ ବନ୍ଦୀ ହୋଇଥିବା କେତେକ ଇଂରେଜ କର୍ମଚାରୀଙ୍କୁ ସେ ସନ୍ଧି ସର୍ତ୍ତ ସହ କର୍ଣ୍ଣୱାଲିସ୍‌ଙ୍କ ନିକଟକୁ ପ୍ରେରଣ କଲେ । ଯଦିଓ ଏହି ମୁହୂର୍ତ୍ତରୁ ଯୁଦ୍ଧ ବନ୍ଦ ହୋଇନଥିଲା, କିନ୍ତୁ ଗୁରୁତ୍ୱପୂର୍ଣ୍ଣ ସଂଘର୍ଷ ଏହି ସମୟରୁ ଶିଥିଳ ହୋଇଗଲା । କର୍ଣ୍ଣୱାଲିସ୍ ଯେଉଁ ସର୍ତ୍ତ ଉପସ୍ଥାପିତ କଲେ, ଟିପୁ ସୁଲତାନ ତାହା ଗ୍ରହଣ କରିଥିଲେ । ଟିପୁଙ୍କୁ ତାଙ୍କର ରାଜ୍ୟର ଅର୍ଦ୍ଧେକ ଅଞ୍ଚଳ ଆକ୍ରମଣକାରୀମାନଙ୍କୁ ଅର୍ପଣ କରିବାକୁ ହେଲା । ଏତଦ୍‌ବ୍ୟତୀତ ଯୁଦ୍ଧ ବ୍ୟୟ ବାବଦକୁ ତିନି କୋଟି ତିରିଶ ଲକ୍ଷ ଟଙ୍କା କ୍ଷତିପୂରଣ ଦେବାକୁ ଟିପୁ ଅଙ୍ଗୀକାର କଲେ ଓ ନିଜର ଦୁଇଜଣ ଆଠ ଦଶ ବର୍ଷର ସାନ ପୁଅଙ୍କୁ ଇଂରେଜମାନଙ୍କ ନିକଟରେ ପଣବନ୍ଦୀ ରୂପେ ରଖିଲେ । ସୁସଭ୍ୟ ଇଂରେଜ ଶାସକ କ୍ଷତିପୂରଣ ଆଦାୟ ସୁନିଶ୍ଚିତ କରିବା ପାଇଁ ଏହି ଛୋଟ ପିଲାମାନଙ୍କୁ ପଣବନ୍ଦୀ ରଖିବା ପାଇଁ କୁଣ୍ଠିତ ହେଲେ ନାହିଁ । ଦୁଇବର୍ଷ ମଧ୍ୟରେ ଟିପୁ ସମସ୍ତ ଦେୟ ପରିଶୋଧ କରିବା ପରେ ଏହି ପିଲାମାନେ ମୁକ୍ତ ହେଲେ ।

ତୃତୀୟ ମହୀଶୂର ଯୁଦ୍ଧ ଶେଷ ହେବା ପରେ କର୍ଣ୍ଣୱାଲିସ୍ କଲିକତା ପ୍ରତ୍ୟାବର୍ତ୍ତନ କଲେ । ଗୋଟିଏ ବର୍ଷ କଲିକତାରେ ରହି, 'ଚିରସ୍ଥାୟୀ ବନ୍ଦୋବସ୍ତ' ସଂକ୍ରାନ୍ତୀୟ ସମସ୍ତ ବ୍ୟବସ୍ଥା ସମ୍ପୂର୍ଣ୍ଣ କରି ଅକ୍ଟୋବର ୧୭୯୩ ମସିହାରେ ସେ ଇଂଲଣ୍ଡ ଫେରିଲେ । କିନ୍ତୁ ଟିପୁ ସୁଲତାନଙ୍କର ସମ୍ପୂର୍ଣ୍ଣ ପରାଜୟ ଓ ମହୀଶୂର ଦଖଲ ପାଇଁ ଇଂରେଜମାନଙ୍କୁ ଆହୁରି ଛ' ବର୍ଷ ସମୟ ଲାଗିଥିଲା ।



# ଟିପୁ ସୁଲତାନଙ୍କ ପତନ

ତୃତୀୟ ମହୀଶୂର ଯୁଦ୍ଧର ଅପମାନଜନକ ପରିଣତି ଟିପୁ ସୁଲତାନଙ୍କୁ ଉତ୍‌କ୍ଷିପ୍ତ କରିଥିଲା । ସନ୍ତାନ ଦୁହିଁଙ୍କୁ ପଣବନ୍ଦୀରୁ ମୁକ୍ତ କରିବା ପରେ ପୁନର୍ବାର ସେ ଇଂରେଜ-ବିରୋଧୀ ଷଡ଼ଯନ୍ତ୍ରରେ ଲିପ୍ତ ହେଲେ । ଶ୍ରୀରଂଗପତ୍ତନମ୍ ଚୁକ୍ତିର ସୁଯୋଗ ନେଇ ଇଂରେଜମାନେ ବିଳିଗ୍ରାଲ ବଡ଼ମାହାଲ ସହ ମାଲାବାର ଉପକୂଳର ଏକ ବିସ୍ତୃତ ଅଞ୍ଚଳ ଓ କୁର୍ଗ ରାଜ୍ୟ ଦଖଲ କରିନେଲେ । ଏହା ଫଳରେ ପୂର୍ବ ଉପକୂଳର କର୍ଣ୍ଣାଟକ ଓ ପଶ୍ଚିମରେ ବମ୍ବେରୁ ମହୀଶୂର ପର୍ଯ୍ୟନ୍ତ ସମସ୍ତ ଗମନାଗମନ ପଥ କମ୍ପାନୀର ଦଖଲକୁ ଆସିଗଲା । କିନ୍ତୁ ଟିପୁ ହତୋତ୍ସାହ ନ ହୋଇ ଭବିଷ୍ୟତର ଯୁଦ୍ଧ ପାଇଁ ଦେଶକୁ ଅଧିକ ପ୍ରସ୍ତୁତ କରିବାକୁ ଅଗ୍ରସର ହେଲେ । ହିନ୍ଦୁ ରାଜାଙ୍କୁ ବିତାଡ଼ିତ କରି ମହୀଶୂରର ନବାବ ପଦ ଅଧିକାର କରିଥିବାରୁ ଟିପୁ ମୁସ୍‌ଲିମ୍ ସଭାସଦ୍‌ଙ୍କ ଉପରେ ଅଧିକ ନିର୍ଭରଶୀଳ ଥିଲେ । ଏପରିକି ଆଫଗାନିସ୍ଥାନର ଶାସକ ଜମାନ୍ ଶାହାଙ୍କଠାରୁ ସେ ସାହାଯ୍ୟପ୍ରାର୍ଥୀ ହୋଇଥିଲେ । ଆଫଗାନିସ୍ଥାନର ଶାସକଙ୍କୁ ସେ ବୁଝାଇ ଦେଇଥିଲେ ଯେ, ଭାରତକୁ ଜୟ କରିବା ତାଙ୍କ ପକ୍ଷରେ ଅତି ସହଜ ହେବ । ଅଯୋଧ୍ୟାର ପୂର୍ବତନ ନବାବଙ୍କୁ ମଧ୍ୟ କରଗତ କରିବା ପାଇଁ ଟିପୁ ଉଦ୍ୟମ କରିଥିଲେ ଓ ଅଯୋଧ୍ୟା ନବାବ ମଧ୍ୟ ଜମାନ୍ ଶାହାଙ୍କୁ ଅନୁରୂପ ପରାମର୍ଶ ଦେଇଥିଲେ । କିନ୍ତୁ ଆଫଗାନିସ୍ଥାନ ଶାସକ ପଞ୍ଜାବ ଆକ୍ରମଣ କରିବା ସମୟରେ ଶିଖ୍‌ମାନଙ୍କର ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ । ଏହି ସମୟରେ ନିଜ ଦେଶରେ ଜାଗି ଉଠୁଥିବା ବିଦ୍ରୋହର ସମ୍ବାଦ ପାଇ ସେ ପଞ୍ଜାବରୁ ପଳାୟନ କଲେ । ତାଙ୍କର ଭାରତ ଆକ୍ରମଣ ଯୋଜନା ଟିପୁଙ୍କର ସହାୟକ ହେଲା ନାହିଁ ।

ଇଂରେଜମାନଙ୍କ ବିରୁଦ୍ଧରେ ଫ୍ରାନ୍ସରୁ ସାହାଯ୍ୟ ସଂଗ୍ରହ କରିବା ପାଇଁ ଟିପୁ ଉଦ୍ୟମ ଆରମ୍ଭ କଲେ । ଫରାସୀ ଅଫିସର୍‌ମାନଙ୍କ ସହାୟତାରେ ଶ୍ରୀରଂଗପତ୍ତନମ୍‌ରେ ଗୋଟିଏ ଅସ୍ତ୍ରଶସ୍ତ୍ର ନିର୍ମାଣକାରୀ କାରଖାନା ପ୍ରତିଷ୍ଠା କରାଗଲା । କାରଖାନାର

ଉତ୍ପାଦନ କ୍ଷମତା ମାସକୁ ଗୋଟିଏ କମାଣ ଓ ପାଞ୍ଚ ଛ'ଟି ବନ୍ଧୁକ ନିର୍ମାଣରେ ଆବଦ୍ଧ ଥିଲା । ସେନାବାହିନୀର ଆବଶ୍ୟକତା ପୂରଣ କରିବାକୁ ଏହା ଥିଲା ସମ୍ପୂର୍ଣ୍ଣ ଅକ୍ଷମ । ୧୭୯୩ ଖ୍ରୀଷ୍ଟାବ୍ଦରେ ସେ ପୁନର୍ବାର ଫ୍ରାନ୍ସକୁ ଦୂତ ପ୍ରେରଣ କଲେ । କିନ୍ତୁ ଫ୍ରାନ୍ସରେ ଏମାନଙ୍କର କାର୍ଯ୍ୟକଳାପ ବିଷୟରେ କୌଣସି ସମ୍ବାଦ ମିଳିଲା ନାହିଁ । ୧୭୯୫-୯୬ ମସିହାରେ ଫ୍ରାନ୍ସ ସହିତ ଏକ ଗୋପନ ଚୁକ୍ତି କରିବା ପାଇଁ ସେ ପ୍ରୟାସ କଲେ । ଫରାସୀ ବିପ୍ଳବର ଗୁରୁତ୍ୱ ଓ ପରିସୀମା ସମ୍ପର୍କରେ ତାଙ୍କର କୌଣସି ଧ୍ୟାନଧାରଣା ନଥିଲା । ତତ୍‌କାଳୀନ ବିଶ୍ୱ ପରିସ୍ଥିତି ବିଷୟରେ ଟିପୁ ଅବଗତ ନଥିଲେ । ସେ ପୁନର୍ବାର ମରିସସ୍‌କୁ ଦୂତ ପଠାଇ ସେଠାରୁ ଫରାସୀ ସୈନ୍ୟ ସଂଗ୍ରହ କରିବା ପାଇଁ ଉଦ୍ୟମ କଲେ । ମାତ୍ର ଫରାସୀ ବିପ୍ଳବ ଫଳରେ ସେତେବେଳକୁ ଫ୍ରାନ୍ସରେ ବହୁ ମୌଳିକ ପରିବର୍ତ୍ତନ ଘଟିଥିଲା । ମରିସସ୍ ଗଭର୍ଣ୍ଣରଙ୍କ ଆପ୍ରାଣ ଚେଷ୍ଟା ସତ୍ତ୍ୱେ, ମାତ୍ର ଶହେଜଣ ଫରାସୀ ସ୍ୱେଚ୍ଛାସେବକ ମହୀଶୂର ଆସିଥିଲେ ।

ଟିପୁ ସୁଲତାନଙ୍କ ଉପରୋକ୍ତ କାର୍ଯ୍ୟକଳାପ ଇଂରେଜମାନଙ୍କୁ ଅଜ୍ଞାତ ନଥିଲା । ଫରାସୀମାନଙ୍କ ସହ ଟିପୁଙ୍କର ଷଡ଼ଯନ୍ତ୍ର ଇଂରେଜମାନଙ୍କୁ ଉତ୍‌କ୍ଷିପ୍ତ କଲା ଏବଂ ଟିପୁଙ୍କୁ ନିଶ୍ଚିହ୍ନ କରିବା ପାଇଁ ସେମାନେ ବଦ୍ଧପରିକର ହେଲେ । ମାତ୍ର କର୍ଣ୍ଣୱାଲିସ୍‌ଙ୍କ ପରେ ଭାରତର ଅସ୍ଥାୟୀ ଗଭର୍ଣ୍ଣର ଜେନେରାଲ୍ ସାର୍ ଜନ୍ ଶୋର୍ ଥିଲେ ଜଣେ ଶାନ୍ତିପ୍ରିୟ ପ୍ରଶାସନିକ କର୍ମଚାରୀ ଓ ତାଙ୍କର ସାମରିକ ଅଭିଜ୍ଞତା ନଥିଲା । ତାଙ୍କର କାର୍ଯ୍ୟକାଳର ଅଧିକାଂଶ ସମୟ କମ୍ପାନୀର ୟୁରୋପୀୟ ସୈନ୍ୟମାନଙ୍କର ଅସନ୍ତୋଷ ଓ ବିଦ୍ରୋହ ଦମନ କରିବାରେ ଅତିବାହିତ ହୋଇଥିଲା । ତାଙ୍କର ବିଚାରବୋଧ ଥିଲା ଉନ୍ନତମାନର । ଅଯଥା ଯୁଦ୍ଧରେ ଲିପ୍ତ ନହୋଇ, ଶୃଙ୍ଖଳିତ ଶାସନ ପରିଚାଳନା କରିବା ପାଇଁ ସେ ସତତ ଉଦ୍ୟମ କରୁଥିଲେ । ଇଂରେଜ କମ୍ପାନୀର କପାଳ ଭଲ । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ଉତ୍ତର ଓ ଦକ୍ଷିଣ ଭାରତରେ ଇଂରେଜମାନଙ୍କର ସ୍ଥିତି ସୁଦୃଢ଼ ଥିଲା । ଉତ୍ତର ଭାରତର ସବୁଠାରୁ ଶକ୍ତିଶାଳୀ ରାଜ୍ୟ ଥିଲା ଆଉଧ ବା ଅଯୋଧ୍ୟା । ତା'ର ନବାବ ଆସଫ୍‌ଉଦ୍ଦୌଲାଙ୍କୁ ସେତେବେଳକୁ ପ୍ରାୟ ପଚାଶ ବର୍ଷ ବୟସ । ସେ ଥିଲେ ଜଣେ ମଉଜ ମଜଲିସ୍‌ପ୍ରିୟ ଅଫିମଖୋର୍ । ସାମରିକ ଦୃଷ୍ଟିରୁ ଅତ୍ୟନ୍ତ ଦୁର୍ବଳ ଓ ଇଂରେଜମାନଙ୍କ ଉପରେ ନିର୍ଭରଶୀଳ । ସାର୍ ଜନ୍ ଶୋର୍ ଅଯୋଧ୍ୟା ପରିଭ୍ରମଣ ଶେଷ କରି, କଲିକତା ଫେରିବା ପରେ ସମ୍ବାଦ ଆସିଲା ଯେ ନବାବଙ୍କର ମୃତ୍ୟୁ ହୋଇଛି । ଗାଦି ପରିବର୍ତ୍ତନ ସଂକ୍ରାନ୍ତୀୟ ବିବାଦର ସମାଧାନ ପାଇଁ ସାର୍ ଜନ୍‌ଙ୍କୁ

ପୁଣିଥରେ ଲକ୍ଷ୍ନୌ ଫେରିବାକୁ ପଡ଼ିଲା । ନବାବଙ୍କ ପୁତ୍ର ୱାଜିର ଅଲ୍ଲୀଙ୍କୁ ନବାବ ପଦରେ ପ୍ରତିଷ୍ଠିତ କରିବା ପାଇଁ ସାର୍ ଜନ୍ ସ୍ୱୀକୃତି ଦେଲେ । କିନ୍ତୁ ପରେ ଆସଫ୍‌ଉଦ୍ଦୌଲାଙ୍କ ମା'ଙ୍କ ଠାରୁ ସମ୍ବାଦ ମିଳିଲା ଯେ ୱାଜିର୍ ଅଲ୍ଲୀ ନବାବଙ୍କର ପୁତ୍ର ନୁହନ୍ତି । ସେ ଜଣେ ଦୁର୍ଦ୍ଧର୍ଷ ଇଂରେଜ-ବିରୋଧୀ ଜାରଜ ସନ୍ତାନ । ଲକ୍ଷ୍ନୌର ବିଶିଷ୍ଟ ନାଗରିକମାନଙ୍କ ପରାମର୍ଶ କ୍ରମେ ସେ ପୂର୍ବତନ ନବାବଙ୍କର ସାନଭାଇ ସାଜତ୍ ଅଲ୍ଲୀଙ୍କୁ ଅଯୋଧ୍ୟାରେ ଉପସ୍ଥାପିତ କଲେ ଓ ୱାଜିର ଅଲ୍ଲୀଙ୍କୁ ପେନ୍‌ସନ୍ ଦେଇ ବନାରସରେ ବସବାସ କରିବା ପାଇଁ ପ୍ରଭାବିତ କଲେ । ବିନା ରକ୍ତପାତରେ ଅଯୋଧ୍ୟା ସମସ୍ୟାର ସମାଧାନ କରିବା ହେତୁ କମ୍ପାନୀର ଡାଇରେକ୍ଟରମାନଙ୍କ ମଧ୍ୟରେ ଜନ୍ ଶୋର୍‌ଙ୍କ ଖ୍ୟାତି ବଢ଼ିଲା ।

ସାର୍ ଜନ୍‌ଙ୍କ କାର୍ଯ୍ୟକାଳ ଭିତରେ ଆଉ ଦୁଇଜଣ ପ୍ରଖ୍ୟାତ ଭାରତୀୟ ଶାସକଙ୍କର ମୃତ୍ୟୁ ଘଟିଲା । ପ୍ରଥମେ ଗଲେ ଗୁଆଲିଅରର ମହାଦାଜି ସିନ୍ଧିଆ । ୧୭୯୫ ମସିହାରେ ଦୀର୍ଘ ପଇଁଚାଳିଶ ବର୍ଷରୁ ଅଧିକ କାଳ ରାଜୁତି କରିଥିବା କର୍ଣ୍ଣାଟକର ନବାବ ମହମ୍ମଦ ଅଲ୍ଲୀଙ୍କର ଦେହାନ୍ତ ହେଲା । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଇଂରେଜମାନଙ୍କର ସ୍ତାବକ ଥିଲେ ଓ ଇଷ୍ଟ ଇଣ୍ଡିଆ କମ୍ପାନୀର ମାଡ୍ରାସ ଅଫିସର ଆର୍ଥିକ ସାହାଯ୍ୟ ଓ ସାମରିକ ସହାୟତାରେ ଶାସନ ଚଳାଇଥିଲେ । କିନ୍ତୁ ସେ ଥିଲେ ନିର୍ମମ ଅତ୍ୟାଚାରୀ ଓ ପ୍ରଜାପୀଡ଼କ । ତାଙ୍କର ମୃତ୍ୟୁ ପରେ, ଭାରତର ଗଭର୍ଣ୍ଣର ଜେନେରାଲ୍ ପଦ ପାଇଁ ଆଶାୟୀ ମାଡ୍ରାସର ତତ୍‌କାଳୀନ ଗଭର୍ଣ୍ଣର ଲର୍ଡ଼ ହୋବାର୍ଟ ମହମ୍ମଦ ଅଲ୍ଲୀଙ୍କ ଉତ୍ତରାଧିକାରୀଙ୍କୁ କ୍ଷମତାରୁ ଉଚ୍ଛେଦ କରିବାକୁ ଚାହୁଁଥିଲେ । କିନ୍ତୁ ସାର୍ ଜନ୍ ବିଚାରୁଥିଲେ, ଏପରି କଲେ ଯୁଦ୍ଧ ଅନିବାର୍ଯ୍ୟ । ଏହି ବିବାଦ ହେତୁ କର୍ଣ୍ଣାଟକରେ କୌଣସି ବିଧିବଦ୍ଧ ପଦକ୍ଷେପ ନିଆଯାଇ ପାରିଲା ନାହିଁ । ଏପରିକି ମହମ୍ମଦ ଅଲ୍ଲୀଙ୍କ ଜୀବଦ୍ଦଶାରେ ଯେଉଁ କେତୋଟି ଅଞ୍ଚଳର ରାଜସ୍ୱ ଆଦାୟ କ୍ଷମତା ସେ କମ୍ପାନୀକୁ ପ୍ରତ୍ୟର୍ପଣ କରିବାକୁ ରାଜି ହୋଇଥିଲେ, ତାହା ମଧ୍ୟ କାର୍ଯ୍ୟକାରୀ ହୋଇପାରିଲା ନାହିଁ । କମ୍ପାନୀ ଡିରେକ୍ଟରମାନଙ୍କ ନିଷ୍ପତ୍ତି କ୍ରମେ ଲର୍ଡ଼ ହୋବାର୍ଟ ଭାରତରୁ ବିଦାୟ ନେଲେ ।

ବ୍ରିଟିଶ୍ ସରକାର ଇଷ୍ଟ ଇଣ୍ଡିଆ କମ୍ପାନୀର କୌଣସି ଅଫିସରଙ୍କୁ ଭାରତର ଗଭର୍ଣ୍ଣର ଜେନେରାଲ୍ ପଦରେ ନିଯୁକ୍ତ କରିବାକୁ ଚାହୁଁନଥିଲେ । ପ୍ରଧାନମନ୍ତ୍ରୀ ପିଟ୍ ଓ

ବୋର୍ଡ଼ ଅଫ୍ କଣ୍ଟ୍ରୋଲର ସଭାପତି ଦୁଣ୍ଡାସ ନିଷ୍ପତ୍ତି ନେଲେ ଯେ ଜନ୍ ଶୋର୍‌ଙ୍କ ବଦଳରେ ତୁରନ୍ତ ଜଣେ ଉଚ୍ଚଶିକ୍ଷିତ ସଂଭ୍ରାନ୍ତବଂଶୀୟ ବ୍ୟକ୍ତିଙ୍କୁ ଏହି ପଦରେ ନିଯୁକ୍ତି ଦେବାକୁ ହେବ । ସେମାନଙ୍କର ଶୁଭଦୃଷ୍ଟିରେ ଥିଲେ ଅର୍ଲ ଅଫ୍ ମର୍ଣ୍ଣିଟନ୍-ରିଚାର୍ଡ଼ ଓ୍ୱେଲେସ୍ଲି । ୧୭୯୮ ମସିହାରେ ସାର୍ ଜନ୍ ଶୋର୍‌ଙ୍କ ସ୍ଥାନରେ ରିଚାର୍ଡ଼ ଓ୍ୱେଲେସ୍ଲି ଭାରତର ଗଭର୍ଣ୍ଣର ଜେନେରାଲ୍ ନିଯୁକ୍ତ ହେଲେ ।

ରିଚାର୍ଡ଼ ଓ୍ୱେଲେସ୍ଲି ଥିଲେ ଇଟନ୍ ସ୍କୁଲର ଜଣେ ବିଚକ୍ଷଣ ମେଧାବୀ ଛାତ୍ର । ମାତ୍ର ଚବିଶ ବର୍ଷ ବୟସରେ ସେ ପାର୍ଲିଆମେଣ୍ଟକୁ ନିର୍ବାଚିତ ହୋଇଥିଲେ । କିଛିଦିନ ପରେ ତାଙ୍କୁ ଲର୍ଡ଼ ଅଫ୍ ଦି ଟ୍ରେଜେରି ପଦରେ ଅଭିଷିକ୍ତ କରାଗଲା । ୧୭୯୩ ମସିହାରେ ସେ ବୋର୍ଡ଼ ଅଫ୍ କଣ୍ଟ୍ରୋଲର ସଭ୍ୟ ନିଯୁକ୍ତ ହୋଇ ପିଟ୍ ଓ ଦୁଣ୍ଡାସଙ୍କର ନିକଟତମ ହେଲେ । ୧୭୯୮ ମସିହାରେ ତାଙ୍କୁ ଭାରତର ଗଭର୍ଣ୍ଣର ଜେନେରାଲ୍ ନିଯୁକ୍ତ କରାଗଲା । ନୂତନ ଗଭର୍ଣ୍ଣର ଜେନେରାଲ୍ ଭାରତରେ ବ୍ରିଟିଶ ସାମ୍ରାଜ୍ୟ ପ୍ରତିଷ୍ଠାର ସ୍ୱପ୍ନ ସାର୍ଥକ କରିଥିଲେ । ଓ୍ୱେଲେସ୍ଲି ସମ୍ଭ୍ରାନ୍ତ ପରିବାରର ସନ୍ତାନ ଥିଲେ ଓ ତାଙ୍କର ଚିନ୍ତାଚେତନା କାର୍ଯ୍ୟକଳାପରେ ସାମ୍ରାଜ୍ୟବାଦୀ ଶୋଷକର ଉଷ୍ଣ ରକ୍ତ ପ୍ରବାହିତ ହେଉଥିଲା । କ୍ଲାଇଭ୍ ଓ ହେଷ୍ଟିଂସ୍ ଆରମ୍ଭ କରିଥିବା କାର୍ଯ୍ୟକୁ ସୁଦୃଢ଼ ଓ ସୁପ୍ରତିଷ୍ଠିତ କରିବା ପାଇଁ ଯାହା ଆବଶ୍ୟକ, ତାହା କରିବାକୁ ସେ କୁଣ୍ଠିତ ନଥିଲେ । ତାଙ୍କର ସହକର୍ମୀମାନେ ଥିଲେ ତଦନୁରୂପ କର୍ମତତ୍ପର ବ୍ୟକ୍ତି । ବଙ୍ଗଳାର ପୂର୍ବତନ ଗଭର୍ଣ୍ଣର ରବର୍ଟ କ୍ଲାଇଭ୍‌ଙ୍କର ପୁତ୍ର ଲର୍ଡ଼ କ୍ଲାଇଭ୍ ସେତେବେଳେ ମାଡ୍ରାସର ଗଭର୍ଣ୍ଣର ଏବଂ ଓ୍ୱେଲେସ୍ଲିଙ୍କର ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କରିବାକୁ ସେ ଆଗ୍ରହୀ ଥିଲେ । ଓ୍ୱେଲେସ୍ଲିଙ୍କର ଜଣେ ଭାଇ ଆର୍ଥର ବଙ୍ଗଳାରେ ସାମରିକ ଦକ୍ଷତା ପ୍ରଦର୍ଶନ ଲାଗି ପ୍ରସିଦ୍ଧି ଅର୍ଜନ କରିଥିଲେ । ମହୀଶୂର ଯୁଦ୍ଧରେ ମାଡ୍ରାସ ସୈନ୍ୟବାହିନୀର ନେତୃତ୍ୱ ନେବା ଲାଗି ତାଙ୍କୁ ମାଡ୍ରାସ ପଠାଇ ଦିଆଗଲା । ଆଉ ଜଣେ ଭାଇ ହେନ୍‌ରୀ ଓ୍ୱେଲେସ୍ଲି ଗଭର୍ଣ୍ଣର ଜେନେରାଲଙ୍କ ସହିତ ତାଙ୍କର ଘରୋଇ ସଚିବ ଭାବେ ଲଣ୍ଡନରୁ କଲିକତା ଆସିଥିଲେ ଓ ବିଭିନ୍ନ ସମୟରେ ସୁପରାମର୍ଶ ଦେବାରେ ଖ୍ୟାତି ଅର୍ଜନ କରିଥିଲେ । ଇଷ୍ଟ ଇଣ୍ଡିଆ କମ୍ପାନୀର ମାଡ୍ରାସ ଅଫିସ୍‌ର ବହୁ କର୍ମଚାରୀ ତାଙ୍କ ସହିତ ପୂର୍ଣ୍ଣ ସହଯୋଗ କରିବାକୁ ଆଗେଇ ଆସିଥିଲେ । ଏଥିପୂର୍ବରୁ ଏପରି ସୁଦକ୍ଷ କର୍ମଚାରୀଙ୍କର ବଳିଷ୍ଠ ସହଯୋଗ ଅନ୍ୟ କୌଣସି ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ମିଳି ନଥିଲା ।

ୱେଲେସ୍ଲି ଭାରତରେ ପହଞ୍ଚିବା ପରେ ମରିସସ୍‌ର ଫ୍ରେଞ୍ଚ୍ ଗଭର୍ଣ୍ଣରଙ୍କୁ ଟିପୁ ସୁଲ୍‌ତାନ୍ ଲେଖିଥିବା ଚିଠିର ନକଲ ପ୍ରାପ୍ତ ହେଲେ । ସେହି ସମୟରେ ୟୁରୋପରେ ବ୍ରିଟେନ୍ ଓ ଫ୍ରାନ୍ସ ମଧ୍ୟରେ ତୁମୁଳ ଯୁଦ୍ଧ ଆରମ୍ଭ ହୋଇଯାଇଥାଏ । ପୁଣି ସମ୍ବାଦ ଆସୁଥାଏ ଯେ ନେପୋଲିଅନ୍ ବୋନାପାର୍ଟ ଭାରତ ଅଭିମୁଖରେ ଯାତ୍ରା ଆରମ୍ଭ କରି ମିଶରରେ ଅବତରଣ କରିଅଛନ୍ତି । ବ୍ୟକ୍ତିଗତ ଭାବରେ ୱେଲେସ୍ଲି ଥିଲେ ଅତ୍ୟନ୍ତ ଫରାସୀ-ବିରୋଧୀ । ଟିପୁ ସୁଲ୍‌ତାନ୍‌ଙ୍କ ଚିଠିର ନକଲ ପଢ଼ି ସେ ଉତ୍‌କ୍ଷିପ୍ତ ହେଲେ ଓ ତାଙ୍କ ଦୃଷ୍ଟିରେ ମହୀଶୂର-ବିରୋଧୀ ଯୁଦ୍ଧର ପରିକଳ୍ପନା ତୁରନ୍ତ ଆରମ୍ଭ ହୋଇଗଲା । ହାଇଦ୍ରାବାଦ୍‌ରେ ଅବସ୍ଥାପିତ ଫରାସୀ ବାହିନୀକୁ ନିଷ୍ଚିହ୍ନ କରିବା ପାଇଁ ସେ ଉଦ୍ୟମ ଆରମ୍ଭ କଲେ । ହାଇଦ୍ରାବାଦ୍‌ର ଶାସକ ଶ୍ରେଣୀରେ ଗୋଟିଏ ଶକ୍ତିଶାଳୀ ଫ୍ରାନ୍ସ ସପକ୍ଷବାଦୀ ଓ ବ୍ରିଟିଶ ବିରୋଧୀ ଗୋଷ୍ଠୀ କାର୍ଯ୍ୟ କରୁଥିଲେ । କିନ୍ତୁ ବୃଦ୍ଧ ନିଜାମ୍ ଅନୁଭବ କରୁଥିଲେ ଯେ ଉଦ୍ଧତ ଫରାସୀ ସେନାପତିମାନଙ୍କର ସାହଚର୍ଯ୍ୟ ନନେଇ ବରଂ ଇଂରେଜ କମ୍ପାନୀର ସହାୟତା ନେଲେ ଟିପୁ ସୁଲତାନ ଓ ମରହଟ୍ଟାମାନଙ୍କ ଆକ୍ରମଣରୁ ନିସ୍ତାର ମିଳିବ । ନିଜାମଙ୍କ ପ୍ରଧାନମନ୍ତ୍ରୀ ମୀର ଆଲାମ୍ ମଧ୍ୟ ତାଙ୍କ ସହିତ ସହମତ ଥିଲେ । ୱେଲେସ୍ଲି ପରିସ୍ଥିତିର ପୂର୍ଣ୍ଣ ସୁବିଧା ନେଇଥିଲେ । ଗୋଟିଏ ଡିଭିଜନ୍ କମ୍ପାନୀ ସୈନିକଙ୍କ ସହାୟତାର ପ୍ରତିଶ୍ରୁତି ବଦଳରେ ନିଜାମ ଫରାସୀ ବାହିନୀକୁ ବରଖାସ୍ତ କଲେ । ଦକ୍ଷିଣରେ ଗୁଣ୍ଟୁର ନିକଟରେ ଅବସ୍ଥାପିତ ଇଂରେଜ ସେନାବାହିନୀ ତୁରନ୍ତ ହାଇଦ୍ରାବାଦରେ ପହଞ୍ଚିଲେ । ଫରାସୀ ସୈନ୍ୟଙ୍କୁ କୌଣସି ଦୃଢ଼ ପଦକ୍ଷେପ ନେବା ପାଇଁ ଅବସର ମିଳିଲା ନାହିଁ । ବିନା ରକ୍ତପାତରେ ହାଇଦ୍ରାବାଦ୍‌ରୁ ଫରାସୀମାନଙ୍କର ବିଦାୟ ଇଂରେଜମାନଙ୍କର ହାତମୁଠା ଟାଣ କଲା । ଟିପୁ ସୁଲତାନ ବିରୋଧୀ ଯୁଦ୍ଧରେ ନିଜାମ ଇଂରେଜମାନଙ୍କୁ ସହାୟତା ଦେବାକୁ ଶପଥ କଲେ ।

ଏହାପରେ ଆରମ୍ଭ ହେଲା ମହୀଶୂର-ବିରୋଧୀ ଅଭିଯାନ । ସେନାପତି ହାରିସ୍ ଚାରିହଜାର ୟୁରୋପୀୟ ସୈନ୍ୟଙ୍କ ସମେତ କୋଡ଼ିଏ ହଜାର ସେନା ଦଳର ନେତୃତ୍ୱ ନେଇ ଭେଲୋର୍‌ରୁ ଫେବୃଆରୀ ୧୧ ତାରିଖରେ ଶ୍ରୀରଙ୍ଗପତ୍ତନମ୍ ଅଭିମୁଖେ ସୈନ୍ୟଚାଳନା ଆରମ୍ଭ କଲେ । ଛ' ଦିନ ପରେ ଦଶହଜାର ଘୋଡ଼-ସବାର ସହିତ ମୋଟ କୋଡ଼ିଏ ହଜାର ହାଇଦ୍ରାବାଦୀ ସୈନ୍ୟ ଆର୍ଥର ୱେଲେସ୍ଲିଙ୍କ ନେତୃତ୍ୱରେ ଭେଲୋର ବାହିନୀ ସହ ମିଳିତ ହେଲେ । ହାଇଦ୍ରାବାଦର ଘୋଡ଼- ସବାରମାନେ ଥିଲେ ପୂର୍ବାପେକ୍ଷା ଅଧିକ ଉନ୍ନତ ଓ ସୁଶିକ୍ଷିତ । ଏହି ସଂଖ୍ୟାବହୁଳ ସମାବେଶକୁ

ଦେଖି ଟିପୁ ଶଙ୍କିତ ହେଲେ । ସେ ଚିନ୍ତା କଲେ, ଯଦି ମେ ମାସ ପର୍ଯ୍ୟନ୍ତ ଆକ୍ରମଣକୁ ଅଟକାଇ ଦିଆଯାଇପାରେ, ତାହାହେଲେ ବର୍ଷା ଋତୁରେ ସଂଘର୍ଷ ବନ୍ଦ ରହିବ ଏବଂ ଏ ମଧ୍ୟରେ ସେ ନିଜର ସୈନ୍ୟବାହିନୀକୁ ଅଧିକ ଶକ୍ତିଶାଳୀ କରିପାରିବେ । ଶ୍ରୀରଙ୍ଗପତ୍ତନମ୍ ଯୁଦ୍ଧର ପ୍ରଥମ ଅବସ୍ଥାରେ ଟିପୁ ସୁଲତାନ ସନ୍ଧି ଆଲୋଚନା ପାଇଁ ହାରିସଙ୍କୁ ପତ୍ର ଲେଖିଲେ । ହାରିସ୍ ଜାଣିଥିଲେ ଯେ ଆକ୍ରମଣରେ ବିଳମ୍ବ ଇଂରେଜମାନଙ୍କ ପାଇଁ ମାରାତ୍ମକ ହେବ । ତେଣୁ ସେ ଚତୁରତାର ସହ ପ୍ରତ୍ୟୁତ୍ତରରେ ଏପରି କେତେଗୁଡ଼ିଏ ଦାବି ରଖିଲେ, ଯାହାକୁ ଗ୍ରହଣ କରିବା ଟିପୁଙ୍କ ପକ୍ଷରେ ଅସମ୍ଭବ ହୁଅନ୍ତା ।

ଶ୍ରୀରଙ୍ଗପତ୍ତନମ୍ ଦୁର୍ଗ ପ୍ରାଚୀର ଉପରେ ଇଂରେଜଙ୍କର କମାଣ ଆକ୍ରମଣ ଚାଲୁ ରହିଲା । ମଇ ଚାରି ତାରିଖରେ ସେନାପତି ହାରିସ୍ ଶ୍ରୀରଙ୍ଗପତ୍ତନମ୍‌ର ପ୍ରାଚୀରର ଗୋଟିଏ ଅଂଶ ଭାଙ୍ଗି ସହର ଭିତରକୁ ପ୍ରବେଶ କଲେ । ଟିପୁ ଅବଶ୍ୟ ପ୍ରବଳ ପ୍ରତିଆକ୍ରମଣ କରିଥିଲେ । ମାତ୍ର କେତେ ଘଣ୍ଟା ମଧ୍ୟରେ ସହରଟି ଇଂରେଜମାନଙ୍କର ହସ୍ତଗତ ହେଲା ଓ ଟିପୁଙ୍କର ସେନାପତି ଓ ପୁତ୍ରମାନେ ଆତ୍ମସମର୍ପଣ କଲେ । କିନ୍ତୁ ଟିପୁ ସୁଲତାନ କେଉଁଠି ? ତାଙ୍କର ଶବକୁ ସ୍ୱଚକ୍ଷୁରେ ନ ଦେଖିବା ପର୍ଯ୍ୟନ୍ତ ଇଂରେଜ ସାମରିକ କର୍ତ୍ତାମାନେ ଉଦ୍‌ବିଗ୍ନ ହୋଇଉଠିଲେ । ଯାହାହେଉ ସୂର୍ଯ୍ୟାସ୍ତ ପୂର୍ବରୁ ଗୋଟିଏ ମୃତ ଓ ଆହତ ସୈନିକ ଗଦାରୁ ଟିପୁଙ୍କର ଶବକୁ ଉଦ୍ଧାର କରାଗଲା । ଇଂରେଜମାନେ ଆଶ୍ୱସ୍ତ ହେଲେ ଯେ, ସେମାନଙ୍କର ପୁରାତନ ଶତ୍ରୁ ହାଇଦର ଅଲ୍ଲୀଙ୍କ ପୁତ୍ର ଟିପୁ ସୁଲତାନ ଯୁଦ୍ଧଭୂମିରେ ନିହତ ହୋଇଛନ୍ତି ।

ମହୀଶୂର ଯୁଦ୍ଧରେ ବିଜୟ ପରେ ପରଦିନ ସକାଳୁ ଆରମ୍ଭ ହେଲା କମ୍ପାନୀ ସୈନିକମାନଙ୍କର ଶ୍ରୀରଙ୍ଗପତ୍ତନମ୍‌ର ଲୁଣ୍ଠନ । ଦୁଇ ତିନିଦିନ ଧରି ସୈନ୍ୟମାନେ ଘର ଘର ପଶି ସହରବାସୀଙ୍କ ଧନସମ୍ପତ୍ତି ଲୁଟି ନେଲେ । କେବଳ ନବାବଙ୍କ ଗନ୍ତାଘରୁ ଅନ୍ୟୂନ କୋଡ଼ିଏ ଲକ୍ଷ ପାଉଣ୍ଡ ମୂଲ୍ୟର ସୁନା ଗହଣା ଓ ଧନରତ୍ନ ଆଦି ଲୁଟ୍ କରାହେଲା । ବରିଷ୍ଠ ସାମରିକ କର୍ମଚାରୀମାନେ ଏ ସମ୍ପଦ ନିଜ ନିଜ ମଧ୍ୟରେ ବାଣ୍ଟିନେଲେ । ମୁଖ୍ୟ ସେନାପତି ଜେନେରାଲ୍ ହାରିସ୍ ଲୁଟ୍ ଧନର ସର୍ବାଧିକ ଭାଗ ଏକଲକ୍ଷ ତେୟାଳିଶ୍ ହଜାର ପାଉଣ୍ଡ ଓ ଅନ୍ୟ ସାମରିକ କର୍ମଚାରୀମାନେ ନିଜର ପଦ ପଦବୀ ଅନୁଯାୟୀ ବାକିତକ ଆତ୍ମସାତ୍ କଲେ । ଆର୍ଥର ଓ୍ୱେଲେସ୍ଲିଙ୍କ ଭାଗରେ

ପଡ଼ିଥିଲା ଦଶହଜାର ପାଉଣ୍ଡ । ଗଭର୍ଣ୍ଣର ଜେନେରାଲ୍‌ଙ୍କ ପାଇଁ ଏକ ଲକ୍ଷ ପାଉଣ୍ଡର ପାରିତୋଷିକ ରଖାଯାଇଥିଲା; କିନ୍ତୁ ସେ ତାହା ଗ୍ରହଣ କରିନଥିଲେ ।

ହାଇଦ୍ରାବାଦ ଓ ମହୀଶୂର ଯୁଦ୍ଧରେ ସଫଳତା ପାଇଁ ୱେଲେସ୍ଲି ଆଶା କରୁଥିଲେ ଯେ ବ୍ରିଟିଶ୍ ସରକାର ତାଙ୍କୁ ଯଥାବିଧି ସମ୍ମାନିତ କରିବେ । କିନ୍ତୁ ତାଙ୍କର ଉଦ୍ଧତ ମନୋଭାବ ଓ ଯୁଦ୍ଧଖୋର ନୀତି ସରକାରଙ୍କ ଦ୍ୱାରା ଗ୍ରହଣୀୟ ନଥିଲା । ପାର୍ଲିଆମେଣ୍ଟ ଏଥିପୂର୍ବରୁ ନିଷ୍ପତ୍ତି ନେଇଥିଲେ ଯେ କେବଳ ଆତ୍ମରକ୍ଷା ଓ ତତ୍‌ସଂକ୍ରାନ୍ତୀୟ ପରିସ୍ଥିତି ସୃଷ୍ଟି ନ ହେଲେ ଇଂରେଜମାନେ ଭାରତୀୟ ଶାସକ ଶ୍ରେଣୀ ଉପରେ ଆକ୍ରମଣ କରି ଅଯଥା ଶତ୍ରୁ ସୃଷ୍ଟି କରିବେ ନାହିଁ । କିନ୍ତୁ ମହୀଶୂର ଯୁଦ୍ଧ ଥିଲା ତା'ର ସମ୍ପୂର୍ଣ୍ଣ ବିପରୀତ ସଂସ୍କରଣ । ଫରାସୀମାନଙ୍କ ସହ ଗୁପ୍ତ ଚୁକ୍ତି କରି ଇଂରେଜମାନଙ୍କୁ ନିର୍ମୂଳ କରିବା ଲାଗି ଟିପୁ ଯେ ଷଡ଼ଯନ୍ତ୍ର କରୁଥିଲେ– ଏହା ଏକ ଭିତ୍ତିହୀନ ଅଭିଯୋଗ ନ ହେଲେ ମଧ ଚତୁର୍ଥ ମହୀଶୂର ଯୁଦ୍ଧର ପାଞ୍ଚବର୍ଷ ପୂର୍ବରୁ ଫରାସୀମାନଙ୍କ ସହ ଚୁକ୍ତିବଦ୍ଧ ହେବା ପାଇଁ ତାଙ୍କର ସମସ୍ତ ପ୍ରଚେଷ୍ଟା ନିଷ୍ଫଳ ହୋଇଥିଲା । ଏପରିକି କମ୍ପାନୀ ସୈନ୍ୟବାହିନୀ ଉପରେ ଆକ୍ରମଣ ପାଇଁ ଯୋଜନା କରୁଥିବାର କୌଣସି ସୂଚନା ନଥିଲା । ଶେଷ ମହୀଶୂର ଯୁଦ୍ଧରେ ପ୍ରକୃତ ଆକ୍ରମଣକାରୀ ଥିଲେ ଗଭର୍ଣ୍ଣର ଜେନେରାଲ୍ ୱେଲେସ୍ଲି । ଅବଶ୍ୟ ଯୁଦ୍ଧରେ ସଫଳତା ଓ ଇଂଲଣ୍ଡରେ ଫରାସୀ-ବିରୋଧୀ ବାୟୁମଣ୍ଡଳ ହେତୁ ତାଙ୍କର ସମସ୍ତ ଦୋଷତ୍ରୁଟିର ସମୀକ୍ଷା ପରଦା ଅନ୍ତରାଳରେ ରହିଗଲା । ପରବର୍ଷ ୧୮୦୦ ମସିହା ଏପ୍ରିଲ ମାସରେ ଗୋଟିଏ ଆଇରିଶ 'ମାର୍କ୍ୟୁସ' ପଦବୀ ତାଙ୍କୁ ପ୍ରଦାନ କରାଯାଇଥିଲା । କିନ୍ତୁ ତାହାହିଁ ଥିଲା ତାଙ୍କ ପାଇଁ ଶେଷ ସମ୍ମାନ ପ୍ରଦର୍ଶନ । ୱେଲେସ୍ଲି ଏହାକୁ ଅପମାନର ଟିକା ବୋଲି ମନେ କରିଥିଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ଏହି ଅପମାନର ଟିକା ତାଙ୍କୁ ବହନ କରିବାକୁ ପଡ଼ିଥିଲା ।



# ବ୍ରିଟିଶ ସାମ୍ରାଜ୍ୟର ପରିବୃଦ୍ଧି

ଟିପୁ ସୁଲତାନଙ୍କର ନିଧନ ପରେ ମହୀଶୂର ରାଜ୍ୟ ଇଷ୍ଟ ଇଣ୍ଡିଆ କମ୍ପାନୀର ସମ୍ପୂର୍ଣ୍ଣ କରାୟତ୍ତ ହେଲା । ଯୁଦ୍ଧ ନିୟମ ଅନୁଯାୟୀ ଆକ୍ରମଣକାରୀ କମ୍ପାନୀ ଓ ହାଇଦ୍ରାବାଦର ନିଜାମ ମହୀଶୂର ରାଜ୍ୟକୁ ଅଧା ଅଧା ବାଣ୍ଟି ନେଇଥାଆନ୍ତେ । କିନ୍ତୁ ୱେଲେସ୍ଲି ବିଚାରିଲେ, ଏହାଦ୍ୱାରା ନିଜାମ ସନ୍ତୁଷ୍ଟ ହେବେ ନାହିଁ । ବରଂ ନିଜାମଙ୍କ ରାଜ୍ୟ ବିସ୍ତାର ପୁନାର ପେଶବାଙ୍କର ଶତ୍ରୁତା ସୃଷ୍ଟି କରିବ ଏବଂ ଏ ବିବାଦର ସମାଧାନ ପାଇଁ ହୁଏତ ଆଉ ଗୋଟିଏ ଯୁଦ୍ଧର ଆବଶ୍ୟକତା ପଡ଼ିବ । ଏଣୁ ୱେଲେସ୍ଲି ସ୍ଥିର କଲେ ଯେ, ଶାସନ ଗାଦିରେ ପରିବର୍ତ୍ତନ ହେଲେ ମଧ ମହୀଶୂରର ଭୌଗୋଳିକ ସୀମା ସରହଦ ନିଖୁଣ ରହିବ । ଏହି ମର୍ମରେ ୧୮୦୦ ମସିହାରେ ନିଜାମଙ୍କ ସହ ଏକ ଚୁକ୍ତି ହେଲା । ଚୁକ୍ତିର ସର୍ତ୍ତ ଅନୁଯାୟୀ ଇଂରେଜମାନେ ହାଇଦ୍ରାବାଦ୍‌ର ପରରାଷ୍ଟ୍ର ନୀତି ନିୟନ୍ତ୍ରଣ କରିବେ ଓ ରାଜ୍ୟର ନିରାପତ୍ତା ରକ୍ଷା କରିବାର ସମସ୍ତ ଦାୟିତ୍ୱ ବହନ କରିବେ । ପ୍ରତିବଦଳରେ ଏ ଯୁଦ୍ଧରେ ଓ ଏଥିପୂର୍ବରୁ ମହୀଶୂରର ଯେଉଁସବୁ ଅଞ୍ଚଳ ନିଜାମ ଦଖଲ କରିଥିଲେ, ସେ ସମସ୍ତ ପ୍ରତ୍ୟର୍ପଣ କରିବେ । ଏହି ଚୁକ୍ତିର ସର୍ତ୍ତଗୁଡ଼ିକୁ ନିଜାମଙ୍କର ପାରିଷଦ ଓ ପରାମର୍ଶଦାତାମାନେ ବିରୋଧ କରୁଥିଲେ । କିନ୍ତୁ ବୃଦ୍ଧ ନିଜାମ ଇଂରେଜମାନଙ୍କ ସହ ମିତ୍ରତା ରକ୍ଷା କରିବା ପାଇଁ ସର୍ତ୍ତଗୁଡ଼ିକ ଗ୍ରହଣ କରିନେଇଥିଲେ । ଏହାର ସୁଦୂର ପରିଣତି ଥିଲା– ଭାରତର ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଦୀର୍ଘ ଦେଢ଼ଶହ ବର୍ଷ ଧରି ନିଜାମ ଓ ତାଙ୍କର ଉତ୍ତରାଧିକାରୀମାନେ ଇଂରେଜମାନଙ୍କର ସୁଦୃଷ୍ଟିରେ ରହିପାରିଲେ ।

ଟିପୁଙ୍କର ଦୁଇପୁତ୍ର ଓ ପରିବାର ଲୋକଙ୍କୁ ଉଚ୍ଚ ହାରରେ ପେନ୍‌ସନ୍ ଦେଇ ଭେଲୋର ଦୁର୍ଗରେ ବସବାସ ପାଇଁ ଇଂରେଜମାନେ ପଠାଇଦେଲେ । ଯେଉଁ ଓ୍ୱାଦିଅର୍ ବଂଶର ହିନ୍ଦୁ ରାଜାଙ୍କୁ ବିତାଡ଼ିତ କରି ଟିପୁଙ୍କର ପିତା ହାଇଦର୍ ଅଲ୍ଲୀ ମହୀଶୂର ଦଖଲ କରିଥିଲେ, ସେହି ଓ୍ୱାଦିଅର ବଂଶର ଜଣେ ଶିଶୁପୁତ୍ରକୁ ରାଜଗାଦିରେ ବସାଇ

ଇଂରେଜମାନେ ମହୀଶୂର୍‌ର ଅସଲ ଶାସନ କ୍ଷମତା ନିଜ ହାତକୁ ନେଇଥିଲେ । ରାଜ୍ୟ ବଣ୍ଟନର ଆଉ ପ୍ରଶ୍ନ ଉଠିଲା ନାହିଁ ।

ମହୀଶୂରରେ ନବାବ୍‌ସାହୀର ପତନ ପରେ ତାଞ୍ଜୋର ରାଜ୍ୟରେ ଏକ ବିରାଟ ପରିବର୍ତ୍ତନର ସୂତ୍ରପାତ ହେଲା । ୧୭୮୬ ମସିହାରେ ତାଞ୍ଜୋର ରାଜାଙ୍କ ମୃତ୍ୟୁ ପରେ, ତାଙ୍କ ପାଳିତପୁତ୍ର ସର୍‌ଫୋଜିଙ୍କ ପରିବର୍ତ୍ତେ ତାଙ୍କ ସାନଭାଇ ଅମର ସିଂ ରାଜଗାଦି ଦଖଲ କଲେ । ସ୍ଥାନୀୟ ପଣ୍ଡିତମାନଙ୍କ ମତରେ ଏ ପୋଷ୍ୟପୁତ୍ର ଗ୍ରହଣ ଆଇନସମ୍ମତ ନଥିଲା । ପରେ ଦେଖାଗଲା ଅମର ସିଂ ଅତି ଦୁଷ୍ଟ ପ୍ରକୃତିର ଅତ୍ୟାଚାରୀ ଶାସକ ଓ ତାଙ୍କର ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ୱେଲେସ୍ଲି ମହୀଶୂର ଜୟ କରିବା ପରେ ଅନୁଭବ କଲେ ଦକ୍ଷିଣ ଭାରତରେ ଇଂରେଜ ଶାସନର ସ୍ଥାୟିତ୍ୱ ଦୃଷ୍ଟିରୁ ତାଞ୍ଜୋର ଶାସନ ହାତକୁ ନେବା ଉଚିତ । ସ୍ଥାନୀୟ ପଣ୍ଡିତମାନଙ୍କର ପୁନଃନିର୍ଦ୍ଧାରଣ ଅନୁଯାୟୀ ପାଳିତପୁତ୍ର ସର୍‌ଫୋଜିଙ୍କୁ ସେ ରାଜା ପଦରେ ସ୍ୱୀକୃତି ଦେଲେ ଓ ସରଫୋଜି ଅକ୍ଟୋବର ୧୭୯୯ ମସିହାରେ ଚାଳିଶ ହଜାର ପାଉଣ୍ଡ ପେନ୍‌ସନ୍ ବିନିମୟରେ ରାଜ୍ୟ ଶାସନ ଦାୟିତ୍ୱ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଅର୍ପଣ କଲେ ।

କ୍ଷୁଦ୍ର ରାଜ୍ୟ ସୁରାଟ୍ ମଧ୍ୟ ଗଭର୍ଣ୍ଣର ଜେନେରାଲ୍‌ଙ୍କ ଲୋଲୁପଦୃଷ୍ଟିରୁ ବାଦ୍ ପଡ଼ିନଥିଲା । ଗୁଜୁରାଟର ପଶ୍ଚିମ ଉପକୂଳରେ ସୁରାଟ ୧୬୮୭ ମସିହାରୁ ଇଂରେଜମାନଙ୍କର ଏକ ବାଣିଜ୍ୟ କେନ୍ଦ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲା । ଲୋକସଂଖ୍ୟା ଥିଲା ପାଞ୍ଚଲକ୍ଷ । ୧୭୫୯ ମସିହାରେ ମୋଗଲ ସମ୍ମତି କ୍ରମେ କମ୍ପାନୀ ସୁରାଟ ବନ୍ଦର ଓ ଫୋର୍ଟର ସୁରକ୍ଷା ଦାୟିତ୍ୱ ଗ୍ରହଣ କରିଥିଲେ । ପ୍ରଶାସନ ଦାୟିତ୍ୱ ସ୍ଥାନୀୟ ନବାବଙ୍କ ଉପରେ ନ୍ୟସ୍ତ ହେଲା । ୧୭୯୦ ମସିହାରେ ନବାବଙ୍କ ମୃତ୍ୟୁ ପରେ କମ୍ପାନୀର ବମ୍ବେ ଅଫିସ୍ ତାଙ୍କ ପୁତ୍ରଙ୍କୁ ନବାବ ପଦରେ ସ୍ୱୀକୃତି ଦେବା ପାଇଁ ବାର୍ଷିକ ଏକ ଲକ୍ଷ ଟଙ୍କା ରାଜସ୍ୱ ଦାବି କଲେ । ତରୁଣ ନବାବ ଏ ଅର୍ଥ ଭରଣା କରିବା ପାଇଁ ସମ୍ମତ ଥିଲେ । ମାତ୍ର ଏ ସଂକ୍ରାନ୍ତୀୟ ଚୁକ୍ତି ସମ୍ପାଦିତ ହେବାର ଅବ୍ୟବହିତ ପୂର୍ବରୁ ୧୭୯୯ ମସିହାରେ ତାଙ୍କର ଅକାଳ ମୃତ୍ୟୁ ହେଲା । ତାଙ୍କର ସାନଭାଇ ଉତ୍ତରାଧିକାର ସ୍ୱୀକୃତି ପାଇଁ ଉପରୋକ୍ତ ଅର୍ଥ ଦେବାକୁ ରାଜି ଥିଲେ, ମାତ୍ର କମ୍ପାନୀ ପକ୍ଷରୁ ଏହି ରାଶି ବଢ଼ାଇବା ପାଇଁ ପୁନଶ୍ଚ ଦାବି ହେଲା । ବମ୍ବେ ଗଭର୍ଣ୍ଣର ଡନ୍‌କାନ୍ ଅନୁସନ୍ଧାନ କରି ରିପୋର୍ଟ ଦେଲେ ଯେ, ଅଧିକ ଅର୍ଥ ଦେବା ପାଇଁ ନବାବଙ୍କର ସାମର୍ଥ୍ୟ ନାହିଁ । ଗଭର୍ଣ୍ଣର

ଜେନେରାଲ୍ ୱେଲେସ୍ଲି ପରିସ୍ଥିତିର ସୁଯୋଗ ନେଇ ଅବିଳମ୍ବେ ସୁରାଟ ଦଖଲ କରିବା ପାଇଁ ବମ୍ବେ ଅଫିସ୍‌କୁ ନିର୍ଦ୍ଦେଶ ଦେଲେ । ନବାବ ପଦ ପାଇଁ ଦାବିଦାରଙ୍କୁ ଯତ୍‌ସାମାନ୍ୟ ପେନ୍‌ସନ୍ ଦେଇ ସୁରାଟ୍‌ର ଶାସନଭାର ଇଷ୍ଟ ଇଣ୍ଡିଆ କମ୍ପାନୀ ଗ୍ରହଣ କଲେ ।

୧୭୯୫ ମସିହାରେ କର୍ଣ୍ଣାଟକର ନବାବ ଦୀର୍ଘ ପଚାଶ ବର୍ଷର ରାଜୁତି ପରେ ଦେହତ୍ୟାଗ କଲେ । ତାଙ୍କର କୁଶାସନର ବିଷମୟ ପରିଣତି ଇଷ୍ଟ ଇଣ୍ଡିଆ କମ୍ପାନୀର ଡାଇରେକ୍ଟର ଓ ବ୍ରିଟିଶ୍ ସରକାରଙ୍କୁ ଅଛପା ନଥିଲା । କିନ୍ତୁ ବେନ୍‌ଫିଲ୍ଡ୍ ଗ୍ୟାଙ୍ଗର ପ୍ରଭାବ, ପ୍ରତିପତ୍ତି ଓ ଅନ୍ୟାନ୍ୟ ବହୁ କାରଣରୁ ମହମ୍ମଦ ଅଲ୍ଲୀ ଯେ ବ୍ରିଟିଶ ସରକାରଙ୍କ ପ୍ରତି ଅନୁରକ୍ତ, ଏହି ପ୍ରକାରର ଧାରଣା ଇଂଲଣ୍ଡର କ୍ଷମତାଶାଳୀ ଗୋଷ୍ଠୀରେ ସୃଷ୍ଟି ହୋଇଥିଲା । ନବାବଙ୍କ ମୃତ୍ୟୁ ପରେ କର୍ଣ୍ଣାଟକ୍‌ର ଶାସନ କ୍ଷମତା ଅକ୍ତିଆର କରିବା ପାଇଁ ସୁବର୍ଣ୍ଣ ସୁଯୋଗ ମିଳିଥିଲେ ମଧ୍ୟ କର୍ଣ୍ଣୱାଲିସ୍ ନବାବଙ୍କର ଉତ୍ତରାଧିକାରୀମାନଙ୍କର ବିନା ସହମତିରେ ଏପରି କରିବାକୁ ସାହସ କଲେ ନାହିଁ । ପରବର୍ତ୍ତୀ ଗଭର୍ଣ୍ଣର ଜେନେରାଲ୍ ସାର୍ ଜନ୍ ଶୋର୍ ଥିଲେ ଅତ୍ୟନ୍ତ ଧର୍ମଭୀରୁ । ସେ ଏପରି ପଦକ୍ଷେପ ଦେବାକୁ ପଶ୍ଚାଦପଦ ହେଲେ । ଶୋର୍‌ଙ୍କ ଉତ୍ତରାଧିକାରୀ ୱେଲେସ୍ଲି ଥିଲେ ସମ୍ପୂର୍ଣ୍ଣ ଭିନ୍ନ କିସମର । ସେ ଥିଲେ ନିଷ୍କପଟ ସାମ୍ରାଜ୍ୟବାଦୀ ଓ ନୂଆ ନୂଆ ରାଜ୍ୟ ଦଖଲ କରିବା ପାଇଁ ସବୁ ଆବଶ୍ୟକୀୟ ପଦକ୍ଷେପ ନେବାକୁ ସେ ତତ୍ପର ଥିଲେ । ଟିପୁ ସୁଲତାନଙ୍କ ମୃତ୍ୟୁ ପରେ ଶ୍ରୀରଙ୍ଗପତ୍ତନମ୍‌ରୁ କେତେକ ଚିଠି ଓ କାଗଜପତ୍ର ସଂଗ୍ରହ କରି ସେ ପ୍ରଚାର କଲେ ଯେ ମହମ୍ମଦ ଅଲ୍ଲୀ ଟିପୁଙ୍କ ସହ ଇଂରେଜମାନଙ୍କ ବିରୁଦ୍ଧରେ ଗୋପନ ଷଡ଼ଯନ୍ତ୍ର କରୁଥିଲେ । କିନ୍ତୁ ପ୍ରକୃତରେ ସେ ପତ୍ରାଳାପରେ ଷଡ଼ଯନ୍ତ୍ରର କୌଣସି ସୂଚନା ନଥିଲା । ଷଡ଼ଯନ୍ତ୍ର ଅଭିଯୋଗ ଭିତ୍ତିରେ ମହମ୍ମଦ ଅଲ୍ଲୀଙ୍କ ପୁତ୍ରଙ୍କୁ କିଛି ପେନ୍‌ସନ୍ ଦେଇ ତୁରନ୍ତ କର୍ଣ୍ଣାଟକ ରାଜ୍ୟ ଦଖଲ କରିବା ପାଇଁ ଗଭର୍ଣ୍ଣର ଜେନେରାଲ୍ ମାଡ୍ରାସ୍‌ର ଗଭର୍ଣ୍ଣର ଲର୍ଡ୍ କ୍ଲାଇଭ୍‌ଙ୍କୁ (ପଲାସି ଯୁଦ୍ଧରେ ବିଖ୍ୟାତ୍ କ୍ଲାଇଭ୍‌ଙ୍କ ପୁତ୍ର) ନିର୍ଦ୍ଦେଶ ଦେଲେ । କିନ୍ତୁ ଏ ଆଦେଶ ଜାରୀ ହେବା ପୂର୍ବରୁ ନବାବଙ୍କର ମୃତ୍ୟୁ ହେଲା ଓ ତାଙ୍କର ନାବାଳକ ପୁତ୍ର ଅଲ୍ଲୀ ହୋସେନ୍ ଗାଦିନାସୀନ ହେଲେ । ମୁହୂର୍ତ୍ତେ ବିଳମ୍ବ ନ କରି ୱେଲେସ୍ଲି ନାବାଳକ ନବାବଙ୍କର ତତ୍ତ୍ୱାବଧରକମାନଙ୍କ ନିକଟରେ ସେହି ଦାବି ପେଶ୍ କଲେ ଓ ସେମାନେ ନାରାଜ ହେବାରୁ ଅଲ୍ଲୀ ହୋସେନଙ୍କୁ ବିତାଡ଼ିତ କରି ମହମ୍ମଦ ଅଲ୍ଲୀଙ୍କ ଜଣେ ସଂପର୍କୀୟଙ୍କୁ ନବାବ ପଦ ପାଇଁ ସ୍ୱୀକୃତି ଦେଲେ । ତାଙ୍କ

ସହିତ ଚୁକ୍ତି ହେଲା ଯେ ରାଜସ୍ୱର ଏକପଞ୍ଚମାଂଶ ପେନ୍‌ସନ୍ ରୂପେ ଗ୍ରହଣ କରି କର୍ଣ୍ଣାଟକର ଶାସନ ଦାୟିତ୍ୱ କମ୍ପାନୀକୁ ଅର୍ପଣ କରିବେ । ଜୁଲାଇ ୧୮୦୧ ମସିହାରେ ଏ ଚୁକ୍ତି ସମ୍ପାଦିତ ହେବା ପରେ କର୍ଣ୍ଣାଟକ ରାଜ୍ୟ ଇଂରେଜମାନଙ୍କର ହସ୍ତଗତ ହେଲା ।

ଅଯୋଧ୍ୟାର ନବାବଙ୍କ ସହିତ ୱେଲେସ୍ଲିଙ୍କର ବ୍ୟବହାର ଓ କାରବାର ଥିଲା ଆହୁରି ନିର୍ମମ, ଅମାନୁଷିକ, ନୀତିହୀନ ଓ ନିନ୍ଦନୀୟ । ରାଜଧାନୀ ଲକ୍ଷ୍ନୌରେ ଅଯୋଧ୍ୟାର ନବାବ ସାଜତ ଅଲ୍ଲୀ ତାଙ୍କ ବଡ଼ଭାଇ ଆସଫ୍‌ଉଦ୍ଦୌଲାଙ୍କ ପରି ଜନପ୍ରିୟ ନଥିଲେ କିନ୍ତୁ ସେ ବଡ଼ଭାଇଙ୍କ ପରି ବଦ୍‌ଖର୍ଚ୍ଚି ଓ ବଦ୍‌ମିଜାଜୀ ନଥିଲେ । ଆଫଗାନ୍ ଆକ୍ରମଣର ଆତଙ୍କ ସୃଷ୍ଟି କରି ୱେଲେସ୍ଲି ନିଜର ସୈନ୍ୟ ସଂଖ୍ୟା କମ୍ କରି ସେ ସ୍ଥାନରେ କମ୍ପାନୀର ସୈନ୍ୟବାହିନୀକୁ ନିଯୁକ୍ତି ଦିଅନ୍ତୁ ଓ ସେ ବାବଦରେ କମ୍ପାନୀକୁ ବାର୍ଷିକ ଆଉ ଅଧିକ ପଚାଶ ଲକ୍ଷ ଟଙ୍କା ପ୍ରଦାନ କରିବା ପାଇଁ ଦାବି କଲେ । ସାଜତ୍ ଅଲ୍ଲୀ ଲକ୍ଷ୍ନୌରେ ଅବସ୍ଥାପିତ ଇଂରେଜ ପ୍ରତିନିଧିଙ୍କୁ ଜଣାଇଦେଲେ ଯେ ସେ ଅତିଶୀଘ୍ର ଏକ ନୂତନ ପ୍ରସ୍ତାବ ପେଶ କରିବେ । କିଛି ଦିନ ପରେ ନବାବଙ୍କର ପ୍ରତ୍ୟୁତ୍ତର ମିଳିଲା । ସେ ଲେଖିଥିଲେ, ତାଙ୍କର ଆଉ ଶାସନ ପରିଚାଳନାରେ ଆଗ୍ରହ ନାହିଁ– ସେ ତାଙ୍କର ପୁତ୍ରଙ୍କୁ ନବାବ ଗାଦି ଅର୍ପଣ କରି ଶାସନ ଦାୟିତ୍ୱରୁ ଅବ୍ୟାହତି ନେବାକୁ ଚାହାଁନ୍ତି । ଉତ୍ତର ପଢ଼ି ୱେଲେସ୍ଲି ଅତ୍ୟନ୍ତ ଉଲ୍ଲସିତ ହେଲେ । ତାଙ୍କ ନିର୍ଦ୍ଦେଶରେ ନବାବଙ୍କ ଦସ୍ତଖତ ପାଇଁ ଯେଉଁ ଚୁକ୍ତି ଦସ୍ତାବିଜ୍ ପ୍ରସ୍ତୁତ ହେଲା, ସେଥିରେ ଲେଖାଥିଲା ଯେ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଅଯୋଧ୍ୟାର ଶାସନ ଦାୟିତ୍ୱ ଅର୍ପଣ କରି ସେ ନବାବ ପଦରୁ ବିଦାୟ ନେବେ । ନବାବଙ୍କୁ ସନ୍ଦେହମୁକ୍ତ କରିବା ପାଇଁ ତାଙ୍କୁ ସ୍ପଷ୍ଟ କୁହାଗଲା ଯେ ନିଜ ପୁତ୍ରଙ୍କୁ ଉତ୍ତରାଧିକାରୀ ମନୋନୟନ କରିବା ପାଇଁ ଏ ଚୁକ୍ତିପତ୍ରରେ କୌଣସି ବ୍ୟବସ୍ଥା ନାହିଁ । ଏହାପରେ ସାଜତ୍ ଅଲ୍ଲୀ ପଦତ୍ୟାଗ ପ୍ରସ୍ତାବରୁ ପଛଘୁଞ୍ଚା ଦେଲେ ଓ ଚୁକ୍ତିପତ୍ରରେ ଦସ୍ତଖତ କରିବାକୁ ଅସମ୍ମତ ହେଲେ ।

ଅଯୋଧ୍ୟାକୁ ଦଖଲ କରିବାର ଯୋଜନା ବ୍ୟର୍ଥ ହେବାରେ ଉତ୍‌କ୍ଷିପ୍ତ ୱେଲେସ୍ଲି ଆଦେଶ ଦେଲେ ଯେ ପୂର୍ବନିଷ୍ପତ୍ତି ଅନୁଯାୟୀ ଅଧିକ କମ୍ପାନୀ ସୈନ୍ୟ ଲକ୍ଷ୍ନୌ ଯାତ୍ରା କରିବେ ଓ ଏଥିପାଇଁ ଆବଶ୍ୟକ ବ୍ୟୟଭାର ନବାବ ବହନ କରିବେ । ସାଜତ୍ ଅଲ୍ଲୀ ପ୍ରତିବାଦ କଲେ ଯେ ନିଜର ସୈନ୍ୟମାନଙ୍କୁ ବରଖାସ୍ତ କଲେ ସେମାନେ ହୁଏତ ବିଦ୍ରୋହ କରିବେ କିମ୍ବା ବିରୋଧୀ ପକ୍ଷ ସହ ଷଡ଼ଯନ୍ତ୍ର କରିବେ । ସେ ଏକଥା ମଧ୍ୟ ଦର୍ଶାଇଲେ

ଯେ ନିଜ ସୈନ୍ୟ ବିତାଡ଼ିତ କରି ସେ ସ୍ଥାନରେ କମ୍ପାନୀର ସୈନ୍ୟବାହିନୀକୁ ନିଯୁକ୍ତ କରି ଅଧିକ ଖର୍ଚ୍ଚ ଦାଖଲ କରିବା ପାଇଁ ପୂର୍ବତନ ଗଭର୍ଣ୍ଣର ଜେନେରାଲ୍ ଜନ ଶୋର୍‌ଙ୍କ ସହିତ ଚୁକ୍ତିରେ କୌଣସି ସର୍ତ୍ତ ନଥିଲା । ସାଦତ୍ ଅଲ୍ଲୀଙ୍କ ପ୍ରତିବାଦକୁ ୱେଲେସ୍ଲି ଅପମାନଜନକ ମନେ କଲେ ଏବଂ ତାଙ୍କ ଉପରେ ଧମକ ବଢ଼ିବାକୁ ଲାଗିଲା । ବିଚରା ନବାବ ଭୟଭୀତ ହୋଇ ପୁନଶ୍ଚ ତାଙ୍କର ଶରଣାଗତ ହେଲେ ଓ ନିଜର ସୈନ୍ୟବାହିନୀକୁ ବରଖାସ୍ତ କଲେ । ସେତିକିରେ ୱେଲେସ୍ଲି ସନ୍ତୁଷ୍ଟ ହେଲେ ନାହିଁ, ରାଜସ୍ୱ ଆଦାୟ ବାବତରେ ଅଯୋଧ୍ୟାର ସବୁଠାରୁ ସମୃଦ୍ଧ ଅଞ୍ଚଳଗୁଡ଼ିକୁ କମ୍ପାନୀକୁ ହସ୍ତାନ୍ତର କରିବାକୁ ଚାପ ପକାଇଲେ । ବାଧ୍ୟବାଧକତାର ଶିକାର ହୋଇ ଅସହାୟ ସାଦତ ଅଲ୍ଲୀ ସେହି ସମୃଦ୍ଧ ଅଞ୍ଚଳଗୁଡ଼ିକୁ କମ୍ପାନୀକୁ ଅର୍ପଣ କଲେ । ଏହି ସବୁ ଅଞ୍ଚଳରେ ଶାସନ ପରିଚାଳନା କରିବା ପାଇଁ ନିଜର ସାନଭାଇ ହେନ୍‌ରୀ ୱେଲେସ୍ଲିଙ୍କ ସଭାପତିତ୍ୱରେ ତିନିଜଣିଆ କମିସନ୍ ଗଠନ କରାଗଲା ଏବଂ ହେନ୍‌ରୀଙ୍କୁ ମଧ୍ୟ ଅଯୋଧ୍ୟା ପାଇଁ ଲେଫ୍‌ଟ୍‌ନାଣ୍ଟ ଗଭର୍ଣ୍ଣର ପଦରେ ନିଯୁକ୍ତ କରାଗଲା ।

ଅବଶ୍ୟ ବିନାକାରଣରେ ଅଯୋଧ୍ୟାର ନବାବଙ୍କ ପ୍ରତି ଏପରି ଅମାନୁଷିକ ଆଚରଣ ଓ ରାଜ୍ୟ ଦଖଲ ପାଇଁ ଏପରି ଖଳ ଉଦ୍ୟମ କମ୍ପାନୀର ଡାଇରେକ୍ଟରମାନେ ପସନ୍ଦ କରୁନଥିଲେ । ଆଶଙ୍କା କରାଯାଉଥିଲା ଯେ ପାର୍ଲିଆମେଣ୍ଟରେ ଏ ସମସ୍ତ ବିଷୟ ଆଲୋଚିତ ହେଲେ ତୁମୁଳ ବିସ୍ଫୋରଣ ଘଟିପାରେ । ବ୍ରିଟିଶ୍ ସରକାରଙ୍କ ସ୍ୱତନ୍ତ୍ର ସମ୍ମତି ନ ନେଇ, ଭାରତୀୟ ରାଜା ଓ ନବାବଙ୍କ ରାଜ୍ୟ ଦଖଲ ପ୍ରଚେଷ୍ଟାକୁ ନିନ୍ଦା କରାଯାଇପାରେ । କିନ୍ତୁ ଇଷ୍ଟ ଇଣ୍ଡିଆ କମ୍ପାନୀର ଡାଇରେକ୍ଟର ମଣ୍ଡଳୀ ଓ ଖୋଦ୍ ବ୍ରିଟିଶ୍ ସରକାର ବୋଧହୁଏ ଅନୁଭବ କଲେ, ଗୋଟିଏ କାର୍ଯ୍ୟକୁ ଯେକୌଣସି ପ୍ରକାରେ କରାଯାଉନା କହିଁକି, ତା'ର ଅନ୍ତିମ ଫଳ ଯଦି ଲାଭଜନକ; ତେବେ ଲକ୍ଷ୍ୟ ହାସଲ କରିବାର ନୀତିହୀନ ମାଧ୍ୟମ ମଧ୍ୟ ଯଥାର୍ଥ ଓ ଗ୍ରହଣୀୟ ।



# ସିନ୍ଧିଆଙ୍କ ବିପର୍ଯ୍ୟୟ

ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ସୁଦୂର ପଞ୍ଜାବର ଶିଖ୍ ରାଜ୍ୟ ଓ ମଧ୍ୟଭାରତରେ ମରହଟ୍ଟା ରାଜ୍ୟଗୁଡ଼ିକ ବ୍ୟତୀତ ଭାରତର ଅନ୍ୟ ସବୁ ଅଞ୍ଚଳରେ ବ୍ରିଟିଶ୍ ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥାଏ । ମହୀଶୂରର ପତନ, କର୍ଣ୍ଣାଟକ ଦଖଲ ଓ ଉତ୍ତରରେ ଅଯୋଧ୍ୟାର ସମୃଦ୍ଧ ଅଞ୍ଚଳଗୁଡ଼ିକୁ ହସ୍ତଗତ କରିବା ପରେ, ମରହଟ୍ଟାମାନଙ୍କ ବିରୁଦ୍ଧରେ ଶକ୍ତି ପ୍ରୟୋଗ କରିବାକୁ ଇଂରେଜମାନଙ୍କୁ ଅବାଧ ସୁଯୋଗ ମିଳିଲା । ବିଭିନ୍ନ ମରହଟ୍ଟା ଗୋଷ୍ଠୀ ମଧ୍ୟରେ ସେ ସମୟରେ ଛୋଟ ଛୋଟ ବିବାଦ ଲାଗି ରହିଥାଏ । ପ୍ରତ୍ୟେକେ ଅନ୍ୟ ବିରୁଦ୍ଧରେ ଇଂରେଜମାନଙ୍କର ସାହାଯ୍ୟ ଲୋଡ଼ୁଥାନ୍ତି । ଇଂରେଜମାନେ ମଧ୍ୟ ନିଜର ସ୍ଥିତି ଦୃଢ଼ କରିବା ପାଇଁ ଗୋଟିଏ ଗୋଷ୍ଠୀକୁ ଅନ୍ୟ ବିରୁଦ୍ଧରେ ପ୍ରୟୋଗ କରିବା ପାଇଁ ଆଗ୍ରହୀ । ଫଳରେ ଗୋଟିକ ପରେ ଗୋଟିଏ ମରହଟ୍ଟା ଅଞ୍ଚଳକୁ କରଦ ରାଜ୍ୟରେ ପରିଣତ କରିବାକୁ ଇଂରେଜମାନଙ୍କୁ ସୁବିଧା ହୋଇଥିଲା ।

ପୁନାରେ ଅଧିଷ୍ଠିତ ମରହଟ୍ଟା ବଂଶର ପ୍ରଧାନମନ୍ତ୍ରୀ ପେଶବାମାନେ ପ୍ରଥମେ ମରହଟ୍ଟା ଶାସନର ମୁଖ୍ୟ ରୂପେ ବିବେଚିତ ହେଉଥିଲେ । କିନ୍ତୁ ପେଶବା ବଂଶର ପ୍ରତିଷ୍ଠାତା ବାଲାଜୀ ବିଶ୍ୱନାଥଙ୍କ ମୃତ୍ୟୁ ପରେ ମରହଟ୍ଟା ଭୂଖଣ୍ଡ ପାଞ୍ଚଟି ରାଜ୍ୟରେ ବିଭକ୍ତ ହୋଇଥିଲା । କାଳକ୍ରମେ ଏମାନଙ୍କ ମଧ୍ୟରେ ପରସ୍ପର କଳହ ଓ ବିବାଦର ସୂତ୍ରପାତ ହେଲା । ଦ୍ୱିତୀୟ ବାଜିରାଓ ପୁନାର ପେଶବା ଥିବା ସମୟରେ ତାଙ୍କର ପ୍ରଧାନ ପରାମର୍ଶଦାତା ଥିଲେ ନାନା ଫର୍ଣ୍ଣାଭିସ୍ । ସେ ଥିଲେ ଜଣେ ବିଜ୍ଞ ରାଜନୀତିଜ୍ଞ ଓ ଜ୍ଞାନୀ ଉପଦେଷ୍ଟା । ତାଙ୍କର ପରାମର୍ଶ ଓ ପ୍ରଭାବ ସବୁ ମରହଟ୍ଟା ରାଜ୍ୟରେ ଅନୁଭୂତ ହେଉଥିଲା । ପ୍ରଥମ ମହୀଶୂର ଯୁଦ୍ଧ ପରେ ସେ ଇଂରେଜମାନଙ୍କର ଅସଲ ମତଲବ୍ ବିଷୟରେ ସଚେତନ ଥିଲେ ଓ ସେମାନଙ୍କର ସବୁ ଅନୁରୋଧ ପ୍ରତ୍ୟାଖ୍ୟାନ କରି

ପେଶବା ଇଂରେଜମାନଙ୍କ ଚକ୍ରାନ୍ତରେ ଭାଗୀଦାର ନଥିଲେ । ୧୮୦୦ ଖ୍ରୀଷ୍ଟାବ୍ଦରେ ନାନା ଫର୍ଣ୍ଣାଭିସ୍‌ଙ୍କର ମୃତ୍ୟୁ ହେଲା । ତା' ପରେ ପୁନାର ପେଶ୍ୱା ଓ ଅନ୍ୟ ମରହଟ୍ଟା ରାଜବଂଶମାନେ ବିପଥଗାମୀ ହେଲେ ।

୧୮୦୧ ଖ୍ରୀଷ୍ଟାବ୍ଦରେ ଗୋଆଲିୟର୍‌ର ଦୌଲତ ରାଓ ସିନ୍ଧିଆ ଓ ଇନ୍ଦୋର୍‌ର ଯଶୋବନ୍ତ ରାଓ ହୋଲକାର୍ ସୀମା ବିବାଦ ଲାଗି ପରସ୍ପର ରାଜ୍ୟ ଆକ୍ରମଣ କରି ହତ୍ୟା ଓ ଲୁଣ୍ଠନରେ ବ୍ୟାପ୍ତ ହେଲେ । ପରବର୍ଷ ହୋଲକାର ପୁନାର ଯୁଦ୍ଧରେ ପେଶ୍ୱା ଦ୍ୱିତୀୟ ବାଜିରାଓ ଓ ସିନ୍ଧିଆଙ୍କ ମିଳିତ ସେନାବାହିନୀକୁ ପରାସ୍ତ କରିଥିଲେ । ବାଜିରାଓ ପୁନାରୁ ପଳାୟନ କରି ବେସିନ୍‌ଠାରେ ଇଂରେଜମାନଙ୍କର ଶରଣାପନ୍ନ ହେଲେ । ମହାରାଷ୍ଟ୍ରରେ ଅନ୍ତତଃ ଛ' ହଜାର ବ୍ରିଟିଶ୍ ସୈନ୍ୟ ରଖି ସେମାନଙ୍କର ଖର୍ଚ୍ଚ ବାବତକୁ ବାର୍ଷିକ ଛବିଶ ଲକ୍ଷ ଟଙ୍କା ଦେବାକୁ ଚୁକ୍ତିବଦ୍ଧ ହୋଇ ସେ ଇଂରେଜଙ୍କ ସହାୟତାରେ ପୁନାରେ ପୁନଃପ୍ରବେଶ ପାଇଁ ପ୍ରୟାସ କଲେ । ଏ ମଧ୍ୟରେ ହୋଲକାର ରାଘୋବା ରାଓଙ୍କ ଜଣେ ସମ୍ପର୍କୀୟଙ୍କୁ ପେଶବା ଗାଦିରେ ବସାଇ ଶାସନ ଚଳାଇବାର ବ୍ୟବସ୍ଥା କରିଥିଲେ । କିନ୍ତୁ ହେନ୍‌ରୀ ୱେଲେସ୍ଲିଙ୍କର ନେତୃତ୍ୱରେ ମାନ୍ଦ୍ରାଜ୍‌ରୁ ପ୍ରେରିତ କମ୍ପାନୀ ସେନାବାହିନୀ ୧୮୦୩ ମସିହା ମଇ ମାସରେ ବାଜିରାଓଙ୍କୁ ପେଶବା ଗାଦିରେ ପୁନଃ ସଂସ୍ଥାପିତ କଲେ । ହୋଲ୍‌କାର୍‌ଙ୍କ ମନୋନୀତ ବ୍ୟକ୍ତି ପୁନାରୁ ପଳାୟନ କଲେ । ବେସିନ୍ ଚୁକ୍ତି ଫଳରେ ପେଶବା ଇଂରେଜମାନଙ୍କର ଅଧସ୍ତନ କରଦ ରାଜ୍ୟର ନାମକୁ ମାତ୍ର ଶାସକ ହୋଇ ରହିଲେ । ମାତ୍ର ସମସ୍ତ ସାମରିକ କ୍ଷମତା କମ୍ପାନୀ ହାତରେ ନ୍ୟସ୍ତ ହେଲା । ପ୍ରଥମ ଥର ପାଇଁ ଇଂରେଜମାନେ ମହାରାଷ୍ଟ୍ରରେ ଏକ ସୁଦୃଢ଼ ଘାଟି ପ୍ରତିଷ୍ଠା କରିବାକୁ ସମର୍ଥ ହେଲେ ।

ୱେଲେସ୍ଲି ଆଶା କରୁଥିଲେ ଯେ ଅନ୍ୟ ମରହଟ୍ଟା ରାଜାମାନେ ବେସିନ୍ ଚୁକ୍ତିକୁ ବିନା ପ୍ରତିରୋଧରେ ଗ୍ରହଣ କରିନେବେ ଓ ଇଂରେଜମାନଙ୍କ ସହିତ ଅନୁରୂପ ବଶ୍ୟତାମୂଳକ ଚୁକ୍ତି ସମ୍ପାଦନ କରିବେ । ମାତ୍ର ପରିସ୍ଥିତି ଥିଲା ଭିନ୍ନ ରୂପର ଓ ତାଙ୍କର ସମସ୍ତ କଳ୍ପନା ଜଳ୍ପନା ବ୍ୟର୍ଥ ହେଲା । ସମ୍ବାଦ ମିଳିଲା ଯେ ସିନ୍ଧିଆ, ବେରାର ଓ ହୋଲ୍‌କାର ଏକ ଇଂରେଜ-ବିରୋଧୀ ଷଡ଼ଯନ୍ତ୍ରରେ ଲିପ୍ତ ଅଛନ୍ତି ଓ ପେଶ୍ୱା ବାଜିରାଓଙ୍କର ମଧ୍ୟ ତାଙ୍କ ସହ ପ୍ରଚ୍ଛନ୍ନ ସମର୍ଥନ ରହିଛି । ଅବଶ୍ୟ ବାଜିରାଓଙ୍କୁ ସେ ସହଜରେ ବିଶ୍ୱାସ କରୁନଥିଲେ ଓ ତାଙ୍କ ଦୃଷ୍ଟିରେ ସେ ଥିଲେ ବିଶ୍ୱାସଘାତକତାର ଅବତାର । ପୁନାରେ ଅବସ୍ଥାପିତ କମ୍ପାନୀର ପ୍ରତିନିଧି କର୍ଣ୍ଣେଲ୍ କଲିନ୍‌ସଙ୍କୁ ପେଶ୍ୱାଙ୍କ

ସହ ସାକ୍ଷାତ କରି ଏ ସମ୍ବାଦର ସତ୍ୟତା ସଂଗ୍ରହ କରିବାକୁ ନିର୍ଦ୍ଦେଶ ଦେଲେ । ପେଶ୍ୱା କଲିନ୍‌ସଙ୍କୁ ଉତ୍ତର ଦେଲେ ଯେ ସେ ବେରାର୍ ରାଜାଙ୍କ ସହ ଆଲୋଚନା କରିବା ପରେ ତାଙ୍କର ମତାମତ ଜଣାଇବେ । ୱେଲେସ୍ଲି ଉତ୍‌କ୍ଷିପ୍ତ ହେଲେ ଓ ଅପମାନିତ ବୋଧ କଲେ ଏବଂ ଯୁଦ୍ଧ ସୁନିଶ୍ଚିତ ବୋଲି ତାଙ୍କର ଧାରଣା ହେଲା ।

ଯଦିଓ ଲଣ୍ଡନ କର୍ତ୍ତୃପକ୍ଷଙ୍କୁ ମରହଟ୍ଟାମାନଙ୍କ ସହିତ ଯୁଦ୍ଧର ସବିଶେଷ ସୂଚନା ଦିଆଯାଉ ନଥିଲା, କିନ୍ତୁ ଭାରତରେ ମରହଟ୍ଟାମାନଙ୍କର ସମ୍ମୁଖୀନ ହେବା ପାଇଁ ଗଭର୍ଣ୍ଣର ଜେନେରାଲ୍ ଯଥାବିଧି ପ୍ରସ୍ତୁତ ଥିଲେ । ମୁଖ୍ୟ ଯୁଦ୍ଧ ହୋଇଥିଲା ଦକ୍ଷିଣ ଭାରତରେ ସିନ୍ଧିଆଙ୍କ ସୈନ୍ୟବାହିନୀ ସହିତ ଗଭର୍ଣ୍ଣର ଜେନେରାଲ୍ ୱେଲେସ୍ଲିଙ୍କ ସାନଭାଇ ମେଜର ଜେନେରାଲ୍ ଆର୍ଥର ୱେଲେସ୍ଲିଙ୍କ ନେତୃତ୍ୱରେ ଗଠିତ ଇଂରେଜ ସେନାଙ୍କର ଓ ଉତ୍ତରରେ ସିନ୍ଧିଆ ଓ ବେରାର୍ ରାଜାଙ୍କ ସହ ଜେନେରାଲ୍ ଲେକ୍‌ଙ୍କ ଦ୍ୱାରା ପରିଚାଳିତ ବଙ୍ଗଳା ବାହିନୀର । ଆଉ ଦୁଇଟି କ୍ଷୁଦ୍ର ସଂଘର୍ଷରେ ଇଂରେଜମାନେ ଦକ୍ଷିଣ-ପୂର୍ବ ଉପକୂଳରେ ଓଡ଼ିଶା ଦଖଲ କରିଥିଲେ ଓ ପଶ୍ଚିମ ଉପକୂଳରେ ସିନ୍ଧିଆଙ୍କଠାରୁ ବ୍ରୋଚ୍ ବନ୍ଦର ଦଖଲ କରି ନେଇଥିଲେ । ମାନ୍ଦ୍ରାଜ ବାହିନୀର ଦଳେ ସୈନ୍ୟ ୧୮୦୩ ମସିହାରେ ଉତ୍ତର ସର୍କାର ଜିଲ୍ଲାରୁ ଆସି ବେରାର୍ ରାଜାଙ୍କ ଅଧୀନରେ ଥିବା ଓଡ଼ିଶାର ପୁରୀ ଅଞ୍ଚଳ ଦଖଲ କରିଥିଲେ । ସେହିପରି ବଙ୍ଗଳାରୁ ଦଳେ କମ୍ପାନୀ ସୈନ୍ୟ ଅକ୍ଟୋବର ମାସରେ ସମୁଦ୍ର ପଥରେ ଆସି ବାଲେଶ୍ୱର ଦଖଲ କଲେ । ମରହଟ୍ଟା ଅମଳରେ ସାରା ଓଡ଼ିଶାକୁ 'କଟକ' ବୋଲି କୁହାଯାଉଥିଲା । ଖୋର୍ଦ୍ଧା ପରି କେତେକ ଅଞ୍ଚଳରେ ସାମାନ୍ୟ ପ୍ରତିରୋଧ ସତ୍ତ୍ୱେ ୧୮୦୩ ମସିହାରେ କଟକ ଇଂରେଜମାନଙ୍କର ହସ୍ତଗତ ହେଲା ଓ ଓଡ଼ିଶାରୁ ମରହଟ୍ଟା ଶାସନ ଓ ବର୍ଗୀ ଲୁଣ୍ଠନ ଲୋପ ହେଲା ।

ମେଜର ଜେନେରାଲ୍ ୱେଲେସ୍ଲିଙ୍କ ଅଧିନାୟକତ୍ୱରେ ଏଗାର ହଜାର ସୈନ୍ୟ ସମ୍ବଳିତ ଏକ ସେନାବାହିନୀ ହାଇଦ୍ରାବାଦର ଦକ୍ଷିଣ-ପଶ୍ଚିମ ସୀମାରେ ଆକ୍ରମଣ ଆରମ୍ଭ କଲେ । ଏହି ଏଗାର ହଜାର ସୈନ୍ୟଙ୍କ ମଧ୍ୟରେ ୟୁରୋପିଆନ୍ ସୈନ୍ୟଙ୍କ ସଂଖ୍ୟା ଥିଲା ଷୋଳ ଶହ । ନିଜାମ୍‌ଙ୍କ ସମ୍ମତି କ୍ରମେ ହାଇଦ୍ରାବାଦ୍‌ରେ ଅବସ୍ଥାପିତ କମ୍ପାନୀ ସେନା ମଧ୍ୟ ଏମାନଙ୍କ ସହ ମିଳିତ ହେଲେ ଓ ଦୁର୍ଭେଦ୍ୟ ବିବେଚିତ ଅହମ୍ମଦ ନଗର ଫୋର୍ଟ ଉପରେ ଆକ୍ରମଣ କଲେ । ଅଗଷ୍ଟ ୧୧ ତାରିଖରେ ଫୋର୍ଟର ପତନ ହେଲା । ଏକ ଆଗୁଆ ଘାଟି ଦଖଲ କରିବା ସହିତ ବହୁ ଯୁଦ୍ଧ ସରଂଜାମ ଓ ଦୈନନ୍ଦିନ

ଜୀବନଯାପନ ସରବରାହ ଇଂରେଜମାନଙ୍କର ହସ୍ତଗତ ହେଲା । ସାମରିକ ଦୃଷ୍ଟିରୁ ସିନ୍ଧିଆଙ୍କର ପୁନା ଆସିବା ପଥ ବନ୍ଦ ହେଲା ।

ଏହାପରେ ଆର୍ଥର ଓ୍ୱେଲେସ୍ଲି ପାଞ୍ଚହଜାର ସୈନ୍ୟ ଧରି ହାଇଦ୍ରାବାଦ୍ ସୀମାନ୍ତରେ ଆସାୟୀ ନାମକ ସ୍ଥାନରେ ସିନ୍ଧିଆ ଓ ରଘୁଜୀ ଭୋନ୍‌ସ୍ଲାଙ୍କ ପଞ୍ଚତିରିଶ ହଜାର ସୈନ୍ୟଙ୍କ ମିଳିତ ବାହିନୀ ଉପରେ ଆକ୍ରମଣ କଲେ । ଏ ଯୁଦ୍ଧ ଏପରି ପ୍ରଚଣ୍ଡ ଥିଲା ଯେ, ଇଂରେଜମାନଙ୍କର ଅକଳ୍ପନୀୟ କ୍ଷତି ସତ୍ତ୍ୱେ ବେରାର୍ ରାଜା ସିନ୍ଧିଆଙ୍କୁ ଛାଡ଼ି ଏକତରଫା ପଛଘୁଞ୍ଚା ଦେଲେ । ସିନ୍ଧିଆ ମଧ୍ୟ ତାଙ୍କର ଏହି ଅକର୍ମା ବିରାଦରଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ଇଂରେଜମାନଙ୍କ ସହିତ ସନ୍ଧି କଲେ । ଆର୍ଥର ଭୋନ୍‌ସ୍ଲାଙ୍କର ପଶ୍ଚାତ୍‌ଧାବନ କଲେ । ଆରଗାଁଓ ଯୁଦ୍ଧରେ ଭୋନ୍‌ସ୍ଲା ସମ୍ପୂର୍ଣ୍ଣ ପରାସ୍ତ ହେଲେ ଓ ତାଙ୍କ ସୈନ୍ୟବାହିନୀ ଧ୍ୱସ୍ତବିଧ୍ୱସ୍ତ ହୋଇଗଲା । ଅଳ୍ପ ଦିନ ପରେ ନାଗପୁରରେ ଥିବା ତାଙ୍କର ଗାଓୟିଲଗଡ଼ ଦୁର୍ଗର ମଧ୍ୟ ପତନ ହେଲା । ୧୮୦୩ ଖ୍ରୀଷ୍ଟାବ୍ଦ ଶେଷ ଭାଗରେ ଭୋନ୍‌ସ୍ଲା ଇଂରେଜମାନଙ୍କର ବଶ୍ୟତା ସ୍ୱୀକାର କରି ଚୁକ୍ତିପତ୍ର ଦସ୍ତଖତ କଲେ । ସେହିଦିନଠାରୁ ବେରାର୍ ଓ ନାଗପୁର ତା'ର ସ୍ୱାଧୀନତା ହରାଇଲା ଏବଂ ଦକ୍ଷିଣ ଭାରତରେ ବ୍ରିଟିଶ ଉପନିବେଶ ସମ୍ପୂର୍ଣ୍ଣ ସୁଦୃଢ଼ ହେଲା ।

ଉତ୍ତର ଭାରତରେ ସିନ୍ଧିଆଙ୍କର ସେହି ଦଶା ଘଟିଲା । ଚାରିମାସବ୍ୟାପୀ ଯୁଦ୍ଧରେ କମ୍ପାନୀର ଭାରତୀୟ ସିପାହୀ ଓ ସ୍କଟିଶ ପଦାତିକବାହିନୀ ସିନ୍ଧିଆ ଓ ବେରାର୍‌ଙ୍କୁ ଦକ୍ଷିଣ ଭାରତରୁ ସମ୍ପୂର୍ଣ୍ଣ ବିତାଡ଼ିତ କରିଥିଲେ । ଉତ୍ତରରେ ଫରାସୀ ସେନାପତିମାନଙ୍କ ଦ୍ୱାରା ତାଲିମ୍‌ପ୍ରାପ୍ତ ସିନ୍ଧିଆଙ୍କର ସୈନ୍ୟବାହିନୀ ଜେନେରାଲ୍ ଲେକ୍‌ଙ୍କ ନେତୃତ୍ୱରେ ପରିଚାଳିତ ବଙ୍ଗବାହିନୀ ଦ୍ୱାରା ପରାଜିତ ହୋଇଥିଲେ । ମହାଦାଜୀ ସିନ୍ଧିଆଙ୍କ ମୃତ୍ୟୁ ପରେ ଦୌଲତ ରାଓ ସିନ୍ଧିଆ ଗୁଆଲିୟର୍ ରାଜଗାଦି ଆରୋହଣ କଲେ ଓ ପୂର୍ବର ଫରାସୀ ସେନାପତିଙ୍କ ସ୍ଥାନରେ ଜେନେରାଲ୍ ପେରନ୍‌ଙ୍କୁ ସେହି ପଦରେ ନିଯୁକ୍ତ କଲେ । କିନ୍ତୁ ପେରନ୍ ଇଂରେଜମାନଙ୍କ ସହ ଯୁଦ୍ଧ ପରିବର୍ତ୍ତେ ନିରାପଦରେ ଫ୍ରାନ୍ସ ଫେରିଯିବା ପାଇଁ ବ୍ୟାକୁଳ ଥିଲେ ଏବଂ ସେଥିପାଇଁ ତାଙ୍କର ଲୋଡ଼ାଥିଲା ଇଂରେଜମାନଙ୍କର ସାହାଯ୍ୟ । ଭାରତରେ ରହିବା କାଳରେ ସେ ବେଆଇନ୍ ଭାବରେ ଯେଉଁସବୁ ଧନ ଦୌଲତ ଠୁଳ କରିଥିଲେ, ତାକୁ ନେଇ କିପରି ଦେଶକୁ ଫେରିଯିବେ, ତାହାହିଁ ତାଙ୍କର ମୁଖ୍ୟ ସମସ୍ୟା ।

ଏଣେ ଉତ୍ତରରେ ଦଶହଜାର ପାଞ୍ଚ ଶହ ସୈନ୍ୟଙ୍କୁ ନେଇ ଜେନେରାଲ୍ ଲେକ୍ ଆଲିଗଡ଼ ଦୁର୍ଗ ଆକ୍ରମଣ କଲେ । ସିନ୍ଧିଆଙ୍କ ଫରାସୀ ସେନାପତି ପେରନ୍ ପ୍ରତିଆକ୍ରମଣ କରିବା ପରିବର୍ତ୍ତେ, ତାଙ୍କର ସହକାରୀଙ୍କୁ ଶେଷ ପର୍ଯ୍ୟନ୍ତ ଲଢ଼େଇ କରିବା ପାଇଁ ନିର୍ଦ୍ଦେଶ ଦେଇ ଯୁଦ୍ଧକ୍ଷେତ୍ରରୁ ଅପସରି ଗଲେ । ସହକାରୀ ସେନାପତି ଆତ୍ମସମର୍ପଣ ପାଇଁ ଆଲୋଚ଼ନା ଆରମ୍ଭ କଲେ । ଏହି ଧୀର ମନ୍ଥର ଆଲୋଚ଼ନାରେ ଗୋଟିଏ ମାସ ଅତିକ୍ରାନ୍ତ ହେବାରୁ ଲେକ୍ ଉତ୍‌କ୍ଷିପ୍ତ ହୋଇ ହଠାତ୍ ଆକ୍ରମଣ କରି ଆଲିଗଡ଼ ଦୁର୍ଗ ଦଖଲ କଲେ । ଏହି ସମୟରେ ଜେନେରାଲ୍ ପେରନ୍‌ଙ୍କଠାରୁ ପତ୍ର ଆସିଲା ଯେ ସେ ସିନ୍ଧିଆଙ୍କ ଚାକିରିରୁ ଇସ୍ତଫା ଦେଇଛନ୍ତି ଓ ତାଙ୍କୁ ଲକ୍ଷ୍ନୌ ପର୍ଯ୍ୟନ୍ତ ଯିବାକୁ ଅନୁମତି ଦିଆଯାଉ । ଲେକ୍ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଏ ପ୍ରସ୍ତାବ ଗ୍ରହଣ କଲେ । ପେରନ୍ ପରିଚାଳିତ ଊଣେଇଶ ହଜାର ସୈନ୍ୟବାହିନୀର ନାୟକ ହେଲେ ତାଙ୍କର ସହକାରୀ ଜେନେରାଲ୍ ବୁର୍କୁଇନ୍ । ଶେଷ ସଂଗ୍ରାମ ପାଇଁ ଜେନେରାଲ୍ ଲେକ୍ ପାଞ୍ଚହଜାର ପଦାତିକ ଓ ଅଶ୍ୱାରୋହୀ ସୈନ୍ୟ ଧରି ଦିଲ୍ଲୀ ଅଭିମୁଖେ ଅଭିଯାନ ଆରମ୍ଭ କଲେ । ବୁର୍କୁଇନ୍ ଦିଲ୍ଲୀ ଉପକଣ୍ଠରେ ଆତ୍ମସମର୍ପଣ କଲେ । ଲେକ୍‌ଙ୍କ ଆକ୍ରମଣରେ ମରହଟ୍ଟା ସୈନ୍ୟ କ୍ଷତବିକ୍ଷତ ହୋଇ ଦିଲ୍ଲୀରୁ ପଳାୟନ କଲେ । ଇଂରେଜମାନେ ବୃଦ୍ଧ ସମ୍ରାଟ ସାହା ଆଲାମଙ୍କୁ ମୋଗଲ ଗାଦିରେ ବସାଇ ମରହଟ୍ଟାମାନଙ୍କୁ ଅନୁଧାବନ କଲେ । ଏହି ସମ୍ରାଟ ସାହା ଆଲାମ ଏକଦା ଦିଲ୍ଲୀ ସମ୍ରାଟଙ୍କର ସାହାଜାଦା (ଜ୍ୟେଷ୍ଠପୁତ୍ର) ଭାବରେ ଦୀର୍ଘ ଚାଳିଶ ବର୍ଷ ପୂର୍ବେ କ୍ଲାଇଭ୍‌ଙ୍କ ସହ ବିଚାରବିମର୍ଶ କରୁଥିଲେ । ସମ୍ରାଟ ଗାଦିରେ ଅବରୂଢ଼ ହେବା ପରେ ରୋହିଲାମାନଙ୍କ ସହ ଯୁଦ୍ଧରେ ସେ ଦୃଷ୍ଟିଶକ୍ତି ହରାଇଥିଲେ । ଏହି ଅନ୍ଧ ବୃଦ୍ଧ ସମ୍ରାଟ ବର୍ତ୍ତମାନ ଏକ ଛିନ୍ନ ଛତ୍ର ତଳେ ବସି ଜେନେରାଲ୍ ଲେକ୍‌ଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ଲେକ୍ ତାଙ୍କର ଦାରିଦ୍ର୍ୟମଣ୍ଡିତ ଦୁଃଖଦାୟକ ପରିବେଶ ଦେଖି ବିଚଳିତ ହୋଇପଡ଼ିଥିଲେ ଓ ସମ୍ମାନର ସହ ବଞ୍ଚି ରହିବା ପାଇଁ ସମସ୍ତ ବ୍ୟବସ୍ଥା କରିବାକୁ ତାଙ୍କୁ ଆଶ୍ୱାସନା ଦେଇଥିଲେ ।

ଗଭର୍ଣ୍ଣର ଜେନେରାଲ୍ ଓ୍ୱେଲେସ୍ଲି ଏ ସମ୍ବାଦ ଶୁଣି ଗଭୀର ସନ୍ତୋଷ ପ୍ରକାଶ କଲେ ଓ ଯୁଦ୍ଧରେ ଅସାମାନ୍ୟ ସଫଳତା ପାଇଁ ଜେନେରାଲ୍ ଲେକ୍‌ଙ୍କର ଭୂୟସୀ ପ୍ରଶଂସା କଲେ । ତାଙ୍କ ନିର୍ଦ୍ଦେଶରେ ଦିଲ୍ଲୀରୁ ସଂଗୃହୀତ ପାଞ୍ଚ ଲକ୍ଷ ମୁଦ୍ରା ସୈନିକମାନଙ୍କ ମଧ୍ୟରେ ବିତରଣ କରାଗଲା । ଏହାପରେ ଉତ୍ତର ଭାରତର ବହୁ ରାଜା ମହାରାଜା ଇଂରେଜମାନଙ୍କର ଶରଣାପନ୍ନ ହେଲେ । ଏମାନଙ୍କ ମଧ୍ୟରେ ଥିଲେ ଭରତପୁରର ଜାଠ ମହାରାଜା, ଅଲଓ୍ୱାର, ଜୟପୁର ଓ ଯୋଧପୁରର ଶାସକ ବୃନ୍ଦ । ଦିଲ୍ଲୀକୁ କର୍ଣ୍ଣେଲ୍

ଅକ୍‌ଟୋର୍ ଲୋନୀଙ୍କ ଦାୟିତ୍ୱରେ ରଖି ଲେକ୍ ଆଗ୍ରାକୁ ଅଭିଯାନ ଚଳାଇଲେ । ସାମାନ୍ୟ ପ୍ରତିରୋଧ ପରେ ମରହଟ୍ଟାମାନେ ଆତ୍ମସମର୍ପଣ କଲେ ଓ ଆଗ୍ରା ବ୍ରିଟିଶ୍‌ମାନଙ୍କର ହସ୍ତଗତ ହେଲା ।

ଫ୍ରେଞ୍ଚ୍ ସେନାପତି ଜେନେରାଲ୍ ପେରନ୍ ଓ ବୁର୍କୁଇନ୍ ପଦତ୍ୟାଗ କଲା ପରେ ଅମ୍ବାଜୀ ଇଂଲିଆ ମରହଟ୍ଟା ବାହିନୀର ନୂତନ ସେନାପତି ହେଲେ । କିଛି ଦିନ ପରେ ଅମ୍ବାଜୀ ଇଂଲିଆ ସିନ୍ଧିଆଙ୍କ ସହ ବିଶ୍ୱାସଘାତକତା କରି ଇଂରେଜମାନଙ୍କ ସହ ଷଡ଼ଯନ୍ତ୍ରରେ ଲିପ୍ତ ହେଲେ । ଗୋଆଲିୟର୍ ପାଇଁ ଯୁଦ୍ଧ କରିବାର ଆବଶ୍ୟକତା ହେଲା ନାହିଁ । ଅମ୍ବାଜୀ ଗୁଆଲିୟର୍ ଦୁର୍ଗ ସ୍ୱହସ୍ତରେ ଇଂରେଜମାନଙ୍କୁ ଅର୍ପଣ କରିଦେଲେ । ଉଭୟ ଦକ୍ଷିଣ ଓ ଉତ୍ତର ଭାରତରେ ବେରାର ଓ ସିନ୍ଧିଆଙ୍କର ସର୍ବବ୍ୟାପୀ ପରାଜୟ ପରେ, ଇଂରେଜମାନଙ୍କ ସହ ସନ୍ଧି କରିବା ବ୍ୟତୀତ ସେମାନଙ୍କର ଅନ୍ୟ କୌଣସି ଚାରା ନଥିଲା । ଏହି ସନ୍ଧି ସର୍ତ୍ତ ଅନୁଯାୟୀ ସେମାନେ ଏକ ସଂକୁଚିତ ଅଞ୍ଚଳର ନାମକୁ ମାତ୍ର ରାଜା ହୋଇ ରହିଲେ । ବେରାର୍ ପୂର୍ବ ଦିଗରେ କଟକ ପ୍ରଦେଶ (ଓଡ଼ିଶା) ଏବଂ ଓ୍ୱାର୍ଦ୍ଧା ନଦୀର ପଶ୍ଚିମ ଅଞ୍ଚଳ ହାଇଦ୍ରାବାଦ୍‌ର ନିଜାମଙ୍କୁ ଛାଡ଼ିଦେଲେ । ରାଜ୍ୟର ସୁରକ୍ଷା ପାଇଁ କମ୍ପାନୀର କୌଣସି ସୈନ୍ୟସାମନ୍ତ ନିଜ ରାଜ୍ୟରେ ରଖିବା ପାଇଁ ସେ ରାଜି ନଥିଲେ । କିନ୍ତୁ ପେଶ୍ୱା ବା ନିଜାମଙ୍କ ସହ କୌଣସି ପ୍ରକାର ବିବାଦରେ ସେ କମ୍ପାନୀର ମଧ୍ୟସ୍ଥତା ଓ ସହାୟତା ନେବାକୁ ବାଧ୍ୟ ଥିଲେ ଏବଂ ନିଜ ସୈନ୍ୟ ବାହିନୀରେ କୌଣସି ୟୁରୋପୀୟ ସୈନ୍ୟ ବା ପରାମର୍ଶଦାତା ନ ରଖିବାକୁ ଚୁକ୍ତିବଦ୍ଧ ହେଲେ ।

ଡିସେମ୍ବର ୩୦ ତାରିଖ ୧୮୦୩ ମସିହାରେ ସିନ୍ଧିଆ ଇଂରେଜମାନଙ୍କ ସହିତ ସନ୍ଧି ଚୁକ୍ତିରେ ସ୍ୱାକ୍ଷର କଲେ । ରାଜ୍ୟର ବିସ୍ତୀର୍ଣ୍ଣ ଅଞ୍ଚଳ ଇଂରେଜମାନଙ୍କୁ ଅର୍ପଣ କରିବାକୁ ସେ ବାଧ୍ୟ ହୋଇଥିଲେ । ପଶ୍ଚିମ ଉପକୂଳର ବ୍ରୋଚ୍ ବନ୍ଦର ଓ ଗୁଜୁରାଟରେ ଅବସ୍ଥିତ ବହୁ ଅଞ୍ଚଳରୁ ସିନ୍ଧିଆ ବେଦଖଲ ହେଲେ । ଅଜନ୍ତା ପର୍ବତମାଳାର ଦକ୍ଷିଣରେ ଅଧିକୃତ ରାଜ୍ୟ ପେଶ୍ୱା ଓ ନିଜାମଙ୍କୁ ଓ ଉତ୍ତରରେ ଗଙ୍ଗା ଯମୁନା ମଧ୍ୟାଞ୍ଚଳରେ ଦୋଆବ୍ ଇଂରେଜମାନଙ୍କୁ ଅର୍ପଣ କଲେ । ଦିଲ୍ଲୀ ସମ୍ରାଟଙ୍କ ଉପରେ କୌଣସି ପ୍ରକାର କର୍ତ୍ତୃତ୍ୱ ଜାହିର କରିବେ ନାହିଁ ଓ ଇଂରେଜମାନଙ୍କର ବନ୍ଧୁ ଭରତପୁର ଓ ରାଜସ୍ଥାନର ରାଜାମାନଙ୍କ ସହ ଶତ୍ରୁତା ଆଚରଣ ନ କରିବାକୁ ସିନ୍ଧିଆ ଚୁକ୍ତିବଦ୍ଧ ହେଲେ । ଅଧିକନ୍ତୁ ସଂକୁଚିତ ରାଜ୍ୟ ସୀମାରେ ଦଳେ କମ୍ପାନୀ ସୈନ୍ୟ ରହିବା ପାଇଁ ସେ ସମ୍ମତ ହେଲେ ।



# ହୋଲକାରଙ୍କ ସହ ଯୁଦ୍ଧ

ବେରାର୍ ଓ ସିନ୍ଧିଆଙ୍କ ବିପର୍ଯ୍ୟୟ ପରେ ୧୮୦୪ ମସିହାରେ ଇନ୍ଦୋର୍‌ରେ ହୋଲକାରଙ୍କ ପାଳି ପଡ଼ିଲା । ୱେଲେସ୍ଲି ଭାବୁଥିଲେ ପେଶ୍ୱା, ବେରାର୍ ଓ ସିନ୍ଧିଆଙ୍କ ଅଭିଜ୍ଞତାରୁ ହୋଲକାର ଇଂରେଜଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବାକୁ ସାହସ କରିବେ ନାହିଁ । କିନ୍ତୁ ତାଙ୍କର ବିଚାରଧାରା ସମ୍ପୂର୍ଣ୍ଣ ଭ୍ରମାତ୍ମକ ପ୍ରମାଣିତ ହେଲା । ରାଜା ଯଶୋବନ୍ତ ରାଓ ହୋଲକାର ଥିଲେ ଅତ୍ୟନ୍ତ ଉଚ୍ଚାଭିଳାଷୀ ଓ ଗଭୀର ଆତ୍ମବିଶ୍ୱାସୀ । କୌଣସି ଦୁର୍ଘଟଣାରେ ଗୋଟିଏ ଆଖି ହରାଇଥିଲେ ମଧ୍ୟ ସେ ଥିଲେ ଅତ୍ୟନ୍ତ ସାହସୀ ଓ ଯୋଦ୍ଧା । ଇଂରେଜମାନଙ୍କର ଆଧିପତ୍ୟ ଓ ଅହଂଭାବ ସେ ସହ୍ୟ କରିପାରୁ ନଥିଲେ । ସେଥିପାଇଁ ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କରୁ ଚୌଥ କର ଆଦାୟ ନ କରିବାକୁ ଜେନେରାଲ୍ ଲେକ୍‌ଙ୍କ ବାରଣ ସତ୍ତ୍ୱେ ହୋଲ୍‌କାର ସେ ପ୍ରତି ଭ୍ରୂକ୍ଷେପ କରି ନଥିଲେ । ଅନ୍ୟଥା ଲେକ୍‌ଙ୍କର ନିର୍ଦ୍ଦେଶ ଅମାନ୍ୟ କରି ସେ ଯେଉଁ କଡ଼ା ଭାଷାରେ ଉତ୍ତର ଦେଲେ, ତାହା ଜେନେରାଲ୍ ଲେକ୍ ଓ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ଉତ୍କ୍ଷିପ୍ତ କରିଥିଲା । ଉଭୟ ଅନୁଭବ କଲେ ହୋଲ୍‌କାରଙ୍କୁ ଜବତ ନକଲେ ଶାନ୍ତିଶୃଙ୍ଖଳା ରକ୍ଷା କରାଯାଇପାରିବ ନାହିଁ ।

ସେହି ସମୟରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଡାଇରେକ୍ଟରମାନେ ଉପନିବେଶ ପରିବୃଦ୍ଧି ପାଇଁ ଭାରତରେ ଯୁଦ୍ଧର ପକ୍ଷପାତି ନଥିଲେ । ସେମାନଙ୍କ ମତରେ ଯୁଦ୍ଧରେ ବିପୁଳ ବ୍ୟୟ ହେତୁ, କମ୍ପାନୀର ବ୍ୟବସାୟରେ କ୍ଷତି ଘଟୁଛି । ଡାଇରେକ୍ଟରମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଗଭର୍ଣ୍ଣର ଜେନେରାଲ୍ ସେମାନଙ୍କୁ ଜଣାଇଲେ ଯେ, ହୋଲ୍‌କାରଙ୍କ ସହ ଯୁଦ୍ଧରେ କମ୍ପାନୀର ବିଶେଷ କ୍ଷତି ହେବ ନାହିଁ । ବରଂ, ମଧ୍ୟ-ଭାରତରେ ଅବାଧରେ ବ୍ୟବସାୟ ବାଣିଜ୍ୟ ଚଳାଇବା ପାଇଁ ପଥ ପରିଷ୍କାର ହୋଇଯିବ । ଇଷ୍ଟ ଇଣ୍ଡିଆ କମ୍ପାନୀର ଡାଇରେକ୍ଟରମାନଙ୍କୁ ଅଳୀକ ଆଶ୍ୱାସନା ଦେଇ,

ବ୍ରିଟିଶ୍ ସରକାରଙ୍କର ବିଧିବଦ୍ଧ ସମ୍ମତି ନ ନେଇ, ୧୮୦୪ ମସିହା ଏପ୍ରିଲ୍ ଷୋହଳ ତାରିଖରେ ଗଭର୍ଣ୍ଣର ଜେନେରାଲ୍ ହୋଲ୍‌କାରଙ୍କ ବିରୁଦ୍ଧରେ ସୈନ୍ୟ ଚାଳନା କରିବାକୁ ନିର୍ଦ୍ଦେଶ ଦେଲେ । ପରିଣତି ହେଲା ମାରାତ୍ମକ । ଉପନିବେଶ ପ୍ରତିଷ୍ଠା ଦୃଷ୍ଟିରୁ ସାମ୍ରାଜ୍ୟବାଦୀମାନଙ୍କର ଏ ନିଷ୍ପତ୍ତି ହୁଏତ ଯଥାର୍ଥ ଥିଲା । କିନ୍ତୁ ଏପ୍ରିଲ୍ ମଇମାସର ଗ୍ରୀଷ୍ମ ପ୍ରବାହରେ ସୈନ୍ୟ ଚାଳନା କରିବା ପାଇଁ ନିର୍ଦ୍ଦେଶ ଥିଲା ଏକ ବିପଜ୍ଜନକ ସାମରିକ ପଦକ୍ଷେପ ।

ଏପ୍ରିଲ୍ ଶେଷରେ ଜେନେରାଲ୍ ଲେକ୍ ହୋଲ୍‌କାରଙ୍କ ବିରୁଦ୍ଧରେ ସୈନ୍ୟ ଚାଳନା ଆରମ୍ଭ କଲେ । ହୋଲ୍‌କାର ସେତେବେଳେ ରାଜପୁତନାର ଜୟପୁରରେ ମରହଟ୍ଟାମାନଙ୍କର ଚିରାଚରିତ ଲୁଣ୍ଠନ ପ୍ରକ୍ରିୟାରେ ବ୍ୟାପୃତ ଥିଲେ । ଆକ୍ରମଣ ସମ୍ବାଦ ଶୁଣି ସେ ତୁରନ୍ତ ପ୍ରତ୍ୟାବର୍ତ୍ତନ କଲେ । ଏଣେ ପୂର୍ବ ବର୍ଷର ବର୍ଷାଭାବ ଓ ଚଳିତ ଗ୍ରୀଷ୍ମ ଋତୁର ଗ୍ରୀଷ୍ମ ପ୍ରବାହରେ ଲେକ୍‌ଙ୍କ ସୈନ୍ୟମାନେ, ବିଶେଷତଃ ୟୁରୋପିଆନ୍ ସୈନ୍ୟମାନେ ତହଲବିକଳ ହୋଇ ବିଶେଷ ଆଗେଇପାରୁ ନଥିଲେ । ଲେକ୍ ଆଶା କରୁଥିଲେ ଯେ, ପୂର୍ବ ଯୋଜନା ଅନୁଯାୟୀ ଆର୍ଥର ଓ୍ୱେଲେସ୍ଲି ଦକ୍ଷିଣରୁ ସୈନ୍ୟ ଚାଳନା କରି ତାଙ୍କ ସହ ଯୋଗ ଦେବେ । କିନ୍ତୁ ଆର୍ଥର ସମ୍ବାଦ ପଠାଇଲେ, ଦୁର୍ଭିକ୍ଷ ଓ ଖାଦ୍ୟାଭାବ ହେତୁ ତାଙ୍କ ପକ୍ଷରେ ମହୀଶୂର ଅତିକ୍ରମ କରି ଉତ୍ତରକୁ ଯିବା ସମ୍ଭବ ନୁହେଁ । ଏଣୁ ଚାରି ବାଟାଲିଅନ୍ ସିପାହୀ ଓ ଦୁଇ ବାଟାଲିଅନ୍ ୟୁରୋପୀୟ ସୈନ୍ୟ ସହ ଗୁଜୁରାଟରୁ ଆସି ଲେକ୍‌ଙ୍କ ସହ ଯୋଗଦେବାକୁ କର୍ଣ୍ଣେଲ୍ ମୁରେଙ୍କୁ ନିର୍ଦ୍ଦେଶ ଦିଆଗଲା । ଏଣେ ମଧ-ଭାରତରେ ରୌଦ୍ରତାପ ବଢ଼ିଚାଲିଲା । ୧୩୦ ଡିଗ୍ରୀ ଉତ୍ତାପରେ ଅଧିକ ଦୂର ଅଗ୍ରସର ହୋଇ ଅଂଶୁଘାତରେ ପ୍ରାଣ ଦେବା ଅପେକ୍ଷା, ସାଢ଼େ ପାଞ୍ଚ ବାଟାଲିଅନ୍ ସୈନ୍ୟ ଓ କେତେକ ଅଶ୍ୱାରୋହୀଙ୍କୁ କର୍ଣ୍ଣେଲ ମନ୍‌ସୋନ୍‌ଙ୍କ ଦାୟିତ୍ୱରେ ଛାଡ଼ି ଲେକ୍ କାନପୁର ସୈନ୍ୟଛାଉଣୀକୁ ପ୍ରତ୍ୟାବର୍ତ୍ତନ କଲେ ।

ଜେନେରାଲ୍ ଲେକ୍‌ଙ୍କ ବିଚାରରେ କର୍ଣ୍ଣେଲ୍ ମନ୍‌ସୋନ୍ ଥିଲେ ସିଂହ ପରି ସାହସୀ, କିନ୍ତୁ ତାଙ୍କର ବିଚାରବୁଦ୍ଧି ଯେ ଏତେ ନିମ୍ନମାନର ତାହା ତାଙ୍କୁ ଜଣା ନଥିଲା । କୋଟା ନିକଟସ୍ଥ ଗିରିପଥରେ ହୋଲକାରଙ୍କ ପ୍ରତ୍ୟାଗମନକୁ ପ୍ରତିରୋଧ ନ କରି, ମନ୍‌ସୋନ୍ ଏହି କ୍ଷୁଦ୍ର ସେନାବାହିନୀ ସହ ଚମ୍ବଲ ନଦୀ ପାର୍ ହୋଇ ଶତ୍ରୁରାଜ୍ୟ ମଧ୍ୟକୁ ତିରିଶ ମାଇଲ ଅଗ୍ରସର ହେଲେ । ଲେକ୍ ଏପରି ପଦକ୍ଷେପକୁ ନାପସନ୍ଦ କଲେ, କିନ୍ତୁ

ମନ୍‌ସୋନ୍ ଉତ୍ତର ଦେଲେ, ଏହାଦ୍ୱାରା ହୋଲକାରଙ୍କୁ ଯଥାବିଧି ପ୍ରତିରୋଧ କରାଯାଇ ପାରିବ। ଏହାପରେ ସେ ଆହୁରି ପଚାଶ ମାଇଲ୍ ଆଗକୁ ଗଲେ ଏବଂ ଆଶା କରୁଥିଲେ ଯେ ଶୀଘ୍ର କର୍ଣ୍ଣେଲ୍ ମୁରେଙ୍କ ସହ ମିଳିତ ହେବେ । କର୍ଣ୍ଣେଲ ମୁରେ ସେତେବେଳେ ଉଜ୍ଜୟିନୀଠାରୁ ଚାଳିଶ ମାଇଲ ଦୂରରେ । ଏହି ସମୟରେ ଏପରି ଗୋଟିଏ ଭ୍ରାନ୍ତିର ବଳୟ ସୃଷ୍ଟି ହେଲା, ଯାହାକି ଇଂରେଜ ସେନା ପକ୍ଷରେ ଥିଲା ଅତ୍ୟନ୍ତ ଅଶୁଭଙ୍କର । ମୁରେ ଶୁଣିବାକୁ ପାଇଲେ ଯେ ହୋଲକାର ତାଙ୍କର ବିରାଟ ସୈନ୍ୟବାହିନୀ ଧରି ତାଙ୍କ ଉପରେ ଆକ୍ରମଣ କରିବାକୁ ଆଗେଇ ଆସୁଛନ୍ତି । ହୋଲ୍‌କାରଙ୍କ ସାମନା କରିବା ଅପେକ୍ଷା ସେ ପଛଘୁଞ୍ଚା ଦେବାକୁ ଶ୍ରେୟସ୍କର ମନେ କଲେ । ତିନି ଚାରିଦିନ ଏପରି ପଛକୁ ଯିବା ପରେ, ଜଣାପଡ଼ିଲା ଯେ ଏ ସମ୍ବାଦ ସତ୍ୟ ନୁହେଁ । ପୁନର୍ବାର ଅଗ୍ରଗମନ କରି ସେ ଯେତେବେଳେ ଉଜ୍ଜୟିନୀରେ ପହଞ୍ଚିଲେ, କର୍ଣ୍ଣେଲ ମନସୋନ ସେତେବେଳକୁ ଉଜ୍ଜୟିନୀଠାରୁ ସତୁରି ମାଇଲ୍ ଦୂରରେ । ଏହି ଅପ୍ରତ୍ୟାଶିତ ବିଳମ୍ବ ହେତୁ ବିଭ୍ରାଟର ବଳୟ ଆହୁରି ଘନୀଭୂତ ହେଲା । ମନସୋନ୍‌ଙ୍କର ଆଶଙ୍କା ହେଲା ଯେ ମୁରେ ଆଉ ଫେରିବେ ନାହିଁ । ସେ କୋଟା ଗିରିପଥ ଆଡ଼କୁ ପ୍ରତ୍ୟାବର୍ତ୍ତନ କଲେ ଓ ଚମ୍ବଲ ନଦୀ ଅତିକ୍ରମ କରିବା ସମୟରେ ହଠାତ୍ ହୋଲକାରଙ୍କ ବିରାଟ ସୈନ୍ୟବାହିନୀର ସମ୍ମୁଖୀନ ହେଲେ । ମନସୋନ୍ ହୋଲ୍‌କାରଙ୍କ ଉପରେ ଆକ୍ରମଣ କରିବାକୁ ସାହସ କଲେ ନାହିଁ । ଓଲଟି ହୋଲ୍‌କାରଙ୍କ ଅଶ୍ୱାରୋହୀ ସେନାଙ୍କ ପ୍ରତିଆକ୍ରମଣରେ ତାଙ୍କୁ ପଳାୟନ କରିବାକୁ ହେଲା । ସେତେବେଳକୁ ବର୍ଷା ଆରମ୍ଭ ହୋଇଯାଇଥିଲା । ନଦୀନାଳ ସବୁ ଜଳପୂର୍ଣ୍ଣ, ରାସ୍ତାଘାଟ କର୍ଦ୍ଦମାକ୍ତ । ମନ୍‌ସୋନ୍ ଅର୍ଦ୍ଧାଧିକ ସୈନ୍ୟ ହରାଇ, ରାସ୍ତାରେ ସମସ୍ତ କମାଣ ଛାଡ଼ି ଅଗଷ୍ଟ ମାସରେ ଆଗ୍ରାରେ ଆଶ୍ରୟ ନେଲେ । ଦୀର୍ଘ ପଚାଶ ବର୍ଷ ମଧ୍ୟରେ ଏହାଥିଲା ଇଂରେଜମାନଙ୍କ ପାଇଁ ସବୁଠାରୁ ବଡ଼ ପରାଜୟ, ଅପମାନର ଟିକା । ଗଭର୍ଣ୍ଣର ଜେନେରାଲ୍ ୱେଲେସ୍ଲିର ଅହଂକାର ଓ ସାମ୍ରାଜ୍ୟ ପ୍ରତିଷ୍ଠାର ସ୍ୱପ୍ନ ଉପରେ କଠୋର ପଦାଘାତ ।

ଇଂରେଜମାନଙ୍କ ସହିତ ପୂର୍ବର ସହବନ୍ଧନ ଚୁକ୍ତି ସତ୍ତ୍ୱେ ସିନ୍ଧିଆ ଓ ଭରତପୁର ରାଜାମାନେ ଇଂରେଜଙ୍କୁ ସହାୟତା ନ ଦେଇ ହୋଲକାରଙ୍କ ସହ ମିତ୍ରତାର ସେତୁ ଗଢ଼ିଲେ । ବିସ୍ମୟକର ମନେ ହେଲେ ମଧ୍ୟ ଏପରି ଆଚରଣର ଯଥେଷ୍ଟ କାରଣ ଥିଲା । ୱେଲେସ୍ଲି ସିନ୍ଧିଆଙ୍କ ସହିତ ଯେଉଁ ସନ୍ଧି କରିଥିଲେ, ସେଥିରେ ଗୁଆଲିଅର୍ ଦୁର୍ଗ

ଇଂରେଜମାନେ ଦଖଲ ରଖିବାର କୌଣସି ସର୍ତ୍ତ ନଥିଲା । ଅଥଚ ବିଶ୍ୱାସଘାତକ ଅମାଜୀ ଇଂଲିଆଙ୍କଠାରୁ ଗୁଆଲିଅର ଦୁର୍ଗ ଦଖଲ ନେଇଥିବା ଇଂରେଜ ସେନାପତି, ୱେଲେସ୍ଲିଙ୍କ ନିର୍ଦ୍ଦେଶରେ, ଶାନ୍ତି ଚୁକ୍ତି ପରେ ମଧ୍ୟ ଦୁର୍ଗ ସିନ୍ଧିଆଙ୍କୁ ପ୍ରତ୍ୟର୍ପଣ କଲେ ନାହିଁ । ଗଭର୍ଣ୍ଣର ଜେନେରାଲଙ୍କ ଏ ନିଷ୍ପତ୍ତିକୁ ତାଙ୍କର ସହକର୍ମୀମାନେ ମଧ୍ୟ ସମାଲୋଚନା କଲେ । ସେମାନଙ୍କ ମତରେ ଏହାଦ୍ୱାରା ଇଂରେଜଙ୍କ କଥା ଓ କାର୍ଯ୍ୟ ଉପରେ ଭାରତୀୟମାନଙ୍କର ଆସ୍ଥା ରହିଲା ନାହିଁ ।

ସାମରିକ ଦୃଷ୍ଟିରୁ ମନସୋନ୍‌ଙ୍କର ପରାଜୟ ଓ କ୍ଷୟକ୍ଷତିଠାରୁ ଇଂରେଜମାନଙ୍କର ଖ୍ୟାତି ଉପରେ ଆଘାତ ଥିଲା ଅଧିକ ମର୍ମନ୍ତୁଦ । ଦୀର୍ଘ ପଚାଶ ବର୍ଷ ଧରି ଇଷ୍ଟ ଇଣ୍ଡିଆ କମ୍ପାନୀର କ୍ରମାଗତ ସଫଳ ଜୟଯାତ୍ରା ଯେଉଁ ଧକ୍କାପ୍ରାପ୍ତ ହେଲା, ତାହାହିଁ ଥିଲା ସେମାନଙ୍କର ଚରମ କ୍ଷତି । ହୋଲକାର କର୍ଣ୍ଣେଲ ମନସୋନଙ୍କର ଆଶ୍ରୟ ସ୍ଥଳ ଆଗ୍ରାକୁ ବାଦ୍ ଦେଇ ମଥୁରା ଦଖଲ କଲେ ଓ ଅକ୍ଟୋବର ମାସରେ ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ । ଦିଲ୍ଲୀରେ ଅବସ୍ଥାପିତ କର୍ଣ୍ଣେଲ୍ ଅକ୍ଟରଲୋନୀ ଓ କର୍ଣ୍ଣେଲ ବର୍ନଙ୍କର ପ୍ରବଳ ପ୍ରତିରୋଧ ଓ ଜେନେରାଲ୍ ଲେକ୍‌ଙ୍କର ସମଗ୍ର ସେନାବାହିନୀ ସହ ଦିଲ୍ଲୀ ଅଭିମୁଖେ ଅଭିଯାନରେ ତ୍ରସ୍ତ ହୋଇ ହୋଲକାର ବାଧ୍ୟ ହୋଇ ପଛଘୁଞ୍ଚା ଦେଲେ । ହୋଲକାର ଲେକ୍‌ଙ୍କ ସହ ସମ୍ମୁଖ ଯୁଦ୍ଧ ପାଇଁ ପ୍ରସ୍ତୁତ ନଥିଲେ । ସେ ଯମୁନା ନଦୀ ପାର ହୋଇ ଗଙ୍ଗା ଯମୁନା ମଧ୍ୟବର୍ତ୍ତୀ ଦୋଆବ ଅଞ୍ଚଳରେ ପାରମ୍ପରିକ ଲୁଟ୍‌ତରାଇ୍ ଆରମ୍ଭ କଲେ । ଇଂରେଜମାନେ ଦୋଆବ୍ ଅଞ୍ଚଳକୁ ନିକଟ ଅତୀତରେ ସିନ୍ଧିଆଙ୍କଠାରୁ ଦଖଲ ନେଇଥିଲେ । ଲେକ୍ ସହଜରେ ଛାଡ଼ି ଯିବାର ପାତ୍ର ନୁହନ୍ତି । ପନ୍ଦର ଦିନ ମଧ୍ୟରେ ଲେକ୍ ୩୫୦ ମାଇଲ୍ ଅଞ୍ଚଳ ଘୁରି ଘୁରି ଦୋଆବ୍‌ର ବିଭିନ୍ନ ସ୍ଥାନରୁ ହୋଲକାରଙ୍କୁ ଆକ୍ରମଣ କରି ତାଙ୍କର ଉଦ୍ୟମ ବ୍ୟର୍ଥ କରିଦେଲେ । ନଭେମ୍ବର ଷୋହଳ ତାରିଖରେ ସମ୍ବାଦ ମିଳିଲା ଯେ ଛତିଶ ମାଇଲ ଦୂରରେ ଫାରୁକାବାଦ୍‌ରେ ହୋଲକାର ଆଶ୍ରୟ ନେଇଛନ୍ତି । କାଳବିଳମ୍ବ ନ କରି ରାତାରାତି କେତେକ ଅଶ୍ୱାରୋହୀ ଓ ତିନି ରେଜିମେଣ୍ଟ ବ୍ରିଟିଶ୍ ଡ୍ରାଗନ୍‌ଙ୍କ ସହ ସେ ଫାରୁକାବାଦ୍‌ରେ ବଡ଼ିସକାଳୁ ହୋଲକାରଙ୍କ ନିଦ୍ରିତ ସେନାବାହିନୀ ଉପରେ ଅତର୍କିତ ଆକ୍ରମଣ କଲେ । ହୋଲକାର କୌଣସି ପ୍ରକାରେ ପଳାୟନ କଲେ । ତାଙ୍କର ତିନିହଜାର ସୈନ୍ୟ ମୃତାହତ ହେଲେ ଓ ଶହ ଶହ ଘୋଡ଼ା ଅପ୍ରସ୍ତୁତ ଅବସ୍ଥାରେ ହାଣ ଖାଇଲେ ।

ଏଥିପୂର୍ବରୁ ଭରତପୁର ରାଜାଙ୍କର ଦିଗ୍ ଦୁର୍ଗ ଉପରେ ଆକ୍ରମଣ କରି ସେଠାରେ ଆଶ୍ରୟରତ ମରହଟ୍ଟା ବାହିନୀଙ୍କୁ ଇଂରେଜମାନେ ବିଧ୍ୱସ୍ତ କରିଥିଲେ । ହୋଲକାରଙ୍କର କେତେକ ପଦାତିକ ସେନା ଥିଲେ ଭରତପୁର ଦୁର୍ଗ ମଧ୍ୟରେ ଆଶ୍ରୟପ୍ରାର୍ଥୀ । ହୋଲକାର ନିଜେ କେତେକ ଅଶ୍ୱାରୋହୀଙ୍କୁ ସାଥିରେ ଧରି ଭରତପୁର ଦୁର୍ଗ ଚାରିପଟେ ଘୂରି ବୁଲୁଥିଲେ, କାଳେ କିଛି ଆର୍ଥିକ ବା ସାମରିକ ସାହାଯ୍ୟ ମିଳିଯିବ !

ଗଭର୍ଣ୍ଣର ଜେନେରାଲ୍ ଲେକ୍‌ଙ୍କୁ ନିର୍ଦ୍ଦେଶ ଦେଇଥିଲେ ଯେ ବିଶ୍ୱାସଘାତକ ଭରତପୁର ରାଜାଙ୍କର ସମସ୍ତ ରାଜ୍ୟ ଓ ଯେତେ ଯେଉଁଠି ଛୋଟ ବଡ଼ ଦୁର୍ଗ ଅଛି, ସେ ସବୁକୁ ଦଖଲ କରିବାକୁ ହେବ । ଭାରତୀୟଙ୍କ ଦୃଷ୍ଟିରେ ଭରତପୁର ଦେଶଭକ୍ତ ହେଲେ, ଇଂରେଜଙ୍କ ଦୃଷ୍ଟିକୋଣରୁ ସେ କିପରି ବିଶ୍ୱାସଘାତକ ତାର କାରଣ ନିର୍ଣ୍ଣିତ ହେଲା ନାହିଁ । ହୋଲକାରଙ୍କୁ ଦୀର୍ଘଦିନ ଅନ୍ୱେଷଣ ଓ ଅନୁଧାବନ କରି ଲେକ୍‌ଙ୍କର ଅଶ୍ୱମାନେ କ୍ଳାନ୍ତ ଓ ଅବସନ୍ନ ହୋଇପଡ଼ିଥିଲେ । ଏଣୁ ସେ ପ୍ରଥମେ ନିଷ୍ପତ୍ତି ନେଲେ ଭରତପୁର ଦୁର୍ଗ ଆକ୍ରମଣ କରି ତାଙ୍କୁ ବଶୀଭୂତ କରିବାକୁ ହେବ । ଏହି ଦୁର୍ଗର ଚାରିପଟେ ମାଇଲ୍ ମାଇଲ୍ ବ୍ୟାପୀ ଦୀର୍ଘ ପ୍ରାଚୀର । ମାଟିରେ ନିର୍ମିତ ବେଶ୍ ମଜ୍‌ଭୁତ୍ ମୂଳଦୁଆ ଉପରେ ଚଉଡ଼ା ଉଚ୍ଚ ପ୍ରାଚୀର ଓ ତା'ର ଚାରିପଟେ ଗଡ଼ଖାଇ । ମାଟିନିର୍ମିତ ହେଲେ ମଧ୍ୟ ହାଲକା କମାଣ ଗୋଳାରେ ଏ ପାଚେରିକୁ ଭାଙ୍ଗିବା ସହଜସାଧ୍ୟ ନୁହେଁ । ଗଡ଼ଖାଇର ଗଭୀରତା ଅନ୍ୟୂନ ପାଞ୍ଚ ଛ' ଫୁଟ – ଅତିକ୍ରମ କରିବା ଦୁରୂହ ବ୍ୟାପାର । ଲେକ୍ ତିନିଥର ପ୍ରାଚୀର ଭାଙ୍ଗି ଦୁର୍ଗ ମଧ୍ୟରେ ପ୍ରବେଶ କରିବାକୁ ଉଦ୍ୟମ କରିଥିଲେ । କିନ୍ତୁ ତାଙ୍କର ଉଦ୍ୟମ ବ୍ୟର୍ଥ ହୋଇଥିଲା । ରାଜାଙ୍କ ସୈନ୍ୟମାନେ ଭିତରପଟୁ ମାଟି ଦେଇ ପ୍ରାଚୀରର ଭଙ୍ଗା ଅଂଶକୁ ଭରଣା କରି ଦେଇଥିଲେ । ବିଲବାଡ଼ିରୁ ନାଳ ଖୋଳି ଗଡ଼ଖାଇ ଜଳପୂର୍ଣ୍ଣ କରିବାକୁ ସମର୍ଥ ହୋଇଥିଲେ । ତିନିହଜାର ସୈନ୍ୟ ହତାହତ ହେବା ପରେ ଲେକ୍ ବଡ଼ କମାଣ ଓ ଅଧିକ ପଦାତିକ ସୈନ୍ୟ ପଠାଇବାକୁ ୱେଲେସ୍ଲିଙ୍କୁ ଅନୁରୋଧ କଲେ ଓ କେତେ ମାଇଲ୍ ପଛଘୁଞ୍ଚା ଦେଇ ଆକ୍ରମଣ ସ୍ଥଗିତ ରଖିଲେ । ୱେଲେସ୍ଲି ମଧ୍ୟ ଆକ୍ରମଣ ବନ୍ଦ ରଖିବା ପାଇଁ ଅନୁରୂପ ନିର୍ଦ୍ଦେଶ ଦେଲେ ।

ଭରତପୁର ରାଜା ଏହି ସାମୟିକ ସଫଳତାର ସୁଯୋଗ ନେଇ ଲେକ୍‌ଙ୍କ ସହ ସନ୍ଧି ସର୍ତ୍ତ ବିଷୟରେ ଆଲୋଚନା ଆରମ୍ଭ କଲେ ଓ ଏପ୍ରିଲ୍ ମାସରେ ସନ୍ଧି ସର୍ତ୍ତ ସ୍ୱାକ୍ଷରିତ ହେଲା । ଭରତପୁର ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କୁ କୋଡ଼ିଏ ଲକ୍ଷ ଟଙ୍କା ଯୁଦ୍ଧ କ୍ଷତିପୂରଣ

ଦେବାକୁ ସମ୍ମତ ହେଲେ ଓ ପ୍ରତିବଦଳରେ ତାଙ୍କ ରାଜ୍ୟ ସୀମାରେ କୌଣସି ପରିବର୍ତ୍ତନ ହେଲା ନାହିଁ ।

ଏହି ସମୟରେ ଇନ୍ଦୋର ରାଜା ହୋଲକାର ଅତି ଦୁର୍ଦିନ ଦେଇ ଗତି କରୁଥିଲେ । କମ୍ପାନୀ ସେନା ବିରୁଦ୍ଧରେ ମିଳିତ ସଂଗ୍ରାମ କରିବା ପାଇଁ ତାଙ୍କର ସବୁ ପ୍ରଚେଷ୍ଟା ବିଫଳ ହୋଇଥିଲା । ସିନ୍ଧିଆ, ଭରତପୁର ଓ ରୋହିଲା ନେତା ଅମୀର ଖାଁ ସହିତ ହୋଲକାରଙ୍କ ସବୁ ଷଡ଼ଯନ୍ତ୍ର ବ୍ୟର୍ଥ ହେଲା । ଇଂରେଜଙ୍କ ବିରୁଦ୍ଧରେ ଅସନ୍ତୁଷ୍ଟ ହେବା ପାଇଁ ଏ ପ୍ରତ୍ୟେକ ରାଜ୍ୟର ସ୍ୱତନ୍ତ୍ର କାରଣ ଥିଲେ ମଧ୍ୟ ଏକ ମିଳିତ ଭାରତୀୟ ଅଭିଯାନ ଗଢ଼ିବା ସମ୍ଭବ ହୋଇନଥିଲା । ଗୁଆଲିୟର୍ ଦୁର୍ଗର ପ୍ରତ୍ୟର୍ପଣ ବିଷୟରେ ବିବାଦ ହେତୁ, ସିନ୍ଧିଆ ନିଜ ଶ୍ୱଶୁରଙ୍କ ପ୍ରରୋଚନାରେ ଉତ୍ତରକୁ ଅଭିଯାନ ଆରମ୍ଭ କରିବା ସମୟରେ ସେ ଭରତପୁର ରାଜାଙ୍କ ସନ୍ଧି ସମ୍ବାଦ ଓ ୱେଲେସ୍ଲିଙ୍କଠାରୁ ଏକ ଧମକପୂର୍ଣ୍ଣ ପତ୍ର ପାଇ ଭୟରେ ଦକ୍ଷିଣକୁ ଫେରିଲେ । ସିନ୍ଧିଆ ଓ ଭରତପୁରଠାରୁ ସାହାଯ୍ୟ ସହଯୋଗର କୌଣସି ଆଶା ନ ଦେଖି, ହୋଲକାର ଯତ୍‌ସାମାନ୍ୟ ସୈନ୍ୟସାମନ୍ତ ସହ ଚମ୍ବଲ ନଦୀ ପାର୍ ହୋଇ ଆପଣା ରାଜ୍ୟକୁ ପଳାୟନ କଲେ ।

ଏପ୍ରିଲ୍ ମାସରେ ଯୁଦ୍ଧ ଆରମ୍ଭ କରିବା ପାଇଁ ୱେଲେସ୍ଲି ଜେନେରାଲ୍ ଲେକ୍‌ଙ୍କୁ ନିର୍ଦ୍ଦେଶ ଦେଇଥିଲେ । ମଇ ମାସ ଆରମ୍ଭରେ ଗ୍ରୀଷ୍ମ ପ୍ରବାହ ବହିବାକୁ ଆରମ୍ଭ କଲା ଓ ପୁନଶ୍ଚ ତାଙ୍କରି ଆଦେଶରେ ସେନା ଚାଳନା ବିଳମ୍ବିତ ହେଲା । ଭାରତରେ ଉପନିବେଶ ପ୍ରତିଷ୍ଠା ଓ ପରିବୃଦ୍ଧି ପାଇଁ ତାଙ୍କର ଆଦେଶ କାର୍ଯ୍ୟକାରୀ ହେବା ପୂର୍ବରୁ ତାଙ୍କୁ ପଦତ୍ୟାଗ କରିବା ପାଇଁ ଆଦେଶ ଆସି ପହଞ୍ଚିଲା । କମ୍ପାନୀର ପରିଚାଳନା ବୋର୍ଡ଼ ଓ ବ୍ରିଟିଶ ସରକାରଙ୍କ ସମସ୍ତ ରୋଷ ବହନ କରି ୧୮୦୫ ମସିହା ମଇ ମାସରେ ସେ ଭାରତ ତ୍ୟାଗ କରି ଲଣ୍ଡନ ଯାତ୍ରା କଲେ । ଜୁଲାଇ ମାସରେ ଲର୍ଡ଼ କର୍ଣ୍ଣୱାଲିସ୍ ଦ୍ୱିତୀୟ ଥର ପାଇଁ ଗଭର୍ଣ୍ଣର ଜେନେରାଲ୍ ନିଯୁକ୍ତ ହୋଇ ଭାରତରେ ପହଞ୍ଚିଲେ ।

ଦ୍ୱିତୀୟ ଥର ଭାରତ ଆଗମନ ବେଳକୁ କର୍ଣ୍ଣୱାଲିସ୍‌ଙ୍କ ବୟସ ୬୭ ବର୍ଷ ଓ ସେ ରୋଗାକ୍ରାନ୍ତ । ସେତେବେଳେ କମ୍ପାନୀର ଆର୍ଥିକ ପରିସ୍ଥିତି ଅତି ଦୁର୍ବଳ ଓ ବାରମ୍ବାର ଯୁଦ୍ଧରେ ଲିପ୍ତ ରହି ଖଜଣାଖାନା ଶୂନ୍ୟ । ଜେନେରାଲ୍ ଲେକ୍‌ଙ୍କ ସହିତ ବ୍ୟକ୍ତିଗତ ଆଲୋଚନା କରିବା ପାଇଁ ସେ କଲିକତାରେ ପହଞ୍ଚିବାର ଦୁଇ ମାସ ପରେ ଉତ୍ତର

ଭାରତ ଯାତ୍ରା କଲେ । ତାଙ୍କର ଅସୁସ୍ଥତା ବଢ଼ିଗଲା ଓ ରାସ୍ତାରେ ଗାଜୀପୁରଠାରେ ତାଙ୍କର ଅକାଳ ମୃତ୍ୟୁ ହେଲା । କାଉନ୍‌ସିଲ୍‌ର ବରିଷ୍ଠ ସଭ୍ୟ ସାର୍ ଜର୍ଜ ବର୍ଲୋ ଗଭର୍ଣ୍ଣର ଜେନେରାଲ୍ ପଦର ଦାୟିତ୍ୱ ଗ୍ରହଣ କଲେ । କମ୍ପାନୀର ଜଣେ ଅତି ପୁରାତନ କର୍ମଚାରୀ ଭାବରେ ସାର୍ ଜର୍ଜ ଭାରତ ସମ୍ପର୍କରେ ବିଶେଷ ଅଭିଜ୍ଞ ଥିଲେ ଓ କମ୍ପାନୀର ବ୍ୟବସାୟିକ ସ୍ୱାର୍ଥରକ୍ଷା ପାଇଁ ୱେଲେସ୍ଲିଙ୍କର ଯୁଦ୍ଧ ନୀତି ପରିହାର କରିବାକୁ ସେ ଥିଲେ ବଦ୍ଧପରିକର ।

ଜେନେରାଲ୍ ଲେକ୍ ନୂତନ ଗଭର୍ଣ୍ଣର ଜେନେରାଲ୍ ସାର୍ ଜର୍ଜ ବାର୍ଲୋଙ୍କ ଯୁଦ୍ଧ-ବିରୋଧୀ ନୀତି ସହିତ ଏକମତ ହୋଇ ନ ପାରି ନିଜକୁ ସମ୍ପୂର୍ଣ୍ଣ ଅସହାୟ ମନେ କରୁଥିଲେ । ହୋଲକାର ଓ ତାଙ୍କର ସହଯୋଗୀ ରୋହିଲା ଖଣ୍ଡର ଅମୀର ଖାଁ ଏବେ ବି ଥିଲେ ଲେକ୍‌ଙ୍କ ଦୃଷ୍ଟିରେ କମ୍ପାନୀର ସବୁଠାରୁ ବଡ଼ ଶତ୍ରୁ । ସେପ୍ଟେମ୍ବର ମାସରେ ସମ୍ବାଦ ମିଳିଲା ଯେ ହୋଲ୍‌କାର ଓ ଅମୀର ଖାଁ ଶିଖ୍ ଶାସକ ମହାରାଜା ରଣଜିତ୍ ସିଂହଙ୍କ ସହଯୋଗ କାମନା କରି ରାଜପୁତାନା ବାଟେ ଅମୃତସର୍ ଯାତ୍ରା କରିଛନ୍ତି । ଅବଶ୍ୟ ପଞ୍ଜାବର ଯୁବକ ମହାରାଜା ସେମାନଙ୍କୁ ଆଫଗାନ୍‌ମାନଙ୍କ ସହ ଚକ୍ରାନ୍ତ କରୁଥିବାର ସନ୍ଦେହ କଲେ ଓ ସେମାନଙ୍କର ପରାମର୍ଶ ଓ ପ୍ରରୋଚନା ଉପରେ ତାଙ୍କର କୌଣସି ଆସ୍ଥା ନଥିଲା । ଏ ସମ୍ବାଦ ପାଇ ଲେକ୍ କେତେକ ବଛାବଛା ସୈନ୍ୟଙ୍କୁ ପଞ୍ଜାବକୁ ପଠାଇ ହୋଲକାରଙ୍କ ପ୍ରତ୍ୟାବର୍ତ୍ତନ ପଥ ଅବରୋଧ କଲେ ଓ ନିଜେ ସତ୍‌ଲେଜ୍ ନଦୀ ପାର୍ ହୋଇ ପଞ୍ଜାବରେ ପ୍ରବେଶ କଲେ । ରଣଜିତ୍ ସିଂ ଦିନେ ଛଦ୍ମବେଶରେ ଲେକ୍‌ଙ୍କ ଶିବିରରେ ପ୍ରବେଶ କରି ଇଂରେଜମାନଙ୍କର ଅସ୍ତ୍ରଶସ୍ତ୍ର ଓ ସୈନ୍ୟଶୃଙ୍ଖଳା ଦେଖି ସ୍ତମ୍ଭୀଭୂତ ହୋଇଗଲେ ଓ ଇଂରେଜମାନଙ୍କ ବିରୁଦ୍ଧରେ ହୋଲକାରଙ୍କୁ ସହାୟତା ପ୍ରତ୍ୟାଖ୍ୟାନ କଲେ ।

ଏକ ପ୍ରକାର ଅସହାୟ ପରିସ୍ଥିତିରେ ପଡ଼ି ଇଂରେଜମାନଙ୍କ ସହ ସନ୍ଧି କରିବା ବ୍ୟତୀତ ହୋଲକାରଙ୍କ ପାଖରେ ଅନ୍ୟ କୌଣସି ଚାରା ନଥିଲା ଓ ସେଥିପାଇଁ ଆବଶ୍ୟକ ସ୍ୱାର୍ଥ ତ୍ୟାଗ କରିବା ସକାଶେ ସେ ତୁରନ୍ତ ପ୍ରସ୍ତୁତ ହୋଇଗଲେ । ଦୁଇଜଣ ମରହଟ୍ଟା ପ୍ରତିନିଧିଙ୍କୁ ଲେକ୍‌ଙ୍କ ସହ ଆଲୋଚନା କରିବା ପାଇଁ ପଠାଗଲା । କର୍ଣ୍ଣୱାଲିସ୍ ଓ ବାର୍ଲୋଙ୍କ ଅଭିମତ ଲେକ୍‌ଙ୍କୁ ଜଣାଥିଲା । ସେ ବାର୍ଲୋଙ୍କ ପରାମର୍ଶ ଓ ନିର୍ଦ୍ଦେଶ ଅନୁଯାୟୀ ହୋଲକାରଙ୍କୁ ଅତି ଅନୁକୂଳ ସର୍ତ୍ତରେ ସନ୍ଧିଚୁକ୍ତି ଅର୍ପଣ କଲେ । ସର୍ତ୍ତ

ଅନୁଯାୟୀ ହୋଲକାରଙ୍କୁ ରାଜଧାନୀ ଇନ୍ଦୋରକୁ ଫେରିଯିବାକୁ ହେବ ଓ ଚମ୍ବଲ ନଦୀର ଉତ୍ତରରେ କୌଣସି ଅଞ୍ଚଳ ଦାବି ନକରି ନିଜ ରାଜ୍ୟ ସୀମା ମଧ୍ୟରେ ସମସ୍ତ ଅଞ୍ଚଳ ସେ ଭୋଗ ଦଖଲ କରିବେ । ଅନ୍ୟ ପକ୍ଷରେ କମ୍ପାନୀର ସହମତି ବିନା କୌଣସି ବିଦେଶୀଙ୍କୁ ସେ ଆପଣା ସୈନ୍ୟବାହିନୀରେ ସାମିଲ କରିବେ ନାହିଁ । ଅମୀର ଖାଁ ଏସବୁ ସର୍ତ୍ତ ଦେଖି ଅନୁଭବ କଲେ, ଏ ସବୁ "ଦେବପ୍ରେରିତ ଅନୁଗ୍ରହ" । ହୋଲକାର ମଧ୍ୟ ଆନନ୍ଦରେ ବିହ୍ୱଳିତ ହେଲେ । ବେଆସ୍ ନଦୀ କୂଳରେ ଡିସେମ୍ବର ମାସରେ ସନ୍ଧିଚୁକ୍ତି ସ୍ୱାକ୍ଷରିତ ହେଲା ।

ଏହାପରେ ଉଭୟ ପକ୍ଷରେ ଯେଉଁ ଦାରୁଣ ପ୍ରତିକ୍ରିୟା ଦେଖାଦେଲା ତାହା ଅବର୍ଣ୍ଣନୀୟ । ଲେକ୍ ବାର୍ଲୋଙ୍କ ନୀତି ଓ କାର୍ଯ୍ୟକ୍ରମର ବିରୋଧ କରି ୧୮୦୬ ମସିହା ଜାନୁଆରୀ ମାସରେ ଇସ୍ତଫା ଦେଲେ । ହୋଲକାର ଇନ୍ଦୋର ଫେରି ସମ୍ପୂର୍ଣ୍ଣ ମଦ୍ୟାସକ୍ତ ହୋଇଗଲେ । ସକାଳ ସନ୍ଧ୍ୟା ଅହର୍ନିଶି ନିଶାଗ୍ରସ୍ତ ହୋଇ ରାଜ କାର୍ଯ୍ୟ ଚଳାଇବା ସମ୍ଭବପର ହେଲା ନାହିଁ । ୧୮୦୮ ମସିହାରେ ହୋଲକାର ସମ୍ପୂର୍ଣ୍ଣ ପାଗଳ ହୋଇଗଲେ । ତାଙ୍କୁ ଚବିଶ ଘଣ୍ଟା ଦଉଡ଼ିରେ ବାନ୍ଧି ରଖିବା ବ୍ୟତୀତ ଗତ୍ୟନ୍ତର ନଥିଲା । ତିନିବର୍ଷ ପରେ ୧୮୧୧ ମସିହାରେ ଅତି ଦୁଃଖରେ ପାଗଳ ଯଶୋବନ୍ତ ରାଓ ହୋଲକାର ଦେହତ୍ୟାଗ କଲେ ।



# ପଞ୍ଜାବରେ ଅଙ୍ଗୁଳି ପ୍ରବେଶ

ସାର୍ ଜର୍ଜ ବାର୍ଲୋଙ୍କ ନିଷ୍କାମ ସାମରିକ ନୀତି ଅଧିକ ଦିନ ସମାଦୃତ ହେଲା ନାହିଁ । ସାତ ସମୁଦ୍ର ପାର୍ ହୋଇ ଆସିଥିବା ବିଦେଶୀଙ୍କ ପକ୍ଷରେ ଭାରତରେ ଉପନିବେଶ ପ୍ରତିଷ୍ଠା କରିବା ଓ ନିର୍ବିବାଦରେ ବ୍ୟବସାୟ କରିବା ପାଇଁ କ୍ଷେତ୍ର ବିଶେଷରେ ଯେ ଅସ୍ତ୍ର ପ୍ରୟୋଗ ଆବଶ୍ୟକ, ଏ ବିଷୟରେ ଇଂରେଜମାନେ ସତର୍କ ହୋଇ ଉଠିଲେ । ବାର୍ଲୋଙ୍କ ଲାଭଜନକ ଅର୍ଥନୈତିକ କାର୍ଯ୍ୟକ୍ରମ କମ୍ପାନୀର ଡାଇରେକ୍ଟରମାନଙ୍କୁ ବେଶ୍ ସୁହାଉଥିଲା । ୧୮୦୬ ମସିହାରେ ବ୍ରିଟେନ୍‌ର ଟୋରୀ ଦଳର ନେତା ପ୍ରଧାନମନ୍ତ୍ରୀ ପିଟ୍‌ଙ୍କ ମୃତ୍ୟୁ ପରେ ନୂତନ କ୍ୟାବିନେଟ୍ ଇଷ୍ଟ ଇଣ୍ଡିଆ କମ୍ପାନୀର ଡାଇରେକ୍ଟରମାନଙ୍କ ସୁପାରିଶ ଅନୁଯାୟୀ ଜର୍ଜ ବାର୍ଲୋଙ୍କୁ ଗଭର୍ଣ୍ଣର ଜେନେରାଲ୍ ପଦରେ ସ୍ଥାୟୀ ନିଯୁକ୍ତି ଦେବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ଅଳ୍ପ ଦିନ ପରେ ମନ୍ତ୍ରୀ ପରିଷଦ ତାଙ୍କର ମତ ପରିବର୍ତ୍ତନ କରି ଅର୍ଲ ଅଫ ଲଡରଡେଲ୍‌ଙ୍କୁ ନିଯୁକ୍ତି ଦେବାପାଇଁ ପ୍ରସ୍ତାବ ଦେଲେ । ଲଡରଡେଲ୍ ଥିଲେ ଫ୍ରି-ଟ୍ରେଡ୍ ବା ଅବାଧ ବାଣିଜ୍ୟ ନୀତିର ସମର୍ଥକ ଏବଂ ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କୁ ପ୍ରଦତ୍ତ ସୁବିଧା ସୁଯୋଗର ଘୋର ବିରୋଧୀ । ଏ ନିଯୁକ୍ତି ସମ୍ପର୍କରେ କମ୍ପାନୀର ପରିଚାଳନା ବୋର୍ଡ଼ ଓ ସରକାରଙ୍କ ମଧ୍ୟରେ ତୁମୁଳ ବିବାଦ ଆରମ୍ଭ ହେଲା । ପରିଶେଷରେ ଉତ୍‌କ୍ଷିପ୍ତ କମ୍ପାନୀ ଡାଇରେକ୍ଟରମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭାରତୀୟ ସମସ୍ୟା ଉପରେ ବିଶେଷଜ୍ଞ ରୂପେ ବିବେଚିତ ଲର୍ଡ଼ ମିଣ୍ଟୋଙ୍କୁ ଗଭର୍ଣ୍ଣର ଜେନେରାଲ୍ ପଦରେ ନିଯୁକ୍ତି ଦିଆଗଲା ଓ ଜର୍ଜ ବାର୍ଲୋ ମାଡ୍ରାସର ଗଭର୍ଣ୍ଣର ନିଯୁକ୍ତ ହେଲେ ।

କମ୍ପାନୀର ଭାରତରେ ଅବସ୍ଥାପିତ କର୍ମଚାରୀମାନଙ୍କୁ ମିଣ୍ଟୋଙ୍କ ସମ୍ପର୍କରେ ବିଶେଷ କିଛି ଜଣା ନଥିଲା । ସେ ଦୁଃସାହସୀ ବା ଦୁର୍ଦ୍ଧର୍ଷ ପ୍ରକୃତିର ନଥିଲେ, ସେ

ଥିଲେ ଶାନ୍ତଶିଷ୍ଟ, ସାବଧାନ ଓ ସତର୍କ । ଭାରତର ପରିସ୍ଥିତିକୁ ଦେଖି ସେ ଅନୁଭବ କଲେ ଯେ, କର୍ଣ୍ଣୱାଲିସ୍ ଓ ବାର୍ଲୋଙ୍କ ପରରାଷ୍ଟ୍ର ନୀତି ଓ ସାମରିକ ଆଭିମୁଖ୍ୟ ଶାସନ ପାଇଁ ଉପଯୋଗୀ ନୁହେଁ । ବୁନ୍ଦେଲଖଣ୍ଡର ପାର୍ବତୀୟ ଅଞ୍ଚଳର କ୍ଷୁଦ୍ର ରାଜାମାନେ ଥିଲେ ଜଣେ ଜଣେ ଡାକୁ ସର୍ଦ୍ଦାର । ମରହଟ୍ଟା ରାଷ୍ଟ୍ର ଖଣ୍ଡବିଖଣ୍ଡିତ ହେବା ପରେ ସିନ୍ଧିଆ, ହୋଲକାର, ଭରତପୁର ଓ ରୋହିଲାଖଣ୍ଡର ସୈନ୍ୟବାହିନୀରୁ ବିତାଡ଼ିତ ବେକାର ସୈନ୍ୟମାନେ ଡକାୟତି ବୃତ୍ତି ଗ୍ରହଣ କରୁଥିଲେ । ମୁଖ୍ୟତଃ ସେମାନେ 'ପିଣ୍ଡାରୀ' ନାମରେ ପରିଚିତ ଥିଲେ । ଗାଁ ଗଣ୍ଡାରେ, ରାସ୍ତାଘାଟରେ ଅତର୍କିତ ଆକ୍ରମଣ, ହତ୍ୟା ଓ ଲୁଟ୍‌ତରାଜ୍ କରି ସେମାନେ ଜୀବିକା ଚଳାଉଥିଲେ । ଜେନେରାଲ୍ ଲେକ୍ ଜର୍ଜ ବାର୍ଲୋଙ୍କୁ ସତର୍କ କରି ଦେଇଥିଲେ ଯେ, ଏମାନଙ୍କୁ ନିଶ୍ଚିହ୍ନ ନ କଲେ ମଧ୍ୟଭାରତରେ ଶାସନ ଚାଲିପାରିବ ନାହିଁ କି ଶୃଙ୍ଖଳା ରହିବ ନାହିଁ । କିନ୍ତୁ ବାର୍ଲୋ ଏ ପ୍ରତି ଭ୍ରୂକ୍ଷେପ କରି ନଥିଲେ । ସମୟ କ୍ରମେ ପିଣ୍ଡାରୀଙ୍କ ଅତ୍ୟାଚାର ବଢ଼ି ବଢ଼ି ଚାଲିଥିଲା । ମିଣ୍ଟୋ ଘୋଷଣା କଲେ ଯେ ବୁନ୍ଦେଲଖଣ୍ଡରେ ଶାନ୍ତି ରକ୍ଷା କରିବା ଇଂରେଜମାନଙ୍କର ମୁଖ୍ୟ କାର୍ଯ୍ୟ ହେବ ଏବଂ ସେଥିପାଇଁ ଆବଶ୍ୟକ ସାମରିକ ପଦକ୍ଷେପ ନେବାକୁ ସେ କୁଣ୍ଠିତ ହେବେ ନାହିଁ ।

ଯୁଦ୍ଧର ପ୍ରସାର ବନ୍ଦ ରଖିବା ପାଇଁ କର୍ଣ୍ଣୱାଲିସ୍ ଓ ବାର୍ଲୋ ପୂର୍ବତନ ଗଭର୍ଣ୍ଣର ଜେନେରାଲ୍ ୱେଲେସ୍ଲିଙ୍କର ରଣନୀତିରେ ପୂର୍ଣ୍ଣଚ୍ଛେଦ ଟାଣିଥିଲେ ଏବଂ ନିଷ୍ପତ୍ତି ନେଇଥିଲେ ଯେ ଯମୁନା ନଦୀ ବ୍ରିଟେନ୍‌ର ଭାରତୀୟ ଉପନିବେଶର ଉତ୍ତର ପଶ୍ଚିମ ସୀମା ହୋଇ ରହିବ । ଫଳରେ ଲେକ୍ ଦିଲ୍ଲୀ ଦଖଲ କଲାପରେ ଯମୁନା ନଦୀର ଉତ୍ତର ପଶ୍ଚିମରେ ଥିବା ଯେଉଁ ଛୋଟ ଶିଖ୍ ରାଜ୍ୟଗୁଡ଼ିକ ଇଂରେଜମାନଙ୍କର ଶରଣାପନ୍ନ ହୋଇଥିଲେ, ଆପଦ ବିପଦରେ ସେମାନେ ନିଜକୁ ଅସହାୟ ମନେ କଲେ । ଏହି ସମୟରେ ପଞ୍ଜାବର ଶାସକ ମହାରାଜା ରଣଜିତ୍ ସିଂ ଏକ ଶକ୍ତିଶାଳୀ ଶିଖ୍ ରାଷ୍ଟ୍ର ପ୍ରତିଷ୍ଠା କରିବାକୁ ଉଦ୍ୟମ କରୁଥିଲେ । ବାର୍ଲୋଙ୍କ ଶାନ୍ତିନୀତିର ସୁବିଧା ନେଇ ସେ ଶତଲେଜ୍ କୂଳବର୍ତ୍ତୀ କ୍ଷୁଦ୍ର ଶିଖ୍ ରାଜ୍ୟଗୁଡ଼ିକୁ ନିଜ କର୍ତ୍ତୃତ୍ୱାଧୀନ କରିବାକୁ ପ୍ରୟାସ କଲେ । ଏହି ପ୍ରୟାସର ସୁଦୂର ପରିଣତି ବିଷୟରେ ଇଂରେଜମାନେ ସଜାଗ ଥିଲେ । ଲର୍ଡ଼ ମିଣ୍ଟୋ ମଧ୍ୟ ଯମୁନା ନଦୀକୁ ଭାରତ ସୀମା ରୂପେ ଗ୍ରହଣ କରିବାକୁ

ପ୍ରସ୍ତୁତ ନଥିଲେ । ଏଣୁ କ୍ଷୁଦ୍ର ଶିଖ୍ ରାଜ୍ୟମାନଙ୍କୁ ସୁରକ୍ଷା ଦେବାକୁ ବଚନବଦ୍ଧ ଇଂରେଜ ଶକ୍ତି ମହାରାଜା ରଣଜିତ ସିଂହଙ୍କୁ ଏ ପ୍ରୟାସରୁ କ୍ଷାନ୍ତ ହେବା ପାଇଁ ପରାମର୍ଶ ଦେବାକୁ ନିଷ୍ପତ୍ତି ନେଲେ । ମିଣ୍ଟୋ ମେଟକାଫ୍‌ଙ୍କୁ ଆପଣାର ପ୍ରତିନିଧି ରୂପେ ରଣଜିତ୍ ସିଂଙ୍କ ଦରବାରକୁ ପ୍ରେରଣ କଲେ । ସେ ସମୟରେ ନେପୋଲିୟନ୍‌ଙ୍କ ଭାରତ ଆକ୍ରମଣର ସମ୍ବାଦ ଇଂରେଜମାନଙ୍କ ମଧ୍ୟରେ କୋକୁଆଭୟ ସୃଷ୍ଟି କରିଥାଏ । ରଣଜିତ୍‌ଙ୍କ ଦରବାରରେ ମେଟକାଫ୍‌ଙ୍କର ପ୍ରସ୍ତାବ ହେଲା, ଫରାସୀମାନଙ୍କୁ ସେ କୌଣସି ପ୍ରକାର ପ୍ରଶ୍ରୟ ନ ଦେଲେ, ସେ ଇଂରେଜଙ୍କର ପୂର୍ଣ୍ଣ ସାହାଯ୍ୟ ପାଇ ପାରିବେ । କିନ୍ତୁ ରଣଜିତ୍ ସିଂ ଫରାସୀ ଆକ୍ରମଣ ସମ୍ବାଦକୁ କୌଣସି ଗୁରୁତ୍ୱ ପ୍ରଦାନ କରୁନଥିଲେ । ଇଂରେଜମାନଙ୍କର ଅଯଥା ଫରାସୀ ଆତଙ୍କର ସୁବିଧା ନେଇ ସେ ଦାବି କଲେ, ଯଦି ଇଂରେଜମାନେ ପୂର୍ବ ପଞ୍ଜାବର କ୍ଷୁଦ୍ର ଶିଖ୍ ରାଜ୍ୟମାନଙ୍କ ଉପରେ ତାଙ୍କର ପ୍ରଭୁତ୍ୱ ସ୍ୱୀକାର କରିବେ, ତାହେଲେ ସେ ଇଂରେଜଙ୍କୁ ସହାୟତା ଦେବେ । ମେଟ୍‌କାଫ୍‌ଙ୍କଠାରୁ ଏହାର କୌଣସି ନିର୍ଦ୍ଦିଷ୍ଟ ଉତ୍ତର ମିଳିଲା ନାହିଁ । ବସ୍ତୁତଃ, ଇଂରେଜମାନେ ସମୟ ଗଡ଼ାଇବାକୁ ଚାହୁଁଥିଲେ । ସିଧାସଳଖ ଜବାବ ନଦେବା ପାଇଁ ମେଟ୍‌କାଫ୍‌ଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ।

ଏ ମଧ୍ୟରେ ୟୁରୋପ୍‌ର ପରିସ୍ଥିତିରେ ବହୁତ କିଛି ପରିବର୍ତ୍ତନ ଘଟିଲା । ନେପୋଲିୟନ୍‌ଙ୍କ ଭାରତ ଆକ୍ରମଣ ଆଶଙ୍କା, ଯାହା ମିଣ୍ଟୋଙ୍କୁ ଏତେ ବିବ୍ରତ କରୁଥିଲା ତା ପାଣିଫୋଟକା ପରି ମିଳେଇଗଲା । ଫରାସୀମାନଙ୍କ ସୂତ୍ରରୁ ଭାରତ ଉପରେ ବିପଦର ସମ୍ଭାବନା ନାହିଁ ବୋଲି ଲଣ୍ଡନ ଅଫିସ୍ ଆଶ୍ୱାସନା ଦେଲେ । ଏଣୁ ମିଣ୍ଟୋ ଓ ତାଙ୍କର କାଉନ୍‌ସିଲ୍ ବାର୍ଲୋଙ୍କ ଯୁଦ୍ଧ ପରିହାର ନୀତିକୁ କ୍ଷେତ୍ର ବିଶେଷରେ ତ୍ୟାଗ କରିବା ପାଇଁ ବଦ୍ଧପରିକର ହେଲେ । ଦିଲ୍ଲୀରେ ଅବସ୍ଥାପିତ କର୍ଣ୍ଣେଲ ଅକ୍ଟରଲୋନୀଙ୍କୁ ଶତ୍‌ଲେଜ୍ ନଦୀକୂଳସ୍ଥ ଲୁଧିଆନାକୁ ସୈନ୍ୟ ଚାଳନା କରିବାକୁ ନିର୍ଦ୍ଦେଶ ଦିଆଗଲା । ସବୁ ଦିଗରୁ ପ୍ରସ୍ତୁତ ହେବା ପରେ ଶତ୍‌ଲେଜ୍ ନଦୀର ଦକ୍ଷିଣରେ ଥିବା କ୍ଷୁଦ୍ର ଶିଖ୍ ରାଜ୍ୟମାନଙ୍କୁ ଇଂରେଜମାନେ ସୁରକ୍ଷା ଓ ସମର୍ଥନ ଦେବେ ବୋଲି ମହାରାଜା ରଣଜିତ୍ ସିଂଙ୍କୁ ଜଣାଇ ଦେବାକୁ ମେଟ୍‌କାଫ୍‌ଙ୍କୁ ନିର୍ଦ୍ଦେଶ ଦିଆଗଲା । ମହାରାଜା ଏ ସମ୍ବାଦ ଶୁଣି ବିସ୍ମିତ ଓ ବିଚଳିତ ହୋଇ ଉଠିଲେ । ଇଂରେଜମାନଙ୍କ ସହିତ ଯୁଦ୍ଧରେ ଲମ୍ଫ

ଦେବାକୁ ସେ ପ୍ରସ୍ତୁତ ନଥିଲେ । ଅମୃତସରରୁ ତୁରନ୍ତ ଲାହୋର ଯାଇ ସେ ପରାମର୍ଶଦାତା ପରିଷଦ ସହିତ ବିଚାରବିମର୍ଶ କଲେ । ପରିଶେଷରେ କମ୍ପାନୀ ସହ ଯୁଦ୍ଧରେ ଝାସ ନ ଦେବାକୁ ସେ ନିଷ୍ପତ୍ତି ନେଲେ ।

ଏପ୍ରିଲ୍ ୨୫ ତାରିଖ ୧୮୦୯ ମସିହାରେ ଅମୃତସରରେ ମହାରାଜା ରଣଜିତ୍ ସିଂ ଓ ଇଷ୍ଟ ଇଣ୍ଡିଆ କମ୍ପାନୀ ମଧ୍ୟରେ ମୈତ୍ରୀଚୁକ୍ତି ସ୍ୱାକ୍ଷରିତ ହେଲା । ପ୍ରଥମେ ପ୍ରଥମେ ଉଭୟ ପକ୍ଷ ପରସ୍ପରକୁ ସନ୍ଦେହ କରୁଥିଲେ । ମିଣ୍ଟୋ ଆଶଙ୍କା କରୁଥିଲେ ଯେ, ପଞ୍ଜାବର ଶିଖ୍ ରାଜା ହୁଏତ ମରହଟ୍ଟାମାନଙ୍କ ସହ ମିଳିତ ହୋଇ କମ୍ପାନୀ ବିରୁଦ୍ଧରେ ରଣଧ୍ୱଜା ଉତ୍ତୋଳନ କରିବେ । ରଣଜିତ୍ ସିଂ ସେହିପରି ଭାବୁଥିଲେ, ଇଂରେଜମାନେ ହୁଏତ ଶତ୍‌ଲେଜ୍ କୂଳବର୍ତ୍ତୀ ଶିଖ୍ ରାଜାମାନଙ୍କ ସହ ମିଶି କେଉଁଦିନ ଶାନ୍ତି ସର୍ତ୍ତ ଭଙ୍ଗ କରିବେ । କାଳକ୍ରମେ ଉଭୟ ପକ୍ଷର ଆଶଙ୍କା ମଉଳିଗଲା । ଏହାପରେ ରଣଜିତ୍ ସିଂ ୩୦ ବର୍ଷ ଧରି ରାଜୁତି କଲେ– କିନ୍ତୁ ଇଂରେଜମାନଙ୍କ ସହ ବିନା ରକ୍ତପାତରେ ।



# ବାଣିଜ୍ୟରୁ ସାମ୍ରାଜ୍ୟ ବିସ୍ତାର

ମିଣ୍ଟୋ ଭାରତର ଗଭର୍ଣ୍ଣର ଜେନେରାଲ୍ ପଦ ଗ୍ରହଣ କଲାବେଳକୁ ବ୍ରିଟିଶ୍ ଇଷ୍ଟ ଇଣ୍ଡିଆ କମ୍ପାନୀର ପଞ୍ଜିକରଣର ଦୁଇ ଶହ ବର୍ଷ ସମାପ୍ତ ହୋଇଥିଲା । ଇଷ୍ଟ ଇଣ୍ଡିଆ କମ୍ପାନୀ ୧୬୦୪ ମସିହାରେ ଲଣ୍ଡନରେ ପଞ୍ଜୀକୃତ ହେଲା । ମୁଖ୍ୟ ଉଦ୍ଦେଶ୍ୟ– ଭାରତ ଓ ଅନ୍ୟ ପୂର୍ବାଞ୍ଚଳ ଦେଶମାନଙ୍କ ସହ ଲାଭଜନକ ବାଣିଜ୍ୟ ବ୍ୟବସାୟ କରିବା; ସ୍ଥାନୀୟ ରାଜା, ନବାବ ଓ ଶାସକମାନଙ୍କୁ ତଡ଼ି ଉପନିବେଶ ସ୍ଥାପନ କରିବା ନୁହେଁ । ପ୍ରଥମ ଅବସ୍ଥାରେ ବ୍ୟବସାୟ କରିବାକୁ ଯାଇ ସ୍ଥାନୀୟ ଶାସକ ବିଶେଷତଃ ମୋଗଲ ଦରବାର ଓ ତାଙ୍କର ସୁବେଦାରମାନଙ୍କ କରୁଣା ଓ ସହୃଦୟତା ଲାଭ କରିବା ପାଇଁ କମ୍ପାନୀକୁ ଆପ୍ରାଣ ଉଦ୍ୟମ କରିବାକୁ ହୋଇଥିଲା । କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ, ଆଉରଙ୍ଗଜେବଙ୍କ ମୃତ୍ୟୁ ଓ ମୋଗଲ ଶାସନର ଅଧଃପତନ ପରେ, ଭାରତରେ କୌଣସି ଶକ୍ତିଶାଳୀ କେନ୍ଦ୍ର ସରକାର ରହିଲା ନାହିଁ । ଇଷ୍ଟ ଇଣ୍ଡିଆ କମ୍ପାନୀର ପରିଚାଳକମାନେ ବାଣିଜ୍ୟର ଆବଶ୍ୟକତା ଦୃଷ୍ଟିରୁ ସ୍ଥାନୀୟ ଶାସକମାନଙ୍କ ସହିତ ବନ୍ଧୁତା ସ୍ଥାପନ କଲେ । କ୍ଷେତ୍ର ବିଶେଷରେ ବନ୍ଧୁତା ଶତ୍ରୁତାରେ ମଧ୍ୟ ପରିଣତ ହେଲା । ଦୃଢ଼ କେନ୍ଦ୍ର ଶାସନ ଅଭାବରେ, ସ୍ଥାନୀୟ ରାଜା ଓ ନବାବଙ୍କ ମଧ୍ୟରେ ନାନାପ୍ରକାର ବିବାଦ ଦେଖାଦେଲା । କମ୍ପାନୀର ପରିଚାଳକମାନେ ଏ ବିବାଦର ସୁଯୋଗ ନେଇ ଜଣେ ଶାସକଙ୍କୁ ଅନ୍ୟ ଜଣକ ବିରୁଦ୍ଧରେ ପ୍ରୟୋଗ କରି ଫାଏଦା ଉଠାଇଲେ । ଏହି ପ୍ରକ୍ରିୟା ଅଷ୍ଟାଦଶ ଶତାବ୍ଦୀର ମଧ୍ୟାନ୍ତର ପର୍ଯ୍ୟନ୍ତ ସକ୍ରିୟ ରହିଲା ।

୧୭୫୭ ଖ୍ରୀଷ୍ଟାବ୍ଦରେ ପଲାସି ଯୁଦ୍ଧରେ କମ୍ପାନୀର ସେନାପତି କ୍ଲାଇଭ୍‌ଙ୍କ ଜୟଲାଭ, ମୁର୍ଶିଦାବାଦ୍‌ର ନବାବ ସିରାଜଉଦ୍ଦୌଲାଙ୍କ ପତନ ଓ ମୀରଜାଫରଙ୍କ ମୃତ୍ୟୁ ପରେ ବଙ୍ଗ ଦେଶର ଶାସନ ଦାୟିତ୍ୱ କ୍ରମେ କମ୍ପାନୀ ଉପରେ ନ୍ୟସ୍ତ ହେଲା । ଏଣିକି ସ୍ଥାନୀୟ ନବାବ ବାଦ୍‌ଶାହାମାନଙ୍କଠାରୁ ଉତ୍କୋଚ ଗ୍ରହଣ ଓ ଅବୈଧ ଅର୍ଥ ଉପାର୍ଜ୍ଜନ ଓ

ନୂତନ ଉପନିବେଶ ପ୍ରତିଷ୍ଠା ହେଲା କମ୍ପାନୀର କର୍ତ୍ତାମାନଙ୍କର ମୁଖ୍ୟ କାର୍ଯ୍ୟ । ପଚାଶ ବର୍ଷ ମଧ୍ୟରେ ପରିବର୍ତ୍ତନର ଏହି ଘୂର୍ଣ୍ଣିବାୟୁ ସାରା ଭାରତରେ ବ୍ୟାପିଗଲା । ହାଇଦ୍ରାବାଦ୍ ପରି କେତେକ ରାଜ୍ୟ କମ୍ପାନୀର ବଶ୍ୟତା ସ୍ୱୀକାର କରି ସନ୍ଧିସୂତ୍ରରେ ଆବଦ୍ଧ ହେଲେ । ଦକ୍ଷିଣରେ ମହୀଶୂର ଯୁଦ୍ଧରେ ପରାସ୍ତ ହୋଇ ଟିପୁ ସୁଲ୍‌ତାନ୍ ନିଶ୍ଚିହ୍ନ ହୋଇଗଲେ । ମରହଟ୍ଟାମାନେ ବିଭିନ୍ନ ଦଳରେ ବିଭକ୍ତ ହୋଇ ଯୁଦ୍ଧରେ ପରାଜିତ ହୋଇ କମ୍ପାନୀର ବଶ୍ୟତା ସ୍ୱୀକାର କରିଥିଲେ । ପୂର୍ବରେ ବଙ୍ଗ, ବିହାର, ଅଯୋଧ୍ୟାଠାରୁ ଆରମ୍ଭ କରି ଦିଲ୍ଲୀ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ଇଂରେଜମାନଙ୍କର ଶାସନାଧୀନ ହେଲା ।

ଭାରତରେ ବ୍ରିଟିଶ୍ ଉପନିବେଶର ସୀମା ଯେତିକି ବଢ଼ିଚାଲିଲା କମ୍ପାନୀ ଶାସନର କଳୁଷତା ଓ ଅପାରଗତା ସେତିକି ପରିମାଣରେ ବୃଦ୍ଧି ପାଇଲା । ଗ୍ରେଟ୍ ବ୍ରିଟେନ୍‌ରେ ମଧ୍ୟ ଇଷ୍ଟ ଇଣ୍ଡିଆ କମ୍ପାନୀର ଭାରତ ଶାସନ ବିରୁଦ୍ଧରେ କ୍ରୋଧ, ଅସୂୟା ଓ ଅସନ୍ତୋଷ ସେତିକି ପରିବ୍ୟାପ୍ତ ହେଲା । ବ୍ରିଟିଶ୍ ପାର୍ଲିଆମେଣ୍ଟ ଓ ମନ୍ତ୍ରୀ ପରିଷଦରେ ଇଷ୍ଟ ଇଣ୍ଡିଆ କମ୍ପାନୀର ବହୁ ସମର୍ଥକ ଥିଲେ ମଧ୍ୟ ଅନେକ ନବଜାଗ୍ରତ ପୁଞ୍ଜିପତି, ଶିଳ୍ପଗୋଷ୍ଠୀ କମ୍ପାନୀ ଓ ତା'ର କର୍ମକର୍ତ୍ତାମାନଙ୍କ କାର୍ଯ୍ୟକଳାପ, ବିଶେଷତଃ ଭାରତରେ କମ୍ପାନୀର ଏକଚାଟିଆ ବ୍ୟବସାୟ ଅଧିକାରର ବିରୋଧ କରୁଥିଲେ । ପାର୍ଲିଆମେଣ୍ଟ ଅନୁଭବ କଲେ ଯେ ଭାରତ ପରି ଏଡ଼େ ବିରାଟ ଦେଶର ଶାସନ ପରିଚାଳନା ଦାୟିତ୍ୱ ଏକ ବାଣିଜ୍ୟ ସଂସ୍ଥା ଉପରେ ନ୍ୟସ୍ତ କରାଯାଇ ନ ପାରେ । ୧୭୭୩ ଖ୍ରୀଷ୍ଟାବ୍ଦରେ ପାର୍ଲିଆମେଣ୍ଟ ଏକ ରେଗୁଲେଟିଂ ଆକ୍ଟ ପ୍ରଣୟନ କରି ବ୍ୟବସ୍ଥା ରଖିଲେ ଯେ ଏଣିକି ଇଷ୍ଟ ଇଣ୍ଡିଆ କମ୍ପାନୀ ପରିବର୍ତ୍ତେ ଗ୍ରେଟ୍ ବ୍ରିଟେନ୍‌ର ରାଜା (ଅର୍ଥାତ୍ ବ୍ରିଟିଶ୍ ମନ୍ତ୍ରୀ ପରିଷଦ) ଭାରତର ଗଭର୍ଣ୍ଣର ଜେନେରାଲ୍, ବେଙ୍ଗଲ କାଉନ୍‌ସିଲ୍ ଓ କଲିକତା ସୁପ୍ରିମ୍ କୋର୍ଟର ସଦସ୍ୟମାନଙ୍କୁ ନିଯୁକ୍ତ କରିବେ । ୧୭୮୪ ଖ୍ରୀଷ୍ଟାବ୍ଦରେ ପ୍ରଧାନମନ୍ତ୍ରୀ ପିଟ୍‌ଙ୍କ ପ୍ରଣୋଦିତ 'ଇଣ୍ଡିଆ ଆକ୍ଟ'ରେ କମ୍ପାନୀର କେତେକ ବାହ୍ୟିକ ଶାସନ କ୍ଷମତାରେ ହସ୍ତକ୍ଷେପ ନ କଲେ ମଧ୍ୟ ଶାସନର ଅସଲ ଚାବିକାଠିର ଦାୟିତ୍ୱ ନ୍ୟସ୍ତ କଲେ ବ୍ରିଟିଶ୍ ମନ୍ତ୍ରୀସଭା ଦ୍ୱାରା ନିଯୁକ୍ତ 'ବୋର୍ଡ୍ ଅଫ୍ କଣ୍ଟ୍ରୋଲ୍' ବା 'ନିୟନ୍ତ୍ରଣ ପରିଷଦ' ହାତରେ । ଏହି ନିୟନ୍ତ୍ରଣ ପରିଷଦର ପ୍ରଥମ ଚେଆର୍‌ମ୍ୟାନ୍ ହେଲେ ପ୍ରଧାନମନ୍ତ୍ରୀ ପିଟ୍‌ଙ୍କ ବନ୍ଧୁ ମିଷ୍ଟର ଡୁଣ୍ଡା । ଏହାଦ୍ୱାରା ଗଭର୍ଣ୍ଣର ଜେନେରାଲ୍‌ଙ୍କ ନିରଙ୍କୁଶ କ୍ଷମତା ପ୍ରୟୋଗ ବ୍ୟାଧି ଯେ ଲୋପ ହେଲା ତା ନୁହେଁ, କିନ୍ତୁ ବ୍ରିଟିଶ ମନ୍ତ୍ରୀମାନେ ଭାରତୀୟ ବ୍ୟାପାରରେ ହସ୍ତକ୍ଷେପ କରିବା ପାଇଁ କଣ୍ଟା ଦୂର ହେଲା ।

୧୮୧୩ ମସିହାରେ କମ୍ପାନୀର ସନନ୍ଦର ନବୀକରଣ ସମୟ ଆସିଲା ବେଳକୁ ପୁନର୍ବାର ବ୍ରିଟିଶ ପୁଞ୍ଜିପତିଙ୍କ ମଧ୍ୟରେ ବିବାଦ ଉଗ୍ର ରୂପରେ ଆବିର୍ଭୂତ ହେଲା । ପାର୍ଲିଆମେଣ୍ଟର ଦୁଇ ମୁଖ୍ୟ ଦଳ ମଧ୍ୟରୁ କ୍ଷମତାସୀନ ଟୋରୀ ଦଳ ଥିଲେ ଇଷ୍ଟ ଇଣ୍ଡିଆ କମ୍ପାନୀର ସମର୍ଥକ । ଅଥଚ୍ ହୁଇଗ୍‌ମାନେ ଥିଲେ ସବୁକ୍ଷେତ୍ରରେ କମ୍ପାନୀର କାର୍ଯ୍ୟକଳାପର ବିରୋଧୀ । ଏହି ବିରୋଧ ପଛରେ କୌଣସି ନୀତି ବା ଆଦର୍ଶ କାର୍ଯ୍ୟ କରୁନଥିଲା । ଉଭୟ ଦଳର ନେତା ଥିଲେ ନବଜାଗ୍ରତ ପୁଞ୍ଜିପତିମାନେ । ଅଧିକ କ୍ଷମତା, ସୁବିଧା ସୁଯୋଗ ଓ ସମ୍ପଦ ହାସଲ କରିବା ପାଇଁ ସେମାନଙ୍କ ମଧ୍ୟରେ ଚାଲିଥିବା ଅନ୍ତର୍ବିବାଦର ଏହାଥିଲା ପ୍ରତିଛବି । ୧୮୧୩ ମସିହାର ଭାରତ ଶାସନ ଆଇନ୍ କମ୍ପାନୀର ଚୀନ୍ ସହିତ ଚା’ ବ୍ୟବସାୟକୁ ବାଦ୍ ଦେଇ, ଇଷ୍ଟ ଇଣ୍ଡିଆ କମ୍ପାନୀର ଅନ୍ୟ ସବୁ ଏକଚାଟିଆ ବାଣିଜ୍ୟ ଅଧିକାରକୁ ପ୍ରତ୍ୟାହାର କରି ନେଇଥିଲେ । ଏହା ଥିଲା ଦୁଇଟି ଭିନ୍ନ ଗୋଷ୍ଠୀର ପୁଞ୍ଜିପତିମାନଙ୍କ ମଧ୍ୟରେ ବିବାଦର ଏକ ଅସ୍ଥାୟୀ ସମାଧାନ ।

ସେହି ବର୍ଷ ଲର୍ଡ୍ ମିଣ୍ଟୋ ଭାରତରୁ ବିଦାୟ ନେଲେ । ସେତେବେଳକୁ ଭାରତର ଆର୍ଥିକ ଅବସ୍ଥା ଥିଲା ଅତି ଶୋଚନୀୟ । ଇଷ୍ଟ ଇଣ୍ଡିଆ କମ୍ପାନୀର ବିଭବ ଓ ଖ୍ୟାତି ଯେତିକି ବଢ଼ିଚାଲିଥିଲା, ଭାରତୀୟ ଜନସାଧାରଣ ସେତିକି ଦରିଦ୍ରତର ହେଉଥିଲେ । ବ୍ରିଟିଶ ସରକାର ଗଭର୍ଣ୍ଣର ଜେନେରାଲ୍ ନିଯୁକ୍ତି କ୍ଷମତା ହାତକୁ ନେବା ପରେ, ଅବଶ୍ୟ କେତେଜଣ ଦକ୍ଷ ବ୍ୟକ୍ତି ଭାରତର ମୁଖ୍ୟ ଶାସକ ଦାୟିତ୍ୱ ଗ୍ରହଣ କରିଥିଲେ । କର୍ଣ୍ଣୱାଲିସ୍, ୱେଲେସ୍ଲି ଓ ମିଣ୍ଟୋ ବ୍ୟକ୍ତିଗତ ଭାବରେ ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ ମଧ୍ୟ ଭାରତର ଚାଷୀ, ଶ୍ରମଜୀବୀ ଓ କାରିଗରମାନଙ୍କର ଅବସ୍ଥାର ଉନ୍ନତି ପାଇଁ କେହି କିଛି କରିନଥିଲେ । କର୍ଣ୍ଣୱାଲିସ୍ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଥା ପ୍ରଚଳନ କରି ଇଂରେଜ ଅଧିକାରୀ ଓ ବଙ୍ଗ ବିହାରର ଚାଷୀକୁଳ ମଧ୍ୟରେ ଇଂରେଜମାନଙ୍କ ପ୍ରତି ଅନୁରକ୍ତ ଏକ ନୂତନ ସମ୍ଭ୍ରାନ୍ତ ଜମିଦାର ଗୋଷ୍ଠୀ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ । ଏହାଦ୍ୱାରା କମ୍ପାନୀ ପାଇଁ ଭୂ-ରାଜସ୍ୱ ଆଦାୟ କରିବାର ଏକ ଦୃଢ଼ ମାଧ୍ୟମ ସୃଷ୍ଟି କରାଯାଇଥିଲା ସତ୍ୟ, ମାତ୍ର ଏହାଦ୍ୱାରା କୃଷିରେ ଉନ୍ନତି ହୋଇନଥିଲା ବା କୃଷକମାନଙ୍କର ଆର୍ଥିକ ଅବସ୍ଥାରେ କୌଣସି ପରିବର୍ତ୍ତନ ଘଟି ନଥିଲା । ଏପରିକି ଚାଷୀ ଓ ଚାଷର ଉନ୍ନତି ପାଇଁ କୌଣସି ନୂତନ ପଦ୍ଧତି ବା ଯୋଜନାର ମଧ୍ୟ ସୂତ୍ରପାତ କରାଯାଇନଥିଲା ।

ସପ୍ତଦଶ ଶତାବ୍ଦୀରେ ଇଂରେଜମାନେ ଭାରତକୁ ଆସିବା ସମୟରେ ସେମାନଙ୍କର ମୁଖ୍ୟ ବ୍ୟବସାୟ ଥିଲା ଭାରତରୁ ମହାର୍ଘ ସୂକ୍ଷ୍ମ ବସ୍ତ୍ର, ମସଲା ଓ କଞ୍ଚାମାଲ୍ ଇଂଲଣ୍ଡକୁ ଆମଦାନୀ କରିବା । କାଳକ୍ରମେ ବାଣିଜ୍ୟର ସ୍ୱରୂପ ବଦଳିଗଲା । ବସ୍ତ୍ର ପରିବର୍ତ୍ତେ କମ୍ପାନୀ ଭାରତରୁ ସୂତା ନେଇ, ଶିଳ୍ପ ବିପ୍ଳବ ଫଳରେ ଇଂଲଣ୍ଡରେ ପ୍ରତିଷ୍ଠିତ ଉନ୍ନତ କଳକାରଖାନାମାନଙ୍କରେ କପଡ଼ା ପ୍ରସ୍ତୁତ କରି ଅଧିକ ମୂଲ୍ୟରେ ଭାରତକୁ ରପ୍ତାନୀ କଲେ । ଫଳରେ ବସ୍ତ୍ର ଉତ୍ପାଦନକାରୀ ତନ୍ତୀ ସମ୍ପ୍ରଦାୟ କ୍ରମେ ବେକାର ଓ ଦରିଦ୍ର ହେବାକୁ ଲାଗିଲେ । ଢାକାର ଉନ୍ନତ ସୂକ୍ଷ୍ମ ସିଲ୍କ୍ କପଡ଼ା ପ୍ରସ୍ତୁତକାରକ ବୁଣାକାରମାନଙ୍କର ବ୍ୟବସାୟ ଏହି ପ୍ରକ୍ରିୟାରେ ସମ୍ପୂର୍ଣ୍ଣ ଲୋପ ପାଇଗଲା । ବଙ୍ଗଳା ଓ ଦକ୍ଷିଣ ଭାରତରେ ହସ୍ତଶିଳ୍ପରେ ନିଯୁକ୍ତ କାରିଗରମାନେ ସ୍ୱାଧୀନ ବଣିକମାନଙ୍କୁ ମଧ୍ୟ ସେମାନଙ୍କର ପଣ୍ୟ ବିକ୍ରୟ କରି ପାରୁନଥିଲେ । ଅନ୍ତର୍ଦେଶୀୟ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ କମ୍ପାନୀର ଏକଚାଟିଆ ଏକାଧିପତ୍ୟ ଯୋଗୁ ଭାରତୀୟ ବଣିକମାନେ ବଡ଼ ଧରଣର ବ୍ୟବସାୟ ଓ ଅର୍ଥନୈତିକ ସଂଗଠନରୁ ସମ୍ପୂର୍ଣ୍ଣ ବିତାଡ଼ିତ ହୋଇଥିଲେ । ବ୍ରିଟିଶ୍ ବଣିକମାନେ କାଳକ୍ରମେ ସାମ୍ରାଜ୍ୟବାଦୀ ଶୋଷକ ଶ୍ରେଣୀରେ ପରିଣତ ହେଲେ ।



# ଗୁର୍ଖା-ସମର

ଭାରତର ଗଭର୍ଣ୍ଣର ଜେନେରାଲ୍ ପଦରେ ମିଣ୍ଟୋଙ୍କ ଉତ୍ତରାଧିକାରୀ ଅର୍ଲ ଅଫ୍ ମଏରା ଗ୍ରେଟ୍ ବ୍ରିଟେନ୍‌ର ଏକ ସମ୍ଭ୍ରାନ୍ତ ପରିବାରର ଦାୟାଦ ଏବଂ ବ୍ରିଟିଶ୍ ରାଜବଂଶର ପ୍ରିନ୍ସ ରିଜେଣ୍ଟଙ୍କର ଜଣେ ବିଶିଷ୍ଟ ବନ୍ଧୁ। ପରକାଳରେ ସେ ବ୍ରିଟେନ୍‌ରେ ଓ ଏ ଦେଶରେ ମାରକୁଇସ୍ ଅଫ୍ ହେଷ୍ଟିଂସ୍ ନାମରେ ପରିଚିତ । ହେଷ୍ଟିଂସ୍ ଗଭର୍ଣ୍ଣର ଜେନେରାଲ୍ ନିଯୁକ୍ତ ହେବା ସମୟରେ, ମେଟ୍‌କାଫ୍ ଥିଲେ ଦିଲ୍ଲୀରେ କମ୍ପାନୀର ପ୍ରତିନିଧି । ମେଟ୍‌କାଫ୍‌ଙ୍କ ପିତା ତାଙ୍କ ନିକଟକୁ ଲଣ୍ଡନରୁ ଏକ ପତ୍ରରେ ଲେଖିଥିଲେ "ନୂତନ ଗଭର୍ଣ୍ଣର ଜେନେରାଲ୍ ଜଣେ ଉଚ୍ଚମନା ବ୍ୟକ୍ତି, କିନ୍ତୁ ଅତି ଖୋସାମତ୍-ପ୍ରିୟ ଓ ବଦ୍‌ଖର୍ଚ୍ଚୀ । ଏଠି ସେ ଋଣରେ ବୁଡ଼ି ରହିଛନ୍ତି ।" ହେଷ୍ଟିଂସ୍ ବଦ୍‌ଖର୍ଚ୍ଚୀ ଥିଲେ ସତ୍ୟ, କିନ୍ତୁ ଦୁର୍ନୀତିପରାୟଣ ନଥିଲେ । ଭାରତ ସମ୍ପର୍କରେ ତାଙ୍କର କୌଣସି ପୂର୍ବାନୁଭୂତି ନଥିଲା । ପରନ୍ତୁ ଭାରତରେ ପହଞ୍ଚି ତାଙ୍କର ଧାରଣା ହେଲା ଯେ ଏ ଦେଶରେ କାର୍ଯ୍ୟ କରୁଥିବା ଇଷ୍ଟ ଇଣ୍ଡିଆ କମ୍ପାନୀର କର୍ମଚାରୀମାନେ ଅତି ଦକ୍ଷ ଓ କର୍ତ୍ତବ୍ୟପରାୟଣ । କମ୍ପାନୀର ଭାରତ ଶାସନର ଭିତିରି ସମସ୍ୟାଗୁଡ଼ିକ ବୁଝିବାକୁ ତାଙ୍କର ଆଗ୍ରହ ନଥିଲା । ଭାରତର ଶାସନ ଓ କାର୍ଯ୍ୟନିର୍ବାହ ସମ୍ପର୍କରେ ତାଙ୍କର ଆକଳନ ଥିଲା ସମ୍ପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ ।

ସ୍ଥାନୀୟ ରାଜା, ନବାବ ଓ ଶାସକଗୋଷ୍ଠୀ ପ୍ରତି ତାଙ୍କର ମନୋଭାବ ଥିଲା ଭିନ୍ନ । ସେ ବିଚାରୁଥିଲେ, ଯେଉଁ ରାଜା ବା ନବାବମାନଙ୍କ ସହ ଚୁକ୍ତି କରି ବ୍ରିଟିଶ୍ ଶକ୍ତି ସେମାନଙ୍କର ରାଜଗାଦିକୁ ସ୍ୱୀକୃତି ଦେଇଛନ୍ତି, ସେମାନଙ୍କୁ ନିଜ ବାଟରେ ଶାସନ କରିବାକୁ ସୁଯୋଗ ଦେବା ଉଚିତ । ସେମାନଙ୍କର ଆଭ୍ୟନ୍ତରୀଣ ଶାସନରେ ବ୍ରିଟିଶ୍ ହସ୍ତକ୍ଷେପ ସମ୍ପୂର୍ଣ୍ଣ ଅନାବଶ୍ୟକ । ଅଥଚ ଭାରତକୁ ଆସିବାର ନ' ମାସ ପରେ ହେଷ୍ଟିଂସ୍ ଉତ୍ତର ଭାରତର ବିଭିନ୍ନ ଅଞ୍ଚଳରେ ପରିଭ୍ରମଣ କରିବା ସମୟରେ ଅନୁଭବ କଲେ ଯେ ଭାରତର ରାଜା ଓ ନବାବଙ୍କ ଶାସନାଧୀନ ଅଞ୍ଚଳଠାରୁ ଖୋଦ୍ ବ୍ରିଟିଶ୍ କମ୍ପାନୀ

ଦ୍ୱାରା ଶାସିତ ଅଞ୍ଚଳର ଅଧିବାସୀମାନେ ଅଧିକ ସୁଖରେ ଅଛନ୍ତି । ଏପରି ତୁଳନାତ୍ମକ ସିଦ୍ଧାନ୍ତ ଥିଲା ଭ୍ରାନ୍ତ ଓ ଭିତ୍ତିହୀନ । ସମୟକ୍ରମେ ସେ ଅବଗତ ହେଲେ ଯେ ଉଭୟ ଅଞ୍ଚଳର ଅଧିବାସୀମାନଙ୍କ ମଧ୍ୟରେ ବିଦେଶୀମାନଙ୍କ ପ୍ରତି ବିଦ୍ୱେଷ ଓ ଅସହିଷ୍ଣୁତା ଭରି ରହିଛି ।

ହେଷ୍ଟିଂସ୍ ଉତ୍ତର ଭାରତରେ ପରିଭ୍ରମଣ କରିବା ସମୟରେ ଦକ୍ଷିଣରେ ସ୍ଥାନେ ସ୍ଥାନେ ଛୋଟ ଛୋଟ ବିଦ୍ରୋହ ଓ ସଂଘର୍ଷ ଦେଖାଦେଲା । ଉତ୍ତର ସିର୍‌କାର୍‌ର ରାଜା ଓ ଜମିଦାରମାନେ ଦୀର୍ଘ ପଚାଶ ବର୍ଷ ଧରି କମ୍ପାନୀର ଶାସନାଧୀନ ଥିଲେ ମଧ୍ୟ ମଝିରେ ମଝିରେ ସେମାନଙ୍କ ମଧ୍ୟରେ ବିବାଦ ଓ ସଂଘର୍ଷ ଦେଖା ଦେଉଥିଲା । ମାତ୍ର କମ୍ପାନୀର ସୈନ୍ୟବାହିନୀ ଯତ୍‌ସାମାନ୍ୟ ଶକ୍ତି ପ୍ରୟୋଗ କରି ସେମାନଙ୍କୁ ଜବତ୍ କରିବାରେ ସମର୍ଥ ହେଉଥିଲେ । କଟକ ପ୍ରଦେଶ (ଓଡ଼ିଶା) ୱେଲେସ୍ଲିଙ୍କ ଅମଳରୁ ବେରାର୍‌ର ଭୋନସ୍ଲାଙ୍କବର୍ଗୀ ଶାସନରୁ ମୁକ୍ତ ହୋଇ ୧୮୦୩ ମସିହାରେ ଇଂରେଜମାନଙ୍କର ହସ୍ତଗତ ହୋଇଥିଲା । କଲିକତାର ଇଂରେଜ କର୍ମଚାରୀମାନେ ଏହି ପ୍ରଦେଶର ରାଜସ୍ୱ ଅତି ଉଚ୍ଚ ହାରରେ ଧାର୍ଯ୍ୟ କରିଥିଲେ । ଚିରସ୍ଥାୟୀ ବନ୍ଦୋବସ୍ତର ନିୟମ ଅନୁସରଣ କରି ଓଡ଼ିଶାର ବହୁ ଜମିଦାର ନିର୍ଦ୍ଦିଷ୍ଟ ଦିନର ସନ୍ଧ୍ୟା ପୂର୍ବରୁ ଧାର୍ଯ୍ୟ ରାଜସ୍ୱ କମ୍ପାନୀ ତହବିଲ୍‌ରେ ଦାଖଲ କରି ନପାରିବାରୁ ସେମାନଙ୍କୁ ଜମିଦାରୀ ସତ୍ତ୍ୱରୁ ବେଦଖଲ କରାଯାଉଥିଲା । କମ୍ପାନୀର କିରାଣି ଶ୍ରେଣୀର ଲୋକେ ଚକ୍ରାନ୍ତ କରି, ଉତ୍କୋଚ୍ ବଦଳରେ ବହୁ ବଙ୍ଗବାସୀ ଦଲାଲ୍‌ଙ୍କୁ ଓଡ଼ିଶାର ଜମିଦାରୀଗୁଡ଼ିକୁ ଖରିଦ୍ କରିବାରେ ସାହାଯ୍ୟ କରୁଥିଲେ । ପୁରୀ ରାଜାଙ୍କ ପ୍ରତି ଉତ୍କଳବାସୀମାନଙ୍କର ଯେଉଁ ମାନସମ୍ମାନ ଥିଲା, କମ୍ପାନୀ ଶାସକମାନେ ଓ ତାଙ୍କର ଅଧସ୍ତନ ବଙ୍ଗୀୟ କର୍ମଚାରୀମାନେ ତାହା ରକ୍ଷା କରୁନଥିଲେ । ଏପରିକି ଯେଉଁ ଇଂରେଜ କର୍ମକର୍ତ୍ତାମାନେ ଓଡ଼ିଶା ଶାସନ ଦାୟିତ୍ୱରେ ଥିଲେ, ସେମାନେ ମଧ୍ୟ ଓଡ଼ିଶା ଚାଷୀ କୁଳର ଦୁରବସ୍ଥା କମ୍ପାନୀ ଦୃଷ୍ଟିକୁ ଆଣୁ ନଥିଲେ ।

ଏହି ଅନାଚାର ଓ ପ୍ରଶାସନିକ ବିଶୃଙ୍ଖଳା ବିରୁଦ୍ଧରେ ଓଡ଼ିଶାରେ କ୍ରମେ ଅସନ୍ତୋଷର ଦାନା ବାନ୍ଧିଲା । ୧୮୧୭ ମସିହାରେ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ଖୋର୍ଦ୍ଧାର ପାଇକମାନେ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ଇଂରେଜ ଶକ୍ତିର ମୁକାବିଲା କରିବା ଲାଗି ସେମାନଙ୍କର ଆଧୁନିକ ଅସ୍ତ୍ରଶସ୍ତ୍ର

ଓ ସାମରିକ ତାଲିମ ନଥିଲେ ମଧ ସେମାନେ ଖଣ୍ଡା, ତଲୱାର ଓ ବର୍ଛା ଧରି ଖୋର୍ଦ୍ଧା ଓ ପୁରୀରେ ଆକ୍ରମଣ ଆରମ୍ଭ କଲେ । ପୁରୀର କଲେକ୍ଟର କେତେକ ବଛା ସିପାହୀଙ୍କ ସହାୟତାରେ କଟକ ପଳାଇ ଆସିଲେ । ଏ ମଧ୍ୟରେ କଲିକତାରୁ କମ୍ପାନୀର ନୂତନ ସୈନ୍ୟ କଟକରେ ପହଞ୍ଚିବା ପରେ ଅବସ୍ଥା ଶାନ୍ତ ପଡ଼ିଲା । ବିଦ୍ରୋହୀମାନେ ପରାଜିତ ହେଲେ ଓ ସେନାପତି ଜଗବନ୍ଧୁ ୧୮୨୫ ମସିହା ପର୍ଯ୍ୟନ୍ତ ଅଜ୍ଞାତବାସରେ ରହିବା ପରେ ଧରାପଡ଼ିଲେ । ପ୍ରଖ୍ୟାତ ଐତିହାସିକ ଓ ଗବେଷକ ସାର୍ ପେଣ୍ଡେରେଲ୍ ମୁନ (ଆଇ.ସି.ଏସ୍.)ଙ୍କ ମତରେ ଇଂରେଜମାନେ ଜଗବନ୍ଧୁଙ୍କ ପ୍ରତି ପ୍ରତିହିଂସାପରାୟଣ ନ ହୋଇ ତାଙ୍କୁ କିଛି ପେନ୍‌ସନ୍ ପ୍ରଦାନ କରି କଟକ ପଠାଇଦେଲେ । ତାଙ୍କର ମୃତ୍ୟୁ ସମ୍ପର୍କରେ ଅନ୍ୟ ବହୁ ନାଟକୀୟ କିମ୍ବଦନ୍ତୀ ମଧ ଶୁଣାଯାଏ । ସତ୍ୟ ଯାହା ହେଉନା କାହିଁକି, ଓଡ଼ିଆ ପାଇକର ଶିରୋମଣି ବକ୍ସି ଜଗବନ୍ଧୁ ଯେ ସ୍ୱାଧୀନତା ପାଇଁ ପ୍ରଥମେ ଅସ୍ତ୍ର ଉତ୍ତୋଳନ କରିଥିଲେ, ସେଥିପାଇଁ ସେ ଏ ଜାତିର ଚିର ସ୍ମରଣୀୟ ରହିବେ ।

ହେଷ୍ଟିଂସ୍ ଉତ୍ତର ଭାରତ ପରିଭ୍ରମଣ କରିବା ସମୟରେ ଗୋର୍ଖାମାନଙ୍କର ଏକ ସାମରିକ ବାହିନୀ ଭାରତ ଆକ୍ରମଣ କରିବା ସମ୍ବାଦ ମିଳିଲା । ଗୋର୍ଖାମାନେ ହିମାଳୟର ପାଦଦେଶର ଅଧିବାସୀ । ଉଚ୍ଚତାରେ ସେମାନେ କ୍ଷୁଦ୍ର; କିନ୍ତୁ ଅତ୍ୟନ୍ତ ଟାଣୁଆ ଓ କଷ୍ଟସହିଷ୍ଣୁ । ଗୋର୍ଖାମାନଙ୍କୁ ଇଂରେଜମାନେ କହନ୍ତି 'ପାହାଡ଼ୀ ମୂଷା' । ଅଷ୍ଟାଦଶ ଶତାବ୍ଦୀର ଶେଷ ଅବଧିରେ ୧୭୬୮ ଖ୍ରୀଷ୍ଟାବ୍ଦରେ ଗୋର୍ଖାମାନେ କାଠମାଣ୍ଡୁ ଦଖଲ କରି ନେପାଳରେ ଏକ ଗୋର୍ଖା ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ପଚାଶ ବର୍ଷ ମଧ୍ୟରେ ଗୋର୍ଖାରାଜ୍ୟ ପୂର୍ବରେ ସିକିମିରୁ ପଶ୍ଚିମରେ ସତ୍‌ଲେଜ୍ ନଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା । ଉତ୍ତରରେ ହିମାଳୟ ଓ ଦକ୍ଷିଣରେ କମ୍ପାନୀର ସାମ୍ରାଜ୍ୟ । ଏହି ସୀମାର ଦୈର୍ଘ୍ୟ ହେଲା ୮୦୦ ମାଇଲ୍ ।

ଏହି ସୁଦୀର୍ଘ ସୀମା ମଧ୍ୟରେ ବେଳେବେଳେ ବିବାଦ ଓ ସଂଘର୍ଷ ଦେଖା ଦେଉଥିଲା । ଇଂରେଜମାନେ ମନେକରୁଥିଲେ ଉତ୍ତର ଭାରତରେ ସେମାନଙ୍କର ସ୍ଥିତି ସମ୍ପୂର୍ଣ୍ଣ ବିବାଦମୁକ୍ତ । ଏଣୁ ଗୁର୍ଖାମାନେ ଏଥିରେ ହସ୍ତକ୍ଷେପ କରିବା ଶତ୍ରୁତା ବ୍ୟତୀତ ଅନ୍ୟ କଛି ନୁହେଁ । ବହୁ କୂଟନୈତିକ ସଂଘର୍ଷ, ବିବାଦ ଓ ରକ୍ତପାତ ଉପରେ କମ୍ପାନୀର ସାମ୍ରାଜ୍ୟ ଯେ ପରିଗଠିତ ଓ କ୍ରମବର୍ଦ୍ଧିତ, ବିଜୟର ନିଶାରେ ଇଂରେଜମାନେ ଏ କଥା

ଭୁଲିଯାଉଥିଲେ । ଗୋରଖପୁର ଜିଲ୍ଲା ଓ ସରନପୁର ଜିଲ୍ଲାର ଉତ୍ତର ପଟୁ ଗୁର୍ଖାମାନେ ଆକ୍ରମଣ ଆରମ୍ଭ କଲେ । ଏ ସମ୍ବାଦରେ ବିଚଳିତ ହୋଇ ଲର୍ଡ଼ ମିଣ୍ଟୋଙ୍କ ସମୟରେ ନେପାଳର ଗୁର୍ଖା ରାଜାଙ୍କୁ ଜଣାଇ ଦିଆଗଲା ଯେ, ଭବିଷ୍ୟତରେ ଏପରି ଆକ୍ରମଣର ପୁନ୍‌ରାବୃତ୍ତି ହେଲେ ଅସ୍ତ୍ର ପ୍ରୟୋଗରେ ତା'ର ଜବାବ ଦିଆଯିବ । ଅବଶ୍ୟ ଗୁର୍ଖା ଆକ୍ରମଣ ସେପରି ଗୁରୁତ୍ୱପୂର୍ଣ୍ଣ ନଥିଲା ବା ସେମାନେ ଇଂରେଜ ସାମ୍ରାଜ୍ୟ ଦଖଲ କରିବାକୁ ଲାଳାୟିତ ନଥିଲେ । କିନ୍ତୁ ଏହି ସୁଦୀର୍ଘ ସୀମାରେ ସର୍ବତ୍ର ଶାନ୍ତି ରକ୍ଷା କରିବା ଥିଲା ଦୁରୂହ ବ୍ୟାପାର । ମାର୍କୁଇସ୍ ଅଫ୍ ହେଷ୍ଟିଂସ୍ ଗଭର୍ଣ୍ଣର ଜେନେରାଲ୍ ଦାୟିତ୍ୱ ନେବା ପରେ ଗୋରଖପୁର ଓ ସରନପୁର ଉତ୍ତରାଞ୍ଚଳରେ ପ୍ରତିଆକ୍ରମଣ ଆରମ୍ଭ କଲେ । ଚାରି ଦଳ କମ୍ପାନୀ ସୈନ୍ୟ ଚାରୋଟି ଘାଟି ଜାଗାରେ ଲମ୍ଫ ଦେଲେ । କିନ୍ତୁ ପରିଣତି ହେଲା ଲଜ୍ଜାଜନକ ପରାଜୟ ।

ସବୁଠାରୁ ଶକ୍ତିଶାଳୀ ଅଭିଯାନ ଆରମ୍ଭ ହୋଇଥିଲା ଡେହେରାଡୁନ୍‌ର ଉତ୍ତରରେ ଥିବା କାଲଙ୍ଗା ଦୁର୍ଗ ଉପରେ । ଭେଲୋର୍ ଓ ଜାଭା ଯୁଦ୍ଧରେ ବିପୁଳ ଖ୍ୟାତି ଅର୍ଜନ କରିଥିବା ମେଜର୍ ଜେନେରାଲ୍ ଜିଲେସ୍ପି ୩୫୦୦ ସୈନ୍ୟଙ୍କୁ ନେଇ ଆକ୍ରମଣ ଆରମ୍ଭ କଲେ । କିନ୍ତୁ ଏ ଅଭିଯାନ ବିଫଳ ହେଲା ଏବଂ ଖୋଦ୍ ଜେନେରାଲ୍ ଜିଲେସ୍ପି ଗୁର୍ଖାଙ୍କ କୁକ୍ରି ଆକ୍ରମଣରେ ନିହତ ହେଲେ । କେତେ ସପ୍ତାହ ପରେ ଦ୍ୱିତୀୟବାର ଆକ୍ରମଣରେ ଇଂରେଜମାନେ କିଛି ଦୂର ଆଗେଇଥିଲେ, କିନ୍ତୁ ଅଧିକ ଦୂର ଯିବାକୁ ସାହସ କଲେ ନାହିଁ । ଏ ଦୁଇଟି ଆକ୍ରମଣରେ ୭୪୦ ଜଣ କମ୍ପାନୀ ସୈନ୍ୟ ନିହତ ହୋଇଥିଲେ; ଅଥଚ ଗୋର୍ଖାମାନଙ୍କର ମୋଟ ସୈନ୍ୟସଂଖ୍ୟା ଥିଲା ମାତ୍ର ଛ' ଶହ । ଏହାପରେ ଇଂରେଜମାନେ ଆରମ୍ଭ କଲେ ଉନ୍ନତ ଧରଣର କମାଣରୁ କାଲଙ୍ଗା ଦୁର୍ଗ ଉପରେ ବୋମାମାଡ଼ । ଗୋର୍ଖା ସେନାପତି ଓ ତାଙ୍କର ସୈନିକମାନେ ରାତ୍ରିର ଅନ୍ଧାରରେ ଦୁର୍ଗ ଛାଡ଼ି ପାହାଡ଼ୀ ରାସ୍ତାରେ ପଳାୟନ କଲେ ।

ଏହାପରେ ନାହାନ ସହରର ଉତ୍ତରରେ ଯୈଥକ ଦୁର୍ଗ ଉପରେ ଇଂରେଜମାନଙ୍କର ତୃତୀୟ ଅଭିଯାନ ଆରମ୍ଭ ହେଲା । କିନ୍ତୁ ସମସ୍ତ ଅସ୍ତ୍ରଶସ୍ତ୍ର ସତ୍ତ୍ୱେ ଇଂରେଜମାନେ ଗୁର୍ଖାମାନଙ୍କର କୁକ୍ରି (ଏକପ୍ରକାର ବଙ୍କା ଛୁରି) ଆକ୍ରମଣରେ ପଛଘୁଞ୍ଚା ଦେଲେ । ବ୍ରିଟିଶ ସୈନ୍ୟମାନଙ୍କର ପଳାୟନ ଦେଖି ଭାରତୀୟ ସିପାହୀମାନେ ମଧ୍ୟ ସେମାନଙ୍କର ଅନୁଗାମୀ ହେଲେ ।

ପୂର୍ବପଟେ ମେଜର ଜେନେରାଲ୍ ମାର୍ଲେଙ୍କ ନେତୃତ୍ୱରେ ଆଠହଜାର ସୈନ୍ୟ ଗୁର୍ଖାମାନଙ୍କୁ ନେପାଳରୁ ବିତାଡ଼ିତ କରିବା ପାଇଁ କାଠମାଣ୍ଡୁ ଯାତ୍ରା କଲେ । ମାର୍ଲେ ନେପାଳ ସୀମା ଅତିକ୍ରମ କରିବା ପରେ ଉପରିସ୍ଥ କର୍ତ୍ତାଙ୍କ ନିର୍ଦ୍ଦେଶ ବିରୁଦ୍ଧରେ ପୂରା ଡିସେମ୍ବର ମାସଟି ହିମାଳୟର ପାଦ ଦେଶରେ ଅଟକି ରହି ବିଶ୍ରାମ ନେଲେ । ଗୁର୍ଖାମାନେ ପରିସ୍ଥିତିର ସୁବିଧା ନେଇ ପ୍ରତିଆକ୍ରମଣ ଆରମ୍ଭ କଲେ ଓ ବହୁ କମ୍ପାନୀ ସୈନ୍ୟଙ୍କୁ ନିହତ କଲେ । ଏ ମଧ୍ୟରେ ମାର୍ଲେଙ୍କ ସହାୟତା ପାଇଁ ହେଷ୍ଟିଂସ୍ ଆଉ ତିନି ଚାରିହଜାର ସୈନ୍ୟ ପ୍ରେରଣ କରିଥିଲେ । ଏହି ସମୟରେ ଯୁଦ୍ଧକ୍ଷେତ୍ରରେ ଏକ ଅଭୂତପୂର୍ବ ଘଟଣା ଘଟିଲା ଏବଂ ତାହା ଥିଲା ଭାରତରେ ବ୍ରିଟିଶ ସାମରିକ ଇତିହାସର ଏକ କଳଙ୍କିତ ଅଧ୍ୟାୟ । ମାର୍ଲେ ଗୁର୍ଖାମାନଙ୍କ ଦୁଃସାହସିକ ଆକ୍ରମଣରୁ ସେମାନଙ୍କର ସୈନ୍ୟସଂଖ୍ୟା ସତର ଅଠର ହଜାର ବୋଲି ଏକ ଭିତ୍ତିହୀନ ଆକଳନ କଲେ । ମାର୍ଲେ ଏପରି ଭୟତ୍ରସ୍ତ ହୋଇ ପଡ଼ିଲେ ଯେ କାହାକୁ କିଛି ନ କହି ବା ଉପରିସ୍ଥ କର୍ମକର୍ତ୍ତାଙ୍କ ସହ ପରାମର୍ଶ ନ କରି, ସେନାବାହିନୀର ଦାୟିତ୍ୱ କୌଣସି ସହକାରୀ ସେନାନାୟକଙ୍କୁ ନ୍ୟସ୍ତ ନ କରି ଫେବୃଆରୀ ଦଶ ତାରିଖ ରାତିରେ ସେନାବାହିନୀରୁ ପଳାୟନ କଲେ । ଏହି ପଳାତକ ସେନାପତିଙ୍କର ହେଷ୍ଟିଂସ୍ ଓ ଲଣ୍ଡନ କର୍ତ୍ତାମାନଙ୍କ ସହିତ କି ସମ୍ପର୍କ ଥିଲା କେଜାଣି, ତାଙ୍କୁ କିଛି ଦଣ୍ଡ ଦିଆଯାଇ ନଥିଲା କି ସୈନ୍ୟବାହିନୀରୁ ବିତାଡ଼ିତ କରାଯାଇ ନଥିଲା । ବରଂ ପରକାଳରେ ତାଙ୍କର ପଦୋନ୍ନତି ମଧ୍ୟ ହୋଇଥିଲା ।

ଯାହାହେଉ ମାର୍ଲେଙ୍କ ପଳାୟନ ପରେ ବ୍ରିଟିଶ୍ ସୈନ୍ୟବାହିନୀ ଘୋର ଦୁର୍ବିପାକ ଓ ପରାଜୟର ଗ୍ଲାନି ମଧ୍ୟରେ ଦୀର୍ଘ ତିନିମାସ ଅତିକ୍ରାନ୍ତ କଲା ପରେ ପଶ୍ଚିମାଞ୍ଚଳରୁ ସୁସଂବାଦ ଆସିଲା ଯେ ଅକ୍ଟରଲୋନୀଙ୍କ ନେତୃତ୍ୱରେ ବ୍ରିଟିଶ ସୈନ୍ୟମାନେ ହିମାଳୟର କୁମାୟୁନ ଆକ୍ରମଣ କରି ବହୁ ଗୁର୍ଖା ସୈନ୍ୟଙ୍କୁ ନିହତ କରିଛନ୍ତି ଏବଂ ଆଲମୋରା ପର୍ଯ୍ୟନ୍ତ ସେମାନଙ୍କୁ ତଡ଼ି ନେଇଛନ୍ତି । କୁମାୟୁନରେ ଅନେକ ସୁଦକ୍ଷ ଗୁର୍ଖା ସୈନ୍ୟ ଓ ସେନାପତି ନିହତ ହେବା ହେତୁ ଗୁର୍ଖମାନେ ନିରାଶ ଓ ନିରୁତ୍ସାହ ହୋଇପଡ଼ିଲେ ଓ ଏପ୍ରିଲ୍ ୨୮ ତାରିଖରେ ସେନାପତି ଅମର ସିଂ ଥାପା ଶୁକ୍ଳ ଶାନ୍ତି ପତାକା ଉଡ଼ାଇଲେ । କୁମାୟୁନ ଇଂରେଜମାନଙ୍କ ଦଖଲରେ ଥିବାରୁ ଅମର ସିଂ କାଠମାଣ୍ଡୁ ସହିତ ସମ୍ପର୍କ ରକ୍ଷା କରିବାକୁ ସମର୍ଥ ହେଲେ ନାହିଁ ଓ ଇଂରେଜମାନଙ୍କ ସହ ସନ୍ଧି ସ୍ଥାପନ କରିବା ପାଇଁ ପ୍ରସ୍ତାବ ଦେଲେ । ପରିସ୍ଥିତିର ସୁବିଧା ନେଇ ଇଂରେଜମାନେ ଯେଉଁସବୁ କଠିନ

ସର୍ତ୍ତ ଚୁକ୍ତିନାମାରେ ରଖିଲେ, ଅମର ସିଂ ଥାପା ସେଥିରେ ମଧ୍ୟ ସମ୍ମତ ହେଲେ । କିନ୍ତୁ ଏ ସବୁ ଅପମାନଜନକ ସର୍ତ୍ତଗୁଡ଼ିକ ଗ୍ରହଣ କରିବାକୁ କାଠମାଣ୍ଡୁ ସରକାର ସମ୍ମତ ହେଲେ ନାହିଁ ବା ସନ୍ଧିପତ୍ରରେ ସ୍ୱାକ୍ଷର କଲେ ନାହିଁ ।

୧୮୧୬ ମସିହାରେ ମାର୍କୁଇସ୍ ଅଫ୍ ହେଷ୍ଟିଂସ୍ ପୁନର୍ବାର ଯୁଦ୍ଧ ପାଇଁ ଆହ୍ୱାନ ଦେଲେ । ଅକ୍ଟରଲୋନୀଙ୍କୁ ପଶ୍ଚିମାଞ୍ଚଳରୁ ପୂର୍ବାଞ୍ଚଳ ସେନାପତି ଭାବରେ ବଦଳି କରାଗଲା ଓ ତାଙ୍କ ନେତୃତ୍ୱରେ ୨୦,୦୦୦ ସୈନ୍ୟଙ୍କୁ କାଠମାଣ୍ଡୁ ଆକ୍ରମଣ ପାଇଁ ପ୍ରେରଣ କରାଗଲା । ଇଂରେଜମାନେ ଚୁଭିଆଘାଟି ଅତିକ୍ରମ କଲା ପରେ ଗୁର୍ଖାମାନେ ଆସ୍ଥାନ ଛାଡ଼ି ପଛଘୁଞ୍ଚା ଦେଲେ । ମାର୍ଚ୍ଚ ମାସ ଶେଷ ଆଡ଼କୁ ଗୁର୍ଖାମାନଙ୍କର ପ୍ରତିଆକ୍ରମଣକୁ ଇଂରେଜମାନେ ପ୍ରତିହତ କଲେ । ଗୁର୍ଖାମାନେ ହତୋତ୍ସାହ ହୋଇପଡ଼ିଲେ ଓ ଇଂରେଜମାନଙ୍କର ଶରଣାଗତ ହେବା ପାଇଁ ନିଷ୍ପତ୍ତି ନେଲେ । ଅବିଳମ୍ବେ ନେପାଳ ଦରବାରର ଜଣେ ରାଜଦୂତ ଅମରସିଂହଙ୍କ ଦ୍ୱାରା ପ୍ରସ୍ତୁତ ଚୁକ୍ତିନାମାର ସମସ୍ତ ସର୍ତ୍ତ ଗ୍ରହଣ କରି, ଶାନ୍ତି ଚୁକ୍ତିରେ ଦରବାରଙ୍କ ସ୍ୱାକ୍ଷର ସହ ଅକ୍ଟରଲୋନୀଙ୍କୁ ପ୍ରଦାନ କଲେ ଓ ଇଂରେଜ ସେନାପତି ତାହା ଗ୍ରହଣ କଲେ ।

ଏହିପରି ନାଟକୀୟ ଭଙ୍ଗୀରେ ଗୁର୍ଖା ସମର ଶେଷ ହେଲା ଓ ଇଂରେଜମାନଙ୍କ ଦୃଷ୍ଟିକୋଣରୁ ଏକ ଅନାବଶ୍ୟକ ଯୁଦ୍ଧର ପରିସମାପ୍ତି ଘଟିଲା ସ୍ଥାୟୀ ଶାନ୍ତି ପ୍ରତିଷ୍ଠାରେ । ଏହାପରେ ଇଂରେଜ ଓ ଗୁର୍ଖାମାନଙ୍କ ମଧ୍ୟରେ ଆଉ କେବେ ଯୁଦ୍ଧ ହୋଇନାହିଁ । ବରଂ ଏହି ସମୟରୁ ବ୍ରିଟିଶ୍ ସୈନ୍ୟବାହିନୀ ସହ ଗୁର୍ଖାମାନଙ୍କର ସହଯୋଗ ଦୀର୍ଘଦିନ ଧରି ବଳବତ୍ତର ରହିଛି । ଏହି ଯୁଦ୍ଧରେ ଇଂରେଜମାନେ ସ୍ଥାୟୀ ଭାବରେ କୁମାୟୁନ ଓ ଘରୱାଲ ଅଞ୍ଚଳ ଦଖଲକୁ ନେଲେ । ସିମଳା, ମଶୌରୀ, ନୈନିତାଲ୍, ଆଲ୍‌ମୋରା ପ୍ରଭୃତି ସୁପ୍ରସିଦ୍ଧ ପାର୍ବତ୍ୟ ଗ୍ରୀଷ୍ମନିବାସଗୁଡ଼ିକ ଏହି ଉପତ୍ୟକାରେ ଅବସ୍ଥିତ ।



# ପିଣ୍ଡାରୀ ଓ ମରହଟ୍ଟା ଦମନ

ମାର୍‌କ୍ୟୁଇସ୍ ଅଫ୍ ହେଷ୍ଟିଂସ୍ ୧୮୧୩ ମସିହାରେ ଭାରତର ଗଭର୍ଣ୍ଣର ଜେନେରାଲ ପଦ ଗ୍ରହଣ କରିବା ସମୟରେ ମଧ୍ୟ-ଭାରତରେ ପିଣ୍ଡାରୀ ଉପଦ୍ରବ ଦମନ କରିବାକୁ ନିଜର ପ୍ରଥମ ଦାୟିତ୍ୱ ବୋଲି ବିଚାର କରିଥିଲେ । କିନ୍ତୁ ଗୁର୍ଖା ସମରରେ ଲିପ୍ତ ରହି ଗୋଟିଏ ବର୍ଷରୁ ଅଧିକ ସମୟ ସେ ଏ ଦିଗରେ ଧ୍ୟାନ ଦେଇ ପାରିଲେ ନାହିଁ । 'ପିଣ୍ଡାରୀ' ନାମରେ ଖ୍ୟାତ ଯେଉଁ ଲୁଣ୍ଠନକାରୀ ଅଶ୍ୱାରୋହୀ ଦସ୍ୟୁମାନେ ଡକାୟତି କରି ନିରୀହ ଲୋକଙ୍କୁ ହତ୍ୟା କରି ସେମାନଙ୍କର ଧନସମ୍ପଦ ଲୁଟ କରି ମଧ୍ୟ-ଭାରତର ବିସ୍ତୀର୍ଣ୍ଣ ଅଞ୍ଚଳରେ ସର୍ବଦା ବିଶୃଙ୍ଖଳା ସୃଷ୍ଟି କରୁଥିଲେ, ସେମାନଙ୍କୁ ନିପାତ କରିବାର ଦାୟିତ୍ୱ ସେ ଭୁଲି ନଥିଲେ ।

କମ୍ପାନୀର ଦିଲ୍ଲୀ ପ୍ରତିନିଧି ମେଟ୍‌କାଫ୍ ତାଙ୍କୁ ପରାମର୍ଶ ଦେଇଥିଲେ ଯେ, ୧୭୦୭ ମସିହାରେ ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ମରହଟ୍ଟାମାନେ ମୋଗଲ ସାମ୍ରାଜ୍ୟକୁ ଧ୍ୱଂସ କରିବା ପାଇଁ ଯେଉଁ ଭୂମିକା ଗ୍ରହଣ କରିଥିଲେ, ପିଣ୍ଡାରୀମାନେ ଇଂରେଜମାନଙ୍କ ସହିତ ସେହି ପ୍ରକାରର ଶଠତା ଆଚରଣ କରିବେ । ଏହି ପିଣ୍ଡାରୀମାନେ ମରହଟ୍ଟା ରାଜାମାନଙ୍କର ପୂର୍ବତନ ଅଶ୍ୱାରୋହୀ ସୈନିକ । ବିଭିନ୍ନ ସମୟରେ ଇଂରେଜମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ମରହଟ୍ଟା ରାଜ୍ୟଗୁଡ଼ିକ ଖଣ୍ଡ ବିଖଣ୍ଡିତ ଓ ଦୁର୍ବଳ ହୋଇଯିବା ପରେ ତାଙ୍କର ସୈନ୍ୟବାହିନୀଗୁଡ଼ିକ ମଧ୍ୟ ତଦନୁରୂପେ ଭାଙ୍ଗିପଡ଼ିଲା । ସୈନ୍ୟବାହିନୀରୁ ବିକ୍ଷିପ୍ତ ଏହି ଅଶ୍ୱାରୋହୀମାନେ ଭରଣପୋଷଣ ପାଇଁ ଡକାୟତିକୁ ବୃତ୍ତି ଭାବରେ ଗ୍ରହଣ କରି ନେଇଥିଲେ । ପେଶ୍ୱା, ସିନ୍ଧିଆ, ହୋଲକାର ଓ ଭୋନ୍‌ସ୍ଲାଙ୍କ ପରି ମରହଟ୍ଟା ରାଜାମାନଙ୍କ ସହିତ ସେମାନଙ୍କର ଭିତିରି ସମ୍ପର୍କ ଥିଲା । ଆବଶ୍ୟକ ବେଳେ ସେମାନେ ମରହଟ୍ଟା ରାଜ୍ୟମାନଙ୍କରେ ଆଶ୍ରୟ ନେବେ ଓ ପ୍ରତିଶ୍ରୁତି ଦିଅନ୍ତି ଯେ, ଆଶ୍ରୟଦାତାଙ୍କ ରାଜ୍ୟରେ ଲୁଟ୍‌ତରାଜ୍ କରିବେ

ନାହିଁ, କିନ୍ତୁ ଏ ପ୍ରକାର ପ୍ରତିଶ୍ରୁତି କେବଳ କଥାରେ ଆବଦ୍ଧ ଥିଲା । ଯଶୋବନ୍ତ ରାଓ ହୋଲକାର୍‌ଙ୍କ ପାଗଳ ଅବସ୍ଥାରେ ମୃତ୍ୟୁପରେ ସେନାପତି ଅମୀର ଖାଁ ଇନ୍ଦୋରର୍ ଅର୍ଦ୍ଧେକ ରାଜ୍ୟ ଦଖଲ କରିନେଇଥିଲେ ଏବଂ କାର୍ଯ୍ୟତଃ ପିଣ୍ଡାରୀମାନଙ୍କୁ ପ୍ରଚ୍ଛନ୍ନ ନେତୃତ୍ୱ ଦେଉଥିଲେ ।

ମେଟ୍‌କାଫ୍ ହେଷ୍ଟିଂସ୍‌ଙ୍କୁ ପରାମର୍ଶ ଦେଲେ, ସବୁ ସ୍ୱଦେଶୀ ରାଜା ମହାରାଜାମାନେ ଇଂରେଜମାନଙ୍କର ଶତ୍ରୁ ଏବଂ ପିଣ୍ଡାରୀମାନଙ୍କର ପୃଷ୍ଠପୋଷକ-ମାନଙ୍କୁ ଅକ୍ତିଆର୍ ନ କରି, ଏକଲା ପିଣ୍ଡାରୀମାନଙ୍କ ବିରୁଦ୍ଧରେ ଆକ୍ରମଣ ଆରମ୍ଭ କଲେ ସେମାନେ ସମସ୍ତେ ଏକ୍‌ଜୁଟ୍ ହୋଇ ଇଂରେଜଙ୍କ ବିରୁଦ୍ଧରେ ଯୁଦ୍ଧରେ ଅବତୀର୍ଣ୍ଣ ହୋଇପାରନ୍ତି । ହେଷ୍ଟିଂସ୍‌ଙ୍କୁ ଏ ଉପଦେଶ ସମ୍ପୂର୍ଣ୍ଣ ଗ୍ରହଣୀୟ ହେଲା ।

ଏହି ସମୟରେ କମ୍ପାନୀ ଶାସନାଧୀନରେ ରାଜାରାଜୁଡ଼ା ଓ ନବାବ ବାଦ୍‌ଶାହମାନଙ୍କର କ୍ଷମତାର ପରିଧି ଓ ଇଂଲିଶ କମ୍ପାନୀ ସହିତ ସେମାନଙ୍କର ସମ୍ପର୍କ ବିଷୟରେ ଆଲୋଚନା କରାଯାଇପାରେ । ଇତିହାସର ସ୍ୱର୍ଣ୍ଣାକ୍ଷରରେ ମୋଗଲ୍ ବାଦ୍‌ଶାହା ଥିଲେ ଭାରତର ସମ୍ରାଟ୍ । କିନ୍ତୁ ବିଧିର କି ବିଡ଼ମ୍ବନା ! ୧୭୦୭ରେ ଆଉରଙ୍ଗଜେବ୍‌ଙ୍କ ମୃତ୍ୟୁର ଶହେ ବର୍ଷ ଅନ୍ତ ହେଲାବେଳକୁ ମୋଗଲ୍ ସମ୍ରାଟ୍‌ଙ୍କର କ୍ଷମତା ଦିଲ୍ଲୀର ଲାଲ୍ କିଲ୍ଲା ମଧ୍ୟରେ ଆବଦ୍ଧ ଥିଲା । ଅନ୍ଧ ସମ୍ରାଟ୍ ସାହା ଆଲାମ୍‌ଙ୍କ ଶେଷ ଜୀବନ ବ୍ରିଟିଶ୍ ସହାୟତାରେ ବେଶ୍ ଶାନ୍ତିରେ କଟୁଥିଲା; ସମ୍ପଦଲିପ୍ସା ବା ସାମ୍ରାଜ୍ୟଲିପ୍ସା ଆଉ ନଥିଲା କହିଲେ ଚଳେ । ୧୮୦୬ ମସିହାରେ ତାଙ୍କର ମୃତ୍ୟୁ ପରେ ତାଙ୍କର ପୁତ୍ର ଆକବର (୨) ଗାଦିନାସୀନ ହେଲେ । ଅକ୍ଟରଲୋନୀଙ୍କ ଭାଷାରେ ତାଙ୍କ ପରି ନିର୍ବୋଧ ପୃଥିବୀରେ ବିରଳ । ତାଙ୍କର ପ୍ରିୟପୁତ୍ର ଜାହାଙ୍ଗୀର ପୁଣି ସାମ୍ରାଜ୍ୟବିସ୍ତାରର ସ୍ୱପ୍ନ ଦେଖୁଥିଲେ । ମେଟ୍‌କାଫ୍ ପରାମର୍ଶ ଦେଲେ, ଲାଲ୍ କିଲ୍ଲାର ପ୍ରାଚୀର ଅନ୍ତରାଳରେ ସମ୍ରାଟ୍‌ଗିରି କରିବାରେ ଆପତ୍ତି ନାହିଁ । କିନ୍ତୁ କିଲ୍ଲା ବାହାରେ ସାମ୍ରାଜ୍ୟର ସ୍ୱପ୍ନ ଦେଖିବା ପାଇଁ ମଧ୍ୟ ସୁଯୋଗ ଦେବା ଉଚିତ ନୁହେଁ । କାର୍ଯ୍ୟତଃ ମେଟ୍‌କାଫ୍‌ଙ୍କ ପରାମର୍ଶ କ୍ରମେ ମୋଗଲ୍ ସମ୍ରାଟ୍‌ଙ୍କୁ ଅଯଥା ଗୁରୁତ୍ୱ ନ ଦେବା ଉଦ୍ଦେଶ୍ୟରେ ତାଙ୍କୁ ସାକ୍ଷାତ ମଧ୍ୟ କଲେ ନାହିଁ । ବରଂ ବ୍ରିଟିଶ୍ ରେସିଡେଣ୍ଟ ଓ ଅଧସ୍ତନ କର୍ମଚାରୀଙ୍କୁ ନିର୍ଦ୍ଦେଶ ଦେଲେ ଯେ ଔପଚାରିକ ଅନୁଷ୍ଠାନମାନଙ୍କରେ ସମ୍ରାଟଙ୍କୁ କୌଣସି ପ୍ରକାରର ନଜର, ସଲାମୀ ବା ଭେଟି ମଧ୍ୟ ଦିଆଯିବ ନାହିଁ ।

ଆଉ ଦୁଇଜଣ ଶକ୍ତିଶାଳୀ ମୁସ୍‌ଲିମ୍ ନବାବ ଥିଲେ ହାଇଦ୍ରାବାଦ୍‌ର ନିଜାମ ଓ ଆଉଧର ନବାବ । ୧୮୦୩ ମସିହାରେ ହାଇଦ୍ରାବାଦ୍‌ର ନିଜାମ ଅଲ୍ଲୀଙ୍କ ମୃତ୍ୟୁପରେ ତାଙ୍କର ଜ୍ୟେଷ୍ଠପୁତ୍ର ସିକନ୍ଦର ଜାହା ଇଂରେଜଙ୍କ ସହାୟତାରେ ନିଜାମ ହେଲେ । କିନ୍ତୁ ନୂତନ ନିଜାମ କ୍ରମେ ଦରବାରର ବ୍ରିଟିଶ୍ ବିରୋଧୀ ଗୋଷ୍ଠୀର ଚକ୍ରାନ୍ତର ଶିକାର ହେଲେ ଏବଂ ଭାରତରୁ କମ୍ପାନୀଙ୍କୁ ବିତାଡ଼ିତ କରିବା ପାଇଁ ସିନ୍ଧିଆ ଓ ହୋଲ୍‌କାର୍‌ଙ୍କ ସହ ଗୁପ୍ତ ମନ୍ତ୍ରଣା ଆରମ୍ଭ କଲେ । ନିଜାମଙ୍କ ପ୍ରଧାନମନ୍ତ୍ରୀ ମୀର ଆଲାମ୍ ଥିଲେ ପୂର୍ଣ୍ଣ ବ୍ରିଟିଶ୍ ସମର୍ଥକ । ଦରବାରଙ୍କ ଉପରୋକ୍ତ ଷଡ଼ଯନ୍ତ୍ର ତାଙ୍କର ସହ୍ୟ ହେଲା ନାହିଁ । ସେ ଆଶଙ୍କା କଲେ ଯେ ନିଜାମ ଓ କମ୍ପାନୀ ମଧ୍ୟରେ ଶୀଘ୍ର ଯୁଦ୍ଧ ଲାଗିଯିବ । ଭୟରେ ସେ ବ୍ରିଟିଶ୍ ପ୍ରତିନିଧିଙ୍କ ଶରଣାପନ୍ନ ହେଲେ । ତତ୍‌କାଳୀନ ଗଭର୍ଣ୍ଣର ଜେନେରାଲ୍ ବାର୍ଲୋ, ତାଙ୍କ ଯୁଦ୍ଧ-ବିରୋଧୀ ଶାନ୍ତିପ୍ରିୟ ନୀତି ସତ୍ତ୍ୱେ, ନିଜାମଙ୍କ ବିରୁଦ୍ଧରେ କଠୋର ପଦକ୍ଷେପ ନିଆଯିବାକୁ ନିର୍ଦ୍ଦେଶ ଦେଲେ । ନୂତନ ନିଜାମ ଆତଙ୍କିତ ହେଲେ ଯେ ଇଂରେଜମାନେ ତାଙ୍କ ଭାଇକୁ ସମର୍ଥନ କରି ତାଙ୍କୁ ଗାଦିଚ୍ୟୁତ କରିବେ । ସେ ତୁରନ୍ତ ବ୍ରିଟିଶ-ବିରୋଧୀ ନୀତିର ପରିବର୍ତ୍ତନ କଲେ ଓ ଦରବାରର ବ୍ରିଟିଶ୍-ବିରୋଧୀ କର୍ମକର୍ତ୍ତାମାନଙ୍କୁ କ୍ଷମତାଚ୍ୟୁତ କଲେ । ଦଳେ କମ୍ପାନୀ ସୈନ୍ୟଙ୍କୁ ହାଇଦ୍ରାବାଦ୍‌ରେ ଅବସ୍ଥାପିତ କରିବା ପାଇଁ ପୂର୍ବର ବିରୋଧ ପରିବର୍ତ୍ତେ ସେ ବିନା ଦ୍ୱିଧାରେ ଏ ପ୍ରସ୍ତାବରେ ସମ୍ମତ ହେଲେ । ପୂର୍ବେ ପ୍ରଧାନମନ୍ତ୍ରୀ ମୀର୍ ଆଲାମ୍‌ଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଚାନ୍ଦୁଲାଲ୍‌ଙ୍କୁ ଡେପୁଟୀ ପ୍ରାଇମ୍ ମିନିଷ୍ଟର ନିଯୁକ୍ତ କରାଗଲା । ଚାନ୍ଦୁଲାଲ୍ ଥିଲେ ସମ୍ପୂର୍ଣ୍ଣ ବ୍ରିଟିଶ୍ ସମର୍ଥକ । ପିଣ୍ଡାରୀମାନେ ନିୟମିତ ରୂପେ ହାଇଦ୍ରାବାଦ୍‌ର ବିଭିନ୍ନ ଇଲାକାରେ ଲୁଟ୍‌ତରାଜ୍ ଚଳାଇଥିଲେ । କିନ୍ତୁ ନିଜାମ୍ ଥିଲେ ସେ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ । ଲର୍ଡ଼ ହେଷ୍ଟିଂସ୍ ଦାୟିତ୍ୱ ନେବା ପରେ ଅନୁଭବ କଲେ, ପିଣ୍ଡାରୀ ବିରୋଧୀ ଯୁଦ୍ଧରେ ନିଜାମ ବିଶେଷ ସମର୍ଥନ ନଦେଲେ ମଧ୍ୟ ତାଙ୍କ ପକ୍ଷରୁ ବିରୋଧର କୌଣସି ଆଶଙ୍କା ନାହିଁ । ସେ ଅନେକଟା ଆଶ୍ୱସ୍ତ ହେଲେ ।

ଜୁଲାଇ ୧୮୧୪ ମସିହାରେ ଅଯୋଧ୍ୟାର ନବାବ ସାଜତ୍ ଅଲ୍ଲୀଙ୍କ ମୃତ୍ୟୁ ପରେ ସିଂହାସନାରୂଢ଼ ହେଲେ ତାଙ୍କ ଜ୍ୟେଷ୍ଠପୁତ୍ର ଘାଜିଉଦ୍ଦିନ୍ । ମୃତ୍ୟୁ ପରେ ଦେଖାଗଲା କୃପଣ ସାଜତ୍ ଅଲ୍ଲୀ ଅଠର ମିଲିଅନ୍ ପାଉଣ୍ଡ୍‌ରୁ ଅଧିକ ଅର୍ଥ ସଞ୍ଚୟ କରି ଯାଇଛନ୍ତି । ତେଣୁ ଶାସନ ଚଳାଇବାରେ ଘାଜିଉଦ୍ଦିନ୍‌ଙ୍କର କୌଣସି ଆର୍ଥିକ ଅସୁବିଧା ଦେଖା ଦେଇନଥିଲା । ବରଂ ସେହି ବର୍ଷ ହେଷ୍ଟିଂସ୍ ଲକ୍ଷ୍ନୌ ପରିଦର୍ଶନ କରିବା ସମୟରେ ସେ

ତାଙ୍କୁ ଏକ କୋଟି ରାଶି ଭାରତୀୟ ମୁଦ୍ରା ଦାନ କରିଥିଲେ । ଏହି ଅର୍ଥ କମ୍ପାନୀ ତହବିଲ୍‌ରେ ଗୃହୀତ ହୋଇଥିଲା ଓ ଗୁର୍ଖା ସମରରେ ତାହା ନିୟୋଜିତ ହୋଇଥିଲା । କିନ୍ତୁ ଏହା ପରେ ପରେ କମ୍ପାନୀର ଲକ୍ଷ୍ନୌ ପ୍ରତିନିଧି ବେଲିଙ୍କ ସହ ତାଙ୍କର ମନାନ୍ତର ଆରମ୍ଭ ହେଲା । ରାଜସ୍ୱ ଆଦାୟ ସଂକ୍ରାନ୍ତୀୟ ବେଲିଙ୍କ କେତେକ ପ୍ରସ୍ତାବକୁ ଘାଜିଉଦ୍ଦିନ୍ ଗ୍ରହଣ କରି ନଥିଲେ । ପ୍ରଶାସନରେ ବେଲିଙ୍କର ହସ୍ତକ୍ଷେପ ଓ ହାମବଡ଼ା ନୀତି ନବାବଙ୍କର ସହ୍ୟ ହେଲା ନାହିଁ । ଏହି ସମୟରେ କମ୍ପାନୀ ପାଣ୍ଠିକୁ ପୁନଶ୍ଚ ଏକକୋଟି ଟଙ୍କା ଦାନ କରିବାକୁ ବେଲି ଦାବି କଲେ । ଏଥିଯୋଗୁଁ ବେଲିଙ୍କ ସହିତ ନବାବଙ୍କର ସମ୍ପର୍କ ଆହୁରି କ୍ଷୁଣ୍ଣ ହେଲା । ଏ ସମ୍ବାଦ ଲର୍ଡ଼ ହେଷ୍ଟିଂସ୍‌ଙ୍କର କର୍ଣ୍ଣଗୋଚ଼ର ହେଲା । ଅନୁଗତ ରାଜ୍ୟମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ହେଷ୍ଟିଂସ୍ ଆଦୌ ପସନ୍ଦ କରୁନଥିଲେ । ସେ ବେଲିଙ୍କୁ ଲକ୍ଷ୍ନୌରୁ ସ୍ଥାନାନ୍ତରିତ କଲେ । ଫଳରେ ଅଯୋଧ୍ୟା ସହ କମ୍ପାନୀର ସମ୍ପର୍କରେ ଉନ୍ନତି ଘଟିଲା । ପିଣ୍ଡାରୀ ଯୁଦ୍ଧରେ ଘାଜିଉଦ୍ଦିନ୍ ସେମାନଙ୍କୁ ସାହାଯ୍ୟ କରିବାର ସମ୍ଭାବନା ରହିଲା ନାହିଁ ।

ହାଇଦ୍ରାବାଦ୍ ଓ ଅଯୋଧ୍ୟା ଅକ୍ତିଆର୍‌ରେ ରହିଲେ ମଧ୍ୟ ପିଣ୍ଡାରୀମାନଙ୍କର ଅସଲ ଶକ୍ତିଦାତା ଅମୀର ଖାଁ ହୋଲ୍‌କାର୍ ଯଶୋବନ୍ତ ରାଓଙ୍କ ମୃତ୍ୟୁ ପରେ ଅଧିକ ଶକ୍ତିଶାଳୀ ହୋଇଉଠିଲେ । ହୋଲ୍‌କାରଙ୍କ ରକ୍ଷିତା ଅତି ସୁନ୍ଦରୀ ଓ ଲମ୍ପଟ ନାରୀ ତୁଳସୀବାଈଙ୍କ ସହ ମିଶି ହୋଲ୍‌କାର୍‌ଙ୍କ ପାଗଳାମି ସମୟରେ ଅମୀର ଖାଁ କାର୍ଯ୍ୟତଃ ଇନ୍ଦୋର ଶାସନ ଦାୟିତ୍ୱରେ ଥିଲେ ଓ ହୋଲ୍‌କାର୍‌ଙ୍କ ମୃତ୍ୟୁ ପରେ ଅନ୍ୟ ଜଣେ ରକ୍ଷିତାର ନାବାଳକ ପୁତ୍ରକୁ ରାଜଗାଦିରେ ବସାଇ ନିଜେ ରାଜତ୍ୱ କରୁଥିଲେ । ମରହଟ୍ଟା ଶକ୍ତିମାନଙ୍କ ମଧ୍ୟରେ ବରୋଦାର ଗାଇକୋୟାର୍ଡ଼ଙ୍କୁ ବାଦ୍ ଦେଇ ପୁନାର ପେଶ୍ୱା, ବେରାର୍‌ର ଭୋନ୍‌ସଲା, ଗୁଆଲିଅର୍‌ର ସିନ୍ଧିଆ ଓ ଇନ୍ଦୋର୍‌ର ହୋଲ୍‌କାର୍ ଆଦି ସମସ୍ତେ ଇଂରେଜମାନଙ୍କଠାରୁ ଅତୀତରେ ହାର ମାନିଥିଲେ ମଧ୍ୟ ଅନ୍ତରରେ ସେମାନଙ୍କୁ ଘୃଣା କରୁଥିଲେ ଓ ଇଂରେଜମାନଙ୍କୁ ବିତାଡ଼ିତ୍ କରିବା ଲାଗି ଗୁପ୍ତ ଷଡ଼ଯନ୍ତ୍ର କରୁଥିଲେ । ଏସବୁ ଜାଣି ମଧ୍ୟ ପିଣ୍ଡାରୀମାନଙ୍କୁ ନିପାତ କରିବା ପାଇଁ ଆବଶ୍ୟକ ହେଲେ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ଲମ୍ଫ ଦେବାକୁ ହେଷ୍ଟିଂସ୍ ପ୍ରସ୍ତୁତ ଥିଲେ ।

ଲର୍ଡ଼ ହେଷ୍ଟିଂସ୍‌ଙ୍କ ଉପରୋକ୍ତ ଚିନ୍ତାଧାରା ସହ ୱେଲେସ୍ଲିଙ୍କ ସମୟରେ ନିଯୁକ୍ତ ସାମରିକ ଅଫିସର୍‌ମାନେ ଏକମତ ଥିଲେ । କିନ୍ତୁ ତାଙ୍କ କାଉନ୍‌ସିଲ୍‌ର ଦୁଇଜଣ ସଭ୍ୟ

ଓ ଲଣ୍ଡନସ୍ଥ କମ୍ପାନୀର ଡାଇରେକ୍ଟର, ଏପରିକି ବୋର୍ଡ଼ ଅଫ୍ କଣ୍ଟ୍ରୋଲ୍‌ର ସଭାପତି ଜର୍ଜ କ୍ୟାନିଂ ମଧ୍ୟ ଏ ପ୍ରସ୍ତାବର ଘୋର ବିରୋଧୀ ଥିଲେ । କମ୍ପାନୀର ଡାଇରେକ୍ଟରମାନଙ୍କ ମତରେ ପିଣ୍ଡାରୀମାନଙ୍କୁ ନିପାତ କରିବାକୁ ଯାଇ ମରହଟ୍ଟାମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ହେବା ଅତ୍ୟନ୍ତ ବ୍ୟୟସାଧ୍ୟ ହେବ । କିନ୍ତୁ ବ୍ରିଟିଶ୍ ରାଜପରିବାରର ବନ୍ଧୁ ହେଷ୍ଟିଂସ୍, କାର୍ଯ୍ୟକ୍ଷେତ୍ରର ଅଭିଜ୍ଞତାରୁ ସାମ୍ରାଜ୍ୟ ଗଢ଼ିବାର ଯେଉଁ ସ୍ୱପ୍ନ ଦେଖୁଥିଲେ, ସାତ ସମୁଦ୍ର ଦୂରରେ ରହି କମ୍ପାନୀ ଡାଇରେକ୍ଟରମାନଙ୍କର ଅର୍ଥ ଚିନ୍ତା ସେ ସ୍ୱପ୍ନକୁ ଭାଙ୍ଗି ପାରିନଥିଲା । ଆବଶ୍ୟକ ହେଲେ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧ ପାଇଁ ହେଷ୍ଟିଂସ୍ ପ୍ରସ୍ତୁତ ହେଲେ ।

ମାର୍ଚ୍ଚ ୧୮୧୬ ମସିହାରେ ବେରାର୍‌ର ଭୋନ୍‌ସ୍ଲାଙ୍କର ହଠାତ୍ ମୃତ୍ୟୁ ହେଲା । ତାଙ୍କର ପୁତ୍ର ଥିଲେ ଅନ୍ଧ, ଜଡ଼ ଓ ନିର୍ବୋଧ । ଏଣୁ ତାଙ୍କର ପୁତୁରା ଆପ୍ପା ସାହେବଙ୍କୁ ରିଜେଣ୍ଟ ବା ରାଜ ପ୍ରତିନିଧି ରୂପେ ନିଯୁକ୍ତ କରାଗଲା । ଦରବାରର ଗୋଟିଏ ଗୋଷ୍ଠୀ ତାଙ୍କର ବିରୋଧୀ ଥିଲେ । ପରିସ୍ଥିତିର ସୁବିଧା ନେଇ କମ୍ପାନୀ ଆପ୍ପା ସାହେବଙ୍କ ସହ ନୂତନ ଚୁକ୍ତି କଲେ । ଏହି ଚୁକ୍ତି ବଳରେ ବାହ୍ୟ ଆକ୍ରମଣ ବିରୁଦ୍ଧରେ କମ୍ପାନୀର ପୂର୍ଣ୍ଣ ସହାୟତା ପାଇଁ କମ୍ପାନୀର ଛ' ବାଟାଲିଅନ୍ ପଦାତିକ ଓ ଏକ ବାଟାଲିଅନ୍ ଅଶ୍ୱାରୋହୀ ସୈନ୍ୟ ରାଜ୍ୟରେ ରଖିବାକୁ ଆପ୍ପା ସାହେବ ସମ୍ମତ ହେଲେ ଓ ସେମାନଙ୍କର ଖର୍ଚ୍ଚ ବାବଦକୁ ବାର୍ଷିକ ସାଢ଼େ ସାତ ଲକ୍ଷ ମୁଦ୍ରା ଦେବାକୁ ରାଜି ହେଲେ । ପିଣ୍ଡାରୀଙ୍କ ବିରୁଦ୍ଧରେ ଭୋନସ୍ଲାଙ୍କ ସମର୍ଥନ ବିଷୟରେ ହେଷ୍ଟିଂସ୍‌ଙ୍କ ସନ୍ଦେହ ରହିଲା ନାହିଁ ।

କିନ୍ତୁ ଅନ୍ୟ ମରହଟ୍ଟା ଶକ୍ତିମାନେ ଯେ ଇଂରେଜମାନଙ୍କ ବିରୁଦ୍ଧରେ ଗୁପ୍ତ ଷଡ଼ଯନ୍ତ୍ରରେ ଲିପ୍ତ ଅଛନ୍ତି, ଏହାର ବିସ୍ତୃତ ବିବରଣୀ ହେଷ୍ଟିଂସ୍‌ଙ୍କ ନିକଟରେ ପହଞ୍ଚୁଥିଲା । ହେଷ୍ଟିଂସ୍ ସେମାନଙ୍କର କଥା ଓ ପ୍ରତିଶ୍ରୁତି ଉପରେ ଭରସା ନ ରଖି, ସେମାନଙ୍କ ସହିତ ନିର୍ଦ୍ଦୟ ଓ କଠୋର କାରବାର କରିବାକୁ ନିଷ୍ପତ୍ତି ନେଲେ । ଲର୍ଡ଼ ହେଷ୍ଟିଂସ୍ ପେଶ୍ୱା ବାଜିରାଓ (୨)ଙ୍କୁ ବିଶ୍ୱାସଘାତକାର ଅବତାର ରୂପେ ବିଚାର କରୁଥିଲେ । ଅବଶ୍ୟ ଭାରତୀୟଙ୍କ ଦୃଷ୍ଟିରେ ଯାହାଥିଲା ଦେଶାତ୍ମବୋଧ, ଇଂରେଜ ଐତିହାସିକମାନେ ତାକୁ ବିଶ୍ୱାସଘାତକତା ରୂପେ ଚିତ୍ରଣ କରୁଥିଲେ । ସେ ସମୟରେ ପୁନାରେ ଅବସ୍ଥାପିତ କମ୍ପାନୀ ପ୍ରତିନିଧି ଏଲଫିନ୍‌ଷ୍ଟୋନ୍ ପେଶ୍ୱାଙ୍କ ତଥାକଥିତ ବିଶ୍ୱାସଘାତକତାର ସମସ୍ତ ବିବରଣୀ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ନିୟମିତ ରୂପେ ଜଣାଇ ଦେଉଥିଲେ । କାଳବିଳମ୍ବ

ନ କରି ହେଷ୍ଟିଂସ୍ ଶକ୍ତି ପ୍ରୟୋଗର ଧମକରେ ପୂର୍ବରୁ ବଳବନ୍ତର ଥିବା ବେସିନ୍ ଚୁକ୍ତି ସହିତ ଆଉ ଏକ ନୂତନ ଅଥଚ କଠୋର ଚୁକ୍ତିରେ ସ୍ୱାକ୍ଷର କରିବାକୁ ପେଶ୍ୱାଙ୍କୁ ବାଧ କଲେ । ପେଶ୍ୱାଙ୍କର ଅଭିଯୋଗ ଥିଲା, ମରହଟ୍ଟା ରାଜ୍ୟପୁଞ୍ଜର ସେ ମୁଖ୍ୟ ଥିଲେ ମଧ ଗାଏକୋୟାର୍ଡ଼ ଓ ସିନ୍ଧିଆ ଆଦି ରାଜାମାନେ ସେମାନଙ୍କର ଦେୟ ବାର୍ଷିକ ସଲାମୀ ତାଙ୍କୁ ଦେଉନାହାନ୍ତି । ଏହି ବିବାଦର ସମାଧାନ ଲାଗି ଗାଏକୋୟାର୍ଡ଼ ତାଙ୍କର ପ୍ରଧାନମନ୍ତ୍ରୀ ଜଣେ ବିଜ୍ଞ ବ୍ରାହ୍ମଣ ଗଙ୍ଗାଧର ଶାସ୍ତ୍ରୀଙ୍କୁ ପୁନା ପଠାଇଲେ । ଶାସ୍ତ୍ରୀ ଥିଲେ ପୂର୍ଣ୍ଣ ବ୍ରିଟିଶ୍ ସମର୍ଥକ । ଏଣୁ ପେଶ୍ୱା ତାଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ତଥାପି ଶାସ୍ତ୍ରୀ କିଛି ଦିନ ଅପେକ୍ଷା କଲା ପରେ ସମାଧାନର ଯେଉଁ ସୂତ୍ର ପ୍ରସ୍ତୁତ କଲେ, ତାହା ପେଶ୍ୱାଙ୍କ ଦ୍ୱାରା ଗ୍ରହଣୀୟ ହେଲା ଏବଂ ଆନନ୍ଦରେ ସେ ଶାସ୍ତ୍ରୀଙ୍କ ପୁତ୍ର ସହିତ ନିଜ ଶାଳୀର ବିବାହ ବନ୍ଧନ ଅର୍ପଣ କଲେ । କିନ୍ତୁ ଗାଏକୋୟାର୍ଡ଼ ଏ ସମାଧାନ ସୂତ୍ରକୁ ପ୍ରତ୍ୟାଖ୍ୟାନ କଲେ । ବିବାଦ ସମାଧାନର ବିଫଳତାରେ ବିମର୍ଷ ହୋଇ ଶାସ୍ତ୍ରୀ ପୁତ୍ରର ବିବାହ ପ୍ରସ୍ତାବରୁ ଓହରିଗଲେ ଓ ବରୋଦା ଫେରିଯିବାକୁ ପ୍ରସ୍ତୁତ ହେଲେ ।

ବରୋଦା ପ୍ରତ୍ୟାବର୍ତ୍ତନ ପୂର୍ବରୁ ପେଶ୍ୱା ବାଜିରାଓ ପନ୍ଧାରପୁରରେ ଥିବା ଏକ ପ୍ରସିଦ୍ଧ ଦେବ ମନ୍ଦିର ପରିଦର୍ଶନରେ ଯିବା ପାଇଁ ଶାସ୍ତ୍ରୀଙ୍କୁ ଆମନ୍ତ୍ରଣ କଲେ । ପେଶ୍ୱାଙ୍କ ନିକଟତମ ବନ୍ଧୁ ଓ ମନ୍ତ୍ରୀ ତ୍ରିମ୍ବକଜୀଙ୍କ ସନିର୍ବନ୍ଧ ଅନୁରୋଧ ଭାଙ୍ଗି ନ ପାରି ଶାସ୍ତ୍ରୀ ତାଙ୍କ ସହିତ ପନ୍ଧାରପୁର ଯାତ୍ରା କଲେ । ପନ୍ଧାରପୁରରେ ଏପରି ଗୋଟିଏ ଘଟଣା ଘଟିଲା, ଯାହାକି ମରହଟ୍ଟା ରାଜନୀତିର ମୋଡ଼ ପରିବର୍ତ୍ତନ କରିଦେଲା । ମନ୍ଦିରରେ ପୂଜାର୍ଚ୍ଚନା ସାରି ଗଙ୍ଗାଧର ଶାସ୍ତ୍ରୀ ରାସ୍ତା ଉପରକୁ ଆସିବା ମାତ୍ରେ, ପୂର୍ବ ନିର୍ଦ୍ଧାରିତ କେତେଜଣ ଖଡ୍‌ଗଧାରୀ ଘାତକ ତାଙ୍କ ଉପରେ ଆକ୍ରମଣ କରି ତାଙ୍କୁ ହତ୍ୟା କଲେ । ସେଦିନ ଥିଲା ଜୁଲାଇ ୨୦ ତାରିଖ ୧୮୧୫ ମସିହା । ଜଣେ ନୈଷ୍ଠିକ ବ୍ରାହ୍ମଣ ଓ ପଡ଼ୋଶୀ ମରହଟ୍ଟା ରାଜ୍ୟର ପ୍ରଧାନମନ୍ତ୍ରୀଙ୍କର ମନ୍ଦିରରେ ପୂଜାପାଠ ପରେ ରାଜପଥରେ ଏପରି ନିର୍ମମ ହତ୍ୟା ଚାରିଆଡ଼େ ସନ୍ଦେହର ବାତାବରଣ ସୃଷ୍ଟି କଲା । ଏଲ୍‌ଫିନ୍‌ଷ୍ଟୋନ୍ ଏ ହତ୍ୟାକାଣ୍ଡ ପାଇଁ ମୃତ ଗଙ୍ଗାଧର ଶାସ୍ତ୍ରୀଙ୍କର ପ୍ରତିଦ୍ୱନ୍ଦ୍ୱୀ ଓ ବରୋଦାର ପ୍ରାକ୍ତନ ପ୍ରଧାନମନ୍ତ୍ରୀ ସୀତାରାମ ଓ ପେଶ୍ୱାଙ୍କର ମନ୍ତ୍ରୀ ତ୍ରିମ୍ବକଜୀଙ୍କୁ ପୂର୍ଣ୍ଣ ସନ୍ଦେହ କରୁଥିଲେ । ଗଭର୍ଣ୍ଣର ଜେନେରାଲ୍ ହେଷ୍ଟିଂସ୍‌ଙ୍କ ସମ୍ମତିକ୍ରମେ ତୁରନ୍ତ ଏ ହତ୍ୟାକାଣ୍ଡର ତଦନ୍ତ କରିବା ପାଇଁ ଓ ତ୍ରିମ୍ବକଜୀଙ୍କୁ ସଶରୀରେ ବ୍ରିଟିଶ୍ ହସ୍ତରେ ଅର୍ପଣ କରିବା ପାଇଁ ସେ ପେଶ୍ୱାଙ୍କ ନିକଟରେ ଦାବି କଲେ । କିନ୍ତୁ ପେଶ୍ୱା ଏ ଦାବି ଗ୍ରହଣ

କରିବାକୁ କୁଣ୍ଠିତ ଥିଲେ । ପେଶ୍ୱା ଯେ ନିଜେ ଏ ହତ୍ୟାକାଣ୍ଡରେ ସଂପୃକ୍ତ ନାହାଁନ୍ତି, ସନ୍ଦେହର ଏ ବଳୟରୁ ମୁକ୍ତ ରହିବା ପାଇଁ ଶେଷରେ ତ୍ରିମ୍ବକଜୀଙ୍କୁ ବ୍ରିଟିଶ୍ ହସ୍ତରେ ଅର୍ପଣ କରାଗଲା ଓ ବମ୍ବେ ନିକଟସ୍ଥ ଥାନା ଦୁର୍ଗରେ ବ୍ରିଟିଶ୍ ତତ୍ତ୍ୱାବଧାନରେ ତାଙ୍କୁ ବନ୍ଦୀ କରି ରଖାଗଲା । ପ୍ରାୟ ଗୋଟିଏ ବର୍ଷ ଥାନା ଦୁର୍ଗରେ ବନ୍ଦୀ ରହିବା ପରେ ଦିନେ ତ୍ରିମ୍ବକଜୀ ସ୍ଥାନୀୟ ମରହଟ୍ଟା ନେତାମାନଙ୍କ ସହାୟତାରେ ସେପ୍ଟେମ୍ବର ୧୮୧୬ ମସିହାରେ ବନ୍ଦିଶାଳାରୁ ପଳାୟନ କଲେ ।

ଏହାପରେ ଆରମ୍ଭ ହେଲା ପେଶ୍ୱା ବାଜିରାଓ (୨) ଓ ଇଂରେଜଙ୍କ ମଧ୍ୟରେ ତୁମୁଳ ସଂଘର୍ଷ । ତ୍ରିମ୍ବକଜୀଙ୍କ ପଳାୟନକୁ ପେଶ୍ୱା ଈଶ୍ୱରଙ୍କ ଆଶୀର୍ବାଦ ବୋଲି ମନେକରୁଥିଲେ । ଇଂରେଜମାନଙ୍କୁ ସମ୍ବାଦ ମିଳିଲା ଯେ ତ୍ରିମ୍ବକଜୀଙ୍କ ସହିତ ପେଶ୍ୱାଙ୍କର ଗୁପ୍ତ ପତ୍ର ବିନିମୟ ଚାଲିଛି ଓ ରାଜ୍ୟର ବିଭିନ୍ନ ସ୍ଥାନରେ ଇଂରେଜ-ବିରୋଧୀ ଯୁଦ୍ଧ ପାଇଁ ମରହଟ୍ଟାମାନଙ୍କର ପ୍ରସ୍ତୁତି ଚାଲିଛି । ୧୮୧୭ ମସିହା ମେ ମାସରେ, ହେଷ୍ଟିଂସ୍‌ଙ୍କ ନିର୍ଦ୍ଦେଶରେ ଏଲ୍‌ଫିନ୍‌ଷ୍ଟୋନ୍ ପେଶ୍ୱା ବାଜିରାଓଙ୍କ ନିକଟରେ ଦାବି କଲେ ଯେ ଏକମାସ ମଧ୍ୟରେ ତ୍ରିମ୍ବକ୍‌ଜୀଙ୍କୁ ଗିରଫ୍ କରି ଇଂରେଜମାନଙ୍କ ନିକଟରେ ଅର୍ପଣ କରନ୍ତୁ ଓ ଏ ପ୍ରତିଶ୍ରୁତି ଯେ ସେ ପାଳନ କରିବେ, ତା'ର ସନ୍ତକ ସ୍ୱରୂପ ତିନୋଟି ଦୁର୍ଗ ଇଂରେଜଙ୍କ ଅକ୍ତିଆର୍‌ରେ ଛାଡ଼ି ଦିଅନ୍ତୁ । ବେସିନ୍ ଚୁକ୍ତି ସତ୍ତ୍ୱେ ବାଜିରାଓ ବାରବାର ବିଶ୍ୱାସଘାତକତା କରିଥିବାରୁ, ସେ ଆଉ ଏକ କଠୋର ସର୍ତ୍ତ ସମ୍ବଳିତ ଚୁକ୍ତିରେ ସ୍ୱୀକୃତି ଦିଅନ୍ତୁ । ଏହି ନୂତନ ଚୁକ୍ତି ଅନୁଯାୟୀ ପେଶ୍ୱା ସମସ୍ତ ମରହଟ୍ଟା ଶକ୍ତିପୁଞ୍ଜର ସର୍ବୋଚ୍ଚ କର୍ତ୍ତା ଭାବରେ ଯେଉଁ ଆସନ ଓ ସମ୍ମାନ ଦାବି କରନ୍ତି, ତାହା ଆଉ ଗ୍ରହଣୀୟ ହେବ ନାହିଁ । ପୁନା ନିକଟସ୍ଥ ଅହମ୍ମଦ୍ ନଗର ଫୋର୍ଟ ଓ ବାର୍ଷିକ ୩୪ ଲକ୍ଷ ଟଙ୍କା ଆୟ ଦେଉଥିବା ତତ୍‌ସଂଲଗ୍ନ ଅଞ୍ଚଳଗୁଡ଼ିକର କର୍ତ୍ତୃତ୍ୱ ଇଂରେଜମାନଙ୍କୁ ଅର୍ପଣ କରନ୍ତୁ । ସର୍ତ୍ତଗୁଡ଼ିକର କଠୋରତା ସତ୍ତ୍ୱେ ପେଶ୍ୱା ବାଜିରାଓ ଅବସ୍ଥା ଚକ୍ରରେ ନୂତନ ଚୁକ୍ତିରେ ସ୍ୱାକ୍ଷର କରିବାକୁ ବାଧ୍ୟ ହେଲେ । ମରହଟ୍ଟା ରାଜ୍ୟପୁଞ୍ଜ ଉପରେ ତାଙ୍କର ସାର୍ବଭୌମତ୍ୱ ଏହିଠାରୁ ବିଲୋପ ହେବାକୁ ଆରମ୍ଭ କଲା ।

ଉତ୍ତରରେ ସିନ୍ଧିଆଙ୍କୁ ନିୟନ୍ତ୍ରଣରେ ରଖିବା ପାଇଁ ହେଷ୍ଟିଂସ୍ ନିଷ୍ପତ୍ତି ନେଲେ । ସିନ୍ଧିଆଙ୍କୁ ସ୍ପଷ୍ଟ ଜଣାଇ ଦିଆଗଲା ଯେ କମ୍ପାନୀର ସୈନ୍ୟମାନଙ୍କୁ ତାଙ୍କ ରାଜ୍ୟ ଦେଇ ଯାତାୟାତ କରିବାକୁ ସମସ୍ତ ସୁବିଧା ଦେବେ । ପିଣ୍ଡାରୀଙ୍କ ବିରୁଦ୍ଧରେ ବ୍ୟବହାର

କରିବା ପାଇଁ ପାଞ୍ଚହଜାର ଅଶ୍ୱାରୋହୀ ସୈନ୍ୟ ଯୋଗାଇ ଦେବେ । ଯେହେତୁ ପୂର୍ବ ଚୁକ୍ତିର ଖିଲାପ୍ କରି ସେ ଇଂରେଜମାନଙ୍କ ବିରୁଦ୍ଧରେ ଚକ୍ରାନ୍ତ କରୁଛନ୍ତି, ତେଣୁ କମ୍ପାନୀର ବ୍ୟବହାର ପାଇଁ ସେ ତାଙ୍କର ଦୁଇଟି ମୁଖ୍ୟ ଦୁର୍ଗ କମ୍ପାନୀକୁ ହସ୍ତାନ୍ତର କରିବେ । ପୁନଶ୍ଚ ସିନ୍ଧିଆଙ୍କ ପ୍ରଚ୍ଛନ୍ନ ସମର୍ଥନରେ ପିଣ୍ଡାରୀମାନେ ଯେଉଁ ସବୁ ରାଜ୍‌ପୁତ୍ ରାଜ୍ୟରେ ଲୁଟ୍‌ତରାଜ କରୁଛନ୍ତି, ସେହି ରାଜ୍ୟମାନେ ଏଣିକି ବ୍ରିଟିଶ୍‌ମାନଙ୍କର କରଦ ରାଜ୍ୟ ରୂପେ ବିବେଚିତ ହେବେ ଏବଂ ଲୁଣ୍ଠନକାରୀମାନଙ୍କ ବିରୁଦ୍ଧରେ ସେମାନଙ୍କୁ ପୂର୍ଣ୍ଣ ସମର୍ଥନ ଦିଆଯିବ । ପରିସ୍ଥିତିର ଚାପରେ ସିନ୍ଧିଆ ଏହି ନୂତନ ସର୍ତ୍ତଗୁଡ଼ିକ ଗ୍ରହଣ କରିନେଲେ ।

ପିଣ୍ଡାରୀମାନଙ୍କର ଆଉ ଜଣେ ବିଶିଷ୍ଟ ପୃଷ୍ଠପୋଷକ ଥିଲେ ଅମୀର ଖାଁ । ହୋଲ୍‌କାର୍ ଯଶୋବନ୍ତ ରାଓଙ୍କ ମୃତ୍ୟୁ ସମୟକୁ ଅମୀର ଖାଁ ଇନ୍ଦୋର୍‌ର ପ୍ରାୟ ଅର୍ଦ୍ଧାଧିକ ରାଜ୍ୟ ନିଜ କବଳକୁ ନେଇ ସାରିଥିଲେ ଓ ଯଶୋବନ୍ତ ରାଓଙ୍କ ମୃତ୍ୟୁ ପରେ ରାଜ୍ୟ ଶାସନ ମୁଖ୍ୟତଃ ଅମୀର ଖାଁ ପରିଚାଳନା କରୁଥିଲେ । ପେଶ୍ୱା, ଭୋନସ୍ଲା ଓ ସିନ୍ଧିଆଙ୍କ ଦୁର୍ଦ୍ଦଶା ଦେଖି, ଧୂର୍ତ୍ତ ଅମୀର ଖାଁ ଡକାୟତି ବେଉସା ତ୍ୟାଗ କରି ଇଂରେଜମାନଙ୍କ ଶରଣାପନ୍ନ ହେବାକୁ ନିର୍ଣ୍ଣୟ କଲେ ଓ ଏହି ଉଦ୍ଦେଶ୍ୟରେ ଦିଲ୍ଲୀର ଇଂରେଜ ପ୍ରତିନିଧି ମେଟ୍‌କାଫ୍‌ଙ୍କର ସାହାଯ୍ୟପ୍ରାର୍ଥୀ ହେଲେ । ହେଷ୍ଟିଂସ୍ ନୂତନ ଶତ୍ରୁ ସୃଷ୍ଟି କରିବା ପରିବର୍ତ୍ତେ, ମେଟ୍‌କାଫ୍‌ଙ୍କ ପରାମର୍ଶ କ୍ରମେ ଇନ୍ଦୋର୍‌ର ଯେଉଁ ଟଙ୍କ୍ ଅଞ୍ଚଳ ଅମୀର ଖାଁଙ୍କ ନିୟନ୍ତ୍ରଣରେ ଥିଲା, ତାଙ୍କୁ ସେହି ଟଙ୍କ୍‌ର ନବାବ ଘୋଷଣା କଲେ । ଏହିପରି ଭାବରେ ଦୁର୍ଦ୍ଧର୍ଷ ଡାକୁ ସର୍ଦ୍ଦାର ଅମୀର ଖାଁ ଇଂରେଜଙ୍କ ବାହୁଛାୟାତଳେ ଟଙ୍କ୍‌ର ନବାବ ଭାବରେ ପ୍ରାୟ ସତର ବର୍ଷ ରାଜୁତି କରିଥିଲେ ।

ପିଣ୍ଡାରୀମାନଙ୍କ ପୃଷ୍ଠପୋଷକମାନଙ୍କୁ ଉପରୋକ୍ତ ପ୍ରକାରେ ନିର୍ବଳ ଓ ନିସ୍ତେଜ କରି ଲର୍ଡ୍ ହେଷ୍ଟିଂସ୍ ୧୮୧୭ ମସିହା ଶରତ କାଳରେ ପିଣ୍ଡାରୀମାନଙ୍କ ଉପରେ ସର୍ବୁଆଶି ଆକ୍ରମଣ କରିବା ପାଇଁ ପ୍ରସ୍ତୁତ ହେଲେ । ହେଷ୍ଟିଂସ୍‌ଙ୍କ ଆକଳନ ଅନୁଯାୟୀ ପିଣ୍ଡାରୀମାନଙ୍କ ସଂଖ୍ୟା ଥିଲା ପ୍ରାୟ ତିରିଶ ହଜାର । ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ପାଇଁ ଅକ୍ଟୋବର ମାସରେ ଏକ ଲକ୍ଷ କୋଡ଼ିଏ ହଜାର ସୈନ୍ୟଙ୍କୁ ନିୟୋଜିତ କରାଗଲା । କିନ୍ତୁ ଇଂରେଜମାନଙ୍କ ପାଇଁ ସବୁଠାରୁ ବଡ଼ ପ୍ରତିବନ୍ଧକ ଥିଲା ଯେ ପିଣ୍ଡାରୀମାନେ ସାମନାସାମନି ଯୁଦ୍ଧ ପାଇଁ କେବେ ଆଗେଇ ଆସୁନଥିଲେ । ଏଣୁ

ହେଷ୍ଟିଂସ୍‌ଙ୍କ ଯୋଜନା ହେଲା, ଉତ୍ତର ଓ ଦକ୍ଷିଣ ଦୁଇପଟୁ ଆକ୍ରମଣ କରି ସେମାନଙ୍କୁ ବିଧ୍ୱସ୍ତ କରିବାକୁ ହେବ । ଉତ୍ତର ଦିଗରୁ ନିଜେ ଗଭର୍ଣ୍ଣର ଜେନେରାଲ୍ ଓ ଦକ୍ଷିଣରୁ ମାନ୍ଦ୍ରାଜ୍ ସୈନ୍ୟବାହିନୀର ମୁଖ୍ୟ ସେନାପତି ସାର୍ ଥମାସ୍ ହିସଲପ୍ ସୈନ୍ୟଚାଳନାର ଦାୟିତ୍ୱ ନେଲେ ।

ଏହି ସମୟରେ ପୁନାରେ ଅବସ୍ଥାପିତ ରେସିଡ଼େଣ୍ଟ୍ ଏଲଫିନ୍‌ଷ୍ଟୋନ୍ ଗୁପ୍ତଚରମାନଙ୍କ ଜରିଆରେ ଖବର ପାଇଲେ ଯେ, ପେଶ୍ୱା ବାଜିରାଓ (ଦ୍ୱିତୀୟ) ପୁନଶ୍ଚ ବିଶ୍ୱାସଘାତକତା କରି ଇଂରେଜମାନଙ୍କ ଉପରେ ପ୍ରତିଆକ୍ରମଣ କରିବା ପାଇଁ ପ୍ରସ୍ତୁତ ହେଉଅଛନ୍ତି । ମରହଟ୍ଟାମାନଙ୍କ ଦୃଷ୍ଟିରେ ଯାହା ଥିଲା ଦେଶପ୍ରୀତିର ପରମ ପରିପ୍ରକାଶ, ଇଂରେଜମାନଙ୍କ ବିଚାରରେ ତାହା ଥିଲା ଚରମ ବିଶ୍ୱାସଘାତକତା । ଏଲ୍‌ଫିନ୍‌ଷ୍ଟୋନ୍ ପିଣ୍ଡାରୀ ଆକ୍ରମଣ ପାଇଁ ଉଦ୍ଦିଷ୍ଟ ବମ୍ବେରୁ ଆସୁଥିବା ଆଠଶହ ୟୁରୋପିଆନ୍ ସୈନ୍ୟଙ୍କୁ ପୁନା ଆସିବାକୁ ନିର୍ଦ୍ଦେଶ ଦେଲେ । ବାଜିରାଓଙ୍କଠାରୁ ଆଦେଶ ଆସିଲା ଯେ ତୁରନ୍ତ ୟୁରେପିଆନ୍ ସୈନ୍ୟମାନଙ୍କୁ ପୁନାରୁ ପ୍ରତ୍ୟାହାର କର, ନଚେତ୍ ଯୁଦ୍ଧ ଅବଶ୍ୟମ୍ଭାବୀ । ବ୍ରିଟିଶ୍ ରେସିଡ଼େଣ୍ଟ୍ ଏ ଆଦେଶକୁ ପ୍ରତ୍ୟାଖ୍ୟାନ କଲେ ଓ ପୁନାଠାରୁ ଚାରି ମାଇଲ ଦୂର କିର୍କି ନାମକ ସ୍ଥାନରେ ମାତ୍ର ତିନିହଜାର ସୈନ୍ୟଙ୍କ ସହିତ ଯୁଦ୍ଧ ପାଇଁ ଅପେକ୍ଷା କଲେ । ଯେଉଁଦିନ ପୁନା ପରିତ୍ୟାଗ କରି ଏଲ୍‌ଫିନ୍‌ଷ୍ଟୋନ୍ କିର୍କିକୁ ପ୍ରସ୍ଥାନ କଲେ, ସେହିଦିନ ପୁନାସ୍ଥିତ ଇଂରେଜମାନଙ୍କର ରେସିଡ଼େନ୍‌ସୀ ଘରେ ନିଆଁ ଲଗାଇ ଦିଆଗଲା । ପରଦିନ କିର୍କି ଯୁଦ୍ଧରେ ବାଜିରାଓ ଭାବିଥିଲେ ତାଙ୍କର କୋଡ଼ିଏ ହଜାର ସୈନ୍ୟଙ୍କୁ ଦେଖି ଶତ୍ରୁପକ୍ଷର ସିପାହୀମାନେ ଯୁଦ୍ଧକ୍ଷେତ୍ରରୁ ପଳାୟନ କରିବେ ଓ ତାଙ୍କର ବିରାଟ ସୈନ୍ୟବାହିନୀକୁ ନିୟୋଗ କରି ସେ ନିଶ୍ଚିତ ଭାବରେ ଜୟଲାଭ କରିବେ । କିନ୍ତୁ ତାଙ୍କର ସମସ୍ତ କଳ୍ପନା ବ୍ୟର୍ଥ ହେଲା । ସିପାହୀମାନେ ଇଂରେଜ ସେନାପତିଙ୍କ ନିର୍ଦ୍ଦେଶରେ ସାହସ ଓ ବୀରତ୍ୱପୂର୍ଣ୍ଣ ଲଢ଼ାଇ କଲେ । ଇଂରେଜ ପକ୍ଷର ଛୟାଅଶୀ ଜଣ ଓ ପେଶ୍ୱାଙ୍କର ପାଞ୍ଚଶହ ସୈନ୍ୟ ନିହତ ହେବା ପରେ, ବାଜିରାଓ ଆତଙ୍କିତ ହୋଇ ଯୁଦ୍ଧକ୍ଷେତ୍ରରୁ ପଛଘୁଞ୍ଚା ଦେଇ ପୁନା ପ୍ରତ୍ୟାବର୍ତ୍ତନ କଲେ । ସପ୍ତାହକ ମଧରେ ଇଂରେଜମାନଙ୍କୁ ସହାୟତା ଦେବା ପାଇଁ ନୂତନ ସୈନ୍ୟ ଦଳ ପୁନାରେ ପହଞ୍ଚିଲେ । ପେଶ୍ୱା ବାଜିରାଓ ଭୟରେ ପୁନା ଛାଡ଼ି ଦକ୍ଷିଣକୁ ପଳାୟନ କଲେ ଓ ତାଙ୍କୁ ଅନୁଧାବନ କଲେ ଏଲ୍‌ଫିନ୍‌ଷ୍ଟୋନ୍‌ଙ୍କ ସେନାବାହିନୀ ।

କିର୍କି ଯୁଦ୍ଧର ଅଳ୍ପଦିନ ପୂର୍ବରୁ ନାଗପୁରର ରେସିଡେଣ୍ଟ ଜେନ୍‌କିନ୍‌ସ ପିଣ୍ଡାରୀ ସର୍ଦ୍ଦାର ଚିତୁଙ୍କର ଜଣେ ଗୁପ୍ତଚରଠାରୁ ଖବର ପାଇଲେ ଯେ ନାଗପୁରର ଭୋନ୍‌ସ୍ଲା ଆପ୍ପା ସାହେବ ନିକଟରେ ପେଶ୍ୱାଙ୍କ ସହିତ ଯୋଗ ଦେଇଛନ୍ତି । ପେଶ୍ୱା ଆପ୍ପା ସାହେବଙ୍କୁ ସମ୍ମାନସୂଚକ ଖିଲାତ୍ ବା ରାଜକୀୟ ପରିଚ୍ଛଦ ପ୍ରଦାନ କରିଛନ୍ତି ଓ ସେନାପତି ପଦରେ ସମ୍ମାନିତ କରିଛନ୍ତି । ଏହି ଘଟଣାରୁ ପେଶ୍ୱାଙ୍କର ମରହଟ୍ଟା ନେତାମାନଙ୍କ ସହିତ ଷଡ଼ଯନ୍ତ୍ରମୂଳକ ସମ୍ପର୍କର ସ୍ପଷ୍ଟ ସୂଚନା ମିଳିଲା । ଏ ଆପ୍ପା ସାହେବ ସେହି ଯୁବକ, ଯାହାଙ୍କୁ ଭୋନ୍‌ସ୍ଲାଙ୍କର ମୃତ୍ୟୁ ପରେ ତାଙ୍କର ନିର୍ବୋଧ ପୁତ୍ରର ରାଜପ୍ରତିନିଧି ରୂପେ ଇଂରେଜମାନେ ନିଯୁକ୍ତ କରିଥିଲେ ଓ ସେହି ନିର୍ବୋଧ ବାଳକର ମୃତ୍ୟୁ ପରେ ଆପ୍ପା ସାହେବଙ୍କୁ ଭୋନ୍‌ସ୍ଲା ଗାଦିରେ ବସାଇଥିଲେ । କିର୍କି ଯୁଦ୍ଧରେ ପରାସ୍ତ ହୋଇ ପେଶ୍ୱା ପଳାୟନ କରୁଥିବା ସମୟରେ ଭୋନ୍‌ସ୍ଲା ଆପ୍ପା ସାହେବ ଚରମ ମୂର୍ଖତା ପ୍ରଦର୍ଶନ କରି ନାଗପୁର୍‌ରେ ଥିବା ଇଂରେଜମାନଙ୍କର ରେସିଡେନ୍‌ସୀ ଉପରେ ଆକ୍ରମଣ କଲେ । ନାଗପୁରରେ ସେତେବେଳେ ଜେନ୍‌କିନ୍‌ସଙ୍କ ଅଧୀନରେ ମାତ୍ର ପନ୍ଦର ଶହ ସିପାହୀ ଥିଲେ ଓ ପିଣ୍ଡାରୀ ଯୁଦ୍ଧ ପାଇଁ ଅନ୍ୟମାନଙ୍କୁ ବିଭିନ୍ନ ସ୍ଥାନକୁ ସ୍ଥାନାନ୍ତରିତ କରାଯାଇଥିଲା । ହେଷ୍ଟିଂସ୍‌ଙ୍କ ଦୃଷ୍ଟିରେ ଆପ୍ପା ସାହେବ ବ୍ରିଟିଶ୍ ସରକାରଙ୍କ ଦୟାରେ ଭୋନ୍‌ସ୍ଲା ଗାଦି ହାସଲ କରିବା ପରେ ପତନୋନ୍ମୁଖ ପେଶ୍ୱାଙ୍କ ପ୍ରରୋଚନାରେ ଇଂରେଜମାନଙ୍କ ଉପରେ ଆକ୍ରମଣ କରିବା ଥିଲା ଚରମ ମୂର୍ଖତା ଓ ଅନାବିଳ ବିଶ୍ୱାସଘାତକତା ଓ ତାଙ୍କୁ ଗାଦିଚ୍ୟୁତ କରିବା ହିଁ ଏକମାତ୍ର ସମାଧାନ । ସୀତାବାଲ୍‌ଡି ପାହାଡ଼ ନିକଟରେ ଅବସ୍ଥିତ ରେସିଡେନ୍‌ସୀ ଉପରେ ଆପ୍ପା ସାହେବ କୋଡ଼ିଏ ହଜାର ସୈନ୍ୟ ଓ ଛତିଶଟି କମାଣ ନେଇ ଆକ୍ରମଣ କଲେ । ସେ ଭାବିଥିଲେ ଇଂରେଜଙ୍କ ସିପାହୀମାନେ ଭୟରେ ଛତ୍ରଭଙ୍ଗ ଦେବେ । କିନ୍ତୁ ତାଙ୍କର ଆକଳନ ଭ୍ରାନ୍ତ ପ୍ରମାଣିତ ହେଲା । ଅଳ୍ପ ସଂଖ୍ୟକ ହେଲେ ମଧ୍ୟ ସିପାହୀମାନେ ସାହସର ସହିତ ପ୍ରାଣପାତ ସଂଗ୍ରାମ କଲେ । ଅଠର ଘଣ୍ଟା ଲଢ଼େଇ ପରେ ଆପ୍ପା ରାଓ ହତାଶ୍ ହୋଇ ପଛଘୁଞ୍ଚା ଦେଲେ ଓ ଶାନ୍ତି ପାଇଁ ଜେନ୍‌କିନ୍‌ସଙ୍କ ନିକଟରେ ଆବେଦନ କଲେ । ଏ ମଧ୍ୟରେ ବ୍ରିଗେଡିଅର୍ ଡୋଭଟନ୍‌ଙ୍କ ନେତୃତ୍ୱରେ ଗୋଟିଏ ଡିଭିଜନ ନାଗପୁରରେ ପହଞ୍ଚିଲେ । ଏହାପରେ ଆତ୍ମସମର୍ପଣ ବ୍ୟତୀତ ଆପ୍ପା ସାହେବଙ୍କର ଗତ୍ୟନ୍ତର ନଥିଲା । ଜେନ୍‌କିନ୍‌ଙ୍କ ଦ୍ୱାରା ପ୍ରସ୍ତୁତ ସନ୍ଧି ସର୍ତ୍ତ ଅନୁଯାୟୀ ରାଜ୍ୟର ବିସ୍ତୃତ ଅଞ୍ଚଳ ସେ ଇଂରେଜମାନଙ୍କୁ ହସ୍ତାନ୍ତର କଲେ ଓ ସେନା ଓ ପ୍ରଶାସନର ଅସଲ କ୍ଷମତାରୁ ବଞ୍ଚିତ ହେଲେ । ରାଜ୍ୟ, କର୍ତ୍ତୃତ୍ୱ ଓ

କ୍ଷମତାରୁ ବଞ୍ଚିତ ହୋଇ କେବଳ ଜେନ୍‌କିନ୍‌ଙ୍କ ଦୟାରୁ ଏକ କଣ୍ଟକମୟ ରାଜମୁକୁଟ ଆପ୍ପା ସାହେବ ପ୍ରାପ୍ତ ହେଲେ ।

ଇଂରେଜମାନେ ଯେଉଁ ସମୟରେ ବହୁ ସୈନ୍ୟସାମନ୍ତ ଗୋଳାବନ୍ଧୁକ ଧରି ପିଣ୍ଡାରୀମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଥିଲେ, ପିଣ୍ଡାରୀମାନଙ୍କ ପୃଷ୍ଠପୋଷକମାନେ ବିଭିନ୍ନ ରାଜ୍ୟରେ ଇଂରେଜଙ୍କ ବିରୁଦ୍ଧରେ ସୈନ୍ୟଚାଳନା କରିବାରେ ଅବହେଳା କରୁନଥିଲେ । ଏହି ପୃଷ୍ଠପୋଷକମାନେ ଥିଲେ ମଧ୍ୟ-ଭାରତର ମହାରାଷ୍ଟ୍ରୀୟ ଶାସକ ଗୋଷ୍ଠୀ । ବିଶେଷତ୍ୱ ଏତିକି ଯେ ଏମାନଙ୍କ ମଧ୍ୟରେ କୌଣସି ସହୃଦୟତା ବା ଘନିଷ୍ଠ ସହଯୋଗ ନଥିଲା । ଅମୀର ଖାଁ ଇଂରେଜମାନଙ୍କ ସହ ମିତ୍ରତା ପ୍ରତିଷ୍ଠା କରି ଟଙ୍କର ନବାବ ଗାଦିରେ ବସିବା ପରେ ହୋଲ୍‌କାରଙ୍କ ଦରବାର ଭାଗଭାଗ ହୋଇଯାଇଥିଲା । ଦଳେ କମ୍ପାନୀ ସମର୍ଥକ ଥିବା ବେଳେ ଆଉ ଗୋଟିଏ ଗୋଷ୍ଠୀ ପୂର୍ବତନ ହୋଲ୍‌କାର୍‌ଙ୍କ ରକ୍ଷିତା ତୁଳସୀବାଈଙ୍କୁ ହତ୍ୟା କରି ସୈନ୍ୟସାମନ୍ତ ସହ ପେଶ୍ୱାଙ୍କୁ ଭେଟିବା ଉଦ୍ଦେଶ୍ୟରେ ଦକ୍ଷିଣକୁ ଇନ୍ଦୋର ଅଭିମୁଖେ ଯାତ୍ରା କଲେ । କେତେଗୁଡ଼ିଏ ପିଣ୍ଡାରୀ ଦଳ ମଧ୍ୟ ସେମାନଙ୍କ ସହ ଯୋଗ ଦେଇଥିଲେ । କିନ୍ତୁ ସେମାନଙ୍କର ଦୁର୍ଭାଗ୍ୟକୁ ଏହି ସମୟରେ ନବନିଯୁକ୍ତ ଇଂରେଜ ସେନାପତି ମାଲ୍‌କମ୍ ମାନ୍ଦ୍ରାଜ୍ ସୈନ୍ୟବାହିନୀ ଗୋଟିଏ ଡିଭିଜନ୍ ସୈନ୍ୟଙ୍କ ସହିତ ଉତ୍ତରକୁ ପିଣ୍ଡାରୀ ସର୍ଦ୍ଦାର ଚିତୁଙ୍କର ଅନୁଧାବନ କରୁଥିଲେ । ହୋଲ୍‌କାର୍‌ଙ୍କ ଅଗ୍ରଗମନ ସମ୍ପର୍କୀୟ ଖବର ପାଇ ମାନ୍ଦ୍ରାଜ୍ ବାହିନୀର ମୁଖ୍ୟ ସେନାପତି ସାର୍ ଥମାସ୍ ହିସ୍‌ଲପ୍ ଆଉ ଗୋଟିଏ ଡିଭିଜନ୍ ସୈନ୍ୟଙ୍କ ସହ ମାଲ୍‌କମ୍‌ଙ୍କ ସହ ମିଳିତ ହେଲେ । ଡିସେମ୍ବର ୨୧ ତାରିଖରେ ମାହୀଦପୁରଠାରେ ଉଭୟ ପକ୍ଷର ସଂଘର୍ଷ ହେଲା । ଏ ଯୁଦ୍ଧରେ ହୋଲ୍‌କାର୍‌ଙ୍କ ସୈନ୍ୟମାନେ ସମ୍ପୂର୍ଣ୍ଣ ପରାଜିତ ହେଲେ । ତିନିହଜାର ମରହଟ୍ଟା ସୈନ୍ୟ ନିହତ ହେଲେ ଓ ଅନ୍ୟମାନେ ଛତ୍ରଭଙ୍ଗ ଦେଇ ଯୁଦ୍ଧ କ୍ଷେତ୍ରରୁ ପଳାୟନ କଲେ । ପ୍ରାୟ ସତୁରିଟି କମାଣ ଇଂରେଜମାନଙ୍କର ହସ୍ତଗତ ହେଲା ।

ଡିସେମ୍ବର ଶେଷ ଆଡ଼କୁ କେତେକ ଦରବାରିଆଙ୍କ ପରାମର୍ଶ କ୍ରମେ ନାବାଳକ ହୋଲ୍‌କାର୍ ମଲ୍‌ହାର ରାଓ ଶାନ୍ତି ପାଇଁ ଇଂରେଜଙ୍କ ଶରଣାପନ୍ନ ହେଲେ । ଶାନ୍ତି ଚୁକ୍ତି ଅନୁଯାୟୀ ମଲ୍‌ହାର-ରାଓ ସାର୍ବଭୌମତ୍ୱ ହରାଇ କମ୍ପାନୀର ଅଧସ୍ତନ କରଦ ରାଜ୍ୟ ରୂପେ ସ୍ୱୀକୃତ ହେଲେ । ରାଜପୁତାନାର ଯେଉଁସବୁ ରାଜ୍ୟ ହୋଲ୍‌କାର୍‌ଙ୍କ ଅଧୀନରେ

ଥିଲେ, ସେ ସବୁ ରାଜ୍ୟ ଉପରୁ ହୋଲ୍‌କାର୍‌ଙ୍କ କ୍ଷମତା ରଦ୍ଦ ହେଲା ଓ ସେଗୁଡ଼ିକ କମ୍ପାନୀର ଅନୁଗତ ରାଜ୍ୟ ରୂପେ ବିବେଚିତ ହେଲେ ।

ପୁନା ନିକଟସ୍ଥ କିର୍କି, ନାଗପୁର୍‌ର ସୀତାବାଲ୍‌ଡି ଓ ଇନ୍ଦୋର ନିକଟସ୍ଥ ମହୀଦ୍‌ପୁର୍‌ରେ ପେଶ୍ୱା, ଭୋନ୍‌ସ୍ଲା ଓ ହୋଲ୍‌କାରଙ୍କ ସୈନ୍ୟମାନେ ପରାଜିତ ହେବା ପରେ ପିଣ୍ଡାରୀମାନେ ସମ୍ପୂର୍ଣ୍ଣ ହତୋତ୍ସାହ ହୋଇ ଯୁଦ୍ଧଭୂଇଁରୁ ପଳାୟନ କଲେ । ପିଣ୍ଡାରୀଙ୍କ ମୁଖ୍ୟ ସର୍ଦ୍ଦାର ଚିତୁଙ୍କ ବ୍ୟତୀତ ଅନ୍ୟ ସମସ୍ତ ପିଣ୍ଡାରୀ ନେତାମାନେ ସହଯୋଗୀମାନଙ୍କ ସହ ଯୁଦ୍ଧରେ ନିହତ ହୋଇଥିଲେ କିମ୍ବା ଆତ୍ମସମର୍ପଣ କରିଥିଲେ । ଚିତୁ ଦୁର୍ଦ୍ଦିନ ବେଳେ ସହଯାତ୍ରୀଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ନିକଟସ୍ଥ ଜଙ୍ଗଲରେ ଆଶ୍ରୟ ନେଇଥିଲେ । ଶୁଣାଅଛି, ସେହି ଜଙ୍ଗଲରେ ବ୍ୟାଘ୍ର ଆକ୍ରମଣରେ ଚିତୁର ମୃତ୍ୟୁ ହୋଇଥିଲା । ପିଣ୍ଡାରୀ ଅଭିଯାନ ଅଢ଼େଇ ବର୍ଷର ପ୍ରସ୍ତୁତି ପରେ ମାତ୍ର ଅଢ଼େଇ ମାସ ମଧ୍ୟରେ ସମାପ୍ତ ହୋଇଥିଲା ।

ପିଣ୍ଡାରୀମାନଙ୍କର ସର୍ବୋଚ୍ଚ ପୃଷ୍ଠପୋଷକ ପେଶ୍ୱା ବାଜିରାଓ ପୁନାରୁ ପଳାୟନ କରିବା ପରେ କୌଣସି ବଡ଼ ଯୁଦ୍ଧରେ ଇଂରେଜମାନଙ୍କର ସମ୍ମୁଖୀନ ହୋଇ ନଥିଲେ । ସେ କେବଳ ଲୁଚିଛପି ଖଣ୍ଡଯୁଦ୍ଧ କରି ଲୁଚୁକାଳି ଖେଳ ଖେଳୁଥିଲେ । ୧୮୧୮ ମସିହା ଜାନୁଆରୀ ପହିଲା ତାରିଖରେ ଉତ୍ତର ପୂର୍ବରୁ ଆସୁଥିବା ୯୦୦ ଭାରତୀୟ ସିପାହୀ ଆଠଜଣ ୟୁରୋପୀୟ ଅଫିସର୍‌ଙ୍କ ସହ ପୁନା ଆସୁଥିବା ସମୟରେ କୋରେଗାଁ ନିକଟରେ ଅପ୍ରତ୍ୟାଶିତ ଭାବରେ ପେଶ୍ୱାଙ୍କର ସେନାବାହିନୀର ସମ୍ମୁଖୀନ ହେଲେ ।

ସିପାହୀମାନଙ୍କର ଅଶେଷ ସାହସର ସହ ଆକ୍ରମଣ କରିବାରେ ପେଶ୍ୱାଙ୍କର ୨୮ ହଜାର ସୈନ୍ୟ ଛତ୍ରଭଙ୍ଗ ଦେଇଥିଲେ । ହେଷ୍ଟିଂସ୍ ଭାରତୀୟ ସିପାହୀଙ୍କର ଦୃଢ଼ ମନୋବଳର ପ୍ରଶଂସା କଲେ । ସାତ ସପ୍ତାହ ପରେ ଫେବ୍ରୁଆରୀ କୋଡ଼ିଏ ତାରିଖରେ ଉଭୟ ପକ୍ଷ ମଧ୍ୟରେ ପୁଣି ଥରେ ଯୁଦ୍ଧ ଆରମ୍ଭ ହେଲା । ମାତ୍ର କୋଡ଼ିଏ ଜଣ ସୈନ୍ୟ ହରାଇ ଇଂରେଜମାନେ ବାଜିରାଓଙ୍କର ପ୍ରଭୂତ କ୍ଷତି କରିବାକୁ ସମର୍ଥ ହୋଇଥିଲେ । ଶିବାଜୀଙ୍କ ବଂଶଧର ସତାରର ରାଜା ଓ ତାଙ୍କ ପରିବାରଙ୍କୁ ଡିସେମ୍ବର ମାସରୁ ବାଜିରାଓ ସାଙ୍ଗରେ ଧରି ଚାରିଆଡ଼େ ବିଚରଣ କରୁଥିଲେ । ସେ ଆଶା କରୁଥିଲେ ଯେ ସତାରା ରାଜାଙ୍କ ଉପସ୍ଥିତି ଦ୍ୱାରା ସେ ମରହଟ୍ଟାମାନଙ୍କର ଆନ୍ତରିକ ସମର୍ଥନ ଓ ସହଯୋଗ ଲାଭ କରିବେ । ଆଷ୍ଟି ଯୁଦ୍ଧରେ ଇଂରେଜମାନେ ସତାରା ରାଜା ଓ ତାଙ୍କ

ପରିବାରକୁ ବାଜିରାଓଙ୍କ କବଳରୁ ଉଦ୍ଧାର କରିଥିଲେ ଓ ତାଙ୍କୁ ସତାରା ରାଜଗାଦିରେ ପୁନଶ୍ଚ ପ୍ରତିଷ୍ଠିତ କରିଥିଲେ । ଏହି ଯୁଦ୍ଧରେ ବାଜିରାଓଙ୍କ ସେନାପତି ଗୋଖ୍‌ଲେ ମଧ୍ୟ ନିହତ ହେଲେ । ଗୋଖ୍‌ଲେ ଥିଲେ ଜଣେ ଅତି ସୁଦକ୍ଷ ଓ ସାହସୀ ସେନାପତି । ତାଙ୍କର ମୃତ୍ୟୁରେ ପେଶ୍ୱା ବାଜିରାଓ ନିଜକୁ ଅତ୍ୟନ୍ତ ଅସହାୟ ମନେ କଲେ ।

ଏଣେ ବାଜିରାଓ ଯେତେବେଳେ ଆତ୍ମରକ୍ଷା ପାଇଁ ବ୍ୟାକୁଳ, ମାର୍ଚ୍ଚ ମାସରେ ନାଗପୁରରେ ଏକ ଅକଳ୍ପନୀୟ ଘଟଣା ଘଟିଲା । ପେଶ୍ୱା ବାଜିରାଓଙ୍କୁ ଲିଖିତ ଭୋନ୍‌ସ୍ଲା ଆପ୍ପା ସାହେବଙ୍କର ଏକ ଚିଠି ଜେନ୍‌କିନ୍ସଙ୍କ ହସ୍ତଗତ ହେଲା । ଏହି ଚିଠିରେ ଆପ୍ପା ସାହେବ ନାଗପୁର ପ୍ରତ୍ୟାବର୍ତ୍ତନ କରିବାକୁ ବାଜିରାଓଙ୍କୁ ଅନୁରୋଧ କରିଥିଲେ ଓ ତାହେଲେ ବେରାର୍ ସୈନ୍ୟମାନେ ବାଜିରାଓଙ୍କୁ ସାହାଯ୍ୟ କରିବାକୁ ଆଗେଇଯିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଆପ୍ପା ସାହେବଙ୍କ ମୂର୍ଖତା ଓ ବିଶ୍ୱାସଘାତକତାରେ ଜେନ୍‌କିନ୍ସ ବିସ୍ମିତ ହେଲେ । ସେ ତୂରନ୍ତ ଆପ୍ପା ସାହେବଙ୍କୁ ଗିରଫ କରିବାକୁ ଆଦେଶ ଦେଲେ ଓ ବନ୍ଦୀ ରୂପେ ଅଟକ ରଖିବାକୁ ଆଲ୍ଲାହାବାଦ ପ୍ରେରଣ କଲେ । ରାସ୍ତାରେ ଆପ୍ପା ଜଗୁଆଳମାନଙ୍କୁ ଠକିଦେଇ ପଞ୍ଜାବ ପଳାୟନ କଲେ ଓ ଫକୀର ବେଶରେ ମହାରାଜା ରଣଜିତ ସିଂହଙ୍କର ସାହାଯ୍ୟପ୍ରାର୍ଥୀ ହେଲେ । ଶୁଣାଯାଏ ସେଠାରୁ ନିରାଶ ହେବା ପରେ ଯୋଧପୁର ରାଜା ତାଙ୍କୁ ଆଶ୍ରୟ ଦେଇଥିଲେ ।

ଚତୁର୍ଦ୍ଦିଗରୁ ସାହାଯ୍ୟଶୂନ୍ୟ ଓ ବନ୍ଧୁଚ୍ୟୁତ ହୋଇ ପେଶ୍ୱା ବାଜିରାଓ ହତାଶ ହୋଇପଡ଼ିଲେ । କ୍ରମେ ମୁଖ୍ୟ ସୈନ୍ୟ ଚାଳକ ଓ ସେନାପତିମାନେ ସହଯୋଗ କରିବା ପରିବର୍ତ୍ତେ ତାଙ୍କୁ ପରିତ୍ୟାଗ କରି ଯୁଦ୍ଧକ୍ଷେତ୍ରରୁ ଅପସରି ଗଲେ । ସୈନ୍ୟ ସଂଖ୍ୟା ହ୍ରାସ ପାଇବାକୁ ଲାଗିଲା । ମେ’ ମାସରେ ଇଂରେଜମାନେ ଯେତେବେଳେ ତାଙ୍କୁ କରଗତ କରିବା ପାଇଁ ପୁନର୍ବାର ଉଦ୍ୟମ ଆରମ୍ଭ କଲେ, ବାଜିରାଓ ନିରାଶ ହୋଇ ଇଂରେଜ ପ୍ରତିନିଧି ମାଲ୍‌କମ୍‌ଙ୍କୁ ସାକ୍ଷାତ କରିବା ପାଇଁ ଦୂତ ପଠାଇଲେ । ମାଲ୍‌କମ୍ ଏଡ଼େ ସହଜରେ ସାକ୍ଷାତ ଦେବାକୁ ସମ୍ମତ ହେଲେ ନାହିଁ । ବରଂ ଜଣେ ଅଧସ୍ତନ କର୍ମଚାରୀ ଲେଫ୍‌ଟନାଣ୍ଟ୍ ଲୋ’ଙ୍କୁ ଆଲୋଚନା ପାଇଁ ପ୍ରେରଣ କଲେ ଓ ବାର୍ତ୍ତା ଦେଲେ ଯେ ବାଜିରାଓଙ୍କୁ ଏଥର ନିଶ୍ଚିତ ଭାବରେ ପେଶ୍ୱାଗାଦି ତ୍ୟାଗ କରିବାକୁ ହେବ । ଲେଫ୍‌ଟନାଣ୍ଟ ଲୋ ଆଲୋଚନାରୁ ଫେରି ସମ୍ବାଦ ଦେଲେ ଯେ ବାଜିରାଓ ବାସ୍ତବିକ ଘୋର୍ ଆତଙ୍କିତ ଓ ମାଲ୍‌କମ୍‌ଙ୍କୁ ସାକ୍ଷାତ କରିବା ପାଇଁ ଅତ୍ୟନ୍ତ ବ୍ୟାକୁଳ । ଏହାପରେ ସାକ୍ଷାତ୍ ପାଇଁ

ମାଲ୍‌କମ୍ ରାଜି ହେଲେ । ଅଶ୍ରୁପୂର୍ଣ୍ଣ ନୟନରେ ବାଜିରାଓ ମାଲ୍‌କମ୍‌ଙ୍କ ଶରଣାଗତ ହୋଇ କ୍ଷମାପ୍ରାର୍ଥନା କଲେ ଓ ତାଙ୍କର ଏକମାତ୍ର ପୂର୍ବତନ ବନ୍ଧୁ ଭାବରେ ସାହାଯ୍ୟ ପାଇଁ ପ୍ରାର୍ଥନା କଲେ ।

କିନ୍ତୁ ହେଷ୍ଟିଂସ୍‌ଙ୍କ ନିର୍ଦ୍ଦେଶରେ ମାଲ୍‌କମ୍ ତାଙ୍କୁ ସ୍ପଷ୍ଟ ଜଣାଇଦେଲେ ଯେ, ଚବିଶ ଘଣ୍ଟା ମଧ୍ୟରେ ତାଙ୍କୁ ଗାଦି ତ୍ୟାଗ କରିବାକୁ ହେବ, ତାହେଲେ ତାଙ୍କୁ ସନ୍ତୋଷଜନକ ପେନ୍‌ସନ୍ ଦେଇ ଭବିଷ୍ୟତରେ ଚଳାଚଳର ସୁବିଧା କରି ଦିଆଯିବ । ନଚେତ୍ ଅସ୍ତ୍ର ପ୍ରୟୋଗରେ ତାଙ୍କର ଭବିଷ୍ୟତ ନିର୍ଦ୍ଧାରିତ ହେବ । ଧାର୍ଯ୍ୟ ସମୟର ଦୁଇଘଣ୍ଟା ପୂର୍ବରୁ ବାଜିରାଓ ଆତ୍ମସମର୍ପଣ କରି ପୁନାର ପେଶ୍ୱା ଗାଦିରୁ ଇସ୍ତଫା ପ୍ରଦାନ କଲେ ।

ପିଣ୍ଡାରୀ ଓ ମରହଟ୍ଟାମାନଙ୍କୁ ଦମନ କରିବା ପରେ ହେଷ୍ଟିଂସ୍‌ଙ୍କ ଅମଳରେ ବ୍ରିଟିଶ୍‌ମାନେ ଭାରତରେ ଅନ୍ୟ କୌଣସି ସାମରିକ କାର୍ଯ୍ୟାନୁଷ୍ଠାନରେ ଜଡ଼ିତ ହୋଇ ନଥିଲେ । ଅବଶ୍ୟ ୧୮୧୯ ମସିହାରେ ଜୋହର୍‌ର ସୁଲ୍‌ତାନ୍‌ଙ୍କଠାରୁ ଦାନ ସୂତ୍ରରେ ପାଇ ବ୍ରିଟିଶ୍‌ମାନେ ସିଙ୍ଗାପୁର୍ ଦଖଲ କରିଥିଲେ । ଏଥିପାଇଁ ଡଚ୍‌ମାନଙ୍କ ସହିତ ବିବାଦର ସୂତ୍ରପାତ ହୋଇଥିଲା । କିନ୍ତୁ ସୁମାତ୍ରା ଦ୍ୱୀପରେ ଥିବା ବ୍ରିଟିଶ୍ ଅଧିକୃତ ଅଞ୍ଚଳଗୁଡ଼ିକୁ ଡଚ୍‌ମାନଙ୍କୁ ପ୍ରତିଦାନ କରି ବିବାଦର ସମାଧାନ କରାଯାଇଥିଲା । ଗୋଟିଏ କ୍ଷୁଦ୍ର ସୈନ୍ୟ ଦଳକୁ ସେଠାରେ ଅବସ୍ଥାପିତ କରି ବ୍ରିଟିଶ୍‌ମାନେ ସିଙ୍ଗାପୁରକୁ କରାୟତ୍ତ କରିଥିଲେ ।

ଲର୍ଡ୍ ହେଷ୍ଟିଂସ୍ ଦୀର୍ଘ ୯ ବର୍ଷ କାଳ ଭାରତର ଗଭର୍ଣ୍ଣର ଜେନେରାଲ୍ ରହିଥିଲେ । ତାଙ୍କ ଅମଳରେ ଭାରତର ବିସ୍ତୀର୍ଣ୍ଣ ଅଞ୍ଚଳ ବ୍ରିଟିଶ୍ କମ୍ପାନୀର କର୍ତ୍ତୃତ୍ୱାଧୀନ ହେଲା । ଦୃଢ଼ ଶାସନ ପରିଚାଳନା ଦୃଷ୍ଟିରୁ ସେ ବିଭିନ୍ନ ଅଞ୍ଚଳ ପାଇଁ ଜଣେ ଜଣେ ଦକ୍ଷ ବରିଷ୍ଠ ଅଫିସରଙ୍କୁ କମିସନର୍ ନିଯୁକ୍ତ କରିଥିଲେ । ପୁନାର ପେଶ୍ୱା ଶାସିତ ଅଞ୍ଚଳ ପାଇଁ ଏଲ୍‌ଫିନ୍‌ଷ୍ଟୋନ୍; ବେରାର୍‌ର ଆପ୍ପା ସାହେବଙ୍କ ରାଜ୍ୟ ପାଇଁ ଚାର୍ଲ୍‌ସ ମାଲୋନୀ; ମାଲ୍ୱା ଅଞ୍ଚଳ ପାଇଁ ମାଲ୍‌କମ୍ କମିସନର ନିଯୁକ୍ତ ହୋଇଥିଲେ । କମିସନର୍‌ମାନଙ୍କୁ ଅଖଣ୍ଡ ପ୍ରଶାସନିକ କ୍ଷମତା ପ୍ରଦାନ କରାଯାଇଥିଲା ଓ କେତେଜଣ ବ୍ରିଟିଶ୍ କର୍ମଚାରୀଙ୍କ ସହାୟତାରେ ସେମାନେ ଶାସନ ପରିଚାଳନା କରୁଥିଲେ । ଏହି ପ୍ରଶାସନିକ ପରିଚାଳନା ପାଇଁ କୌଣସି ଆଇନ୍‌କାନୁନ୍ ପ୍ରଣୀତ ହୋଇନଥିଲା । କଳେବଳେ-କୌଶଳେ ଅଧିକୃତ ଅଞ୍ଚଳର ଅଧିବାସୀମାନଙ୍କୁ କମ୍ପାନୀର ନିୟନ୍ତ୍ରଣରେ ରଖିବା

କମିସନର୍‌ମାନଙ୍କର ମୁଖ୍ୟ ଦାୟିତ୍ୱ ଥିଲା । ଏତଦ୍‌ବ୍ୟତୀତ ମଧ୍ୟଭାରତ ଓ ରାଜପୁତାନାର ବହୁ ରାଜ୍ୟରେ ଶାସନ ପରିବର୍ତ୍ତେ ବିଶୃଙ୍ଖଳା ଓ ବିଭ୍ରାଟ ହିଁ ରାଜୁତି କରୁଥିଲା । ଏ ସବୁକୁ ନିୟନ୍ତ୍ରିତ କରିବା ଥିଲା କମ୍ପାନୀର ଦାୟିତ୍ୱ ।

ଅବଶ୍ୟ ଏହି ପ୍ରଶାସନିକ ଯୋଜନାରେ ଭାରତର ବା ଭାରତୀୟଙ୍କର ସମ୍ମାନ ବା ସ୍ୱାର୍ଥର ସ୍ଥାନ ନଥିଲା । ଚାଷୀ ମଜୁରିଆ ଓ କାରିଗରମାନଙ୍କର ସୁରକ୍ଷା ଓ ଉନ୍ନତିର ଭାବନା ବ୍ରିଟିଶ୍ ଶାସକ ଶ୍ରେଣୀର ଚିନ୍ତା ଓ ଚେତନାରେ ପ୍ରବେଶ କରୁନଥିଲା । ଦେଶୀୟ ରାଜ୍ୟମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନ କରିବା ପାଇଁ ହେଷ୍ଟିଂସ୍ ଓ ତାଙ୍କର ସହଯୋଗୀମାନେ ଯାହା ବାରମ୍ବାର ଘୋଷଣା କରୁଥିଲେ ତାହା ନୀତିସମ୍ମତ ନଥିଲା । କାରଣ ସ୍ଥାନୀୟ ପରିସ୍ଥିତିର ତାଡ଼ନାରେ ହସ୍ତକ୍ଷେପ ଅପରିହାର୍ଯ୍ୟ ହେଲେ ସେମାନେ ବ୍ରିଟିଶ୍ ସ୍ୱାର୍ଥରକ୍ଷା ପାଇଁ ଅସ୍ତ୍ରଚାଳନା କରିବାକୁ କୁଣ୍ଠିତ ନଥିଲେ ।

ବ୍ୟକ୍ତିଗତ ଭାବରେ ହେଷ୍ଟିଂସ୍ ଥିଲେ ଅତି ଭଦ୍ର ଓ ଅମାୟିକ । କିନ୍ତୁ ଶାସନ ପରିଚାଳନାରେ ଭାରତୀୟମାନଙ୍କ ଉପରେ ତାଙ୍କର ଆସ୍ଥା ନଥିଲା । ବରଂ ଶାସନର ସବୁ କ୍ଷେତ୍ରରେ ସେ ୟୁରୋପୀୟ ସହଯୋଗୀମାନଙ୍କ ଉପରେ ନିର୍ଭର କରୁଥିଲେ । କଲିକତା ସହର କେବଳ ଭାରତର ରାଜଧାନୀ ଓ ଗଭର୍ଣ୍ଣର ଜେନେରାଲ୍‌ଙ୍କ ବାସସ୍ଥଳୀ ନଥିଲା, କଲିକତା ଥିଲା ବଙ୍ଗାଳୀ ସଂସ୍କୃତିର କେନ୍ଦ୍ରସ୍ଥଳ । ଏଣୁ ଅତି ନିକଟରୁ ବଙ୍ଗାଳୀମାନଙ୍କୁ ଆକଳନ କରିବାର ସମସ୍ତ ସୁଯୋଗ ଥିଲେ ମଧ୍ୟ ହେଷ୍ଟିଂସ୍ ବଙ୍ଗାଳୀମାନଙ୍କୁ ତାଚ୍ଛଲ୍ୟପୂର୍ଣ୍ଣ ଦୃଷ୍ଟିରେ ବିବେଚନା କରୁଥିଲେ ।

ହିନ୍ଦୁ ସମାଜରେ ବହୁଦିନୁ ପ୍ରଚଳିତ ଅସଭ୍ୟ ବର୍ବର ସତୀଦାହ ପ୍ରଥାକୁ ଇଂରେଜମାନେ ଅବଶ୍ୟ ଅବଜ୍ଞା କରୁଥିଲେ । କିନ୍ତୁ ସାମରିକ କ୍ଷେତ୍ରରେ ସବୁ ସଫଳତା ସତ୍ତ୍ୱେ ସତୀଦାହ ପ୍ରଥା ଲୋପ କରିବା ପାଇଁ ହେଷ୍ଟିଂସ୍ କୌଣସି ଉଦ୍ୟମ କରିନଥିଲେ । ବରଂ କୁସଂସ୍କାର ଜଡ଼ିତ ସମାଜ ବ୍ୟବସ୍ଥା ଉପରେ ଆଘାତ କଲେ କାଳେ ସାମାଜିକ ବିଦ୍ରୋହ ହେବ, ଏହି ଆଶଙ୍କାରେ ସେ ସାମାଜିକ ସଂସ୍କାର ପ୍ରତି ଆଗ୍ରହାନ୍ୱିତ ନଥିଲେ ।



# ଊନବିଂଶ ଶତାବ୍ଦୀ ପ୍ରାରମ୍ଭରେ ଭାରତର ପ୍ରଶାସନିକ ବ୍ୟବସ୍ଥା

ଊନବିଂଶ ଶତାବ୍ଦୀର ପ୍ରାରମ୍ଭକାଳରେ ଭାରତର ଅର୍ଦ୍ଧେକରୁ ଅଧିକ ଅଞ୍ଚଳ ଇଷ୍ଟ ଇଣ୍ଡିଆ କମ୍ପାନୀର ଖାସ୍ ଦଖଲକୁ ଆସିଥିଲା । ଏତେ ବିସ୍ତୃତ ଅଞ୍ଚଳକୁ ଶାସନ କରିବା କମ୍ପାନୀ ଓ ବ୍ରିଟିଶ୍ ସରକାର ପକ୍ଷରେ ଦୁରୂହ ବ୍ୟାପାର ହେଲା । ଶାସନ ଚଳାଇବା ପାଇଁ ଅଧିକ ସଂଖ୍ୟାରେ ଦକ୍ଷ ଓ ଅଭିଜ୍ଞ ପ୍ରଶାସକଙ୍କର ଆବଶ୍ୟକତା ପଡ଼ିଲେ ମଧ ସେ ଅଭାବ ସହଜରେ ପୂରଣ ହୋଇପାରି ନଥିଲା । ଏହି କାରଣରୁ ସ୍ଥାନୀୟ ରାଜା ନବାବମାନଙ୍କୁ ଯୁଦ୍ଧରେ ପରାଜିତ କରି ରାଜ୍ୟ ଦଖଲ କଲେ ମଧ ଶାସନ ଚଳାଇବାର ଦାୟିତ୍ୱ କମ୍ପାନୀ ସହଜରେ ଗ୍ରହଣ କରୁନଥିଲେ । ଏଥିପାଇଁ ପୂର୍ବତନ ଶାସକମାନଙ୍କ ସହ କଠୋର ସର୍ତ୍ତ ସମ୍ବଳିତ ଚୁକ୍ତି କରେଇ ସେମାନଙ୍କୁ ବାନ୍ଧି ରଖିଲେ ମଧ ସହଜରେ ଗାଦିରୁ ବିତାଡ଼ିତ କରୁନଥିଲେ ।

ସେ କାଳରେ ପ୍ରଶାସନର ମୁଖ୍ୟ ଦାୟିତ୍ୱ ଥିଲା ଅଧିକରୁ ଅଧିକ ରାଜସ୍ୱ ଆଦାୟ କରିବା ଏବଂ ସେହି ଉଦ୍ଦେଶ୍ୟ ପୂରଣ ପାଇଁ ବିଚାର ବିଭାଗ ଓ ପୋଲିସ୍ ବାହିନୀର ଯଥାସମ୍ଭବ କ୍ଷମତା ବୃଦ୍ଧିକରିବା । ଭାରତରେ ଶିକ୍ଷା ପ୍ରସାର, ସ୍ୱାସ୍ଥ୍ୟରକ୍ଷା ବା ରାସ୍ତାଘାଟ ନିର୍ମାଣ ପ୍ରତି କମ୍ପାନୀ ବିଶେଷ ଦୃଷ୍ଟି ଦେଉ ନଥିଲେ । ରାଜସ୍ୱ ଆଦାୟର ସୁବିଧା ନିମନ୍ତେ କର୍ଣ୍ଣୱାଲିସ୍ ବଙ୍ଗ ଦେଶରେ ଯେଉଁ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଥାର ପ୍ରଚଳନ କରିଥିଲେ ଏବଂ ରାଜସ୍ୱ ଆଦାୟ ପାଇଁ ଗୋଟିଏ ଜମିଦାର ଶ୍ରେଣୀ ସୃଷ୍ଟି କରିଥିଲେ, ଏହି ଜମିଦାରମାନେ ଅବଶ୍ୟ ଗାଁ ଗହଳରେ ସରକାରୀ କ୍ଷମତାର ସ୍ତମ୍ଭରୂପେ ଠିଆହେଲେ, କିନ୍ତୁ ଏଥି ସହିତ ରାଜସ୍ୱ ଆଦାୟ ପାଇଁ ଯେଉଁ ଅତ୍ୟାଚାର ଓ ଶୋଷଣ ଆରମ୍ଭ କଲେ ତାହା ପ୍ରଜାମାନଙ୍କ ମଧରେ ଘୋର ଅଶାନ୍ତି ସୃଷ୍ଟି କଲା । ନିୟମିତ

ରୂପେ ସମୟ ଅନୁଯାୟୀ ଧାର୍ଯ୍ୟ ରାଜସ୍ୱ ନଦେବା କାରଣରୁ ଉଭୟ ଜମିଦାର ଓ ପ୍ରଜାମାନଙ୍କୁ ସହଜରେ ବେଦଖଲ କରିବା ପାଇଁ ବିଚାର ବିଭାଗ ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା, ଏପରିକି ପୋଲିସ୍ ବାହିନୀ ମଧ୍ୟ ଜମିଦାରଙ୍କ ହାତବାରିସି ରୂପେ କାର୍ଯ୍ୟକରି ଦୁର୍ନୀତିର ବାୟୁମଣ୍ଡଳକୁ ଆହୁରି ବିଷାକ୍ତ କରିଦେଉଥିଲେ ।

ମାଡ୍ରାସ ଓ ଦକ୍ଷିଣ ଭାରତର ଅନ୍ୟ କେତେକ ଅଞ୍ଚଳରେ ମୁନ୍‌ରୋଙ୍କ ପରି କମ୍ପାନୀର ସ୍ଥାନୀୟ ଶାସକମାନେ ବଙ୍ଗଳାରେ କର୍ଣ୍ଣୱାଲିସ୍‌ଙ୍କ ପ୍ରଚଳିତ ସ୍ଥାୟୀ ବନ୍ଦୋବସ୍ତ ଓ ଜମିଦାରୀ ଗୋଷ୍ଠୀ ସୃଷ୍ଟି କରିବାର ବିରୋଧୀ ଥିଲେ । ରାଜସ୍ୱ ଆଦାୟର ଦାୟିତ୍ୱ ଜମିଦାର ବା ଗାଁର ମୁଖିଆଙ୍କ ଉପରେ ନ୍ୟସ୍ତ ନ କରି ରୟତମାନଙ୍କ ସହିତ ସିଧାସଳଖ ଚୁକ୍ତି କରି ରାଜସ୍ୱ ଧାର୍ଯ୍ୟ ଓ ଆଦାୟର ଦାୟିତ୍ୱ ସରକାର ନିଜ ହାତକୁ ନେବାର ସେମାନେ ପକ୍ଷପାତି ଥିଲେ । ଏହି ଚିନ୍ତାରୁ ଦକ୍ଷିଣ ଭାରତରେ ରୟତୱାରୀ ବ୍ୟବସ୍ଥା ପ୍ରଚଳିତ ହେଲା । ୧୮୦୮ ମସିହାରେ ମୁନ୍‌ରୋ ଛୁଟିରେ ବିଲାତ ଗଲେ ଏବଂ ଭାରତୀୟ ସମସ୍ୟା ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟର ପ୍ରଭାବରେ କମ୍ପାନୀର ଡାଇରେକ୍ଟରମାନେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଥାର ବିରୋଧ କରିବାକୁ ଆରମ୍ଭ କଲେ । ମୁନ୍‌ରୋ ମଧ୍ୟ ଛୁଟିରୁ ଫେରି ମାଡ୍ରାସ୍‌ର ଗଭର୍ଣ୍ଣର ଦାୟିତ୍ୱ ଗ୍ରହଣ କଲେ ଓ ଦକ୍ଷିଣ ଭାରତରେ ରୟତୱାରୀ ପ୍ରଥା ଯେପରି ସଫଳତାର ସହ କାର୍ଯ୍ୟକାରୀ ହେବ ସେ ପ୍ରତି ଦୃଢ଼ ମନୋନିବେଶ କରିଥିଲେ । ବମ୍ବେରେ ମଧ୍ୟ ଏହି ପ୍ରଥାର ପ୍ରଚଳନ କରାଯାଇଥିଲା ଓ ତଦ୍ୱାରା ରାଜସ୍ୱ ଆଦାୟ କ୍ଷେତ୍ରରେ ଜମିଦାରୀ ଅତ୍ୟାଚାରକୁ ଅନେକାଂଶରେ ବାଦ୍ ଦିଆଯାଇପାରିଥିଲା ।

ଭାରତରେ ପ୍ରତିଷ୍ଠିତ ପୁଲିସ୍ ବାହିନୀ ବ୍ରିଟିଶ୍ ଶାସକ ଗୋଷ୍ଠୀର ଅତ୍ୟାଚାର ଓ ଅନାଚାରର ଆୟୁଧ ଥିଲେ । ଗ୍ରାମାଞ୍ଚଳରେ ସବୁ ପ୍ରକାର ଅତ୍ୟାଚାର ପ୍ରୟୋଗ କରି ପୁଲିସ୍ କର୍ତ୍ତାମାନେ ନିଜର ବ୍ୟକ୍ତିଗତ ଧନସମ୍ପତି ବଢ଼ାଇବା ପାଇଁ ଅଧିକ ଦୃଷ୍ଟି ଦେଉଥିଲେ । ଭାରତର ପୂର୍ବାଞ୍ଚଳ ହେଉ ବା ଦକ୍ଷିଣାଞ୍ଚଳ ହେଉ କୌଣସିଠାରେ ପୁଲିସ୍ ଅଫିସର୍‌ମାନଙ୍କର ଦୁର୍ନୀତିପୂର୍ଣ୍ଣ ଆଚରଣକୁ ବିଲୋପ କରିବା ପାଇଁ କୌଣସି ଉଦ୍ୟମ ହେଉନଥିଲା । ବରଂ ଉପରିସ୍ଥ କର୍ମଚାରୀମାନଙ୍କର ବେଆଇନ୍ କାର୍ଯ୍ୟକଳାପରେ ଏହି ପୋଲିସ୍‌ମାନେ ସାହାଯ୍ୟକାରୀ ଥିଲେ । ଏପରିକି ବଙ୍ଗଦେଶ ଓ ଉତ୍ତର ଭାରତରେ

ଯେଉଁ ଜମିଦାରମାନେ ନିଯୁକ୍ତ ହୋଇଥିଲେ, ସେମାନେ ମଧ୍ୟ ନିଜର ସ୍ୱାର୍ଥ ପାଇଁ, ଅର୍ଥାତ୍ ରାଜସ୍ୱ ଆଦାୟ ସହଜତର କରିବାପାଇଁ ପୋଲିସ୍‌କୁ ବ୍ୟବହାର କରୁଥିଲେ ।

ମୁନ୍‌ରୋଙ୍କ ମତରେ ୟୁରୋପୀୟ ବିଚାରକମାନଙ୍କର ଭାରତୀୟ ଭାଷା ଓ ସାମାଜିକ ବ୍ୟବସ୍ଥା ବିଷୟରେ ଅଜ୍ଞତା ହେତୁ ଏ ବିଭାଗରେ କୌଣସି ଉନ୍ନତି ହୋଇନଥିଲା । ସାକ୍ଷୀ ଓ ମୁଦାଲାମାନଙ୍କ ବୟାନ ଓ ଜମାନବନ୍ଦୀ ଏବଂ ଦେୱାନୀ ମୋକଦ୍ଦମାରେ ଭାରତୀୟ ଭାଷାରେ ଲିଖିତ ଅର୍ଜି ଓ ଅନ୍ୟାନ୍ୟ ଦଲିଲ୍‌ଗୁଡ଼ିକୁ ବୁଝିବା ପାଇଁ ଏହି ୟୁରୋପୀୟ ବିଚାରପତିମାନେ ସମ୍ପୂର୍ଣ୍ଣ ଅକ୍ଷମ ଥିଲେ । ସେଥିପାଇଁ ଏହି ବିଚାର ବ୍ୟବସ୍ଥା ଉପରେ ଭାରତୀୟ ମାମଲାକାରୀମାନଙ୍କର କୌଣସି ଆସ୍ଥା ନଥିଲା । ବରଂଚ ସେମାନେ ଥିଲେ ଚିନ୍ତାଶୀଳ ଭାରତୀୟମାନଙ୍କର ପରିହାସର ପାତ୍ର । ଅନ୍ୟ ଜଣେ ଖ୍ୟାତନାମା ସିଭିଲିୟାନ୍ ମେଟ୍‌କାଫ୍‌ଙ୍କ ମତରେ ଏହି ବିଚାରାଳୟଗୁଡ଼ିକ ଥିଲା ଦୁର୍ନୀତିର ଗନ୍ତାଘର ।

ବିଚାର ବିଭାଗରେ ଭାରତୀୟମାନଙ୍କୁ ଅଧିକ ସଂଖ୍ୟାରେ ନିଯୁକ୍ତ କରିବା ପାଇଁ ବା ସେମାନଙ୍କୁ ଅଧିକ କ୍ଷମତା ଦେବାପାଇଁ କମ୍ପାନୀ କର୍ତ୍ତୃପକ୍ଷ ସମ୍ପୂର୍ଣ୍ଣ ବିମୁଖ ଥିଲେ । ସେମାନଙ୍କ ବିରୁଦ୍ଧରେ ଅଭିଯୋଗ କରାଯାଇଥିଲା ଯେ ଭାରତୀୟମାନେ ଅତ୍ୟନ୍ତ ଦୁର୍ନୀତିପରାୟଣ ଏବଂ ସେମାନଙ୍କ ଉପରେ କ୍ଷମତା ନ୍ୟସ୍ତ କଲେ ବିଚାର ବିଭାଗରେ ବରଂଚ ଅଧିକ ବିଭ୍ରାଟ ସୃଷ୍ଟି ହେବ । ଏହି ମନୋଭାବ ବିରୋଧରେ ମୁନ୍‌ରୋ କହୁଥିଲେ କୋର୍ଟମାନଙ୍କରେ କେବଳ ସ୍ଥାନୀୟ ଲୋକଙ୍କ ଦ୍ୱାରା ନ୍ୟାୟ ପ୍ରଦାନ କରାଯାଇପାରିବ । ସେ କମ୍ପାନୀର ଡାଇରେକ୍ଟରମାନଙ୍କ ପ୍ରେରିତ ଏକ ରିପୋର୍ଟ ଲେଖିଥିଲେ – "ଭାରତୀୟମାନଙ୍କ ବିରୁଦ୍ଧରେ ଏପ୍ରକାର ଅଭିଯୋଗ ସମ୍ପୂର୍ଣ୍ଣ ଭିତ୍ତିହୀନ । ଯଦି ସବୁ ଦେଶୀୟ ଲୋକେ ଏପରି ନଷ୍ଟ ଚରିତ୍ରର ହୋଇଥାନ୍ତି ତାହେଲେ ନ୍ୟାୟ ବିଚାର ଅସମ୍ଭବ ହେବ । ସେମାନଙ୍କ ସ୍ଥାନରେ କେତେଜଣ ଭାରତୀୟ ଭାଷା ଓ ସାମାଜିକ ପରିସ୍ଥିତି ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ବିଦେଶୀ ନ୍ୟାୟାଳୟର କର୍ମକର୍ତ୍ତା ରହିଲେ ଏ ସମସ୍ୟାର ସମାଧାନ ହୋଇପାରିବ ନାହିଁ ।"

ଇଂରେଜମାନଙ୍କ ଦ୍ୱାରା ସ୍ଥାପିତ କୋର୍ଟଗୁଡ଼ିକୁ ମେଟ୍‌କାଫ୍ 'ଦୁର୍ନୀତିର ଗନ୍ତାଘର' ଭାବରେ ବର୍ଣ୍ଣନା କରୁଥିଲେ । ଉତ୍ତର ଭାରତ ପରିଦର୍ଶନରୁ ଫେରିବା ପରେ ଲର୍ଡ଼ ହେଷ୍ଟିଂସ୍ ତାଙ୍କର ପ୍ରାଇଭେଟ୍ ଜର୍ଣ୍ଣାଲ୍‌ରେ ଲେଖିଥିଲେ – "ଆମର ବିଚାର ବ୍ୟବସ୍ଥାକୁ

ଭାରତୀୟମାନଙ୍କ ଉପରେ ଲଦିଦେବା ଏକ ସମୟୋପଯୋଗୀ ପଦକ୍ଷେପ ନୁହେଁ । କୋର୍ଟରୁ ସମନ ପାଇଲେ ଏ ଦେଶରେ ସାକ୍ଷୀମାନେ ମଧ ଭୟଭୀତ ହୁଅନ୍ତି ଓ କୋର୍ଟ ପରିସରରେ ପ୍ରବେଶ କଲା ମାତ୍ରେ ଦଲାଲ୍‌ମାନଙ୍କ କବଳରେ ପଡ଼ି ପ୍ରଭାବିତ ହୁଅନ୍ତି । ଏଣୁ ସାକ୍ଷୀମାନଙ୍କ କ୍ୱଚିତ୍ ସାକ୍ଷୀ ସତ୍ୟ ବୟାନ୍ ଦିଅନ୍ତି ।"

କର୍ଣ୍ଣୱାଲିସ୍‌ଙ୍କ ସମୟରୁ ପ୍ରଚଳିତ ବିଚାର ବ୍ୟବସ୍ଥା ସମ୍ପର୍କରେ ଉପରୋକ୍ତ ସମାଲୋଚନା ସତ୍ତ୍ୱେ କେହି ତା'ର ବିକଳ୍ପ ବ୍ୟବସ୍ଥାର ରୂପରେଖ ଚିନ୍ତା କରିପାରୁ ନଥିଲେ । ମାନ୍ଦ୍ରାସ୍‌ର ତତ୍‌କାଳୀନ ଗଭର୍ଣ୍ଣର ମୁନ୍‌ରୋ ଭାବୁଥିଲେ ଯେ ଦେଶୀୟ ବିଚାର ପ୍ରଥା ପ୍ରଚଳନ କଲେ ତାହା ସହଜରେ ଭାରତରେ ଗ୍ରହଣୀୟ ହେବ । ତଦନୁଯାୟୀ ଫୌଜଦାରୀ ଓ ଛୋଟ ଛୋଟ ଦେୱାନୀ ମୋକଦ୍ଦମା ବିଚାର କରିବାର ଅଧିକାର ଗାଁ ପଞ୍ଚାୟତ ବା ମୁଖ୍ୟମାନଙ୍କ ଉପରେ ନ୍ୟସ୍ତ ହେଲା । କିନ୍ତୁ ଏହି କାର୍ଯ୍ୟ ତୁଲାଇବା ପାଇଁ ସରକାରଙ୍କ ତରଫରୁ କୌଣସି ପ୍ରକାର ପାରିଶ୍ରମିକର ବ୍ୟବସ୍ଥା ନଥିଲା । ଗାଁ ମୁଖିଆମାନେ କ୍ରମେ ଏହି କାର୍ଯ୍ୟ କରିବାକୁ ଆଗ୍ରହ ପ୍ରକାଶ କଲେ ନାହିଁ । ମୁନ୍‌ରୋ ହାର ମାନିଲେ । ଏଣୁ ପୁନର୍ବାର ବିଦେଶୀ ବିଚାର ପଦ୍ଧତି ଉପରେ ଗୁରୁତ୍ୱ ଦିଆଗଲା । ଅଧିକନ୍ତୁ ମୁନସଫ୍‌ମାନଙ୍କ ଆର୍ଥିକ କ୍ଷମତା ପଚାଶ ଟଙ୍କାରୁ ଦୁଇଶହ ପଚାଶ ଟଙ୍କାକୁ ବୃଦ୍ଧି କରାଗଲା । ହେଷ୍ଟିଂସ୍‌ଙ୍କ ସମୟରୁ ମୁନସଫ୍‌ମାନେ ୨୫୦ ଟଙ୍କା ମୂଲ୍ୟର ସମ୍ପତ୍ତି ବିବାଦ ନିଷ୍ପତ୍ତି କରିବାକୁ ସମର୍ଥ ହେଲେ । ଅବଶ୍ୟ ମୁନସଫ୍‌ମାନଙ୍କର ବିଚାର କ୍ଷମତାର ପରିସର ବୃଦ୍ଧିଥିଲା ସମୁଦ୍ରକୁ ଶଙ୍ଖେ ପାଣି ।



# ବ୍ରହ୍ମଦେଶ ଉପରେ ଶ୍ୱେନଦୃଷ୍ଟି

ଲର୍ଡ଼୍ ହେଷ୍ଟିଂସ୍ ୧୮୨୩ ମସିହାରେ ଭାରତରୁ ବିଦାୟ ନେଲେ ଓ ତାଙ୍କ ପରେ ଲର୍ଡ଼୍ ଆମହାର୍ଷ୍ଟ ନୂତନ ଗଭର୍ଣ୍ଣର ଜେନେରାଲ୍ ଦାୟିତ୍ୱ ଗ୍ରହଣ କଲେ । ସେ ଥିଲେ ବ୍ୟକ୍ତିଗତ ଭାବରେ ଶାନ୍ତଶିଷ୍ଟ ପ୍ରକୃତିର ଲୋକ, କିନ୍ତୁ ଦୃଢ଼ମନା ନଥିଲେ । ତାଙ୍କ ଇଚ୍ଛା ବିରୁଦ୍ଧରେ ବ୍ରହ୍ମଦେଶ ଯୁଦ୍ଧରେ ତାଙ୍କୁ ଭାଗ ନେବାକୁ ପଡ଼ିଲା । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ବ୍ରହ୍ମଦେଶ କେତେକାଂଶରେ ଶକ୍ତିଶାଳୀ ହେଲା । ରାଜଧାନୀ ଥିଲା ଉତ୍ତରରେ ଅବସ୍ଥିତ ଆଭା ନାମକ ଏକ କ୍ଷୁଦ୍ର ସହର । ବ୍ରହ୍ମଦେଶ ରାଜାଙ୍କର ସେନାପତି ଥିଲେ ମହାବାନ୍ଦୁଲା । ଜଣେ ଦକ୍ଷ ସେନାପତି ଭାବରେ ତାଙ୍କର ଖ୍ୟାତି ଥିଲା । କ୍ରମେ ରାଜ୍ୟ ବିସ୍ତାରପ୍ରତି ମହାବାନ୍ଦୁଲା ଅଧିକ ଧ୍ୟାନ ଦେଲେ । ବର୍ମା ସେନାବାହିନୀ ଇରାବତୀ ଉପତ୍ୟକା ଦଖଲ କରିବା ପରେ ଟେନାସେରିମ୍ ପ୍ରଦେଶର ଉପକୂଳ ଅଞ୍ଚଳ ଦଖଲ କଲେ । ୧୭୮୪ ମସିହାରେ ଆରାକାନ ଆକ୍ରମଣ କରି ସେହି ରାଜ୍ୟକୁ ବ୍ରହ୍ମଦେଶର ଅନ୍ତର୍ଭୁକ୍ତ କଲେ । ଫଳରେ ପୂର୍ବବଙ୍ଗ ଓ ଆସାମରେ ଭାରତୀୟ ସୀମା ସହିତ ବ୍ରହ୍ମଦେଶର ସୀମାସଂଘର୍ଷ ସୃଷ୍ଟି ହେବାର ସମ୍ଭାବନା ଦେଖାଦେଲା । ବର୍ମିଜମାନେ ୧୮୧୩ ମସିହାରେ ଆସାମର ମଣିପୁର ରାଜ୍ୟ ଦଖଲ କରି କାଚାର ରାଜ୍ୟ ଅଧିକାର କରିବାକୁ ଉଦ୍ୟମ କଲେ । ଏ ପରିସ୍ଥିତିରେ ପ୍ରତିରୋଧ ବ୍ୟତୀତ ଇଂରେଜମାନଙ୍କର ଅନ୍ୟଗତି ନଥିଲା ।

ବର୍ମା ଶାସକ ଗୋଷ୍ଠୀର ନିଜର ଦକ୍ଷତା ସମ୍ପର୍କରେ ଧାରଣା ଥିଲା ଅତିରଂଜିତ । ବିଶେଷତଃ ଆଭାର ସେନାପତି ମହାବାନ୍ଦୁଲା ଧମକ ଦେଉଥିଲେ ଯେ ଆବଶ୍ୟକ ହେଲେ ସେ ସହଜରେ ପୂର୍ବବଙ୍ଗ ଓ କଲିକତା ସହର ମଧ୍ୟ ଦଖଲ କରିପାରିବେ । ୧୮୨୩ ମସିହାରେ ଚଟ୍ଟଗ୍ରାମ (ଚିଟାଗଙ୍ଗ) ଓ ଆରାକାନ ମଧ୍ୟରେ ନଦୀ ମୁହାଣରେ ଅବସ୍ଥିତ ଶାହପୁରୀ ନାମକ କ୍ଷୁଦ୍ର ଦ୍ୱୀପ ବାନ୍ଦୁଲା ଦଖଲ କଲେ । ଶାହପୁର ଥିଲା ଏକ

ଅତି ଅସ୍ୱାସ୍ଥ୍ୟକର ଅଞ୍ଚଳ । କୌଣସି ପକ୍ଷ ଏହି ଦ୍ୱୀପରେ ସ୍ଥାୟୀ ଭାବରେ ସାମରିକ ଘାଟୀ ସ୍ଥାପନ କରିବାକୁ ଇଚ୍ଛୁକ ନଥିଲେ । କିନ୍ତୁ ବ୍ରହ୍ମଦେଶ କର୍ତ୍ତୃପକ୍ଷ ଦୃଢ଼ଭାବରେ ଘୋଷଣା କଲେ ଯେ ସେମାନେ ଶାହପୁରୀ ଉପରେ ତାଙ୍କର ଅଧିକାର ଛାଡ଼ିବେ ନାହିଁ । ଇଂରେଜମାନେ ତାଙ୍କର ପ୍ରତିରୋଧ କଲେ ସେମାନେ ବଙ୍ଗଦେଶ ଉପରେ ଆକ୍ରମଣ ଆରମ୍ଭ କରିବେ । କମ୍ପାନୀର ଡାଇରେକ୍ଟରମାନେ ଏହି ଅସ୍ୱାସ୍ଥ୍ୟକର ସ୍ଥାନରେ ବ୍ୟୟବହୁଳ ଯୁଦ୍ଧରେ ଲିପ୍ତ ହେବା ପାଇଁ ଚାହୁଁନଥିଲେ କିନ୍ତୁ ବଙ୍ଗଳା ସରକାର ଡାଇରେକ୍ଟରମାନଙ୍କୁ ବୁଝାଇଦେଲେ ଯେ ଏଠାରୁ ପଛଘୁଞ୍ଚା ଦେଲେ ସେନାପତି ବାନ୍ଦୁଲା ଅଧିକ ଦୂରକୁ ଅଗ୍ରସର ହେବାକୁ କୁଣ୍ଠିତ ହେବେ ନାହିଁ ।

ପରିସ୍ଥିତିର ଆମୂଳଚୂଳ ବିଚାର କରି ଲର୍ଡ଼ ଆମହାର୍ଷ୍ଟ ଓ କମାଣ୍ଡର-ଇନ୍-ଚିଫ୍ ପ୍ୟାଗେଟ ନିଷ୍ପତ୍ତି କଲେ ଯେ ଉତ୍ତରପଟୁ ବଣ ଜଙ୍ଗଲ ଓ ନଦୀନାଳ ପାର ହୋଇ ଆଭା ଉପରେ ଆକ୍ରମଣ କରିବା ସୁବିଧାଜନକ ହେବ ନାହିଁ । ଏଣୁ ଦକ୍ଷିଣରେ ରେଙ୍ଗୁନ୍ ଦଖଲ କରି ସେହିଠାରୁ ଇରାବତୀ ନଦୀରେ ନୌକା ସାହାଯ୍ୟରେ ଅଗ୍ରସର ହେବା ବରଂ ସହଜସାଧ ହେବ । କଲିକତାରେ ଅବସ୍ଥାପିତ ଭାରତୀୟ ସିପାହୀ ଯେଉଁମାନେ କି ଇଷ୍ଟ ଇଣ୍ଡିଆ କମ୍ପାନୀର ସବୁଠାରୁ ଦକ୍ଷ ଓ ବିଶ୍ୱସ୍ତ ସୈନିକ ରୂପେ ବିବେଚିତ ହେଉଥିଲେ, ସେମାନେ ସମୁଦ୍ର ବା କଳାପାଣି ପାର ହୋଇ ରେଙ୍ଗୁନ୍ ଯିବାକୁ ଅମଙ୍ଗ ହେଲେ । କଳାପାଣି ପାର ହେଲେ ଧର୍ମ ନଷ୍ଟ ହେବ, ଏ ଅନ୍ଧବିଶ୍ୱାସ ସିପାହୀମାନେ ସହଜରେ ଛାଡ଼ିପାରୁନଥିଲେ । ଏଣୁ ବ୍ରିଟିଶ୍ ସେନାପତି ପ୍ୟାଗେଟ୍‌ଙ୍କ ନିର୍ଦ୍ଦେଶରେ ସେମାନଙ୍କୁ ତୁରନ୍ତ ଚିଟାଗଙ୍ଗ ଯାତ୍ରା କରିବା ପାଇଁ ନଚେତ୍ ଅସ୍ତ୍ର ସମର୍ପଣ କରି ସୈନ୍ୟବାହିନୀରୁ ବିଦାୟ ନେବା ପାଇଁ ଆଦେଶ ଦିଆଗଲା । କିନ୍ତୁ ଭାରତୀୟ ସିପାହୀମାନେ ଏ ନିର୍ଦ୍ଦେଶ ମାନିବାକୁ ପ୍ରସ୍ତୁତ ନଥିଲେ । ଏଣୁ ସେନାପତି ପ୍ୟାଗେଟ୍ ସିପାହୀମାନଙ୍କ ଉପରେ ଗୁଳି ଚଳାଇବାକୁ ବ୍ରିଟିଶ୍ ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ । ସିପାହୀମାନେ ଭୟରେ ଛତ୍ରଭଙ୍ଗ ଦେଲେ ଓ ଏଣେତେଣେ ପଳାୟନ କଲେ । ପରେ ସେମାନଙ୍କ ମଧ୍ୟରୁ ୪୧ ଜଣଙ୍କୁ କୋର୍ଟ ମାର୍ଶିୟାଲ୍ ବିଚାର ହୋଇ ମୃତ୍ୟୁଦଣ୍ଡ ଆଦେଶ ଦିଆଗଲା ଓ ପରଦିନ ସକାଳୁ ୧୨ ଜଣ ସିପାହୀଙ୍କୁ ଗୁଳି କରି ହତ୍ୟା କରାଗଲା ଏବଂ ବାକିମାନଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଦିଆହେଲା । ଏପରିକି ଏହି ବିଦ୍ରୋହରେ ଭାଗନେଇ ନଥିବା ଭାରତୀୟ ସାମରିକ ଅଫିସରଙ୍କୁ ମଧ ସୈନ୍ୟବାହିନୀରୁ ବିତାଡ଼ିତ କରାଗଲା ।

ପ୍ୟାଗେଟ୍‌ଙ୍କ ଏହି କଠୋର ଓ ନିର୍ମମ ଶାସ୍ତି ବିଧାନକୁ ଅନ୍ୟ ବ୍ରିଟିଶ୍ କର୍ମଚାରୀମାନେ ସହଜରେ ଗ୍ରହଣ କରିନଥିଲେ । ସେମାନେ ସମାଲୋଚନା କଲେ ଯେ, କଲିକତାରେ ଅବସ୍ଥାପିତ ଏହି ଭାରତୀୟ ସିପାହୀମାନେ ସବୁ ମୁଖ୍ୟ ଯୁଦ୍ଧରେ ଆଗୁଆ ହୋଇ ବ୍ରିଟିଶ୍ ସାମ୍ରାଜ୍ୟ ପ୍ରତିଷ୍ଠା କରିବାରେ ଅଂଶୀଦାର ଥିଲେ । ତେଣୁ ଏପରି କଠୋର ଦଣ୍ଡାଦେଶ ପରିବର୍ତ୍ତେ ସେମ୍ୟାନଙ୍କୁ ସହଜରେ କ୍ଷମାକରାଯାଇପାରିଥାନ୍ତା ।

ଏହାପରେ ସିପାହୀମାନେ ପୁନଶ୍ଚ ମିଳିତ ହୋଇ ଉପରିସ୍ଥ କର୍ତ୍ତାମାନଙ୍କର ଆଦେଶ ଅନୁଯାୟୀ ଆରାକାନ ଅଭିଯାନରେ ଯୋଗ ଦେଲେ । ଏଣେ କର୍ତ୍ତୃପକ୍ଷ ଆଣ୍ଡାମାନ ଦ୍ୱୀପର କର୍ଣ୍ଣୱାଲିସ୍ ବନ୍ଦରରେ ରେଙ୍ଗୁନ୍ ଯିବା ପୂର୍ବରୁ ସିପାହୀମାନଙ୍କୁ ଏକତ୍ର କରାଇଲେ । ସେଠାରୁ ପ୍ରାୟ ୧୧ ହଜାର ସୈନ୍ୟ ସାର୍ ଆର୍କିବାଲ୍ଡ଼ କ୍ୟାମ୍ପବେଲ୍‌ଙ୍କ ନେତୃତ୍ୱରେ ରେଙ୍ଗୁନ୍ ଅଭିମୁଖେ ସମୁଦ୍ର ଯାତ୍ରା କଲେ । ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ମାଡ୍ରାସ୍ ରେଜିମେଣ୍ଟର ସିପାହୀ । କ୍ୟାମ୍ପବେଲ୍‌ଙ୍କୁ କୁହାଯାଇଥିଲା ଯେ ରେଙ୍ଗୁନ୍‌ରେ ଖାଦ୍ୟପେୟ ଆୟୋଜନ କରିବାରେ କୌଣସି ଅସୁବିଧା ନାହିଁ ଏବଂ ଇରାବତୀ ନଦୀରେ ନୌକା ଚଳିଆରେ ଆଭା ଯିବାର ସୁବିଧା ଅଛି । କିନ୍ତୁ କାର୍ଯ୍ୟତଃ ଦେଖାଗଲା ଯେ ଇଂରେଜ ସୈନ୍ୟବାହିନୀ ରେଙ୍ଗୁନ୍ ସହରରେ ଅବତରଣ କଲାବେଳକୁ ସହର ଶୂନ୍ୟ ହୋଇଯାଇଛି । ଆଭା ସରକାରଙ୍କ ଆଦେଶ କ୍ରମେ ରେଙ୍ଗୁନ୍‌ବାସୀ ଧନସମ୍ପଦ, ପିଲାଛୁଆ ଓ ଶଗଡ଼ ବଳଦ ସହ ପଳାୟନ କରିଅଛନ୍ତି । କମାଣ ବୋହିବାକୁ ସହରରେ କୌଣସି ଯାନବାହନ ବା ଇରାବତୀ ନଦୀରେ କୌଣସି ନୌକା ନାହିଁ । ରେଙ୍ଗୁନ୍‌ରେ ପହଞ୍ଚିବା ପରେ କ୍ୟାମ୍ପବେଲ୍ କେତେକାଂଶରେ ହତାଶ ହୋଇପଡ଼ିଲେ । ଉତ୍ତରକୁ ଯିବାର କୌଣସି ବ୍ୟବସ୍ଥା ନଥିଲା । କିଛିଦିନ ପରେ ପୁଣି ବର୍ଷାଦିନ ମାଡ଼ିଆସିଲା । ସିପାହୀମାନେ କୌଣସିମତେ ବର୍ଷା ଋତୁଟା କଟାଇଦେଲେ ସତ, ମାତ୍ର ୟୁରୋପିୟାନ୍ ସୈନ୍ୟମାନେ ଖରାପ ଖାଦ୍ୟ ଓ ଅସ୍ୱାସ୍ଥ୍ୟକର ପାଣିପିଇ ସମସ୍ତେ ପ୍ରାୟ ମ୍ୟାଲେରିଆ, ଡିସେଣ୍ଟ୍ରି ଆଦି ରୋଗରେ ଆକ୍ରାନ୍ତ ହେଲେ । ବର୍ଷା ଶେଷ ବେଳକୁ କ୍ୟାମ୍ପବେଲ୍‌ଙ୍କ ଅଧୀନରେ ମାତ୍ର ୩ ହଜାର ସୈନ୍ୟ କାର୍ଯ୍ୟକ୍ଷମ ଥିଲେ । ଏଣେ ବ୍ରହ୍ମଦେଶର ସେନାପତି ମହାବାନ୍ଦୁଲା ଆରାକାନ ଛାଡ଼ି ପ୍ରାୟ ୬୦ ହଜାର ସୈନ୍ୟଙ୍କ ଗହଣରେ ରେଙ୍ଗୁନ୍ ଉପରେ ଝାମ୍ପ ଦେଲେ, କିନ୍ତୁ ଇଂରେଜମାନେ ମୋଟ ୪ ହଜାରରୁ ଅଧିକ ସୈନ୍ୟ ବନ୍ଦୋବସ୍ତ କରିପାରି ନଥିଲେ । ମାତ୍ର ଏହି ଉଚ୍ଚ ତାଲିମ୍‌ପ୍ରାପ୍ତ ସୈନ୍ୟମାନଙ୍କ ପ୍ରତିଆକ୍ରମଣରେ ଏବଂ ଇରାବତୀ ନଦୀ

ମୁହାଣରୁ ନୌକାବାହୀ କମାଣରୁ ଗୋଳା ବୃଷ୍ଟି ଫଳରେ ବାନ୍ଦୁଲା ତ୍ରସ୍ତ ହୋଇ ପ୍ରାୟ ୫୦ ମାଇଲ୍ ଉପରକୁ ଡୋନାବ୍ୟୁ ନାମକ କ୍ଷୁଦ୍ର ସହରକୁ ପଳାୟନ କଲେ ।

ଏଣେ ଆରାକାନ ଅଭିଯାନ କେତେକାଂଶରେ ସଫଳ ହେଲା । ଆରାକାନ୍‌ରୁ ବର୍ମିଜମାନଙ୍କୁ ବିତାଡ଼ିତ କରାଯାଇଥିଲା । ନଦୀରେ କ୍ୟାମ୍ପବେଲ୍‌ଙ୍କ ପ୍ରେରିତ ଉତ୍ତରଗାମୀ ନୌକାରୁ ବର୍ମାର ସୈନ୍ୟ ଘାଟି ଉପରକୁ ରକେଟ୍ ପକାଯାଉଥିଲା । ଏଥିରୁ ଗୋଟିଏ ରକେଟ୍ ସିଧା ମହାବାନ୍ଦୁଲାଙ୍କ ଉପରେ ପଡ଼ିବାରୁ ସେହିଠାରେ ସେନାପତିଙ୍କର ମୃତ୍ୟୁ ହେଲା । ବ୍ରହ୍ମଦେଶର ସୈନ୍ୟମାନେ ପୁନଶ୍ଚ ପଛଘୁଞ୍ଚା ଦେଲେ ।

ମହାବାନ୍ଦୁଲାଙ୍କ ମୃତ୍ୟୁ ଓ ଇଂରେଜମାନଙ୍କ ଦ୍ୱାରା ଡୋନାବ୍ୟୁ ଦଖଲ, ବ୍ରହ୍ମଦେଶ ଯୁଦ୍ଧରେ ଏକ ନୂତନ ମୋଡ଼ ସୃଷ୍ଟିକଲା । ବାନ୍ଦୁଲାଙ୍କ ମୃତ୍ୟୁପରେ ରାଜାଙ୍କ ଭାଇ ଥାରାୱାଡ଼ୀ ନୂତନ ସେନାପତି ନିଯୁକ୍ତ ହେଲେ । କିନ୍ତୁ ସେ ଥିଲେ ଅତ୍ୟନ୍ତ ଦୁର୍ବଳମନା । ଯୁଦ୍ଧରେ ଗୋଟିଏ ଗୁଳି ଫୁଟାଇବା ପୂର୍ବରୁ ସେ ପରାଜୟ ମନୋଭାବ ପ୍ରକାଶ କରୁଥିଲେ । ବ୍ରିଟିଶମାନେ ଡୋନାବ୍ୟୁରୁ ଉତ୍ତରକୁ ଅଗ୍ରସର ହେବା ମାତ୍ରେ ସେ ଶକ୍ତିଶାଳୀ ପ୍ରୋମ ଦୁର୍ଗ ଛାଡ଼ି ରାଜଧାନୀ ଆଭାକୁ ପଳାୟନ କଲେ ଏବଂ ରାଜାଙ୍କୁ ବ୍ରିଟିଶ୍‌ମାନଙ୍କ ସହିତ ସନ୍ଧି କରିବା ପାଇଁ ପ୍ରଭାବିତ କଲେ । ବର୍ଷା ଆଗମନ ହେତୁ କ୍ୟାମ୍ପ୍‌ବେଲ୍ ବର୍ମିଜ୍‌ମାନଙ୍କ ଦ୍ୱାରା ପରିତ୍ୟକ୍ତ ପ୍ରୋମ୍‌ରେ ଆଶ୍ରୟ ନେଲେ ଏବଂ ଯୁଦ୍ଧବିରତି ରାଜିନାମାରେ ସମ୍ମତ ହେଲେ । ୩-୪ ମାସ ଧରି ସନ୍ଧି ସର୍ତ୍ତ ଆଲୋଚିତ ହେଲା ଏବଂ ପରିଶେଷରେ ଫେବୃଆରୀ ୧୮୨୬ ମସିହାରେ ସନ୍ଧିଚୁକ୍ତି ସ୍ୱାକ୍ଷରିତ ହେଲା । କିନ୍ତୁ ଆଲୋଚନା କାଳରେ ଯେତେବେଳେ ସନ୍ଧି ସର୍ତ୍ତ ରାଜାଙ୍କ ନିକଟରେ ଉପସ୍ଥାପିତ କରାଗଲା, ସେ ହଠାତ୍ ରାଗ ଜର୍ଜରିତ ହୋଇ ସଂପୃକ୍ତ ମନ୍ତ୍ରୀଙ୍କୁ ହତ୍ୟା କରିବା ପାଇଁ ନିର୍ଦ୍ଦେଶ ଦେଲେ ।

ଆଭାର ସୈନ୍ୟମାନେ ପୁଣି ଥରେ ଯୁଦ୍ଧ ଆରମ୍ଭ କରିଦେଲେ । କ୍ୟାମ୍ପ୍‌ବେଲ୍ ପ୍ରତିଆକ୍ରମଣ କରିବାକୁ ଯାଇ ଯେତେବେଳେ ରାଜଧାନୀ ଆଭାରୁ ୫୦ ମାଇଲ ଦୂରରେ ପହଞ୍ଚିଲେ ରାଜା ଭାଇଙ୍କର ପରାମର୍ଶ ପୂର୍ଣ୍ଣରୂପେ ଗ୍ରହଣ କରି ସନ୍ଧିଚୁକ୍ତି ସ୍ୱାକ୍ଷର କରିବା ପାଇଁ ପ୍ରସ୍ତୁତ ହେଲେ । ଚୁକ୍ତିଗୁଡ଼ିକ ତାଙ୍କ ପାଇଁ କଠୋର ଥିଲା । ବ୍ରହ୍ମଦେଶର ରାଜା ଆସାମ, କାଚାର ଓ ମଣିପୁର ଆଦି ଅଞ୍ଚଳରୁ ତାଙ୍କର ଦାବି ପ୍ରତ୍ୟାହାର କଲେ ଏବଂ ଆରାକାନ ଓ ଟେନାସେରୀମ ଆଦି ଅଞ୍ଚଳ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ହସ୍ତାନ୍ତର କଲେ ଓ ଏଥିସହିତ ୧ କୋଟି ଟଙ୍କା କ୍ଷତିପୂରଣ ଦେଲେ ।

ଏତିକିରେ ପ୍ରଥମ ବ୍ରହ୍ମଦେଶ ଯୁଦ୍ଧ ଶେଷ ହେଲା । ଭାରତୀୟ ରକ୍ତ, ଭାରତୀୟ ସୈନ୍ୟ ଓ ଭାରତୀୟଙ୍କ ଅର୍ଥରେ ଭାରତ ବାହାରେ ଥିବା ଗୋଟିଏ ନୂତନ ଦେଶ ଇଂରେଜମାନେ ଅଧିକାର କରିବା ପାଇଁ ଦ୍ୱାର ଉନ୍ମୁକ୍ତ ହେଲା ।

ବର୍ମିଜ ଯୁଦ୍ଧ ଶେଷ ହେବାପରେ ଆମହର୍ଷ୍ଟ ଉତ୍ତର ଭାରତ ପରିଭ୍ରମଣରେ ଯାଇ ଦିଲ୍ଲୀରେ ପହଞ୍ଚିଲେ । ପୂର୍ବପରି କାଳେ ଦିଲ୍ଲୀ ବାଦ୍‌ଶାହ ଏହାର ସୁଯୋଗ ନେବେ ସେଥିପାଇଁ ସ୍ଥାନୀୟ ପ୍ରତିନିଧି ମେଟ୍‌କାଫ୍‌ଙ୍କ ପରାମର୍ଶ ଅନୁଯାୟୀ ବଡ଼୍‌ଲାଟ୍ ବାଦ୍‌ଶାହାଙ୍କୁ କୌଣସି ଉପଢୌକନ ଆଦି ପ୍ରଦାନ କରିନଥିଲେ ଓ ତାଙ୍କ ସହିତ ସାକ୍ଷାତବେଳେ ସମାନ ସ୍ତରରେ ବ୍ୟବହାର କରିଥିଲେ । ଦିଲ୍ଲୀ ସମ୍ରାଟ ଭାବିଥିଲେ ଏପରି ସମସ୍ତରୀୟ ଆଚରଣ ପ୍ରଦର୍ଶନ କରିବାକୁ ସମ୍ମତ ହେବା ଦ୍ୱାରା ବଡ଼୍‌ଲାଟ୍ ଖୁସି ହେବେ ଓ ତାଙ୍କର ଭତ୍ତା ହୁଏତ କିଛି ପରିମାଣରେ ବୃଦ୍ଧି କରାଯିବ । କିନ୍ତୁ ତାଙ୍କର ଆଶା ବିଫଳ ହେଲା । ଆମହର୍ଷ୍ଟ ତାଙ୍କର ଭତ୍ତା ବଢ଼ାଇବାର କୌଣସି ସୂଚନା ଦେଲେ ନାହିଁ ।

ଦିଲ୍ଲୀରୁ ଏକ ପାହାଡ଼ିଆ ରାସ୍ତାଦେଇ ଆମହର୍ଷ୍ଟ ହିମାଳୟ କୋଳରେ ଅବସ୍ଥିତ ସିମଳାରେ ପ୍ରବେଶ କଲେ ଓ ସେଠାରେ ଗ୍ରୀଷ୍ମକାଳର ଦୁଇତିନି ମାସ କଟାଇଲେ । ଗୁର୍ଖା ଯୁଦ୍ଧ ସମୟରୁ ଇଂରେଜମାନେ ଏହି ଅଞ୍ଚଳ ଦଖଲ କରିଥିଲେ ଓ ପାହାଡ଼ ଉପରେ କୋଠାବାଡ଼ି ତିଆରି କରି ତାକୁ ବାସୋପଯୋଗୀ କରିଥିଲେ । ଆମହର୍ଷ୍ଟଙ୍କ ତିନିମାସିଆ ରହଣି ପରଠାରୁ ସିମଳା କ୍ରମେ ଇଂରେଜ ଶାସକମାନଙ୍କର ଗ୍ରୀଷ୍ମନିବାସରେ ପରିଣତ ହେଲା ।



# ସଂସ୍କାରକ ଉଇଲିୟମ୍ ବେଣ୍ଟିକ୍

ଆମହର୍ଷ୍ଟଙ୍କ ପରେ ୧୮୨୮ ମସିହା ଜୁଲାଇ ମାସରେ ଲର୍ଡ଼ ଉଇଲିୟମ୍ ବେଣ୍ଟିକ୍ ଭାରତର ଗଭର୍ଣ୍ଣର ଜେନେରାଲ୍ ନିଯୁକ୍ତ ହୋଇଥିଲେ । ଯଦି ଚାକିରିର ପରିସୀମା ମଧ୍ୟରେ ବ୍ରିଟିଶ୍ ସାମ୍ରାଜ୍ୟର ସୁରକ୍ଷା ସହିତ କେହି ଗଭର୍ଣ୍ଣର ଜେନେରାଲ୍ ବାସ୍ତବିକ ଭାରତବାସୀଙ୍କର ମଙ୍ଗଳ କାମନା କରୁଥିଲେ, ସେ ହେଲେ ଉଇଲିୟମ୍ ବେଣ୍ଟିକ୍ । ଭାରତକୁ ତାଙ୍କର ଆଗମନ ପ୍ରଥମ ନଥିଲା, ପଚିଶ ବର୍ଷ ପୂର୍ବେ ମାତ୍ର ୨୯ ବର୍ଷ ବୟସରେ ସେ ମାଡ୍ରାସ୍‌ର ଗଭର୍ଣ୍ଣର ଥିଲେ । କିନ୍ତୁ ଭେଲୋର୍ ସେନାବାହିନୀର ବିଦ୍ରୋହ ସଂକ୍ରାନ୍ତରେ ତାଙ୍କର ଦକ୍ଷତା ଉପରେ ସନ୍ଦେହ ହେତୁ ତାଙ୍କୁ ଭାରତରୁ ଫେରାଇ ନିଆଯାଇଥିଲା । ଗଭର୍ଣ୍ଣର ଜେନେରାଲ୍ ରୂପେ ଯୋଗ ଦେବା ପରେ ସେ ଘୋଷଣା କଲେ, ଭାରତବାସୀଙ୍କର ସୁଖ, ସମୃଦ୍ଧି ଓ ସନ୍ତୋଷ ଉପରେ ସେ ବ୍ରିଟିଶ୍ ଶାସନର ମହତ୍ତ୍ୱ ପ୍ରତିଷ୍ଠା କରିବେ । କାର୍ଯ୍ୟତଃ ସେ ଯୁଦ୍ଧବିଗ୍ରହ ଓ ରାଜ୍ୟବିସ୍ତାର ପ୍ରତି ଦୃଷ୍ଟି ନଦେଇ, ବରଂ ଯେଉଁସବୁ ପ୍ରଶାସନିକ ସଂସ୍କାର ଦ୍ୱାରା ଭାରତବାସୀଙ୍କର ମଙ୍ଗଳ ହେବ ସେଥିପ୍ରତି ସେ ଧ୍ୟାନ ଦେଲେ ।

ଏହି ସମୟରେ କେତେକ ଅତି ବରିଷ୍ଠ ବ୍ରିଟିଶ କର୍ମଚାରୀମାନେ କହୁଥିଲେ ଯେ ବ୍ରିଟିଶ ଶାସନ ଭାରତକୁ ଶାନ୍ତି ଓ ସମୃଦ୍ଧି ଫେରାଇ ଆଣିଛି । କିନ୍ତୁ କମ୍ପାନୀର ଆଉ ଜଣେ ବିଶିଷ୍ଟ କର୍ମଚାରୀ ଏଫ୍.ଜେ. ଶୋର୍ "ନୋଟ୍‌ସ ଅନ୍ ଇଣ୍ଡିଆନ୍ ଆଫେୟାର୍ସ" ଦୁଇ ଭଲ୍ୟୁମ ବିଶିଷ୍ଟ ପୁସ୍ତକରେ କମ୍ପାନୀର କର୍ମଚାରୀ ଓ କମ୍ପାନୀ ଶାସନର ଖିନ୍‌ଭିନ୍ ସମାଲୋଚନା କରି ଲେଖିଥିଲେ "ଲୋକଙ୍କର ଶ୍ରଦ୍ଧା ଓ ସମର୍ଥନ ଏହି ଶାସନର ଭିତ୍ତି ନୁହେଁ ।" ମେଟ୍‌କାଫ୍ ଏତେ କଡ଼ା ସମାଲୋଚନା ନକଲେ ମଧ୍ୟ ତାଙ୍କ ମତରେ ଏ ଶାସନ ପଛରେ କୌଣସି ଜନସମର୍ଥନ ନାହିଁ । ବେଣ୍ଟିକ୍ ଅନୁରୂପ ମତାମତ ପୋଷଣ କରୁଥିଲେ ।

ବେଣ୍ଟିକ୍ ଜୀବନ ଆରମ୍ଭ କରିଥିଲେ ଜଣେ ସାମରିକ ଅଫିସର୍ ଭାବରେ । ବହୁ ରଣକ୍ଷେତ୍ରରେ ସଫଳତାର ସହିତ କାର୍ଯ୍ୟକରି ଶେଷରେ ସେ ଲେଫ୍‌ଟ୍‌ନାଣ୍ଟ୍ ଜେନେରାଲ୍ ପଦକୁ ଉନ୍ନୀତ ହୋଇ ସିସିଲି ଯୁଦ୍ଧର କମାଣ୍ଡରେ-ଇନ୍-ଚିଫ୍ ନିଯୁକ୍ତ ହୋଇଥିଲେ । ସିସିଲି ଯୁଦ୍ଧର କମାଣ୍ଡର୍-ଇନ୍-ଚିଫ୍ ନିଯୁକ୍ତ ହୋଇଥିଲେ କିନ୍ତୁ ଏହିସବୁ ସାମରିକ ଅଭିଜ୍ଞତା ସତ୍ତ୍ୱେ ଭାରତରେ କୌଣସି ସାମରିକ କାର୍ଯ୍ୟାନୁଷ୍ଠାନ ପ୍ରତି ସେ ଆଗ୍ରହୀ ହେଲେ ନାହିଁ । ବରଂ ଯେଉଁ କାର୍ଯ୍ୟକ୍ରମରେ ଭାରତୀୟମାନଙ୍କୁ ଅଧିକ ସଂଖ୍ୟାରେ ସରକାରୀ ସେବାରେ ବିନିଯୋଗ କରାଯାଇପାରିବ ସେ ପ୍ରତି ଅଧିକ ଦୃଷ୍ଟି ଦେଲେ ।

ବେଣ୍ଟିକ୍‌ଙ୍କର ପ୍ରଥମ ତିନିବର୍ଷ ବଙ୍ଗଳାରେ ବିଚାର ବିଭାଗ ଓ ପ୍ରଶାସନ ବିଭାଗରେ କେତେକ ମୌଳିକ ପରିବର୍ତ୍ତନ ଆଣିବା ମୁଖ୍ୟ କାର୍ଯ୍ୟ ହେଲା । ଜିଲ୍ଲା ଜଜ୍‌କୋର୍ଟମାନଙ୍କରେ ସେ ସମୟରେ ଅସଂଖ୍ୟ ମାଲିମୋକଦ୍ଦମା ବିଚାର ହୋଇ ନପାରି ପଡ଼ି ରହିଥିଲା । ବହୁ ଫୌଜଦାରୀ ମୋକଦ୍ଦମା ସମୟାନୁଯାୟୀ ବିଚାର ହୋଇନପାରି ବିଚାରାଧୀନ ବନ୍ଦୀମାନେ କାରାଦଣ୍ଡ ଭୋଗୁଥିଲେ । ଅର୍ଥାଭାବ କାରଣ ଦର୍ଶାଇ କମ୍ପାନୀ ଉଚ୍ଚ ବେତନରେ ୟୁରୋପିଆନ୍ ଜଜ୍ ନିଯୁକ୍ତ କରିପାରୁ ନଥିଲେ । ଜିଲ୍ଲା ଜଜ୍‌ମାନଙ୍କର କାମ ହାଲୁକା କରିବା ପାଇଁ ବେଣ୍ଟିକ୍ କେତେକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ପ୍ରବର୍ତ୍ତନ କଲେ । ଜିଲ୍ଲା ଜଜ୍‌ମାନଙ୍କର ମାଜିଷ୍ଟ୍ରେରିଆଲ୍ କ୍ଷମତା ଓ ପୋଲିସ୍ କାର୍ଯ୍ୟ ଉପରେ ନିୟନ୍ତ୍ରଣ ଦାୟିତ୍ୱରୁ ସେମାନଙ୍କୁ ମୁକ୍ତ କରିଦିଆଗଲା ଓ ସେ କ୍ଷମତା କଲେକ୍ଟରମାନଙ୍କ ଉପରେ ନ୍ୟସ୍ତ କରାଗଲା । ଏହାଦ୍ୱାରା ମୁନ୍‌ରୋ ମାଡ୍ରାସରେ ଯେଉଁ ପ୍ରକାର ବ୍ୟବସ୍ଥା ପ୍ରଚଳନ କରିଥିଲେ ବଙ୍ଗଦେଶରେ ମଧ୍ୟ ଅନୁରୂପ ବ୍ୟବସ୍ଥା ପ୍ରଚଳିତ ହେଲା । ଅଧିକ ଦରମାରେ ୟୁରୋପିଆନ୍ ଜିଲ୍ଲା ଜଜ୍ ନିଯୁକ୍ତ ନକରି "ପ୍ରିନ୍ସିପାଲ୍ ସଦର ଅମିନ" ଶୀର୍ଷକ ଏକ ନୂଆ ଶ୍ରେଣୀର ଭାରତୀୟ ଜଜ୍ ନିଯୁକ୍ତ କରାଗଲା । ଯେଉଁମାନଙ୍କୁ ପାଞ୍ଚହଜାର ଟଙ୍କା ମୂଲ୍ୟର ସମ୍ପତ୍ତି ବିବାଦ ବିଚାର କରିବାକୁ କ୍ଷମତା ଦିଆଗଲା ।

ସେମାନଙ୍କର ବ୍ୟକ୍ତିଗତ ଦରମା ହେଲା ମାତ୍ର ୪,୦୦୦ ଟଙ୍କା । ହେଷ୍ଟିଂସ୍‌ଙ୍କ ସମୟରେ ସର୍ବୋଚ୍ଚ ଭାରତୀୟ ବିଚାରକମାନଙ୍କର ଆର୍ଥିକ କ୍ଷମତା ୫୦ରୁ ୨୫୦ ଟଙ୍କା ବଢ଼ାଇ ଦିଆଯାଇଥିଲା । ଏହାଦ୍ୱାରା କୌଣସି ଗୁରୁତ୍ୱପୂର୍ଣ୍ଣ ଦେୱାନୀ

ମୋକଦ୍ଦମାର ବିଚାର କରିବା ପାଇଁ ଏମାନଙ୍କର ସୁଯୋଗ ନଥିଲା । ବେଣ୍ଟିକ୍‌ଙ୍କର ଏହି ନୂତନ ଯୋଜନା ଫଳରେ ଏକ ବିରାଟ ପରିବର୍ତ୍ତନର ବାଟ ଫିଟିଲା । ମୋକଦ୍ଦମା ଫଏସଲା କରିବାରେ ଅତ୍ୟଧିକ ବିଳମ୍ବ ଅନେକ ପରିମାଣରେ ଦୂର ହୋଇଥିଲା ଓ ବହୁସଂଖ୍ୟକ ଶିକ୍ଷିତ ଭାରତୀୟ ସରକାରୀ ସେବାରେ ଯୋଗ ଦେଇଥିଲେ । ପ୍ରଶାସନରେ ଭାରତୀୟଙ୍କ ସହଯୋଗ ଲାଭ କରିବା ପାଇଁ ଏକ ଦ୍ୱାର ଉନ୍ମୁକ୍ତ ହେଲା । କିଛି ଦିନପରେ ମାଡ୍ରାସ ଓ ବମ୍ବେ ପ୍ରେସିଡେନ୍ସି ମଧ୍ୟ ସଦର ଅମିନ ନିଯୁକ୍ତି ବ୍ୟବସ୍ଥାକୁ ଗ୍ରହଣ କରି ନେଇଥିଲେ ।

ପ୍ରାଦେଶିକ ସ୍ତରରେ ଯେଉଁ ଅପିଲ୍ କୋର୍ଟ ଥିଲା, ତା'ର ବିଚାରପତି-ମାନେ ଏପରି ଅଥର୍ବ ଥିଲେ ଯେଉଁମାନେ କି ପ୍ରଶାସନର ଅନ୍ୟ କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବାକୁ ଅପାରଗ ବିବେଚିତ ହେଉଥିଲେ । ତେଣୁ ଏହି ଅପିଲ୍ କୋର୍ଟଗୁଡ଼ିକରେ ଅସଂଖ୍ୟ ଦେଓ୍ୱାନୀ ଅପିଲ୍ ଓ ଫୌଜଦାରୀ ଅପିଲ୍ ବର୍ଷ ବର୍ଷ ଧରି ପଡ଼ିରହୁଥିଲା । ବେଣ୍ଟିକ୍ ଏ ବ୍ୟବସ୍ଥାକୁ ତୁରନ୍ତ ଉଚ୍ଛେଦ କରିବା ପାଇଁ ନିଷ୍ପତ୍ତି ନେଲେ ଓ ସେ ସ୍ଥାନରେ କେତୋଟି ଜିଲ୍ଲାକୁ ନେଇ ଜଣେ କମିସନର୍ ନିଯୁକ୍ତ ହେଲେ । କମିସନର୍‌ମାନଙ୍କ ଉପରେ ସେ ଅଞ୍ଚଳର ରାଜସ୍ୱ ଆଦାୟର ଓ ବିଚାର ବିଭାଗର ସର୍ବୋଚ୍ଚ ଦାୟିତ୍ୱ ନ୍ୟସ୍ତ ହେଲା । ବେଣ୍ଟିକ୍ ଆଶା କରୁଥିଲେ ଯେ ଏହି ନବନିଯୁକ୍ତ ସୁପରଭାଇଜରୀ କମିସନର୍‌ମାନେ ପ୍ରଶାସନକୁ ନୂତନ ଜୀବନ ଓ ଶକ୍ତି ପ୍ରଦାନ କରିବେ । କିନ୍ତୁ କାଳକ୍ରମେ ଦେଖାଗଲା ପ୍ରଶାସନିକ କାର୍ଯ୍ୟ ବିଚାର ବିଭାଗୀୟ ଅପିଲ୍ ଇତ୍ୟାଦି ନିର୍ବାହ କରିବା ଦାୟିତ୍ୱ ହେତୁ କମିସନର୍‌ମାନେ ଭାରାକ୍ରାନ୍ତ ହୋଇପଡୁଛନ୍ତି । ବେଣ୍ଟିକ୍ ଏହାର ଏକ ସମାଧାନ ବାହାର କଲେ । ଏଥିପୂର୍ବରୁ ପୋଲିସ୍ ନିୟନ୍ତ୍ରଣ ଦାୟିତ୍ୱ ଜିଲ୍ଲା ଜଜ୍‌ଙ୍କଠାରୁ କାଢ଼ି ନିଆଯାଇ କଲେକ୍ଟରଙ୍କ ଉପରେ ନ୍ୟସ୍ତ ହୋଇଥିଲା । ସଦର ଅମିନ ବ୍ୟବସ୍ଥା ପ୍ରଚଳନ ଦ୍ୱାରା ବହୁ ବିଚାର ବିଭାଗୀୟ କାର୍ଯ୍ୟ ନିମ୍ନ ମାଧ୍ୟମରେ ସମାହିତ ହେଉଥିଲା । ଏଣୁ ସେ ବିଚାର ବିଭାଗର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସହିତ ସଦର ଅମିନଙ୍କ ନିଷ୍ପତ୍ତି ବିରୁଦ୍ଧରେ ଅପିଲ୍ ଶୁଣିବାର ଦାୟିତ୍ୱ ମଧ୍ୟ ଜିଲ୍ଲା ଜଜ୍‌ମାନଙ୍କୁ ଅର୍ପଣ କଲେ ।

ଆଇନ୍ ଶୃଙ୍ଖଳା ରକ୍ଷା କ୍ଷେତ୍ରରେ "ଠଗ"ମାନଙ୍କର ଉପଦ୍ରବ ଦମନ କରିବା ବେଣ୍ଟିକ୍ ଶାସନର ଏକ ଉଲ୍ଲେଖନୀୟ ପଦକ୍ଷେପ । ଲର୍ଡ୍ ହେଷ୍ଟିଂସ୍‌ଙ୍କ ସମୟରେ

ମଧ୍ୟଭାରତର ପଶ୍ଚିମାଞ୍ଚଳରୁ ପିଣ୍ଡାରୀମାନଙ୍କୁ ନିପାତ କରାଯାଇଥିଲା । ଏଥିପାଇଁ ସୈନ୍ୟବାହିନୀକୁ ପ୍ରୟୋଗ କରିବାକୁ ପଡ଼ିଥିଲା । କିନ୍ତୁ ଏହି "ଠଗ" ବା "ଠଗୀ" ମାନେ ଗୋଟିଏ କିସମର ଠକ । ଉତ୍ତର-ଭାରତ ଓ ମଧ୍ୟ-ଭାରତର କେତେକ ଅଞ୍ଚଳରେ ଏମାନେ ମୁଖ୍ୟତଃ କାର୍ଯ୍ୟକରୁଥିଲେ । ଯଥାସମ୍ଭବ ଅସ୍ତ୍ରଶସ୍ତ୍ର ପ୍ରୟୋଗ ନକରି ରାସ୍ତାରେ ଯାତାୟାତ କରୁଥିବା ବାଟୋଇମାନଙ୍କ ସହିତ ବନ୍ଧୁତା କରି ସାଙ୍ଗ ହୋଇ ଯିବା ଅବସରରେ ପୂର୍ବ ସଂକେତ ଅନୁଯାୟୀ ବାଟୋଇ ଗଳାରେ ଫାଶ ପକାଇ ଗଳାଚିପି ହତ୍ୟା କରି ତା ପାଖରେ ଥିବା ସବୁ ମୂଲ୍ୟବାନ୍ ପଦାର୍ଥ ଲୁଟ୍ କରୁଥିଲେ ଓ ଜଙ୍ଗଲ ମଧ୍ୟରେ ଗାତ ଖୋଳି ନିରୀହ ବାଟୋଇର ଶବକୁ ପୋତି ଦେଉଥିଲେ । ଯେପରିକି ତା'ର କୌଣସି ଚିହ୍ନବର୍ଣ୍ଣ ରହିବ ନାହିଁ । ଏମାନଙ୍କୁ ଦମନ ପାଇଁ ଏକ ନୂଆ ଆଇନ୍ ପ୍ରଣୀତ ହେଲା । ସବୁ କ୍ଷେତ୍ରରେ ଏହି ହତ୍ୟାକାରୀମାନଙ୍କୁ ଚିହ୍ନଟ କରିବା ସମ୍ଭବ ହୁଏ ନାହିଁ । ଏଣୁ ନୂତନ ଆଇନ୍‌ରେ ବ୍ୟବସ୍ଥା ରହିଲା ଯେ 'ଠଗ' ଦଳର ସଭ୍ୟଭୁକ୍ତ ବୋଲି ପ୍ରମାଣ ମିଳିଲେ ତାକୁ ଯାବଜ୍ଜୀବନ ନିର୍ବାସନ ବା ଦ୍ୱୀପାନ୍ତର ଦଣ୍ଡ ଦିଆଯିବ ଏବଂ ହତ୍ୟାରେ ସଂପୃକ୍ତ ଥିବାର ପ୍ରମାଣ ମିଳିଲେ ଦୋଷୀକୁ ଫାଶୀଦଣ୍ଡ ଦିଆଯିବ । ଏହି ଆଇନ୍ ପ୍ରୟୋଗ କରି ଛ' ବର୍ଷ ମଧ୍ୟରେ ୪୧୬ ଜଣ ଦୋଷୀଙ୍କୁ ଫାଶୀଦଣ୍ଡ ଦିଆଯାଇଥିଲା ଓ ବହୁ ଅଭିଯୁକ୍ତଙ୍କୁ ନିର୍ବାସନ କରାଯାଇଥିଲା । କ୍ରମେ 'ଠଗୀ' ଉପଦ୍ରବ ଲୋପ ପାଇଲା ।

କୁସଂସ୍କାରପୂର୍ଣ୍ଣ ହିନ୍ଦୁ ସମାଜରେ ଯେଉଁ ଜୀବନ୍ତ ପତ୍ନୀ ମୃତ ସ୍ୱାମୀର ଚିତାରେ ଝାସ ଦେଇ ଆତ୍ମହତ୍ୟା କରେ, ସେ ସତୀ ବିବେଚିତ ହୁଏ । ଏହାକୁ ସତୀଦାହ ପ୍ରଥା କହନ୍ତି । ଏହି ପ୍ରଥା ମୁଖ୍ୟତଃ ବଙ୍ଗଳା, ପଞ୍ଜାବ ଓ ରାଜସ୍ଥାନ ଆଦି ଅଞ୍ଚଳରେ ପ୍ରଚଳିତ ଥିଲା । ରାଜା ରାମମୋହନ ରାୟଙ୍କ ପରି ବହୁ ହିନ୍ଦୁ ସଂସ୍କାରକ ଓ ଖୋଦ୍ ଇଂରେଜ ଶାସକମାନେ ଏ ପ୍ରଥାକୁ ଘୃଣା କରୁଥିଲେ । ବେଣ୍ଟିକ୍ ଭାରତ ଆସିବା ପୂର୍ବରୁ ଏହି ପ୍ରଥା ବିରୁଦ୍ଧରେ ପଦକ୍ଷେପ ନେବାକୁ କମ୍ପାନୀ କର୍ତ୍ତୃପକ୍ଷଙ୍କୁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ କାଳେ ଏପରି ସଂସ୍କାରମୂଳକ କାର୍ଯ୍ୟ ଦ୍ୱାରା ହିନ୍ଦୁ ସମାଜ ବିଦ୍ରୋହ କରିବେ, ସେଥିପାଇଁ ଏ ସମ୍ପର୍କରେ କୌଣସି କାର୍ଯ୍ୟାନୁଷ୍ଠାନ କରାଯାଉନଥିଲା । ଲର୍ଡ୍ ହେଷ୍ଟିଂସ୍ ଓ ଆମହର୍ଷ୍ଟ ଏହି ପଦକ୍ଷେପର ଯଥାର୍ଥତା ଅନୁଭବ କଲେ ମଧ୍ୟ କେବଳ ଭୟ ଓ ଆତଙ୍କ ହେତୁ ନୀରବ ରହିଥିଲେ ।

କିନ୍ତୁ ବେଣ୍ଟିକ୍ ଥିଲେ ସମ୍ପୂର୍ଣ୍ଣ ଭିନ୍ନ କିସମର । ସେ ଥିଲେ ସାହସୀ ଓ ଦୃଢ଼ମନା । ଭାରତର ବିଭିନ୍ନ ଅଞ୍ଚଳର ପ୍ରାୟ ପଚାଶଜଣ ବରିଷ୍ଠ ପୋଲିସ୍ ଅଫିସରଙ୍କ ଦ୍ୱାରା ଅନୁସନ୍ଧାନ କରାଇ ସେ ଜାଣିବାକୁ ପାଇଲେ ଯେ ଏହି ତଥାକଥିତ 'ସତୀ'ମାନଙ୍କୁ କାର୍ଯ୍ୟତଃ ଏପରି ନିର୍ମମ ଭାବରେ ଆତ୍ମହତ୍ୟା କରିବାକୁ ବାଧ କରାଯାଉଛି । ବେଣ୍ଟିକ୍ ୧୮୨୯ ମସିହାରେ ଏକ ରେଗୁଲେସନ୍ ପ୍ରଣୟନ କଲେ– ମୃତ ସ୍ୱାମୀର ଚିତାରେ ଜୀବନ୍ତ ସ୍ତ୍ରୀକୁ ଅଗ୍ନିଦାହ କଲେ ତାହା ହତ୍ୟା ସହ ସମାନ ବିବେଚିତ ହେବ ଓ ତଦନୁଯାୟୀ ଦଣ୍ଡନୀୟ ହେବ । ଯେଉଁ ଗ୍ରାମବାସୀ ବା ବନ୍ଧୁବାନ୍ଧବମାନେ ଏପରି କାର୍ଯ୍ୟକୁ ପ୍ରଶ୍ରୟ ଦେବେ, ସେମାନେ ମଧ ଆଇନ ଅନୁଯାୟୀ ଦଣ୍ଡିତ ହେବେ । ହିନ୍ଦୁ ସମାଜର ପ୍ରତିରୋଧ ସମ୍ପର୍କରେ ଯେଉଁ ଆଶଙ୍କା ଥିଲା ତାହା ଭିତ୍ତିହୀନ ବୋଲି ପ୍ରମାଣିତ ହେଲା । କେବଳ କେତେକ ହିନ୍ଦୁ ନେତା ଲଣ୍ଡନ ପ୍ରିଭି କାଉନ୍‌ସିଲଙ୍କୁ ଏ ଆଇନ୍ ବିରୁଦ୍ଧରେ ଆବେଦନ ପତ୍ର ପଠାଇଥିଲେ । ସେତେବେଳେ ରାଜା ରାମମୋହନ ରାୟ ଲଣ୍ଡନରେ ରହୁଥିଲେ । ଶୁଣାଅଛି ରାଜା ରାମମୋହନ ପ୍ରିଭି କାଉନ୍‌ସିଲ୍‌ଙ୍କୁ ବେଣ୍ଟିକ୍ ପ୍ରଣୀତ ଆଇନ୍ ସପକ୍ଷରେ ମତାମତ ଦେଲେ । ତା'ପରେ ରେଗୁଲେସନ୍ ଆଇନ୍‌ସଙ୍ଗତ ଘୋଷିତ ହେଲା ଓ ହିନ୍ଦୁ ନେତାମାନଙ୍କର ଆବେଦନ ଖାରଜ ହେଲା ।

କିଛି ଦିନ ପରେ ବମ୍ବେ ଓ ମାଡ୍ରାସ ପ୍ରଦେଶରେ ଏହି ରେଗୁଲେସନ୍ ଗୃହୀତ ହେଲା । ଦୃଢ଼ କାର୍ଯ୍ୟାନୁଷ୍ଠାନ ହେତୁ ଏହି କଳଙ୍କିତ ପ୍ରଥା ଭାରତରୁ ଲୋପ ହେଲା । କିନ୍ତୁ କୁସଂସ୍କାରର ଚେର ବହୁତ ତଳକୁ ଯାଇଥାଏ ଏବଂ ତା'ର ଏକ ଦୀର୍ଘସ୍ଥାୟୀ ପ୍ରଭାବ ଥାଏ । କେତେବେଳେ କେମିତି ସୁବିଧା ପାଇଲେ ତାହା ମୁଣ୍ଡ ଟେକି ବାହାରେ । ବେଣ୍ଟିକ୍ ଭାରତ ଛାଡ଼ିବାର ଦେଢ଼ଶହରୁ ଅଧିକ ବର୍ଷ ହେଲାଣି । ଅଥଚ ପ୍ରାୟ କୋଡ଼ିଏ ବର୍ଷ ପୂର୍ବେ ରାଜସ୍ଥାନରେ 'ସତୀଦାହ'ର ପୁନରାବୃତ୍ତି ହେଲା । ସ୍ଥାନୀୟ ହିନ୍ଦୁ ନେତାମାନେ ସତୀର ପ୍ରଶଂସାଗାନ କରି ତାଙ୍କ ନାମରେ ଏକ 'ସତୀ ମନ୍ଦିର' ନିର୍ମାଣ କରିଅଛନ୍ତି ।



# ଆଫଗାନିସ୍ଥାନରେ ଇଂରେଜଙ୍କ ହଟହଟା

ବେଣ୍ଟିକ୍ ଭାରତରୁ ବିଦାୟ ନେବା ସମୟରେ ସାର୍ ରବର୍ଟ ପିଲ୍‌ଙ୍କ ନେତୃତ୍ୱରେ ଟୋରୀ ଦଳ ଅଳ୍ପ ଦିନ ପାଇଁ ବିଲାତରେ ମନ୍ତ୍ରୀ ପରିଷଦ ଗଠନ କରିଥିଲେ । ରବର୍ଟ ପିଲ୍‌ଙ୍କ ପ୍ରବର୍ତ୍ତନାରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଡିରେକ୍ଟର ବୋର୍ଡ଼ ଲର୍ଡ଼ ହେଟେସ୍ ବେରୀଙ୍କୁ ବେଣ୍ଟିକ୍‌ଙ୍କ ସ୍ଥାନରେ ଭାରତର ଗଭର୍ଣ୍ଣର ଜେନେରାଲ୍ ପଦ ପାଇଁ ନିଯୁକ୍ତ କରିବାକୁ ସମ୍ମତ ହେଲେ । ହେଟେସ ବେରୀ ଥିଲେ ଜଣେ ସୁଦକ୍ଷ କୂଟନୀତିଜ୍ଞ । ତାଙ୍କର ଯାତ୍ରାର ଦିନ ଧାର୍ଯ୍ୟ ହେଲା ଓ ତାଙ୍କୁ ବିଦାୟ ଭୋଜି ମଧ ଦିଆଗଲା । ଏ ମଧରେ ହଠାତ୍ ଟୋରୀ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା ଓ ହୁଇଗ୍ ଦଳ ପୁଣି କ୍ଷମତାକୁ ଆସିଲେ । ନୂତନ ପ୍ରଧାନମନ୍ତ୍ରୀ ଲର୍ଡ଼ ମେଲ୍‌ବୋର୍ଣ୍ଣ କ୍ଷମତାସୀନ ହେବାର ପ୍ରଥମ ଦିନ ହେଟେସ୍ ବେରୀଙ୍କ ନିଯୁକ୍ତି ଆଦେଶକୁ ରଦ୍ଦ ଘୋଷଣା କଲେ ଓ ତାଙ୍କ ସ୍ଥାନରେ ତାଙ୍କ ଦଳର ଜଣେ ପ୍ରଧାନ ସମର୍ଥକ ଜର୍ଜ ଏଡେନ୍‌ଙ୍କୁ (ପରକାଳରେ ଲର୍ଡ଼ ଅକ୍‌ଲାଣ୍ଡ ନାମରେ ପରିଚିତ) ୧୮୩୬ ମସିହାରେ ଭାରତର ଦାୟିତ୍ୱ ଅର୍ପଣ କଲେ ।

ଲର୍ଡ଼ ଅକଲାଣ୍ଡ ଥିଲେ ଅବିବାହିତ ଓ ତାଙ୍କର ସହଯାତ୍ରୀ ଥିଲେ ତାଙ୍କର ଦୁଇ ଅବିବାହିତା ଭଉଣୀ ଏମିଲ୍ ଓ ଫାନି ଏଡେନ୍ । କିନ୍ତୁ ରାଜଧାନୀ କଲିକତାରେ ରହିବାକୁ ସେମାନେ ଅସ୍ୱାସ୍ଥ୍ୟକର ଓ ଅସୁଖକର ମନେ କରୁଥିଲେ । ଭାରତରେ ପହଞ୍ଚିବା ପରେ ଅନାବଶ୍ୟକ ଯୁଦ୍ଧରେ ଲିପ୍ତ ନହୋଇ ଓ ବେଣ୍ଟିକ୍‌ଙ୍କ ପରି ପ୍ରଶାସନିକ ସଂସ୍କାର ପ୍ରତି ଧାନ ଦେବାକୁ କମ୍ପାନୀ କର୍ତ୍ତୃପକ୍ଷ ତାଙ୍କୁ ପରାମର୍ଶ ଦେଇଥିଲେ । କଲିକତାରେ କାଉନ୍‌ସିଲ୍‌ର ସଦସ୍ୟମାନେ ମଧ ଅନୁରୂପ ପରାମର୍ଶ ଦେଇଥିଲେ । ବିଶେଷତଃ ପଞ୍ଜାବ ଓ ଆଫଗାନିସ୍ଥାନ ସହିତ ଯଥାସମ୍ଭବ ବିବାଦ ନକରିବା ପାଇଁ ଦୃଢ଼ ମତାମତ ବ୍ୟକ୍ତ କରିଥିଲେ । କିନ୍ତୁ ଏସବୁ ପରାମର୍ଶ କ୍ରମେ ମୂଲ୍ୟହୀନ ହୋଇ ଉଠିଲା । କାରଣ ସମ୍ଭ୍ରାନ୍ତ ପରିବାରରୁ ସୁଖସ୍ୱାଚ୍ଛନ୍ଦ୍ୟରେ ଦିନ କଟେଇଥିବା ଅନୂଢ଼ା ଭଉଣୀମାନଙ୍କ ପରାମର୍ଶରେ

ହେଉ ବା ରାଜଧାନୀର ଜଳବାୟୁ ଅସହ୍ୟ ହେବାରୁ, ସେ କଲିକତାରେ ରହିବାର ଅଳ୍ପଦିନ ପରେ ଉତ୍ତର ଭାରତ ପରିଭ୍ରମଣରେ ବାହାରିଲେ ଓ ଦୁଇବର୍ଷ ଗ୍ରୀଷ୍ମଋତୁ ସିମଲାରେ କଟାଇଲେ । ଏଣୁ ଆବଶ୍ୟକ ସମୟରେ କାଉନ୍‌ସିଲ୍ ସଦସ୍ୟମାନଙ୍କଠାରୁ ପରାମର୍ଶ ଗ୍ରହଣ କରିବା ବା ତଦନୁଯାୟୀ କାର୍ଯ୍ୟ କରିବାର ଅବକାଶ ନଥିଲା । ବରଂଚ୍ ସିମଲାରେ ଥିବାବେଳେ କେତେଜଣ ଯୁବକ ସିଭିଲିଆନ୍ ଅକ୍‌ଲାଣ୍ଡଙ୍କର ପ୍ରଧାନ ପରାମର୍ଶଦାତା ବନି ଯାଇଥିଲେ ଓ ସେ ମଧ୍ୟ ସେହିମାନଙ୍କ ଦ୍ୱାରା ଚାଳିତ ହେଉଥିଲେ । କୋଲ୍‌ଭିନ୍ ନାମକ ଜଣେ ଯୁବ ଅଫିସର୍ ଥିଲେ ତାଙ୍କର ସେକ୍ରେଟାରୀ । କୋଲ୍‌ଭିନ୍‌ଙ୍କର ପରାମର୍ଶ ଅକ୍‌ଲାଣ୍ଡଙ୍କ ନିକଟରେ ଥିଲା ବେଦ-ବାକ୍ୟ । ସେଥିପାଇଁ ଅନ୍ୟ ଅଫିସର୍‌ମାନେ ସେକ୍ରେଟାରୀଙ୍କୁ ପରିହାସରେ କହୁଥିଲେ "ଲର୍ଡ଼ କୋଲ୍‌ଭିନ୍" ।

ଏହି ସମୟରେ ରୁଷିଆ ପକ୍ଷରୁ ପାରସ୍ୟ, ବର୍ତ୍ତମାନ ଇରାନ୍ ଓ ଆଫଗାନିସ୍ଥାନ ସହିତ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ସ୍ଥାପନ କରିବା ପାଇଁ ବ୍ୟଗ୍ରତା ପ୍ରକାଶ ପାଉଥିଲା । ଇଂରେଜମାନେ ଆଶଙ୍କା କରୁଥିଲେ ଯେ ଏହିମାନଙ୍କ ସହାୟତାରେ ରୁଷିଆ ଭାରତ ଆକ୍ରମଣ କରିବାର ଯୋଜନା କରୁଛି । ଏଣୁ ଅକଲାଣ୍ଡ ଆଫଗାନିସ୍ଥାନର ଶାସକ ଦୋସ୍ତ ମହମ୍ମଦ୍ ଓ ପଞ୍ଜାବର ମହାରାଜା ରଣଜିତ୍ ସିଂହଙ୍କ ସହିତ ବନ୍ଧୁତ୍ୱ ଦୃଢ଼ କରିବାକୁ ଚାହୁଁଥିଲେ । କାବୁଲ୍‌ରେ ଦୋସ୍ତ ମହମ୍ମଦଙ୍କ ଦରବାରରେ ଜଣେ ରୁଷୀୟ ପ୍ରତିନିଧିଙ୍କ ଉପସ୍ଥିତି ପରିସ୍ଥିତିକୁ ଆହୁରି ଜଟିଳ କରିଦେଇଥିଲା । ବ୍ରିଟିଶ୍ ସରକାର ଚାହୁଁଥିଲେ କାବୁଲ୍ ରଷିଆନ୍ ପ୍ରଭାବରୁ ନିଜକୁ ମୁକ୍ତ ରଖୁ ଏବଂ ବ୍ରିଟେନ୍ ସହିତ ବନ୍ଧୁତା ପ୍ରତିଷ୍ଠା କରୁ । କିନ୍ତୁ ରୁଷ୍ ବିରୁଦ୍ଧରେ ଇଂରେଜମାନଙ୍କ ସହ ମୈତ୍ରୀଚୁକ୍ତି କରିବା ପାଇଁ ଅକ୍‌ଲାଣ୍ଡ ଦୋସ୍ତ ମହମ୍ମଦଙ୍କୁ କୌଣସି ପ୍ରକାର ସାହାଯ୍ୟର ପ୍ରତିଶ୍ରୁତି ଦେଇନଥିଲେ । ଦୋସ୍ତ ମହମ୍ମଦ ପରିସ୍ଥିତିରୁ ସୁବିଧା ଉଠାଇବା ପାଇଁ ଦାବି କଲେ ଯେ ପେଶାୱାର ଅଞ୍ଚଳ, ଯାହାକି ପୂର୍ବେ ଆଫଗାନ୍ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ଓ ରଣଜିତ୍ ସିଂହ ଯୁଦ୍ଧରେ ଆଫଗାନମାନଙ୍କୁ ପରାଜିତକରି ଏ ଅଞ୍ଚଳକୁ ଜବରଦସ୍ତ ଦଖଲ କରି ନେଇଛନ୍ତି, ତାହା ଫେରାଇ ଦେବାପାଇଁ ଇଂରେଜମାନେ ରଣଜିତ ସିଂହଙ୍କ ଉପରେ ଚାପ ଦିଅନ୍ତୁ । କିନ୍ତୁ ରଣଜିତ ସିଂହଙ୍କ ପରି ଜଣେ ବିଶ୍ୱସ୍ତ ପୁରାତନ ମିତ୍ରଙ୍କୁ ଅସନ୍ତୁଷ୍ଟ କରିବାକୁ ଅକ୍‌ଲାଣ୍ଡ ପ୍ରସ୍ତୁତ ନଥିଲେ ।

ଏହି ସମୟରେ ସମ୍ବାଦ ମିଳିଲା ଯେ ରଷିଆନ୍ ଜେନେରାଲ୍ ଓ ଇଂଜିନିୟରମାନଙ୍କ ସହାୟତାରେ ପାରସ୍ୟର ଶାହା ଆଫଗାନିସ୍ଥାନର ହେରାଟ୍ ସହର

ଉପରେ ଆକ୍ରମଣ କରିଛନ୍ତି । ଦୋସ୍ତ ମହମ୍ମଦଙ୍କ ସହାୟତା ଉପରେ ଆଉ ଭରସା ନରଖି ସିମ୍‌ଲା ସହଯୋଗୀମାନଙ୍କ ସହ ପରାମର୍ଶ କ୍ରମେ ଅକ୍‌ଲାଣ୍ଡ ସ୍ଥିର କଲେ ଯେ, କାବୁଲ୍ ଗାଦିର ଜଣେ ପୁରାତନ ଦାବିଦାର ଶାହାସୁଜା, ଯେ କି ସେତେବେଳେ ଲୁଧିୟାନାରେ ଆଶ୍ରୟନେଇଥିଲେ, ତାଙ୍କୁ ସାହାଯ୍ୟ କରି ଦୋସ୍ତ ମହମ୍ମଦଙ୍କୁ କାବୁଲ୍‌ରୁ ବିତାଡ଼ିତ କରାଯିବ ଏବଂ ଶାହାସୁଜାଙ୍କ ପରି ଜଣେ ବିଶ୍ୱସ୍ତ ଶାସକଙ୍କୁ କାବୁଲ୍ ରାଜସିଂହାସନରେ ଅବସ୍ଥାପିତ କରାହେବ । ଏହି ନିଷ୍ପତ୍ତି ସିମ୍‌ଲା ଘୋଷଣା ନାମରେ ଖ୍ୟାତ । ଏ ପ୍ରସ୍ତାବରେ ଉଭୟ ରଣଜିତ ସିଂହ ଓ ଶାହାସୁଜା ସହମତ ହୋଇଥିଲେ । ଅବଶ୍ୟ ରଣଜିତ ସିଂହ ବ୍ରିଟିଶ ସୈନ୍ୟଙ୍କ ସହ ଯୁଦ୍ଧଯାତ୍ରା କରିବାକୁ କୁଣ୍ଠିତ ଥିଲେ । ତଥାପି ଶାହାସୁଜାଙ୍କର ଛଅହଜାର ସୈନ୍ୟ କମ୍ପାନୀର ବଙ୍ଗବାହିନୀର ସାଢ଼େ ନଅହଜାର ସୈନ୍ୟଙ୍କ ସହ ରଣଜିତ ସିଂହଙ୍କର ପାଞ୍ଚହଜାର ସୈନ୍ୟ କାନ୍ଦାହାର ଅଭିମୁଖେ ଅଭିଯାନ ଆରମ୍ଭ କଲେ ।

କିଛିଦିନ ପରେ ସମ୍ବାଦ ମିଳିଲା ଯେ ପାରସ୍ୟ ସେନା ହେରାଟ ଆକ୍ରମଣରୁ ପଛଘୁଞ୍ଚା ଦେଇଛନ୍ତି । ଏହି ଘଟଣାରୁ ଉଭୟ ବମ୍ବେ ଓ କଲିକତା ସୈନ୍ୟବାହିନୀର କମାଣ୍ଡରମାନେ ଅନୁମାନ କରିଥିଲେ ଯେ ପାରସ୍ୟ ସେନାର ପଛଘୁଞ୍ଚା ପରେ କାବୁଲ୍ ଆକ୍ରମଣ ହୁଏତ ସ୍ଥଗିତ ରହିବ । କିନ୍ତୁ ଲର୍ଡ଼ ଅକଲାଣ୍ଡ୍ ସିମଲା ଘୋଷଣାରୁ ପଛେଇବାକୁ ଚାହୁଁ ନଥିଲେ, ବରଂଚ ଭବିଷ୍ୟତର ସୁରକ୍ଷା ଦୃଷ୍ଟିରୁ ଶାହାସୁଜାଙ୍କୁ ଯେକୌଣସି ପ୍ରକାରେ କାବୁଲ୍‌ରେ କ୍ଷମତାସୀନ କରିବା ପାଇଁ ସେ ବଦ୍ଧପରିକର ଥିଲେ ।

ବମ୍ବେ ସୈନ୍ୟବାହିନୀର କେତେକ ବଛାବଛା ସୈନ୍ୟ ସ୍ଥାନୀୟ ମୁଖ୍ୟ ସେନାପତି କିନ୍‌ଙ୍କ ନେତୃତ୍ୱରେ ସିନ୍ଧୁପ୍ରଦେଶ ଦେଇ ଦକ୍ଷିଣ ପଶ୍ଚିମ ଦିଗରୁ କାବୁଲ୍ ଅଭିମୁଖେ ଯାତ୍ରା କଲେ ଓ ଏପ୍ରିଲ୍ ଛବିଶ ତାରିଖରେ କାନ୍ଦାହାରରେ ପ୍ରବେଶ କଲେ । କାନ୍ଦାହାରର ସର୍ଦ୍ଦାରମାନେ ଭୟଭୀତ ହୋଇ ପାରସ୍ୟ ଅଭିମୁଖେ ପଳାୟନ କଲେ । ଏହାପରେ ଶାହାସୁଜା ଅତି ସହଜରେ କାନ୍ଦାହାରରେ ପ୍ରବେଶ କରିଥିଲେ ଏବଂ ସ୍ଥାନୀୟଲୋକେ ହଜାର ହଜାର ସଂଖ୍ୟାରେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ପରଦିନ ସ୍ଥାନୀୟ ଲୋକେ ଯେତେବେଳେ ବ୍ରିଟିଶ ସୈନ୍ୟ ଓ ସିପାହୀମାନଙ୍କୁ କାନ୍ଦାହାର ଉପକଣ୍ଠରେ ଦେଖିଲେ, ସେମାନଙ୍କର ସମସ୍ତ ଉତ୍ସାହ ଭାଙ୍ଗିଗଲା ଏବଂ ଶାହାସୁଜାଙ୍କୁ ସମ୍ବର୍ଦ୍ଧନା ସମ୍ପୂର୍ଣ୍ଣ ମଉଳିଗଲା । କାନ୍ଦାହାରରେ ଦୁଇମାସ ବିଶ୍ରାମ ନେଲାପରେ ବ୍ରିଟିଶ୍ ବାହିନୀ ଘଜିନୀ

ଅଭିମୁଖେ ଯାତ୍ରା କରିଥିଲେ । ସେ ସମୟରେ ଘଜନୀ ଦୁର୍ଗଥିଲା ସବୁଠାରୁ ସୁଦୃଢ଼ ଓ ଶକ୍ତିଶାଳୀ ଏବଂ ଯେଉଁ କ୍ଷୁଦ୍ର କମାଣ ସବୁ ସାଙ୍ଗରେ ଧରି ଇଂରେଜ ସେନାପତି ଘଜନୀ ଆକ୍ରମଣ ପାଇଁ ଉଦ୍ୟତ ହେଉଥିଲେ ଘଜନୀ ଦୁର୍ଗର କାନ୍ଥ ଭାଙ୍ଗିବା ପାଇଁ ସେ ସବୁ ଥିଲା ଅତ୍ୟନ୍ତ ଦୁର୍ବଳ ଓ ଅଦରକାରୀ । ଯାହାହେଉ ଦୋସ୍ତ ମହମ୍ମଦଙ୍କର ଜଣେ ବିଦ୍ରୋହୀ ସେନାଧକ୍ଷ ଓ ତାଙ୍କର ସମ୍ପର୍କୀୟ ଇଂରେଜମାନଙ୍କୁ ସମ୍ବାଦ ଦେଲେ ଯେ ଘଜନୀ ଦୁର୍ଗର ଚାରୋଟି ପ୍ରବେଶ ଦ୍ୱାର ମଧ୍ୟରୁ ଗୋଟିଏ ଦ୍ୱାରର ନିର୍ମାଣ ଏପର୍ଯ୍ୟନ୍ତ ଅସମ୍ପୂର୍ଣ୍ଣ ଅଛି ଏବଂ ସେହି ଦ୍ୱାରରେ କମାଣ ଆକ୍ରମଣ କଲେ ସହଜରେ ଦୁର୍ଗ ଦଖଲ କରିହେବ । ଏହି ସମ୍ବାଦ ଭିତ୍ତିରେ ଅସମ୍ପୂର୍ଣ୍ଣ ଦ୍ୱାରପଟରୁ ଆକ୍ରମଣ କରି ଅତି ସୁଦୃଢ଼ ଘଜନୀ ଦୁର୍ଗକୁ ଇଂରେଜମାନେ ସହଜରେ ଦଖଲ କରିନେଇଥିଲେ । ଅପରପକ୍ଷର ବିଶ୍ୱାସଘାତକତା ସବୁଦିନ ସେମାନଙ୍କର ବିଜୟର ଭିତ୍ତିହୋଇ ଆସିଛି ଏବଂ ଘଜନୀରେ ମଧ୍ୟ ତା'ର ପୁନରାବୃତ୍ତି ଘଟିଲା ।

କାବୁଲ୍ ବିରୋଧୀ ଯୁଦ୍ଧରେ ପଞ୍ଜାବୀ ସୈନ୍ୟଙ୍କର ବିଶେଷ ଆବଶ୍ୟକତା ପଡ଼ିଲା ନାହିଁ । ସେତେବେଳକୁ ରଣଜିତ୍ ସିଂହ ଶଯ୍ୟାଶାୟୀ ଏବଂ ୧୮୩୯ ମସିହାରେ ତାଙ୍କର ମୃତ୍ୟୁ ହେଲା । ପଞ୍ଜାବୀ ସୈନ୍ୟମାନେ ରଣଜିତ ସିଂହଙ୍କ ପରେ କିଏ ଉତ୍ତରାଧିକାରୀ ହେବ ସେ ବିଷୟରେ ବରଂ ଚିନ୍ତିତ ଥିଲେ, ମାତ୍ର ଦୋସ୍ତ ମହମ୍ମଦଙ୍କ ବିରୁଦ୍ଧରେ ଲଢ଼େଇ କରିବା ପାଇଁ ସେମାନଙ୍କର ଆଉ ଆଗ୍ରହ ନଥିଲା । ଏସବୁ ସତ୍ତ୍ୱେ ଶାହାସୁଜା ଓ କମ୍ପାନୀର ବଙ୍ଗବାହିନୀ ଏବଂ ସିନ୍ଧୁପ୍ରଦେଶ ବାଟେ ଆସିଥିବା କମ୍ପାନୀର ବମ୍ବେ ସୈନ୍ୟବାହିନୀ କାବୁଲ୍ ଆକ୍ରମଣ ପାଇଁ ଆଗେଇ ଚାଲିଲେ । ଦୋସ୍ତ ମହମ୍ମଦଙ୍କ ପାଇଁ ବିଜୟର ସମ୍ଭାବନା କ୍ଷୀଣ ହୋଇ ଆସିଲା । ସେ କେତେକ ସୈନ୍ୟସାମନ୍ତ ଧରି କାବୁଲ୍‌ରୁ ଉତ୍ତରରେ ହିନ୍ଦୁକୁଶ ଘାଟିଆଡ଼େ ପଳାୟନ କଲେ ଏବଂ ଶାହାସୁଜା ଅବିଳମ୍ବେ କାବୁଲ୍‌ରେ ନିଜକୁ ପ୍ରତିଷ୍ଠିତ କଲେ ।

କାବୁଲ୍‌ରେ କିଛିଦିନ ରହିବା ପରେ ବ୍ରିଟିଶ୍ ସାମରିକ ଅଫିସର୍‌ମାନଙ୍କ ମଧ୍ୟରେ ଶାହାସୁଜାଙ୍କର ଶକ୍ତିସାମର୍ଥ୍ୟ ଓ ଜନପ୍ରିୟତା ସମ୍ପର୍କରେ ସନ୍ଦେହ ଜାତ ହେଲା । କାବୁଲ୍‌ବାସୀଙ୍କର ଆଚରଣ ଅନୁଧାନ କରି ମ୍ୟାକନର୍ଟନଙ୍କର ବିବରଣୀ ଉପରେ ଆସ୍ଥା କମିବାକୁ ଲାଗିଲା । ଅବଶ୍ୟ ବମ୍ବେରୁ ଆସିଥିବା ସୈନ୍ୟ ଦଳଙ୍କୁ ସିନ୍ଧୁଦେଶ ଦେଇ ଫେରାଇ ଦିଆଗଲା, କିନ୍ତୁ ବଙ୍ଗବାହିନୀର ସୈନ୍ୟମାନଙ୍କୁ କିଛିଦିନ ପାଇଁ

ଆଫଗାନିସ୍ଥାନରେ ରଖିବାର ବ୍ୟବସ୍ଥା କରାଗଲା । ଏହି ସମୟରେ ଏପରି ଏକ ଅପ୍ରତ୍ୟାଶିତ ଘଟଣା ଘଟିଲା ଯେଉଁଥିରେ କି ଆଫଗାନ୍ ଯୁଦ୍ଧର ମୋଡ଼ ବଦଳିଗଲା । ଦିନେ ଅକ୍‌ଲାଣ୍ଡଙ୍କର ପଲିଟିକାଲ୍ ଏଜେଣ୍ଟ୍ ମ୍ୟାକନର୍ଟନ ତାଙ୍କର କେତେକ ପ୍ରହରୀ ଓ ବନ୍ଧୁଙ୍କ ସହ କାବୁଲ୍‌ରେ ଘୋଡ଼ାରେ ପରିଭ୍ରମଣ କରୁଥିବା ସମୟରେ ଦେଖିଲେ ଦୂରରୁ କେତେକ ଘୋଡ଼ସବାର୍ ଆଫଗାନ୍ ତାଙ୍କର ଅନୁଗମନ କରୁଅଛନ୍ତି । ନିକଟ ହେବାରୁ ଦେଖାଗଲା ସେମାନଙ୍କ ଭିତରେ ଜଣେ ହେଉଛନ୍ତି କାବୁଲ୍‌ର ପୂର୍ବତନ ଶାସକ ଦୋସ୍ତ ମହମ୍ମଦ । ସେ ମ୍ୟାକ୍‌ନର୍ଟନଙ୍କର ପାଦ ଧରି କ୍ଷମାପ୍ରାର୍ଥନା କଲେ ଓ ତାଙ୍କୁ ଆଶ୍ରୟ ଦେବାପାଇଁ ଅନୁରୋଧ କଲେ । ମ୍ୟାକ୍‌ନର୍ଟନ ଅକ୍‌ଲାଣ୍ଡଙ୍କୁ ସୁପାରିଶ କରି ଦୋସ୍ତ ମହମ୍ମଦଙ୍କୁ ଶାହାସୁଜାଙ୍କ ଅପେକ୍ଷା ଅଧିକ ହାରରେ ପେନ୍‌ସନ୍ ଦେଇ ଲୁଧିଆନା ପଠାଇଦେଲେ ଏବଂ ତାହାହିଁ ହେଲା ଦୋସ୍ତ ମହମ୍ମଦ ଓ ତାଙ୍କ ପରିବାରର ଆଶ୍ରୟ ସ୍ଥଳ ।

କିନ୍ତୁ କାବୁଲ୍ ଯୁଦ୍ଧର ସଫଳତା ବେଶୀ ଦିନ ସ୍ଥାୟୀ ହେଲା ନାହିଁ । ଦୋସ୍ତ ମହମ୍ମଦଙ୍କ ପରିବର୍ତ୍ତେ ଶାହାସୁଜାଙ୍କୁ ଏତେ ବେଶି ବିଶ୍ୱାସ କରିବାର କୌଣସି କାରଣ ନଥିଲା । ରୁଷିଆର ଆଫଗାନ୍ ଆକ୍ରମଣ ଇଂରେଜମାନଙ୍କ ପାଇଁ କୋକୁଆ ଭୟ ସୃଷ୍ଟି କରିଥିଲା । ରୁଷ୍ ବିରୋଧର ଯେଉଁ ମ୍ୟାକ୍‌ନର୍ଟନଙ୍କୁ ଅକ୍‌ଲାଣ୍ଡ ଆଫଗାନିସ୍ଥାନ ପାଇଁ ରାଜନୈତିକ ପରାମର୍ଶଦାତା ନିଯୁକ୍ତ କରିଥିଲେ, ତାଙ୍କର କୌଣସି ସାମରିକ ଅଭିଜ୍ଞତା ନଥିଲା । ସେ କେବଳ ରୁଷିଆର ଜାର୍‌ଙ୍କ ସମ୍ଭାବିତ ଆକ୍ରମଣ ଦୃଷ୍ଟିରୁ ପରିସ୍ଥିତି ଆକଳନ କରୁଥିଲେ । ଗଭର୍ଣ୍ଣର ଜେନେରାଲ୍ ଅକ୍‌ଲାଣ୍ଡଙ୍କୁ ଜ୍ଞାତସାରରେ ହେଉ ବା ଅଜ୍ଞତାରେ ହେଉ ମ୍ୟାକ୍‌ନର୍ଟନ୍ ବାରମ୍ବାର ରିପୋର୍ଟ ଦେଉଥିଲେ ଯେ ଶାହାସୁଜା ଅତ୍ୟନ୍ତ ଜନପ୍ରିୟ ଓ ଆଫଗାନିସ୍ଥାନର ପରିସ୍ଥିତି ଇଂରେଜମାନଙ୍କ ପାଇଁ ବେଶ୍ ଅନୁକୂଳ । ଅକ୍‌ଲାଣ୍ଡ ଏ ରିପୋର୍ଟ ପଢ଼ି ଏତେ ଖୁସି ହେଉଥିଲେ ଯେ, କ୍ରମେ ମ୍ୟାକ୍‌ନର୍ଟନ୍‌ଙ୍କୁ ସେ ଆଫଗାନିସ୍ଥାନ ବ୍ୟାପାରରେ ସର୍ବୋଚ୍ଚ ନିଷ୍ପତ୍ତି ନେବାକୁ କ୍ଷମତା ପ୍ରଦାନ କରିଥିଲେ । ନଟ୍ ଓ ନିକୋଲସ୍ ପ୍ରଭୃତି ସାମରିକ କମାଣ୍ଡରମାନେ ଏଥିରେ ଅସନ୍ତୁଷ୍ଟ ହେଲେ ମଧ୍ୟ ଅକ୍‌ଲାଣ୍ଡଙ୍କ ଆଦେଶ ଅମାନ୍ୟ କରିବାକୁ ସେମାନଙ୍କର ଚାରା ନଥିଲା ।

ଇଂରେଜମାନେ କାବୁଲ୍‌ରେ ପହଞ୍ଚି ପ୍ରଥମେ ରାଜପ୍ରାସାଦ ସନ୍ନିକଟ ବାଲା ହିସାର ଦୁର୍ଗରେ ଆଶ୍ରୟ ନେଲେ ଏବଂ ସ୍ଥାନାଭାବରୁ ନୂତନ ଗୃହ ନିର୍ମାଣ ଆରମ୍ଭ

ହେଲା । କିନ୍ତୁ ଶାହାସୁଜା ଆପତ୍ତି କଲେ ଯେ ବାଲା ହିସାର ତାଙ୍କର ରକ୍ଷିତାମାନଙ୍କ ପାଇଁ ଉଦ୍ଦିଷ୍ଟ ଓ ଇଂରେଜମାନେ ରାଜପ୍ରାସାଦଠାରୁ ଦୂରରେ ବାରାକ୍ ତିଆରି କରନ୍ତୁ । ସାମରିକ ଅଫିସର୍‌ମାନେ ଏହାର ବିରୋଧ କରିଥିଲେ । ମ୍ୟାକନର୍ଟନ ସାମରିକ ଅଫିସର୍‌ଙ୍କ ବିରୋଧକୁ ନାକଚ୍ କରି ରାଜପ୍ରାସାଦଠାରୁ ଏକ ମାଇଲ୍ ଦୂରରେ ନୂଆ କ୍ୟାଣ୍ଟନ୍‌ମେଣ୍ଟ୍ ନିର୍ମାଣ କରିବା ପାଇଁ ସମ୍ମତ ହେଲେ । ସେହି ନୂତନ କ୍ୟାଣ୍ଟନ୍‌ମେଣ୍ଟ୍‌ରେ ଇଂରେଜ ସୈନ୍ୟମାନେ ଥଇଥାନ ହେଲେ । କେହି କେହି ଅଫିସର୍ ଶ୍ରେଣୀର କର୍ମଚାରୀ ନିଜର ପରିବାର ସହ ସେଠାରେ ରହିଲେ ଏବଂ ମ୍ୟାକ୍‌ନର୍ଟନଙ୍କ ସହକାରୀ ବର୍ଣ୍ଣେସ ଓ ଅନ୍ୟ କେତେକ ବରିଷ୍ଠ ଅଫିସର୍ ଖୋଦ୍ କାବୁଲ୍ ସହରରେ ବସବାସ ଆରମ୍ଭ କଲେ ।

ସେ କାଳରେ ଦେହ ବ୍ୟବସାୟ ପାଇଁ କାବୁଲ୍‌ର ପ୍ରସିଦ୍ଧି ଥିଲା । ଇଂରେଜ ସୈନ୍ୟମାନେ ମଧ୍ୟ ଏହାର ପୂର୍ଣ୍ଣ ସୁଯୋଗ ନେଲେ । ଏପରିକି ଚକ୍ରାନ୍ତ କରି ପ୍ରତିପତ୍ତିଶାଳୀ ଆଫଗାନମାନଙ୍କର ଝିଅ ବୋହୂମାନଙ୍କ ସହ ଦୈହିକ ସମ୍ପର୍କ ରଖିବାକୁ ଆରମ୍ଭ କଲେ । ଏହି ଜଘନ୍ୟ କାରବାର ବେଶ୍ ଖୋଲାଖୋଲି ଭାବରେ ଚାଲିଥିଲା ଏବଂ କ୍ରମେ ଆଫଗାନମାନଙ୍କ ଦୃଷ୍ଟିରେ ଏହା ଅସହ୍ୟ ହୋଇ ଉଠିଲା । ସାଧାରଣ ଲୋକେ ଏପରିକି ଶାହାସୁଜା ମଧ୍ୟ ଅନୁଭବ କଲେ ଯେ ଇଂରେଜମାନଙ୍କର ଏ ଦେଶ ଛାଡ଼ିବାର ମତଲବ ନାହିଁ । ବରଂ ସେମାନେ ଆଫଗାନିସ୍ଥାନକୁ ସ୍ଥାୟୀ ଭାବରେ ଦଖଲ କରିବାର ଉଦ୍ୟମରେ ଅଛନ୍ତି । ଧୀରେ ଧୀରେ ବିଦେଶୀମାନଙ୍କ ବିରୁଦ୍ଧରେ ବିଦ୍ରୋହର ସୂତ୍ରପାତ ହେଲା ଏବଂ ତତ୍‌ସହିତ ବଢ଼ିଚାଲିଲା ଇଂରେଜ ସୈନ୍ୟବାହିନୀକୁ ଆଫଗାନିସ୍ଥାନରେ ଅବସ୍ଥାପିତ କରିବାର ଖର୍ଚ୍ଚ, ଯାହାର ପରିମାଣ ବାର୍ଷିକ ଏକ କୋଟି ପଚାଶ ଲକ୍ଷ ମୁଦ୍ରାର ସୀମା ଟପି ସାରିଥିଲା ।

ଲଣ୍ଡନ ବୋର୍ଡ଼ ଅଫ୍ କଣ୍ଟ୍ରୋଲ୍‌ର ସଭାପତି ହବ୍‌ହାଉସ୍ ଅକ୍‌ଲାଣ୍ଡଙ୍କୁ ପତ୍ର ଲେଖିଲେ ଯେ ଆଫଗାନିସ୍ଥାନର ବର୍ତ୍ତମାନ ପରିସ୍ଥିତିରେ ହୁଏତ ଶାହାସୁଜାଙ୍କ ସ୍ଥାନରେ ଇଂରେଜମାନେ ଶାସନଭାର ପୂରାପୂରି ହାତକୁ ନିଅନ୍ତୁ ଓ ସେଥିପାଇଁ ଆବଶ୍ୟକ ସମସ୍ତ ଖର୍ଚ୍ଚର ବ୍ୟବସ୍ଥା କରନ୍ତୁ, ନଚେତ୍ ତୁରନ୍ତ ସେ ଦେଶ ଛାଡ଼ି ଭାରତକୁ ଫେରିଆସନ୍ତୁ । କିନ୍ତୁ ଅକ୍‌ଲାଣ୍ଡ କଲିକତା କାଉନ୍‌ସିଲ୍ ବୈଠକରେ ତାଙ୍କର ଆଫଗାନ୍ ନୀତିକୁ ଗୃହୀତ କରାଇନେଲେ । ତାଙ୍କର ଆଫଗାନ୍ ନୀତି ଯେ କାର୍ଯ୍ୟତଃ ବିଫଳ ହୋଇଛି, ସେ କଥା ସ୍ୱୀକାର କରିବାକୁ ସେ ପ୍ରସ୍ତୁତ ନଥିଲେ ।

ଏ ମଧ୍ୟରେ ଆଫଗାନିସ୍ଥାନର କାବୁଲ୍ ନିକଟସ୍ଥ ବିଭିନ୍ନ ଗୋଷ୍ଠୀର ସର୍ଦ୍ଦାରମାନଙ୍କ ପକ୍ଷରୁ ଇଂରେଜମାନଙ୍କ ଉପରେ ସାମୟିକ ଆକ୍ରମଣ ଚାଲୁଥାଏ । ୧୮୪୧ ନଭେମ୍ବର ପହିଲାରେ ବିଦ୍ରୋହୀମାନେ କାବୁଲ୍‌ରେ ବସବାସ କରୁଥିବା ବ୍ରିଟିଶ୍ ଅଫିସର୍‌ମାନଙ୍କୁ ଆକ୍ରମଣ କରିବା ପାଇଁ ଯୋଜନା କଲେ । ବର୍ଣ୍ଣସଙ୍କ ଘର ଉପରେ ପ୍ରଥମ ଆକ୍ରମଣ ହେବ ବୋଲି ସେ ତାଙ୍କର ଆଫଗାନ୍ ଭୃତ୍ୟମାନଙ୍କଠାରୁ ଖବରପାଇ ତୁରନ୍ତ ସାହାଯ୍ୟ ପାଇଁ କ୍ୟାଣ୍ଟନମେଣ୍ଟର କମାଣ୍ଡର ଓ ମ୍ୟାକ୍‌ନର୍ଟନଙ୍କୁ ସମ୍ବାଦ ପଠାଇଲେ । କିନ୍ତୁ ଏ ସମ୍ବାଦକୁ ଯଥାଯୁକ୍ତ ଗୁରୁତ୍ୱ ଦିଆଯାଇ ନଥିଲା । ମଧ୍ୟାହ୍ନ ବେଳକୁ ବ୍ରିଟିଶ୍ ସୈନ୍ୟମାନେ କାବୁଲ୍‌ରେ ପହଞ୍ଚିଲା ବେଳକୁ ବର୍ଣ୍ଣ, ତାଙ୍କ ଭାଇ ଓ ପରିବାର ବର୍ଗଙ୍କୁ ସକାଳୁ ହତ୍ୟା କରାଯାଇଥିଲା । ତାଙ୍କ କୋଠି ସାମନା ଦୁର୍ଗର ଗୋଟିଏ ସ୍ୱତନ୍ତ୍ର ଘରେ ଥିବା ଖଜଣାଖାନା ବା ଟ୍ରେଜେରିକୁ ମଧ୍ୟ ଲୁଟ୍ କରାଯାଇଥିଲା । ସାରା ସହରର ଲୋକମାନଙ୍କୁ ଅସ୍ତ୍ର ସଜ୍ଜିତ ଓ ଉତ୍ତ୍ୟକ୍ତ ଅବସ୍ଥାରେ ଦେଖି ବର୍ଣ୍ଣଙ୍କୁ ସାହାଯ୍ୟ କରିବାକୁ ଯାଇଥିବା ଶାହାସୁଜାଙ୍କ କେତେକ ସୈନ୍ୟ ବିଶୃଙ୍ଖଳିତ ଅବସ୍ଥାରେ ପଳାୟନ କରିଥିଲେ । ଦିନ ବାରଟା ବେଳକୁ ବ୍ରିଟିଶ୍ ବାହିନୀର ଗୋଟିଏ ଦଳ କାବୁଲ୍‌ରେ ପହଞ୍ଚିଲା ବେଳକୁ ବ୍ୟାପକ ହତ୍ୟା ଓ ଲୁଟ୍‌ତରାଜ୍ ଦେଖି ବାରାକ୍ସକୁ ପଛଘୁଞ୍ଚା ଦେଲେ ।

ପରାମର୍ଶଦାତା ମ୍ୟାକ୍‌ନର୍ଟନ୍ ଏବେ ହତୋତ୍ସାହ ହୋଇପଡ଼ିଲେ ଏବଂ କାନ୍ଦାହାରରେ ଅବସ୍ଥାପିତ ସୈନ୍ୟମାନଙ୍କ ସାହାଯ୍ୟ ଲୋଡ଼ିଲେ । କିନ୍ତୁ କାନ୍ଦାହାରରୁ ସମ୍ବାଦ ମିଳିଲା ଯେ ସେଠାରୁ ଘାଟି ଅତିକ୍ରମ କରି କାବୁଲ୍‌କୁ ସୈନ୍ୟ ପଠାଇବା ସମ୍ଭବ ନୁହେଁ । ସୈନ୍ୟବାହିନୀର ଅଫିସର୍‌ମାନେ ତାଙ୍କୁ ପରାମର୍ଶ ଦେଲେ, ହୁଏତ ବାରାକ ଛାଡ଼ି ସୈନ୍ୟମାନେ ରାଜପ୍ରାସାଦ ନିକଟସ୍ଥ ବାଲା ହିସାର ଦୁର୍ଗକୁ ଫେରି ଯାଆନ୍ତୁ ଏବଂ ସେଠାରୁ ଆଫଗାନ୍ ସର୍ଦ୍ଦାରମାନଙ୍କ ସହ ସନ୍ଧି ପାଇଁ ଆଲୋଚନା କରନ୍ତୁ, ନଚେତ୍ ଆଫଗାନିସ୍ଥାନରୁ ସମ୍ପୂର୍ଣ୍ଣ ବିଦାୟ ନେବାର ବ୍ୟବସ୍ଥା କରନ୍ତୁ । ମ୍ୟାକ୍‌ନର୍ଟନ ବିଭିନ୍ନ ଗୋଷ୍ଠୀର ସର୍ଦ୍ଦାରମାନଙ୍କୁ ଡକାଇ ସେମାନଙ୍କ ସହ ମିଳାମିଶାର ସର୍ତ୍ତ ଆଲୋଚନା କଲେ । ସେମାନେ ଦାବି କଲେ ସେ ଇଂରେଜ ଓ ତାଙ୍କର ସେନାବାହିନୀ ଅସ୍ତ୍ରଶସ୍ତ୍ର, ତୋପ କମାଣ ଛାଡ଼ି ତୁରନ୍ତ ଏ ଦେଶ ଛାଡ଼ି ଚାଲିଯିବେ ଓ ଉଚିତ୍ ମୂଲ୍ୟ ଦେଲେ ଆଫଗାନ୍‌ମାନେ ସେମାନଙ୍କର ଖାଦ୍ୟପେୟ ଓ ଯାତାୟାତର ବ୍ୟବସ୍ଥା କରିବେ । ପ୍ରତିବଦଳରେ ଇଂରେଜମାନେ ଦୋସ୍ତ ମହମ୍ମଦଙ୍କୁ ଫେରାଇଦେବେ ।

ମ୍ୟାକ୍‌ନର୍ଟନ ଏ ସର୍ତ୍ତରେ ରାଜି ହେଲେ, କେବଳ ଏତିକି ନୂତନ ସର୍ତ୍ତ ଯୋଗକଲେ ଯେ ଇଂରେଜମାନଙ୍କ ସହିତ ଆଫଗାନମାନେ ବନ୍ଧୁତା ରଖିବେ ଓ ଅନ୍ୟ କୌଣସି ବିଦେଶୀ ଶକ୍ତି ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ହେବେ ନାହିଁ । ଏତେ ଆପଦ ସତ୍ତ୍ୱେ, ମ୍ୟାକନର୍ଟନଙ୍କ ମୁଣ୍ଡ ଜାର୍ ଆକ୍ରମଣ ଆଶଙ୍କାଠାରୁ ମୁକ୍ତ ନଥିଲା ।

ଏ ମଧ୍ୟରେ ଦୋସ୍ତ ମହମ୍ମଦଙ୍କ ପ୍ରିୟପୁତ୍ର ମହମ୍ମଦ ଆକବର୍ ଖାନ୍, ଯେ କି ପ୍ରଥମ ଆକ୍ରମଣ ସମୟରେ ହିନ୍ଦୁକୁଶ ପର୍ବତମାଳାରେ ଆଶ୍ରୟ ନେଇଥିଲେ, ସେ କାବୁଲ୍ ବିଦ୍ରୋହର ସମ୍ବାଦ ପାଇ ସେଠାରେ ପହଞ୍ଚିଲେ ଓ ସର୍ଦ୍ଦାରମାନଙ୍କ ସହ ଘନିଷ୍ଠ ସମ୍ପର୍କ ସ୍ଥାପନ କଲେ । ସେ ଶୁଣିବାକୁ ପାଇଲେ, ଚୁକ୍ତିରେ ଦସ୍ତଖତ କରିବା ସତ୍ତ୍ୱେ ଇଂରେଜମାନେ ସର୍ଦ୍ଦାରମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରି ଚୁକ୍ତିର ସର୍ତ୍ତ ପରିବର୍ତ୍ତନ କରିବାକୁ ଚାହାନ୍ତି । ଇଂରେଜମାନଙ୍କ କଥାର ମୂଲ୍ୟ ପରୀକ୍ଷା କରିବା ନିମିତ୍ତ ସେ ଗୁପ୍ତରେ ମ୍ୟାକ୍‌ନର୍ଟନଙ୍କୁ କେତେଗୁଡ଼ିଏ ସୁବିଧାଜନକ ଲୋଭନୀୟ ସର୍ତ୍ତ ପଠାଇଲେ ଏବଂ ସେ ଆଲୋଚନା ପାଇଁ ସମ୍ମତ ହେଲେ । ନିକଟସ୍ଥ ପାହାଡ଼ ଉପରେ ତହିଁ ପରଦିନ ନିର୍ଦ୍ଦିଷ୍ଟ ସମୟରେ ଉପସ୍ଥିତ ହେବାକୁ ଅନୁରୋଧ କଲେ । ଆକବର ଖାଁଙ୍କ ପ୍ରସ୍ତାବ ଶୁଣି କେତେକ ସାମରିକ ଅଫିସର ପରାମର୍ଶ ଦେଲେ ଯେ ଥରେ ଚୁକ୍ତିପତ୍ରରେ ଦସ୍ତଖତ କରି ପୁଣି ତାକୁ ନିଜ ତରଫରୁ ଭାଙ୍ଗିବା ଉଚିତ ହେବ ନାହିଁ । ପୁନଶ୍ଚ ଇଂରେଜଙ୍କ ବିରୁଦ୍ଧରେ ଏହା ଏକ ଷଡ଼ଯନ୍ତ୍ର ହୋଇପାରେ । ମ୍ୟାକ୍‌ନର୍ଟନ ଏ ପରାମର୍ଶ ଗ୍ରହଣ ନ କରି ପରଦିନ ଯଥାସମୟରେ ଚାରିଜଣ ସହକାରୀଙ୍କ ସହିତ ନିର୍ଦ୍ଧାରିତ ସ୍ଥାନରେ ପହଞ୍ଚିଲେ । ହଠାତ୍ ଦେଖାଗଲା ଶହଶହ ଆଫଗାନ୍ ସର୍ଦ୍ଦାର ଲୁଚିଥିବା ସ୍ଥାନରୁ ବାହାରି ଇଂରେଜଙ୍କ ଉପରେ ଆକ୍ରମଣ କଲେ । ପ୍ରଥମେ ପରାମର୍ଶଦାତା ଚାରିଜଣଙ୍କୁ ହତ୍ୟା କରାଗଲା ଓ ଶେଷରେ ମ୍ୟାକନର୍ଟନଙ୍କ ହତ୍ୟା । ଏ ସମ୍ବାଦ ଶୁଣି କ୍ୟାଣ୍ଟନମେଣ୍ଟରେ ଥିବା ସୈନ୍ୟମାନେ ପଳାୟନ କରିବାକୁ ଆରମ୍ଭ କଲେ । ରାସ୍ତାରେ ଭୋକ ଉପାସରେ ଅନେକେ ମୃତ୍ୟୁବରଣ କଲେ । ବହୁ ସୈନ୍ୟ ଘାଟି ପାର ହେବା ସମୟରେ ସ୍ଥାନୀୟ ସର୍ଦ୍ଦାରମାନଙ୍କ ଦ୍ୱାରା ନିହତ ହେଲେ । ଏମାନେ ସମସ୍ତେ ଜଲାଲାବାଦ୍ ପଳାଇଯିବାକୁ ଆଗରୁ କମାଣ୍ଡର ସେଲ୍‌ଙ୍କୁ ପଠାଯାଇଥିଲା । ଜାନୁଆରୀ ତେର ତାରିଖ ଦିନ ସେଲ୍ ଦେଖିଲେ, ଜଣେ ଲୋକ ଘୋଡ଼ାରେ ଚଢ଼ି ଜଲାଲାବାଦ୍ ପୋର୍ଟ ଗେଟ୍‌ରେ ପହଞ୍ଚିଲା । ସେ ଥିଲେ ଡକ୍ଟର ଉଇଲିଅମ୍ ବ୍ରାଇଡ୍‌ଙ୍କ କମ୍ପାନୀ ସର୍ଭିସ୍‌ରେ ଥିବା ଜଣେ ଆସିଷ୍ଟାଣ୍ଟ

ସର୍ଜନ । କ୍ଷୁଧା ଓ ଶ୍ରମରେ କ୍ଲାନ୍ତ ଘୋଡ଼ାଟି ସେହିଦିନ ସନ୍ଧ୍ୟାରେ ପ୍ରାଣତ୍ୟାଗ କଲା । କାବୁଲ୍‌ରୁ ୪୫୦୦ ସୈନ୍ୟ, ୧୨୦୦୦ ସିପାହୀ ଓ ସାହାଯ୍ୟକାରୀ ଜାନୁଆରୀ ଛ ତାରିଖରେ କାବୁଲ୍ କ୍ୟାଣ୍ଟନ୍‌ମେଣ୍ଟ୍ ଛାଡ଼ି ଜଲାଲାବାଦ୍ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ଆଫଗାନ୍‌ମାନେ ପୂର୍ବ ପ୍ରତିଶ୍ରୁତି ଭଙ୍ଗ କରି ନବେ ମାଇଲ ରାସ୍ତା ସେମାନଙ୍କୁ ଜୀବନ୍ତ ଅବସ୍ଥାରେ ଅତିକ୍ରମ କରିବାକୁ ସୁଯୋଗ ଦେଲେ ନାହିଁ । ଜାନୁଆରୀ ତେର ତାରିଖରେ ଜଣେ ମାତ୍ର ବ୍ରିଟିଶ୍ ଡାକ୍ତର ବ୍ରାଇଡନ୍ ରୁଗ୍‌ଣ ଓ କ୍ଲାନ୍ତ ଅବସ୍ଥାରେ ଜଲାଲାବାଦ୍‌ରେ ପହଞ୍ଚିଲେ ।

ଭିକ୍ଟୋରିଆ ଯୁଗର ପ୍ରଖ୍ୟାତ ଐତିହାସିକ କାୟେ "ଆଫଗାନ୍ ସମରର ଇତିହାସ" ପୁସ୍ତକରେ ଲେଖିଛନ୍ତି କାବୁଲ୍‌ରେ ଇଂରେଜମାନଙ୍କର ବିପର୍ଯ୍ୟୟ ଆଫଗାନିସ୍ଥାନ ଉପରେ ଅନ୍ୟାୟ ଆକ୍ରମଣର ଐଶ୍ୱରିକ ଶାସ୍ତି । ଈଶ୍ୱରଙ୍କର ନିର୍ଦ୍ଦେଶରେ ଯେ ଇଂରେଜମାନେ ଯୁଦ୍ଧ କରୁଥିଲେ ବା ଶାନ୍ତି ପାଇଁ ମିଳାମିଶା କରୁଥିଲେ, ଏହାର କୌଣସି ଦାର୍ଶନିକ ବା ଐତିହାସିକ ଭିତ୍ତି ନାହିଁ । କିନ୍ତୁ ଆଫଗାନିସ୍ଥାନ ଉପରେ ଆକ୍ରମଣ ଓ ଦୋସ୍ତ ମହମ୍ମଦଙ୍କୁ ବିତାଡ଼ିତ କରି ଶାହାସୁଜାଙ୍କୁ ଗାଦିନାସୀନ କରିବା ପାଇଁ ଯାହା ସବୁ ହୋଇଗଲା, ତା କେବଳ ଅକ୍‌ଲାଣ୍ଡଙ୍କ ପରି ଜଣେ ନିର୍ବୋଧ ଶାସକଙ୍କର ଖିଆଲ ଓ ତାଙ୍କର ପରାମର୍ଶଦାତାମାନଙ୍କର ରୁଷ ଆକ୍ରମଣ ଆଶଙ୍କା ଉପରେ ପର୍ଯ୍ୟବସିତ ଥିଲା ।

ଧୀରେଧୀରେ କାବୁଲ ବିପର୍ଯ୍ୟୟର ସମ୍ବାଦ ଭାରତରେ ବିଶେଷତଃ କଲିକତା, ବମ୍ବେ, ମାଡ୍ରାସ ଓ ଉତ୍ତର ଭାରତରେ ଖେଳିଗଲା । କାବୁଲ ବିଦ୍ରୋହ ଏବଂ ବର୍ଣ୍ଣସ ଓ ମ୍ୟାକନର୍ଟନଙ୍କ ହତ୍ୟା ସମ୍ବାଦ ପାଇ ଅକ୍‌ଲାଣ୍ଡ ଚାରି ରେଜିମେଣ୍ଟ ସୈନ୍ୟ ଆଫଗାନିସ୍ଥାନକୁ ପଠାଇବା ପାଇଁ ବ୍ୟବସ୍ଥା କଲେ । ନିଷ୍ପତ୍ତି ହେଲା ଯେ, ସେମାନେ ପଞ୍ଜାବ ଦେଇ ପେଶାୱାରରେ ପହଞ୍ଚିବେ । ପଞ୍ଜାବର ମହାରାଜା ଶେର ସିଂ ଇଂରେଜମାନଙ୍କୁ ସାହାଯ୍ୟ କରିବା ପାଇଁ ଓ ନଦୀପାର ହେବା ନିମନ୍ତେ ନୌକା ଯୋଗାଇଦେବା ପାଇଁ ପ୍ରତିଶ୍ରୁତି ଦେଲେ । ଅକ୍‌ଲାଣ୍ଡଙ୍କର ନିଷ୍ପତ୍ତି ଥିଲା ଆଫଗାନିସ୍ଥାନରୁ ସୈନ୍ୟ ଫେରାଇ ଆଣିବା । କିନ୍ତୁ ଭାରତ ଓ ଲଣ୍ଡନରେ ମଧ କାବୁଲ ବିପର୍ଯ୍ୟୟର ପ୍ରତିଶୋଧ ନେବା ପାଇଁ ଦୁର୍ଦ୍ଦାନ୍ତ ଜନମତ ସୃଷ୍ଟି ହୋଇଥିଲା । ତେଣୁ ଅକ୍‌ଲାଣ୍ଡ ବାସ୍ତବିକ କିଛି କରିବା ପାଇଁ ଚାହୁଁ ନଥିଲେ ମଧ ବାହାରକୁ ସୈନ୍ୟ ପ୍ରେରଣର ଧମକ ଦେଉଥିଲେ । ଏ ଧମକ ପଛରେ କୌଣସି ଆନ୍ତରିକତା ନଥିଲା । ସେ ଭୁଲିଯାଇଥିଲେ

ଯେ, ବ୍ରିଟିଶ୍ ସାମ୍ରାଜ୍ୟ ଅସ୍ତ୍ରବଳରେ ନୁହେଁ, କିନ୍ତୁ କୂଟନୈତିକ ଚାଲବାଜି ଓ ବ୍ରିଟିଶ ଅପରାଜେୟତାର ଖ୍ୟାତି ଉପରେ ତିଷ୍ଠି ରହିଥିଲା । ଜଣେ ପୁରାତନ ଶାସନକର୍ତ୍ତା ମେଟ୍‌କାଫ୍ ଲେଖିଥିଲେ –"ଆମର ଶକ୍ତି ପ୍ରକୃତ ଅସ୍ତ୍ରବଳ ବା ସୈନ୍ୟବଳ ଉପରେ ନିର୍ଭର କରେନାହିଁ । ଆମର ସବୁଠାରୁ ବଡ଼ ବିପଦ ହେଲା, ରୁଷିଆର ଜାରଙ୍କ ସୈନ୍ୟବାହିନୀ ନୁହଁନ୍ତି, କିନ୍ତୁ ଆଫଗାନିସ୍ଥାନ ଘଟଣା ପରେ ଆମର ଦୁର୍ଦ୍ଧର୍ଷତା ଓ ଅପରାଜେୟତା ଉପରେ ସ୍ଥାନୀୟ ଅଧିବାସୀଙ୍କର ଆସ୍ଥାର ଅଭାବ ।"

ଏହି ସମୟରେ ବ୍ରିଟେନ୍‌ରେ ଅନୁଷ୍ଠିତ ନିର୍ବାଚନରେ ହୁଇଗ୍ ଦଳ ପରାସ୍ତ ହୋଇ ରବର୍ଟ ପିଲଙ୍କ ନେତୃତ୍ୱରେ ଟୋରୀ ଦଳ କ୍ଷମତା ଦଖଲ କଲେ । ଅକ୍‌ଲାଣ୍ଡ ଅନୁଭବ କଲେ ଯେ, ଲଣ୍ଡନରେ ତାଙ୍କର ସମର୍ଥନ ହ୍ରାସ ପାଇଛି । ପରେ ପରେ ଡିସେମ୍ବର ମାସରେ କଲିକତାରେ ଖବର ପହଞ୍ଚିଲା ଯେ, ଲର୍ଡ୍ ଏଲେନ୍‌ବରୋ ନୂତନ ଗଭର୍ଣ୍ଣର ଜେନେରାଲ ଭାବେ ଦାୟିତ୍ୱ ଗ୍ରହଣ କରିବେ । ଅବଶ୍ୟ ଟୋରୀ ଦଳରେ ସେ ଜଣେ ପ୍ରଖ୍ୟାତ ରାଜନେତା ଥିଲେ । ତାଙ୍କ ପିତା ଏର୍ଡ୍‌ୱାର୍ଡ୍ ୱାରେନ୍ ହେଷ୍ଟିଂସ୍‌ଙ୍କର ବିଚାର ସମୟରେ ତାଙ୍କର ପ୍ରଧାନ ଡିଫେନ୍‌ସ ଓକିଲ ଥିଲେ ଏବଂ ପରେ ସେ ଚିଫ୍ ଜଷ୍ଟିସ୍ ମଧ୍ୟ ହୋଇଥିଲେ । ଏଲେନ୍‌ବରୋ ଜଣେ ଦକ୍ଷ ରାଜନେତା ଥିଲେ ମଧ୍ୟ, ସେ ଥିଲେ ଅତ୍ୟନ୍ତ ଅହଂକାରୀ ଏବଂ ଖାମଖିଆଲି ପ୍ରକୃତିର ଲୋକ । କିନ୍ତୁ ପ୍ରାଇମ୍ ମିନିଷ୍ଟର ରବର୍ଟ ପିଲ ଭାବୁଥିଲେ ଯେ, ଦାୟିତ୍ୱ ପଡ଼ିଲେ ଏସବୁ ଦୁର୍ଗୁଣ ଧୀରେ ଧୀରେ ଲୋପ ପାଇବ । ଯାହାହେଉ, ୧୮୪୨ ମସିହା ପ୍ରାରମ୍ଭରେ ଭାରତ ଆସି ସେ ବ୍ରିଟିଶ୍ ଶକ୍ତିର ପରିଚୟ ଦେବାକୁ ଆରମ୍ଭ କଲେ । ମାର୍ଚ୍ଚ ମାସରେ କମାଣ୍ଡର ନିକୋଲସ୍‌ଙ୍କୁ ଗୋଟିଏ ଚିଠିରେ ସେ ଲେଖିଲେ ଯେ, ଯଦିଓ ଭବିଷ୍ୟତରେ ଆଫଗାନିସ୍ଥାନରୁ ପ୍ରତ୍ୟାବର୍ତ୍ତନ କରିବାକୁ ହେବ, ତଥାପି କାବୁଲ ବିପର୍ଯ୍ୟୟର ପ୍ରତିଶୋଧ ନ ନେଇ ଆମର ସୈନ୍ୟବାହିନୀ ଫେରି ଆସିବା ଭୁଲ୍ ହେବ । ସେ ମହମ୍ମଦ ଆକବରଙ୍କ ହାତରେ ବନ୍ଦିଥିବା ବ୍ରିଟିଶ୍ ସୈନ୍ୟ ଓ କର୍ମଚାରୀମାନଙ୍କୁ ଉଦ୍ଧାର କରିବା ପାଇଁ ବ୍ୟଗ୍ରତା ପ୍ରକାଶ କରିଥିଲେ । ସେ ନିଜେ ଏପ୍ରିଲ୍ ମାସରେ କଲିକତା ଛାଡ଼ି ଯୁଦ୍ଧକ୍ଷେତ୍ରର ନିକଟତମ ସ୍ଥାନରେ ରହିବା ପାଇଁ ଆଲ୍ଲାହାବାଦ ଯାତ୍ରା କଲେ ।

ଏହି ସମୟରେ ସେନାପତି ନର୍ଟଙ୍କ ଅଧୀନରେ କାନ୍ଦାହାରରେ ନଅହଜାର ବ୍ରିଟିଶ୍ ସୈନ୍ୟ ମହଜୁଦ ଥିଲେ ଏବଂ ସେମାନଙ୍କର ନିକଟରେ ଯଥେଷ୍ଟ ଖାଦ୍ୟଦ୍ରବ୍ୟ

ମହକୁଦ୍ ଥିଲା । ଶୀତଦିନର ଥଣ୍ଡାରେ ନର୍ଟ ଆଫଗାନିସ୍ତାନର ଅଭ୍ୟନ୍ତରକୁ ପ୍ରବେଶ କରିବା ପାଇଁ କୁଣ୍ଠିତ ଥିଲେ କିନ୍ତୁ ସୈନ୍ୟବାହିନୀକୁ ନିର୍ଦ୍ଦେଶ ଥିଲା ଯେ, ଆଫଗାନମାନଙ୍କ ତରଫରୁ ଆକ୍ରମଣ ଆରମ୍ଭ ହେଲେ ତାର ଯଥାବିଧି ପ୍ରତିଆକ୍ରମଣ କରିବାକୁ ହେବ । ମାର୍ଚ୍ଚ ଆରମ୍ଭରେ ଆଫଗାନମାନେ ଆକ୍ରମଣ ଆରମ୍ଭ କଲେ । ଯୁଦ୍ଧରେ ସେମାନେ ପରାସ୍ତ ହୋଇ ପଳାୟନର ଛଳନା କରି ପୁନର୍ବାର ପଛପଟୁ କାନ୍ଦାହାରରେ ପ୍ରବେଶ କରିଥିଲେ । ଯାହାହେଉ ସେମାନଙ୍କୁ ମଧ୍ୟ ନର୍ଟଙ୍କ ସେନାବାହିନୀ ବିତାଡ଼ିତ କରିଥିଲେ । ଜଲାଲାବାଦରେ ଯଦିଓ ଖୁବ୍ କମ୍‌ସଂଖ୍ୟକ ସୈନ୍ୟ ଥିଲେ, କାବୁଲ ବିପର୍ଯ୍ୟୟରୁ ଜଲାଲାବାଦରୁ ପ୍ରତ୍ୟାବର୍ତ୍ତନ କରିଥିବା ଡଃ ବ୍ରାଇଡ଼ନ୍ ବିବରଣୀ ଦେଲେ ଯେ, କାବୁଲ ଯୁଦ୍ଧରେ ଜଲାଲାବାଦର କୌଣସି ଗୁରୁତ୍ୱ ନାହିଁ । ସ୍ଥାନୀୟ ୱାର କାଉନ୍‌ସିଲ ସ୍ଥିର କଲେ, ଜଲାଲାବାଦ ପରିତ୍ୟାଗ କରିବା ଉଚିତ । କେବଳ ସ୍ଥାନୀୟ ସେନାପତି ବ୍ରଡ୍‌ଫୁଟ୍ ଏବଂ ତାଙ୍କର ଜଣେ ସହଯୋଗୀ ହାଭେଲକ୍ ଏହାର ବିରୋଧ କରୁଥିଲେ । ଏହି ସମୟରେ ସମ୍ବାଦ ପହଞ୍ଚିଲା ଯେ, ପ୍ରଧାନ ସେନାପତି ପୋଲକ ପେଶାୱାରରେ ଆସି ପହଞ୍ଚିଛନ୍ତି । ଜଲାଲାବାଦ ପରିତ୍ୟାଗ କରିବାର ଯୋଜନା ପ୍ରତ୍ୟାଖ୍ୟାନ କରାଗଲା । କିଛିଦିନ ଅପେକ୍ଷା କରିବା ପରେ ପୋଲକଙ୍କୁ ସାହାଯ୍ୟ କରିବା ପାଇଁ ଅଧିକ ଅଶ୍ୱାରୋହୀ ସୈନ୍ୟ ପେଶାୱାରରେ ପହଞ୍ଚିଲେ । ପୋଲକଙ୍କର ପରାମର୍ଶ ଓ ସ୍ଥାନୀୟ ପଲିଟିକାଲ ଏଜେଣ୍ଟଙ୍କ ପ୍ରଭାବରେ ଶିଖ୍ ସୈନ୍ୟବାହିନୀ ମଧ୍ୟ ଇଂରେଜମାନଙ୍କ ସହ ଯୋଗ ଦେଲେ । ପୋଲକଙ୍କର ଯୋଜନା ଓ ପ୍ରସ୍ତୁତି ପରେ ଇଂରେଜ ସୈନ୍ୟବାହିନୀ ସବୁ ପ୍ରତିରୋଧ ଭଙ୍ଗ କରି ଖାଇବରପାସ ଅତିକ୍ରମ କରିଥିଲେ ଓ ଏହି ଗିରିପଥର ଦ୍ୱାରଦେଶରେ ଥିବା ଅଲ୍ଲୀ ମସଜିଦ୍ ଦୁର୍ଗ ଦଖଲ କରିବାକୁ ସମର୍ଥ ହୋଇଥିଲେ । ଏହି ଅତର୍କିତ ଆକ୍ରମଣର ସାମ୍ନା କରି ନପାରି ଆଫଗାନ୍‌ମାନେ ସେଠାରୁ ପଳାୟନ କଲେ । ଏହିଠାରୁ ଇଂରେଜମାନଙ୍କର ଜଲାଲାବାଦ ଯାତ୍ରା ଆରମ୍ଭ ହେଲା ଓ ସେମାନେ ଅନାୟାସରେ ସେଠାରେ ପହଞ୍ଚି ପାରିଥିଲେ । ଏଣେ ଜଲାଲାବାଦରେ ମହମ୍ମଦ ଆକବରଙ୍କର ଆକ୍ରମଣକୁ ସେଠାରେ ଅବସ୍ଥାପିତ ଇଂରେଜବାହିନୀ ପ୍ରତିହତ କରିପାରିଥିଲେ ଓ କାବୁଲ୍‌ରୁ ସଂଗ୍ରହ କରିଥିବା ବହୁ ବ୍ରିଟିଶ କମାଣ, ବନ୍ଧୁକ ଓ ଖାଦ୍ୟସାମଗ୍ରୀ ଆଦି ପରିତ୍ୟାଗ କରି ମହମ୍ମଦ ଆକବର ଆତ୍ମରକ୍ଷା ପାଇଁ କାବୁଲ୍ ପଳାୟନ କଲେ । ଏ ମଧ୍ୟରେ ଆକବରଙ୍କ ଚରମାନେ ଶାହାସୁଜାଙ୍କୁ ମଧ୍ୟ ହତ୍ୟା କରିଥିଲେ ।

ଏଇଠାରେ ଆରମ୍ଭ ହେଲା ଏକ ସଙ୍କଟମୟ ମୁହୂର୍ତ୍ତ । ସେନାପତିମାନଙ୍କର ପରାମର୍ଶ ବିରୁଦ୍ଧରେ ଗଭର୍ଣ୍ଣର ଜେନେରାଲ ଏଲେନ୍‌ବରୋ ନିର୍ଦ୍ଦେଶ ଦେଲେ ଯେ, ଆଉ ଅଧିକ ଅଗ୍ରସର ନହୋଇ ଏଣିକି ବ୍ରିଟିଶ ସୈନ୍ୟ ଓ ସିପାହୀ ଭାରତକୁ ଫେରିଆସିବେ । କମାଣ୍ଡର-ଇନ୍-ଚିଫ୍ ପୋଲକ ଓ ସେନାପତି ନର୍ଟ ଏ ନିଷ୍ପତ୍ତିର ପ୍ରତିବାଦ କଲେ ଏବଂ ସ୍ପଷ୍ଟଭାବରେ ଘୋଷଣା କଲେ ଯେ, କାବୁଲ୍‌ରେ ମନୋନୀତ ବ୍ୟକ୍ତିଙ୍କୁ ଶାସନ ଗାଦିରେ ନବସାଇ ଓ ବନ୍ଦୀଥିବା ସିପାହୀ ଓ ଅନ୍ୟ ଇଂରେଜ କର୍ମଚାରୀମାନଙ୍କୁ ମୁକ୍ତ ନକରିବା ପର୍ଯ୍ୟନ୍ତ ଆଫଗାନିସ୍ଥାନରୁ ପ୍ରତ୍ୟର୍ପଣ କରିବା ଏକ ଭୁଲ୍ ନିଷ୍ପତ୍ତି । ଏହି ସମୟରେ ଲଣ୍ଡନରୁ ଏଲେନ୍‌ବରୋଙ୍କୁ ନିର୍ଦ୍ଦେଶ ଆସିଲା ଯେ, ସେ ସେନାପତିମାନଙ୍କର ପରାମର୍ଶ ଅନୁଯାୟୀ କାର୍ଯ୍ୟ କରିବା ଉଚିତ । ଏଣୁ ଗଭର୍ଣ୍ଣର ଜେନେରାଲ ପୂର୍ବ ନିର୍ଦ୍ଦେଶ ପ୍ରତ୍ୟାହାର କରି ବ୍ରିଟିଶ୍ ବାହିନୀକୁ କାବୁଲ୍ ଯିବା ପାଇଁ ଆଦେଶ ଦେଲେ । ପୋଲକ ଓ ତାଙ୍କର ସୈନ୍ୟବାହିନୀ ସମସ୍ତ ବାଧାବିଘ୍ନ ପ୍ରତିହତ କରି କାବୁଲ୍‌ରେ ପ୍ରବେଶ କଲେ । ଯୁଦ୍ଧରେ ପରାଜିତ ହୋଇ କୋହିସ୍ତାନ ଆଡ଼କୁ ପଳାୟନ କଲେ ମହମ୍ମଦ ଆକବର । ସେପ୍ଟେମ୍ବର ୧୬ ତାରିଖରେ ବ୍ରିଟିଶ୍ ପତାକା ବାଲା ହିସାର ଦୁର୍ଗ ଉପରେ ଉଡ଼ିବାକୁ ଆରମ୍ଭ କଲା । ଏହିଠାରୁ ଭାରତ ଫେରିଯିବା ପାଇଁ ନର୍ଟ ମନସ୍ଥ କରିଥିଲେ, କିନ୍ତୁ ସେନାପତି ପୋଲକ ଜାଣି ଜାଣି ବିଳମ୍ବ କରାଇଲେ । ମହମ୍ମଦ ଆକବରଙ୍କୁ ଧରିବା ଉଦ୍ଦେଶ୍ୟରେ ଦଳେ ସୈନ୍ୟଙ୍କୁ କୋହିସ୍ତାନ ପଠାଗଲା । ସେଠାରେ ସେମାନେ ଆଫଗାନ୍ ସୈନ୍ୟମାନଙ୍କୁ ପରାସ୍ତ ଓ ବିତାଡ଼ିତ କରିଥିଲେ ମଧ୍ୟ ମହମ୍ମଦ ଆକବରଙ୍କର କୌଣସି ପତ୍ତା ମିଳି ନଥିଲା । ଶେଷରେ ବାଲା ହିସାର ଦୁର୍ଗକୁ ଧ୍ୱଂସ ନକରି କାବୁଲ୍‌ରେ ଯେଉଁ ସୁପ୍ରସିଦ୍ଧ ବଜାରରେ ମ୍ୟାକ ନର୍ଟନଙ୍କର ଖଣ୍ଡବିଖଣ୍ଡିତ ଶରୀରକୁ ଝୁଲାଇ ଦିଆଯାଇଥିଲା, କେବଳ ସେହି ବଜାରକୁ ନଷ୍ଟ କରିବା ପାଇଁ ଆଦେଶ ଦେଲେ । କିନ୍ତୁ ଏ ଆଦେଶ କେବଳ କାଗଜପତ୍ରରେ ଆବଦ୍ଧ ରହିଲା । ଇଂରେଜ ସେନା ଓ ସିପାହୀମାନେ ବିଶୃଙ୍ଖଳିତ ହୋଇ ସମସ୍ତ ବଜାରଟିକୁ ଲୁଟ୍ କଲେ ଓ ଶେଷରେ ଦୋକାନ ଘରଗୁଡ଼ିକରେ ଅଗ୍ନି ସଂଯୋଗ କଲେ । ଏହି ପ୍ରକ୍ରିୟାରେ ଭସ୍ମୀଭୂତ ହେଲା ପ୍ରାୟ ପାଞ୍ଚଶହ ହିନ୍ଦୁ ବ୍ୟବସାୟୀଙ୍କର ସମସ୍ତ ସମ୍ପତ୍ତି । କାବୁଲ୍‌ରୁ ପ୍ରତ୍ୟାବର୍ତ୍ତନ କରି ଇଂରେଜମାନେ ପଞ୍ଜାବର ଫିରୋଜପୁରଠାରେ ସମବେତ ହୋଇଥିଲେ । ଲର୍ଡ଼ ଏଲେନବରୋ ସୈନ୍ୟମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେଠାରେ

ଏକ ବିରାଟ ସମ୍ବର୍ଦ୍ଧନାର ଆୟୋଜନ କରିଥିଲେ । ଯଦିଓ ପଞ୍ଜାବର ରାଜା ଶେର ସିଂଙ୍କୁ ଏ ସମ୍ବର୍ଦ୍ଧନାକୁ ନିମନ୍ତ୍ରଣ କରାଯାଇଥିଲା, ସେ ସେଥିରେ ଯୋଗ ନଦେଇ କେବଳ ତାଙ୍କର ପ୍ରଧାନମନ୍ତ୍ରୀ ଓ ନାବାଳକ ପୁତ୍ରକୁ ପଠାଇଥିଲେ । ଏହିଠାରେ ସ୍ଥିର ହେଲା ଯେ, ମହମ୍ମଦ ଆକବରଙ୍କ ପିତା ଦୋସ୍ତ ମହମ୍ମଦଙ୍କୁ ଲୁଧିଆନାରୁ ମୁକ୍ତ କରି କାବୁଲ ସିଂହାସନରେ ଅଧିଷ୍ଠିତ କରାଯିବ । ତଦନୁଯାୟୀ ଦୋସ୍ତ ମହମ୍ମଦ ବିନା ପ୍ରତିରୋଧରେ କାବୁଲରେ ଗାଦିନାସୀନ ହେଲେ । ଏଲେନ୍‌ବରୋ ଏ ମଧରେ ସିମଳା ଫେରିଯାଇ ଯେଉଁ ପ୍ରାସାଦରୁ ଚାରିବର୍ଷ ପୂର୍ବେ ଅକ୍‌ଲାଣ୍ଡ ସିମଳା ଇସ୍ତାହାର ଘୋଷଣା କରିଥିଲେ, ସେହିଠାରୁ ନୂତନ ଘୋଷଣା ପତ୍ର ପ୍ରଚାରିତ କଲେ । ଘୋଷଣାରେ ଥିଲା ଅକ୍‌ଲାଣ୍ଡଙ୍କର ଅପରିପକ୍ୱ ନିଷ୍ପତ୍ତିର ସମାଲୋଚନା ଓ ତାଙ୍କର ଜିନ୍ଦାବାଦ । କିନ୍ତୁ ଆଫଗାନ ଯୁଦ୍ଧରେ ଜୟ ପରାଜୟରେ ଇଂରେଜମାନଙ୍କର କ'ଣ ଲାଭ ହେଲା ତା'ର କୌଣସି ସୂଚନା ନଥିଲା ।

ଯେଉଁ ଶାହାସୁଜା କାବୁଲ ଯୁଦ୍ଧରେ ଦୋସ୍ତ ମହମ୍ମଦଙ୍କଠାରୁ ପରାସ୍ତ ହୋଇ ଇଂରେଜମାନଙ୍କ ଦୟାରେ ଲୁଧିଆନାରେ ପେନ୍‌ସନଭୋଗୀ ହୋଇ ରହିଥିଲେ, ଅକ୍‌ଲାଣ୍ଡ ସେହି ଶାହାସୁଜାଙ୍କୁ ଅଧିକ ବିଶ୍ୱସ୍ତ ହେବେ ବୋଲି ଆଶା କରି ଦୋସ୍ତ ମହମ୍ମଦଙ୍କୁ ବିତାଡ଼ିତ କରି ଶାହାସୁଜାଙ୍କୁ କାବୁଲ୍ ଗାଦିରେ ଅବସ୍ଥାପିତ କଲେ । କିନ୍ତୁ କାବୁଲ ବିଦ୍ରୋହ ବେଳେ ଆଫଗାନ୍ ସୈନ୍ୟମାନେ ତାଙ୍କୁ ହତ୍ୟା କରିଥିଲେ ଓ ଦୋସ୍ତ ମହମ୍ମଦଙ୍କ ପୁତ୍ର ମହମ୍ମଦ ଆକବର ଆଫଗାନ ବିଦ୍ରୋହୀମାନଙ୍କର ନେତୃତ୍ୱ ନେଇଥିଲେ । ଏବେ କାବୁଲ ଯୁଦ୍ଧରେ ବିଜୟ ପରେ ପୁନଶ୍ଚ ସେହି ଦୋସ୍ତ ମହମ୍ମଦଙ୍କୁ ଲୁଧିଆନାରୁ ନେଇ ସିଂହାସନରେ ଅଧିଷ୍ଠିତ କରାଗଲା ଓ ଇଂରେଜର ପ୍ରତିନିଧି ମ୍ୟାକନର୍ଟନଙ୍କୁ ଦୋସ୍ତ ମହମ୍ମଦଙ୍କର ଯେଉଁ ପୁତ୍ର ମହମ୍ମଦ ଆକବର ସ୍ୱହସ୍ତରେ ହତ୍ୟା କରିଥିଲେ ସେ ଦୋସ୍ତ ମହମ୍ମଦଙ୍କର ପ୍ରଧାନମନ୍ତ୍ରୀ ହେଲେ । ସିମଳା ଘୋଷଣା ପାଠ କରି ଅନେକ କମ୍ପାନୀ କର୍ମଚାରୀ ଓ ଇଂରେଜ ଲୋକ ମତ ଦେଲେ ଯେ, ଅକ୍‌ଲାଣ୍ଡ ଜଣେ ବଦ୍ଧ ପାଗଳ ଏବଂ ଏଲେନ୍‌ବରୋ ଜଣେ ଅହଙ୍କାରୀ ଓ ଖିଆଲବାଜ ।



# ସିନ୍ଧ୍ ଦଖଲ

ସିନ୍ଧ୍‌ର ପଲିଟିକାଲ ଏଜେଣ୍ଟ ଥିଲେ ସାର୍ ଆଉଟରାମ୍ । ସେ ଜଣେ ବିଚକ୍ଷଣ କୂଟନୀତିଜ୍ଞ ଏବଂ ତାଙ୍କର ପ୍ରଭାବରେ ଅକ୍‌ଲାଣ୍ଡଙ୍କ ଦୁର୍ବ୍ୟବହାର ସତ୍ତ୍ୱେ, ସିନ୍ଧ୍‌ର ଅମୀରମାନେ ଇଂରେଜମାନଙ୍କ ସହିତ ବନ୍ଧୁତା ରକ୍ଷା କରିଥିଲେ । କିନ୍ତୁ ଏଲେନ୍‌ବରୋ ଅମୀରମାନଙ୍କ ମଧ୍ୟରୁ ଯେଉଁମାନେ ଆଫଗାନ ଯୁଦ୍ଧ ସମୟରେ ବିଶ୍ୱାସଘାତକତା କରିଛନ୍ତି, ସେମାନଙ୍କୁ ଉପଯୁକ୍ତ ଶାସ୍ତି ଦିଆଯିବ ବୋଲି ଜଣାଇ ଦେବାକୁ ଆଉଟ୍‌ରାମ୍‌ଙ୍କୁ ଏକ ଧମକପୂର୍ଣ୍ଣ ଚିଠି ପଠାଇଥିଲେ । ଏ ଚିଠିର ବିଷୟବସ୍ତୁ ଅମୀରମାନଙ୍କ ମଧ୍ୟରେ ପ୍ରଚାରିତ ହେଲେ ସେମାନେ କ୍ଷୁବ୍‌ଧ ଓ କ୍ରୁଦ୍ଧ ହେବେ ଜାଣି, ଚିଠିଟି ସେ ବିତରଣ କରିନଥିଲେ । କିନ୍ତୁ ଅମୀରମାନଙ୍କ ସହିତ ପୂର୍ବରୁ ସ୍ୱାକ୍ଷରିତ ଚୁକ୍ତିନାମାକୁ ପରିବର୍ତ୍ତନ କରିବା ପାଇଁ ଆଉଟରାମ୍ ଜୁନ୍ ୧୮୪୨ ମସିହାରେ ଏକ ପ୍ରସ୍ତାବ ପ୍ରସ୍ତୁତ କଲେ । ସହାୟକ ସୈନ୍ୟବାହିନୀ ରଖିବା ପାଇଁ ସ୍ୱୀକୃତ ହୋଇଛନ୍ତି, ତା' ବଦଳରେ ସମସ୍ତ ସ୍ଥାନୀୟ ଦୁର୍ଗଗୁଡ଼ିକୁ ସେମାନେ ହସ୍ତାନ୍ତର କରିବେ ଏବଂ ଯେଉଁ ଅଞ୍ଚଳଗୁଡ଼ିକ ଅସ୍ଥାୟୀ ଭାବରେ ହେଲେ ମଧ୍ୟ ଇଂରେଜମାନଙ୍କ ଦଖଲରେ ଅଛି, ସେସବୁ ଅଞ୍ଚଳକୁ ସ୍ଥାୟୀ ଭାବରେ ଇଂରେଜମାନଙ୍କୁ ଅର୍ପଣ କରିବେ – ଆଉଟରାମ ଏହି ମର୍ମରେ ଏକ ପ୍ରସ୍ତାବ ଆଣି ତାହା ଏଲେନ୍‌ବରୋଙ୍କ ସମ୍ମତି ପାଇଁ ପଠାଇଲେ । କିନ୍ତୁ ଏଲେନ୍‌ବରୋଙ୍କ ସମ୍ମତି ସତ୍ତ୍ୱେ ଅମୀରମାନେ ଏ ପ୍ରସ୍ତାବକୁ ପୂରାପୂରି ଗ୍ରହଣ ନକରି ଆଲୋଚନା ପାଇଁ ସମୟ ଗଡ଼ାଇଲେ । ଅସ୍ଥିରଚିତ୍ତ ଏଲେନ୍‌ବରୋ ସିନ୍ଧୁ ଓ ବେଲୁଚିସ୍ତାନରୁ କୂଟନୈତିକ ପ୍ରତିନିଧି ପ୍ରଥା ସମ୍ପୂର୍ଣ୍ଣ ବିଲୋପ କରି ଜଣେ ସାମରିକ ଅଫିସର ସାର୍ ଚାର୍ଲସ୍ ନେପିଅରଙ୍କୁ ସିନ୍ଧ୍‌ର ସର୍ବୋଚ୍ଚ କର୍ତ୍ତା ଭାବରେ ନିଯୁକ୍ତ କଲେ । ଏହାର କେତେ ମାସ ପୂର୍ବରୁ ସାର୍ ଚାର୍ଲସ ନେପିଅର ଥିଲେ ପୁନାର ଗୋଟିଏ ଡିଭିଜନ୍‌ର ସାମରିକ କମାଣ୍ଡର । ନେପିଅରଙ୍କୁ ସିନ୍ଧ୍‌ରେ ନିଯୁକ୍ତି କଲାପରେ ଅତି ଅନ୍ୟାୟ ଭାବରେ ଆଉଟ୍‌ରାମଙ୍କୁ

ତାଙ୍କର ଅଧସ୍ତନ କର୍ମଚାରୀ ଭାବରେ ନିଯୁକ୍ତି କରାଗଲା । କିଛିଦିନ ପରେ ସାର୍ ଆଉଟରାମଙ୍କୁ ସିଧାସଳଖ ସିନ୍ଧରୁ ବମ୍ବେ ବଦଳି କରି ଦିଆଗଲା ।

ଏଲେନ୍‌ବରୋ ସାର୍ ଚାର୍ଲସ୍ ନେପିଅରଙ୍କୁ ଜଣାଇଦେଲେ ଯେ ଯେଉଁମାନେ ବନ୍ଧୁତ୍ୱର ଛଳନା କରି ବିଶ୍ୱାସଘାତକତା କରୁଛନ୍ତି, ସେହି ଅମୀରମାନଙ୍କୁ ଯଥାଯୁକ୍ତ ଶାସ୍ତି ଦେବା ଉଚିତ । ତାଙ୍କର ଚିନ୍ତାଧାରା ସହ ନେପିଅର ସମ୍ପୂର୍ଣ୍ଣ ଏକମତ ଥିଲେ ଏବଂ ତଦନୁଯାୟୀ ସାମରିକ ପ୍ରସ୍ତୁତି ଆରମ୍ଭ କରିଦେଲେ । ପ୍ରସ୍ତାବିତ ଚୁକ୍ତିର ସର୍ତ୍ତଗୁଡ଼ିକ ସମ୍ପର୍କରେ ଅମୀରମାନେ ଆଶା କରୁଥିଲେ, ଉତ୍ତର ସିନ୍ଧୁ ପ୍ରଦେଶର ଅମୀରମାନଙ୍କ ନେତା ଓ ଖଇରପୁରର ରଇସ ରୁସ୍ତମ ଖାଁ ଯଦି ଅନୁରୋଧ କରନ୍ତି ତା'ହେଲେ ନେପିଅର ବୋଧହୁଏ ତାଙ୍କର ଅନୁରୋଧ ରକ୍ଷା କରିବେ । କିନ୍ତୁ ନେପିଅର ଉପର ସିନ୍ଧୁ ଅଞ୍ଚଳର ଅମୀରମାନଙ୍କ ମଧ୍ୟରେ ଥିବା ବିବାଦର ସୁଯୋଗ ନେଇ ସେମାନଙ୍କୁ ସମୂଳେ ବିଧ୍ୱଂସ କରିବାକୁ ମନସ୍ଥ କଲେ । ରୁସ୍ତମ ଖାଁ ଉପର ସିନ୍ଧୁ ପ୍ରଦେଶର ସର୍ବୋଚ୍ଚ ନେତା ଥିଲେ ମଧ୍ୟ ତାଙ୍କର ଜଣେ ସାନଭାଇ ଅଲ୍ଲୀ ମୁରାଦ ତାଙ୍କୁ ପ୍ରତାରିତ କରି, ବୟସାଧିକ୍ୟ ହେତୁ ସେ ସାନଭାଇଙ୍କୁ ରଇସ୍ ପଦରେ ନିଯୁକ୍ତ କରିଛନ୍ତି ବୋଲି ନେପିଅରଙ୍କୁ ଜଣାଇ ଦେଲେ । ମୁରାଦଙ୍କର ଇଂରେଜମାନଙ୍କ ପ୍ରତି ଆନୁଗତ୍ୟ ହେତୁ ନେପିଅର ଏଥିପୂର୍ବରୁ ମୁରାଦଙ୍କର ସପକ୍ଷରେ ସୁପାରିଶ କରିଥିଲେ । ରୁସ୍ତମଙ୍କର ଚିଠିଖଣ୍ଡ ନେପିଅରଙ୍କ ପାଇଁ ବେଶ୍ ସୁବିଧାଜନକ ହେଲା ଓ ରୁସ୍ତମ ଖାଁଙ୍କ ପୁତ୍ରଙ୍କ ପରିବର୍ତ୍ତେ ଅଲ୍ଲୀ ମୁରାଦଙ୍କୁ 'ରଇସ୍' ନିଯୁକ୍ତି ପାଇଁ ସରକାର ସ୍ୱୀକୃତି ଦେଲେ ଓ ଅବିଳମ୍ବେ ରୁସ୍ତମଙ୍କୁ ତାଙ୍କର ସେନାବାହିନୀକୁ ଭାଙ୍ଗିଦେବା ପାଇଁ ନିର୍ଦ୍ଦେଶ ଦେଲେ । ରୁସ୍ତମ ଭୟଭୀତ ହୋଇ ଦକ୍ଷିଣକୁ ପଳାୟନ କଲେ । ଅମୀରମାନଙ୍କୁ ଅଧିକ ଭୟଭୀତ କରିବା ପାଇଁ ନେପିଅର ସୁକ୍କୁରଠାରୁ ଦକ୍ଷିଣ ପୂର୍ବରେ ସତୁରି ମାଇଲ ଦୂରରେ ଅବସ୍ଥିତ ଇମାମଗଡ଼ ଦୁର୍ଗ ଧ୍ୱଂସ କରିଦେଲେ ।

ଏହାପରେ ହାଇଦ୍ରାବାଦର ଅମୀରମାନଙ୍କ ପ୍ରତି ଇଂରେଜଙ୍କର ଦୃଷ୍ଟି ନିକ୍ଷିପ୍ତ ହେଲା । ହାଇଦ୍ରାବାଦର ଅମୀରମାନେ ଚୁକ୍ତିପତ୍ରରେ ଦସ୍ତଖତ କରିବା ପାଇଁ ସ୍ୱୀକୃତି ଦେଇଥିଲେ ମଧ୍ୟ ସେପର୍ଯ୍ୟନ୍ତ ଦସ୍ତଖତ ପ୍ରକ୍ରିୟା ସମ୍ପୂର୍ଣ୍ଣ ହୋଇନଥିଲା । ଏଇ ଗୋଳମାଳିଆ ପରିସ୍ଥିତିର ସମାଧାନ ପାଇଁ ଏଲେନ୍‌ବରୋ ପୁନଶ୍ଚ ଆଉଟରାମଙ୍କୁ

ସିନ୍ଧ୍ ପଠାଇବା ପାଇଁ ନିଷ୍ପତ୍ତି ନେଲେ । ସେତେବେଳକୁ ଆଉଟ୍‌ରାମ୍ ଚବିଶି ବର୍ଷର ଦୀର୍ଘ ଚାକିରି ପରେ ବମ୍ବେରୁ ଲଣ୍ଡନ ଫେରିଯିବା ପାଇଁ ସମସ୍ତ ବ୍ୟବସ୍ଥା କରିସାରିଥିଲେ । ଏପରିକି ସେ ଯେଉଁ ଜାହାଜରେ ଯିବେ, ତା'ର ମଧ୍ୟ ବ୍ୟବସ୍ଥା ହୋଇସାରିଥିଲା । ଏଲେନ୍‌ବରୋଙ୍କର ଏଇ ନୂତନ ଆଦେଶ ପାଇବା ପରେ ବନ୍ଧୁମାନଙ୍କର ପରାମର୍ଶ ବିରୁଦ୍ଧରେ ସେ ସରକାରଙ୍କ ଆଦେଶ ଅମାନ୍ୟ କରିବାକୁ ଚାହିଁଲେ ନାହିଁ ଏବଂ ୧୮୪୩ ମସିହା ଜାନୁଆରୀ ୩ ତାରିଖରେ ସିନ୍ଧ୍‌ର ସୁକୁରଠାରେ ନେପିଅରଙ୍କ ସମୀପରେ ଉପସ୍ଥିତ ହେଲେ । ନେପିଅର୍ ସନ୍ଧିଚୁକ୍ତି ବିଷୟରେ ଆଲୋଚନା କରିବାପାଇଁ ଆଉଟ୍‌ରାମ୍‌ଙ୍କୁ ହାଇଦ୍ରାବାଦ୍ ପଠାଇଦେଲେ ଏବଂ ନିଜେ ଆବଶ୍ୟକ ହେଲେ ଅମୀରମାନେ ସଂଗ୍ରହ କରିଥିବା ବେଲୁଚି ସୈନ୍ୟମାନଙ୍କୁ ମୁକାବିଲା କରିବା ପାଇଁ ତିନିହଜାର ବଛାବଛା ସୈନ୍ୟ ଓ କମାଣ ଧରି ଆଗେଇଗଲେ । ସମ୍ବାଦ ମିଳିଲା ଯେ, ଅମୀରମାନେ ବେଲୁଚିସ୍ତାନରୁ ଅଠର ହଜାର ସୈନିକ ସଂଗ୍ରହ କରିଛନ୍ତି । କିନ୍ତୁ ନେପିଅର୍ ଭୟ ନକରି ତାଙ୍କର ତାଲିମପ୍ରାପ୍ତ ତିନିହଜାର ସୈନ୍ୟ ଓ ବାରଟି କମାଣ ଧରି ଯୁଦ୍ଧଭୂମିରେ ଲମ୍ଫ ଦେଲେ । ସଂଖ୍ୟା, ସାହସ ଓ ଶକ୍ତି ପ୍ରଦର୍ଶନ ସତ୍ତ୍ୱେ ବେଲୁଚିମାନେ ସମ୍ପୂର୍ଣ୍ଣ ଭାବେ ପରାସ୍ତ ହେଲେ । ପ୍ରାୟ ପାଞ୍ଚହଜାର ବେଲୁଚି ସୈନ୍ୟ ଏ ଯୁଦ୍ଧରେ ନିହତ ହେଲେ ଓ ଅନ୍ୟମାନେ ଛିନ୍‌ଛତ୍ର ହୋଇ ପଳାୟନ କଲେ । ବହୁଦିନପରେ ସମର କ୍ଷେତ୍ରରେ ବିଜୟ ଟିକା ହାସଲ କରିଥିବା ହେତୁ ନେପିଅର୍ ଗର୍ବ ଓ ଗୌରବରେ ଉତ୍‌ଫୁଲ୍ଲିତ ହୋଇଥିଲେ । ଏହାପରେ ସମସ୍ତ ଅମୀରମାନଙ୍କୁ ବନ୍ଦୀ କରାଗଲା ଏବଂ କେତେ ସପ୍ତାହ ପରେ ସେମାନଙ୍କୁ ସିନ୍ଧ୍‌ରୁ ବମ୍ବେକୁ ସ୍ଥାନାନ୍ତରିତ କରାଗଲା । ଏହାପରେ ଅମୀରମାନଙ୍କର ଓ ସେମାନଙ୍କର ବନ୍ଧୁ ଓ ସମ୍ପର୍କୀୟମାନଙ୍କର ସମ୍ପତ୍ତି ଜବତ୍ କରି ତାକୁ ନିଲାମ୍ କରିଦିଆଗଲା ଏବଂ ତାହା ସବୁ ସୈନ୍ୟ ଓ ସିପାହୀମାନଙ୍କ ମଧ୍ୟରେ ବାଣ୍ଟିଦିଆଗଲା । ଏହି ପ୍ରକ୍ରିୟାରେ ନେପିଅର୍‌ଙ୍କୁ ପଚାଶ ହଜାର ପାଉଣ୍ଡ ଓ ଆଉଟ୍‌ରାମ୍‌ଙ୍କୁ ତିନିହଜାର ପାଉଣ୍ଡ ଦିଆ ହୋଇଥିଲା । ମାତ୍ର ଆଉଟ୍‌ରାମ୍ ଏହି କଳଙ୍କିତ ଅର୍ଥ ଗ୍ରହଣ କରିନଥିଲେ ଏବଂ ଯଥାଶୀଘ୍ର ସେଠାରୁ ଲଣ୍ଡନ୍ ଯାତ୍ରା କଲେ ।

ହାଇଦ୍ରାବାଦ୍ ଯୁଦ୍ଧରେ ବିଜୟ ହାସଲ୍ କଲାପରେ ଏଲେନ୍‌ବରୋ ଘୋଷଣା କଲେ ଯେ, ବର୍ତ୍ତମାନ ସିନ୍ଧୁ ନଦୀର ଉଭୟ ପାର୍ଶ୍ୱ ବିଶେଷତଃ ସୁକୁରଠାରୁ ସମୁଦ୍ର

ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳ ବ୍ରିଟିଶ୍ ସରକାରଙ୍କ ଦଖଲକୁ ଆସିଛି । ସେ ନେପିଅର୍‌ଙ୍କୁ ଏହି ନୂତନ ପ୍ରଦେଶର ଗଭର୍ଣ୍ଣର ନିଯୁକ୍ତ କଲେ । ଏହି ସମୟରେ ହାଇଦ୍ରାବାଦ୍ ନିକଟସ୍ଥ ମୀରପୁରର ଅମୀର ଶେର ମହମ୍ମଦ ଅନୁଭବ କଲେ ଯେ, ନେପିଅର୍‌ଙ୍କ ନିକଟରେ ଆତ୍ମସମର୍ପଣ କରି ନିଜକୁ ବନ୍ଦୀ କରିବା ଛଡ଼ା ବରଂ ଇଂରେଜଙ୍କ ବିରୁଦ୍ଧରେ ଲଢ଼ାଇ କରିବା ଉଚିତ । ଅବଶ୍ୟ ଏଥିପୂର୍ବରୁ ମିଆନୀ ଯୁଦ୍ଧରେ ପରାସ୍ତ ହୋଇ ସେ ପଳାୟନ କରିଥିଲେ । କିନ୍ତୁ ଏଥର ପନ୍ଦର ହଜାର ବେଲୁଚି ସୈନ୍ୟଙ୍କୁ ସମବେତ କରି ସେ ଆକ୍ରମଣ ଆରମ୍ଭ କଲେ । ନେପିଅର୍ ମାତ୍ର ପାଞ୍ଚ ହଜାର ସୈନ୍ୟ ସହିତ ଶେର୍ ମହମ୍ମଦଙ୍କର ସମ୍ମୁଖୀନ ହେଲେ ଏବଂ ସେମାନଙ୍କୁ ଯୁଦ୍ଧରେ ପରାସ୍ତ କଲେ । ଏ ଯୁଦ୍ଧରେ ବ୍ରିଟିଶ୍ ସୈନ୍ୟବାହିନୀର ମାତ୍ର ଅଣଚାଳିଶି ଜଣ ନିହତ ହୋଇଥିଲେ ଅଥଚ ଦୁଇହଜାର ବେଲୁଚି ପ୍ରାଣ ହରାଇଥିଲେ । ଏଲେନ୍‌ବରୋ ଘୋଷଣା କଲେ ଯେ ବ୍ରିଟିଶ୍ ସରକାର ଗୋଟିଏ ନୂତନ ପ୍ରଦେଶ ଅଧିକାର କରିବାକୁ ସମର୍ଥ ହୋଇଛନ୍ତି, ଯାହାକି ଇଜିପ୍ଟଠାରୁ ମଧ୍ୟ ଧନଶାଳୀ । କିନ୍ତୁ ଏହି ଘୋଷଣା ଥିଲା ସମ୍ପୂର୍ଣ୍ଣ ଭିତ୍ତିହୀନ । କାରଣ ପ୍ରାୟ ଶହେବର୍ଷ ପରେ ୧୯୩୨ ମସିହାରେ ସିନ୍ଧୁନଦୀରୁ ସୁକ୍କୁରଠାରେ ବ୍ୟାରେଜ୍ ତିଆରି ନହେବା ପର୍ଯ୍ୟନ୍ତ ସିନ୍ଧୁ ପ୍ରଦେଶ ପୂର୍ବବତ୍ ଅର୍ଦ୍ଧ ମରୁଭୂମି ରହିଥିଲା ।

ଇଂରେଜମାନଙ୍କର ପ୍ରଧାନ ପ୍ରତିବନ୍ଧକ ଥିଲା ସିନ୍ଧୁ ପ୍ରଦେଶର ଗରମ ହାଓ୍ୱା । ସେଇଥିପାଇଁ ନେପିଅର୍ ହାଇଦ୍ରାବାଦ୍‌ରୁ ସମୁଦ୍ରକୂଳ କରାଚୀକୁ ରାଜଧାନୀ ସ୍ଥାନାନ୍ତର କରିଥିଲେ । ଆରବ ସାଗରର ଶୀତଳ ପବନ କରାଚୀର ଜଳବାୟୁକୁ ପ୍ରଭାବିତ କରୁଥିଲା । ଗଭର୍ଣ୍ଣର ନେପିଅର୍‌ଙ୍କ ଶାସନ ଥିଲା ସମ୍ପୂର୍ଣ୍ଣ ସ୍ୱେଚ୍ଛାଚାରୀ । ପ୍ରଶାସନିକ କ୍ଷମତା, ସାମରିକ କ୍ଷମତା ଓ ବିଚାର ବିଭାଗୀୟ କ୍ଷମତା ସବୁକିଛି ଜଣେ ଲୋକ ହାତରେ ନ୍ୟସ୍ତ ଥିଲା । ତେଣୁ ଭବିଷ୍ୟତରେ ସମ୍ୟକ୍ ଉନ୍ନତିର କୌଣସି ସମ୍ଭାବନା ନଥିଲା ।

ନେପିଅର୍ ଚାକିରିରୁ ଅବସର ନେଲାପରେ ସିନ୍ଧୁ ପ୍ରଦେଶରେ ତାଙ୍କର ସାମରିକ ଶାସନ ବିଲୁପ୍ତ ହେଲା ଓ ସିନ୍ଧୁର ଶାସନଭାର ବମ୍ବେ ଗଭର୍ଣ୍ଣରଙ୍କ ହାତରେ ନ୍ୟସ୍ତ ହେଲା । ସିନ୍ଧୁ ହେଲା କମ୍ପାନୀର ଅଧୀନସ୍ଥ ରାଜ୍ୟ । ଏହାପରେ କମ୍ପାନୀର ଯେଉଁ କର୍ମଚାରୀମାନେ ସିନ୍ଧୁ ପ୍ରଦେଶର କମିସନର୍ ନିଯୁକ୍ତ ହେଲେ, ସେମାନେ ପ୍ରମାଣ

କରି ଦେଖାଇ ଦେଲେ ଯେ, କମ୍ପାନୀର କର୍ମଚାରୀମାନଙ୍କର ଦକ୍ଷତା ଉପରେ ନେପିଅର୍‌ଙ୍କର ଯେ ନୀଚ୍ ଓ ଭ୍ରାନ୍ତ ଧାରଣା ଥିଲା, ତାହା ସମ୍ପୂର୍ଣ୍ଣ ଭିତ୍ତିହୀନ । ଏଣେ ବେଲୁଚିମାନଙ୍କ ମତରେ ସାର୍ ଚାର୍ଲସ ନେପିଅର୍ ଥିଲେ ଜଣେ ଦକ୍ଷ ଶାସକ, ଅଥଚ୍ ସେ ଥିଲେ "ସୈତାନର ଭାଇ" ।

ଭାରତରେ ଏଲେନ୍‌ବରୋଙ୍କ କାର୍ଯ୍ୟକଳାପ, ବିଶେଷତଃ ସରକାରଙ୍କ ସମ୍ମତିବିନା ସିନ୍ଧୁ ପ୍ରଦେଶ ଦଖଲ ହେତୁ ବ୍ରିଟିଶ୍ ସରକାର ଓ କମ୍ପାନୀର ଡାଇରେକ୍ଟରମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ । ଏଣେ କମ୍ପାନୀର ଯୁଦ୍ଧ ବ୍ୟୟ ବଢ଼ିବଢ଼ି ଚାଲିଥିଲା । ଆଫଗାନିସ୍ଥାନ ଓ ସିନ୍ଧୁ ପ୍ରଦେଶ ଯୁଦ୍ଧରେ କମ୍ପାନୀର ବିପୁଳ କ୍ଷତି ଭରଣା କରିବାପାଇଁ ଡାଇରେକ୍ଟରମାନେ ସରକାରଙ୍କ ଉପରେ ଚାପ ପକାଉଥିଲେ । ପରିଶେଷରେ ପ୍ରଧାନମନ୍ତ୍ରୀ ରବର୍ଟ ପିଲ୍‌ଙ୍କ ପରୋକ୍ଷ ସମର୍ଥନ କ୍ରମେ କମ୍ପାନୀର ଡାଇରେକ୍ଟର ବୋର୍ଡ଼ରେ ଏଲେନ୍‌ବରୋଙ୍କୁ ଭାରତରୁ ଫେରାଇନେବା ପାଇଁ ପ୍ରସ୍ତାବ ଗୃହୀତ ହେଲା ଓ ତଦନୁଯାୟୀ ତାଙ୍କର କାର୍ଯ୍ୟକାଳ ସମାପ୍ତ ହେବା ପୂର୍ବରୁ ସେ ଇଂଲଣ୍ଡ ଫେରିଯିବା ପାଇଁ ତାଙ୍କୁ ବିଧିବଦ୍ଧ ନିର୍ଦ୍ଦେଶ ଦିଆଗଲା । କମ୍ପାନୀର ଜଣେ ବରିଷ୍ଠ କର୍ମଚାରୀ ମେଟ୍‌କାଫ୍‌ଙ୍କୁ ଦାୟିତ୍ୱ ଦେଇ ଏଲେନ୍‌ବରୋ ଭାରତରୁ ବିଦାୟ ନେଲେ ।



# ବ୍ରିଟିଶ୍‌ମାନଙ୍କର ଔଦ୍ଧତ୍ୟ ଓ ଭାରତୀୟଙ୍କ ପ୍ରତି ଅବଜ୍ଞା

ପଚାଶ ବର୍ଷ ମଧ୍ୟରେ ଭାରତ ଓ ଇଂଲଣ୍ଡର ସମ୍ପର୍କରେ ଯେଉଁ ଦ୍ରୁମୂଳ ତାରତମ୍ୟ ଘଟିଥିଲା, ଇଂରେଜମାନେ ତା'ର ସୁବିଧା ନେଇଥିଲେ । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଥିଲା ଏକ ସମ୍ପୂର୍ଣ୍ଣ ବ୍ୟବସାୟୀ ଅନୁଷ୍ଠାନ । ଉପନିବେଶ ପ୍ରତିଷ୍ଠା ସେମାନଙ୍କର ଉଦ୍ଦେଶ୍ୟ ନଥିଲା ବା ସେହି ଲକ୍ଷ୍ୟରେ କମ୍ପାନୀ କୌଣସି କାର୍ଯ୍ୟ କରୁନଥିଲେ । ବାଣିଜ୍ୟଗତ ସୁବିଧା ଲାଗି ଯେଉଁଠି ଯେତିକି ସାମରିକ ଶକ୍ତି ପ୍ରୟୋଗର ଆବଶ୍ୟକତା ଥିଲା, କେବଳ ସେତିକି ମାତ୍ର କରାଯାଉଥିଲା । କିନ୍ତୁ କାଳକ୍ରମେ ପଚାଶବର୍ଷ ମଧ୍ୟରେ ଭାରତ କମ୍ପାନୀର ଏକ ଉପନିବେଶରେ ପରିଣତ ହେଲା । କେତେକ କ୍ଷୁଦ୍ର ରାଜ୍ୟ ଓ ପଞ୍ଜାବକୁ ବାଦ୍ ଦେଲେ ଅନ୍ୟ ସମସ୍ତ ଅଞ୍ଚଳରେ ଇଂରେଜମାନଙ୍କର ପ୍ରାଧାନ୍ୟ ଓ ଶାସନ ପ୍ରତିଷ୍ଠିତ ହୋଇଥିଲା । ୧୮୦୦ ଶତାବ୍ଦୀ ପ୍ରାରମ୍ଭରେ ଉଭୟ ଭାରତ ଓ ଗ୍ରେଟ୍ ବ୍ରିଟେନ୍ କୃଷିପ୍ରଧାନ ଦେଶ ଥିଲେ ଏବଂ ଛୋଟକାଟର ଶିଳ୍ପ ପ୍ରତିଷ୍ଠା କରି ନିଜର ଗୁଜୁରାଣ ମେଣ୍ଟାଉଥିଲେ । କିନ୍ତୁ ପଚାଶବର୍ଷ ମଧ୍ୟରେ ଗ୍ରେଟ୍‌ବ୍ରିଟେନ୍‌ରେ ଶିଳ୍ପ ବିପ୍ଳବ ଆରମ୍ଭ ହୋଇ ତାହା ବହୁ ଦିଗରେ ପ୍ରସାରିତ ହୋଇଥିଲା । ନୂତନ ଶିଳ୍ପ କାରଖାନା ଗଢ଼ିଉଠିଲା ଇଂଲଣ୍ଡରେ । ଶହଶହ ଲୋକଙ୍କୁ ଏହି କାରଖାନା-ଗୁଡ଼ିକରେ ନିଯୁକ୍ତି ଦିଆଗଲା । ଷ୍ଟିମ୍ ଇଞ୍ଜିନ୍ ପ୍ରଚଳିତ ହୋଇ କ୍ରମେ ଜାହାଜ ସବୁ ଇଂଜିନ୍ ଦ୍ୱାରା ଚାଳିତ ହେଲା । ବାଷ୍ପୀୟ ଯାନରେ ସ୍ଥଳଭାଗରେ ରେଳଗାଡ଼ି ଚାଲିଲା ଓ ତଦନୁଯାୟୀ ସାମରିକ କଳା କୌଶଳରେ ଓ ଯାନବାହନରେ ପ୍ରଭୂତ ଉନ୍ନତି ଘଟିଲା । ଅଥଚ ଭାରତବର୍ଷରେ ଇଂରେଜମାନଙ୍କର କ୍ରମବର୍ଦ୍ଧିଷ୍ଣୁ ଶକ୍ତି

ବୃଦ୍ଧି ହେତୁ ପ୍ରଚଳିତ କ୍ଷୁଦ୍ର ଶିଳ୍ପଗୁଡ଼ିକ କ୍ରମେ ନିଷ୍ପ୍ରଭ ହୋଇଗଲେ । ଜମିଦାରୀ ପ୍ରଥାର ପ୍ରଚଳନ କରି ବଙ୍ଗଳା ଓ ପୂର୍ବ ଭାରତରେ କୃଷିର କୌଣସି ଉନ୍ନତି ହେଲାନାହିଁ ବରଂ ରାଜସ୍ୱ ଆଦାୟର ସୁବିଧା ପାଇଁ ଏକ ସ୍ୱାର୍ଥାନ୍ୱେଷୀ, ଅତ୍ୟାଚାରୀ ମଧ୍ୟସ୍ଥ ଶ୍ରେଣୀ ସୃଷ୍ଟି ହେଲା । କ୍ଲାଇଭ୍ ବା ୱାରେନ୍‌ହେଷ୍ଟିଂସ୍‌ଙ୍କ ସମୟରେ ଭାରତୀୟମାନଙ୍କ ପ୍ରତି ଯେଉଁ ସଦିଚ୍ଛା ଓ ଭାରତୀୟ ସମ୍ଭ୍ରାନ୍ତ ଶ୍ରେଣୀୟ ଲୋକଙ୍କ ସହିତ ଯେଉଁ ମୈତ୍ରୀ ଓ ସଦ୍‌ଭାବ ଥିଲା କ୍ରମେ ତାହା ଲୋପ ପାଇଲା । କମ୍ପାନୀର ବ୍ୟବସାୟ ଓ ସାମରିକ ସୁରକ୍ଷା ପାଇଁ ଯେଉଁ ହଜାର ହଜାର କିରାଣି ଓ ଅମଲାଙ୍କଠାରୁ ଆରମ୍ଭ କରି ଶାସକ ଶ୍ରେଣୀ ଓ ସାମରିକ କର୍ମକର୍ତ୍ତାମାନେ ଭାରତକୁ ଆସିଲେ, ପରିବର୍ତ୍ତିତ ପରିସ୍ଥିତିରେ ସେମାନେ ଭାରତୀୟମାନଙ୍କୁ ହେୟଜ୍ଞାନ ମନେକଲେ ଏବଂ ଭାରତୀୟମାନଙ୍କର ବିଦ୍ୟା, ବୁଦ୍ଧି, ସଂସ୍କୃତି ଓ ଧର୍ମଠାରୁ ଖ୍ରୀଷ୍ଟିଆନ୍ ଧର୍ମ ଆହୁରି ମାର୍ଜିତ ଓ ଇଂରେଜ ସଭ୍ୟତା ଅଧିକ ଉନ୍ନତ ବୋଲି ବିବେଚନା କଲେ । ଭାରତୀୟମାନଙ୍କ ପ୍ରତି ଅବଜ୍ଞାର ଏହା ଥିଲା ମୌଳିକ କାରଣ !

ବେଣ୍ଟିକ୍ ଗଭର୍ଣ୍ଣର ଜେନେରାଲ୍ ଥିବା ସମୟରେ ଭାରତୀୟ ସମାଜରୁ କୁସଂସ୍କାର ଲୋପ କରିବାପାଇଁ ଉଦ୍ୟମ ଆରମ୍ଭ କରିଥିଲେ । କିନ୍ତୁ ତାଙ୍କ ପରେ ଲର୍ଡ୍ ଅକ୍‌ଲାଣ୍ଡଙ୍କ ପରି ଯେଉଁ ନିର୍ବୋଧ ଓ ଖିଆଲବାଜ ବ୍ୟକ୍ତିମାନେ ସର୍ବୋଚ୍ଚ ଦାୟିତ୍ୱରେ ରହିଲେ, ସେମାନେ ଭାରତରେ ଶିକ୍ଷାପ୍ରସାର ବା କୁସଂସ୍କାରର ବିଲୋପ ପାଇଁ ଧ୍ୟାନ ନଦେଇ କେବଳ ନିଜର ଓ କମ୍ପାନୀର ସ୍ୱାର୍ଥର ସୁରକ୍ଷା ପାଇଁ କାର୍ଯ୍ୟ କରିବାକୁ ଆଗଭର ହେଉଥିଲେ । ଏଲେନ୍‌ବରୋ ଏତେଦୂର ଖିଆଲବାଜ ଥିଲେ ଯେ, ଶେଷକୁ ବ୍ରିଟେନ୍‌ର ପ୍ରାଇମ ମିନିଷ୍ଟର ରବର୍ଟ ପିଲ୍‌ଙ୍କ ପ୍ରଚ୍ଛନ୍ନ ସମ୍ମତି କ୍ରମେ କମ୍ପାନୀର ଡାଇରେକ୍ଟରମାନେ ତାଙ୍କୁ ସମୟ ପୂରିବା ଆଗରୁ ଭାରତରୁ ପ୍ରତ୍ୟାହାର କରିନେଲେ । ବିଚରା ଏଲେନ୍‌ବରୋଙ୍କୁ ହଠାତ୍ ୧୮୪୩ ଆରମ୍ଭରେ ଭାରତ ଛାଡ଼ିବାକୁ ପଡ଼ିଲା । ସିନ୍ଧୁ ପ୍ରଦେଶକୁ ବ୍ରିଟିଶ୍ ଶାସନାଧୀନ କରିବାପାଇଁ ସେ ଯାହାସବୁ କରିଗଲେ, ସେଥିରେ କେହି ସନ୍ତୁଷ୍ଟ ନଥିଲେ । ଏହି ସମୟରେ କମ୍ପାନୀର ଜଣେ ଅତି ପୁରାତନ ବରିଷ୍ଠ କର୍ମଚାରୀ ମେଟ୍‌କାଫ୍‌ଙ୍କୁ ଅସ୍ଥାୟୀଭାବରେ ଗଭର୍ଣ୍ଣର ଜେନେରାଲ୍ କରି ଦିଆଗଲା । ଭାରତବର୍ଷରେ ଦୀର୍ଘ ଚାଳିଶି ବର୍ଷ କାର୍ଯ୍ୟ କରି ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଥିଲା । କିନ୍ତୁ

ବ୍ରିଟିଶ୍ ସରକାର ସେ ଦୃଷ୍ଟିରୁ ବିଚାର ନକରି ପୁନଶ୍ଚ ନିଜର ଆଇନଗତ କ୍ଷମତା ପ୍ରୟୋଗ କରିବା ପରିବର୍ତ୍ତେ କମ୍ପାନୀର କର୍ମଚାରୀଙ୍କୁ ଏହି ସମ୍ମାନିତ ପଦରେ ନିଯୁକ୍ତି ଦେବାକୁ କୁଣ୍ଠିତ ଥିଲେ । ଅଭିଜ୍ଞତା ଓ ଦକ୍ଷତା ଦୃଷ୍ଟିରୁ ଅବଶ୍ୟ ତାଙ୍କର ସମକକ୍ଷ ବାଛିବା କଷ୍ଟକର ଥିଲା । ଯାହାହେଉ ଏହି ପ୍ରକ୍ରିୟାରେ ମେଟ୍‌କାଫ୍ ପ୍ରାୟ ଗୋଟିଏ ବର୍ଷ ଗଭର୍ଣ୍ଣର ଜେନେରାଲ୍ ଦାୟିତ୍ୱରେ ରହିଲେ ।

ବ୍ରିଟେନ୍‌ର ସାମରିକ ଅଫିସର୍ ଓ କମ୍ପାନୀର କର୍ମଚାରୀମାନେ ଭାରତରେ କୌଣସି ସ୍ୱାଧୀନ ସମ୍ବାଦପତ୍ର ପ୍ରକାଶ ପାଇଁ ସୁଯୋଗ ଦେବାକୁ ପ୍ରସ୍ତୁତ ନଥିଲେ । ସେମାନେ ଭାବୁଥିଲେ ବ୍ରିଟିଶ୍ ସାମ୍ବାଦିକମାନଙ୍କୁ ଏହି ସୁଯୋଗ ଦେଲେ କାଳକ୍ରମେ ଭାରତୀୟମାନେ ସମ୍ବାଦପତ୍ର ପ୍ରକାଶ କରିବାକୁ ଆରମ୍ଭ କରିବେ ଏବଂ ସେମାନେ ସାଧାରଣ ଲୋକଙ୍କର ସମସ୍ୟା କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୁ ଆଣିବା ପ୍ରୟାସରେ ହୁଏତ ଦିନେ ନା ଦିନେ ଇଂରେଜମାନଙ୍କୁ ବିତାଡ଼ିତ କରିବା ପାଇଁ ଓ ଭାରତକୁ ସ୍ୱାଧୀନ କରିବା ପାଇଁ ଦାବି କରିବେ । ଇଂଲଣ୍ଡରେ ପ୍ରେସ୍ ସ୍ୱାଧୀନତାର ବିରୋଧୀ କେହି ନଥିଲେ କିନ୍ତୁ ଭାରତରେ କମ୍ପାନୀର ସବୁ ଅଭିଜ୍ଞ ଓ ବରିଷ୍ଠ କର୍ମକର୍ତ୍ତାମାନେ ସମ୍ବାଦପତ୍ର ପ୍ରକାଶନର ବିରୋଧୀ ଥିଲେ । କିନ୍ତୁ ମେଟ୍‌କାଫ୍ ବର୍ଷଟିଏ ଗଭର୍ଣ୍ଣର ଜେନେରାଲ୍ ରହିଲେ ମଧ୍ୟ ସେ ସମ୍ବାଦପତ୍ର ଉପରେ ସମସ୍ତ ପ୍ରକାର ଆଇନଗତ କଟକଣା ଉଠାଇଦେଲେ । ଅବଶ୍ୟ ସେତେବେଳେ କୌଣସି ଭାରତୀୟ ଭାଷାରେ ବା ଭାରତୀୟମାନଙ୍କ ଦ୍ୱାରା ନିୟନ୍ତ୍ରିତ ଇଂରେଜୀ ସମ୍ବାଦପତ୍ର ମଧ୍ୟ ନଥିଲା । ଏଣୁ ଏ ସ୍ୱାଧୀନତାର ସୁଯୋଗ ନେଲେ ମୁଖ୍ୟତଃ ବ୍ରିଟିଶ୍ ସାମ୍ବାଦିକ ଓ ଧର୍ମାନ୍ତରିକରଣ କରିବା ପାଇଁ ଭାରତକୁ ଆସୁଥିବା ଖ୍ରୀଷ୍ଟିଆନ୍ ମିଶନାରୀମାନେ । ମିଶ୍‌ନାରୀମାନେ ହିନ୍ଦୁ ଧର୍ମର ପ୍ରତିମା ପୂଜା ପଦ୍ଧତି ଓ କୁସଂସ୍କାର ବିରୁଦ୍ଧରେ ପ୍ରଚାର କରିବା ପାଇଁ ସୁଯୋଗ ପାଇଲେ ।

ମିଶନାରୀମାନେ ନିଜକୁ ଓ କମ୍ପାନୀ କର୍ମଚାରୀମାନଙ୍କୁ ଯେପରି ଭଦ୍ର, ଉଦାର ଓ ଉଚ୍ଚମନା ଭାବରେ ଚିତ୍ରିତ କରୁଥିଲେ, ତାହାଥିଲା ବାସ୍ତବିକ ଭିତ୍ତିହୀନ । ଯେଉଁ ଇଂରେଜମାନେ ଯୁବାବସ୍ଥାରୁ ଭାରତକୁ ଆସି ଏଠାରେ ଦୀର୍ଘଦିନ କାଳାତିପାତ କରୁଥିଲେ ସେମାନଙ୍କ ମଧ୍ୟରୁ ଅନେକ ଥିଲେ ସମ୍ପୂର୍ଣ୍ଣ ଚରିତ୍ରହୀନ । ଅବଶ୍ୟ ବାଷ୍ପୀୟ ଜାହାଜ ଯାତ୍ରା ହେତୁ ବହୁ ବ୍ରିଟିଶ୍ ଲୋକେ ପରିବାର ନେଇ ଭାରତକୁ ଆସୁଥିଲେ,

କିନ୍ତୁ ବିଭିନ୍ନ କାରଣରୁ ଏହା ସବୁ ସମୟରେ ସମ୍ଭବ ହେଉ ନଥିଲା । ଯୌନଲାଳସା ତୃପ୍ତ କରିବାପାଇଁ ବହୁ ବ୍ରିଟିଶ୍ ନାଗରିକ ଭାରତରେ ଗଣିକା ଓ ରକ୍ଷିତାମାନଙ୍କୁ ପ୍ରଶ୍ରୟ ଦେଉଥିଲେ । ହିନ୍ଦୁ ବା ମୁସଲମାନମାନଙ୍କ ମଧ୍ୟରେ ଅସବର୍ଣ୍ଣ ବିବାହ ପ୍ରଥା ପ୍ରଚଳିତ ନଥିଲା । ଯେଉଁ ବ୍ରିଟିଶ୍ ଲୋକେ ଭାରତରେ ଉଚ୍ଚଜାତିର ପରିବାରରେ ବିବାହ କରିବାକୁ ଚାହୁଁଥିଲେ, ତାହା ଏ ଦେଶରେ ସମ୍ଭବ ନଥିଲା । ଏଣୁ ମୁଖ୍ୟତଃ ସେମାନେ ନିମ୍ନ ଜାତିର ମହିଳାମାନଙ୍କୁ ରକ୍ଷିତା ରୂପେ ଗ୍ରହଣ କରୁଥିଲେ । ଖୋଦ୍ ମେଟ୍‌କାଫ୍ ଓ ତାଙ୍କର ସମସାମୟିକ ବହୁ ଅଫିସର୍ ଏ ଦୋଷରୁ ମୁକ୍ତ ନଥିଲେ । ଏକ ବା ଏକାଧିକ ରକ୍ଷିତା ସହ ଜୀବନ ବିତାଇବା ଥିଲା ସେମାନଙ୍କର ଗତାନୁଗତିକ ଜୀବନଧାରା । ଶୁଣାଅଛି ଅକ୍ଟୋଲୋନିଙ୍କର ଭାରତୀୟ ନବାବ ବା ରାଜା ମହାରାଜାମାନଙ୍କ ପରି ଏକ ସ୍ୱତନ୍ତ୍ର ରକ୍ଷିତା ନିବାସ ଥିଲା ଏବଂ ସେ ବହୁନାରୀ ମେଳରେ ଜୀବନ ଅତିବାହିତ କରୁଥିଲେ । ଅଥଚ୍ ଭାରତୀୟ ସଂସ୍କୃତି ଓ ଜୀବନଧାରାକୁ ହୀନଦୃଷ୍ଟିରେ ବିଚାର କରିବାକୁ ମିଶନାରୀ ବା ସାଧାରଣ ଇଂରେଜ ଲୋକେ କୁଣ୍ଠିତ ନଥିଲେ ।



# ପ୍ରଥମ ଶିଖ୍ ସମର

ଲର୍ଡ୍ ହାର୍ଡ଼ିଂଜ ନୂତନ ଗଭର୍ଣ୍ଣର ଜେନେରାଲ୍ ପଦ ଗ୍ରହଣ କରି ୧୮୪୪ ମସିହା ଜୁଲାଇ ମାସରେ ଭାରତରେ ପଦାର୍ପଣ କଲେ । ସେତେବେଳକୁ ପଞ୍ଜାବର ଆଭ୍ୟନ୍ତରୀଣ ଅବସ୍ଥା ଥିଲା ଅତ୍ୟନ୍ତ ମାରାତ୍ମକ । ମହାପ୍ରତାପୀ ଏକ -ଆଖିଆ ମହାରାଜା ରଣଜିତ ସିଂହଙ୍କର ୧୮୩୯ ମସିହାରେ ମୃତ୍ୟୁପରେ ପଞ୍ଜାବରେ ମହାରାଜାଙ୍କର ଭାଇ ଓ ବିରାଦରମାନଙ୍କ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ଆରମ୍ଭ ହୋଇଗଲା । ଅସ୍ଥିରମନା ଲର୍ଡ଼ ଏଲେନ୍‌ବରୋ ସିନ୍ଧୁପ୍ରଦେଶ ସମସ୍ୟାରେ ଏତେ ନିମଗ୍ନ ଥିଲେ ଯେ, ପଞ୍ଜାବ ବ୍ୟାପାରରେ ହସ୍ତକ୍ଷେପ କରିବାକୁ ତାଙ୍କର ସମୟ ନଥିଲା । ରଣଜିତ୍ ସିଂହଙ୍କ ମୃତ୍ୟୁପରେ ତାଙ୍କର ଏକମାତ୍ର ବୈଧ ସନ୍ତାନ ଖରକ୍ ସିଂହ ମହାରାଜା ଗାଦି ଅଧିକାର କଲେ । କିନ୍ତୁ ସେ ଥିଲେ ଜଣେ ଅଫିମଖୋର୍ ଓ ନିର୍ବୋଧ । ତାହାର ସୁବିଧା ନେଇ ରାଜଗାଦି ପାଇଁ ଅନ୍ୟ ଦାବିଦାର୍‌ମାନେ ଚକ୍ରାନ୍ତ ଆରମ୍ଭ କରିଦେଲେ ଓ ସେହି ଚକ୍ରାନ୍ତରେ ଖରକ୍ ସିଂହଙ୍କର ନିଜ ପୁଅ ନାଉ ନେହାଲ ସିଂହ ମଧ୍ୟ ଜଡ଼ିତ ଥିଲେ । ଏଣେ ମହାରାଜା ରଣଜିତ୍ ସିଂହଙ୍କ ଦରବାରରେ ନେତୃତ୍ୱ ନେଉଥିଲେ କେତେକ ସଂଭ୍ରାନ୍ତବଂଶୀୟ ଶିଖ୍ ଓ ଜାମ୍ମୁର ଡୋଗ୍ରା ସଂପ୍ରଦାୟର ନେତା ଗୁଲାବ୍ ସିଂ, ଧିଆନ୍ ସିଂ ଓ ସୁଚେ଼ତ୍ ସିଂ । ଡୋଗ୍ରା ନେତାମାନେ ସାଧାରଣ ପଦାତିକ ସୈନିକରୁ ରଣଜିତ୍ ସିଂହଙ୍କ ପଦଧୂଳି ପାଇ ଅଚ଼ଳାଚ଼ଳ ସଂପତ୍ତି ଓ କ୍ଷମତାର ଅଧିକାରୀ ହୋଇଥିଲେ । ପ୍ରଥମ ହତ୍ୟା ହେଲା ଖରକ୍ ସିଂହଙ୍କର ବିଶ୍ୱସ୍ତ ଚେତ୍ ସିଂ ବାଜ୍ୱାଙ୍କର । ଖରକ୍ ସିଂହ ପ୍ରତିବାଦ କରନ୍ତେ ତାଙ୍କୁ ଶାସନରୁ ବିତାଡ଼ିତ କରି ନାଉ ନେହାଲ ସିଂହ ମହାରାଜା ପଦ ଅଧିକାର କଲେ ଏବଂ ତାଙ୍କର ପ୍ରଧାନ ସଚ଼ିବ ହେଲେ ଧ୍ୟାନ ସିଂ । କିନ୍ତୁ ନଭେମ୍ବର ୧୮୪୦ ମସିହାରେ ଖରକ୍ ସିଂହଙ୍କର ମୃତ୍ୟୁପରେ ଏକ ଅତି ଅସ୍ୱାଭାବିକ ଘଟଣା ଘଟିଲା । ପିତାଙ୍କର ମୁଖାଗ୍ନି ଦେବା ପରେ ରାଜବାଟିକୁ ଫେରିଆସିବା ସମୟରେ

ଦୁର୍ଗର ଗୋଟିଏ ଗେଟ୍ ତାଙ୍କ ଉପରେ ଭାଙ୍ଗିପଡ଼ିଲା ଏବଂ ଧ୍ୟାନ୍ ସିଂଙ୍କର ପୁତୁରା ଏବଂ ନେହାଲ୍ ସିଂହଙ୍କ ଜଣେ ବନ୍ଧୁଙ୍କର ମଧ୍ୟ ଘଟଣା ସ୍ଥଳରେ ମୃତ୍ୟୁ ହେଲା ଓ ନେହାଲ ସିଂହ କେତେ ଘଣ୍ଟା ଜୀବିତ ରହିବାପରେ ପ୍ରାଣତ୍ୟାଗ କଲେ । ଏହାପରେ ରଣଜିତ୍ ସିଂହଙ୍କର ଜଣେ ରକ୍ଷିତା ସ୍ତ୍ରୀର ପୁତ୍ର ଶେର୍ ସିଂହ ରାଜଗାଦି ଅଧିକାର କଲେ ଏବଂ ଡୋଗ୍ରା ଧ୍ୟାନ୍ ସିଂ ତାଙ୍କର ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ଯେତେବେଳେ ବ୍ରିଟିଶ୍ ସୈନ୍ୟବାହିନୀ ଆଫଗାନିସ୍ଥାନରେ ଘୋର ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ, ସେହି ସମୟରେ ଶେର୍ ସିଂହଙ୍କର କଠୋର ଶାସନ ପଞ୍ଜାବକୁ ଏକତ୍ରିତ କରି ରଖିଥିଲା ଓ ସେ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ କୌଣସି ପଦକ୍ଷେପ ନେଇ ନଥିଲେ । କିନ୍ତୁ ପରିସ୍ଥିତି ଅଧିକ ଦିନ ନିଶ୍ଚଳ ରହିଲା ନାହିଁ । ସେପ୍ଟେମ୍ବର ୧୮୪୩ ମସିହାରେ ଶିଖ୍ ନେତା ଅଜିତ୍ ସିଂହ ଷଣ୍ଢାୱାଲିଆ ଶେର୍ ସିଂହଙ୍କୁ ହତ୍ୟା କଲେ । ଅଜିତ୍ ସିଂହ ରାଜବାଟିକୁ ଫେରିବା ପଥରେ ଧ୍ୟାନ୍ ସିଂଙ୍କୁ ମଧ୍ୟ ଗିରଫ କରି ତାଙ୍କୁ ଫୋର୍ଟ ଭିତରକୁ ଟାଣି ନେଇ ହତ୍ୟା କରାଗଲା ।

ଅଜିତ୍ ସିଂହଙ୍କର ଏଇ ହତ୍ୟାର ବିଭୀଷିକା ଡୋଗ୍ରାମାନଙ୍କୁ ଉତ୍ତେଜିତ କଲା । ଧ୍ୟାନ ସିଂଙ୍କର ପୁତ୍ର ହୀରା ସିଂ ଓ ତାଙ୍କର ଭାଇ ସୁଚେତ୍ ସିଂ ଏକତ୍ର ହୋଇ ଲାହୋରରେ ଅଜିତ୍ ସିଂ ଓ ତାଙ୍କର ବିଶ୍ୱସ୍ତ ସୁରକ୍ଷା ବାହିନୀକୁ ହତ୍ୟା କଲେ ଏବଂ ରଣଜିତ୍ ସିଂହଙ୍କର ଜଣେ ରକ୍ଷିତା ରାଣୀ ଜିନ୍‌ଦନ୍‌ଙ୍କ ନାବାଳକ ପୁତ୍ର ଦାଲିପ୍ ସିଂହଙ୍କୁ ମହାରାଜା ଘୋଷଣା କଲେ ଓ ହୀରା ସିଂ ତାଙ୍କର ପ୍ରଧାନମନ୍ତ୍ରୀ ଦାୟିତ୍ୱରେ ରହିଲେ । ମୋଟାମୋଟି ଲାହୋର ଦରବାରରେ ଶିଖ୍ ଓ ହିନ୍ଦୁ ଡୋଗ୍ରାମାନଙ୍କର ଏହି ମିଳନରେ କୌଣସି ପକ୍ଷ ସନ୍ତୁଷ୍ଟ ନଥିଲେ । ଡୋଗ୍ରା ନେତା ଗୁଲାବ୍ ସିଂ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ହୋଇ ଜାମ୍ମୁରେ ନୂତନ ଜାଗିର ସ୍ଥାପନ କଲେ । ଶିଖ୍‌ନେତା ଷଣ୍ଢାୱାଲିଆ ଓ ରାଣୀ ଜିନ୍‌ଦନ୍‌ଙ୍କର ସମ୍ପର୍କୀୟମାନେ ଡୋଗ୍ରାମାନଙ୍କୁ ହଟାଇ ନିଜେ କ୍ଷମତା ଦଖଲ କରିବାକୁ ଚାହୁଁଥିଲେ । ଏଣେ ପ୍ରଧାନମନ୍ତ୍ରୀ ହୀରା ସିଂହ ପଣ୍ଡିତ ଜଲ୍ଲା ନାମକ ଜଣେ ବ୍ରାହ୍ମଣଙ୍କ ଦ୍ୱାରା ପରିଚାଳିତ ହୋଇ ଶିଖ୍‌ମାନଙ୍କର ବିଷଦୃଷ୍ଟିରେ ପଡ଼ିଥିଲେ । ଏହି ପଣ୍ଡିତ ଜଲ୍ଲା ଥିଲେ ଅତ୍ୟନ୍ତ ଉଦ୍ଧତ । ଏପରିକି ରାଣୀ ଜିନ୍‌ଦନ୍‌ଙ୍କର ଚରିତ୍ର ଉପରେ ଆକ୍ଷେପ କରିବାରୁ ଶିଖ୍‌ମାନେ ଏହାର ପ୍ରତିଶୋଧ ନେବାପାଇଁ ହୀରା ସିଂ ଓ ଏ ଉଦ୍ଧତ ବ୍ରାହ୍ମଣଙ୍କୁ ଲାହୋରରୁ ବିଦାୟ କଲେ ଏବଂ ସେମାନେ ଆତ୍ମରକ୍ଷାପାଇଁ ଜାମ୍ମୁର ଗୁଲାବ୍ ସିଂହଙ୍କ ନିକଟକୁ ପଳାୟନ କରୁଥିବା ସମୟରେ ସେମାନଙ୍କୁ ମଧ୍ୟ ହତ୍ୟା କରାଗଲା ।

ଜୁଲାଇ ୧୮୪୪ ମସିହାରେ ଲର୍ଡ଼ ହାର୍ଡ଼ିଞ୍ଜ ଭାରତରେ ପଦାର୍ପଣ କରି ଅନୁଭବ କଲେ ଯେ, ଲାହୋର ରାଜପରିବାରରେ ହତ୍ୟାର ଯେଉଁ ବିଭୀଷିକା ଚାଲିଛି, ତାହା ଫଳରେ ରଣଜିତ୍ ସିଂହଙ୍କର ଶିଖ୍ ସାମ୍ରାଜ୍ୟ ଆଉ ତିଷ୍ଠି ରହିବ ନାହିଁ ଏବଂ ପଞ୍ଜାବରେ କୌଣସି ଶକ୍ତିଶାଳୀ ଶିଖ୍ ସରକାର ପ୍ରତିଷ୍ଠା କରିବା ସମ୍ଭବ ହେବ ନାହିଁ । ଗୋଟିଏ ବିଷୟରେ ସେ ସ୍ଥିର ନିଶ୍ଚିତ ଥିଲେ ଯେ, ପଞ୍ଜାବରେ ଆକ୍ରମଣ କରିବାକୁ ହେଲେ ଯାଠାରୁ ବଳି ଅଧିକ ସୁବିଧା ସୁଯୋଗ ମିଳିବ ନାହିଁ । କିନ୍ତୁ ଏହି ହସ୍ତକ୍ଷେପ ପାଇଁ ଯଥେଷ୍ଟ ବେଶି ସାମରିକ ଶକ୍ତି ଓ ପ୍ରସ୍ତୁତିର ପ୍ରୟୋଜନ । ସେଇଥିପାଇଁ ୧୮୪୫ ମସିହା ବସନ୍ତ ଓ ଗ୍ରୀଷ୍ମ ଋତୁରେ ସେ ପଞ୍ଜାବର ଫିରୋଜପୁର, ଲୁଧିଆନା ଓ ଅମ୍ବାଲାରେ ଅବସ୍ଥାପିତ ସୈନ୍ୟବାହିନୀକୁ ଅଧିକ ଶକ୍ତିଶାଳୀ କରିବାକୁ ଉଦ୍ୟମ କଲେ । ପଞ୍ଜାବ ସୀମାନ୍ତରେ ପୂର୍ବରୁ ସନ୍ନିଳିତ ୧୩,୫୦୦ ସୈନ୍ୟଙ୍କ ପରିବର୍ତ୍ତେ ୩୨,୫୦୦ ସୈନ୍ୟଙ୍କୁ ଅବସ୍ଥାପିତ କରାଗଲା ଏବଂ ତାହା ସହିତ ସତ୍‌ଲେଜ୍ ନଦୀ ପାର୍ ହେବାପାଇଁ ଅଧିକ ସଂଖ୍ୟାରେ ନୌକା ଭେଳା ସମବେତ କରାଇଲେ ।

ଇଂରେଜମାନଙ୍କର ଉଦ୍ଦେଶ୍ୟ ସମ୍ପର୍କରେ ଶିଖ୍ ନେତାମାନେ ମଧ୍ୟ ସଚେତନ ଥିଲେ । ହୀରା ସିଂ ଓ ପଣ୍ଡିତ ଜଲ୍ଲାଙ୍କର ଦେହାନ୍ତ ପରେ ରାଣୀ ଜିନ୍‌ଦନ୍ ଓ ତାଙ୍କର ଭାଇ ଜୱାହୀର ସିଂ, ଉପପତି ଲାଲ୍ ସିଂଙ୍କ ସାହାଯ୍ୟରେ ଶାସନ କ୍ଷମତା ହାତକୁ ନେଲେ ଓ ଜୱାହୀର ସିଂଙ୍କୁ ପ୍ରଧାନମନ୍ତ୍ରୀ ନିଯୁକ୍ତ କଲେ । କିନ୍ତୁ ରଣଜିତ୍ ସିଂହଙ୍କର ଅନ୍ୟଜଣେ ରକ୍ଷିତାର ପୁତ୍ର ପେଶାୱାର ସିଂ ଏହି ନିଷ୍ପତ୍ତି ବିରୁଦ୍ଧରେ ପ୍ରତିବାଦ କରିବାରୁ ତାଙ୍କୁ ମଧ୍ୟ ହତ୍ୟା କରାଗଲା । ଶିଖ୍ ସୈନ୍ୟଙ୍କର ପଞ୍ଚାୟତ ଏହି ଘଟଣାରେ ଜୱାହୀରଙ୍କୁ ଦୋଷୀ ସାବ୍ୟସ୍ତ କରି ଜବାବ ଦେବା ନିମନ୍ତେ ହାଜର ହେବା ପାଇଁ ଆହ୍ୱାନ କଲେ । ଜୱାହୀର ସିଂ ଭୟରେ ବାଳକ ମହାରାଜା ଦାଲିପ୍ ସିଂଙ୍କୁ ତାଙ୍କ ସହିତ ହାତୀ ଉପରେ ବସାଇ କ୍ୟାଣ୍ଟନ୍‌ମେଣ୍ଟ ଅଭିମୁଖେ ଯାତ୍ରା କଲେ । କିନ୍ତୁ ଶିଖ୍‌ସେନା ଏ ଦୃଶ୍ୟରେ ପ୍ରତାରିତ ନ ହୋଇ ବାଳକ ମହାରାଜା ଦାଲିପ୍ ସିଂଙ୍କୁ ହାତୀ ଉପରୁ ଅଲଗା କରି ଜୱାହୀର ସିଂଙ୍କୁ ହତ୍ୟା କଲେ । କେତେ ସପ୍ତାହପାଇଁ ପଞ୍ଜାବରେ କେହି ଶାସନମୁଖ୍ୟ ରହିଲେ ନାହିଁ । ଗୁଲାବ୍ ସିଂଙ୍କୁ ଲାହୋର ଆସିବାକୁ ଶିଖ୍ ଦରବାରଙ୍କ ଆମନ୍ତ୍ରଣକୁ ସେ ପ୍ରତ୍ୟାଖ୍ୟାନ କଲେ । ହୀରା ସିଂ ଓ ଜୱାହୀର ସିଂଙ୍କ ଅନ୍ତିମଯାତ୍ରା ତାଙ୍କ ଆଗରେ ନାଚୁଥିଲା । ଗୁଲାବ୍ ସିଂ ଲାହୋର ଯିବା ପରିବର୍ତ୍ତେ ବ୍ରିଟିଶ୍‌ମାନଙ୍କ ସହ ଗୁପ୍ତ ମନ୍ତ୍ରଣା ଆରମ୍ଭ କଲେ ଓ ଯୁଦ୍ଧରେ ଇଂରେଜମାନଙ୍କୁ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଲେ ।

ସାଧାରଣ ଶିଖ୍ ସୈନିକ ତାଙ୍କର ନେତାମାନଙ୍କଠାରୁ ଅଧିକ ଦେଶପ୍ରେମୀ ଥିଲେ ଏବଂ ସେମାନେ ଯେକୌଣସି ପ୍ରକାରେ ସମ୍ଭାବିତ ବ୍ରିଟିଶ୍ ଆକ୍ରମଣରୁ ପଞ୍ଜାବକୁ ରକ୍ଷା କରିବାପାଇଁ ବଦ୍ଧପରିକର ଥିଲେ । ସତ୍‌ଲେଜ୍ ନଦୀରେ ଏତେ ସଂଖ୍ୟକ ନୌକାର ସମାବେଶ ସେମାନଙ୍କର ସନ୍ଦେହକୁ ଦୃଢ଼ୀଭୂତ କଲା । ଶିଖ୍ ସୈନ୍ୟମାନେ ଅନୁଭବ କଲେ ଯେ, ଯୁଦ୍ଧ ପରିଚାଳନା ପାଇଁ ପଞ୍ଚାୟତର ନିର୍ଦ୍ଦେଶ ଯଥେଷ୍ଟ ସହାୟକ ହେବ ନାହିଁ । ତେଣୁ ସେମାନେ ରାଣୀ ଜିନ୍‌ଦାନ୍‌ଙ୍କ ଉପପତି ଲାଲ୍ ସିଂଙ୍କୁ ପ୍ରଧାନମନ୍ତ୍ରୀ ଏବଂ ତେଜା ସିଂଙ୍କୁ ପ୍ରଧାନ ସେନାପତି ନିଯୁକ୍ତ କଲେ । ଯଦିଓ ଉଭୟଙ୍କର ମଧ୍ୟରୁ କେହି ବିଶ୍ୱାସଯୋଗ୍ୟ ନଥିଲେ ଏବଂ ସେମାନେ ମଧ୍ୟ ବ୍ରିଟିଶ ସାମରିକ ଅଫିସରଙ୍କ ସହିତ ଗୁପ୍ତ ମନ୍ତ୍ରଣାରେ ଜଡ଼ିତ ଥିଲେ । ତେଜା ସିଂ ଗୋଟିଏ ସୈନ୍ୟଦଳ ସହ ଫିରୋଜପୁରରେ ଅବସ୍ଥାପିତ ଲିଟ୍‌ଲରଙ୍କ ସାତହଜାର ସୈନ୍ୟଙ୍କୁ ବିଧ୍ୱଂସ କରିବାପାଇଁ ଅଭିଯାନ ଆରମ୍ଭ କଲେ । କାର୍ଯ୍ୟତଃ ସେ ଫିରୋଜପୁର ଉପରେ ଆକ୍ରମଣ ଆରମ୍ଭ କଲେ ନାହିଁ । ବରଂ ଇଂରେଜମାନଙ୍କ ସହଯୋଗ ପାଇଁ ଗୁପ୍ତବାର୍ତ୍ତା ପଠାଇଲେ । ଏ ମଧ୍ୟରେ ଲାଲ୍ ସିଂ ଗୋଟିଏ ବିରାଟ ସୈନ୍ୟଦଳ ଧରି ସାର୍ ହ୍ୟୁ ଗଫ୍‌ଙ୍କୁ ଫିରୋଜପୁର ଯିବାରେ ପ୍ରତିରୋଧ କରିବା ପାଇଁ ଉଦ୍ୟମ କଲେ । ଫିରୋଜପୁର୍‌ରୁ କୋଡ଼ିଏ ମାଇଲ୍ ଦୂର ମୁଡକିଠାରେ ବ୍ରିଟିଶ୍ ସୈନ୍ୟଙ୍କ ସହ ଭେଟ ହେଲା । ଏହି ଯୁଦ୍ଧରେ ଶିଖ୍‌ମାନେ ସମ୍ପୂର୍ଣ୍ଣ ପରାସ୍ତ ହେଲେ ଏବଂ ପନ୍ଦରଟି ବଡ଼ କମାଣ ହରାଇ ବିଶେଷ କ୍ଷତିଗ୍ରସ୍ତ ହେଲେ । ସେଦିନ ଡିସେମ୍ବର ମାସ ୨୧ ତାରିଖ । ବର୍ଷର ଦୀର୍ଘତମ ରାତ୍ରୀ । ସେନାପତି ଲିଟ୍‌ଲର ତେଜା ସିଂଙ୍କ ଅଜ୍ଞାତରେ କମାଣ୍ଡର-ଇନ୍-ଚିଫ୍ ଗଫ୍‌ଙ୍କ ସହିତ ମିଳିତ ହେଲେ । ଗଫ୍ ଲିଟ୍‌ଲର୍‌ଙ୍କ ଉପସ୍ଥିତିରେ ଆଶାନ୍ୱିତ ହୋଇ ତୁରନ୍ତ ଆକ୍ରମଣ ଆରମ୍ଭ କଲେ । ସେ ଭାବିଥିଲେ ସାମାନ୍ୟ ଗୋଳାବର୍ଷଣ ପରେ ସେ ଶିଖ୍ ପଦାତିକମାନଙ୍କ ଉପରେ ବିଜୟ ହାସଲ କରିବାକୁ ସମର୍ଥ ହେବେ । କିନ୍ତୁ ଇଂରେଜମାନଙ୍କର କ୍ଷୁଦ୍ର କମାଣଠାରୁ ଶିଖ୍‌ମାନଙ୍କର କମାଣ ଯଥେଷ୍ଟ ବଡ଼ ଓ ଶକ୍ତିଶାଳୀ ଥିଲା । ବ୍ରିଟିଶ୍ ସୈନ୍ୟମାନେ ପରାଜୟର ଆଶଙ୍କାରେ ଆତଙ୍କିତ ହେଲେ । ହାର୍ଡ଼ିଂଜ୍ ଅନୁଭବ କଲେ ଯେ, ଏ ଯୁଦ୍ଧରେ ପରାଜୟ ସୁନିଶ୍ଚିତ । କିନ୍ତୁ ହାର୍ଡ଼ିଂଜ୍ ଓ ଗଫ୍ ନିଷ୍ପତ୍ତି ନେଲେ ଯେ, ପରଦିନ ଦିବାଲୋକରେ ଶିଖ୍ ସୈନ୍ୟମାନେ ସୁସଜ୍ଜିତ ହେବା ପୂର୍ବରୁ ପ୍ରାତଃକାଳରୁ ଆକ୍ରମଣ ଆରମ୍ଭ କଲେ ହୁଏତ ସେମାନେ ଅତର୍କିତ ଆକ୍ରମଣର ସମ୍ମୁଖୀନ ହୋଇପାରିବେ ନାହିଁ । ସତକୁ ସତ ତାହାହିଁ ହେଲା । ଇଂରେଜମାନଙ୍କର ଆକ୍ରମଣ ସଫଳ ହେଲା । ସୂର୍ଯ୍ୟୋଦୟ ପୂର୍ବରୁ ଅତର୍କିତ

ଆକ୍ରମଣ ଫଳରେ ଶିଖ୍‌ମାନେ ଭୀଷଣ ଭାବରେ କ୍ଷତିଗ୍ରସ୍ତ ହୋଇ ତେସ୍ତରିଟି ବଡ଼ କମାଣ ଛାଡ଼ି ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ ।

କିନ୍ତୁ ଯୁଦ୍ଧକ୍ଷେତ୍ରରେ ଆନନ୍ଦ ଉଲ୍ଲାସର ପ୍ରଦର୍ଶନ ଦୀର୍ଘସ୍ଥାୟୀ ହୁଏନାହିଁ । ଏ କ୍ଷେତ୍ରରେ ତାହାହିଁ ହେଲା । ଅଳ୍ପ ସମୟପରେ ତେଜାସିଂ ତାଙ୍କର ସୈନ୍ୟମାନଙ୍କୁ ସୁସଂଗଠିତ କରି ସକାଳୁ ସକାଳୁ ପ୍ରତିଆକ୍ରମଣ ପାଇଁ ପ୍ରସ୍ତୁତ ହୋଇଗଲେ । କିନ୍ତୁ ବିଶ୍ୱାସଘାତକ ତେଜା ସିଂ ଦିନ ୧୧ଟା ପର୍ଯ୍ୟନ୍ତ ତାଙ୍କର କମାଣ ଧରି ଯୁଦ୍ଧ ପାଇଁ କେବଳ ପ୍ରସ୍ତୁତ ହୋଇ ରହିଲେ, ମାତ୍ର ଯଥେଷ୍ଟ ସମୟ ଗତ ହେବାପରେ ଶିଖ୍ ସୈନ୍ୟଙ୍କର ଗୁଳିଗୋଳାର ଆବାଜ ଶୁଭିଲା । ବ୍ରିଟିଶ୍ ବନ୍ଧୁକଧାରୀ ସୈନ୍ୟ ଜବାବ ଦେବା ପାଇଁ ପ୍ରସ୍ତୁତ ଥିଲେ ମଧ୍ୟ ତାଙ୍କର ଗୁଳିଗୋଳା ନିଃଶେଷ ହୋଇଯାଇଥିଲା । ମାତ୍ର ଗୋଳାବର୍ଷଣର ସାମାନ୍ୟ ଅଭିନୟ ପରେ ତେଜା ସିଂଙ୍କର ସୈନ୍ୟମାନେ ପଛଘୁଞ୍ଚା ଦେଲେ । ଇଂରେଜମାନଙ୍କର ଏହି ସଫଳତା ପାଇଁ ତେଜା ସିଂଙ୍କର ବିଶ୍ୱାସଘାତକତା ଥିଲା ମୁଖ୍ୟ କାରଣ । ଯୁଦ୍ଧର ଏହି ସଫଳତା ସତ୍ତ୍ୱେ ହାର୍ଡ଼ିଂଜ୍ ଅନୁଭବ କଲେ, ସେନାପତି ଗଫ୍‌ଙ୍କର ବ୍ୟକ୍ତିଗତ ସାହସ ଓ ଦୁର୍ଦ୍ଧର୍ଷତା ସତ୍ତ୍ୱେ ଗୋଟିଏ ଯୁଦ୍ଧ ପରିଚାଳନା କରିବାପାଇଁ ସେ ଅକ୍ଷମ । ଯାହାହେଉ ହାର୍ଡ଼ିଂଜ୍‌ଙ୍କ ମତରେ ଶିଖ୍ ସୈନ୍ୟମାନେ ଥିଲେ ଖୁବ୍ ସାହସୀ ଓ ଶକ୍ତିଶାଳୀ । ଭାରତୀୟ ସିପାହୀମାନେ ବସ୍ତୁତଃ କାବୁଲ୍ ବିପର୍ଯ୍ୟୟର କାହାଣୀ ଭୁଲି ନଥିଲେ ଏବଂ ବ୍ୟକ୍ତିଗତ ଭାବରେ ଶିଖ୍ ସୈନ୍ୟମାନଙ୍କର ସାମରିକ କଳାକୌଶଳ ପ୍ରଦର୍ଶନ ଉପରେ ସେମାନଙ୍କର ଗଭୀର ଆସ୍ଥା ଥିଲା । କିନ୍ତୁ ଶିଖ୍ ନେତା ଲାଲ୍ ସିଂ ଓ ତେଜା ସିଂଙ୍କର ବିଶ୍ୱାସଘାତକତା ଓ ଇଂରେଜମାନଙ୍କ ସହିତ ଗୁପ୍ତ ଚକ୍ରାନ୍ତ ହେତୁ ସେମାନଙ୍କୁ ବହୁ କ୍ଷେତ୍ରରେ ପରାଜୟ ସ୍ୱୀକାର କରିବାକୁ ପଡୁଥିଲା । ସତ୍‌ଲେଜ୍ ନଦୀ ଉପରେ ଗୋଟିଏ ପଣ୍ଟୁନ୍ ପୋଲ ନିର୍ମାଣ କରି ଶିଖ୍‌ମାନେ ଆଠହଜାର ସୈନ୍ୟ ଓ ସତୁରିଟି କମାଣ ସହ ଇଂରେଜମାନଙ୍କ ଉପରେ ଲୁଧିଆନା ନିକଟରେ ଆକ୍ରମଣ କଲେ । କିନ୍ତୁ ଫିରୋଜପୁର୍‌ରୁ ପ୍ରେରିତ ସାର୍ ହ୍ୟାରୀ ସ୍ମିଥ୍‌ଙ୍କ ନେତୃତ୍ୱରେ ଆସିଥିବା କ୍ଷୁଦ୍ର ସୈନ୍ୟବାହିନୀର ଆକ୍ରମଣରେ ଶିଖ୍‌ମାନେ ପରାଜିତ ହେଲେ ।

ଏ ମଧ୍ୟରେ ଫିରୋଜପୁରରେ ନବନିଯୁକ୍ତ ପଲିଟିକାଲ୍ ଏଜେଣ୍ଟ ହେନେରୀ ଲରେନ୍‌ସ, ଲାଲ ସିଂଙ୍କଠାରୁ ଶିଖ୍ ସେନାଙ୍କର ଅବସ୍ଥିତି ସମ୍ପର୍କରେ କେତେକ ଗୁପ୍ତ

ତଥ୍ୟ ସଂଗ୍ରହ କରି ଇଂରେଜ ସେନାଙ୍କୁ ତଦନୁଯାୟୀ ପ୍ରସ୍ତୁତ କରାଇଲେ । ଫେବ୍ରୁଆରୀ ଦଶ ତାରିଖ ଦିନ ଇଂରେଜମାନେ ପ୍ରତିଆକ୍ରମଣ ପାଇଁ ସୁସଜ୍ଜିତ ହେବା ପରେ ସକାଳୁ ସକାଳୁ ଆକାଶ କୁହେଳିକାଛନ୍ନ ହୋଇଗଲା । କେତେ ଘଣ୍ଟା ପରେ କୁହୁଡ଼ି ଅପସରିଯିବାପରେ ଇଂରେଜମାନେ ଆକ୍ରମଣ ଆରମ୍ଭ କଲେ ଏବଂ ଦୁଇଘଣ୍ଟାରୁ ଅଧିକ ସମୟ ଧରି ବ୍ରିଟିଶ୍ ସୈନ୍ୟମାନେ ଗୋଳାବର୍ଷଣ ଚାଲୁ ରଖିଲେ । ଏଇ ସମୟରେ ସମ୍ବାଦ ମିଳିଲା ଯେ, ଗୁଳିଗୋଳା ଶେଷ ହୋଇ ଆସିଲାଣି । ଏହି ଦୁଃସମ୍ବାଦରେ ତ୍ରସ୍ତ ନ ହୋଇ ସେନାପତି ଗଫ୍ କହିଥିଲେ, "ଭଗବାନ୍ ଆଶୀର୍ବାଦ କରନ୍ତୁ, ମୁଁ ଏଥର ବେୟନେଟ୍ ଦେଇ ଯୁଦ୍ଧ କରିବି ।" ସେ ଯାହାହେଉ ବ୍ରିଟିଶ୍ ସେନା ପକ୍ଷରୁ ଆକ୍ରମଣ ଚାଲୁ ରହିଲା ଓ ଶିଖ୍‌ମାନେ ସତ୍‌ଲେଜ୍ ନଦୀ ପାର୍ ହୋଇ ପଳାଇବାକୁ ଉଦ୍ୟମ କଲେ । ବିଶ୍ୱାସଘାତକ ତେଜ୍ ସିଂ, ପ୍ରଥମେ ପଣ୍ଟୁନ୍ ବ୍ରିଜ୍ ଦେଇ ପଳାୟନ କଲେ ଓ ତା'ପରେ ସୈନ୍ୟ ଓ ସେନାପତି ମିଶି ପଣ୍ଟୁନ୍ ବ୍ରିଜ୍ ଉପରେ ଏତେ ସଂଖ୍ୟାରେ ଭିଡ଼ କଲେ ଯେ, ସେମାନଙ୍କର ଓଜନଭାର ସହି ନପାରି ବ୍ରିଜ୍‌ଟି ଭାଙ୍ଗିପଡ଼ିଲା । ଫଳରେ ଚାଳକ ସେନାପତିମାନଙ୍କ ସହ ହଜାର ହଜାର ଶିଖ୍ ସୈନ୍ୟ ସତ୍‌ଲେଜ୍ ନଦୀରେ ବୁଡ଼ି ମଲେ ।

ଏହି ପର୍ଯ୍ୟାୟରେ ଜଣେ ଶିଖ୍ ଯୋଦ୍ଧାଙ୍କର ସ୍ମରଣୀୟ ବୀରତ୍ୱ ସମ୍ପର୍କରେ ଉଲ୍ଲେଖ କରାଯାଇପାରେ । ରଣଜିତ୍ ସିଂଙ୍କ ସେନାବାହିନୀରେ କାର୍ଯ୍ୟ କରିଥିବା ଶୁକ୍ଳକେଶ ବୃଦ୍ଧ ଶ୍ରୀ ଶ୍ୟାମ ସିଂ ଅଟାରିୱାଲା ପରାଜୟର ସମ୍ବାଦ ଶୁଣି ଘୋଷଣା କଲେ ଯେ, ପରାଜୟର ଗ୍ଳାନି ସହିବା ଅପେକ୍ଷା ସେ ଜୀବନ୍ତ ଅବସ୍ଥାରେ ଯୁଦ୍ଧ ଭୂମିରୁ ଫେରିବେ ନାହିଁ । କେତେଜଣ ସାହାଯ୍ୟକାରୀ ସୈନ୍ୟଙ୍କୁ ସାଙ୍ଗରେ ଧରି ସେ ରଣଭୂମିରେ ଉପସ୍ଥିତ ହେଲେ ଓ ସେହିଠାରେ ହିଁ ସଂଗ୍ରାମ କରି ପ୍ରାଣ ଦେଲେ ।

କେତେ ସପ୍ତାହ ପର୍ଯ୍ୟନ୍ତ ପଞ୍ଜାବର ଶାସନଗାଦିରେ କୌଣସି ମୁଖ୍ୟ ରହିଲେ ନାହିଁ । ଲାହୋର ଦରବାର ଜାମ୍ମୁରୁ ଗୁଲାବ ସିଂଙ୍କୁ ଆସିବପାଇଁ ଅନୁରୋଧ କଲେ । କିନ୍ତୁ ହୀରା ସିଂ ଓ ଜୱାହୀର ସିଂଙ୍କର ମୃତ୍ୟୁ ବିଭୀଷିକା ପରେ ସେ ଲାହୋର ଦରବାରର ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲେ । ଯେଉଁ କୋଡ଼ିଏ ହଜାର ଶିଖ୍ ସୈନ୍ୟ ସତ୍‌ଲେଜ୍ ନଦୀପାର ହୋଇ ୬୭ଟି କମାଣ ସହିତ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ, ସେମାନଙ୍କ ମଧ୍ୟରୁ ଅର୍ଦ୍ଧେକ ସୈନ୍ୟ ଯୁଦ୍ଧରେ ନିହତ ହୋଇଥିଲେ, କିମ୍ବା ସତ୍‌ଲେଜ୍‌ରେ

ବ୍ରିଜ୍ ଭାଙ୍ଗିପଡ଼ିବା ପରେ ପ୍ରାଣତ୍ୟାଗ କରିଥିଲେ । ଲାହୋର ଦରବାର ଅଧିକ ଶକ୍ତିକ୍ଷୟ ନ କରି ସନ୍ଧି କରିବା ନିମନ୍ତେ ଗୁଲାବ ସିଂଙ୍କ ଜରିଆରେ ପ୍ରସ୍ତାବ ପଠାଇଲେ । ଗଭର୍ଣ୍ଣର ଜେନେରାଲ୍ ହାର୍ଡିଂଜ୍ ପୂରା ପଞ୍ଜାବ ଦଖଲ କରିବାପାଇଁ ପ୍ରସ୍ତୁତ ନଥିଲେ । କିନ୍ତୁ ସେ ଏପରି କେତେଗୁଡ଼ିଏ ସର୍ତ୍ତ ବାଢ଼ିଲେ, ଯାହାଦ୍ୱାରା ଇଂରେଜମାନଙ୍କର ଯୁଦ୍ଧ ଖର୍ଚ୍ଚା ଭରଣା ହୋଇପାରିବ । ସନ୍ଧି ପ୍ରସ୍ତାବରେ ସର୍ତ୍ତ ରଖାଗଲା, ପଞ୍ଜାବର କେତେକ ଉର୍ବର ଅଞ୍ଚଳ ବିଶେଷତଃ ସତ୍‌ଲେଜ୍ ଓ ବେଆସ ନଦୀ ମଧ୍ୟରେ ଥିବା ଦୋଆବ୍ ଅଞ୍ଚଳକୁ ଇଂରେଜମାନେ ନିଜ ଅକ୍ତିଆର୍‌ରେ ରଖିବେ । ଶିଖ୍ ସୈନ୍ୟବାହିନୀ ତାଙ୍କର ସୈନ୍ୟ ସଂଖ୍ୟା କମାଇଦେବେ ଓ ଯୁଦ୍ଧ ସଂପର୍କୀୟ କ୍ଷତିପୂରଣ ବାବଦକୁ ପନ୍ଦରଲକ୍ଷ ପାଉଣ୍ଡ ଇଂରେଜ ସରକାରଙ୍କୁ ଦେବେ । ଶିଖ୍‌ମାନେ ଏହି ସର୍ତ୍ତମାନ ଗ୍ରହଣ କରିନେଲେ । ଗୁଲାବ୍ ସିଂ ଦାବିକଲେ ଯେ, ଏହି ସନ୍ଧିଚୁକ୍ତି କରାଇବା ହେତୁ ଲାହୋର ଦରବାରରେ ତାଙ୍କୁ ଯଥାବିଧି ସମ୍ମାନ ଦିଆଯାଉ । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ, ରଣଜିତ୍ ସିଂଙ୍କ ସମୟରୁ ଡୋଗ୍ରାମାନେ ଯେପରି ଲାହୋର ଦରବାରର ପ୍ରଧାନମନ୍ତ୍ରୀ ପଦରେ ରହି ଆସୁଛନ୍ତି, ସେ ସେହିପରି ଲାହୋର୍‌ରେ ଏହି ପଦରେ ଅବସ୍ଥାପିତ ହେବେ । କିନ୍ତୁ ରାଣୀ ଜିନ୍‌ଦାନ୍‌ଙ୍କର ଉପପତି ଲାଲ୍ ସିଂ ଓ ଅନ୍ୟମାନେ ଏପରି ଚାହୁଁ ନଥିଲେ । ଏଣୁ ଗୁଲାବ୍ ସିଂଙ୍କୁ ସନ୍ତୁଷ୍ଟ କରିବା ପାଇଁ ଲର୍ଡ଼ ହାର୍ଡ଼ିଂଜ୍ ସାଢ଼େ ସାତଲକ୍ଷ ପାଉଣ୍ଡ ମୂଲ୍ୟ ଗ୍ରହଣ କରି ଜାମ୍ମୁ ସହ କାଶ୍ମୀରର ମହାରାଜା ପଦ ବିକ୍ରୟ କରିଦେଲେ । ଲାହୋର ଦରବାରର ଖଜଣାଖାନା ଶୂନ୍ୟ ଥିଲା । କିନ୍ତୁ ଗୁଲାବ ସିଂ ଥିଲେ ଅତ୍ୟନ୍ତ ଧନଶାଳୀ । ସେ ଆନନ୍ଦରେ ଏ ପ୍ରସ୍ତାବ ଗ୍ରହଣ କରି ଜାମ୍ମୁର ଜଣେ ସାମାନ୍ୟ ସର୍ଦ୍ଦାର ବଦଳରେ ଜାମ୍ମୁ କାଶ୍ମୀରର ମହାରାଜା ପଦରେ ଅଧିଷ୍ଠିତ ହେଲେ । ସେହି କାଳରୁ କାଶ୍ମୀର ଡୋଗ୍ରାମାନଙ୍କର ଶାସନ ଅଧୀନରେ ରହିଲା । ଏ ସମସ୍ତ ସମସ୍ୟାର ସମାଧାନ ପରେ ଲାହୋରରେ ଗୋଟିଏ ବ୍ରିଟିଶ୍ ସୈନ୍ୟଦଳ ରଖିବା ପାଇଁ ଲାହୋର ଦରବାର ଅନୁରୋଧ କଲେ । କିନ୍ତୁ କାବୁଲ ବିପର୍ଯ୍ୟୟର ଅନୁଭୂତି ଦୃଷ୍ଟିରୁ ହାର୍ଡ଼ିଂଜ୍ ଏଥିରେ ସମ୍ମତ ନଥିଲେ । ଯାହାହେଉ ପରିଶେଷରେ ଦରବାରଙ୍କର ବାରମ୍ବାର ଅନୁରୋଧ ହେତୁ ଅନ୍ତତଃ ଗୋଟିଏ ବର୍ଷ ପାଇଁ ଲାହୋର ଚୁକ୍ତିରେ କେତେଗୁଡ଼ିଏ ନୂତନ ସର୍ତ୍ତ ଯୋଗ କରାଗଲା । ଯାହା ଫଳରେ ଲାହୋର ଦୁର୍ଗ ଓ ଅନ୍ୟ କେତେକ ଅଞ୍ଚଳରେ ବ୍ରିଟିଶ୍ ସୈନ୍ୟ ରହିବେ ବୋଲି ଉଭୟ ପକ୍ଷ ସ୍ୱୀକୃତ ହେଲେ । ଦରବାର ଆଶା କରୁଥିଲେ ଏହାଦ୍ୱାରା ପଞ୍ଜାବ ବ୍ୟାପାରରେ ବ୍ରିଟିଶ୍ ହସ୍ତକ୍ଷେପ ରହିବ ନାହିଁ ଏବଂ ସେମାନେ

ବାହ୍ୟଶତ୍ରୁ ଓ ଶିଖ୍ ସୈନ୍ୟଙ୍କର ପଞ୍ଚାୟତ ବିରୁଦ୍ଧରେ ଇଂରେଜଙ୍କ ସମର୍ଥନ ହାସଲ କରିପାରିବେ ।

ଏହାପରେ ହାର୍ଡିଂଜ୍ ଖରାମାସରେ ବିଶ୍ରାମପାଇଁ ଗଫ୍ଙ୍କ ସହିତ ସିମଳା ପ୍ରତ୍ୟାବର୍ତ୍ତନ କଲେ ଏବଂ ଲାହୋରରେ ରେସିଡେଣ୍ଟ ପ୍ରତିନିଧି ଭାବରେ ହେନେରୀ ଲରେନ୍ସ ଅବସ୍ଥାପିତ ହେଲେ । ଲରେନ୍ସଙ୍କର ଅନ୍ୟ ଦୁଇଭାଇ ମଧ୍ୟ ପଞ୍ଜାବର ବିଭିନ୍ନ ବିଭାଗର ଦାୟିତ୍ୱ ନେଲେ । ଲାହୋରରେ ଅବସ୍ଥାପିତ ହେନେରୀ ଲରେନ୍ସ କାଶ୍ମୀରରେ ଏକ ଦୁର୍ବିପାକର ସମ୍ମୁଖୀନ ହେଲେ । ପୂର୍ବରୁ ଦରବାର ଦ୍ୱାରା ନିଯୁକ୍ତ କାଶ୍ମୀରର ଗଭର୍ଣ୍ଣର ସେଖ୍ ଇମାମୁଦ୍ଦିନ୍ କ୍ଷମତା ହସ୍ତାନ୍ତର ନକରି ଇଂରେଜମାନଙ୍କ ଦ୍ୱାରା ନିଯୁକ୍ତ ମହାରାଜା ଗୁଲାବ ସିଂଙ୍କୁ ପ୍ରତିରୋଧ କଲେ । ହାର୍ଡିଂଜ୍ ଏ ସମ୍ବାଦ ଶୁଣି ତୁରନ୍ତ ଇମାମୁଦ୍ଦିନ୍ଙ୍କୁ ଜବତ୍ କରିବା ଉଦ୍ଦେଶ୍ୟରେ କାର୍ଯ୍ୟାନୁଷ୍ଠାନ ପାଇଁ ଆଦେଶ ଦେଲେ । କିନ୍ତୁ ବ୍ରିଟିଶ୍ ସୈନ୍ୟ କାଶ୍ମୀରରେ ପ୍ରବେଶ କରନ୍ତେ ଇମାମୁଦ୍ଦିନ ବିନା ପ୍ରତିରୋଧରେ ଆତ୍ମସମର୍ପଣ କଲେ ଏବଂ କେତେକ କାଗଜପତ୍ର ଦେଖାଇଲେ ଯେ, ଲାହୋର୍ର ଲାଲ୍ ସିଂଙ୍କ ନିର୍ଦ୍ଦେଶରେ ସେ ଗୁଲାବ୍ ସିଂଙ୍କୁ ପ୍ରତିରୋଧ କରୁଥିଲେ । ଲାହୋର୍ରେ ଅନୁଷ୍ଠିତ ସାଧାରଣ ଅନୁସନ୍ଧାନରୁ ଦେଖାଗଲା ଯେ, ଲାଲ୍ ସିଂଙ୍କ ବିରୁଦ୍ଧରେ ଏ ଅଭିଯୋଗ ସତ୍ୟ । ଏଣୁ ତାଙ୍କୁ ପ୍ରଧାନମନ୍ତ୍ରୀ ପଦରୁ ବିତାଡ଼ିତ କରି ଫିରୋଜପୁର ପଠାଇ ଦିଆଗଲା ଓ ତେଜ୍ ସିଂ ସେହି ପଦରେ ଅଧିଷ୍ଠିତ ହେଲେ । ମୋଟାମୋଟି ପଞ୍ଜାବ ସମସ୍ୟାର ଏକ ଅସ୍ଥାୟୀ ସମାଧାନ କରି ଠିକ୍ ତିନିବର୍ଷ ପରେ ହାର୍ଡିଂଜ୍ ନିଜ ଅନୁରୋଧରେ ଭାରତରୁ ବିଦାୟ ନେଲେ ।



# ସାମ୍ରାଜ୍ୟବାଦର ଧ୍ୱଜାଧାରୀ ଡେଲ୍‌ହାଉସୀ

ବ୍ରିଟିଶ୍ ସାମ୍ରାଜ୍ୟର ସୁରକ୍ଷା ଦୃଷ୍ଟିରୁ ବିଚାରକଲେ ଲର୍ଡ଼ ଡେଲ୍‌ହାଉସୀ ଥିଲେ ନିଶ୍ଚିତ ଭାବରେ ଜଣେ ଦୃଢ଼-ପ୍ରତିଜ୍ଞ ଓ ଦକ୍ଷ ପ୍ରଶାସକ । ଯେକୌଣସି ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବାପାଇଁ ସେ ଯଥାସମ୍ଭବ ଶକ୍ତି ପ୍ରୟୋଗ କରୁଥିଲେ । କିନ୍ତୁ ତାଙ୍କର ଦୋଷ ଥିଲା, ସେ ଅତ୍ୟନ୍ତ ସ୍ୱେଚ୍ଛାଚାରୀ ଓ ନିରଙ୍କୁଶ କ୍ଷମତାପ୍ରିୟ । ଊନବିଂଶ ଶତାବ୍ଦୀର ପ୍ରଥମ ଅର୍ଦ୍ଧ ଶତାବ୍ଦୀରେ ଯେତେଜଣ ବ୍ୟକ୍ତି ଗଭର୍ଣ୍ଣର ଜେନେରାଲ୍ ଦାୟିତ୍ୱ ଗ୍ରହଣ କରିଥିଲେ, ବେଣ୍ଟିକ୍‌ଙ୍କ ବ୍ୟତୀତ ଅନ୍ୟ କେହି ଭାରତବାସୀଙ୍କର ଶିକ୍ଷା, ସ୍ୱାସ୍ଥ୍ୟ ଓ ସାଂସ୍କୃତିକ ଉନ୍ନତିପାଇଁ କିଛି ପ୍ରକାର ଉଦ୍ୟମ କରିନଥିଲେ । ଲର୍ଡ଼ ଅକ୍‌ଲାଣ୍ଡ୍, ଏଲେନ୍‌ବରୋ ଓ ହାର୍ଡ଼ିଂଜ୍‌ଙ୍କ ପରି ଡେଲ୍‌ହାଉସୀ ମଧ୍ୟ ଥିଲେ ଜଣେ ନିପଟ ସାମ୍ରାଜ୍ୟବାଦୀ । ଲର୍ଡ଼ ହାର୍ଡିଂଜ୍ ଭାରତ ଛାଡ଼ିବା ପରେ ଡେଲ୍‌ହାଉସୀଙ୍କୁ କହିଥିଲେ, ଭାରତର ଅବସ୍ଥା ଏପରି ଶାନ୍ତ ଓ ଶୃଙ୍ଖଳିତ ଯେ, ବର୍ଷ ବର୍ଷ ଧରି ତାଙ୍କୁ ଗୋଟିଏ ଗୁଳି ମଧ୍ୟ ଚଳାଇବାକୁ ପଡ଼ିବ ନାହିଁ । କିନ୍ତୁ ଭାରତରେ ପହଞ୍ଚିବାର ତିନିମାସ ମଧ୍ୟରେ ପଞ୍ଜାବର ମୁଲତାନରେ ସଂଘର୍ଷ ଆରମ୍ଭ ହେଲା ।

ମୁଲତାନର ଶାସକ ଥିଲେ ସୱାନ୍ ମଲ୍ ଏବଂ ରେଭିନ୍ୟୁ ସଂଗ୍ରହରେ ସେ ଥିଲେ ଦକ୍ଷ । କିନ୍ତୁ ରାଜସ୍ୱର ଅଧିକାଂଶ ଭାଗ ଦରବାରକୁ ନ ଦେଇ ସେ ଗର୍ଭସ୍ଥ କରୁଥିଲେ । ୧୮୪୪ ସାଲ୍‌ରେ ତାଙ୍କର ମୃତ୍ୟୁ ପରେ ତାଙ୍କ ପୁତ୍ର ଦେୱାନ୍ ମୂଳରାଜ୍ ଶାସକ ଗାଦି ଅଧିକାର କଲେ । କିନ୍ତୁ ତାଙ୍କର ସ୍ୱତ୍ୱାଧିକାର ସ୍ୱୀକାର କରିବା ସଂକ୍ରାନ୍ତରେ ଦରବାର ସହିତ ତାଙ୍କର ବିବାଦ ଆରମ୍ଭ ହେଲା ଓ ଦରବାର ତାଙ୍କୁ ବିତାଡ଼ିତ କରି ଜେନେରାଲ୍ କହ୍ନାନ ସିଂଙ୍କୁ ମୁଲତାନର ଗଭର୍ଣ୍ଣର ପଦରେ ନିଯୁକ୍ତ କଲେ । ଲାହୋର୍‌ରେ ନିଯୁକ୍ତ ବ୍ରିଟିଶ୍ ପ୍ରତିନିଧି ଦୁଇଜଣ ନବନିଯୁକ୍ତ ଲେଫ୍‌ଟନାଣ୍ଟ୍ ସହ କହ୍ନାନ୍ ସିଂଙ୍କ ନେତୃତ୍ୱରେ ଦରବାରର ପାଞ୍ଚଶହ ସିପାହୀଙ୍କୁ ମୂଳରାଜଙ୍କୁ ଜବତ କରିବା ପାଇଁ ମୁଲତାନ ପଠାଇଲେ । ମୂଳରାଜ ଅବଶ୍ୟ ସେମାନଙ୍କୁ ଦୁର୍ବ୍ୟବହାର ନକରି ପରଦିନ ସ୍ଥାନୀୟ

ଦୁର୍ଗକୁ ନେଇଗଲେ ଓ ସେଠାରେ ସେହି ଦୁର୍ଗକୁ କହ୍ୱାନ ସିଂଙ୍କୁ ହସ୍ତାନ୍ତର କଲେ । ସେମାନେ ଦୁର୍ଗରୁ ଫେରିବା ମାତ୍ରେ, ହଠାତ୍ କେତେକ ସୈନ୍ୟ ଓ ସ୍ଥାନୀୟ ଲୋକେ ମୂଲରାଜଙ୍କ ପ୍ରତି ବ୍ୟବହାରରେ ଉତ୍କ୍ଷିପ୍ତ ହୋଇ ସେହି ବ୍ରିଟିଶ୍ ଅଫିସର୍ ଓ କେତେକ ସିପାହୀଙ୍କୁ ନିର୍ମମ ଭାବରେ ହତ୍ୟା କଲେ । ପରଦିନ କହ୍ୱାନ ସିଂଙ୍କ ସିପାହୀମାନଙ୍କ ଉପରେ ମୂଲରାଜଙ୍କ ଇଙ୍ଗିତରେ ଆକ୍ରମଣ ଆରମ୍ଭ ହେଲା । ପରିସ୍ଥିତିର ସୁଯୋଗ ନେଇ ମୂଲରାଜ ଲାହୋର ଦରବାର ଓ ବସ୍ତୁତଃ ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଲାହୋରର ପଲିଟିକାଲ ଏଜେଣ୍ଟଙ୍କଠାରୁ ମୁଖ୍ୟ ସେନାପତି ଗଫ୍‌ଙ୍କ ନିକଟକୁ ତୁରନ୍ତ ସାହାଯ୍ୟ ପଠାଇବା ପାଇଁ ଅନୁରୋଧ କରାଗଲା । କିନ୍ତୁ ସିମଲାର ଶୀତଳ ଜଳବାୟୁରେ ବିଶ୍ରାମ ନେଉଥିବା ସେନାପତି ଗଫ୍ ଗ୍ରୀଷ୍ମଋତୁ ପ୍ରାରମ୍ଭରେ ଆକ୍ରମଣ ଆରମ୍ଭ ନକରି ଶରତ ଋତୁ ପର୍ଯ୍ୟନ୍ତ ସ୍ଥଗିତ ରଖିବା ପାଇଁ ନିର୍ଦ୍ଦେଶ ଦେଲେ ଏବଂ ଆଠହଜାର ୟୁରୋପୀୟ ସୈନ୍ୟ ସମେତ ମୋଟ ଛବିଶି ହଜାର ସୈନିକଙ୍କୁ ମୁଲତାନ୍ ପଠାଇବା ପାଇଁ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ଅନୁରୋଧ କଲେ । ପ୍ରତିଆକ୍ରମଣ ବିଳମ୍ବ କରିବା ସଂକ୍ରାନ୍ତରେ ଗଫ୍‌ଙ୍କର ନିଷ୍ପତ୍ତି ଗ୍ରହଣ କରିବା ଛଡ଼ା ନୂତନ ଗଭର୍ଣ୍ଣର ଜେନେରାଲ୍ ଡେଲ୍‌ହାଉସୀଙ୍କର ଅନ୍ୟ ଗତି ନଥିଲା । କାରଣ ଭାରତର ପରିସ୍ଥିତି ସମ୍ପର୍କରେ ତାଙ୍କର ଜ୍ଞାନ ଥିଲା ଅତି ସୀମିତ । କିନ୍ତୁ ବିଳମ୍ବ କରିବା ହେତୁ ଗଫ୍‌ଙ୍କ ବିରୁଦ୍ଧରେ ଭାରତର ଶାସକ ଗୋଷ୍ଠୀ ମଧ୍ୟରେ ଓ ଇଂଲଣ୍ଡରେ ତୀବ୍ର ଜନମତ ସୃଷ୍ଟି ହେଲା । କେତେକ ସମ୍ବାଦପତ୍ର ପରିହାସ କରି ଲେଖିଲେ "ବ୍ରିଟିଶ୍ ସୈନ୍ୟମାନେ କେବଳ ଶୀତ ଋତୁରେ ଯୁଦ୍ଧ କରିବାକୁ ସକ୍ଷମ ।"

ମୂଲରାଜଙ୍କ ଦ୍ୱାରା ନିହତ ଦୁଇଜଣ ଲେଫ୍‌ଟନାଣ୍ଟ୍ ସେମାନେ ଆହତ ହେବା ବିଷୟରେ ଯେଉଁ ପତ୍ରଟି ଲେଖିଥିଲେ, ତାହା ଡେରା ଘତେ ଖାଁରେ ଅବସ୍ଥାପିତ ହରବର୍ଟ ଏଡ୍‌ୱାର୍ଡସ୍‌ଙ୍କର ହସ୍ତଗତ ହେଲା । ପୂର୍ବତନ ଲାହୋର ରାଜପ୍ରତିନିଧି ହେନ୍‌ରୀ ଲରେନ୍‌ସ ବାଛିଥିବା ଯୁବ ଅଫିସରମାନଙ୍କ ମଧ୍ୟରୁ ଏଡ୍‌ୱାର୍ଡସ୍ ଥିଲେ ଜଣେ ଦକ୍ଷ ସାମରିକ ଅଫିସର୍ । ଅବଶ୍ୟ ସେ ସମୟରେ ଏଡ୍‌ୱାର୍ଡସ୍ ରାଜସ୍ୱ ଆଦାୟ କରିବାପାଇଁ ନିଯୁକ୍ତ ହୋଇଥିଲେ । କିନ୍ତୁ ସେ ବ୍ରିଟିଶ ଲେଫ୍‌ଟନାଣ୍ଟ ଆହତ ହେବା ପତ୍ର ପାଇବାକ୍ଷଣି ତୁରନ୍ତ ତାଙ୍କ ସାଙ୍ଗରେ ଥିବା ଶିଖ୍ ସୈନ୍ୟଦଳ, କେତେକ କମାଣ ଓ ଅଳ୍ପ ସଂଖ୍ୟକ ପଠାଣ ସୈନିକ, ଏପରି ମୋଟ ୧୫୦୦ ସିପାହୀଙ୍କୁ ଧରି ଆହତଙ୍କୁ ସାହାଯ୍ୟ କରିବା ପାଇଁ ଅଗ୍ରସର ହେଲେ । ୨୫ ଏପ୍ରିଲ୍‌ରେ ସିନ୍ଧୁ ନଦୀ ପାର ହୋଇ ସେ ମୂଲରାଜଙ୍କର

ଅଧୀନସ୍ଥ ଲିହାରେ ପହଞ୍ଚି ଶୁଣିଲେ ଯେ, ଉଭୟ ଲେଫ୍‌ଟନାଣ୍ଟ ଆଗ୍ନେୟୁ ଓ ଅଣ୍ଡରସନ୍ ମୃତ୍ୟୁ ବରଣ କରିଛନ୍ତି । ତେଣୁ ଏହି କ୍ଷୁଦ୍ର ସୈନ୍ୟବାହିନୀକୁ ଧରି ସେ ମୁଲତାନ ଅଭିମୁଖେ ଯାତ୍ରା କରିବା ପରିବର୍ତ୍ତେ, ମୁଲତାନ୍ ଯୁଦ୍ଧରେ ଲାହୋର ଦରବାରଠାରୁ ସାହାଯ୍ୟ ପାଇଁ ଅନୁରୋଧ କଲେ ।

ମୂଲରାଜ ବସ୍ତୁତଃ ଥିଲେ ଜଣେ 'କାଗଜ ବାଘ' ବା ପେପର ଟାଇଗର୍ । ଏଡ୍‌ୱାର୍ଡ଼ସ ସିନ୍ଧୁ ନଦୀର ଅପର ପାର୍ଶ୍ୱକୁ ଯାଇ ଡେରା ଇସ୍‌ମାଇଲ୍ ଖାଁ ଜିଲ୍ଲାର ଜେନେରାଲ୍ କଟ୍‌ଲ୍ୟାଣ୍ଡ୍ ଓ ତାଙ୍କର ଦୁଇ ରେଜିମେଣ୍ଟ ସୈନ୍ୟଙ୍କ ସହ ମିଳିତ ହେଲେ । ଏଡ୍‌ୱାର୍ଡ଼ସ ଲାହୋର ପ୍ରତିନିଧିଙ୍କୁ ଅନୁରୋଧ କରି ବାହାୱାଲପୁରର ନବାବ ଓ ତାଙ୍କର କ୍ଷୁଦ୍ର ପଠାଣ ସୈନ୍ୟବାହିନୀର ସାହାଯ୍ୟ ଗ୍ରହଣ କଲେ । ଏହାପରେ ପୁନର୍ବାର ମୁଲତାନର ଦକ୍ଷିଣରେ ସିନ୍ଧୁନଦୀ ପାର ହୋଇ ମୂଲରାଜଙ୍କ ଉପରେ ଯେଉଁ ଆକ୍ରମଣ କଲେ, ତହିଁରେ ମୂଲରାଜ ପରାଜିତ ହୋଇ ସହର ମଧ୍ୟରେ ଆଶ୍ରୟ ନେଲେ । ଏଣେ ଲାହୋର ରାଜପ୍ରତିନିଧି କ୍ୟୁରୀ ମୂଲରାଜଙ୍କ ପରାଜୟରେ ଆନନ୍ଦିତ ହୋଇ ଶେର୍ ସିଂ ଅତାରିୱାଲାଙ୍କ ନେତୃତ୍ୱରେ ଦରବାରର ଗୋଟିଏ କ୍ଷୁଦ୍ର ସୈନ୍ୟବାହିନୀକୁ ମୁଲତାନ ଯିବା ପାଇଁ ନିର୍ଦ୍ଦେଶ ଦେଲେ । ଭିତିରିଆ ସମ୍ବାଦ ମିଳିଲା ଯେ, ଲାହୋରରେ ଅବସ୍ଥାପିତ ଭାରତୀୟ ସିପାହୀଙ୍କ ମଧ୍ୟରେ ବିବାଦ ଓ ବିଶୃଙ୍ଖଳା ସୃଷ୍ଟି କରିବା ଚକ୍ରାନ୍ତ ହେଉଛି । ଅନୁସନ୍ଧାନରୁ ଜଣାପଡ଼ିଲା, ଏ ଷଡ଼ଯନ୍ତ୍ର ପଛରେ ଅଛନ୍ତି ରାଣୀ ଜିନ୍‌ଦାନ୍ । କ୍ୟୁରୀ ବିନା ଦ୍ୱିଧାରେ ରାଣୀ ଜିନ୍‌ଦାନ୍‌ଙ୍କୁ ଲାହୋର୍‌ରୁ ବିତାଡ଼ିତ କରି ପେନ୍‌ସନ୍ ସହ ବନାରସ୍ ପଠାଇଦେଲେ । ଲାହୋର୍‌ରେ ଅବସ୍ଥାପିତ ଜେନେରାଲ୍ ହୁଇସ୍‌ଙ୍କ ନେତୃତ୍ୱରେ ଗୋଟିଏ ୟୁରୋପିଆନ୍ ସୈନ୍ୟ ଦଳକୁ ସେନାପତି ଶେର୍ ସିଂ ଅତାରିୱାଲାଙ୍କ ଶିଖ୍ ସୈନ୍ୟବାହିନୀ ସହ ମୁଲତାନକୁ ପ୍ରେରଣ କରାଗଲା । କିନ୍ତୁ ଶେର୍ ସିଂ ପ୍ରଥମେ ଇଂରେଜମାନଙ୍କ ଉପରେ ଅତିମାତ୍ରାରେ ଆସ୍ଥା ପ୍ରକାଶ କରି ପରେ ସେପ୍ଟେମ୍ବର ୧୪ ତାରିଖରେ ତାଙ୍କର ସାତହଜାର ସୈନ୍ୟଙ୍କ ସହ ମୂଲରାଜଙ୍କ ସହିତ ଯୋଗ ଦେଲେ । ଶେର୍ ସିଂଙ୍କର ଏହି ବିଶ୍ୱାସଘାତକତା ହେତୁ ମୁଲତାନ ଯୁଦ୍ଧ ଅବସ୍ଥା ଇଂରେଜମାନଙ୍କ ପାଇଁ ଜଟିଳ ହୋଇ ଉଠିଲା । ଶେର୍ ସିଂ ମୁକ୍ତ ଭାବରେ ପଞ୍ଜାବରୁ ଫିରିଙ୍ଗିମାନଙ୍କୁ ବିତାଡ଼ିତ କରିବା ପାଇଁ ଘୋଷଣା କଲେ । ଝେଲମ୍ ନଦୀର ଅପରପାର୍ଶ୍ୱରେ ଥିବା ଉତ୍ତର ପଶ୍ଚିମ ପ୍ରଦେଶର ଶାସକ ଛତର ସିଂ ପୁତ୍ର ଶେର୍ ସିଂଙ୍କୁ ସାହାଯ୍ୟ କରିବା ପାଇଁ ପେଶାୱାର୍‌ରୁ ଧାଇଁ ଆସିଲେ । ପରିସ୍ଥିତି ଅଧିକ ସଙ୍କଟାପନ୍ନ ହେଲା ।

ଏହି ସମୟରେ ଗ୍ରୀଷ୍ମ ଋତୁର ଅବସାନ ବେଳକୁ ପଞ୍ଜାବ ଅଭିମୁଖେ ଯାତ୍ରା କରିବା ପାଇଁ କୋଡ଼ିଏ ହଜାର କମ୍ପାନୀ ସୈନ୍ୟ ୬୦ଟି କମାଣ ସହିତ ଫିରୋଜପୁର୍‌ରେ ପହଞ୍ଚିଲେ । ନଭେମ୍ବର ଆରମ୍ଭରେ ପ୍ରଧାନ ସେନାପତି ହବ୍ ଯୁଦ୍ଧର ଦାୟିତ୍ୱ ନେବାପାଇଁ ଫିରୋଜ୍‌ପୁରରେ ଉପସ୍ଥିତ ହେଲେ । ଯୁଦ୍ଧ କ୍ଷେତ୍ରରେ ଗଫ୍‌ଙ୍କର ଉପସ୍ଥିତି ଇଂରେଜମାନଙ୍କ ମଧ୍ୟରେ ଚମକ ସୃଷ୍ଟି କଲା । ଏ ମଧ୍ୟରେ ଶେର୍ ସିଂ ଓ ମୂଲରାଜଙ୍କ ମଧ୍ୟରେ ବିବାଦ ହେତୁ, ଶେର୍ ସିଂ ମୁଲତାନ ପରିତ୍ୟାଗ କରି ବ୍ରିଟିଶ୍‌ମାନଙ୍କର ସହାୟତା ପାଇଁ ଭିତିରି ଉଦ୍ୟମ ଆରମ୍ଭ କଲେ । ସେ ଉଦ୍ୟମ ସଫଳ ହେବା ପୂର୍ବରୁ ଗଫ୍‌ଙ୍କର ଗୋଟିଏ ସେନାଦଳର ଆକ୍ରମଣରେ ଶେର୍ ସିଂ ଚେନାବ ନଦୀ କୂଳରୁ ଝେଲମ୍ ଅଭିମୁଖେ ପଳାୟନ କଲେ । ମାତ୍ର ଯୁଦ୍ଧ ପରିଚାଳନାରେ ଗଫ୍‌ଙ୍କର କେତେକ ତ୍ରୁଟି ହେତୁ ବ୍ରିଟିଶ୍‌ମାନଙ୍କୁ ବହୁ କ୍ଷତିର ସମ୍ମୁଖୀନ ହେବାକୁ ପଡ଼ିଲା ଏବଂ ପ୍ରାୟ ୩୦୦୦ ଅଫିସର୍ ଓ ସୈନ୍ୟ ଏ ଯୁଦ୍ଧରେ ନିହତ ହେଲେ । ଅନ୍ୟ କେତେକ ସ୍ଥାନରେ ଗଫ୍ କ୍ଷୁଦ୍ର କ୍ଷୁଦ୍ର ସଫଳତା ହାସଲ କଲେ ମଧ୍ୟ, ଡେଲ୍‌ହାଉସୀ ତାଙ୍କର କାର୍ଯ୍ୟକଳାପକୁ ନାପସନ୍ଦ କଲେ ଓ ଯୁଦ୍ଧ କଳାକୌଶଳରେ ସେ ପୂର୍ବର ଦକ୍ଷତା ହରାଇଛନ୍ତି ବୋଲି ବ୍ରିଟିଶ୍ ସରକାରଙ୍କୁ ଏକ ପତ୍ର ଦେଲେ । ଏ ପତ୍ର ପହଞ୍ଚିବାର ୪୮ ଘଣ୍ଟା ମଧ୍ୟରେ ଗଫ୍‌ଙ୍କୁ ଅବ୍ୟାହତି ଦେଇ ତାଙ୍କ ସ୍ଥାନରେ ସାର୍ ଚାର୍ଲସ୍ ନେପିଅର୍‌ଙ୍କୁ କମାଣ୍ଡର-ଇନ୍-ଚିଫ୍ ନିଯୁକ୍ତ କରାଗଲା ।

ଏ ମଧ୍ୟରେ ଜେନେରାଲ୍ ହୁଇସ୍ ମୂଲ୍‌ତାନ୍ ବିରୁଦ୍ଧରେ ତାଙ୍କର ଅଭିଯାନ ଆରମ୍ଭ କଲେ । ଗୋଟିଏ ସପ୍ତାହ ପରେ ମୂଲ୍‌ରାଜ୍ ଆତ୍ମସମର୍ପଣ କଲେ । କିନ୍ତୁ ଶିଖ୍ ସୈନ୍ୟମାନେ ପୁନର୍ବାର ମିଳିତ ହୋଇ ଛତର୍ ସିଂଙ୍କର କ୍ଷୁଦ୍ର ସେନାବାହିନୀ ସହ ଯୋଗ ଦେଲେ । ପେଶାୱାରକୁ ପୁନଶ୍ଚ ଆଫଗାନିସ୍ଥାନକୁ ଫେରାଇଦେବା ସର୍ତ୍ତରେ ଶିଖ୍‌ମାନେ ଅମୀର ଦୋସ୍ତ ମହମ୍ମଦଙ୍କର ସାହାଯ୍ୟ ଭିକ୍ଷା କଲେ ଏବଂ ଦୋସ୍ତ ମହମ୍ମଦ ମଧ୍ୟ ୧୫୦୦ ଅଶ୍ୱାରୋହୀ ସୈନ୍ୟ ଶିଖ୍ ସୈନ୍ୟମାନଙ୍କ ସାହାଯ୍ୟ ପାଇଁ ତୁରନ୍ତ ଯୋଗାଇଦେଲେ । ଆଫଗାନ୍ ଓ ଶିଖ୍‌ମାନଙ୍କ ମଧ୍ୟରେ ଦୀର୍ଘ ଗୋଟିଏ ଶତାବ୍ଦୀର ବିବାଦ ପରେ ଏପରି ଅସ୍ୱାଭାବିକ ମିଳନ କେତେ ଦିନ ସ୍ଥାୟୀ ହେବ, ତାହା ଥିଲା ଏକ ପ୍ରଶ୍ନବାଚୀ ।

ଶିଖ୍‌ମାନେ ଜେନେରାଲ୍ ହୁଇସ୍‌ଙ୍କର ଉପସ୍ଥିତି ପୂର୍ବରୁ ଗଫ୍‌ଙ୍କୁ ଯୁଦ୍ଧରେ ସମ୍ମୁଖୀନ ହେବା ପାଇଁ ଉଦ୍ୟମ କଲେ । କିନ୍ତୁ ଡେଲ୍‌ହାଉସୀଙ୍କ ନିର୍ଦ୍ଦେଶ ଅନୁଯାୟୀ ଜେନେରାଲ୍

ହୁଇସ୍ ତାଙ୍କ ସହ ମିଳିତ ହେବା ପର୍ଯ୍ୟନ୍ତ, ଗଫ୍‌ଙ୍କୁ ଅପେକ୍ଷା କରିବାକୁ ହେଲା । ଶିଖ୍ ସୈନ୍ୟମାନେ ଚେ଼ନାବ ନଦୀ କୂଳେ କୂଳେ ଯାତ୍ରା କରି ଲାହୋର ଆକ୍ରମଣ କରିବା ଯୋଜନାର ଅଭିନୟ କଲେ । କିନ୍ତୁ ଏଥର ଇଂରେଜମାନଙ୍କର କମାଣ ଆକ୍ରମଣରୁ ବର୍ତ୍ତିବାର ସମ୍ଭାବନା ନଥିଲା । ଗୁଜୁରାଟ ସହରର ଅଳ୍ପ ଦୂରରେ ଇଂରେଜ ଓ ଶିଖ୍ ସେନା ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ଇଂରେଜଙ୍କ ଆର୍ଟିଲେରୀ ଆକ୍ରମଣରେ ଶିଖ୍ କମାଣଗୁଡ଼ିକୁ ସହଜରେ ନିସ୍ତବ୍ଧ କରିଦିଆଗଲା । ଶିଖ୍‌ମାନେ ନିଜର ବନ୍ଧୁକ ଓ କମାଣ ଆଦି ଅସ୍ତ୍ରଶସ୍ତ୍ର ଓ ଯୁଦ୍ଧର ଅନ୍ୟାନ୍ୟ ଉପକରଣମାନ ପରିତ୍ୟାଗ କରି ବିଶୃଙ୍ଖଳ ଭାବରେ ପଳାୟନ କଲେ । ପୁନର୍ବାର ମିଳିତ ହୋଇ ଯୁଦ୍ଧର ସମ୍ମୁଖୀନ ହେବାପାଇଁ ତାଙ୍କର ସାହସ ହେଲାନାହିଁ । ମାର୍ଚ୍ଚ ୧୩ ତାରିଖରେ ସବୁ ଶିଖ୍ ସୈନିକ ସମୂହଭାବରେ ଅସ୍ତ୍ର ପରିତ୍ୟାଗ କଲେ । ଦୋସ୍ତ ମହମ୍ମଦଙ୍କୁ ମଧ୍ୟ ଖାଇବର ଗିରିପଥ ଦେଇ ଆଫଗାନିସ୍ଥାନକୁ ତଡ଼ି ଦିଆଗଲା । ଏହି ବିଦାୟକାଳୀନ ଦୃଶ୍ୟ ଥିଲା ଅତି ଦୁଃଖଦାୟକ ଓ ମର୍ମାନ୍ତିକ । ଅନେକ ପୁରୁଖା ଶିଖ୍ ସୈନ୍ୟ ଅଶ୍ରୁପୂର୍ଣ୍ଣ ନୟନରେ ଚିତ୍କାର କଲେ "ଆଜି ମହାରାଜା ରଣଜିତ୍ ସିଂଙ୍କର ମୃତ୍ୟୁ ହେଲା ।"

ସେହିଦିନଠାରୁ ପଞ୍ଜାବ ସମ୍ପୂର୍ଣ୍ଣଭାବରେ ବ୍ରିଟିଶ୍‌ମାନଙ୍କର ଅଧୀନସ୍ଥ ହେଲା ଓ ଶିଖ୍ ରାଜତ୍ୱ ଲୋପ ପାଇଲା । ଶିଖ୍‌ମାନଙ୍କର ସ୍ୱାଧୀନତା ଅପହରଣ କରି ଡେଲ୍‌ହାଉସୀ ସନ୍ତୁଷ୍ଟ ନଥିଲେ । ଯେତେସବୁ ଅଞ୍ଚଳ ଲର୍ଡ଼ ହାର୍ଡ଼ିଞ୍ଜ୍‌ଙ୍କ ନିର୍ଦ୍ଦେଶରେ ନାବାଳକ ମହାରାଜା ଦାଲିପ୍ ସିଂଙ୍କ କର୍ତ୍ତୃତ୍ୱରେ ରହିଥିଲା, ବ୍ରିଟିଶ୍‌ମାନେ ସେ ସବୁ ଅଧିକାର କଲେ । ଏକଦା ମୋଗଲ୍ ସମ୍ରାଟଙ୍କର ରାଜମୁକୁଟରେ ବିରାଜିତ ବିଶ୍ୱବିଖ୍ୟାତ କୋହିନୂର ହୀରା, ଯାହାକୁ ଆଫଗାନ୍‌ମାନେ ଦିଲ୍ଲୀ ଆକ୍ରମଣ କରି ମୋଗଲ୍ ବାଦ୍‌ଶାହଙ୍କଠାରୁ ଅପହରଣ କରିଥିଲେ, ସେହି ହୀରାଖଣ୍ଡ ମହାରାଜା ରଣଜିତ୍ ସିଂ ଆଫଗାନ ଅନ୍ତଃଯୁଦ୍ଧରେ ଆଶ୍ରୟପ୍ରାର୍ଥୀ ବାଦ୍‌ଶାହ ଶାହାସୁଜାଙ୍କଠାରୁ କରାୟତ୍ତ କରିଥିଲେ । ବ୍ରିଟିଶ୍‌ମାନେ ସେହି କୋହିନୂର ହୀରାଖଣ୍ଡ ଅପହରଣ କରି ମହାରାଣୀ ଭିକ୍ଟୋରିଆଙ୍କୁ ପ୍ରଦାନ କରିଥିଲେ । ଏବେ ମଧ୍ୟ ସେହି କୋହିନୂର ରାଣୀ ଏଲିଜାବେଥ୍ (ଦ୍ୱିତୀୟ)ଙ୍କ ମୁକୁଟରେ ବିରାଜମାନ କରୁଅଛି । ପଞ୍ଜାବ ଯୁଦ୍ଧର ଏହି ସଫଳ ପରିସମାପ୍ତି ଫଳରେ ଡେଲ୍‌ହାଉସୀ ବହୁ ଭାବରେ ସମ୍ମାନିତ ହୋଇଥିଲେ । ଡେଲ୍‌ହାଉସୀଙ୍କୁ ମାର୍କ୍ୱିସ୍ ଉପାଧି ଓ କମାଣ୍ଡର୍-ଇନ୍-ଚିଫ୍ ଗଫ୍‌ଙ୍କୁ ତାଙ୍କର ନାନାଦି ତ୍ରୁଟି ସତ୍ତ୍ୱେ, ଭାଇସ୍ କାଉଣ୍ଟ୍ ପଦରେ ବିଭୂଷିତ କରାଯାଇଥିଲା ।

ଏହାପରେ ଗଫ୍‌ଙ୍କର ଉତ୍ତରାଧିକାରୀ ସିନ୍ଧୁ ଯୁଦ୍ଧର ବିଜେତା ଚାର୍ଲସ ନେପିଅର୍ ୬୮ ବର୍ଷ ବୟସରେ ଆସି ଭାରତରେ ପହଞ୍ଚିଲେ । ସେ ଥିଲେ ଅତ୍ୟନ୍ତ କଳହପ୍ରିୟ ଓ ଉପରିସ୍ଥ କର୍ମକର୍ତ୍ତାଙ୍କ ପ୍ରତି ଅବଜ୍ଞାସୂଚକ ବ୍ୟବହାର ପ୍ରଦର୍ଶନ କରିବାରେ ଧୁରନ୍ଧର । ଇଂଲଣ୍ଡ ଛାଡ଼ିବା ପୂର୍ବରୁ ସେ ଡେଲ୍‌ହାଉସୀଙ୍କ ପରେ ଗଭର୍ଣ୍ଣର ଜେନେରାଲ୍ ପଦ ପାଇଁ ଲାଳାୟିତ ଥିଲେ ମଧ ତାଙ୍କୁ ଇଂରେଜ ସରକାର ସେ ରକମର ପ୍ରତିଶ୍ରୁତି ଦେଇନଥିଲେ । ଭାରତରେ ପହଞ୍ଚିଲା ପରେ ସେ ଯୁଦ୍ଧର ପରିସମାପ୍ତି ଅବଲୋକନ କରି ଅନୁଭବ କଲେ ଯେ, ଏଣିକି ଯୁଦ୍ଧରେ ଆଉ ଜୟତିଳକ ହାସଲ କରିବାର ସୁଯୋଗ ନାହିଁ । ଏଣୁ ଶାସନ କର୍ତ୍ତୃତ୍ୱ ପ୍ରତି ତାଙ୍କର ଲୋଲୁପ ଦୃଷ୍ଟି ପଡ଼ିଲା । ପଞ୍ଜାବର ଶାସନ ଦାୟିତ୍ୱ ଲୋଭରେ ପଞ୍ଜାବ ଶାସନ ଦାୟିତ୍ୱରେ ଥିବା ତିନିଜଣିଆ ବୋର୍ଡ଼ ବିରୁଦ୍ଧରେ ନିନ୍ଦା ରଟନା ଆରମ୍ଭ କଲେ ଏବଂ ଡେଲ୍‌ହାଉସୀଙ୍କୁ ସେହି ମର୍ମରେ ପତ୍ର ଲେଖିଲେ । ସେ ତାଙ୍କ ପତ୍ରରେ ସୂଚନା ଦେଇଥିଲେ ଯେ, ପଞ୍ଜାବରେ ସାମରିକ ଶାସନ ପ୍ରଚଳିତ ନ ହେଲେ ପୁଣି ବିଦ୍ରୋହ ମୁଣ୍ଡ ଟେକିବାର ସମ୍ଭାବନା ଅଛି । ସେ ସହକାରୀ କର୍ମକର୍ତ୍ତାମାନଙ୍କ ପାଖରେ ପୁଣି ଥରେ ଆଫଗାନ୍ ଉପରେ ଆକ୍ରମଣ କରିବା ସମ୍ପର୍କରେ ନିଜର ଚିନ୍ତାଧାରା ପ୍ରକାଶ କରିଥିଲେ । ଏ ପ୍ରକାର ମତିଗତି ଡେଲ୍‌ହାଉସୀଙ୍କୁ ସହ୍ୟ ହେଲାନାହିଁ ଏବଂ ଲଣ୍ଡନରେ କମ୍ପାନୀର ବୋର୍ଡ଼ ଅଫ୍ ଡାଇରେକ୍ଟରମାନେ ମଧ ଏପରି ଯୁଦ୍ଧରୁ ନିବୃତ୍ତି ପାଇଁ ପରାମର୍ଶ ଦେଲେ ।

କିନ୍ତୁ ପଞ୍ଜାବରେ ଶିଖ୍‌ମାନଙ୍କ ଦ୍ୱାରା ବିଦ୍ରୋହ ଦେଖାଦେବା ପରିବର୍ତ୍ତେ କମ୍ପାନୀର ସୈନ୍ୟବାହିନୀ ମଧରେ ଅସେନ୍ତାଷର ବହ୍ନି ଜଳିବାକୁ ଆରମ୍ଭ କଲା । ସିନ୍ଧ୍, ପଞ୍ଜାବ ଆଦି ଭାରତର ବାହ୍ୟ ଅଞ୍ଚଳକୁ ଯୁଦ୍ଧ ପାଇଁ ପ୍ରେରିତ ହେଲେ ସିପାହୀମାନଙ୍କୁ ଅଧିକ ଦରମା ଓ ଭତ୍ତା ଦିଆଯାଉଥିଲା । ପଞ୍ଜାବ ଯୁଦ୍ଧର ସମାପ୍ତି ପରେ ଏହି ଅଧିକ ବେତନ ଓ ଭତ୍ତା ସମ୍ପୂର୍ଣ୍ଣ କାଟି ଦିଆଗଲା । ସେଇଥିପାଇଁ ପଞ୍ଜାବରେ ଅବସ୍ଥାପିତ ସିପାହୀମାନଙ୍କ ମଧରେ ଅସନ୍ତୋଷ ଦେଖାଦେଲା । ଜୁଲାଇ ୧୮୪୯ ମସିହାରେ ରାୱଲପିଣ୍ଡିରେ ଦୁଇ ରେଜିମେଣ୍ଟ ସିପାହୀ ସେମାନଙ୍କର ଦରମା ଗ୍ରହଣ କରିବା ପାଇଁ ଅସ୍ୱୀକାର କଲେ ଏବଂ ଆଶଙ୍କା ହେଲା ପଞ୍ଜାବରେ ଥିବା ଅନ୍ୟ ରେଜିମେଣ୍ଟମାନଙ୍କରେ ଏହି ବ୍ୟାଧି ବ୍ୟାପି-ଯାଇପାରେ ।

ରାୱଲପିଣ୍ଡିରେ ଥିବା ସାମରିକ କର୍ତ୍ତା ସାର୍ କଲିନ୍ କ୍ୟାମ୍ପବେଲ୍‌ଙ୍କୁ ଗୁପ୍ତ ନିର୍ଦ୍ଦେଶ ଦିଆଗଲା ଯେ, ଆବଶ୍ୟକ ହେଲେ ବିଦ୍ରୋହୀ ସିପାହୀମାନଙ୍କୁ ୟୁରୋପୀୟ ସୈନ୍ୟଙ୍କ

ସାହାଯ୍ୟରେ ଗୁଳି କରି ଜବତ କରିପାରିବେ । କିନ୍ତୁ ଏପରି ବଳ ପ୍ରୟୋଗର ଆବଶ୍ୟକତା ପଡ଼ିଲା ନାହିଁ । କେବଳ ଧମକରେ ସିପାହୀମାନେ ବେତନ ଗ୍ରହଣ କଲେ ଓ ମାତ୍ର ୧୨ ଜଣ ସିପାହୀଙ୍କୁ ଚାକିରିରୁ ବରଖାସ୍ତ କରାଯାଇଥିଲା । ଦିଲ୍ଲୀରେ ଥିବାବେଳେ ସିପାହୀଙ୍କୁ ସତ୍‌ଲେଜ୍ ନଦୀପାର୍ ହୋଇ ଆଗକୁ ଯିବାପାଇଁ ଆଦେଶ ଦିଆଯିବା ସତ୍ତ୍ୱେ ସେମାନେ ସତ୍‌ଲେଜ୍ ପାର୍ ହେବାପାଇଁ ଅନିଚ୍ଛା ପ୍ରକାଶ କଲେ । ଅନ୍ୟ କେତେକ ସିପାହୀ ଦଳ ଅଧିକ ଦରମା ନଦେଲେ ପଞ୍ଜାବ ନଯିବା ପାଇଁ ଷଡ଼ଯନ୍ତ୍ର କରୁଥିବାର ସୂଚନା ମିଳିଲା । ଏହି ପ୍ରକାରର ବିଶୃଙ୍ଖଳା ୱାଜିରାବାଦ ଏବଂ ଅମୃତସରରେ ମଧ୍ୟ ଦେଖାଦେଇଥିଲା । କିନ୍ତୁ ଏହି ବିଦ୍ରୋହକୁ ନେପିଅର୍‌ଙ୍କ ଆଦେଶ ଅନୁଯାୟୀ କୌଣସିମତେ ଦମନ କରାଗଲା ଏବଂ ଅମୃତସରର ସିପାହୀମାନଙ୍କୁ କାର୍ଯ୍ୟରୁ ବରଖାସ୍ତ କରାଗଲା ।

ନେପିଅର୍‌ଙ୍କର ଏହି ପ୍ରକାରର ଦୃଢ଼ କାର୍ଯ୍ୟକ୍ରମକୁ ଡେଲ୍‌ହାଉସୀ ଅବଶ୍ୟ ସମର୍ଥନ କରୁଥିଲେ । କିନ୍ତୁ ନେପିଅର୍ ହଠାତ୍ ନିଷ୍ପତ୍ତି ନେଲେ ଯେ, ଦରମାରେ ଏହି ରିହାତିକୁ ପୁନର୍ବାର ଚାଲୁ କରାଯିବ । ତଦ୍ୱାରା ସିପାହୀମାନଙ୍କ ଅସନ୍ତୋଷ ଦୂର ହେବ । ତାଙ୍କ ସହିତ ପରାମର୍ଶ ନକରି କମାଣ୍ଡର୍-ଇନ୍-ଚିଫ୍‌ଙ୍କର ଏପରି ନିଷ୍ପତ୍ତିକୁ ସେ ଅଗ୍ରାହ୍ୟ କରିବାକୁ ଉଚିତ ମନେ କଲେନାହିଁ । କିନ୍ତୁ ଡେଲ୍‌ହାଉସୀ ନେପିଅର୍‌ଙ୍କୁ ଜଣାଇଦେଲେ ଯେ, ଗଭର୍ଣ୍ଣର୍ ଜେନେରାଲ୍ ଯେ କି ସୈନ୍ୟବାହିନୀର ସୁପ୍ରିମ୍ କମାଣ୍ଡର୍, ତାଙ୍କ ବିନା ଅନୁମତିରେ ସିପାହୀମାନଙ୍କର ଦରମା ହାର ସେ ପରିବର୍ତ୍ତନ କରିପାରିବେ ନାହିଁ ଏବଂ ତାଙ୍କ ମତାମତ ମଧ୍ୟ ଲଣ୍ଡନରେ କମ୍ପାନୀର ବୋର୍ଡ଼ ଅଫ୍ ଡାଇରେକ୍ଟର ଓ ସରକାରଙ୍କୁ ଜଣାଇଦେଲେ । ମଇ ମାସ ୧୮୪୯ ମସିହାରେ ନେପିଅର୍ ଭାରତକୁ ଆସି ୧୮୫୦ ମସିହା ଶେଷ ଭାଗରେ ଭାରତରୁ ବିଦାୟ ନେଲେ । ତାଙ୍କର ଯୁଦ୍ଧଖୋର୍ ନିଶା ଓ ଔଦ୍ଧତ୍ୟ କମ୍ପାନୀ ଓ ବ୍ରିଟିଶ୍ ସରକାରଙ୍କ ନିକଟରେ ଅଧିକ ଦିନ ସହ୍ୟ ହେଲାନାହିଁ ।



# ସାମ୍ରାଜ୍ୟ ବିସ୍ତାର

ପଞ୍ଜାବ ଅଧିକାର କଲାପରେ ଡେଲ୍‌ହାଉସୀ ବ୍ରହ୍ମଦେଶ ଉପରେ ନଜର ପକାଇଲେ । ଅତି ସାମାନ୍ୟ କାରଣରୁ ବ୍ରହ୍ମଦେଶ ସହିତ ପୁନର୍ବାର ଯୁଦ୍ଧ ଆରମ୍ଭ ହେଲା । ବ୍ରିଟିଶ ବ୍ୟବସାୟୀମାନେ ରେଙ୍ଗୁନ୍‌ର ଶାସକ ଗୋଷ୍ଠୀଠାରୁ ଦୁର୍ବ୍ୟବହାର ପାଉଛନ୍ତି ବୋଲି ବାରମ୍ବାର ଅଭିଯୋଗ ହେଉଥିଲା । ୧୮୫୧ ମସିହା ଶେଷ ଆଡକୁ ଏହି ବ୍ୟବସାୟୀମାନେ ସରକାରଙ୍କ ଆଗରେ ସେମାନଙ୍କର ଅଭିଯୋଗର ବିବରଣୀ ପେଶ୍ କଲେ । ଡେଲ୍‌ହାଉସୀ ତୁରନ୍ତ ଏକ ଯୁଦ୍ଧ ଜାହାଜରେ ନୌସେନାପତି ଲାମ୍ବର୍ଟଙ୍କୁ କେତେକ ନୌଭେଳା ସହ ରେଙ୍ଗୁନ୍‌ର ଗଭର୍ଣ୍ଣରଙ୍କ ସହିତ ଆଲୋଚ଼ନା କରିବା ପାଇଁ ପଠାଇଲେ ଏବଂ ସେମାନଙ୍କ ପ୍ରତି ଆଦେଶ ଥିଲା ଯେ, ଗଭର୍ଣ୍ଣର ଯଦି ଆଲୋଚ଼ନାରେ ସହଯୋଗ ନ କରନ୍ତି, ତାହେଲେ ରାଜଧାନୀ ଆଭାରେ ରାଜାଙ୍କ ସହିତ ଏହି ଅଭିଯୋଗଗୁଡ଼ିକ ସମ୍ପର୍କରେ ଆଲୋଚ଼ନା କରିବେ । ରେଙ୍ଗୁନ୍‌ର ଗଭର୍ଣ୍ଣର ଲାମ୍ବର୍ଟଙ୍କ ସହ ଆଲୋଚ଼ନା କରିବାକୁ ଆଗ୍ରହ ପ୍ରକାଶ କଲେନାହିଁ । ବରଂ ଆଲୋଚ଼ନା କରିବା ପାଇଁ କରଛଡ଼ା ଦେଲେ । ତେଣୁ ଲାମ୍ବର୍ଟଙ୍କ ବିଚାରରେ ଯୁଦ୍ଧ ଅବଶ୍ୟମ୍ଭାବୀ ହୋଇପଡ଼ିଲା । ଡେଲ୍‌ହାଉସୀ ମୋଟ ୬,୦୦୦ ସୈନ୍ୟ ପ୍ରେରଣ କରିବାପାଇଁ ନିଷ୍ପତ୍ତି ନେଲେ, ଅର୍ଦ୍ଧେକ ସୈନ୍ୟ ମାଡ୍ରାସ୍ ରେଜିମେଣ୍ଟରୁ, ବାକି ଅର୍ଦ୍ଧେକ ବଂଗଳା ବାହିନୀରୁ । କିନ୍ତୁ ବଂଗଳାରେ ଅବସ୍ଥାପିତ ସିପାହୀମାନେ ସମୁଦ୍ର ପାର୍ ହୋଇ ରେଙ୍ଗୁନ୍ ଯିବା ପାଇଁ ଅନିଚ୍ଛୁକ ହେଲେ । ସେମାନେ କେବଳ ସ୍ଥଳପଥରେ ଆରାକାନ୍ ପର୍ଯ୍ୟନ୍ତ ଯିବା ପାଇଁ ସମ୍ମତ ହେଲେ । ପ୍ରଥମ ବର୍ମା ଯୁଦ୍ଧରେ ଠିକ୍ ଏହି କାରଣରୁ କଲିକତାରେ ସିପାହୀମାନଙ୍କୁ ଯେପରି ଗୁଳି କରି ଦଣ୍ଡ ପ୍ରଦାନ କରାଯାଇଥିଲା, ତା'ର ପୁନରାବୃତ୍ତି କରିବାକୁ ଗଭର୍ଣ୍ଣର ଜେନେରାଲ କୁଣ୍ଠିତ ଥିଲେ । ଏଣୁ କେବଳ ଶୃଙ୍ଖଳା ରକ୍ଷା ଦୃଷ୍ଟିରୁ ସେ ବଙ୍ଗଳାର ଅସନ୍ତୁଷ୍ଟ ସିପାହୀମାନଙ୍କୁ ଆରାକାନ ପରିବର୍ତ୍ତେ ଢାକା ପର୍ଯ୍ୟନ୍ତ ପଠାଇଦେଲେ । ତେଣୁ ଡେଲ୍‌ହାଉସୀ ଲଣ୍ଡନ କର୍ତ୍ତୃପକ୍ଷଙ୍କ ସମ୍ମତିକ୍ରମେ ବ୍ରହ୍ମଦେଶର ରାଜଧାନୀ ଆଭା ପର୍ଯ୍ୟନ୍ତ ନଯାଇ ପେଗୁ ପ୍ରଦେଶ ଦଖଲ କରିନେବାକୁ ସ୍ଥିର କଲେ ।

ଜେନେରାଲ ଗଡଓ୍ୱିନ୍‌ଙ୍କ ନେତୃତ୍ୱରେ ବ୍ରିଟିଶ ସୈନ୍ୟମାନେ ରେଙ୍ଗୁନ୍‌ରୁ ଇରାବତୀ ନଦୀରେ ଉତ୍ତରକୁ ଯୁଦ୍ଧ ଜାହାଜରେ ଅଭିଯାନ ଆରମ୍ଭ କଲେ । ଆଭାଠାରୁ ୪୦୦ ମାଇଲ୍ ଦୂର ପ୍ରୋମ ଓ ପେଗୁ ସହର ଇଂରେଜମାନଙ୍କର ଦଖଲକୁ ଆସିଲା ଓ ସେହିଠାରେ ବର୍ମାର ପ୍ରଧାନ ସେନାପତି ବାନ୍ଦୁଲା ଆତ୍ମସମର୍ପଣ କଲେ । ଡିସେମ୍ବର ୨୦ ତାରିଖ ୧୮୫୨ ମସିହାରେ ବ୍ରିଟିଶମାନେ ଘୋଷଣା କଲେ ଯେ, ସେହିଦିନଠାରୁ ବ୍ରହ୍ମଦେଶର ପେଗୁ ପ୍ରଦେଶ ବ୍ରିଟିଶ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ବ୍ରହ୍ମଦେଶର ରାଜା ପ୍ରଥମେ ଏ ଘୋଷଣାକୁ ଗ୍ରହଣ କରି ନଥିଲେ ବା ଏ ସମ୍ପର୍କରେ ଉଭୟ ପକ୍ଷ ମଧ୍ୟରେ କୌଣସି ଚୁକ୍ତି ସ୍ୱାକ୍ଷରିତ ହୋଇ ନଥିଲା । କିଛିଦିନ ପରେ ଆଭାର ରାଜା ସମ୍ବାଦ ପଠାଇଲେ ଯେ, ପେଗୁ ଓ ରେଙ୍ଗୁନ୍‌ରେ ଇଂରେଜମାନଙ୍କର କର୍ତ୍ତୃତ୍ୱରେ ସେ ହସ୍ତକ୍ଷେପ କରିବେ ନାହିଁ । ଏହିଠାରେ ଦ୍ୱିତୀୟ ବର୍ମା ଯୁଦ୍ଧ ଶେଷ ହେଲା ।

ଏତଦ୍ ବ୍ୟତୀତ କେତେକ ଆଭ୍ୟନ୍ତରୀଣ ସମସ୍ୟା ପ୍ରତି ଡେଲ୍‌ହାଉସୀ ବିଶେଷ ଦୃଷ୍ଟିପାତ କଲେ । ଭାରତର କୌଣସି ରାଜ୍ୟର ରାଜା ବା ଶାସକ ନିଃସନ୍ତାନ ହୋଇ ପ୍ରାଣତ୍ୟାଗ କରୁଥିଲେ, "ଡକ୍ଟ୍ରିନ୍ ଅଫ୍ ଲ୍ୟାପ୍‌ସ" ନୀତି ପ୍ରୟୋଗ କରି ସେ ମୃତ ଶାସକଙ୍କର ପାଳିତ ପୁତ୍ର ବା ଉତ୍ତରାଧିକାରୀକୁ ସ୍ୱୀକୃତି ନଦେଇ ଉକ୍ତ ରାଜ୍ୟକୁ ବ୍ରିଟିଶ ଶାସନାଧୀନ ଅଞ୍ଚଳ ରୂପେ ଘୋଷଣା କଲେ । ଅନେକେ ମନେକଲେ ଯେ, ଏହି ନୀତି ପ୍ରୟୋଗ କରିବା ଫଳରେ ଦିନେ ସମସ୍ତ ଭାରତୀୟ ଅଞ୍ଚଳ ଇଂରେଜମାନଙ୍କ ଖାସ୍ ଦଖଲକୁ ଆସିଯିବ । ଏହି ପ୍ରକ୍ରିୟାରେ ଡେଲ୍‌ହାଉସୀଙ୍କ ସମୟରେ ସାତଟି ରାଜ୍ୟ ନିଜର ଅସ୍ତିତ୍ୱ ହରାଇଥିଲେ । ମହାରାଷ୍ଟ୍ରର କ୍ଷୁଦ୍ର ରାଜ୍ୟ ସତାରା, ଶିବାଜୀଙ୍କ ବଂଶଧର ଓ ଉତ୍ତରାଧିକାରୀମାନଙ୍କ ଦ୍ୱାରା ଶାସିତ ହେଉଥିଲା । ତତ୍‌କାଳୀନ ଶାସକ ରାଜା ପ୍ରତାପ ସିଂ ଜଣେ ଦକ୍ଷ ସୁଶାସକ ଥିଲେ । କିନ୍ତୁ ଇଂରେଜମାନଙ୍କ ବିରୁଦ୍ଧରେ ସିପାହୀମାନଙ୍କୁ ଉତ୍ତେଜିତ ଓ ଅସନ୍ତୁଷ୍ଟ କରିବା ଅଭିଯୋଗରେ ୧୮୩୯ ମସିହାରେ ତାଙ୍କୁ ରାଜ୍ୟରୁ ବିତାଡ଼ିତ କରାଯାଇ ବନାରସରେ ରଖାଯାଇଥିଲା ଓ ସେ ସେହି ବନାରସରେ ୧୮୪୭ ମସିହାରେ ପ୍ରାଣତ୍ୟାଗ କଲେ । ସେ ଅପୁତ୍ରିକ ଥିଲେ, ୧୮୩୯ ମସିହାରେ ପ୍ରତାପ ସିଂଙ୍କ ବିତାଡ଼ନ ପରେ ତାଙ୍କ ଭାଇ ଅପା ସାହିବଙ୍କୁ ରାଜଗାଦି ଗ୍ରହଣ କରିବାକୁ ସ୍ୱୀକୃତି ଦିଆଗଲା । ସେ ମଧ୍ୟ ଥିଲେ ଅପୁତ୍ରିକ । ୧୮୪୮ ମସିହାରେ ମୃତ୍ୟୁ ବରଣ କରିବାର କେତେ ସମୟ ପୂର୍ବରୁ ସେ ରୋଗଶଯ୍ୟାରେ ଏକ ଦତ୍ତପୁତ୍ର ଗ୍ରହଣ କରିଥିଲେ । ଲଣ୍ଡନ କର୍ତ୍ତୃପକ୍ଷଙ୍କ ପରାମର୍ଶକ୍ରମେ ଡେଲ୍‌ହାଉସୀ ଏହି ଦତ୍ତପୁତ୍ର

ଗ୍ରହଣକୁ ସ୍ୱୀକୃତି ଦେଲେ ନାହିଁ । ଶେଷ ମରାଠା ରାଜ୍ୟ ସତାରା କମ୍ପାନୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା ।

ଗତ ୧୦୦ ବର୍ଷ ଧରି ହାଇଦ୍ରାବାଦର ନିଜାମମାନେ ରାଜୁତି କରିବାପରେ ରାଜ୍ୟ ଶାସନରେ କୌଣସି ଉନ୍ନତି ହୋଇନଥିଲା, ବରଞ୍ଚ ପ୍ରଜାମାନେ ନିଜାମଙ୍କ ଅତ୍ୟାଚାରରେ ଦିନୁଦିନ ଅଧିକ ସନ୍ତୁଳିତ ହେଲେ । ଡେଲ୍‌ହାଉସୀଙ୍କ ସମୟରେ ହାଇଦ୍ରାବାଦ୍‌ର ଆର୍ଥିକ ଅବସ୍ଥା ଏତେ ଦୁର୍ବଳ ହୋଇପଡ଼ିଲା ଯେ, ସେ ସେଠାରେ ଅବସ୍ଥାପିତ ଇଂରେଜ ସେନାବାହିନୀର ଖର୍ଚ୍ଚା ବାବଦ ଦେୟ ମଧ ଦେବାକୁ ଅକ୍ଷମ ହେଲେ । ଏ ସମ୍ପର୍କରେ ଉଭୟ ଏଲେନ୍‌ବରୋ ଓ ହାର୍ଡ଼ିଂଜ୍ ନିଜାମଙ୍କୁ ପୂର୍ବରୁ ସତର୍କ କରିଥିଲେ ମଧ ଡେଲ୍‌ହାଉସୀଙ୍କ ସମୟକୁ ଏହି ଦେୟ ପାଞ୍ଚଲକ୍ଷ ପାଉଣ୍ଡରେ ପହଞ୍ଚିଥିଲା । ହାଇଦ୍ରାବାଦର ରେସିଡେଣ୍ଟ ଜେନେରାଲ୍ ଫ୍ରେଜର ପ୍ରସ୍ତାବ ଦେଲେ ଯେ, ନିଜାମଙ୍କ ଦଖଲରେ ଥିବା ସମସ୍ତ ଅଞ୍ଚଳଗୁଡ଼ିକୁ ସେ ବ୍ରିଟିଶ୍ ସରକାରଙ୍କ ନିକଟରେ କେତେ ବର୍ଷ ପାଇଁ ବନ୍ଧକ ରଖନ୍ତୁ । କିନ୍ତୁ ଡେଲ୍‌ହାଉସୀ ଏରକମ ପ୍ରସ୍ତାବ ଗ୍ରହଣ କରିବା ପାଇଁ ସମ୍ପୂର୍ଣ୍ଣ ଅନିଚ୍ଛୁକ ଥିଲେ । ତାଙ୍କ ମତରେ କୌଣସି ଦେଶୀୟ ରାଜ୍ୟରେ ଅବସ୍ଥାପିତ ସେନାବାହିନୀର ଖର୍ଚ୍ଚା ଦାଖଲ କରିବାକୁ ଯଦି ସେ ରାଜ୍ୟର ଶାସନକର୍ତ୍ତା ଅକ୍ଷମ ହୁଅନ୍ତି, ତାହେଲେ ସେଠାରୁ ସୈନ୍ୟବାହିନୀକୁ ପ୍ରତ୍ୟର୍ପଣ କରାଯାଇପାରେ । କେବଳ ଶାସନ ପ୍ରଜାବିରୋଧୀ ଓ ଅତ୍ୟାଚାର- ପ୍ରବଣ ହେଲେ କମ୍ପାନୀ ହସ୍ତକ୍ଷେପ କରିପାରନ୍ତି । ସେ ସୈନ୍ୟ ଅପସାରଣ କରିବା ପାଇଁ ଯେଉଁ ପ୍ରସ୍ତାବ ଦେଲେ, ନିଜାମ ସେଥିରେ ସମ୍ମତ ହେଲେ ନାହିଁ । କିନ୍ତୁ କମ୍ପାନୀ ସହିତ ଏକ ନୂତନ ଚୁକ୍ତିରେ ଆବଦ୍ଧ ହୋଇ ନିଜ ରାଜ୍ୟର କେତେକ ସମ୍ପଦଶାଳୀ ଓ ଉନ୍ନତ ଅଞ୍ଚଳଗୁଡ଼ିକୁ ଖର୍ଚ୍ଚା ବାବଦ କମ୍ପାନୀ ହାତରେ ଅର୍ପଣ କରିବାପାଇଁ ସେ ସମ୍ମତ ହେଲେ । ଏହି ଭାବରେ ଉପରୋକ୍ତ ଜିଲ୍ଲାଗୁଡ଼ିକର ଆୟରେ ନିଜାମଙ୍କର ଋଣ ପରିଶୋଧ ହେଲା ସତ୍ୟ କିନ୍ତୁ ସେ ଅଞ୍ଚଳଗୁଡ଼ିକ କାର୍ଯ୍ୟତଃ ସ୍ଥାୟୀ ଭାବରେ କମ୍ପାନୀର ନିୟନ୍ତ୍ରଣରେ ରହିଲା ।

ଏଣେ ଉତ୍ତର ଭାରତରେ ଅଯୋଧ୍ୟାର ନବାବଙ୍କ ଶାସନ ଦିନକୁ ଦିନ କଳଙ୍କିତ ହେଉଥିଲା । ପ୍ରଜାମାନଙ୍କ ଉପରେ ସବୁ ପ୍ରକାର ଅତ୍ୟାଚାର କରି ରାଜସ୍ୱ ଆଦାୟ କରିବା ଏବଂ ସେହି ଅର୍ଥକୁ ବିଳାସବ୍ୟସନରେ ଖର୍ଚ୍ଚ କରିବା ଥିଲା ନବାବୀ ଶାସନର ରୀତି । ସୁରା, ସାକୀ ଓ ଅନ୍ୟାନ୍ୟ ମଜ୍‌ଲିସ୍‌ରେ ନବାବ ଓ ତାଙ୍କ ପରିବାର ଏବଂ ଅଧସ୍ତନ କର୍ମଚାରୀମାନେ ମଜି ରହୁଥିଲେ । ରାଜ୍ୟର ପ୍ରଜା ବା ରାଜ୍ୟର ଉନ୍ନତି ପ୍ରତି

କାହାର କୌଣସି ପ୍ରକାରର ଦୃଷ୍ଟି ନଥିଲା । ୧୮୩୧ ମସିହାରେ ବେଣ୍ଟିକ୍ ଗଭର୍ଣ୍ଣର ଜେନେରାଲ୍ ଥିବା ସମୟରେ ନବାବଙ୍କୁ ତାଙ୍କ ଶାସନ ପରିଚାଳନାରେ ଉନ୍ନତି ଆଣିବା ପାଇଁ ପରାମର୍ଶ ଦେଇଥିଲେ, ନଚେତ୍ ଦକ୍ଷିଣ ଭାରତର ତାଞ୍ଜୋର୍ ରାଜା ଓ କର୍ଣ୍ଣାଟକ ନବାବଙ୍କର ଦଶା ତାଙ୍କୁ ଭୋଗିବାକୁ ହେବ ବୋଲି ଧମକ ଦେଇଥିଲେ । କିନ୍ତୁ ଏ ଧମକ ବିଶେଷ ଫଳପ୍ରଦ ହେଲା ନାହିଁ । ଅଳ୍ପଦିନ ପରେ ନବାବଙ୍କର ମୃତ୍ୟୁ ହେଲା । ପରବର୍ତ୍ତୀ ନବାବଙ୍କ ସହ ଅକ୍‌ଲାଣ୍ଡ ଏକ ନୂତନ ଚୁକ୍ତି କରିବାପାଇଁ ଇଚ୍ଛା କରିଥିଲେ । କିନ୍ତୁ ଲଣ୍ଡନ ସରକାର ଆଫଗାନିସ୍ଥାନର ଯୁଦ୍ଧ ପରିସ୍ଥିତି ସମୟରେ ଏପରି ନୂତନ କାର୍ଯ୍ୟ ହାତକୁ ନେବାକୁ ସ୍ୱୀକୃତି ଦେଇ ନଥିଲେ । ଲର୍ଡ୍ ହାର୍ଡ଼ିଞ୍ଜ୍‌ଙ୍କ ସମୟରେ ୱାଜିଦ୍ ଅଲ୍ଲୀ ଶାହ ନବାବ ଗାଦି ଅଳଙ୍କୃତ କଲେ । କିନ୍ତୁ ଦୁର୍ଗତି ପୂର୍ବବତ୍ ଚାଲୁ ରହିଲା ଏବଂ ପରିସ୍ଥିତିରେ କୌଣସି ପରିବର୍ତ୍ତନ ହେଲାନାହିଁ । ବଙ୍ଗଚ ନୂତନ ନବାବ ନାଚୁଆ, ହିଞ୍ଜଡ଼ା, ଦଲାଲ୍ ଓ ଗୁଣ୍ଡା ଆଦି ସମାଜର ନିମ୍ନ ଶ୍ରେଣୀର ଲୋକଙ୍କ ମେଳରେ ଦିନ କଟାଇବାକୁ ସୁଖକର ମଣୁଥିଲେ । ସ୍ଥାନୀୟ ବ୍ରିଟିଶ୍ ପ୍ରତିନିଧି ଅଯୋଧ୍ୟା ରାଜଗାଦି ବିଲୋପ କରିବା ପରିବର୍ତ୍ତେ ପ୍ରସ୍ତାବ କରିଥିଲେ ଯେ, କିଛି ବର୍ଷ ପାଇଁ କମ୍ପାନୀ କେବଳ ଅଯୋଧ୍ୟାର ଶାସନ ଦାୟିତ୍ୱ ହାତକୁ ନେବା ଉଚିତ ଏବଂ ତଦ୍ୱାରା ଜନସାଧାରଣଙ୍କର କିପରି ଉପକାର କରାଯାଇପାରେ ଏବଂ ସେମାନଙ୍କର ଆର୍ଥିକ ପରିସ୍ଥିତିରେ ଉନ୍ନତି ଅଣାଯାଇପାରେ, ତାହା ସ୍ଥାନୀୟ ଅଧିବାସୀମାନଙ୍କୁ ଦେଖାଇଦେବା ଉଚିତ । ଡେଲ୍‌ହାଉସୀ ଏ ପ୍ରସ୍ତାବରେ ସମ୍ମତ ନଥିଲେ । ତାଙ୍କ ମତରେ ଅଯୋଧ୍ୟାରେ ନବାବ ରାଜୁତି ଲୋପ କରି, ସେ ଅଞ୍ଚଳକୁ ସମ୍ପୂର୍ଣ୍ଣ ରୂପେ କମ୍ପାନୀର ଶାସନାଧୀନ କରିବା ଉଚିତ । ନାନା ବାଧାବିଘ୍ନ, ଅନୁରୋଧ-ପ୍ରତିରୋଧ ସତ୍ତ୍ୱେ ଶେଷକୁ ତାହାହିଁ ହେଲା । ଅଯୋଧ୍ୟା ସମ୍ପୂର୍ଣ୍ଣ ରୂପେ କମ୍ପାନୀ ଶାସିତ ରାଜ୍ୟରେ ପରିଣତ ହେଲା ।

ନାନା ଯୁଦ୍ଧ, ବିଗ୍ରହ ଜରିଆରେ କେବଳ ରାଜ୍ୟ ବିସ୍ତାର କରିବା ଡେଲ୍‌ହାଉସୀଙ୍କ ଏକମାତ୍ର ଲକ୍ଷ୍ୟ ନଥିଲା । ସୈନ୍ୟଚାଳନା ଓ ପ୍ରଶାସନର ଉନ୍ନତି ପାଇଁ ତାଙ୍କରି ଅମଳରେ ଭାରତରେ ପ୍ରଥମ କରି ରେଳଗାଡ଼ି ଚାଲିବାର ବ୍ୟବସ୍ଥା ହେଲା ଏବଂ ଚିଠିପତ୍ର ଆଦାନ ପ୍ରଦାନ ଓ ସମ୍ବାଦ ପ୍ରେରଣର ଉନ୍ନତି ପାଇଁ ଟେଲିଗ୍ରାଫ୍ ବ୍ୟବସ୍ଥାର ପ୍ରଚଳନ ହେଲା । ଏହି ବ୍ୟବସ୍ଥା ନଥିଲେ ପରବର୍ତ୍ତୀ ସିପାହୀ ବିଦ୍ରୋହର ପରିଣତି କ'ଣ ହୋଇଥାନ୍ତା, ତାହା ଏକ ଗୁରୁତର ପ୍ରଶ୍ନବାଚୀ ।



# ସିପାହୀ ବିଦ୍ରୋହ

ଲର୍ଡ଼ ଡେଲ୍‌ହାଉସୀ ୩୫ ବର୍ଷ ବୟସରେ ଭାରତକୁ ଆସି ୧୮୪୮ରୁ ୧୮୫୬ ମସିହା ପର୍ଯ୍ୟନ୍ତ ଗଭର୍ଣ୍ଣର ଜେନେରାଲ ରହିଲେ । କିନ୍ତୁ ଭାରତ ଛାଡ଼ିବାର ଅଳ୍ପଦିନ ପୂର୍ବରୁ କଲିକତାରେ ସେ ତାଙ୍କର ସ୍ତ୍ରୀଙ୍କୁ ହରାଇଥିଲେ ଏବଂ ବିଲାତରେ ପହଞ୍ଚିଲା ବେଳକୁ ତାଙ୍କର ସ୍ୱାସ୍ଥ୍ୟହାନି ଘଟିଥିଲା ଏବଂ ଏହାପରେ ସେ ସମ୍ପୂର୍ଣ୍ଣ ଅକର୍ମଣ୍ୟ ହୋଇପଡ଼ିଲେ । ତାଙ୍କର ଉତ୍ତରାଧିକାରୀ ଲର୍ଡ଼ କ୍ୟାନିଂ ଭାରତରେ ପହଞ୍ଚି ଯେ ଏକ ମହା ଦୁର୍ବିପାକର ସମ୍ମୁଖୀନ ହେବେ, ଏହା ତାଙ୍କର କଳ୍ପନାରେ ନଥିଲା । ଭାରତୀୟ ସମସ୍ୟାର କିପରି ସମାଧାନ ହୋଇପାରିବ, ସେ ସମ୍ପର୍କରେ ଶାସକ ଗୋଷ୍ଠୀର କୌଣସି ସୁଚିନ୍ତିତ କାର୍ଯ୍ୟକ୍ରମ ନଥିଲା । ଅନେକ ବ୍ରିଟିଶ ଲୋକ ମନେ କରୁଥିଲେ ଇଂରେଜୀ ଜ୍ଞାନର ପ୍ରସାର ସହିତ ଖ୍ରୀଷ୍ଟଧର୍ମର ପ୍ରସାର ନହେଲେ ବୋଧହୁଏ ଭାରତବାସୀ ଆୟତ୍ତ ହୋଇପାରିବେ ନାହିଁ । ଲର୍ଡ଼ କ୍ୟାନିଂଙ୍କର ଇଂଲଣ୍ଡ ଛାଡ଼ିବାର ଅବ୍ୟବହିତ ପୂର୍ବରୁ ତାଙ୍କର ବିଦାୟ ଭୋଜି ସଭାରେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଲର୍ଡ଼ ପାମରଷ୍ଟୋନ୍ ଏକ ଭାଷଣରେ କହିଥିଲେ, "ଅଗଣିତ ଭାରତବାସୀଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ସାଧାରଣ ଶିକ୍ଷାଠାରୁ ଧର୍ମଜ୍ଞାନର ପ୍ରଚାର ବୋଧହୁଏ ଅଧିକ ଆବଶ୍ୟକ ।" ଏ ପର୍ଯ୍ୟନ୍ତ କେବଳ ମିଶନାରୀମାନେ ଧର୍ମ ପ୍ରଚାର କରୁଥିଲେ । କିନ୍ତୁ ଖୋଦ୍ କମ୍ପାନୀର କର୍ମଚାରୀମାନେ ଭାରତୀୟଙ୍କର ଧର୍ମ ପରିବର୍ତ୍ତନ କ୍ଷେତ୍ରରେ କୌଣସି ହସ୍ତକ୍ଷେପ କରୁନଥିଲେ । ବର୍ତ୍ତମାନ ଲର୍ଡ଼ ଡେଲହାଉସୀଙ୍କ ସମୟରେ ରେଳଗାଡ଼ି ଓ ବାଷ୍ପୀୟ ଇଞ୍ଜିନ୍ ଏବଂ ବିଜୁଳି ଚାଳିତ ଟେଲିଗ୍ରାଫ୍ ବ୍ୟବସ୍ଥା ପ୍ରବର୍ତ୍ତିତ ହେବା ପରେ, ମିଶନାରୀମାନେ ମନେକଲେ ଏଣିକି ଭାରତରେ ଗୋଟିଏ ଧର୍ମ ଅର୍ଥାତ୍ ଖ୍ରୀଷ୍ଟଧର୍ମର ବହୁଳ ପ୍ରଚାର ହେବା ଉଚିତ ଏବଂ ସେହି ଗୋଟିଏ ଧର୍ମ ଭାରତର ରାଜଧର୍ମ ହେବା ବାଞ୍ଛନୀୟ । ଏସବୁ ପ୍ରଚାର ଶୁଣି ବହୁ ଭାରତୀୟ ମନେ କଲେ ଯେ,

ଲର୍ଡ଼ କ୍ୟାନିଂ ବୋଧହୁଏ ଭାରତବାସୀଙ୍କୁ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ କରିବା ପାଇଁ ପ୍ରେରିତ ହୋଇଅଛନ୍ତି । ସିପାହୀମାନଙ୍କ ମଧ୍ୟରେ ଏ ପ୍ରକାର ପରିପ୍ରଚାରର ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ଏବଂ ସେମାନେ ଇଂରେଜମାନଙ୍କ ପ୍ରତି ଅନ୍ତରରେ ଘୃଣାଭାବ ପୋଷଣ କରିବାକୁ ଆରମ୍ଭ କଲେ । ଏଥିପୂର୍ବରୁ କଳାପାଣି ବା ସମୁଦ୍ର ପାର ହେବାର ପ୍ରତିବାଦ କରିବା ହେତୁ ଖୋଦ୍ କଲିକତା ସହରରେ ବହୁ ସିପାହୀଙ୍କୁ ହତ୍ୟା କରାଯାଇଥିଲା । ପଞ୍ଜାବ, ଆଫଗାନିସ୍ଥାନ ଆଦି ଦୂର ଦେଶରେ ଲଢ଼େଇ କରିବାକୁ ଗଲେ ସେଥିପାଇଁ ଯେଉଁ ଅତିରିକ୍ତ ଦରମା ଓ ଭତ୍ତା ଦିଆଯାଉଥିଲା, ତାହା ମଧ୍ୟ କାଟି ଦିଆଯାଇଥିଲା । ଏଣେ ଯେଉଁ କ୍ଷୁଦ୍ର ରାଜା, ନବାବ ଓ ବାଦ୍‌ଶାହମାନଙ୍କର ରାଜ୍ୟ ଅଧିକାର କରି ସେମାନଙ୍କର ସେନାବାହିନୀକୁ ଭାଙ୍ଗି ଦିଆଯାଇଥିଲା, ସେହି ଅସନ୍ତୁଷ୍ଟ ରାଜା, ଜାଗିରଦାରମାନେ ସିପାହୀମାନଙ୍କୁ ବ୍ରିଟିଶ ବିରୋଧୀ ଚକ୍ରାନ୍ତରେ ଲିପ୍ତ ହେବା ପାଇଁ ଆହ୍ୱାନ କରୁଥିଲେ ।

ଏହି ସମୟରେ ୧୮୫୭ ମସିହା ଜାନୁଆରୀ ମାସରେ କଲିକତାର ୧୫ ମାଇଲ୍ ଉତ୍ତରରେ ଅବସ୍ଥିତ ବାରାକ୍‌ପୁର ସେନାଛାଉଣୀରେ ବିଦ୍ରୋହର ସୂଚ଼ନା ମିଳିଲା । ବ୍ରିଟିଶ ସରକାର ନୂଆକରି ଭାରତରେ ପୂର୍ବରୁ ବ୍ୟବହୃତ ମସ୍‌କେଟ୍ ପରିବର୍ତ୍ତେ ଏନ୍‌ଫିଲ୍‌ଡ ରାଇଫଲ୍ ପ୍ରବର୍ତ୍ତନ କଲେ । ଏହି ନବପ୍ରଚ଼ଳିତ ବନ୍ଧୁକରେ ବ୍ୟବହୃତ ଗୁଳି ଯେଉଁ କ୍ୟାଟ୍ରିଜ୍‌ରେ ରଖାଯାଉଥିଲା, ତହିଁରେ ଗୋ-ଚର୍ବି ବୋଳା ଯାଇଅଛି ବୋଲି ପ୍ରଚାର ହେଲା । ଖୋଦ୍ ବାରାକ୍‌ପୁର୍‌ରେ ଏବଂ ଉତ୍ତର ଭାରତରେ ପ୍ରଚାର ହେଲା, ଏହି ନୂତନ କ୍ୟାଟ୍ରିଜ୍ ବ୍ୟବହାର କରି ସିପାହୀମାନଙ୍କର ଧର୍ମବିଶ୍ୱାସରେ ଆଘାତ କରାଯାଉଛି ଏବଂ ଏହା ବୋଧହୁଏ ସେମାନଙ୍କୁ ଖ୍ରୀଷ୍ଟ ଧର୍ମାବଲମ୍ବୀ କରିବାର ପ୍ରାଥମିକ ଉଦ୍ୟମ । ନୂତନ କ୍ୟାଟ୍ରିଜ୍-ଗୁଡ଼ିକରେ ଯେ ଗୋ-ଚର୍ବି ବ୍ୟବହାର କରାଯାଉଛି, ଏ ପ୍ରଚାରକୁ ଖଣ୍ଡନ କରିବା ପାଇଁ ଇଂରେଜମାନଙ୍କୁ ସମୟ ଓ ସୁଯୋଗ ମିଳିଲା ନାହିଁ । ଇଂରେଜ କର୍ତ୍ତୃପକ୍ଷଙ୍କର ବୟାନ ଯେ, ଏହି କ୍ୟାଟ୍ରିଜ୍‌ରେ ମେଣ୍ଢା ଚର୍ବି ବ୍ୟବହୃତ ହୋଇଛି, ତାହା ମଧ୍ୟ ସିପାହୀମାନେ ସହଜରେ ଗ୍ରହଣ କରି ନଥିଲେ । ଅଶାନ୍ତି ଓ ବିଦ୍ରୋହରୁ ଅଗ୍ନିସ୍ଫୁଲିଙ୍ଗ ଜଳି ଉଠିଲା । ଖୋଦ୍ ବାରାକ୍‌ପୁର୍ ଓ ରାଣୀଗଞ୍ଜ ସେନାଛାଉଣୀରେ ଅଫିସରମାନଙ୍କ ବଙ୍ଗଲୋରେ ନିଆଁ ଲଗାଇ ଦିଆଗଲା ।

ସିପାହୀମାନଙ୍କର ଧର୍ମ ପରିବର୍ତ୍ତନ କରିବାକୁ ଯେ କୌଣସି ଅପଚେଷ୍ଟା କରାଯାଉନାହିଁ, ଏ ପ୍ରକାରର ସରକାରୀ ବକ୍ତବ୍ୟ କେହି ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲେ । କାରଣ ବିଭିନ୍ନ ରେଜିମେଣ୍ଟର ଦାୟିତ୍ୱରେ ଥିବା ଇଂରେଜ ଅଫିସରମାନଙ୍କ ମଧ୍ୟରୁ ଅନେକେ ବସ୍ତୁତଃ ସିପାହୀମାନଙ୍କ ମଧ୍ୟରେ ଧର୍ମ ପ୍ରଚାର କରୁଥିଲେ । ଏହି ସମୟରେ ୩୪ ନମ୍ବର ରେଜିମେଣ୍ଟର ଜଣେ ସିପାହୀ ମଙ୍ଗଳ ପାଣ୍ଡେ, ୟୁରୋପିଆନ୍ ସୈନ୍ୟ ବାରାକ୍‌ପୁର ଆସୁଥିବା ସମ୍ବାଦ ଶୁଣି, ହଠାତ୍ କାନ୍ଧରେ ବନ୍ଧୁକ ଧରି ସହଯୋଗୀ ସିପାହୀମାନଙ୍କୁ ଧର୍ମରକ୍ଷା କରିବା ପାଇଁ ଡାକରା ଦେଲେ ଏବଂ କୌଣସି ରେଜିମେଣ୍ଟର ଅଫିସର ବାହାରକୁ ଆସିଲେ ସେ ତାଙ୍କୁ ଗୁଳିକରି ହତ୍ୟା କଲେ । ପରିଶେଷରେ କର୍ଣ୍ଣେଲ୍ ହ୍ୱିଲର ଓ ଅନ୍ୟ କେତେକ ଅଫିସର ସେଠାକୁ ସାହାଯ୍ୟ କରିବାକୁ ଆସିଲେ ମଧ୍ୟ କୌଣସି ପଦକ୍ଷେପ ନେବାକୁ ସାହସ କରିନଥିଲେ । କେବଳ ଜେନେରାଲ୍ ହିଅର୍‌ସେ ଘୋଡ଼ାରେ ଚଢ଼ି ଏପରି ଉଚ୍ଚ ଓ ଗମ୍ଭୀର ସ୍ୱରରେ ମଙ୍ଗଳ ପାଣ୍ଡେଙ୍କୁ ଧରିବା ପାଇଁ ଆଦେଶ ଦେଲେ ଯେ, ତାଙ୍କ ଧମକପୂର୍ଣ୍ଣ ଆହ୍ୱାନରେ ପାଣ୍ଡେଙ୍କୁ ଗିରଫ କରିବା ପାଇଁ ଚାରିଆଡୁ ସୈନ୍ୟମାନେ ଧାଇଁ ଆସିଲେ । ନିରାପଦରେ ପଳାୟନ କରିବାର କୌଣସି ଉପାୟ ନଦେଖି ମଙ୍ଗଳ ପାଣ୍ଡେ ସେହିଠାରେ ଆପଣା ମସ୍‌କେଟ୍‌ରୁ ନିଜକୁ ଗୁଳି ଫାୟାର୍ କରି ମରିବାକୁ ଯେଉଁ ଉଦ୍ୟମ କଲେ, ସେଥିରେ ସଫଳ ହେଲେ ନାହିଁ । କିନ୍ତୁ ତାଙ୍କୁ ଗିରଫ କରି ହସ୍‌ପିଟାଲ୍‌କୁ ପଠାଇ ଦିଆଗଲା ଓ ଶେଷରେ କୋର୍ଟ ମାର୍ଶାଲ୍‌ରେ ବିଚାର ହୋଇ ତାଙ୍କୁ ଫାଶୀଦଣ୍ଡ ଦିଆଗଲା ।

ଜାନୁଆରୀ ମାସରେ ବାରାକ୍‌ପୁର୍‌ରେ ଯେଉଁ ପ୍ରତିବାଦର ସ୍ୱର ଉତ୍ତୋଳିତ ହୋଇଥିଲା, ତାହା କ୍ରମେ ଉତ୍ତର ପଶ୍ଚିମ ଦିଗକୁ ବ୍ୟାପିବାକୁ ଆରମ୍ଭ କଲା । ବିଶେଷତଃ ଯେଉଁଠି ନୂଆ ଏନ୍‌ଫିଲ୍‌ଡ୍ ରାଇଫଲ୍ ବ୍ୟବହାରର ତାଲିମ ଦିଆଯାଉଥିଲା, ସେହିସବୁ ସ୍ଥାନରେ କ୍ୟାଣ୍ଟନ୍‌ମେଣ୍ଟ୍‌ର ଅଫିସର୍‌ମାନଙ୍କ ଘରେ ଅଗ୍ନି ସଂଯୋଗ କରିବା ଏକ ଗତାନୁଗତିକ କାର୍ଯ୍ୟକ୍ରମ ହୋଇପଡ଼ିଲା । ଏପରିକି ପଞ୍ଜାବର ଅମ୍ବାଲାରେ ଏନ୍‌ଫିଲ୍‌ଡ୍ ରାଇଫଲ୍‌ର ବ୍ୟବହାର ବିରୁଦ୍ଧରେ ବିଭିନ୍ନ ସ୍ଥାନରେ ଯେଉଁ ପ୍ରତିବାଦର ସ୍ୱର ମୁଣ୍ଡ ଟେକୁଥିଲା, ସାମରିକ ଅଫିସର୍‌ମାନେ ସେଥିରେ ବିବ୍ରତ ହୋଇ ଆନ୍‌ସନ୍ ଓ ଗଭର୍ଣ୍ଣର ଜେନେରାଲ୍ କ୍ୟାନିଂଙ୍କୁ ଅଧିକ ୟୁରୋପିଆନ୍ ସୈନ୍ୟ ମଗାଇବା ପାଇଁ ଅନୁରୋଧ କଲେ ।

କିନ୍ତୁ ଲର୍ଡ଼ କ୍ୟାନିଂ ସହଜରେ କୌଣସି ନିଷ୍ପତ୍ତିରେ ସହଜରେ ପହଞ୍ଚିପାରୁ ନଥିଲେ । ଯେଉଁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଗ୍ରହଣ କଲେ, ତୁରନ୍ତ ସିପାହୀମାନଙ୍କର ଅସନ୍ତୋଷ ଦୂର ହୋଇପାରିବ, ବୋଧହୁଏ ଭାରତ ସମ୍ପର୍କରେ ଅଭିଜ୍ଞତା ଅଭାବରୁ ସେଭଳି କୌଣସି କାର୍ଯ୍ୟକ୍ରମ ଗ୍ରହଣ କରିବା ବିଷୟରେ ସେ ସ୍ଥିର ନିଷ୍ପତ୍ତି ନେଇ ପାରୁ ନଥିଲେ । କେହି କେହି ସାମରିକ କର୍ମକର୍ତ୍ତା ପ୍ରସ୍ତାବ ଦେଲେ ଯେ, ନୂତନ ଏନ୍‌ଫିଲ୍ଡ଼ ରାଇଫଲ୍‌ର ପ୍ରଚଳନ କିଛିଦିନ ପାଇଁ ବନ୍ଦ ରଖାଗଲେ ଏହି ସମସ୍ୟାର ଆଂଶିକ ସମାଧାନ ହୋଇପାରିବ । ସେ ବିଷୟରେ ମଧ୍ୟ କୌଣସି ନିର୍ଣ୍ଣୟ ନିଆଯାଇ ପାରିଲା ନାହିଁ । କେହି କେହି ପ୍ରଚାର କଲେ ଯେ, କେତେକ ଖଳ ପ୍ରକୃତିର ଲୋକ ସିପାହୀମାନଙ୍କୁ ଭୁଲ୍‌ବାଟରେ ପରିଚାଳିତ କରୁଅଛନ୍ତି । ଅଯୋଧ୍ୟାର ନବାବ ଓ ତାଙ୍କର ଯେଉଁ ସହକର୍ମୀମାନଙ୍କୁ ଲକ୍ଷ୍ନୌରୁ ବିତାଡ଼ିତ କରି କଲିକତାରେ ରଖାଯାଇଥିଲା, ହୁଏତ ସେମାନେ ବା ପୂର୍ବତନ ପେଶଓ୍ୱା ଧୂନ୍ଧୁ ପନ୍ଥ (ନାନା ସାହିବ) ଓ ତାଙ୍କର ପରାମର୍ଶଦାତା ଅଜିମୁଲ୍ଲା ଖାଁ ଏହି ଷଡ଼ଯନ୍ତ୍ର ପଛରେ ଅଛନ୍ତି । 'ଡକ୍ଟ୍ରିନ୍ ଅଫ୍ ଲ୍ୟାପସ୍' ନୀତି ପ୍ରୟୋଗ କରି ଯେଉଁ ଜାଗିରଦାର ଓ ତାଲୁକ୍‌ଦାର୍‌ମାନଙ୍କୁ କ୍ଷମତାଚ୍ୟୁତ କରାଯାଇଥିଲା ସେହିମାନେ ବିଦ୍ରୋହୀମାନଙ୍କୁ କୁ-ଶିକ୍ଷା ଦେଉଅଛନ୍ତି । କାର୍ଯ୍ୟତଃ ଉପରୋକ୍ତ ଅସନ୍ତୁଷ୍ଟ ଗୋଷ୍ଠୀ, ସିପାହୀମାନଙ୍କୁ ଇଂରେଜମାନଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିବାପାଇଁ ଗୁପ୍ତ ମନ୍ତ୍ରଣା ଦେଉଥିଲେ । ମୌଲବୀ ଅହମ୍ମଦ ଉଲ୍ଲା ଯାହାଙ୍କର ଜନ୍ମ ଓ ଜନ୍ମସ୍ଥାନ ସମ୍ପର୍କରେ ବିଶେଷ କିଛି ଜଣା ନାହିଁ, ସେ ହଠାତ୍ ଲକ୍ଷ୍ନୌରେ ପହଞ୍ଚି ହିନ୍ଦୁ, ମୁସଲମାନ ଉଭୟ ସମ୍ପ୍ରଦାୟ ମଧ୍ୟରେ ବ୍ରିଟିଶ ବିରୋଧୀ ଉତ୍ତେଜନାମୂଳକ ପ୍ରଚାର ଆରମ୍ଭ କଲେ । ଏହି ସମୟରେ ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଦୁଇଖଣ୍ଡ ରୁଟି ପଠାଯାଉଥିଲା ଏବଂ ସେ ଗାଁ ଲୋକେ ରୁଟି ଦିଖଣ୍ଡ ଖାଇ ଅନ୍ୟ ଦୁଇଟି ରୁଟି ନିକଟସ୍ଥ ଗ୍ରାମକୁ ପ୍ରେରଣ କରୁଥିଲେ । ପ୍ରଚାର ହେଉଥିଲା ଏହି ରୁଟି ଖଣ୍ଡମାନ ବ୍ରିଟିଶ୍-ବିରୋଧୀ ସଂଗ୍ରାମର ସଙ୍କେତ ।

ଏତିକିବେଳେ ୧୮୫୭ ମସିହା ମେ' ମାସ ଆରମ୍ଭରେ ଅଯୋଧ୍ୟାର ଶାସକ ହେନ୍‌ରୀ ଲରେନ୍‌ସଙ୍କୁ ସମ୍ବାଦ ମିଳିଲା ଯେ, ସପ୍ତମ ଅଯୋଧ୍ୟା ବାହିନୀ ଏନ୍‌ଫିଲଡ୍ ରାଇଫଲ୍‌ର କ୍ୟାଟ୍ରିଜ୍ ବିଷୟ ନେଇ ଉତ୍‌କ୍ଷିପ୍ତ ଓ ସେମାନେ ତୁରନ୍ତ ବ୍ରିଟିଶ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ପାରନ୍ତି । ଲରେନ୍‌ସଙ୍କ ଆଦେଶରେ ସେମାନଙ୍କୁ ଗିରଫ କରାହୋଇ ସେମାନଙ୍କଠାରୁ ଯଥାସମ୍ଭବ ବନ୍ଧୁକ ଅକ୍ତିଆର କରି ନିଆହେଲା ଓ ସେମାନଙ୍କ ମଧ୍ୟରୁ ବହୁ ସିପାହୀ ପାଖରେ ଥିବା ମସ୍କେଟ୍ ବନ୍ଧୁକକୁ ଫୋପାଡ଼ି ଦେଇ

ପଳାୟନ କଲେ । କିନ୍ତୁ ଲରେନ୍ସ ଜାଣିଥିଲେ ଯେ ଏତିକିରେ ସବୁ ଶାନ୍ତ ହେଲା ନାହିଁ । ବସ୍ତୁତଃ ଚାରିଦିନ ପରେ ଅନ୍ୟ କେତେକ କ୍ୟାଣ୍ଟନ୍‌ମେଣ୍ଟ୍‌ର ୟୁରୋପିଆନ ରହୁଥିବା ଘରମାନଙ୍କରେ ନିଆଁ ଲଗାଇ ଦିଆହେଲା । ତା ସତ୍ତ୍ୱେ ଲକ୍ଷ୍ନୌରେ ଇଂରେଜମାନେ କ୍ଷମତାଚ୍ୟୁତ ହୋଇନଥିଲେ ।

ଏଣେ ମିରଟ୍‌ରେ, ଯେଉଁଠି କି ଉତ୍ତର ଭାରତର ସବୁଠାରୁ ବଡ଼ ସେନାଛାଉଣୀ ଥିଲା, ସେଠି ମଧ୍ୟ ବିଦ୍ରୋହର ଅଗ୍ନିଶିଖା ଜଳିବାକୁ ଆରମ୍ଭ କଲା । ମିରଟ୍‌ରେ ଅବସ୍ଥାପିତ କେତେକ ହିନ୍ଦୁ ଓ ମୁସଲ୍‌ମାନ୍ ସିପାହୀ ରେଜିମେଣ୍ଟ ମିଳିତ ଭାବରେ ଏନ୍‌ଫିଲ୍‌ଡ୍ ରାଇଫଲ୍‌ର କ୍ୟାଟ୍ରିଜ୍ ଗ୍ରହଣ କରିବାକୁ ଅମଙ୍ଗ ହେଲେ । ବ୍ରିଟିଶ୍ ଅଫିସର୍‌ମାନେ ସେମାନଙ୍କୁ ରାଜଦ୍ରୋହ ଅଭିଯୋଗରେ କୋର୍ଟ ମାର୍ଶିଆଲ୍ ବିଚାର କଲେ ଓ ସେହି ବିଚାରରେ ୮୫ ଜଣ ସିପାହୀ ଦୋଷୀ ସାବ୍ୟସ୍ତ ହେଲେ ଓ ସେମାନଙ୍କୁ ଦଶବର୍ଷ ଲେଖାଏଁ କାରାଦଣ୍ଡ ଦିଆଗଲା । ଅନ୍ୟ ସିପାହୀମାନଙ୍କୁ ଭୟଭୀତ କରିବା ଉଦ୍ଦେଶ୍ୟରେ ଏହି ଅଭିଯୁକ୍ତ ସିପାହୀମାନଙ୍କୁ ହାତକଡ଼ି ପିନ୍ଧାଇ ସ୍ଥାନୀୟ ଜେଲ୍‌ରେ ରଖାଗଲା । କିନ୍ତୁ ସେହି ଜେଲର ରକ୍ଷକମାନେ ଥିଲେ ଅନ୍ୟ କେତେକ ସ୍ଥାନୀୟ ସିପାହୀ । ପରଦିନ ସଂଧ୍ୟା ପାଞ୍ଚଟା ସମୟରେ ମିରଟ୍‌ରେ ଅବସ୍ଥାପିତ ଗୋଟିଏ ଘୋଡ଼ସବାର ବାହିନୀ ବିଦ୍ରୋହ ଘୋଷଣା କରି ଜେଲ୍ ଗେଟ୍ ଭାଙ୍ଗି ବନ୍ଦୀ ସାଥୀମାନଙ୍କୁ ମୁକ୍ତ କଲେ । ମିରଟ୍‌ରେ ମୋଟ ୨୦୦୦ ବ୍ରିଟିଶ୍ ସୈନିକ ଥିଲେ ମଧ୍ୟ ପରିଚାଳନାଗତ ଦୂରଦୃଷ୍ଟି ଅଭାବରୁ ସେମାନଙ୍କୁ ବ୍ୟବହାର କରାଗଲା ନାହିଁ । ମିରଟ୍‌ରୁ ଦିଲ୍ଲୀର ଦୂରତା ପ୍ରାୟ ୪୦ ମାଇଲ । ଦିଲ୍ଲୀରେ ମାତ୍ର ତିନୋଟି ସିପାହୀ ରେଜିମେଣ୍ଟ ସ୍ଥାନିତ ଥିଲେ ଏବଂ ସେମାନେ ଏ ବିଦ୍ରୋହ ପ୍ରତି ସହାନୁଭୂତିଶୀଳ ଥିଲେ ବୋଲି ମିରଟ୍‌ରେ ସମ୍ବାଦ ମିଳିଥିଲା । ଦିଲ୍ଲୀରେ କୌଣସି ବ୍ରିଟିଶ ସୈନ୍ୟଙ୍କୁ ରଖାଯାଇ ନଥିଲା । କେବଳ କେତେଜଣ ବ୍ରିଟିଶ ଅଫିସର୍ ଏହି ସିପାହୀମାନଙ୍କର ଦାୟିତ୍ୱରେ ଥିଲେ । ଏହିସବୁ ଦୃଷ୍ଟିରୁ ବିଚାର କରି ଭାରତର ପ୍ରାଚୀନ ରାଜଧାନୀ ଦିଲ୍ଲୀ ସହରକୁ ମିରଟ୍‌ର ସିପାହୀମାନେ ଆଗେଇ ଚାଲିଲେ । ଯମୁନା ନଦୀ କୂଳରେ ଅବସ୍ଥିତ ଲାଲ୍‌କିଲ୍ଲା ଥିଲା ମୋଗଲ ସମ୍ରାଟମାନଙ୍କର ବାସସ୍ଥାନ । ଶାସନ ଦାୟିତ୍ୱରୁ ମୋଗଲ ସମ୍ରାଟଙ୍କୁ ନିଷ୍କୃତି ଦିଆଯାଇଥିଲେ ମଧ୍ୟ ତାଙ୍କର ପଦ ପଦବୀ ପୂର୍ବବତ୍ ରହିଥିଲା । ସେତେବେଳେ ଶୁକ୍ଳ କେଶ ବୃଦ୍ଧ ବାହାଦୂର ଶାହ ଥିଲେ ଦିଲ୍ଲୀର ସମ୍ରାଟ । ଅର୍ଥାତ୍ ଲାଲ୍‌କିଲ୍ଲାର କ୍ଷମତାହୀନ ଅଧିକାରୀ । ସେ ପ୍ରଥମେ ସିପାହୀମାନଙ୍କର ଏହି ଆନ୍ଦୋଳନରୁ ନିଜକୁ ବିମୁକ୍ତ ରଖିବାକୁ

ଇଚ୍ଛା କରୁଥିଲେ ଏବଂ ଆଶଙ୍କା କରୁଥିଲେ ଯେ ତୁରନ୍ତ ବ୍ରିଟିଶ୍‌ମାନେ ଦିଲ୍ଲୀ ଆସି ଏହି ବିଦ୍ରୋହର ପ୍ରତିଶୋଧ ନେବେ । କିନ୍ତୁ ଇଂରେଜମାନଙ୍କର ପ୍ରତିଆକ୍ରମଣର କୌଣସି ସୂଚନା ମିଳିଲା ନାହିଁ । ଅଥଚ ତାଙ୍କ ନିକଟରେ ନା ଥିଲା ଅର୍ଥ ବା ଅସ୍ତ୍ରଶସ୍ତ୍ର ବା ସୈନ୍ୟସାମନ୍ତ । ମିରଟ୍‌ର ସିପାହୀମାନେ ସ୍ଥାନୀୟ ଗୁଣ୍ଡା ଶ୍ରେଣୀର ଲୋକଙ୍କ ସହିତ ମିଶି କାଁଭାଁ ଯେଉଁଠି ୟୁରୋପିଆନ୍ ବା ଭାରତୀୟ ଖ୍ରୀଷ୍ଟିଆନ୍‌ମାନଙ୍କୁ ଭେଟିଲେ, ତାଙ୍କୁ ହତ୍ୟା କଲେ ଓ ଲୁଟ୍‌ତରାଜ କଲେ । ଏହି ଦୁର୍ବିପାକର ସମ୍ବାଦ ଶୁଣି ସ୍ଥାନୀୟ କମିସନର ସାଇମନ୍ ଫ୍ରେଜର୍ ଓ କଲେକ୍ଟର ହଚିନ୍‌ସନ୍, କ୍ୟାପ୍‌ଟେନ୍ ଡଗଲାସଙ୍କ ସହ ମିଶି କଲିକତା ଗେଟ୍ ନିକଟକୁ ଯାଇ ପ୍ୟାଲେସ୍ ଜଗୁଆଳ ଓ ସିପାହୀମାନଙ୍କୁ ବିଦ୍ରୋହୀମାନଙ୍କର ପ୍ରତିରୋଧ କରିବା ପାଇଁ ନିର୍ଦ୍ଦେଶ ଦେଲେ, କିନ୍ତୁ ସେମାନଙ୍କର ନିର୍ଦ୍ଦେଶ ପାଳନ କରିବା ପାଇଁ ସ୍ଥାନୀୟ ସିପାହୀମାନେ ଅସ୍ୱୀକାର କଲେ । ବିଦ୍ରୋହୀମାନଙ୍କର ଆକ୍ରମଣରେ ପ୍ରଥମେ ହଚିନ୍‌ସନ୍ ଓ ଡଗ୍‌ଲାସ୍ ଆହତ ହେଲେ ଏବଂ ପରେ ସେମାନେ ଫ୍ରେଜର ଓ ଆହତ ଦୁଇଜଣଙ୍କୁ ହତ୍ୟା କଲେ । କୃତିତ୍ୱ ଦେଖାଇବା ପାଇଁ ଯେତେବେଳେ ସିପାହୀମାନେ ଲାଲ୍‌କିଲ୍ଲାରେ ବାହାଦୂର ଶାହଙ୍କ ସମ୍ମୁଖୀନ ହେଲେ, ସେ ସେମାନଙ୍କୁ ସ୍ପଷ୍ଟ କହିଲେ ଯେ ସେମାନଙ୍କୁ ପୁରସ୍କାର ଦେବା ପାଇଁ ତାଙ୍କ ଖଜଣାଖାନାରେ କଉଡ଼ିଟାଏ ମଧ୍ୟ ନାହିଁ ।

ପରଦିନ ରାତିପାହି ଦିନ ହେଲା, କିନ୍ତୁ ବ୍ରିଟିଶ୍ ସୈନ୍ୟବାହିନୀର ଆଗମନର କୌଣସି ସୂଚନା ମିଳିଲା ନାହିଁ । ବରଂଚ ମିରଟ୍‌ରୁ ଅଧିକରୁ ଅଧିକ ସଂଖ୍ୟାରେ ସିପାହୀ ଆସି ଦିଲ୍ଲୀରେ ଲୁଟ୍‌ପାଟ୍ ଆରମ୍ଭ କଲେ ଓ ୟୁରୋପିଆନ୍ ବସ୍ତିରେ ଆକ୍ରମଣ କରି ଇଂଲିସ୍, ୟୁରେସିଆନ୍ ବା ଭାରତୀୟ ଖ୍ରୀଷ୍ଟିଆନ୍ ଯାହାକୁ ଦେଖିଲେ ପୁରୁଷ, ସ୍ତ୍ରୀ ବା ଛୋଟବଡ଼ ନିର୍ବିଶେଷରେ ଯେତେଦୂର ପାରନ୍ତି ହତ୍ୟା କଲେ । ସନ୍ଧ୍ୟା ସୁଦ୍ଧା ବ୍ରିଟିଶ ପ୍ରତିଆକ୍ରମଣର କୌଣସି ସୂଚନା ନ ଦେଖି ସିପାହୀମାନେ ଲାଲ୍‌କିଲ୍ଲାରୁ ୨୧ଟି କମାଣରୁ ଗୁଳି ଫାୟାର କରି ବାହାଦୂର ଶାହଙ୍କୁ ଭାରତର ସମ୍ରାଟ ବୋଲି ଘୋଷଣା କଲେ । ବାହାଦୂର ଶାହଙ୍କର ଏଥିରେ କୌଣସି ଆଗ୍ରହ ନଥିଲା, କିନ୍ତୁ ସେ ବୋଧେ ପୁତ୍ରମାନଙ୍କର ପ୍ରରୋଚନାରେ ଏହି ପଦ ଗ୍ରହଣ କରିବା ପାଇଁ ସ୍ୱୀକୃତି ଦେଲେ ।

ସିପାହୀମାନଙ୍କ ଅକ୍ତିଆରରେ ଦିଲ୍ଲୀ ସହର ଆସିବା ପରେ ପ୍ରାୟ ଦୁଇ ସପ୍ତାହ ଧରି ଯୁଦ୍ଧର କୌଣସି ସ୍ୱରଶବ୍ଦ ମିଳିଲା ନାହିଁ । ଲର୍ଡ଼ କ୍ୟାନିଂ କଲିକତା ସହରରେ ରହି

ଭାବୁଥିଲେ ଯେ, ସିପାହୀମାନଙ୍କର ଏ ଆନ୍ଦୋଳନ କ୍ଷଣସ୍ଥାୟୀ ଏବଂ ବ୍ରିଟିଶ୍ ସେନାପତି ଓ ସୈନ୍ୟମାନେ ତୁରନ୍ତ ସେମାନଙ୍କୁ ଜବତ କରିପାରିବେ, କିନ୍ତୁ ତାଙ୍କର ସମସ୍ତ କଳ୍ପନା ଜଳ୍ପନା ଭୁଲ୍ ପ୍ରମାଣିତ ହେଲା । ଖୋଦ୍ ବଙ୍ଗବାହିନୀର ସିପାହୀମାନଙ୍କ ମଧ୍ୟରେ ପୁନର୍ବାର ପ୍ରତିରୋଧର ସୁଅ ଛୁଟିଲା । ବ୍ରିଟିଶ୍‌ମାନଙ୍କ ନିକଟରେ ବିଶ୍ୱସ୍ତ ସିପାହୀ ନଥିଲେ କିମ୍ବା ବିଦ୍ରୋହୀମାନଙ୍କ ପ୍ରତି ଦଣ୍ଡବିଧାନ କରିବା ପାଇଁ ସେମାନଙ୍କର ଯଥେଷ୍ଟ ଶକ୍ତି ନଥିଲା । କିଛି ଦିନପରେ ମଇ ଶେଷ ସପ୍ତାହ ଓ ଜୁନ୍ ଆରମ୍ଭରେ ସବୁ ସେନାଛାଉଣୀରେ ବିଦ୍ରୋହ ଆରମ୍ଭ ହୋଇଗଲା । ମିରଟ୍ ପରି ଏହି ସିପାହୀମାନେ ମଧ୍ୟ ତାଙ୍କର ଉପରିସ୍ଥ ଗୋରା କର୍ମଚାରୀମାନଙ୍କୁ ଓ ଅନ୍ୟ ୟୁରୋପିଆନ୍‌ମାନଙ୍କୁ ସୁବିଧା ପାଇବା ମାତ୍ରେ ହତ୍ୟା କଲେ ଏବଂ ସେଥିରୁ ସ୍ତ୍ରୀ ଓ ପିଲାମାନେ ମଧ୍ୟ ବାଦ୍ ପଡ଼ିଲେ ନାହିଁ । ଏହିପରି ଭାବରେ ଦିଲ୍ଲୀଠାରୁ ଆରମ୍ଭ କରି ମିରଟ୍, ଲକ୍ଷ୍ନୌ, ବିହାର ଓ ଗୋଆଲିଅର୍, ଝାନ୍ସୀ ଓ ବୁନ୍ଦେଲଖଣ୍ଡ ଏବଂ ରାଜପୁତାନାର କେତେକ ଅଞ୍ଚଳରେ ବିଦ୍ରୋହର ନିଆଁ ଜଳିବାକୁ ଆରମ୍ଭ କଲା । ଯଦିଓ ମାଡ୍ରାସ୍ ଓ ବମ୍ବେର କୌଣସି ଅଞ୍ଚଳରେ ଏହି ବିଦ୍ରୋହ ଉଙ୍କିମାରି ନଥିଲା । ଶିଖ୍ ଓ ଗୋର୍ଖାମାନେ ମଧ୍ୟ ବିଦ୍ରୋହୀମାନଙ୍କ ସହିତ ସହଯୋଗ କରିନଥିଲେ ।



# ସଂଘର୍ଷର ଅଗ୍ନିଶିଖା

୧୮୫୭ ମସିହା ମେ' ମାସରେ ବ୍ରହ୍ମଦେଶ ସମେତ ଭାରତରେ ମୋଟ ବ୍ରିଟିଶ ସୈନ୍ୟ ସଂଖ୍ୟା ଥିଲା ୩୭,୦୦୦ ଅଥଚ ଭାରତୀୟ ସିପାହୀମାନଙ୍କ ସଂଖ୍ୟା ଥିଲା ୨,୩୦,୦୦୦ । ଏଥିମଧ୍ୟରୁ ନିକଟରେ ଅଧିକୃତ ପଞ୍ଜାବରେ ଥିଲେ ୧୦,୦୦୦ ବ୍ରିଟିଶ୍ ସୈନ୍ୟ । ବ୍ରିଟିଶ ଶାସିତ ଅଞ୍ଚଳରେ ସଦ୍ୟ ଅନ୍ତର୍ଭୁକ୍ତ ଅଯୋଧ୍ୟାରେ କେବଳ ଗୋଟିଏ ବ୍ରିଟିଶ ରେଜିମେଣ୍ଟ ଲକ୍ଷ୍ନୌରେ ଅବସ୍ଥାପିତ ଥିଲେ । ଦିଲ୍ଲୀରୁ କଲିକତା ନିକଟସ୍ଥ ବାରାକ୍‌ପୁର ଅଞ୍ଚଳରେ ମାତ୍ର ପାଞ୍ଚହଜାର ବ୍ରିଟିଶ ସୈନ୍ୟଙ୍କ ସ୍ଥାନରେ ଭାରତୀୟ ସିପାହୀଙ୍କ ସଂଖ୍ୟା ଥିଲା ପଚାଶ ହଜାର । ଏଣୁ ସିପାହୀମାନଙ୍କର ବିଦ୍ରୋହ ସମୟରେ, ବ୍ରିଟିଶ ସୈନ୍ୟଙ୍କ ସଂଖ୍ୟା ଭାରତୀୟ ସିପାହୀଙ୍କର ଦଶଭାଗରୁ ଏକ ଭାଗ ଥିଲା । ଏହି ପରିସ୍ଥିତିରେ କଲିକତାରେ ଗଭର୍ଣ୍ଣର ଜେନେରାଲ୍ କ୍ୟାନିଂ ଓ ଭାରତର କମାଣ୍ଡର-ଇନ୍-ଚିଫ୍ ଆନ୍‌ସନ୍ ସାମ୍ରାଜ୍ୟକୁ ରକ୍ଷା କରିବା ପାଇଁ କେଉଁ ପଦକ୍ଷେପ ନେବେ, ତାହା ସ୍ଥିର କରିପାରୁ ନଥିଲେ । ବାରାକ୍‌ପୁର୍‌ରେ ତିନି ରେଜିମେଣ୍ଟ ଭାରତୀୟ ସିପାହୀ ଥିବା ହେତୁ ଖୋଦ୍ କଲିକତାରେ ଅବସ୍ଥାପିତ ବ୍ରିଟିଶ ସୈନ୍ୟମାନଙ୍କୁ ବିଦ୍ରୋହ ଦମନ ପାଇଁ ଉତ୍ତରାଞ୍ଚଳକୁ ପଠାଇବାକୁ କ୍ୟାନିଂ ସାହସ କରୁନଥିଲେ । ଅବଶ୍ୟ ମାଡ୍ରାସରେ ଅବସ୍ଥାପିତ ବ୍ରିଟିଶ ସୈନ୍ୟଙ୍କୁ କଲିକତା ଆଣିବା ସହଜତର ଥିଲା କିନ୍ତୁ ଦକ୍ଷିଣ ଭାରତରେ କାଳେ ବିଦ୍ରୋହର ସ୍ଫୁଲିଙ୍ଗ ଜଳିବ ଏହି ଆଶଙ୍କାରେ କ୍ୟାନିଂ ସେପରି ପଦକ୍ଷେପ ନେବାକୁ ସାହସ କଲେ ନାହିଁ । ଡେଲହାଉସୀ ଭାରତରେ ଥିଲେ ହୁଏତ ଏପରି କରି ନଥାନ୍ତେ ।

ମିରଟ୍‌ରେ ବିଦ୍ରୋହର ସୂତ୍ରପାତର ସମ୍ବାଦ ଗୋଟିଏ ଘରୋଇ ସୂତ୍ରରୁ ଆଗ୍ରାକୁ ଆସିଥିଲା ଏବଂ ମେ' ୧୪ ତାରିଖରେ ଆଗ୍ରାରୁ ପ୍ରେରିତ ଟେଲିଗ୍ରାମରୁ କ୍ୟାନିଂ ଏହି ସମ୍ବାଦ ଅବଗତ ହେଲେ । ତତ୍‌ସହ ସେହିଦିନ ପୁଣି ସମ୍ବାଦ ଆସିଲା ଯେ, ଦିଲ୍ଲୀ ମଧ୍ୟ ସିପାହୀମାନଙ୍କ ଦଖଲରେ ଅଛି ଏବଂ ସେମାନେ ବୃଦ୍ଧ ମୋଗଲ ବାଦଶାହା ବାହାଦୂର

ଶାହଙ୍କୁ ଭାରତର ସମ୍ରାଟ୍ ଭାବେ ଘୋଷଣା କରିଅଛନ୍ତି । ଦିଲ୍ଲୀର ପତନ ଇଂରେଜମାନଙ୍କ ପ୍ରତି ସବୁଠାରୁ ବଡ଼ ଧକ୍କା ହେଲା– କେବଳ ସାମରିକ ନୁହେଁ, ରାଜନୈତିକ ଦୃଷ୍ଟିକୋଣରୁ ମଧ୍ୟ । କ୍ୟାନିଂ ଓ ଅନ୍ୟ ଉଚ୍ଚପଦସ୍ଥ ଇଂରେଜ ଅଫିସରମାନେ ଆଶଙ୍କା କଲେ ଯେ, ଦିଲ୍ଲୀର ପୁନର୍ଦ୍ଦଖଲ ନହେବା ପର୍ଯ୍ୟନ୍ତ ଏହା ସମସ୍ତ ଦେଶବ୍ୟାପୀ ବିଦ୍ରୋହର କେନ୍ଦ୍ରସ୍ଥଳ ହୋଇ ରହିବ । କିନ୍ତୁ କାର୍ଯ୍ୟତଃ କଲିକତାରୁ କୌଣସି ୟୁରୋପିଆନ୍ ସୈନ୍ୟଙ୍କୁ ଉତ୍ତର ଭାରତକୁ ପ୍ରେରଣ କରିବା ପାଇଁ କ୍ୟାନିଂଙ୍କର ଉଦ୍ୟମ ନଥିଲା । ଏଥି ମଧ୍ୟରେ ୧୫ ଦିନ ବିତିଗଲା ଅଥଚ ସିପାହୀମାନଙ୍କୁ ପ୍ରତିରୋଧ କରିବା ପାଇଁ କୌଣସିଠାରେ କିଛି ବି କରାଗଲା ନାହିଁ । ଦୁର୍ବଳମନା କ୍ୟାନିଂଙ୍କର ଦୂରଦୃଷ୍ଟିର ଅଭାବ ଓ ଅସାମର୍ଥ୍ୟ ଏଥିପାଇଁ ମୁଖ୍ୟତଃ ଦାୟୀ । କିନ୍ତୁ କଲିକତାରେ ମିରଟ ଓ ଦିଲ୍ଲୀ ପତନର ସମ୍ବାଦ ପହଞ୍ଚିବା ପୂର୍ବରୁ ପଞ୍ଜାବର ଲାହୋରରେ ଏ ସମ୍ବାଦ ପହଞ୍ଚି ଯାଇଥିଲା । ଦୁଇଜଣ ୟୁରୋପୀୟ ଯୁବକ ଦିଲ୍ଲୀରୁ ଟେଲିଗ୍ରାମ କରି ଲାହୋରକୁ ଏ ବାର୍ତ୍ତା ପଠାଇଥିଲେ । ଏ ସମ୍ବାଦ ପହଞ୍ଚିଲାବେଳକୁ ଗଭର୍ଣ୍ଣର ଲରେନ୍ସ ଥିଲେ ଲାହୋରରୁ ୨୦୦ ମାଇଲ ଦୂର ରାଓ୍ୱଲପିଣ୍ଡିରେ । କିନ୍ତୁ ତାଙ୍କର ସୁଦକ୍ଷ ସହକାରୀ ରବର୍ଟ ମଣ୍ଟଗୋମେରୀ, ସାମରିକ କର୍ତ୍ତା ବ୍ରିଗେଡ଼ିୟର୍ କରବେଟ୍‌ଙ୍କ ସହିତ ପରାମର୍ଶ କରି ଗଭର୍ଣ୍ଣର ଜେନେରାଲଙ୍କଠାରୁ କୌଣସି ନିର୍ଦ୍ଦେଶ ପାଇବା ପୂର୍ବରୁ ପଞ୍ଜାବରେ ଅବସ୍ଥାପିତ ବଙ୍ଗବାହିନୀର ସିପାହୀମାନଙ୍କୁ ତୁରନ୍ତ ଅସ୍ତ୍ରଚ୍ୟୁତ କରି ବରଖାସ୍ତ କରିବା ପାଇଁ ନିଷ୍ପତ୍ତି ନେଲେ ଏବଂ ଅତ୍ୟନ୍ତ ଗୋପନୀୟତାର ସହିତ ଏ ନିଷ୍ପତ୍ତିକୁ କାର୍ଯ୍ୟକାରୀ କରାଗଲା ।

ଲାହୋରରେ ଥିବା ଚାରି ରେଜିମେଣ୍ଟ ସିପାହୀଙ୍କୁ ବଡ଼ି ସକାଳୁ ପ୍ୟାରେଡ କରିବା ପାଇଁ ନିର୍ଦ୍ଦେଶ ଦିଆଗଲା । ପ୍ୟାରେଡ ସମୟରେ ଘୋଷଣା କରାଗଲା ଯେ ସେମାନେ ବରଖାସ୍ତ ହୋଇଛନ୍ତି ଓ ଦିଆଯାଇଥିବା ବନ୍ଧୁକ ତୁରନ୍ତ ଓ୍ୱାପସ କରନ୍ତୁ । ସିପାହୀମାନଙ୍କୁ ଭାବିବାକୁ ସମୟ ନଥିଲା । ନିର୍ଦ୍ଦେଶ ପାଇବା ପରେ ସେମାନେ ଦେଖିଲେ ୟୁରୋପିଆନ୍ ସୈନ୍ୟମାନେ ସେମାନଙ୍କ ଆଡ଼କୁ ଗୁଳିଭରା ରାଇଫଲ୍ ଧରି ଓ କେତେକ କମାଣ ସହିତ ସାମ୍‌ନାରେ ଠିଆ ହୋଇଛନ୍ତି । ସେମାନେ ବାଧ୍ୟ ହୋଇ ଅସ୍ତ୍ରଶସ୍ତ୍ର ତ୍ୟାଗ କରି ପ୍ୟାରେଡ୍‌ରୁ ବିଦାୟ ନେଲେ । ମାତ୍ର ୬୦୦ ୟୁରୋପିଆନ୍ ସୈନ୍ୟ, ୨୫୦୦ ସିପାହୀଙ୍କୁ ଯେଉଁ ଭାବରେ ନିରସ୍ତ୍ର କଲେ, ତାହା ଅବଶ୍ୟ ତାଙ୍କର ସେନାପତିଙ୍କର ଚତୁରତା ଓ ସାହସର ନିଦର୍ଶନ ।

ଅବଶ୍ୟ ଲାହୋର ପରି ସବୁ ସ୍ଥାନରେ ଏପରି ବିନା ପ୍ରତିବାଦରେ ସିପାହୀମାନେ ଅସ୍ତ୍ର ତ୍ୟାଗ କରିନଥିଲେ । ଫିରୋଜପୁରରେ ଥିବା ତିନି ରେଜିମେଣ୍ଟ ମଧ୍ୟରୁ କେତକ ସିପାହୀ ଅସ୍ତ୍ର ଧରି ଦିଲ୍ଲୀ ଅଭିମୁଖେ ପଳାୟନ କଲେ । ଜଲନ୍ଧର ଓ ଅନ୍ୟ କେତେକ ସ୍ଥାନରେ ମଧ୍ୟ ଠିକ୍ ସେହିପରି ହୋଇଥିଲା । କିନ୍ତୁ ଇଂରେଜମାନେ ଘୋଡ଼ସବାର ବାହିନୀକୁ ପ୍ରୟୋଗ କରି ବହୁ ସିପାହୀଙ୍କୁ ଦିଲ୍ଲୀ ପହଞ୍ଚିବା ପୂର୍ବରୁ ରାଜରାସ୍ତାରେ ହତ୍ୟା କରିଥିଲେ । ପେଶାଓ୍ୱାର୍‌ରେ ଥିଲା ସବୁଠାରୁ ବଡ଼ ସାମରିକ ଘାଟି ଏବଂ ସେଇଠି ସ୍ଥାନିତ ଥିଲେ ବଙ୍ଗବାହିନୀର ଆଠହଜାର ଭାରତୀୟ ସିପାହୀ । ଗଭର୍ଣ୍ଣର ଲରେନ୍‌ସ ମଇ ମାସ ୨୨ ତାରିଖରେ ତିନିହଜାର ପାଞ୍ଚଶହ ସିପାହୀଙ୍କୁ ଗୋଟିଏ ଗୁଳି ଫାୟାର ନ କରି ଅସ୍ତ୍ରହୀନ କରାଇଲେ । ଦୁଇଦିନ ପରେ ନୌସେରା, ମରଦାନ ଓ ଅନ୍ୟ କେତେକ ସ୍ଥାନରେ ଥିବା ଭାରତୀୟ ସିପାହୀଙ୍କୁ ସେହି ଭାବରେ ବରଖାସ୍ତ କରାଗଲା । ଯେଉଁ କେତେଜଣ ଅସ୍ତ୍ର ଧରି ପଳାୟନ କରିଥିଲେ, ସେମାନଙ୍କୁ ନିକୋଲ୍‌ସନ୍ ଗୋଡ଼ାଇ ଗୋଡ଼ାଇ ଗୁଳି କରିଥିଲେ ଓ ୧୪୦ ଜଣଙ୍କୁ ଗିରଫ କରିଥିଲେ । ଏମାନଙ୍କ ମଧ୍ୟରୁ ବାଛି ବାଛି ୪୦ ଜଣଙ୍କୁ କମାଣ ସାମ୍‌ନାରେ ଗୁଳି କରାଗଲା ।

ପଞ୍ଜାବର ବିଭିନ୍ନ ସ୍ଥାନରେ ଅବସ୍ଥାପିତ ବଙ୍ଗବାହିନୀର ତିରିଶିରୁ ପଞ୍ଚତିରିଶ ହଜାର ସିପାହୀଙ୍କୁ ନିରସ୍ତ୍ର ଓ ବରଖାସ୍ତ କରିସାରିବା ପରେ ୟୁରୋପିଆନ୍ ସୈନ୍ୟମାନଙ୍କୁ ଦିଲ୍ଲୀ ପଠାଇବା ପାଇଁ ଜନ୍ ଲରେନ୍‌ସ ମନସ୍ଥ କରିଥିଲେ । କିନ୍ତୁ ସାରା ଉତ୍ତର ଭାରତରେ ବ୍ରିଟିଶ ସୈନ୍ୟସଂଖ୍ୟା ଯେ ଅତି ନଗଣ୍ୟ, ତାହା ତାଙ୍କୁ ଅଜଣା ନଥିଲା । ଏ ଅଭାବ ମେଣ୍ଟାଇବା ପାଇଁ ସେ ପଞ୍ଜାବର ଶିଖ୍ ଓ ମୁସଲମାନ୍‌ମାନଙ୍କ ମଧ୍ୟରୁ ଏକ ନୂତନ ସୈନ୍ୟବାହିନୀ ଗଢ଼ିବାକୁ ଉଦ୍ୟମ କଲେ । ତାଙ୍କର ବଦ୍ଧମୂଳ ଧାରଣା ଥିଲା ଯେ ଶିଖ୍‌ମାନଙ୍କର ଇଂରେଜମାନଙ୍କ ସହିତ ଯେତେ ଶତ୍ରୁତା ଥିଲେ ମଧ୍ୟ, ବ୍ୟକ୍ତିଗତ ଭାବରେ ସେମାନଙ୍କୁ ସମ୍ମାନ କରନ୍ତି । ଅଥଚ ଭାରତୀୟ ସିପାହୀମାନଙ୍କ ସାହାଯ୍ୟରେ ପଞ୍ଜାବ ଦଖଲ କରାଯାଇଥିବାରୁ ସେମାନେ ସିପାହୀମାନଙ୍କୁ ଘୃଣାଚକ୍ଷୁରେ ଦେଖନ୍ତି । ପୁନଶ୍ଚ ମୁସଲମାନମାନେ ଅତୀତରେ ଏ ଦେଶର ଶାସକ ଥିବା ହେତୁ, ସେମାନେ ମଧ୍ୟ ହିନ୍ଦୁ ସିପାହୀମାନଙ୍କୁ ହୀନଦୃଷ୍ଟିରେ ଦେଖୁଥିଲେ । ଲରେନ୍‌ସ ଏହି ସାମ୍ପ୍ରଦାୟିକ ଭେଦଭାବର ସୁଯୋଗ ନେଇ ପଞ୍ଜାବରେ ଶିଖ୍ ଓ ମୁସଲମାନମାନଙ୍କୁ ନେଇ ଏକ ସ୍ୱତନ୍ତ୍ର ସୈନ୍ୟବାହିନୀ ଗଠନ କଲେ । ଏଥିରେ ସାମିଲ ହେଲେ ମୁଖ୍ୟତଃ ରଣଜିତ୍ ସିଂଙ୍କ ଅମଳର ବିତାଡ଼ିତ ଶିଖ୍ ସୈନିକ ଓ ଲାହୋର ଓ ପେଶାଓ୍ୱାର ଆଦି ଅଞ୍ଚଳର

କେତେକ ମୁସଲମାନ ସିପାହୀ । ତାଙ୍କର ବିଶ୍ୱାସ ଥିଲା ଯେ, ହିନ୍ଦୁ ସିପାହୀଙ୍କ ବିରୁଦ୍ଧରେ ଶିଖ୍ ଓ ମୁସଲମାନମାନେ ଇଂରେଜମାନଙ୍କ ପ୍ରତି ବିଶ୍ୱସ୍ତ ରହିବେ । ଏହି ରୂପେ ସଂଗଠିତ ଏକ ନୂତନ ସୈନ୍ୟବାହିନୀ ଓ ଘୋଡ଼ସବାର ବାହିନୀକୁ ଲରେନ୍ସ କିଛିଦିନ ତାଲିମ ଦେଇ ଦିଲ୍ଲୀକୁ ପ୍ରେରଣ କଲେ । ଏଣେ କ୍ୟାନିଂ କିଛିଟା ସାହସ ବାନ୍ଧି ମାଡ୍ରାସ ଓ ବମ୍ବେରୁ କେତେକ ବ୍ରିଟିଶ୍ ସୈନ୍ୟଙ୍କୁ କଲିକତା ମଗାଇଲେ । ଗୋଟିଏ ଷ୍ଟିମର୍ ପଠାଇ ରେଙ୍ଗୁନ୍‌ରେ ଥିବା ବ୍ରିଟିଶ୍ ସୈନ୍ୟମାନଙ୍କୁ କଲିକତା ଫେରାଇ ଆଣିଲେ । ଏହି ସମୟରେ କଲିକତାରେ ସମ୍ବାଦ ପହଞ୍ଚିଲା ଯେ, ଗୋଟିଏ ସେନାବାହୀ ବ୍ରିଟିଶ ଯୁଦ୍ଧ ଜାହାଜ ଚୀନ ଅଭିମୁଖେ ଭାରତ ମହାସାଗର ଦେଇ ଯାତ୍ରା କରୁଛି । ଭାରତର ପରିସ୍ଥିତି ଦୃଷ୍ଟିରୁ ସେଇ ଜାହାଜଟିକୁ କଲିକତା ଫେରାଇ ଆଣିବାକୁ କ୍ୟାନିଂ ଏକ ପତ୍ର ଲେଖି ଷ୍ଟିମର ଜରିଆରେ ପଠାଇଲେ ଏବଂ ନିର୍ଦ୍ଦେଶ ଦେଲେ ଯେ, ଏ ଷ୍ଟିମର ନିଶ୍ଚିତ ଭାବରେ ଜାହାଜକୁ ହୁଏତ ରେଙ୍ଗୁନ୍ ବା ସିଙ୍ଗାପୁର୍‌ରେ ଭେଟି ତାଙ୍କର ଏହି ଗୁରୁତ୍ୱପୂର୍ଣ୍ଣ ପତ୍ରଟି ହସ୍ତାନ୍ତର କରିବ । କାର୍ଯ୍ୟତଃ ଷ୍ଟିମର ସିଙ୍ଗାପୁରଠାରେ ବ୍ରିଟିଶ ଯୁଦ୍ଧ ଜାହାଜକୁ କ୍ୟାନିଂଙ୍କ ଚିଠି ଦେବାକୁ ସମର୍ଥ ହେଲା ଏବଂ ପତ୍ରଲିଖିତ ବିଷୟର ଗୁରୁତ୍ୱ ଦୃଷ୍ଟିରୁ ଜାହାଜର କର୍ମକର୍ତ୍ତାମାନେ ଚୀନ ନଯାଇ ଭାରତ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲେ । ଏହିପରି ଭାବରେ କଲିକତାରେ ବହୁସଂଖ୍ୟକ ବ୍ରିଟିଶ ସୈନ୍ୟ ମହଜୁଦ ହେଲେ ଓ କ୍ୟାନିଂ ସିମଲାରେ ଥିବା ଆନ୍‌ସନ୍‌ଙ୍କୁ ତୁରନ୍ତ ଦିଲ୍ଲୀ ଆକ୍ରମଣ କରିବା ପାଇଁ ନିର୍ଦ୍ଦେଶ ଦେଲେ ।

ଆନ୍‌ସନ୍ ଅବଶ୍ୟ ଆଉ ଦୁଇମାସ ପରେ ଗ୍ରୀଷ୍ମଋତୁ ପାର୍ ହେଲେ ଦିଲ୍ଲୀ ଆକ୍ରମଣ ପାଇଁ ପ୍ରସ୍ତାବ କରୁଥିଲେ । କିନ୍ତୁ ଲରେନ୍ସଙ୍କର ଉଦ୍ଦେଶ୍ୟ ଥିଲା ତୁରନ୍ତ ଦିଲ୍ଲୀରେ ସମବେତ ବିଦ୍ରୋହୀ ସିପାହୀମାନଙ୍କ ଉପରେ ଜୋର୍‌ଦାର୍ ଧକ୍କା ଦେବା । ସେ ଆନ୍‌ସନ୍‌ଙ୍କୁ ପତ୍ର ଲେଖିଲେ– "ମୋର ଅନୁରୋଧ ଆପଣ ବିଚାର କରି ଦେଖନ୍ତୁ । ଭାରତ ଇତିହାସରେ ବ୍ରିଟିଶମାନେ କେବେ ଦୁର୍ବଳମନା ପରାମର୍ଶରେ ପରିଚାଳିତ ହୋଇ ଜୟ ଲାଭ କରିନାହାଁନ୍ତି । ବରଂ କ୍ଲାଇଭ୍ ମାତ୍ର ୧୨୦୦ ସୈନ୍ୟଙ୍କୁ ନେଇ ପଲାସି ଯୁଦ୍ଧରେ ସିରାଜଉଦ୍ଦୌଲାଙ୍କର ୪୦,୦୦୦ ସୈନିକଙ୍କୁ ପରାସ୍ତ କରିଥିଲେ ଓ ବଙ୍ଗଳାରେ ଜୟ ପତାକା ଉଡ଼ାଇଥିଲେ ।" ଏହାପରେ କମାଣ୍ଡର-ଇନ୍-ଚିଫ୍ ଆନ୍‌ସନ୍ ପ୍ରାୟ ଅଢ଼େଇ ହଜାର ବ୍ରିଟିଶ ସୈନ୍ୟଙ୍କ ନେତୃତ୍ୱରେ ଅମ୍ବାଲାରେ ଆସି ପହଞ୍ଚିଲେ ଏବଂ ଏଥିରେ ସ୍ଥାନୀୟ ପ୍ରଶାସକମାନେ ବ୍ରିଟିଶ୍ ସୈନ୍ୟବାହିନୀ ପାଇଁ ହାତୀ, ଓଟ, ଶଗଡ଼ଗାଡ଼ି ଓ ଖାଦ୍ୟଶସ୍ୟ ସମେତ ମାଲପତ୍ର ବୋହିବାପାଇଁ ଉପଯୋଗୀ କୁଲି ଓ

ଶ୍ରମିକ ମଧ୍ୟ ଯୋଗାଡ଼ କରି ଦେଇଥିଲେ ଏବଂ ଏହି କାର୍ଯ୍ୟରେ ପାତିଆଲା ଓ ଜିନ୍ଦର ରାଜାମାନେ ବିଶେଷ ସହାୟକ ହୋଇଥିଲେ । ଆନ୍‌ସନ୍ ମଇ ୨୪ ତାରିଖରେ ଅମ୍ବାଲା ଛାଡ଼ିବାର ଦିନେ ଦୁଇଦିନ ପରେ କଲେରାରେ ଆକ୍ରାନ୍ତ ହେଲେ ଏବଂ କାରନାଲରୁ ସେନାପତି ବାର୍ଣ୍ଣାଡ୍‌ଙ୍କୁ ଡକାଇ ତାଙ୍କୁ କାର୍ଯ୍ୟଭାର ଅର୍ପଣ କଲେ । ମଇ ୨୭ ତାରିଖ ଦିନ ତାଙ୍କର ମୃତ୍ୟୁ ହେଲା । ଦିଲ୍ଲୀ ଯାତ୍ରାପଥରେ ପ୍ରାୟ ଏକ ସପ୍ତାହ ଯିବା ପରେ ବର୍ଣ୍ଣାଡ୍ ଜୁନ୍ ଆଠ ତାରିଖରେ ଦିଲ୍ଲୀଠାରୁ ଚାରିମାଇଲ ଦୂର ବଦଲି-କି-ସରାଇଠାରେ ଗ୍ରାଣ୍ଡ୍ ଟ୍ରଙ୍କ୍ ରୋଡ୍ ଉପରେ ସିପାହୀମାନଙ୍କର ସମ୍ମୁଖୀନ ହେଲେ । ସଂଖ୍ୟାରେ ଅବଶ୍ୟ ସିପାହୀମାନେ ଥିଲେ ଅଧିକ, କିନ୍ତୁ ବ୍ରିଟିଶମାନଙ୍କର ଉନ୍ନତ ଯୁଦ୍ଧକୌଶଳ ଦୃଷ୍ଟିରୁ ସେମାନଙ୍କୁ ହାର ମାନିବାକୁ ପଡ଼ିଲା ଓ ସେମାନେ ବହୁ ଅସ୍ତ୍ରଶସ୍ତ୍ର ଓ କମାଣ ଆଦି ପରିତ୍ୟାଗ କରି ସହର ଭିତରକୁ ପଳାୟନ କଲେ ।

ଦିନେ ଦୁଇଦିନ ବିଶ୍ରାମ ନେବା ପରେ ବର୍ଣ୍ଣାଡ ଦିଲ୍ଲୀ ଆକ୍ରମଣ କରିବା ପାଇଁ ସ୍ଥିର କରିଥିଲେ । କିନ୍ତୁ କେତେକ ପୁରାତନ ଅଫିସର ତାଙ୍କୁ ପରାମର୍ଶ ଦେଲେ ଯେ, ଏତେ ଅଳ୍ପସଂଖ୍ୟକ ସୈନ୍ୟ ଧରି ଦିଲ୍ଲୀ ଭିତରକୁ ପ୍ରବେଶ କରିବା ନିରାପଦ ହେବ ନାହିଁ । ଏଣୁ ସେ ବଦ୍‌ଲି-କି-ସରାଇ ଉପରେ ଡେରା ପକାଇ ନୂତନ ୟୁରୋପିଆନ୍ ସୈନ୍ୟଙ୍କର ଆଗମନକୁ ଅପେକ୍ଷା କଲେ । ଏ ମଧ୍ୟରେ ସିପାହୀମାନେ ଦିଲ୍ଲୀର କମିସନର ଓ ଜିଲ୍ଲା ମାଜିଷ୍ଟ୍ରେଟ୍ ପ୍ରଭୃତି, ବହୁ ବଡ଼ବଡ଼ କର୍ମଚାରୀମାନଙ୍କୁ ହତ୍ୟା କରିଥିଲେ । ଇଂରେଜମାନଙ୍କ ପାଇଁ ସବୁଠାରୁ ଦୁଃଖଦ ଘଟଣା ଘଟିଲା ଜୁଲାଇ ୫ ତାରିଖରେ । ସେହିଦିନ ବର୍ଣ୍ଣାଡ କଲେରାରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ ।

ବ୍ରିଟିଶ ସାମରିକ କର୍ତ୍ତାମାନେ ହିସାବ କରି ଦେଖିଲେ ଯେ, ଜୁନ୍ ପ୍ରଥମ ସପ୍ତାହ ପୂର୍ବରୁ ବହୁ ଇଂରେଜଙ୍କୁ ହତ୍ୟା କରାଯାଇଛି । ଯେଉଁମାନେ ବଞ୍ଚିଯାଇଛନ୍ତି, ସେମାନେ ହୁଏତ କୌଣସି ଭାରତୀୟ ବନ୍ଧୁଙ୍କ ଘରେ ଗୋପନରେ ରହି ଅଛନ୍ତି ଓ ଅନ୍ୟ କେତେକ ଉତ୍ତର ପଶ୍ଚିମ ପ୍ରଦେଶରେ ଥିବା ଅଯୋଧ୍ୟାର ରାଜଧାନୀ ଲକ୍ଷ୍ନୌ, କିମ୍ବା ଆଗ୍ରା, କାନପୁର ଓ ଆଲ୍ଲାହାବାଦ ଆଦି ସହରରେ ଥିବା ଫୋର୍ଟମାନଙ୍କରେ ଆଶ୍ରୟ ନେଇଛନ୍ତି । ଉତ୍ତର ପଶ୍ଚିମ ପ୍ରଦେଶର ରାଜଧାନୀ ଆଗ୍ରାଠାରେ ରହୁଥିଲେ ଲେଫ୍‌ନାଣ୍ଟ୍ ଗଭର୍ଣ୍ଣର କୋଲଭିନ୍, ଯେ କି ଯୁବା ବୟସରେ ଲର୍ଡ ଅକ୍‌ଲାଣ୍ଡଙ୍କର ଅତି ପ୍ରିୟପାତ୍ର ଥିଲେ । କିନ୍ତୁ ଏହି ବୈପ୍ଲବିକ ପରିସ୍ଥିତିରୁ ମୁକୁଳିବା ପାଇଁ ସେ କୌଣସି ନିଷ୍ପତ୍ତି ନେଇପାରୁ ନଥିଲେ । ଆଗ୍ରାରେ ସେତେବେଳେ ଦୁଇ ରେଜିମେଣ୍ଟ ସିପାହୀ ସ୍ଥାନିତ ଥିଲେ ।

ସେମାନଙ୍କୁ ନିରସ୍ତ୍ର କରାଯିବ କି ନାହିଁ, ସେ ବିଷୟରେ ମଧ୍ୟ କୋଲ୍‌ଭିନ୍‌ଙ୍କର କୌଣସି ନିଷ୍ପତ୍ତି ନଥିଲା । ଯାହାହେଉ ପରିଶେଷରେ ମଇ ୩୧ ତାରିଖ ଦିନ ସେମାନଙ୍କୁ ନିରସ୍ତ୍ର କରାଗଲା । ଏହା ପରେ ପରେ କୋଲ୍‌ଭିନ୍‌ଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଲା ଓ ପ୍ରାୟ ତିନିମାସ ପରେ ଆଗ୍ରାଠାରେ ତାଙ୍କର ମୃତ୍ୟୁ ହେଲା ।

କଲିକତାରୁ ଉତ୍ତର ଭାରତକୁ ୟୁରୋପୀୟ ସୈନ୍ୟପ୍ରେରଣ ମଇ ମାସ ୨୩ ତାରିଖରେ ଆରମ୍ଭ ହେଲା । ମାଡ୍ରାସରୁ ଗୋଟିଏ ବ୍ରିଟିଶ ବାହିନୀ କଲିକତାରେ ପହଞ୍ଚିବା ପରେ ୪୦୦ ମାଇଲ ଦୂରସ୍ଥ ବନାରସକୁ ପଠାଇବା ପାଇଁ ନିଷ୍ପତ୍ତି ହେଲା । କିନ୍ତୁ ଡେଲ୍‌ହାଉସୀଙ୍କ ସମୟରେ ଯେଉଁ ରେଳଯାତ୍ରାର ବ୍ୟବସ୍ଥା କରାଯାଇଥିଲା, ତାହା କେବଳ ୧୦୦ ମାଇଲ୍ ଦୂର ରାଣୀଗଞ୍ଜ ପର୍ଯ୍ୟନ୍ତ । ବାକି ୩୦୦ ମାଇଲ୍ ହୁଏତ ରାସ୍ତାରେ କିମ୍ବା ନଦୀ ପଥରେ ଯିବାକୁ ହେଉଥିଲା । ଘୋଡ଼ାଗାଡ଼ିରେ ଗଲେ ବନାରସରେ ପହଞ୍ଚିବାକୁ ପାଞ୍ଚଦିନ, ଶଗଡ଼ରେ ଗଲେ ୧୫ ଦିନ ଏବଂ ନଦୀ ପଥରେ ପ୍ରତିକୂଳ ସ୍ରୋତରେ ନୌକାରେ ଗଲେ ତା'ଠାରୁ ଅଧିକ ସମୟ ଲାଗୁଥିଲା । ମାଡ୍ରାସ ସୈନ୍ୟବାହିନୀର ସାମରିକ କର୍ତ୍ତା ଥିଲେ କର୍ଣ୍ଣେଲ ନୀଲ୍ ଓ ସେ ମାତ୍ର ୬୦ ଜଣ ସୈନ୍ୟଙ୍କୁ ସାଙ୍ଗରେ ଧରି ଜୁନ୍ ତିନି ତାରିଖରେ ବନାରସରେ ପହଞ୍ଚିଲେ । ନୀଲ୍ ଥିଲେ ଅତ୍ୟନ୍ତ ସାହସୀ ଓ ସୁଦକ୍ଷ ସେନାପତି, କିନ୍ତୁ ତାଙ୍କଠାରୁ ବଳି ନ୍ୟାୟ ନୀତିବର୍ଜିତ ନିର୍ଦ୍ଦୟ ବୋଧହୁଏ ଆଉ କେହି ନଥିଲେ । କଳେବଳେ-କୌଶଳେ ସେ ବନାରସରେ ମହଜୁଦ ଥିବା ସିପାହୀମାନଙ୍କୁ ନିରସ୍ତ୍ର କରିବାକୁ ସମର୍ଥ ହେଲେ ଓ ସେମାନେ ବନ୍ଧୁକ ଫୋପାଡ଼ି ଦେଇ ଗାଁ ଗହଳକୁ ପଳାଇଲେ । ବନାରସ ଲୋକେ ଏତେ ଭୟଭୀତ ହୋଇଯାଇଥିଲେ ଯେ, ସେମାନେ ୟୁରୋପିଆନ୍ ଓ ଖ୍ରୀଷ୍ଟିଆନ୍‌ମାନଙ୍କ ଉପରେ ଆଉ ଆକ୍ରମଣ ନକରି ଚୁପ୍‌ଚାପ୍ ରହିଲେ । ଏହାପରେ ବନାରସରେ ଅଧିକ ସଂଖ୍ୟାରେ ୟୁରୋପୀୟ ସୈନ୍ୟ ଆସି ପହଞ୍ଚିଲେ ଏବଂ ନୀଲ୍ ଦୁଇଦିନ ମଧ୍ୟରେ ୭୦ ମାଇଲ୍ ରାସ୍ତା ଅତିକ୍ରମ କରି ଆଲ୍ଲାହାବାଦରେ ପହଞ୍ଚିଲେ ।

ଆଲ୍ଲାହାବାଦ ଥିଲା ସଂପୂର୍ଣ୍ଣ ଶାନ୍ତ । ଷଷ୍ଠ ସିପାହୀ ରେଜିମେଣ୍ଟ ସହିତ କ୍ୟାପ୍‌ଟେନ୍ ବ୍ରାଇଜର୍‌ଙ୍କର ନେତୃତ୍ୱରେ ୪୦୦ ଶିଖ୍ ସୈନ୍ୟ ଓ ପ୍ରାୟ ୬୦ ଜଣ ୟୁରୋପିଆନ ବନ୍ଧୁକଧାରୀ ସୈନ୍ୟ ଆଲ୍ଲାହାବାଦରେ ଅବସ୍ଥାପିତ ଥିଲେ । ନୀଲ ପହଞ୍ଚିବା ପରେ ଏହି ଷଷ୍ଠ ରେଜିମେଣ୍ଟକୁ ନିରସ୍ତ୍ର କରିବା ପାଇଁ ନିଷ୍ପତ୍ତି ନେଲେ ଓ କୌଣସି ପ୍ରତିଷେଧକ ବ୍ୟବସ୍ଥା ନକରି ସେହିଦିନ ସନ୍ଧ୍ୟାରେ ସିପାହୀମାନଙ୍କର

ପ୍ୟାରେଡ୍ କରାଇଲେ । ପ୍ୟାରେଡ୍ ପରେ ସିପାହୀମାନଙ୍କ ମଧ୍ୟରେ ପ୍ରଚାର ହେଲା ଯେ, ସେମାନଙ୍କୁ ଅସ୍ତ୍ରଚ୍ୟୁତ ଓ ବରଖାସ୍ତ କରିବାର ଏହି ପ୍ୟାରେଡ୍ ହେଉଛି ପୂର୍ବାଭାସ । ରାତି ୯ଟା ସମୟରେ ସିପାହୀମାନେ ବିଦ୍ରୋହ ଘୋଷଣା କଲେ ଓ ୬ ଜଣ ଅଫିସର ଓ ଆଠଜଣ ତରୁଣ କ୍ୟାଡେଟ୍‌ଙ୍କୁ ହତ୍ୟା କରି ଏପରି ଭୟାନକ ବାତାବରଣ ସୃଷ୍ଟି କଲେ ଯେ, ସେମାନଙ୍କ ଉପରିସ୍ଥ ଅଫିସର କର୍ଣ୍ଣେଲ୍ ସିମ୍ପସନ୍ ସମେତ ଅନ୍ୟ ଅଫିସରମାନେ ଆଲ୍ଲାହାବାଦ ଫୋର୍ଟ ମଧ୍ୟକୁ ପଳାଇ ସେଠାରେ ଆଶ୍ରୟ ନେଲେ । ଫୋର୍ଟରେ ରହୁଥିବା ୟୁରୋପିଆନ୍ ଅଫିସର୍ ଓ କର୍ମଚାରୀମାନେ ଅତ୍ୟନ୍ତ ବିପଜ୍ଜନକ ଅବସ୍ଥାରେ ସମୟ କାଟୁଥିଲେ । ଯଦି ବ୍ରାଇଜର୍‌ଙ୍କର ୪୦୦ ଶିଖ୍ ସୈନ୍ୟ ଷଷ୍ଠ ରେଜିମେଣ୍ଟର ସିପାହୀମାନଙ୍କ ସହିତ ମିଶି ଯାଇଥାଆନ୍ତେ, ତା' ହେଲେ ୟୁରୋପିଆନମାନଙ୍କୁ କେହି ବଞ୍ଚାଇ ପାରି ନଥାନ୍ତେ । କିନ୍ତୁ ଶିଖ୍‌ମାନେ ଯେ ଭାରତୀୟ ସିପାହୀଙ୍କୁ ଘୃଣା କରୁଥିଲେ, ବ୍ରାଇଜର୍ ତା'ର ସୁବିଧା ନେଇ ଶିଖ୍‌ମାନଙ୍କୁ ଖୁସ୍ ରଖିବାପାଇଁ ସମସ୍ତ ଚେଷ୍ଟା କରୁଥିଲେ । ପରେ ପରେ ଆଉ ଶହେ ଜଣ ୟୁରୋପିଆନ୍ ସୈନ୍ୟ ଆସି ନୀଲଙ୍କ ସହ ଆଲ୍ଲାହାବାଦରେ ଯୋଗ ଦେଲେ । ପ୍ରଥମଦିନ ସେ ସାହସ କରି ସହର ଭିତରକୁ ପ୍ରବେଶ କଲେ ନାହିଁ । ଖବର ମିଳିଥିଲା ଯେ, ସହର ନିକଟସ୍ଥ ଦରିଆଗଞ୍ଜ ବସ୍ତିରେ କେତେକ ସିପାହୀ ଆଶ୍ରୟ ନେଇଛନ୍ତି । ଏଣୁ ଫୋର୍ଟର କମାଣଗୁଡ଼ିକରୁ ନିକଟସ୍ଥ ଦରିଆଗଞ୍ଜ ବସ୍ତି ଉପରକୁ ଗୁଳି ଚଳାହେଲା । ପରଦିନ ନୀଲ୍‌ଙ୍କ ନେତୃତ୍ୱରେ ଗୋଟିଏ କ୍ଷୁଦ୍ର ୟୁରୋପିଆନ୍ ବାହିନୀ ସହର ଭିତରେ ପ୍ରବେଶ କରି ଦେଖିଲେ ଯେ, ଆଲ୍ଲାହାବାଦ ସଂପୂର୍ଣ୍ଣ ଜନମାନବ ଶୂନ୍ୟ । ପ୍ରଚାର ହୋଇଛି ଯେ, ଦରିଆଗଞ୍ଜ ପରି ଇଂରେଜମାନେ ପୂରା ସହରକୁ ଧ୍ୱଂସ କରିଦେବେ । ଏହା ସତ୍ତ୍ୱେ ନୀଲ୍ ତାଙ୍କର ପ୍ରତିଶୋଧପରାୟଣ ମନୋବୃତ୍ତି ତ୍ୟାଗ କରିନଥିଲେ ଏବଂ ଶିଖ୍ ସୈନ୍ୟମାନଙ୍କୁ ପଠାଇ ନିକଟସ୍ଥ ଗାଁ-ଗଣ୍ଡାରେ ନିଆଁ ଲଗାଇ ଜାଳିଦେବା ଏବଂ ପ୍ରତ୍ୟେକ ଦିନ ନିରପରାଧ ଲୋକଙ୍କୁ ଧରି ଆଣି ହତ୍ୟାକରିବା ତାଙ୍କର ମୁଖ୍ୟ କାର୍ଯ୍ୟ ଥିଲା ।

ଆଲ୍ଲାହାବାଦରୁ କାନପୁର ଯିବା ପାଇଁ ସେ ପ୍ରଚେଷ୍ଟା ଆରମ୍ଭ କଲେ । ଚାରିଶହ ୟୁରୋପିଆନ୍ ଓ ତିନିଶହ ଶିଖ୍ ସୈନ୍ୟଙ୍କୁ ମେଜର ରେନାର୍ଡ଼ଙ୍କ ନେତୃତ୍ୱରେ କାନପୁର ପଠାଇବା ପାଇଁ ବ୍ୟବସ୍ଥା ହେଲା । କିନ୍ତୁ ଏଥିପାଇଁ ଆବଶ୍ୟକ ବଳଦଗାଡ଼ି ଓ କୁଲି ମଜୁରିଆ ମିଳିବା ସମ୍ଭବ ନଥିଲା । କର୍ଣ୍ଣେଲ ନୀଲ୍‌ଙ୍କର ଅତ୍ୟାଚାର ହେତୁ ରାସ୍ତାପାଖ

ଗାଁ-ଗଣ୍ଡାରୁ ଲୋକେ ଘରଦ୍ୱାର ଛାଡ଼ି ପଳାଇଥିଲେ । ଏ ସତ୍ତ୍ୱେ ନୀଲ୍, ମେଜର ରେନାର୍ଡ଼ଙ୍କୁ ପୂର୍ବର ଧ୍ୱଂସଲୀଳା ଚାଲୁ ରଖିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ଏବଂ ରେନାର୍ଡ ମଧ୍ୟ ସେ ନିର୍ଦ୍ଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ପ୍ରତ୍ୟେକ ଦୁଷ୍କର୍ମର ଯେ ପ୍ରତିଫଳ ସହଜରେ ମିଳେ, ସେ ଶିକ୍ଷା କର୍ଣ୍ଣେଲ ନୀଲ୍ ବା ମେଜର୍ ରେନାର୍ଡ଼ଙ୍କର ନଥିଲା ।

ନୀଲଙ୍କ ଦୁର୍ଭାଗ୍ୟକୁ ଯେଉଁ ୩୦ ତାରିଖ ଜୁନ୍‌ରେ ରେନାର୍ଡ କାନପୁର ଯାତ୍ରା କଲେ, ସେହିଦିନ ସନ୍ଧ୍ୟାରେ ଜଣେ ବରିଷ୍ଠ ସାମରିକ ଅଫିସର ତାଙ୍କଠାରୁ ଦାୟିତ୍ୱ ନେବା ପାଇଁ ଆଲ୍ଲାହାବାଦରେ ପହଞ୍ଚିଲେ । ଆନସନ୍‌ଙ୍କ ମୃତ୍ୟୁପରେ କମାଣ୍ଡର-ଇନ୍-ଚିଫ୍ ଦାୟିତ୍ୱ ନେବା ପାଇଁ କ୍ୟାନିଂ ମାଡ୍ରାସର କମାଣ୍ଡର-ଇନ୍-ଚିଫ୍ ସାର୍ ପ୍ୟାଟ୍ରିକ୍ ଗ୍ରାଣ୍ଟଙ୍କୁ ନିର୍ଦ୍ଦେଶ ଦେଇଥିଲେ । ପ୍ୟାଟ୍ରିକ୍ ମାଡ୍ରାସରୁ ତାଙ୍କ ସହିତ ହାଭେଲକ୍ ନାମକ ଜଣେ କର୍ଣ୍ଣେଲ୍ ଓ କେତେକ ୟୁରୋପିଆନ୍ ସୈନ୍ୟଙ୍କ ସହ କଲିକତାରେ ପହଞ୍ଚିଲେ । ହାଭେଲକ୍ ଥିଲେ ଜଣେ ପୋଖତ ସାମରିକ ଅଫିସର । ସେ ଭାରତରେ ୪୨ ବର୍ଷ ଜୀବନ କଟାଇବା ମଧ୍ୟରେ ପରସିଆନ୍ ଓ ହିନ୍ଦୁସ୍ଥାନୀ ଭାଷା ଶିଖିଥିଲେ ଏବଂ ବର୍ମା, ଆଫଗାନିସ୍ଥାନ ଓ ପଞ୍ଜାବ ଯୁଦ୍ଧରେ ଅଂଶ ଗ୍ରହଣ କରି ଯଥେଷ୍ଟ ସାମରିକ ଅଭିଜ୍ଞତା ମଧ୍ୟ ହାସଲ କରିଥିଲେ । ସେ ଥିଲେ ଜଣେ ଦୁର୍ଦ୍ଧର୍ଷ ସୈନିକ, ତତ୍‌ସହ ଥିଲେ ଜଣେ ଧର୍ମପ୍ରାଣ ଖ୍ରୀଷ୍ଟିଆନ୍ । କଲିକତା ନିକଟସ୍ଥ ଶ୍ରୀରାମପୁରର ଜଣେ ବ୍ୟାପ୍‌ଟିଷ୍ଟ ମିଶନାରୀଙ୍କ କନ୍ୟାକୁ ବିବାହ କରି ସେ ସୈନ୍ୟମାନଙ୍କ ସହିତ ପ୍ରାର୍ଥନା ଓ ବାଇବେଲ୍ ପାଠରେ ବହୁ ସମୟ କଟାଉଥିଲେ । ଏହି କାରଣରୁ କର୍ଣ୍ଣେଲ୍ ପଦରୁ ତାଙ୍କର ଉପରକୁ ପଦୋନ୍ନତି ହୋଇନଥିଲା । କିନ୍ତୁ କଲିକତାରେ ପହଞ୍ଚିବା ପରେ ତାଙ୍କୁ ବ୍ରିଗେଡିଅର୍ ଜେନେରାଲ୍ ପଦରେ ନିଯୁକ୍ତ କରି କାନ୍‌ପୁର୍ ଓ ଲକ୍ଷ୍ନୌର ସୁରକ୍ଷା ପାଇଁ ଆଲ୍ଲାହାବାଦ ବାଟେ ପଠାଗଲା । କମାଣ୍ଡର-ଇନ୍-ଚିଫ୍ ସାର୍ ପ୍ୟାଟ୍ରିକ୍ ଗ୍ରାଣ୍ଟ ଖୋଦ୍ କଲିକତାରେ ରହି ଯୁଦ୍ଧ ପରିଚାଳନା ଓ ସଂରଜାମ ବ୍ୟବସ୍ଥାର ଦାୟିତ୍ୱ ଗ୍ରହଣ କଲେ ଓ କାନପୁର ଅଭିମୁଖେ ହାଭେଲକ ଆଲ୍ଲାହାବାଦ ବାଟେ ଯାତ୍ରା କଲେ ।

ହାଭଲେକ୍ ଜୁନ୍ ୩୦ ତାରିଖରେ ଆଲ୍ଲାହାବାଦରେ ପହଞ୍ଚିଲା ବେଳକୁ ରେନାର୍ଡ କେତେକ ବ୍ରିଟିଶ ସୈନ୍ୟ ଓ କେତେଜଣ ଶିଖ୍ ସୈନ୍ୟଙ୍କୁ ଧରି ନୀଲ୍‌ଙ୍କ ନିର୍ଦ୍ଦେଶରେ କାନପୁର ଅଭିମୁଖେ ଯାତ୍ରା କରିଛନ୍ତି । ଏହି ସମୟରେ କାନପୁର ପରିସ୍ଥିତି ଥିଲା ଅତି ସଙ୍କଟମୟ । କାନପୁରରେ କେତେଜଣ ବ୍ରିଟିଶ ଅଫିସର ଓ ସେମାନଙ୍କର ପିଲାଛୁଆ

ଥିଲେ । କାନପୁର ଥିଲା ଏକ ସମୃଦ୍ଧିଶାଳୀ ସହର । ଜୋତା ବ୍ୟବସାୟ ପାଇଁ କାନପୁରର ପ୍ରସିଦ୍ଧି ଉତ୍ତର ଭାରତରେ ପରିବ୍ୟାପ୍ତ ଥିଲା ଏବଂ ସହର ଦାୟିତ୍ୱରେ ଥିଲେ କମ୍ପାନୀ ଦ୍ୱାରା ନିଯୁକ୍ତ ମେଜର ଜେନେରାଲ ସାର୍ ହ୍ୟୁ ହ୍ୱିଲର୍ ଓ ତାଙ୍କ ନେତୃତ୍ୱରେ ଚାରି ରେଜିମେଣ୍ଟ ସିପାହୀ, ଅର୍ଥାତ୍ ମୋଟ୍ ୩୦୦୦ ଭାରତୀୟ ସିପାହୀ । ସ୍ଥାନୀୟ ୟୁରୋପିଆନ୍ କର୍ମଚାରୀ ଓ ତାଙ୍କର ପରିବାରର ସ୍ତ୍ରୀ, ପିଲାଙ୍କ ବ୍ୟତୀତ ମାତ୍ର ୧୫୦ ଜଣ ୟୁରୋପିଆନ୍ ସିପାହୀମାନଙ୍କର ତତ୍ତ୍ୱାବଧାନ କରୁଥିଲେ । ଏଣୁ ହ୍ୱିଲର କଲିକତାରୁ ୟୁରୋପିଆନ୍ ସୈନ୍ୟ ଆସିବା ପର୍ଯ୍ୟନ୍ତ ଭାରତୀୟ ସିପାହୀମାନଙ୍କ ସହିତ ଯଥାସମ୍ଭବ ସଦ୍‌ଭାବ ରକ୍ଷା କରି ଚଳୁଥିଲେ ।

ଜୁନ୍ ୪ ତାରିଖରେ ସିପାହୀମାନେ ବିଦ୍ରୋହ ଘୋଷଣା କଲେ । ମାତ୍ର ବ୍ରିଟିଶ ଅଫିସରମାନଙ୍କୁ ହତ୍ୟା ନକରି ସେମାନେ ଟ୍ରେଜେରି ଓ ଅସ୍ତ୍ରାଗାର ଲୁଣ୍ଠନ କରି ସମସ୍ତ ସଞ୍ଚିତ ଅର୍ଥ ଓ ଅସ୍ତ୍ରଶସ୍ତ୍ର ନେଇ ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ । କାନପୁରଠାରୁ କେତେ ମାଇଲ୍ ଦୂରରେ ବିଠୁର ନାମକ ସ୍ଥାନରେ ପେଶୱା ଗାଦିରୁ ବିତାଡ଼ିତ ନାନା ସାହେବ ବସବାସ କରି ରହୁଥିଲେ । ତାଙ୍କ ବାପାଙ୍କ ମୃତ୍ୟୁ ପରେ ତାଙ୍କର ପେନ୍‌ସନ୍ ବନ୍ଦ ହୋଇଥିଲେ ମଧ କାନପୁରସ୍ଥିତ ଇଂରେଜ ଅଫିସରଙ୍କ ସହିତ ସେ ଉତ୍ତମ ସମ୍ପର୍କ ରଖୁଥିଲେ । ସିପାହୀମାନେ ଦିଲ୍ଲୀ ଯିବା ବାଟରେ ନାନା ସାହେବଙ୍କୁ ନେତା ବୋଲି ସ୍ୱୀକାର କରି ତାଙ୍କୁ ଧମକ ଚମକ ଦେଇ ପେଶୱା ଘୋଷଣା କଲେ ଓ ଦିଲ୍ଲୀ ଅଭିମୁଖେ ତାଙ୍କୁ ଆଗେଇ ନେଲେ । ଦିଲ୍ଲୀଠାରୁ ପ୍ରାୟ ୧୦ ମାଇଲ୍ ଦୂର କଲ୍ୟାଣପୁର ନାମକ ସ୍ଥାନରେ ରାତ୍ରିଯାପନ କରୁଥିବା କାଳରେ କେତେକ ସମ୍ପର୍କୀୟ ଓ ବନ୍ଧୁ ନାନାଙ୍କୁ ପରାମର୍ଶ ଦେଲେ ଯେ ଦିଲ୍ଲୀରେ ତାଙ୍କୁ ବାହାଦୂର ଶାହ ଜାଫରଙ୍କର ଅଧସ୍ତନ ହୋଇ ରହିବାକୁ ହେବ, କିନ୍ତୁ କାନପୁର ଫେରିଆସିଲେ ସେ ଏକ ନୂତନ ପେଶୱା ରାଜ୍ୟ ସ୍ଥାପନ କରି ତା'ର ସାର୍ବଭୌମ କ୍ଷମତାଧିକାରୀ ହୋଇପାରିବେ । ଏ ପ୍ରସ୍ତାବ ନାନା ସାହେବଙ୍କ ପାଇଁ ସନ୍ତୋଷଜନକ ଥିଲା । ସେ ସିପାହୀମାନଙ୍କୁ ସାଙ୍ଗରେ ଧରି ପୁଣି କାନପୁର ଫେରିଲେ ଓ ବ୍ରିଟିଶ୍‌ମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ପ୍ରସ୍ତୁତ ହେଲେ ।

ହ୍ୱିଲର୍ କାନପୁର୍‌ରେ ଅତି ଅସହାୟ ଅବସ୍ଥାରେ ରହିଥିବା ସମୟରେ ନାନାଙ୍କ ପକ୍ଷରୁ ତାଙ୍କୁ ପ୍ରସ୍ତାବ ଦିଆଗଲା ଯେ, ସେ ଯଦି ଅସ୍ତ୍ରତ୍ୟାଗ କରି ଆଲ୍ଲାହାବାଦ ଫେରିଯିବାକୁ ପ୍ରସ୍ତୁତ ଅଛନ୍ତି, ତା' ହେଲେ ନାନା ସାହେବ ତାଙ୍କୁ ଗଙ୍ଗା ନଦୀରେ ନୌକାରେ ବସାଇ ପଠାଇବାର ବ୍ୟବସ୍ଥା କରିବେ । ଇଚ୍ଛା ବିରୁଦ୍ଧରେ ସମ୍ମତ ହେବା

ବ୍ୟତୀତ ହ୍ୱିଲରଙ୍କର ଅନ୍ୟ ପନ୍ଥା ନଥିଲା । କିନ୍ତୁ କାନପୁରରେ ଥିବା ୟୁରୋପିଆନ୍‌ମାନେ ନଦୀଘାଟରେ ନୌକାରେ ପ୍ରବେଶ କଲା ପରେ ହଠାତ୍ ସିପାହୀମାନଙ୍କ ପକ୍ଷରୁ ନୌକାଗୁଡ଼ିକ ଉପରେ ଆକ୍ରମଣ ଆରମ୍ଭ ହେଲା । ଖରା ବର୍ଷାରୁ ରକ୍ଷା ପାଇଁ ନୌକା ଉପରେ ଥିବା ଛପରରେ ନିଆଁ ଲଗାଇ ଦିଆଗଲା । ଅନେକ ପ୍ରାଣ ବଞ୍ଚାଇବା ପାଇଁ ନଦୀ ସ୍ରୋତକୁ ଡେଇଁ ପଡ଼ିଲେ, କିନ୍ତୁ ସେମାନଙ୍କୁ ମଧ ନୃଶଂସ ଭାବେ ହତ୍ୟା କରାଗଲା । ପରିଶେଷରେ ନାନା ସାହେବ ହୁକୁମ ଦେଲେ ଯେ, ସ୍ତ୍ରୀ ଓ ପିଲାମାନଙ୍କ ଉପରେ ଆକ୍ରମଣ ନକରି ସେମାନଙ୍କୁ କୂଳକୁ ଫେରାଇ ଅଣାଯାଉ ଓ ପେଶୱାଙ୍କ ଆଦେଶରେ କାନପୁରର୍ ବିବିଘର ନାମକ ସ୍ଥାନରେ ସେମାନଙ୍କୁ ଆଶ୍ରୟ ଦିଆଗଲା ।

ଏଣେ ବ୍ରିଗେଡିଅର୍ ଜେନେରାଲ୍ ହାଭେଲକ୍ ଆଲ୍ଲାହାବାଦ୍‌ରୁ ମେଜର୍ ରେନାର୍ଡ଼୍‌ଙ୍କୁ ଅଧିକ ଦୂର ନଯାଇ ତାଙ୍କୁ ଅପେକ୍ଷା କରିବା ପାଇଁ ନିର୍ଦ୍ଦେଶ ପଠାଇଲେ । ଏ ନିର୍ଦ୍ଦେଶ ଥିଲା ଅତି ସମୟୋପଯୋଗୀ । କାରଣ ଏତେ କମ୍‌ସଂଖ୍ୟକ ସୈନ୍ୟ ଧରି ମରଣ ଯନ୍ତାରେ ପ୍ରବେଶ କରିବାଠାରୁ ଅଧିକ ସୈନ୍ୟ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବା ବରଂ ଶ୍ରେୟସ୍କର । ଏଣେ ହାଭେଲକ୍‌ଙ୍କୁ କାନପୁର ଯିବା ପାଇଁ ଭାରବାହୀ ପଶୁଙ୍କଠାରୁ ଆରମ୍ଭ କରି କୁଲି ମଜୁରିଆର ମଧ ଅଭାବ ଥିଲା । ଯାହାହେଉ ଜୁଲାଇ ୧୨ ତାରିଖ ଦିନ ସକାଳେ ଫତେପୁର ନିକଟରେ ମେଜର୍ ରେନାର୍ଡ଼୍‌ଙ୍କ ସହ ହାଭେଲକ୍ ମିଳିତ ହେଲେ । ଏଣେ ଅଳ୍ପ ସଂଖ୍ୟକ ସୈନ୍ୟଙ୍କୁ ଧରି ରେନାର୍ଡ଼ କାନପୁର ଆସୁଥିବାର ସମ୍ବାଦ ପାଇ ନାନା ସାହେବ ଫତେପୁରଠାରେ ତାଙ୍କ ଉପରେ ଆକ୍ରମଣ କଲେ । ହାଭେଲକ୍ ଚତୁରତାର ସହିତ ନାନା ସାହେବଙ୍କୁ ପଛକୁ ଘୁରିଯାଇ ସେମାନଙ୍କୁ ପଛପଟୁ ଗୁଳି କଲେ । ଏହି ସଣ୍ଣୁଆଶି ଆକ୍ରମଣରେ ପରାଜିତ ହୋଇ ନାନା ସାହେବ ପଳାୟନ କଲେ । ଏହାର ତିନିଦିନ ପରେ ପ୍ରାୟ ୫୦୦୦ ସୈନ୍ୟ ଧରି କାନପୁରଠାରୁ ପ୍ରାୟ ସାତ ମାଇଲ ଦୂରରେ ଇଂରେଜମାନଙ୍କ ଉପରେ ଆକ୍ରମଣ କଲେ । କିନ୍ତୁ ତାଙ୍କର ଉଦ୍ୟମ ବ୍ୟର୍ଥ ହେଲା ଓ ଇଂରେଜମାନେ ସମ୍ପୂର୍ଣ୍ଣ ବିଜୟୀ ହେଲେ । ନାନାଙ୍କର ସୈନ୍ୟମାନେ ବିଶୃଙ୍ଖଳିତ ହୋଇ ଏଣେତେଣେ ପଳାୟନ କଲେ ଓ ସେ ନିଜେ ବିଠୁରରୁ ତାଙ୍କ ପରିବାରକୁ ସାଙ୍ଗରେ ଧରି ଗଙ୍ଗା ନଦୀ ପାର ହୋଇ ଅଯୋଧ୍ୟା ଅଭିମୁଖେ ପଳାୟନ କଲେ । ଏହାପରେ ହାଭେଲ୍‌କଙ୍କ ପ୍ରଥମ କାମ ହେଲା କାନପୁର୍‌ରେ ପ୍ରବେଶ କରି ବିବିଘରୁ ୟୁରୋପୀୟ ସ୍ତ୍ରୀ ପିଲାମାନଙ୍କୁ ଉଦ୍ଧାର କରିବା । କିନ୍ତୁ ଦେଖାଗଲା ଏହି ଦୁଇଶହ ନିରସ୍ତ୍ର ଅସହାୟ ବନ୍ଦୀଙ୍କୁ ଖଣ୍ଡ ଖଣ୍ଡ କରି ହାଣି ଗୋଟାଏ କୂଅରେ ପକାଇ ଦିଆଯାଇଛି । ସେମାନଙ୍କ ମଧ୍ୟରୁ ଜଣେ ହେଲେ ଜୀବିତ ନାହାଁନ୍ତି ।

ଏପରି ଜଘନ୍ୟ ଓ ନିର୍ମମ ହତ୍ୟାକାଣ୍ଡର କାରଣ ସମ୍ପର୍କରେ ଶୁଣାଗଲା ଯେ, ଆଲ୍ଲାହାବାଦରେ କର୍ଣ୍ଣେଲ ନୀଲ୍ ଏବଂ ଆଲ୍ଲାହାବାଦରୁ କାନପୁର ପଥରେ ଗାଁ ଗଣ୍ଡା ସବୁ ଜାଳିପୋଡ଼ି ସାଧାରଣ ନୀରୀହ ଲୋକଙ୍କୁ ହତ୍ୟା କରି ଇଂରେଜମାନେ ଯେଉଁ ଅକଥନୀୟ ଅତ୍ୟାଚାର କରିଛନ୍ତି, ସେ ସମ୍ବାଦ କାନପୁରରେ ବ୍ୟାପିଯାଇଛି ଏବଂ ମୌଲବୀ ଲିଆକତ୍ ଅଲ୍ଲୀ, ଯେ କି ଦିନକ ପାଇଁ ଆଲ୍ଲାହାବାଦର ବାଦଶାହ ହୋଇଥିଲେ, ସେ ଓ ତାଙ୍କ ଅନୁଚରମାନେ କାନପୁର ପଳାଇଆସି ବ୍ରିଟିଶ ଅତ୍ୟାଚାରର ପୁଙ୍ଖାନୁପୁଙ୍ଖ ବିବରଣୀ ପ୍ରଚାର କରିଛନ୍ତି ଏବଂ ବିବିଘର ହତ୍ୟାକାଣ୍ଡ ତାହାର ପ୍ରତିକ୍ରିୟା । ହାଭେଲକ୍ ଅବଶ୍ୟ ଏହି ନୃଶଂସତା ଦେଖି ଉତ୍କ୍ଷିପ୍ତ ହେଲେ । କିନ୍ତୁ ପ୍ରତିଶୋଧପରାୟଣ ହୋଇ ବ୍ରିଟିଶ ଓ ଶିଖ୍ ସୈନ୍ୟମାନେ ଯେପରି ତଦନୁରୂପ ଅମାନୁଷିକ ହତ୍ୟା ଓ ଗୃହଦାହରେ ଲିପ୍ତ ନହୁଅନ୍ତି, ସେଥିପାଇଁ ସ୍ପଷ୍ଟ ନିର୍ଦ୍ଦେଶ ଦେଲେ । ସେତେବେଳକୁ କର୍ଣ୍ଣେଲ ନୀଲ୍ ବ୍ରିଗେଡିଅର୍ ଜେନେରାଲ୍ ପଦକୁ ଉନ୍ନୀତ ହୋଇସାରିଥାନ୍ତି । ନୀଲଙ୍କୁ କାନପୁର ଦାୟିତ୍ୱରେ ରଖି ହାଭେଲକ୍ ଲକ୍ଷ୍ନୌ ଅଭିମୁଖେ ଯାତ୍ରା କଲେ ।

ଲକ୍ଷ୍ନୌରେ ପରିସ୍ଥିତି ଥିଲା କାନପୁର ପରି ଅତି ଶୋଚନୀୟ । ମିରଟ ଓ ଦିଲ୍ଲୀ ସମ୍ବାଦ ଶୁଣିଲା ପରେ ଲକ୍ଷ୍ନୌର ଗଭର୍ଣ୍ଣର ହେନ୍‌ରୀ ଲରେନ୍‌ସ, ହ୍ୱିଲର୍‌ଙ୍କ ପରି ଅଧିକ ୟୁରୋପିଆନ୍ ସୈନ୍ୟସାମନ୍ତ ଆସିବା ଅପେକ୍ଷାରେ ସିପାହୀମାନଙ୍କୁ ଯଥାସମ୍ଭବ ଉତ୍ତ୍ୟକ୍ତ ନ କରିବା ପାଇଁ ଉଦ୍ୟମ କରୁଥିଲେ । ଏଣେ ତାଙ୍କ ନିଜ ରହିବା ଘର ଓ ତା'ର ପରିସରରେ ଥିବା ରହିବା ଘରଗୁଡ଼ିକୁ ବାସୋପଯୋଗୀ କରିବାକୁ ପ୍ରଚେଷ୍ଟା ଚଳାଇଥିଲେ । ଏହି ଅଞ୍ଚଳଟି ପ୍ରାୟ ୩୦ ଏକର ପରିବେଷ୍ଟିତ ବାସଭୂମି ଥିଲା । ଉଦ୍ଦେଶ୍ୟ ହେଲା, ଆବଶ୍ୟକ ହେଲେ ସେହି ସ୍ଥାନରେ ୟୁରୋପିଆନ୍ ଅଧିବାସୀ ଓ ସାମରିକ କର୍ମଚାରୀଙ୍କୁ ଆଶ୍ରୟ ଦିଆଯିବାର ଅଧିକ ବ୍ୟବସ୍ଥା କରିବା । ମଇ ମାସ ୨୩ ତାରିଖଠାରୁ ୟୁରୋପିଆନ୍ ଓ ସ୍ଥାନୀୟ ଖ୍ରୀଷ୍ଟିଆନ୍ ଅଧିବାସୀମାନଙ୍କୁ ଏହି ନୂତନ ପରିସରରେ ଆଶ୍ରୟ ଦେବା ପାଇଁ ବ୍ୟବସ୍ଥା ହେଲା । ମଇ ୩୦ ତାରିଖରେ ସିପାହୀମାନଙ୍କର ଯେଉଁ ବିଦ୍ରୋହ ଆଶଙ୍କା କରାଯାଉଥିଲା, ତାହା କାର୍ଯ୍ୟରେ ପରିଣତ ହେଲା । ଅବଶ୍ୟ ୭୦୦ ସିପାହୀ ଓ ଅଶ୍ୱାରୋହୀ ସୈନ୍ୟମାନେ ବିଦ୍ରୋହୀମାନଙ୍କ ସହିତ ଯୋଗଦେଇ ନଥିଲେ, ଯାହା ଫଳରେ ମାତ୍ର ୨୦୦ ବ୍ରିଟିଶ୍ ସୈନ୍ୟ ବିଦ୍ରୋହୀ ସିପାହୀ ଓ ସେମାନଙ୍କର ସହାୟକ ଲକ୍ଷ୍ନୌବାସୀଙ୍କୁ ପରାଜିତ କରିବା ପାଇଁ ସମର୍ଥ ହୋଇଥିଲେ ।

ଜୁନ୍‌ମାସଟା କୌଣସି ପଟୁ କିଛି ଆକ୍ରମଣ ନଥାଇ ଶାନ୍ତିରେ କଟିଗଲା । ମାତ୍ର ଜୁନ୍ ୨୯ ତାରିଖରେ କାନପୁର୍‌ରେ ହ୍ୱିଲରଙ୍କର ପତନ ସମ୍ବାଦ ମିଳିବାପରେ ପରେ ପରେ ପୁନଶ୍ଚ ଖବର ଆସିଲା ଯେ, ନାନା ସାହେବ ଲକ୍ଷ୍ନୌ ଅଭିମୁଖେ ଆଗେଇ ଆସୁଛନ୍ତି ଏବଂ ଫଇଜାବାଦରେ ଅବସ୍ଥାପିତ କେତେକ ସିପାହୀ ଲକ୍ଷ୍ନୌଠାରୁ ଛଅ ମାଇଲ୍ ଦୂର ଚୀନାହାଟ ମୌଜାରେ ସମବେତ ହୋଇଛନ୍ତି । ପରଦିନ ଜୁନ୍ ୩୦ ତାରିଖରେ ହେନରୀ ଲରେନ୍‌ସ ତାଙ୍କର ସାମରିକ ଅଫିସରଙ୍କ ପରାମର୍ଶ ଅନୁଯାୟୀ ଫଇଜାବାଦର ସିପାହୀମାନଙ୍କ ଉପରେ ହଠାତ୍ ଆକ୍ରମଣ ଆରମ୍ଭ କଲେ । କିନ୍ତୁ ଯେଉଁ ଭାରତୀୟ ସିପାହୀମାନେ, ବିଶେଷତଃ ଗନ୍ ଚାଳକମାନେ ବ୍ରିଟିଶମାନଙ୍କ ସହିତ ରହିଥିଲେ, ସେମାନଙ୍କ ମଧ୍ୟରୁ କେତେକ ବିଶ୍ୱାସଘାତକତା କରି ଅପରପକ୍ଷ ସହ ଯୋଗଦେଲେ । ଯୁଦ୍ଧର ଫଳାଫଳ ହେଲା ବ୍ରିଟିଶମାନଙ୍କ ପାଇଁ ମାରାତ୍ମକ । ଗନ୍ ଚଳାଇବା ଲୋକର ଅଭାବରେ କମାଣ ସବୁ ଅଚଳ ରହିଲା ଏବଂ ସଂଖ୍ୟାଧିକ ସିପାହୀମାନଙ୍କ ଆକ୍ରମଣରେ ବ୍ରିଟିଶ ସୈନ୍ୟମାନଙ୍କୁ ପଛଘୁଞ୍ଚା ଦେବାକୁ ପଡ଼ିଲା । ଅବଶ୍ୟ ବିଦ୍ରୋହୀମାନେ ରେସିଡେନ୍‌ସୀ ପରିସର ଦଖଲ କରିବାକୁ ସମର୍ଥ ହେଲେ ନାହିଁ । କିନ୍ତୁ ଲକ୍ଷ୍ନୌ ସହର ସେମାନଙ୍କ କବ୍‌ଜାରେ ରହିଲା । ସିପାହୀମାନେ ଲକ୍ଷ୍ନୌରେ ପୂର୍ବତନ ନବାବ ଓ୍ୱାଜିଦ୍ ଅଲ୍ଲୀ ଶାହଙ୍କର ବିଧବା ପତ୍ନୀ ବେଗମ୍ ହଜରତ୍ ମହଲଙ୍କର ନାବାଳକ ପୁତ୍ରକୁ ବାଦଶାହ ସ୍ୱୀକାର କରି ଶାସନ ଚଳାଇବାକୁ ଆରମ୍ଭ କଲେ । ମୃତ ବାଦଶାହଙ୍କର ପୂର୍ବତନ ମନ୍ତ୍ରୀମାନଙ୍କୁ ମନ୍ତ୍ରୀ ପଦରେ ନିଆଗଲା ଓ ଫଇଜାବାଦର ଜଣେ ମୌଲବୀ ଅହମ୍ମଦ୍‌ଦୁଲ୍ଲାଙ୍କୁ ଜେଲ୍‌ରୁ ମୁକ୍ତ କରି ତାଙ୍କୁ ପରାମର୍ଶଦାତା ନିଯୁକ୍ତ କରାଗଲା ।

କାନପୁରର ଏହି ଦୁରବସ୍ଥା ସତ୍ତ୍ୱେ ପ୍ରାୟ ୨୫୦ ଜଣ ୟୁରୋପିଆନ୍ ସୈନ୍ୟଙ୍କୁ ବ୍ରିଗେଡିଅର୍ ଜେନେରାଲ୍ ନୀଲ୍‌ଙ୍କ ଦାୟିତ୍ୱରେ ରଖି ହାଭେଲକ୍ ତୁରନ୍ତ ଅଳ୍ପସଂଖ୍ୟକ ସୈନ୍ୟ ସହ ଲକ୍ଷ୍ନୌ ଅଭିମୁଖେ ଯାତ୍ରା କଲେ । ଭାରତୀୟ ସିପାହୀଙ୍କ କବଳରେ ଥିବା କେତେ ଗୁଡ଼ିଏ ଘାଟିକୁ ଆଡ଼େଇଯିବା ପାଇଁ ପ୍ରାୟ ୪୩ ମାଇଲ୍ ଅଧିକ ରାସ୍ତା ଘୂରି ଲକ୍ଷ୍ନୌ ପାଖାପାଖି ପହଞ୍ଚିଲେ । କିନ୍ତୁ ସିପାହୀମାନେ ହାଭେଲକ୍‌ଙ୍କର ଗତିରୋଧ କରିବା ପାଇଁ ଛକି ରହିଥିଲେ । ଲକ୍ଷ୍ନୌଠାରୁ ତିରିଶି ମାଇଲ୍ ଦୂରବର୍ତ୍ତୀ ବସିରାତ୍‌ଗଞ୍ଜ ସହରଠାରେ ହାଭେଲକ୍‌ଙ୍କୁ ସେମାନଙ୍କ ସହିତ ମୁକାବିଲା କରିବାକୁ ପଡ଼ିଲା । ଅବଶ୍ୟ ବସିରାତଗଞ୍ଜରେ ସିପାହୀମାନେ ପରାସ୍ତ ହେଲେ, କିନ୍ତୁ ସେମାନଙ୍କର ଶକ୍ତି ଓ ସାହସ

ଲୋପ ପାଇ ନଥିଲା । ହାଭେଲକ୍ ଦେଖିଲେ ଏଠାରୁ ଅଧିକ ଆଗେଇଲେ ତାଙ୍କର କ୍ଷୟଶୀଳ ସୈନ୍ୟସଂଖ୍ୟା ଆହୁରି କମିଯିବେ ଏବଂ ହୁଏତ ସିପାହୀମାନଙ୍କ ସାମ୍ନାରେ ତାଙ୍କୁ ମୁଣ୍ଡ ନୁଆଁଇବା ପାଇଁ ପଡ଼ିବ । ବସିରତ୍‌ଗଞ୍ଜରୁ ସେ ପୁନର୍ବାର କାନପୁରକୁ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ ଶୁଣିଲେ ଯେ, ଯେଉଁ ୟୁରୋପିଆନ୍ ସୈନ୍ୟ କାନପୁର ଅଭିମୁଖେ ଆସୁଥିଲେ, ସେମାନେ ପାଟନା ନିକଟସ୍ଥ ଦାୟନାପୁରଠାରେ ଅବସ୍ଥାପିତ ସିପାହୀମାନଙ୍କର ବିଦ୍ରୋହ ହେତୁ ଅଟକି ରହିଛନ୍ତି ଏବଂ ଦୁଇମାସ ପୂର୍ବରୁ କୌଣସି ଅଧିକ ସୈନ୍ୟ ଆସିବାର ସମ୍ଭାବନା ନାହିଁ । କେବଳ ଆସିଥିଲେ ଗୋଟିଏ କମ୍ପାନୀ ୟୁରୋପିଆନ୍ ସୈନ୍ୟ ଓ ଦୁଇଟି କମାଣ । ସେମାନଙ୍କୁ ସାଙ୍ଗରେ ଧରି ହାଭେଲକ୍ ପୁନର୍ବାର ଲକ୍ଷ୍ନୌ ଆକ୍ରମଣ ପାଇଁ ଆଗଭର ହେଲେ । ସ୍ଥାନୀୟ ସିପାହୀମାନେ ପୁନର୍ବାର ବସିରତଗଞ୍ଜ ଦଖଲ କରି ନେଇଥିଲେ ଓ ଦ୍ୱିତୀୟଥର ପାଇଁ ସେ ସେମାନଙ୍କୁ ପରାସ୍ତ କଲେ ମଧ୍ୟ ଅଗଷ୍ଟ ମାସର ଗ୍ରୀଷ୍ମ ପ୍ରବାହ ଓ କଲେରାରେ ଆକ୍ରାନ୍ତ ହୋଇ ସେ ବହୁ ସୈନ୍ୟଙ୍କୁ ହରାଇଥିଲେ । ଏଣୁ ତାଙ୍କୁ ପୁନର୍ବାର କାନପୁର ଫେରିବାକୁ ହେଲା ଏବଂ ଅଗଷ୍ଟ ୧୩ ତାରିଖରେ ଅତି କ୍ଲାନ୍ତଶ୍ରାନ୍ତ ଅବସ୍ଥାରେ ସେମାନେ କାନପୁର୍‌ରେ ଆଶ୍ରୟ ନେଲେ । କିନ୍ତୁ ହାଭେଲକ୍‌ଙ୍କ ପାଇଁ ମୁହୂର୍ତ୍ତେ ବିଶ୍ରାମ ନଥିଲା । ସମ୍ବାଦ ମିଳିଲା କାନପୁର ନିକଟସ୍ଥ ବିଠୁରଠାରେ ନାନାସାହେବ ପ୍ରାୟ ଚାରିହଜାର ସିପାହୀଙ୍କ ସହଯୋଗରେ କାନପୁର ଆକ୍ରମଣ ପାଇଁ ପ୍ରସ୍ତୁତ ହେଉଛନ୍ତି । ମୁହୂର୍ତ୍ତେ ବିଳମ୍ବ ନକରି ହାଭେଲକ୍ ସେମାନଙ୍କ ଉପରେ ଝାମ୍ପ ଦେଲେ ଓ ଯୁଦ୍ଧରେ ପରାସ୍ତ ହୋଇ ନାନା ସାହେବଙ୍କର ସୈନ୍ୟମାନେ ପଳାୟନ କଲେ ।

ଉପରୋକ୍ତ ବିବରଣୀରୁ ଦେଖାଯିବ ଯେ, ଅଗଷ୍ଟ ମଧ୍ୟଭାଗ ସୁଦ୍ଧା ବ୍ରିଟିଶମାନଙ୍କ ପାଇଁ ଯୁଦ୍ଧର ଫଳାଫଳ ଅନ୍ଧକାରମୟ ଥିଲା । ଯଦିଓ ସିପାହୀମାନେ ଦିଲ୍ଲୀର ମାଲିକ ଦଖଲକାର ଥିଲେ ଓ ଲୁଟ୍‌ତରାଜ କରି ଆବଶ୍ୟକତା ପରିପୂରଣ କରୁଥିଲେ, ତଥାପି ବୃଦ୍ଧ ବାହାଦୂର ଶାହ ଜାଫର ଥିଲେ ମୋଗଲ ଗାଦିର ସମ୍ରାଟ । ଲକ୍ଷ୍ନୌରେ ଇଂରେଜମାନେ ସେହି ରେସିଡେନ୍‌ସୀ ପରିସର ମଧ୍ୟରେ ରହି ଆତ୍ମରକ୍ଷା କରୁଥିଲେ । କାନପୁରରେ ପ୍ରଥମ ଦଫାରେ ସମସ୍ତ ୟୁରୋପିଆନ୍‌ମାନଙ୍କୁ ନିଶ୍ଚିହ୍ନ କରି ଦିଆଯାଇଥିଲା । ସମସ୍ତ ସାହସିକତା ଓ ବୀରତ୍ୱ ସତ୍ତ୍ୱେ ହାଭେଲକ୍ ଓ ନୀଲ୍ କାନପୁରକୁ ଜଗି ରହିଥିଲେ । କିନ୍ତୁ କାନପୁରରୁ ଲକ୍ଷ୍ନୌ ଯାଇ ସେଠୁ ଇଂରେଜମାନଙ୍କୁ ଉଦ୍ଧାର କରିବା ପାଇଁ ଯଥେଷ୍ଟ ସୈନ୍ୟସାମନ୍ତର ଅଭାବ ଥିଲା । ଏହି ସମୟରେ କଲିକତାରୁ

କାନପୁରର ସୁରକ୍ଷା ପାଇଁ ଗଙ୍ଗା ନଦୀ ପଥ ଦେଇ ଯେଉଁ ୟୁରୋପିଆନ୍ ସୈନ୍ୟମାନେ ଯାଉଥିଲେ, ସେମାନଙ୍କୁ ଦୀର୍ଘଦିନ ଧରି ପାଟନା ନିକଟସ୍ଥ ଦାୟନାପୁର କ୍ୟାଣ୍ଟନମେଣ୍ଟ୍‌ରେ ଅଟକି ରହିବାକୁ ହେଲା । ଦାୟନାପୁରରେ ତିନି ରେଜିମେଣ୍ଟ ଭାରତୀୟ ସିପାହୀ ଓ ଗୋଟିଏ ରେଜିମେଣ୍ଟ ୟୁରୋପିଆନ୍ ସୈନ୍ୟ ରହୁଥିଲେ । ଅବଶ୍ୟ ପାଟନାରେ ସ୍ଥାନୀୟ ପୋଲିସ୍‌ମାନେ ଅସନ୍ତୋଷ ବ୍ୟକ୍ତ କରି ବିଶୃଙ୍ଖଳା ଆଚରଣ କଲେ । ପାଟନାର କମିସନର ଟେଲର୍ ସେମାନଙ୍କୁ କୌଣସିମତେ ନିରସ୍ତ୍ର କରି ଗିରଫ କରିଥିଲେ ଓ ତନ୍ମଧ୍ୟରୁ ଷୋହଳ ଜଣଙ୍କୁ ସର୍ବ ସମ୍ମୁଖରେ ଫାଶୀ ଦିଆହୋଇଥିଲା । ଦାୟନାପୁରର ସାମରିକ ଅଫିସର ଲୟେଡ୍ ଅବଶ୍ୟ ସିପାହୀମାନଙ୍କୁ ନିରସ୍ତ୍ର କରିବା ପାଇଁ ଇଚ୍ଛୁକ ଥିଲେ, କିନ୍ତୁ ତାହା କରିବା ପାଇଁ ତାଙ୍କର ସାହସ ନଥିଲା । ପରିଶେଷରେ ଜୁଲାଇ ୨୪ ତାରିଖରେ ସିପାହୀମାନେ ବିଦ୍ରୋହ ଘୋଷଣା କରି କୋଡ଼ିଏ ମାଇଲ୍ ଦୂରସ୍ଥ ସାହାବାଦ୍ ଜିଲ୍ଲାର ରାଜଧାନୀ ଆରାକୁ ପଳାୟନ କଲେ ଓ ସେଠାରେ ଜଣେ ବଡ଼ ରାଜପୁତ ଜମିଦାର କୁନୱାର ସିଂଙ୍କ ଶରଣାପନ୍ନ ହେଲେ । କୁନୱାର ସିଂ ମଧ୍ୟ ସିପାହୀମାନଙ୍କର ନେତୃତ୍ୱ ଗ୍ରହଣ କରି ଗରିଲା ଯୁଦ୍ଧ ଚଳାଇଲେ । ଯାହାହେଉ ବିହାରର ସଂକଟମୟ ପରିସ୍ଥିତିରୁ ଉଦ୍ଧାର କରିବା ପାଇଁ ଜଣେ ଆର୍ଟିଲେରୀ ଅଫିସର ମେଜର ଭିନ୍‌ସେଣ୍ଟ୍ ଇରେ ବିଶେଷ ସହାୟକ ହେଲେ । ଇରେ ଗଙ୍ଗା ନଦୀ ବାଟ ଦେଇ କଲିକତାରୁ ଆଲ୍ଲାହାବାଦ ଯାଉଥିବା ସମୟରେ ତାଙ୍କୁ ଆରାରେ ୟୁରୋପିଆନ୍‌ମାନେ ଆକ୍ରାନ୍ତ ହୋଇଥିବାର ସମ୍ବାଦ ମିଳିଲା । ସେ ମାତ୍ର ତିନିଟି କମାଣ ଓ ତିନିଶହ ସୈନ୍ୟ ଧରି ଆରା ଆକ୍ରମଣ କଲେ । ଅବଶ୍ୟ ସିପାହୀଙ୍କ ସଂଖ୍ୟା ୟୁରୋପିଆନମାନଙ୍କଠାରୁ ଯଥେଷ୍ଟ ଅଧିକ ଥିଲା । କିନ୍ତୁ ୟୁରୋପିଆନ୍‌ମାନଙ୍କର ଆଧୁନିକ ଏନ୍‌ଫିଲଡ୍ ରାଇଫଲ ସାମ୍ନାରେ ସିପାହୀଙ୍କର ମସ୍‌କେଟ୍ ବନ୍ଧୁକ ଅକାମୀ ହୋଇଗଲା ଏବଂ କୁନ୍‌ୱାର ସିଂ ତୁରନ୍ତ ଆରା ଛାଡ଼ି ତାଙ୍କର ନିଜ ଘର ଜଗଦୀଶପୁରକୁ ପଳାୟନ କଲେ । କିନ୍ତୁ ଇରେ ମଧ୍ୟ କୁନୱାର ସିଂଙ୍କୁ ଜଗଦୀଶପୁରରେ ଶାନ୍ତି ଦେଲେ ନାହିଁ ଏବଂ କୁନ୍‌ୱାର ସିଂ ଓ ତାଙ୍କର ସିପାହୀମାନେ ଛିନଛତ୍ର ହୋଇ ଏଣେତେଣେ ପଳାୟନ କଲେ । ଏହି ଘଟଣା ପରେ ବିହାରର ପରିସ୍ଥିତି ଇଂରେଜମାନଙ୍କ ପାଇଁ ବେଶ୍ ଅନୁକୂଳ ହେଲା ।



# ପ୍ରଳୟରୁ ଜୟଟିକା

ଦୀର୍ଘ ସାଢ଼େ ତିନିମାସ ଧରି ବିଦ୍ରୋହୀ ସିପାହୀମାନଙ୍କର ମୁକାବିଲା କରିବା ସତ୍ତ୍ୱେ ଇଂରେଜମାନେ ସଫଳତାର କୌଣସି ସୂଚନା ଦେଖିପାରୁ ନଥିଲେ । ପଞ୍ଜାବ ବ୍ୟତୀତ ଅନ୍ୟ କେଉଁଠି ସ୍ଥାନୀୟ ଲୋକଙ୍କୁ ନେଇ ନୂତନ ସୈନ୍ୟବାହିନୀ ଗଠନ କରିବା ପାଇଁ ସେମାନେ ସାହସ କରୁନଥିଲେ । ଦିଲ୍ଲୀ ଉପକଣ୍ଠରେ ଗ୍ରାଣ୍ଡ ଟ୍ରଙ୍କ୍ ରୋଡ୍ ରାସ୍ତା ଉପରେ ପ୍ରାୟ ତିନିହଜାର ବ୍ରିଟିଶ୍ ସୈନ୍ୟ ଦିଲ୍ଲୀ ଆକ୍ରମଣ କରିବା ପାଇଁ ଜମାଟ ବାନ୍ଧିଥିଲେ ମଧ, ପୁରୁଣା ଦିଲ୍ଲୀର ଗେଟ୍ ଭାଙ୍ଗି ସହରରେ ପ୍ରବେଶ କରିବା ପାଇଁ ସେମାନଙ୍କର ସାହସ ନଥିଲା । ଏଥିପୂର୍ବରୁ କମାଣ୍ଡର୍-ଇନ୍-ଚିଫ୍ ଆନସନ୍ ଓ ବର୍ଣ୍ଣାଡ୍ ଜଣକ ପରେ ଜଣେ କଲେରାରେ ଆକ୍ରାନ୍ତ ହୋଇ ଅମ୍ବାଲା ଓ ଦିଲ୍ଲୀ ଉପକଣ୍ଠରେ ଦେହତ୍ୟାଗ କରିଥିଲେ । ଉତ୍ତର ପଶ୍ଚିମ ପ୍ରଦେଶର ଗଭର୍ଣ୍ଣର କୋଲଭିନ୍ ମଧ ରୋଗାକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ । ଏପରିକି ଲକ୍ଷ୍ନୌ ସହରର ରେସିଡେନ୍‌ସୀ ପରିସରକୁ ଆୟତ୍ତ କରି ରଖିଥିବା ଗଭର୍ଣ୍ଣର୍ ସାର୍ ହେନରୀ ଲରେନ୍‌ସ ଅଜଣା ସିପାହୀର ଗୁଳିରେ ନିହତ ହେଲେ । ଏତଦ୍ ବ୍ୟତୀତ ବହୁ ସାଧାରଣ ବ୍ରିଟିଶ କର୍ମଚାରୀ ଓ ସାଧାରଣ ସୈନିକ ଅତ୍ୟଧିକ ଗ୍ରୀଷ୍ମ ପ୍ରବାହ ହେତୁ ଏବଂ କଲେରା, ଡିସେଣ୍ଟ୍ରି ଓ ମ୍ୟାଲେରିଆ ଆଦି ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁ ବରଣ କରିଥିଲେ । ଏହି ପରିସ୍ଥିତିରେ ପଞ୍ଜାବର ଗଭର୍ଣ୍ଣର ଜନ୍ ଲରେନ୍ସ ସ୍ଥାନୀୟ ଶିଖ୍‌ମାନଙ୍କୁ ନେଇ ନୂତନ ସୈନ୍ୟବାହିନୀ ଗଠନ କଲେ ଏବଂ ଫିରୋଜପୁର୍‌ରେ ରଖାଯାଇଥିବା କେତେକ ବଡ଼ କମାଣ ସହ ପ୍ରାୟ ଦୁଇହଜାର ସୈନ୍ୟଙ୍କୁ ଜନ୍ ନିକୋଲସନ୍‌ଙ୍କ ନେତୃତ୍ୱରେ ଲାହୋରରୁ ଦିଲ୍ଲୀ ପଠାଇଲେ । ଏହିମାନଙ୍କର ଉପସ୍ଥିତି ପରେ ନଅହଜାର ସୈନ୍ୟଙ୍କର ସମାବେଶ ଇଂରେଜ ସେନାପତି ୱିଲସନ୍‌ଙ୍କୁ ସାହସ ଦେଲା । ସାମରିକ କ୍ଷେତ୍ରରେ ହାଭେଲକ୍‌ଙ୍କ ପରି କେତେଜଣ ଦୁର୍ଦ୍ଧର୍ଷ ସେନାପତି ଓ ପ୍ରଶାସନ କ୍ଷେତ୍ରରେ ପଞ୍ଜାବର ଗଭର୍ଣ୍ଣର ଜନ ଲରେନ୍ସ ପରି କେତେଜଣ ବ୍ୟକ୍ତି ଯୁଦ୍ଧର ଗତି ବଦଳାଇବାରେ ସମର୍ଥ ହୋଇଥିଲେ ।

ପ୍ରକୃତ ଯୁଦ୍ଧ ଆରମ୍ଭ ହେଲା ସେପ୍ଟେମ୍ବର ୧୧ ତାରିଖରେ ଏବଂ ଦୁଇଦିନ ମଧ୍ୟରେ ଦିଲ୍ଲୀର ପ୍ରାଚୀରକୁ କମାଣରୁ ଗୋଳା ବର୍ଷଣ କରି କେତେକ ଜାଗାରେ ଭାଙ୍ଗି ଦିଆଯାଇଥିଲା । ୧୪ ତାରିଖରେ ଚାରି ଦଳ ସୈନ୍ୟ ଅସ୍ତ୍ରଶସ୍ତ୍ର ସମେତ ଏହି ଭଗ୍ନ ପ୍ରାଚୀର ଓ କାଶ୍ମୀରୀ ଗେଟ୍ ଦେଇ ସହର ମଧ୍ୟରେ ପ୍ରବେଶ କଲେ । ସେଦିନ ସନ୍ଧ୍ୟା ସୁଦ୍ଧା ବ୍ରିଟିଶମାନେ ବାରଶହ ସୈନ୍ୟଙ୍କୁ ହରାଇଥିଲେ ଏବଂ ସେନାପତି ୱିଲସନ ଆତଙ୍କଗ୍ରସ୍ତ ହୋଇ ପୁନଶ୍ଚ ସହରରୁ ଗ୍ରାଣ୍ଡ ଟ୍ରଙ୍କ୍ ରୋଡ୍‌କୁ ଫେରିଯିବାକୁ ଚାହୁଁଥିଲେ, କିନ୍ତୁ ତାଙ୍କର ଜଣେ ଇଞ୍ଜିନିୟର ସହକର୍ମୀ ଏପରି ପଦକ୍ଷେପରୁ ବିରତ ରହିବା ପାଇଁ ପ୍ରବର୍ତ୍ତାଇ ଥିଲେ । ୨୦ ତାରିଖ ଦିନ ସକାଳେ ଦେଖାଗଲା ଦିଲ୍ଲୀ ସହର ସମ୍ପୂର୍ଣ୍ଣ ଶୂନ୍‌ଶାନ୍ ଏବଂ ସବୁ ସିପାହୀ ଓ ବହୁ ସ୍ଥାନୀୟ ବାସିନ୍ଦା ଦିଲ୍ଲୀରୁ ପଳାୟନ କରିଛନ୍ତି । ଇଂରେଜମାନେ ମୋଗଲ ସମ୍ରାଟ ବାହାଦୂର ଶାହଙ୍କୁ ଖୋଜିବାରେ ଦେଖାଗଲା, ସେ ସିପାହୀମାନଙ୍କ ସଙ୍ଗରେ ନଯାଇ ହୁମାୟୁନ ଟମ୍ବରେ ନିଜ ପରିବାର ସହିତ ଆଶ୍ରୟ ନେଇଛନ୍ତି । ହଡ୍‌ସନ୍ ସେନାପତି ୱିଲସନ୍‌ଙ୍କର ସମ୍ମତି କ୍ରମେ ତାଙ୍କର ଅନୁଧାବନ କଲେ ଏବଂ ବାହାଦୂର ଶାହ ନିଜ ପ୍ରାଣ ବଦଳରେ ତୁରନ୍ତ ଆତ୍ମସମର୍ପଣ କରିବା ପାଇଁ ପ୍ରସ୍ତୁତ ବୋଲି ଜଣାଇଦେଲେ । ହଡ୍‌ସନ୍ ସେହି ସର୍ତ୍ତରେ ତାଙ୍କୁ ଗିରଫ କଲେ । କିନ୍ତୁ ଅନ୍ୟ କାହାର ଏ ପ୍ରକାରର କ୍ଷମାପ୍ରାର୍ଥନା ମଞ୍ଜୁର କରାଯାଇନଥିଲା । ବାହାଦୂର ଶାହଙ୍କ ଦୁଇପୁଅ ଓ ଜଣେ ନାତିକୁ ସେହିଠାରେ ଗିରଫ କରି ହଡ୍‌ସନ୍ ନିଜ ରିଭଲଭର ଯୋଗେ ସେମାନଙ୍କୁ ହତ୍ୟା କଲେ । କିଛିଦିନ ପରେ ୨୧ ଜଣ ଶାହଜାଦା (ମୁସଲମାନ ଝିଅ)ମାନଙ୍କୁ ମଧ୍ୟ ଫାଶୀ ଦିଆଗଲା ଓ ନବାବ୍‌ଙ୍କୁ କଲିକତା ପଠାଇ ଦିଆଗଲା । ବାହାଦୂର ଶାହ ତାଙ୍କର ଶେଷ ଜୀବନ ରେଙ୍ଗୁନ୍‌ରେ ଅନ୍ତରୀଣ ବନ୍ଦୀ ଭାବରେ କଟାଇଥିଲେ ଓ ସେହିଠାରେ ତାଙ୍କର ମୃତ୍ୟୁ ହେଲା । ମୋଗଲ ରାଜୁତି ଓ ମୋଗଲ ବଂଶ ଏହି ପର୍ଯ୍ୟାୟରେ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇଗଲା ।

ଦିଲ୍ଲୀ ଦଖଲ କରିବାର ପାଞ୍ଚଦିନ ପରେ ଇଂରେଜମାନେ ଦିଲ୍ଲୀରୁ ପ୍ରେରିତ ସୈନ୍ୟମାନଙ୍କ ସାହାଯ୍ୟରେ ଲକ୍ଷ୍ନୌ ଅଧିକାର କରିବାକୁ ସମର୍ଥ ହେଲେ । କିନ୍ତୁ ସେମାନଙ୍କୁ ସେହି ରେସିଡେନ୍‌ସୀ ପରିସରରେ ଆହୁରି ତେପନ ଦିନ ଆବଦ୍ଧ ରହିବାକୁ ହେଲା । କିନ୍ତୁ ଏ ମଧ୍ୟରେ କ୍ୟାନିଂଙ୍କର ଏକ ନିଷ୍ପତ୍ତି ଲକ୍ଷ୍ନୌରେ ଏକ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି କଲା । ଦୀର୍ଘଦିନ ଧରି ବୀରତ୍ୱପୂର୍ଣ୍ଣ ସଂଗ୍ରାମ କରି ଯେଉଁ ହାଭେଲକ୍ ଲକ୍ଷ୍ନୌକୁ ସୁରକ୍ଷା ଦେଇ ଆସିଥିଲେ, କ୍ୟାନିଂ ତାଙ୍କ ଉପରେ ଜେନେରାଲ୍

ଆଉଟ୍‌ରାମ୍‌ଙ୍କୁ ସେନାପତି ଭାବରେ ନିଯୁକ୍ତ କଲେ । ଯଦିଓ ଆଉଟ୍‌ରାମ୍ ହାଭେଲକଙ୍କଠାରୁ ଚାକିରିରେ ବରିଷ୍ଠ, ତଥାପି ସାମରିକ ଅଭିଜ୍ଞତା ଓ ସଫଳତା ଦୃଷ୍ଟିରୁ ହାଭେଲ୍‌କ ଥିଲେ ଯଶସ୍ୱୀ ଓ ଖ୍ୟାତିସଂପନ୍ନ । ଆଉଟରାମ୍ ନିଜେ ମଧ୍ୟ ଏପରି ନିଯୁକ୍ତିରେ ବିଶେଷ ଖୁସୀ ନଥିଲେ । ମାତ୍ର ଅଳ୍ପ କେତେ ଦିନ ପରେ ବୋଧହୁଏ ଅତ୍ୟଧିକ ଶ୍ରମ ଓ କେତେକାଂଶରେ ମାନସିକ ଦୁଶ୍ଚିନ୍ତା ହେତୁ ହାଭେଲକ୍ ରୋଗାକ୍ରାନ୍ତ ହେଲେ ଓ ସେହି ଲକ୍ଷ୍ନୌରେ ଏହି ଦୁର୍ଦ୍ଧର୍ଷ ସଂଗ୍ରାମୀଙ୍କର ମୃତ୍ୟୁ ହେଲା ।

ବିଦ୍ରୋହ ଆରମ୍ଭ ହେବାର ପ୍ରାୟ ସାଢ଼େ ଚାରିମାସ ପରେ ସେପ୍ଟେମ୍ବର ୧୮୫୭ ମସିହାରେ ଇଂରେଜମାନଙ୍କର ମନୋବଳ ଆଶାତୀତ ଭାବରେ ବୃଦ୍ଧି ପାଇଥିଲା । ଭିନ୍‌ସେଣ୍ଟ୍ ଇରେଙ୍କ ପରି ସାହସୀ ସେନାପତିମାନଙ୍କର ଉଦ୍ୟମରେ ଦିଲ୍ଲୀ ସହରରେ ଇଂରେଜମାନେ ବିଜୟଟିକା ହାସଲ କରିଥିଲେ ଏବଂ କାନପୁର ଓ ଲକ୍ଷ୍ନୌ ଆଦି ସହରରେ ଇଂରେଜମାନେ ନିଜର ସ୍ଥିତି ସୁଦୃଢ଼ କରିବାକୁ ସମର୍ଥ ହୋଇଥିଲେ । ଏ ମଧ୍ୟରେ ବହୁ ସିପାହୀ ବିଶୃଙ୍ଖଳ ଅବସ୍ଥାରେ ଏଣେତେଣେ ବୁଲି କେବଳ ଲୁଟ୍‌ତରାଜ କରି ଅର୍ଥ ଉପାର୍ଜନ କରିବାରେ ବ୍ୟସ୍ତ ରହିଲେ । ଯେଉଁ ସିପାହୀମାନେ ନାନା ସାହେବ ଓ ତାଙ୍କର ସହଯୋଗୀ ତାନ୍ତିଆ ଟୋପି, ଫଇଜାବାଦର ମୌଲବୀ ଅହମ୍ମଦ ଉଲ୍ଲା, ଝାନ୍‌ସୀର ରାଣୀ ଓ କୁନ୍‌ୱାର୍ ସିଂଙ୍କ ପରି ତାଲୁକ୍‌ଦାର ଓ ବୁନ୍ଦେଲଖଣ୍ଡର ରାଜାମାନଙ୍କ ପାଖରେ ଆଶ୍ରୟ ନେଇଥିଲେ, ସେମାନେ ସମସ୍ତେ ଗୋଟି ଗୋଟି ହୋଇ ଯୁଦ୍ଧରେ ଇଂରେଜମାନଙ୍କ ଦ୍ୱାରା ପରାସ୍ତ ହେଲେ । ଅବଶ୍ୟ ୧୮୫୮ ମସିହା ମଧ୍ୟଭାଗ ପର୍ଯ୍ୟନ୍ତ ଏହି ବିକ୍ଷିପ୍ତ ଲଢ଼େଇ ଚାଲୁ ରହିଥିଲା । କିନ୍ତୁ ପରିଶେଷରେ ସିପାହୀମାନଙ୍କର ଓ ସେମାନଙ୍କର ତଥାକଥିତ ପୃଷ୍ଠପୋଷକମାନଙ୍କର ସମସ୍ତ ପ୍ରଚେଷ୍ଟା ନିଷ୍ଫଳ ହେଲା ।

୧୮୫୭ ମସିହାରେ ସିପାହୀଙ୍କ ସଂଖ୍ୟା ଥିଲା ୟୁରୋପିଆନ୍ ସୈନ୍ୟଙ୍କଠାରୁ ପ୍ରାୟ ସାତଗୁଣ ଅଧିକ । କିନ୍ତୁ ସଂଖ୍ୟାରେ ଅଧିକ ଥିଲେ ମଧ୍ୟ ଯେଉଁଥିପାଇଁ ଏ ବିଦ୍ରୋହ ଆରମ୍ଭ ହେଲା, ତାହାହିଁ ଶେଷରେ ସେମାନଙ୍କର ପରାଜୟର କାରଣ ହେଲା । ପୂର୍ବରୁ କୁହାଯାଇଛି, ଏହି ସମୟରେ ଇଂରେଜମାନେ ପ୍ରଥମ କରି ସୈନ୍ୟବାହିନୀରେ ଏନ୍‌ଫିଲଡ୍ ରାଇଫଲ୍ ବ୍ୟବହାର କଲେ । ଏହି ରାଇଫଲ୍ ଥିଲା ପୂର୍ବପ୍ରଚଳିତ ମସ୍କେଟ୍ ବନ୍ଧୁକଠାରୁ ଅଧିକ ଶକ୍ତିଶାଳୀ, କିନ୍ତୁ ରାଇଫଲ୍‌ର ଗୁଳି ଯେଉଁ ଖୋଳରେ ରହେ ତହିଁରେ ଗୋ-ଚର୍ବି ଲଗା ହୋଇଛି, ଏହି ଅଭିଯୋଗ କରି ସିପାହୀମାନେ ତାହା ଗ୍ରହଣ କରିନଥିଲେ । ଫଳତଃ ବିଦ୍ରୋହ ସମୟରେ ସିପାହୀଙ୍କ ସଂଖ୍ୟା ଅଧିକ ଥିଲେ ମଧ୍ୟ,

ୟୁରୋପିଆନ୍‌ମାନଙ୍କ ପାଖରେ ଥିବା ଶକ୍ତିଶାଳୀ ରାଇଫଲ୍‌ର ମୁକାବିଲା କରିବା ପାଇଁ ସେମାନେ ସମର୍ଥ ହେଲେ ନାହିଁ । ଅନେକ ରେଜିମେଣ୍ଟରେ ସିପାହୀଙ୍କୁ ନିରସ୍ତ୍ର କରି ବରଖାସ୍ତ କରାଯାଇଥିଲା । କିନ୍ତୁ ଯେଉଁମାନେ ନିରସ୍ତ୍ର ନହୋଇ ପୁରୁଣା ମସ୍କେଟ ବନ୍ଧୁକ ଧରି ପଳାୟନ କଲେ, ସେମାନଙ୍କର ମସ୍କେଟ ବନ୍ଧୁକ ଶକ୍ତିଶାଳୀ ରାଇଫଲ୍‌ର ସାମ୍‌ନା କରିବା ପାଇଁ ଅସମର୍ଥ ହେଲା । ଅଧିକନ୍ତୁ ଏ ବିଦ୍ରୋହର ଉଦ୍ଦେଶ୍ୟ, ଲକ୍ଷ୍ୟ ବା ଆଦର୍ଶ କ'ଣ ସେ ବିଷୟରେ ସେମାନେ ଥିଲେ ଅଜ୍ଞ । ଇଂରେଜମାନଙ୍କୁ ଯଦି ଭାରତରୁ ତଡ଼ି ଦିଆଯାଏ, ତା' ହେଲେ ପୂର୍ବ ଦିନର ଅତ୍ୟାଚାରୀ ରାଜା, ନବାବ ଓ ଜମିଦାର ବା ତାଲୁକଦାରମାନେ କ୍ଷମତାରେ ରହିବେ କି ନାହିଁ, ସେ ବିଷୟ କେହି ଚିନ୍ତା କରୁ ନଥିଲେ କିମ୍ବା ସେ ସମ୍ପର୍କରେ ସେମାନଙ୍କର କୌଣସି ସ୍ପଷ୍ଟ ଧାରଣା ନଥିଲା । କେବଳ ବ୍ରିଟିଶ ନିୟନ୍ତ୍ରଣକୁ ଭାଙ୍ଗି ଖଜଣାଖାନା ଲୁଟ୍ କରିବା, ଜେଲ୍ ଭାଙ୍ଗି କଏଦୀମାନଙ୍କୁ ମୁକ୍ତି ଦେବା ଏବଂ ଆବଶ୍ୟକ ହେଲେ ଲୁଟତରାଜ କରି ଯଥାସମ୍ଭବ ଅର୍ଥ ଧରି ସ୍ୱଗୃହକୁ ପଳାୟନ କରିବା ବା ଦଳବାନ୍ଧି ପୂର୍ବଦିନ ପରି ରାସ୍ତାଘାଟରେ ଡକାୟତି କରିବା ଥିଲା ଅଧିକାଂଶ ସିପାହୀଙ୍କର କର୍ମଧାରା । ପ୍ରଥମରୁ କୌଣସି ନିର୍ଦ୍ଦିଷ୍ଟ ସଂଗଠନ ଓ ନେତୃତ୍ୱ ହାତରେ ନିୟନ୍ତ୍ରଣ କ୍ଷମତା ନ୍ୟସ୍ତ ନକରି ସିପାହୀମାନେ ଯେପରି ଅନ୍ଧ ଭାବରେ କାର୍ଯ୍ୟ କରିଗଲେ, ତଦ୍ୱାରା କୌଣସି ଉଦ୍ଦେଶ୍ୟ ବା ଆଦର୍ଶ ସାଧିତ ହେଲାନାହିଁ । ବରଂଚ ସେମାନେ ବ୍ରିଟିଶ୍ ନିୟନ୍ତ୍ରଣରୁ ମୁକ୍ତ ହୋଇ ସ୍ଥାନୀୟ ରାଜା, ତାଲୁକଦାର ବା ନବାବମାନଙ୍କର ଶରଣାପନ୍ନ ହେଲେ । ସମସ୍ତ ସାହସ ଓ ବୀରତ୍ୱ ସତ୍ତ୍ୱେ ଉଦ୍ଦେଶ୍ୟ ସୁସ୍ପଷ୍ଟ ବା ଆଦର୍ଶ ସର୍ବଜନ ସମର୍ଥିତ ନହେଲେ ଯାହାହୁଏ, ସିପାହୀମାନଙ୍କର କାର୍ଯ୍ୟ ଫଳରେ ତାହାହିଁ ହେଲା ।

ଲୁଟତରାଜ କରିବା ପାଇଁ ଗୁଣ୍ଡାଶ୍ରେଣୀୟ ସହରୀ ଲୋକଙ୍କଠାରୁ ବହୁ ପ୍ରକାର ସାହାଯ୍ୟ ମିଳୁଥିଲା । କିନ୍ତୁ ଯେଉଁ ମାର୍ଗରେ ଗଲେ ପୂର୍ବଦିନର ରାଜ ଅତ୍ୟାଚାର ଓ ପ୍ରଜାପୀଡ଼ନ ଲୋପ ପାଇ ପାରିବ, ତାହା ସେମାନଙ୍କର ଚିନ୍ତାରେ ନଥିଲା । ଏଣୁ କ୍ୟାଣ୍ଟନମେଣ୍ଟରୁ ପଳାୟନ କରି ସେମାନେ ସାଧାରଣତଃ ସ୍ଥାନୀୟ ଜାଗିରଦାର, ନବାବ ବା ବାଦଶାହଙ୍କର ଶରଣାପନ୍ନ ହୋଇ କାର୍ଯ୍ୟ କରିବାକୁ ଆରମ୍ଭ କଲେ । ବାହାଦୂର ଶାହ ଜାଫରଙ୍କ ପରି ଶୁକ୍ଳକେଶ ବୃଦ୍ଧଙ୍କୁ ମୋଗଲ ଗାଦିରେ ବସାଇ ତାଙ୍କୁ ଭାରତର ସମ୍ରାଟ ବୋଲି ଘୋଷଣା କରିବା ଥିଲା ସମ୍ପୂର୍ଣ୍ଣ ଅର୍ଥହୀନ । ଏହାଦ୍ୱାରା ବିଦ୍ରୋହୀ ସିପାହୀମାନଙ୍କର ପତନ ଅନିବାର୍ଯ୍ୟ ହୋଇ ଉଠୁଥିଲା । କୌଣସି ପ୍ରକାରର

ଜନ ସମର୍ଥନ ଲାଭ କରିବା ପାଇଁ ସେମାନଙ୍କର ଉଦ୍ୟମ ନଥିଲା ବା ସେମାନେ ତଦନୁରୂପ କାର୍ଯ୍ୟକ୍ରମ ଗ୍ରହଣ କରିନଥିଲେ । ବିଭିନ୍ନ ରେଜିମେଣ୍ଟର ସିପାହୀମାନଙ୍କ ମଧ୍ୟରେ କୌଣସି ସାଧାରଣ ସାଙ୍ଗଠନିକ ସୂତ୍ର ବା ଏକତା ମଧ୍ୟ ନଥିଲା । ସ୍ଥାନୀୟ ରାଜା, ନବାବ୍ ଓ ତାଲୁକଦାରମାନଙ୍କ ଆଶ୍ରୟପ୍ରାର୍ଥୀ ହୋଇ ଅନେକ ସିପାହୀ ସେଇମାନଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରୁଥିଲେ, ଅଥଚ୍ ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ମଦ୍ୟପ, ଲମ୍ପଟ, ଅତ୍ୟାଚାରୀ ଓ ପ୍ରଜାପୀଡ଼କ । କେବଳ ସେତିକି ନୁହେଁ, ଦକ୍ଷିଣ ପଶ୍ଚିମ ଓ ଦକ୍ଷିଣ ଭାରତର ସିପାହୀମାନେ ଏହି ବିଦ୍ରୋହରେ ଯୋଗ ଦେଇନଥିଲେ । ପରନ୍ତୁ ପଞ୍ଜାବର ଶିଖ୍ ଓ ନେପାଳର ଗୁର୍ଖା ସୈନ୍ୟମାନେ ବ୍ରିଟିଶ ସାମରିକ ନିୟନ୍ତ୍ରଣରେ ସିପାହୀମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ଅବଶ୍ୟ ଏହି ସବୁ ପ୍ରକାରର ଅଶାନ୍ତ ପରିସ୍ଥିତି ମଧ୍ୟରେ କେତେଜଣ ଭାରତୀୟ ଅସୀମ ବୀରତ୍ୱର ସହ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼େଇ କରିଥିଲେ । ଝାନ୍ସୀର ରାଣୀ ବିଂଶବର୍ଷୀୟା ବିଧବା ଲକ୍ଷ୍ମୀବାଈ ଯେପରି ବୀରତ୍ୱର ସହ ଅସାଧାରଣ କରି ଯୁଦ୍ଧଭୂମିରେ ପ୍ରାଣ ଦେଇଥିଲେ, ତାହା ସର୍ବଜନ ବିଦିତ । ଏବେ ମଧ୍ୟ ଭାରତରେ ରାଣୀ ଲକ୍ଷ୍ମୀବାଈଙ୍କୁ ଲୋକେ ଯଥେଷ୍ଟ ସମ୍ମାନ କରନ୍ତି ଏବଂ ତାଙ୍କ ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରନ୍ତି ।

ବହୁ ଐତିହାସିକଙ୍କ ମତରେ ସିପାହୀ ବିଦ୍ରୋହ ଭାରତର ପ୍ରଥମ ସ୍ୱାଧୀନତା ସମର । ବିଦେଶୀ ଇଂରେଜମାନଙ୍କ ବିରୁଦ୍ଧରେ ଅବଶ୍ୟ ଏହା ଥିଲା ଏକ ଦାରୁଣ ସଂଗ୍ରାମ । କିନ୍ତୁ ସ୍ୱାଧୀନତା କହିଲେ ଆଜିକାଲି ଆମେ ଯାହା ବୁଝୁ, ସେହି ଅର୍ଥରେ ଏହି ବ୍ରିଟିଶ ବିରୋଧୀ ସଂଗ୍ରାମକୁ ସ୍ୱାଧୀନତା ସଂଗ୍ରାମ ଆଖ୍ୟା ଦେବା ଏକ ଗୁରୁତର ପ୍ରଶ୍ନବାଚୀ । ଶାସନର ପ୍ରଣାଳୀ ଯାହା ହେଉନା କାହିଁକି, ଗଣତନ୍ତ୍ରକୁ ବାଦ୍ ଦେଇ ଏ ଯୁଗରେ ସ୍ୱାଧୀନତାର କୌଣସି କଳ୍ପନା କରାଯାଇ ନପାରେ । ବିଶେଷତଃ ବିଦେଶୀଙ୍କୁ ତଡ଼ି ପୂର୍ବଦିନର ସେହି ଧର୍ମାନ୍ଧ, ଲମ୍ପଟ, ଅତ୍ୟାଚାରୀ ବାଦଶାହ, ନବାବ, ରାଜା ଓ ତାଲୁକଦାରଙ୍କ ହାତରେ ଶାସନ କ୍ଷମତା ଅର୍ପଣ କରିବାକୁ ସ୍ୱାଧୀନତା ସଂଗ୍ରାମ ଆଖ୍ୟା ଦେବା କେତେଦୂର ଯଥାର୍ଥ ତାହା ବିଚାର୍ଯ୍ୟର ବିଷୟ । ଭାରତ ମାଟିରୁ ଗୋଟିଏ ବିଦେଶୀ ଶକ୍ତିର ରାଜଛତ୍ରକୁ ହଟାଇବାର ଉଦ୍ୟମ ନିଶ୍ଚିତ ଭାବରେ ଏକ ପ୍ରଶଂସନୀୟ ସଂଗ୍ରାମ କିନ୍ତୁ ସିପାହୀମାନେ ଯେଉଁ ଭାବରେ ବୃଦ୍ଧ ମୋଗଲ ବାଦଶାହଙ୍କୁ ଭାରତର ସମ୍ରାଟ ବୋଲି ଘୋଷଣା କଲେ ଏବଂ ଉତ୍ତର ଓ ମଧ୍ୟଭାରତର ନବାବ, ରାଜା ଓ ତାଲୁକଦାରମାନଙ୍କୁ ଯେଉଁ ଭାବରେ ଆମନ୍ତ୍ରଣ କରି କ୍ଷମତା ଅର୍ପଣ କଲେ, ତାହାର

ସମୀକ୍ଷା କରି ବହୁ ଚିନ୍ତାଶୀଳ ବୁଦ୍ଧିଜୀବୀ କହନ୍ତି, ସିପାହୀ ବିଦ୍ରୋହ ଥିଲା ସାମନ୍ତବାଦୀ ଭାରତବର୍ଷର ଶେଷ ରଶ୍ମି, ଏକ ତୈଳହୀନ ଦୀପଶିଖା, ଯାହାକି ନିର୍ବାପିତ ହେବା ପୂର୍ବରୁ ଧପ୍‌ଧପ୍ କରି ଜଳି ଉଠିଥିଲା ।

ସିପାହୀ ବିଦ୍ରୋହର ଶେଷ ପରିଣତି କେଉଁ ରୂପ ନେବ, ତାହା କେହି କଳ୍ପନା କରିପାରୁନଥିଲେ । ଶହେ ବର୍ଷ ପୂର୍ବେ ୧୭୫୭ ମସିହାରେ କ୍ଲାଇଭ୍ ପଲାସି ଯୁଦ୍ଧରେ ସିରାଜଉଦ୍ଦୌଲାଙ୍କୁ ପରାସ୍ତ କରି ବଙ୍ଗ ଦେଶରେ ଇଂରେଜ ଶାସନ ପ୍ରତିଷ୍ଠାର ଶୁଭ ଦେଇଥିଲେ । ଗାଁ ଗାଁ ବୁଲି ଅନେକ ଗଣକ ପ୍ରଚାର କରୁଥିଲେ, ପଲାସି ଯୁଦ୍ଧର ଶହେ ବର୍ଷ ପରେ ସିପାହୀ ବିଦ୍ରୋହରେ ସେହି ଗୋରା ଶାସନ ଭାଙ୍ଗିପଡ଼ିବ । କିନ୍ତୁ ଇଂରେଜମାନେ ସାମ୍ରାଜ୍ୟକୁ ରକ୍ଷା କରିବା ପାଇଁ ଆପ୍ରାଣ ସଂଗ୍ରାମ କରି ସଫଳ ହୋଇଥିଲେ । ବିଦ୍ରୋହ ଦମନ କରିବା ପରେ ଭାରତରେ ଇଷ୍ଟଇଣ୍ଡିଆ କମ୍ପାନୀର ସ୍ଥାନ କ'ଣ ହେବ, ସେ ନେଇ ନାନା ବିରୋଧୀ ମତ ପ୍ରଚାରିତ ହେଉଥିଲା । ୧୮୦୦ ଶତାବ୍ଦୀର ଶେଷ ଆଡ଼କୁ ପାର୍ଲାମେଣ୍ଟ ଆଇନ୍ ପ୍ରଣୟନ କରି ଗଭର୍ଣ୍ଣର ଜେନେରାଲ ନିଯୁକ୍ତ କରିବା କ୍ଷମତା ହାତକୁ ନେଇଥିଲେ ଏବଂ ଫଳରେ ଇଷ୍ଟ ଇଣ୍ଡିଆ କମ୍ପାନୀ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଏକଚାଟିଆ ଅଧିକାର ପ୍ରୟୋଗ କରୁଥିଲେ ମଧ୍ୟ ସରକାରଙ୍କୁ ଭାରତର ଶାସନ କ୍ଷେତ୍ରରେ ହସ୍ତକ୍ଷେପ କରିବା ପାଇଁ ବହୁ ସୁବିଧା ମିଳିଲା । ଏହି ଦ୍ୱୈତ ଶାସନ ସତୁରି ବର୍ଷରୁ ଅଧିକ ଚାଲିଲା ପରେ ଯେତେବେଳେ ସାରା ଭାରତ ଇଂରେଜମାନଙ୍କର କର୍ତ୍ତୃତ୍ୱାଧୀନ ହୋଇଗଲା ଠିକ୍ ସେହି ଘଡ଼ିସନ୍ଧି ସମୟରେ ସିପାହୀ ବିଦ୍ରୋହ ବ୍ରିଟିଶ୍ ଅଧିବାସୀଙ୍କର ଚିନ୍ତା ରାଜ୍ୟରେ ଆଣିଥିଲା ଏକ ବୈପ୍ଳବିକ ପରିବର୍ତ୍ତନ । ଅନେକ ଇଂରେଜ ଲୋକ ଏ ସବୁ ବିଭ୍ରାଟ ପାଇଁ କମ୍ପାନୀ ଶାସନକୁ ଦାୟୀ କଲେ ଏବଂ ଦଳମତ ନିର୍ବିଶେଷରେ ସମସ୍ତେ ଏକମୁଖରେ ଘୋଷଣା କଲେ ଯେ, ଇଷ୍ଟ ଇଣ୍ଡିଆ କମ୍ପାନୀକୁ ପ୍ରଦତ୍ତ ଅନୁମତି ପତ୍ର ତୁରନ୍ତ ପ୍ରତ୍ୟାହାର କରାଯାଉ ଏବଂ ଭାରତର ଶାସନ ଦାୟିତ୍ୱ ଖୋଦ୍ ବ୍ରିଟିଶ ରାଜମୁକୁଟ ବହନ କରନ୍ତୁ । ମହାରାଣୀ ଭିକ୍ଟୋରିଆ ମଧ୍ୟ ଏହି ପ୍ରକାର ଚିନ୍ତା ସହିତ ସହମତ ଥିଲେ ।

ଗଭର୍ଣ୍ଣର ଜେନେରାଲ୍ ଲର୍ଡ଼ କ୍ୟାନିଂ ଭାରତରେ ଅପ୍ରିୟ ଥିଲେ । ଜନମତ ପ୍ରତି ତାଙ୍କର ଖାତିର୍ ନଥିଲା ଏବଂ ଯୁଦ୍ଧରେ କଲିକତାର ୟୁରୋପିଆନ୍ ଅଧିବାସୀମାନେ ସ୍ୱେଚ୍ଛାସେବକ ଭାବରେ କାର୍ଯ୍ୟ କରିବା ପାଇଁ ଯେଉଁସବୁ ପ୍ରସ୍ତାବ ଦେଇଥିଲେ, ତାହାକୁ

ସେ ନାକଚ୍ କରିଦେଇଥିଲେ । ଏଥିପାଇଁ ଭାରତର ଇଂରେଜୀ ସମ୍ବାଦପତ୍ରମାନେ ତାଙ୍କ ବିରୁଦ୍ଧରେ ବହୁ ପ୍ରକାରର କୁତ୍ସା ପ୍ରଚାର କରୁଥିଲେ । ସିପାହୀ ବିଦ୍ରୋହ ଦମନ କରିବାକୁ ଯାଇ କେତେକ ଇଂରେଜ ସେନାପତି ଓ ସୈନ୍ୟ ଭାରତୀୟମାନଙ୍କ ପ୍ରତି ଯେଉଁ ବର୍ବରୋଚିତ ଆଚରଣ ପ୍ରଦର୍ଶନ କରିଥିଲେ ଏବଂ ସିପାହୀମାନଙ୍କ ବିରୋଧରେ ପ୍ରତିଶୋଧ ପରାୟଣ ହୋଇ ଯେଉଁ ହତ୍ୟାର ବିଭୀଷିକା ଛୁଟାଇ ଦେଇଥିଲେ, ଲର୍ଡ୍ କ୍ୟାନିଂ ଥିଲେ ତା'ର ଘୋର ବିରୋଧୀ । ଭାରତୀୟମାନଙ୍କ ପ୍ରତି ଏକ ସାଧାରଣ ଜନପ୍ରିୟ ଶାନ୍ତି ନୀତି ପ୍ରୟୋଗ କରିବା ପାଇଁ ସେ ରାଣୀ ଭିକ୍ଟୋରିଆଙ୍କୁ ମଧ୍ୟ ପତ୍ର ଲେଖିଥିଲେ । ସେ ଯୁକ୍ତି କରିଥିଲେ, ଭାରତରେ ଶାସନ କରିବା ପାଇଁ ଶାସକ ଗୋଷ୍ଠୀ ପ୍ରତି ଶାସିତର ଯେପରି ଆସ୍ଥା ଓ ବିଶ୍ୱାସ ରହିବ, ସେହି ଭାବରେ ଶାସନ ପରିଚାଳିତ ହେବା ଉଚିତ । ଏ ପ୍ରକାର ଚିନ୍ତାଧାରା ରାଣୀ ଭିକ୍ଟୋରିଆ ଓ ତାଙ୍କ ମନ୍ତ୍ରିମଣ୍ଡଳରେ ଅନୁମୋଦିତ ହୋଇଥିଲା ଏବଂ ଭାରତରେ ବସବାସ କରୁଥିବା ବ୍ରିଟିଶ ଅଧିବାସୀ ଓ କମ୍ପାନୀର କର୍ମକର୍ତ୍ତାଗଣ କ୍ୟାନିଂଙ୍କ ଉପରେ ଅସନ୍ତୁଷ୍ଟ ଥିଲେ ମଧ୍ୟ, ବିଦ୍ରୋହ ପରେ କମ୍ପାନୀ ଶାସନକୁ ଲୋପ କରାଗଲା । ବ୍ରିଟିଶ ସରକାର ଶାସନ ଦାୟିତ୍ୱ ନିଜ ହାତକୁ ନେଲେ ଏବଂ ଲର୍ଡ୍ କ୍ୟାନିଂ ଭାରତର ପ୍ରଥମ ଭାଇସରାୟ ନିଯୁକ୍ତ ହେଲେ । ଏ ସଂକ୍ରାନ୍ତୀୟ ଚିଠା ଆଇନ୍ ପାର୍ଲାମେଣ୍ଟରେ ଅଗଷ୍ଟ ୧୮୫୮ ମସିହାରେ ଗୃହୀତ ହେଲା । କମ୍ପାନୀର କୋର୍ଟ ଅଫ୍ ଡାଇରେକ୍ଟର୍ସ ଓ ସରକାରଙ୍କ ଦ୍ୱାରା ନିଯୁକ୍ତ ବୋର୍ଡ୍ ଅଫ୍ କଣ୍ଟ୍ରୋଲ୍ ପରିବର୍ତ୍ତେ ଭାରତ ପାଇଁ ଜଣେ 'ସେକ୍ରେଟେରୀ ଅଫ୍ ଷ୍ଟେଟ୍' ଅର୍ଥାତ୍ ଭାରତ ବିଭାଗୀୟ ମନ୍ତ୍ରୀ ନିଯୁକ୍ତ ହେଲେ । ଅବଶ୍ୟ ଏହି ସେକ୍ରେଟେରୀ ଅଫ୍ ଷ୍ଟେଟ୍‌କୁ ସାହାଯ୍ୟ କରିବା ପାଇଁ ୧୫ ଜଣ ସଭ୍ୟଙ୍କୁ ନେଇ ଗୋଟିଏ କାଉନ୍‌ସିଲ୍ ଗଠିତ ହୋଇଥିଲା, ଯାହାର କି ଅଧିକାଂଶ ସଭ୍ୟ ଥିଲେ ଭାରତରେ ଅନ୍ତତଃ ଦଶବର୍ଷ ଶାସନ କରିଥିବା ବା ଅଧିବାସୀ ଥିବା ସଭ୍ୟ । ଆଠଜଣ ସଦସ୍ୟଙ୍କୁ ମହାରାଣୀ ନିଯୁକ୍ତ କରିଥିଲେ ଏବଂ ବାକି ସାତଜଣଙ୍କୁ କମ୍ପାନୀର ପୂର୍ବତନ କୋର୍ଟ ଅଫ୍ ଡାଇରେକ୍ଟର୍ସ ମନୋନୀତ କରିଥିଲେ । ଭାରତର ଜନସାଧାରଣଙ୍କର ସୁଖଶାନ୍ତି ପାଇଁ ସରକାର ସମସ୍ତ ପ୍ରକାର ବ୍ୟବସ୍ଥା କରିବେ ଏବଂ ରାଜା ଓ ନବାବମାନଙ୍କର କ୍ଷମତାରେ ହସ୍ତକ୍ଷେପ କରିବେ ନାହିଁ ଏବଂ ଭାରତୀୟମାନଙ୍କ ଧର୍ମ ବିଶ୍ୱାସରେ କୌଣସି ପ୍ରକାରେ ଅନ୍ତରାୟ ହେବେ ନାହିଁ ବୋଲି ମହାରାଣୀ ଭିକ୍ଟୋରିଆ ଏକ ଘୋଷଣାନାମା ପ୍ରଚାର କଲେ ।



# କମ୍ପାନୀରୁ କ୍ରାଉନ୍

ବିଦ୍ରୋହରେ ଭାରତୀୟ ସିପାହୀମାନଙ୍କର ବିପର୍ଯ୍ୟୟ ସତ୍ତ୍ୱେ ଇଷ୍ଟ ଇଣ୍ଡିଆ କମ୍ପାନୀର ରାଜୁତି ଭାରତରୁ ଲୋପ ହେଲା ଓ ତା' ବଦଳରେ ମହାରାଣୀ ଭିକ୍ଟୋରିଆଙ୍କ ବ୍ରିଟିଶ ସରକାର ଖୋଦ୍ ଭାରତ ଶାସନର ଦାୟିତ୍ୱ ନେଲେ । ଏ ବିଦ୍ରୋହର ପରିଣତିରେ କେଉଁ ପକ୍ଷର କ'ଣ ଲାଭ ବା କ୍ଷତି ହେଲା, ତା'ର ସମୀକ୍ଷା କରିବା ନିଷ୍ପ୍ରୟୋଜନ । ଉଭୟ ବ୍ରିଟିଶ ଓ ଭାରତୀୟମାନଙ୍କ ଉପରେ ଏହାର ପରିଣତି ଥିଲା ଭିନ୍ନ ପ୍ରକାରର । ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତକୁ ଆସି ୧୭୫୭ ମସିହାରେ ବଙ୍ଗଳାରେ ରାଜୁତି ସ୍ଥାପନ କରିବା ସମୟରୁ ଇଂରେଜମାନେ ଥିଲେ ଅତ୍ୟନ୍ତ ଉଦ୍ଧତ । ଶହେ ବର୍ଷ ପରେ ସିପାହୀ ବିଦ୍ରୋହରେ ଜୟଲାଭ କରି ସେମାନେ ଅଧିକ ଉଗ୍ର, ଉଦ୍ଧତ ଓ ପ୍ରତିହିଂସାପରାୟଣ ହୋଇ ଉଠିଥିଲେ । ଏଣେ ବିଦେଶୀ ଶାସକଙ୍କ ପ୍ରତି ଭାରତୀୟମାନଙ୍କର ମନୋଭାବ ମଧ୍ୟ ପୂର୍ବାପେକ୍ଷା ଅଧିକ ତିକ୍ତ ହୋଇ ଉଠିଥିଲା । ଏହି ସମୟରେ ଭାରତରେ ଅବସ୍ଥାପିତ ଲଣ୍ଡନ ଟାଇମସ୍‌ର ସାମ୍ବାଦିକ ମିଃ. ରସେଲ୍ ଲେଖିଥିଲେ– ଭାରତ ଓ ଲଣ୍ଡନ ମଧ୍ୟରେ ଏ ବିଦ୍ୱେଷ ଦୀର୍ଘଦିନ ଧରି ବଞ୍ଚି ରହିବ ।

ଦକ୍ଷିଣ ଭାରତକୁ ଏ ବିଦ୍ରୋହ କୌଣସି ପ୍ରକାରେ ସ୍ପର୍ଶ କରିନଥିଲା । ପଞ୍ଜାବର ଶିଖ୍ ସୈନ୍ୟ ଓ ନେପାଳର ଗୁର୍ଖାମାନେ ବ୍ରିଟିଶମାନଙ୍କ ସହିତ ପୂର୍ଣ୍ଣ ସହଯୋଗ କରିଥିଲେ । କିନ୍ତୁ ଉତ୍ତର ଭାରତରେ, ବିଶେଷତଃ ଉତ୍ତର-ପଶ୍ଚିମ ପ୍ରଦେଶରେ ବିଦ୍ରୋହର ବିଭୀଷିକା କୌଣସି ନା କୌଣସିଠାରେ ଦୁଇବର୍ଷ ପର୍ଯ୍ୟନ୍ତ ଜ୍ୱଳନ୍ତ ରହିଲା । ଉତ୍ତର ଭାରତର ଭୁକ୍ତଭୋଗୀ ଅଧିବାସୀମାନେ ବ୍ରିଟିଶ ପ୍ରତି-ଆକ୍ରମଣ ଓ ପ୍ରତିହିଂସାପରାୟଣ କାର୍ଯ୍ୟକଳାପ ବହୁ ଦିନ ଧରି ଭୁଲି ନଥିଲେ । ଏଣୁ ଇଂରେଜ ଓ ଭାରତବାସୀଙ୍କ ମଧ୍ୟରେ ଯେଉଁ ତିକ୍ତତା ସୃଷ୍ଟି ହୋଇଥିଲା, ତାହା ଅଧିକ ତିକ୍ତତର ହେଲା ଓ ବହୁବର୍ଷ ପର୍ଯ୍ୟନ୍ତ ଏ ତିକ୍ତତା ବଞ୍ଚି ରହିଲା । ଇଂରେଜମାନେ ଶାସନକର୍ତ୍ତା ଭାବରେ ନିଷ୍କପଟ ଓ ନିରପେକ୍ଷ ଶାସନ ଚଳାଇବା ପରିବର୍ତ୍ତେ ଅଧିକ ହିଂସ୍ର ଓ

ପ୍ରତିଶୋଧପରାୟଣ ହେଲେ । ଅବଶ୍ୟ ଭାଇସରାୟ ଲର୍ଡ଼ କ୍ୟାନିଂ ଏପରି ପ୍ରତିହିଂସାମୂଳକ କାର୍ଯ୍ୟାବଳୀକୁ ଆଦୌ ପସନ୍ଦ କରୁନଥିଲେ, କିନ୍ତୁ ପ୍ରତିହିଂସା ନେବାରେ ଆଗୁଆ ଥିଲେ ସିପାହୀମାନଙ୍କ ଦ୍ୱାରା ସନ୍ତୁଳିତ ଓ ଅତ୍ୟାଚାରିତ ହୋଇଥିବା ବ୍ରିଟିଶ ସାମରିକ ସେନା, କର୍ମଚାରୀ ଓ କଲିକତାର ସାଧାରଣ ୟୁରୋପିଆନ୍ ଅଧିବାସୀ ଓ ବ୍ୟବସାୟୀଗୋଷ୍ଠୀ । ଇଂରେଜମାନଙ୍କର ଆତ୍ମବଡ଼ିମାର ସୀମା ରହିଲା ନାହିଁ । ନିଜକୁ ଓ ନିଜର ଧର୍ମ ଓ ସଂସ୍କୃତିକୁ ଉଚ୍ଚସ୍ଥାନ ଦେଇ ସେମାନେ ଭାରତୀୟ ଅଧିବାସୀ ଓ ସେମାନଙ୍କର ଧର୍ମ, ସମାଜ, ସଂସ୍କୃତି ଓ ସଭ୍ୟତାକୁ ହୀନ ଦୃଷ୍ଟିରେ ଦେଖୁଥିଲେ ଏବଂ ମନେ ହେଉଥିଲା ଇଂରେଜ ଓ ଭାରତୀୟ କେବେ ପରସ୍ପରର ବିଶ୍ୱାସଯୋଗ୍ୟ ହେବେ ନାହିଁ ।

ବ୍ରିଟେନର ଅନେକ ଦାର୍ଶନିକ ଓ ଚିନ୍ତାଶୀଳ ଲୋକ ଭାବୁଥିଲେ, ଖ୍ରୀଷ୍ଟଧର୍ମର ପରିପ୍ରଚାର ଅଧିକ ହେଲେ ଭାରତୀୟ ସମାଜରୁ କୁସଂସ୍କାର ଓ କଳଙ୍କ ଲୋପ ପାଇବ । କିନ୍ତୁ ସିପାହୀ ବିଦ୍ରୋହ ଏ ପ୍ରକାର ଚିନ୍ତାଧାରାକୁ ଧୂଳିସାତ୍ କରିଦେଲା । ବିଦ୍ରୋହର କାରଣ ଅନୁସନ୍ଧାନ କଲେ ଦେଖାଯିବ ଯେ, ସିପାହୀମାନେ ଇଂରେଜମାନଙ୍କର ଧର୍ମପ୍ରଚାରର ଘୋର ବିରୋଧ କରୁଥିଲେ । ବିଦ୍ରୋହରେ ସିପାହୀମାନେ ପରାଜିତ ହେଲେ ମଧ ମିଶନାରୀମାନଙ୍କର ଏହି ଧର୍ମପ୍ରଚାର ଆଉ ସମ୍ଭବ ହେଲାନାହିଁ । ଇଂଲଣ୍ଡରୁ ବହୁ ତାଗିଦା ଓ ଚାପ ସତ୍ତ୍ୱେ ଭାଇସରାୟ କ୍ୟାନିଂ ମିଶନାରୀମାନଙ୍କର ଲାଞ୍ଜ ଧରି ବିପଦର ସମ୍ମୁଖୀନ ହେବାକୁ ଚାହୁଁ ନଥିଲେ । ଲର୍ଡ଼ କ୍ୟାନିଂ ଓ ତାଙ୍କର ପରାମର୍ଶଦାତାମାନେ ସ୍ଥିର କଲେ ଯେ, ଧର୍ମ ପ୍ରଚାର ସମ୍ପର୍କରେ ସରକାର କୌଣସି ପ୍ରକାର ହସ୍ତକ୍ଷେପ କରିବେ ନାହିଁ ଏବଂ ଧର୍ମ ବିଷୟକ ବିବାଦରେ ସରକାର ନିରପେକ୍ଷ ରହିବେ । ଏଥିରେ କିନ୍ତୁ ବଙ୍ଗଳାର ୟୁରୋପିଆନ ଅଧିବାସୀ ବା ସରକାରୀ କର୍ମଚାରୀମାନେ ସନ୍ତୁଷ୍ଟ ନଥିଲେ । ସେମାନେ ବହୁ ସୂତ୍ରରୁ ଅର୍ଥ ସଂଗ୍ରହ କରି ଓ ଆବଶ୍ୟକ ହେଲେ ସରକାରୀ କ୍ଷମତାର ଅପବ୍ୟବହାର କରି ଅନୁନ୍ନତ ଅଞ୍ଚଳ ଓ ସେଠାର ଅଧିବାସୀମାନଙ୍କ ମଧରେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ଧର୍ମାନ୍ତରିକରଣ ଚାଲୁ ରଖିଥିଲେ । ଏଣେ ହିନ୍ଦୁ ସମାଜରୁ କୁସଂସ୍କାରର ବିଲୋପ ପାଇଁ ରାଜା ରାମମୋହନ ରାୟ ପ୍ରଭୃତି ସଂସ୍କାରକମାନଙ୍କ ଦ୍ୱାରା ପ୍ରତିଷ୍ଠିତ 'ବ୍ରାହ୍ମ ସମାଜ' ଆଦି ଧର୍ମୀୟ ଆନ୍ଦୋଳନ ବହୁ ଭାବରେ କ୍ଷତିଗ୍ରସ୍ତ ହେଲା । ବ୍ରାହ୍ମ ସମାଜ କାଳକ୍ରମେ ଦୁଇ ତିନି ଭାଗରେ ବିଭକ୍ତ ହେଲା ।

ପ୍ରଶାସନିକ କ୍ଷେତ୍ରରେ ଯେଉଁସବୁ ପରିବର୍ତ୍ତନ ହେଲା, ତାହା ମଧ୍ୟ ସନ୍ତୋଷଜନକ ନଥିଲା । ସିପାହୀ ବିଦ୍ରୋହ ପରେ ଗଭର୍ଣ୍ଣର ଜେନେରାଲଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ରେ ସଦସ୍ୟ ଥିଲେ, ବଙ୍ଗଳାର ଦୁଇଜଣ ବରିଷ୍ଠ କର୍ମଚାରୀ, ଜଣେ ସାମରିକ ସଭ୍ୟ, ଇଂଲଣ୍ଡରୁ ପ୍ରେରିତ ଜଣେ ଆଇନ୍ ସଦସ୍ୟ ଓ ଖୋଦ୍ କମାଣ୍ଡର-ଇନ୍-ଚିଫ୍ । କ୍ୟାନିଂ ଅନୁଭବ କଲେ, ଏ ବ୍ୟବସ୍ଥା ଦ୍ୱାରା କାର୍ଯ୍ୟରେ ବାସ୍ତବିକ ଅସୁବିଧା ସୃଷ୍ଟି ହେଉଛି । ସଦସ୍ୟମାନଙ୍କ ଭିତରେ ମତାନ୍ତର ଓ ମନାନ୍ତର ହେତୁ ପ୍ରଶାସନିକ କାର୍ଯ୍ୟରେ ଅଗ୍ରସର ହେବା ସମ୍ଭବ ହେଉନାହିଁ । ତେଣୁ ୧୮୫୯ ମସିହାରେ ସେ ପ୍ରଥମେ ପ୍ରସ୍ତାବ କଲେ ଯେ, କାଉନ୍‌ସିଲ୍‌କୁ ଭାଙ୍ଗିଦେବା ଉଚିତ ଏବଂ ତତପରିବର୍ତ୍ତେ କେତେଜଣ ମୁଖ୍ୟ ସେକ୍ରେଟେରୀ ଗଭର୍ଣ୍ଣର ଜେନେରାଲ୍‌ଙ୍କ ସାହାଯ୍ୟକାରୀ ହେବା ଉଚିତ । କେତେକ ପରାମର୍ଶ ଦେଲେ ଯେ, କମ୍ପାନୀ ଶାସନର ଆଦିକାଳରୁ ଗଭର୍ଣ୍ଣର ଜେନେରାଲ୍ ଗୋଟିଏ କାଉନ୍‌ସିଲ୍‌ର ପରାମର୍ଶକ୍ରମେ କାର୍ଯ୍ୟ କରିଆସୁଛନ୍ତି । ଏଣୁ ହଠାତ୍ କାଉନ୍‌ସିଲ୍‌କୁ ବରଖାସ୍ତ କରିବା ଉଚିତ ହେବନାହିଁ । ବରଂଚ୍ ଏପରି ପଦକ୍ଷେପ ଦ୍ୱାରା ଖୋଦ୍ ସେକ୍ରେଟେରୀ ଅଫ୍ ଷ୍ଟେଟ୍‌ଙ୍କ ନିର୍ଦ୍ଦେଶ ଅନୁଯାୟୀ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ କାର୍ଯ୍ୟ କରିବାକୁ ହେବ । କ୍ୟାନିଂ ତୁରନ୍ତ ତାଙ୍କର ମୂଳ ପ୍ରସ୍ତାବରେ କେତେକ ମୌଳିକ ପରିବର୍ତ୍ତନ କରି ବ୍ରିଟିଶ ସରକାରଙ୍କୁ ଅନୁରୋଧ କଲେ ଯେ, ପ୍ରଶାସନକୁ ସୁଦୃଢ଼ ଓ ସୁଶୃଙ୍ଖଳିତ କରିବା ପାଇଁ ଏକ ବା ଏକାଧିକ ବିଭାଗ ଜଣେ ଜଣେ ସେକ୍ରେଟେରୀଙ୍କ ଦାୟିତ୍ୱରେ ଏବଂ ବୈଦେଶିକ ବିଭାଗ ଏବଂ ଦେଶୀୟ ରାଜ୍ୟ ସହିତ ସମ୍ପର୍କ ବିଷୟକ ବିଭାଗ ଖୋଦ୍ ଗଭର୍ଣ୍ଣର ଜେନେରାଲଙ୍କ ହାତରେ ରହିବା ଉଚିତ । ବିଭାଗୀୟ ସେକ୍ରେଟେରୀମାନେ ଗଭର୍ଣ୍ଣର ଜେନେରାଲଙ୍କ ସହିତ ପରାମର୍ଶକ୍ରମେ ନିଜ ବିଭାଗର ଶାସନ ପରିଚାଳନା କରିବେ । କେବଳ ଯେଉଁଠି ବିଭିନ୍ନ ବିଭାଗ ମଧ୍ୟରେ ମତଭେଦ ହେବ, ସେ କ୍ଷେତ୍ରରେ ବିବାଦୀୟ ବିଷୟଟିକୁ ସେକ୍ରେଟେରୀମାନଙ୍କର ମିଳିତ ବୈଠକରେ ପେସ୍ କରାଯିବ ଓ ତଦନୁଯାୟୀ ନିଷ୍ପତ୍ତି ନିଆଯିବ । ୧୮୬୧ ମସିହାରେ ପାର୍ଲାମେଣ୍ଟରେ ଇଣ୍ଡିଆନ୍ କାଉନସିଲ୍ ଅଫ୍ ଆକ୍ଟ ଗୃହୀତ ହୋଇ ମୋଟାମୋଟି କ୍ୟାନିଂଙ୍କର ଏହି ପରିବର୍ତ୍ତିତ ଯୋଜନାକୁ ଗ୍ରହଣ କରାଯାଇଥିଲା । ଶାସନ ସଂକ୍ରାନ୍ତୀୟ ସମସ୍ତ ବିଷୟ କାର୍ଯ୍ୟକାରୀ ହେବା ପୂର୍ବରୁ କାଉନସିଲର ମିଳିତ ବୈଠକରେ ଗୃହୀତ ହେବାର ଆବଶ୍ୟକତା ରହିଲା ନାହିଁ ।

୧୮୬୧ ମସିହା ପୂର୍ବରୁ ଗଭର୍ଣ୍ଣର ଜେନେରାଲ୍‌ଙ୍କ ଏକ୍‌ଜିକ୍ୟୁଟିଭ୍ କାଉନସିଲ୍ ବ୍ୟବସ୍ଥା ସଭା ଓ ଆଇନ୍‌କାନୁନ୍ ବିଷୟ ଆଲୋଚ୍ନା କରିବା ସମୟରେ ମୁଖ୍ୟ ବିଚାରପତି ଓ ଅନ୍ୟ ଜଣେ ବିଚାରପତିଙ୍କୁ କାଉନ୍‌ସିଲ୍‌ର ସଦସ୍ୟ ଭାବେ ଗ୍ରହଣ କରୁଥିଲେ । କିନ୍ତୁ ପ୍ରଶାସନିକ ସମସ୍ୟାର ଆଲୋଚ୍ନା ବେଳେ ଏହି ବିଚାରପତିମାନେ କାଉନ୍‌ସିଲ୍ ବୈଠକରେ ଯୋଗ ଦେବାରୁ ବଞ୍ଚିତ ହେଉଥିଲେ । କାର୍ଯ୍ୟତଃ ଦେଖାଗଲା ଯେ, ଡେଲ୍‌ହାଉସୀଙ୍କର ଏହି ପଞ୍ଜିକୃତ ବ୍ୟବସ୍ଥା କାର୍ଯ୍ୟନିର୍ବାହରେ ବିଶେଷ ସହାୟକ ହେଲା ନାହିଁ । ପ୍ରଶାସନିକ କ୍ଷେତ୍ରରୁ ଯେଉଁ ବୟସ୍କ ଓ ଅଭିଜ୍ଞ କର୍ମଚାରୀମାନେ କାଉନ୍‌ସିଲର ସଦସ୍ୟ ଥିଲେ, ସେମାନେ ବରଂ କ୍ଷେତ୍ର ବିଶେଷରେ ନିର୍ଭୀକ ଓ ନିରପେକ୍ଷ ରହୁଥିଲେ । କିନ୍ତୁ କୌଣସି ବିଧିବିଧାନର ଗ୍ରହଣୀୟତା ସମ୍ପର୍କରେ ଆଲୋଚ୍ନା ସମୟରେ, ଏହି ବିଚାରପତି ଦୁହେଁ ମୁଖ୍ୟତଃ କଲିକତାର ୟୁରୋପିଆନ୍ ଅଧିବାସୀମାନଙ୍କର ମତାମତକୁ ସମର୍ଥନ କରୁଥିଲେ ଏବଂ ସେମାନଙ୍କର ଚିନ୍ତାଧାରା ଥିଲା ସମ୍ପୂର୍ଣ୍ଣ ଭାରତ-ବିଦ୍ୱେଷୀ । ଗୋଟିଏ ଉଦାହରଣ ଦିଆଯାଇପାରେ । ୧୮୫୭ ମସିହା ସେପ୍ଟେମ୍ବର ମାସରେ ଆର୍ମସ ଆକ୍ଟ ବା ମାରଣାସ୍ତ୍ର ନିଷେଧକାରୀ ଜରୁରୀ ଆଇନ୍ ଜାରୀ କରାଯାଇଥିଲା । ଦୁଇବର୍ଷ ପରେ ଏହି ଜରୁରୀ ଆଇନ୍‌ର ଆୟୁ ସମାପ୍ତ ହେବାପରେ ପୁଣିଥରେ ଯେତେବେଳେ ଆଇନ୍‌ଟିକୁ ନବୀକରଣ ପାଇଁ ଉଦ୍ୟମ ହେଲା, ସେତେବେଳେ କଲିକତାର ୟୁରୋପିଆନ୍ ଅଧିବାସୀ ଓ କାଉନ୍‌ସିଲ୍‌ର କେତେକ ସଦସ୍ୟ ମଧ୍ୟ ଏହାର ବିରୋଧ କରି ଦାବି କରିଥିଲେ ଯେ, ଏହି ଆଇନ୍ କେବଳ ଭାରତୀୟମାନଙ୍କ ପ୍ରତି ପ୍ରଯୁଜ୍ୟ ହେବା ଉଚିତ, ୟୁରୋପିଆନ୍‌ମାନଙ୍କ ପାଇଁ ନୁହେଁ । ଏମାନଙ୍କୁ ସମର୍ଥନ କରୁଥିଲେ ବିଚାରପତିମାନେ । ସେମାନଙ୍କର ଏ ପ୍ରକାର ମନୋବୃତ୍ତି ଦେଖି କ୍ୟାନିଂ ସ୍ତମ୍ଭୀଭୂତ ହୋଇଯାଇଥିଲେ । ଏହି ସମୟରେ ନୀଳଚାଷୀମାନଙ୍କ ଉପରେ ୟୁରୋପିଆନ୍ ମାଲିକମାନଙ୍କର ଅତ୍ୟାଚାର ଓ ଶୋଷଣର ସୀମା ନଥିଲା ଏବଂ ସେହି ଶୋଷଣକୁ ଉପଜୀବ୍ୟ କରି ବଙ୍ଗଳାରେ 'ନୀଳଦର୍ପଣ' ବୋଲି ଗୋଟିଏ ନାଟକ ଲେଖାଯାଇଥିଲା । ଜଣେ ଖ୍ରୀଷ୍ଟିଆନ୍ ଧର୍ମଯାଜକ ଲଙ୍ଗ୍ ଏହି ବିଦ୍ରୂପାତ୍ମକ ନାଟକଟିର ଇଂରାଜୀ ଅନୁବାଦ କରିଥିଲେ । ସେଥିପାଇଁ ତାଙ୍କ ବିରୁଦ୍ଧରେ ଏକ ଫୌଜଦାରୀ ମୋକଦ୍ଦମା ଦାୟର ହେଲା ଏବଂ ବିଚାରପତି ୱେଲ୍ସ ଏ ମୋକଦ୍ଦମା ବିଚାରକରି ତାଙ୍କୁ ଏକମାସ କାରାଦଣ୍ଡ ଓ ଜୋରିମାନା ଦେବାକୁ ଆଦେଶ ଦେଲେ । ଚିଫ୍ ଜଷ୍ଟିସ୍ ବ୍ୟାରନେସ ପିକକ୍ ମନ୍ତବ୍ୟ ଦେଲେ ଯେ, ଅନୁବାଦକ ଲଙ୍ଗ୍ ଆହୁରି କଠିନ

ଦଣ୍ଡ ପାଇବା ଉଚିତ ଥିଲା । ଏପରି ପକ୍ଷପାତିତା ବିଶେଷତଃ ବିଚାରପତିମାନଙ୍କର ଭାରତୀୟ ବିଦ୍ୱେଷ ଦେଖି କ୍ୟାନିଂ ନିଜେ ବିଚଳିତ ହୋଇପଡ଼ିଥିଲେ ।

୧୮୬୧ ମସିହା କାଉନ୍‌ସିଲ୍ ଆକ୍ଟର ବିଧାନ ଅନୁଯାୟୀ ମାଡ୍ରାସ, ବମ୍ବେ ଓ ବଙ୍ଗଳାରେ ତିନୋଟି ବିଧାନ ସଭା ରଖିବାର ବ୍ୟବସ୍ଥା ଥିଲା ଏବଂ ଏହି ବିଧାନ ସଭାକୁ ଅନ୍ତତଃ ଜଣେ ଭାରତୀୟ ସଭ୍ୟଭାବରେ ମନୋନୀତ ହେଉଥିଲେ । ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଅର୍ଥାତ୍ ଭାରତ ବିଭାଗୀୟ ମନ୍ତ୍ରୀ ଚାର୍ଲସ୍ ଉଡ୍ ଅନିଚ୍ଛା ସତ୍ତ୍ୱେ ଏ ପ୍ରସ୍ତାବରେ ସମ୍ମତ ହୋଇଥିଲେ । ଏହି ଗୋଟିଏ କ୍ଷୁଦ୍ର କାଉନ୍‌ସିଲ୍‌ରେ ଅନ୍ତତଃ ଜଣେ ଭାରତୀୟଙ୍କୁ ସଭ୍ୟ ମନୋନୀତ କଲେ ଭାରତୀୟମାନେ ଯେ ସନ୍ତୁଷ୍ଟ ହେବେ, ଏହି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଏପରି ବ୍ୟବସ୍ଥା କରାଯାଇଥିଲା । ମହାରାଣୀ ଭିକ୍ଟୋରିଆଙ୍କ ଘୋଷଣା ପତ୍ରରେ ଭାରତୀୟମାନଙ୍କୁ ସ୍ୱାୟତ୍ତ ଶାସନରେ ଭାଗୀଦାର ହେବାପାଇଁ ଯେଉଁ ପ୍ରତିଶ୍ରୁତି ଦିଆଯାଇଥିଲା, ତା'ର କାଣିଚାଏ ମଧ୍ୟ ପୂରଣ ହେଲାନାହିଁ । ବ୍ରିଟିଶ ସରକାରଙ୍କର ଏକମାତ୍ର ଉଦ୍ଦେଶ୍ୟ ହେଲା, କେବଳ ଯେଉଁ ରାଜା, ନବାବ, ଜମିଦାର ଓ ତାଲୁକଦାରମାନେ ସେମାନଙ୍କୁ ବିଦ୍ରୋହ ସମୟରେ ସାହାଯ୍ୟ କରିଥିଲେ, ବିଦ୍ରୋହ ପରେ କେବଳ ସେହି ଶ୍ରେଣୀର ଲୋକଙ୍କର ସୁବିଧା ପାଇଁ ଯାହାକିଛି କରାଯାଇପାରେ । ଇଂରେଜମାନେ ମନେ କରୁଥିଲେ, ଗୋଟିଏ ପ୍ରଦେଶର ବିଧାନସଭାକୁ ଅନ୍ତତଃ ଜଣେ ଭାରତୀୟଙ୍କୁ ସଦସ୍ୟ ରୂପେ ମନୋନୀତ କଲେ ସ୍ୱାୟତ୍ତ ଶାସନର ଯେ କେତେଅଂଶ ପରିପୂର୍ଣ୍ଣ ହେଲା, ତାହା ବେଶ୍ କଳ୍ପନା କରାଯାଇପାରେ ।

ସେହିପରି ୧୮୬୧ ମସିହାରେ ପ୍ରଣୀତ ନୂତନ ଆଇନ୍ ବଳରେ ପୂର୍ବରୁ ପ୍ରଚଳିତ ଥିବା ସୁପ୍ରିମ୍ କୋର୍ଟ ଓ ଅନ୍ୟ ଯେଉଁସବୁ କୋର୍ଟ କଚେରିର ବ୍ୟବସ୍ଥା ଥିଲା, ତା'ର ଆମୂଳଚୂଳ ପରିବର୍ତ୍ତନ କରାଗଲା । ସୁପ୍ରିମ୍‌କୋର୍ଟ ବଦଳରେ ପ୍ରତ୍ୟେକ ପ୍ରଦେଶର ସର୍ବୋଚ୍ଚ ଅଦାଲତର ନାମ ହେଲା ହାଇକୋର୍ଟ । ମାଡ୍ରାସ ଓ ବମ୍ବେରେ ମଧ୍ୟ ଅନୁରୂପ ହାଇକୋର୍ଟମାନ ପ୍ରତିଷ୍ଠା କରାହେଲା । ଭାଇସ୍‌ରାୟଙ୍କୁ କ୍ଷମତା ଦିଆଗଲା ଯେ, ସେ ଆବଶ୍ୟକ ମନେକଲେ ଅନ୍ୟ ପ୍ରଦେଶମାନଙ୍କ ପାଇଁ ମଧ୍ୟ ନୂତନ ହାଇକୋର୍ଟ ପ୍ରତିଷ୍ଠା କରିପାରିବେ । ତଦନୁଯାୟୀ ୧୮୬୬ ମସିହାରେ ଆଲ୍ଲାହାବାଦ୍‌ରେ ନୂତନ ହାଇକୋର୍ଟ ପ୍ରତିଷ୍ଠିତ ହେଲା । ଏହି ହାଇକୋର୍ଟଗୁଡ଼ିକ କମ୍ପାନୀର କୋର୍ଟ ଅଫ୍ ଆପିଲ୍ ବା ସଦର ଅଦାଲତର ସମସ୍ତ କ୍ଷମତାର ଅଧିକାରୀ ହେଲେ ଏବଂ ନିମ୍ନ ସ୍ତରରେ

ନିର୍ଦ୍ଧାରିତ ସମସ୍ତ ପ୍ରକାର ନିଷ୍ପତ୍ତିର ବୈଧତା ବିଚାର କରିବାର କ୍ଷମତାପ୍ରାପ୍ତ ହେଲେ । ହାଇକୋର୍ଟ ଜଜ୍‌ମାନେ କ୍ରାଉନ୍ ବା ମହାରାଣୀଙ୍କ ସରକାର ଦ୍ୱାରା ମନୋନୀତ ହେଉଥିଲେ । ସାଧାରଣତଃ ଇଣ୍ଡିଆନ୍ ସିଭିଲ୍ ସର୍ଭିସ କିମ୍ବା ଇଂଲଣ୍ଡରେ ଓକାଲତି କରୁଥିବା ବାରିଷ୍ଟର କିମ୍ବା ଭାରତରେ ଓକାଲତି କରୁଥିବା ବାରିଷ୍ଟରମାନଙ୍କ ମଧ୍ୟରୁ ସମସଂଖ୍ୟାରେ ବିଚାରପତି ମନୋନୀତ ହେଉଥିଲେ ।

ଏହି ସମୟରେ ଆଇନ୍ ପ୍ରଣୟନ କ୍ଷେତ୍ରରେ ଅନେକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଥିଲା । ସିପାହୀ ବିଦ୍ରୋହ ପୂର୍ବରୁ ମ୍ୟାକ୍‌ଲେଙ୍କ ସଭାପତିତ୍ୱରେ ପ୍ରଥମ ଆଇନ୍ କମିଶନ ଗଠିତ ହୋଇଥିଲା ଓ ଏହି କମିଶନ୍, ମୁଖ୍ୟତଃ ଖୋଦ୍ ମ୍ୟାକଲେ ଗୋଟିଏ ଆଦର୍ଶ ସ୍ଥାନୀୟ ଦଣ୍ଡବିଧି ଆଇନ୍ ବା ପେନାଲ୍ କୋଡ୍‌ର ଚିଠା ପ୍ରସ୍ତୁତ କରିଥିଲେ । ୧୮୫୩ ମସିହାରେ ଦ୍ୱିତୀୟ ଆଇନ୍ କମିଶନ୍ ଗଠିତ ହେଲା ଓ ଏହି କମିଶନ୍ କେତେ ବର୍ଷ ମଧ୍ୟରେ ଦେଓ୍ୱାନୀ କାର୍ଯ୍ୟବିଧି ଆଇନ୍ ଓ ଫୌଜଦାରୀ କାର୍ଯ୍ୟବିଧି ଆଇନ୍‌ର ଚିଠା ପ୍ରସ୍ତୁତ କଲେ ଏବଂ କମ୍ପାନୀଠାରୁ ବ୍ରିଟିଶ ସରକାର କ୍ଷମତା ହାତକୁ ନେବା ପରେ ଏହି ଆଇନ୍‌ଗୁଡ଼ିକ ୧୮୬୧ ମସିହାରୁ ଚାଲୁ କରାଗଲା । ଯଦିଓ ଚିଫ୍ ଜଷ୍ଟିସ ବ୍ୟାରନେସ ପିକକ୍‌ଙ୍କ ସମ୍ପର୍କରେ ଭାଇସ୍‌ରାୟ କ୍ୟାନିଂଙ୍କର କୌଣସି ଉଚ୍ଚ ମତାମତ ନଥିଲା, ତଥାପି ତାଙ୍କ ମତରେ ମ୍ୟାକ୍‌ଲେଙ୍କ ପ୍ରଣୀତ ପେନାଲ୍ କୋଡ୍‌ର ବହୁ ଆବଶ୍ୟକୀୟ ସଂଶୋଧନ ସାର୍ ପିକକ୍‌ଙ୍କ କଲମରେ ଅନ୍ତିମ ରୂପ ନେଇଥିଲା । ସେହିଦିନଠାରୁ ପୂର୍ବରୁ ପ୍ରଚଳିତ ମୁସ୍‌ଲିମ୍ ଫୌଜଦାରୀ ଆଇନ୍‌କୁ ମଧ୍ୟ ରଦ୍ଦ କରାଗଲା ।



# ଜନ୍ ଲରେନ୍ସ୍

କ୍ୟାନିଂ ମାର୍ଚ୍ଚ ୧୮୬୨ ମସିହାରେ ଭାରତ ଛାଡ଼ିବା ପରେ ଯେଉଁ ଐତିହ୍ୟ ରଖିଗଲେ, ଭାରତର କୃଷକ ଓ ଚାଷୀମାନଙ୍କ ପାଇଁ ତା'ର କୌଣସି ମୂଲ୍ୟ ନଥିଲା । କ୍ୟାନିଂ ଅବଶ୍ୟ ଶାନ୍ତଶିଷ୍ଟ ପ୍ରକୃତିର ଲୋକ ଓ ସିପାହୀ ବିଦ୍ରୋହ ପରେ ଯଥାସମ୍ଭବ ଶାନ୍ତି ଫେରାଇ ଆଣିବା ପାଇଁ ଉଦ୍ୟମ କରିଥିଲେ ଏବଂ ଇଂରେଜ ଓ ଭାରତୀୟମାନଙ୍କ ମଧ୍ୟରେ ଯେଉଁ ବିଦ୍ୱେଷ ଭାବ ଜାଗ୍ରତ ହୋଇଥିଲା, ତା'ର କୌଣସି ନା କୌଣସି ପ୍ରକାରେ ସମାଧାନ କରି ବିଦ୍ୱେଷ ଦୂର କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । କିନ୍ତୁ ଭାରତର ପ୍ରଚଳିତ ଅବସ୍ଥା ସଂପର୍କରେ ତାଙ୍କର କୌଣସି ପୂର୍ବ ଅନୁଭୂତି ନଥିଲା । କୃଷକ ଓ ଚାଷୀମାନଙ୍କ କଥା ଭୁଲି କେବଳ ଯେଉଁ ନବାବ, ଜମିଦାର ବା ତାଲୁକଦାରମାନେ ବିଦ୍ରୋହ ସମୟରେ ବ୍ରିଟିଶ ସରକାରଙ୍କୁ ସମର୍ଥନ କରିଥିଲେ, ସେହିମାନଙ୍କର ସ୍ୱାର୍ଥରକ୍ଷା କରିବା ପାଇଁ ସେ ଯଥାବିଧି ପ୍ରଚେଷ୍ଟା କରିଥିଲେ । କ୍ୟାନିଂଙ୍କ ପରେ ଏଲ୍‌ଗିନ୍ ଭାଇସ୍‌ରାୟ ନିଯୁକ୍ତ ହୋଇଥିଲେ । ମାତ୍ର କୋଡ଼ିଏ ମାସ ମଧ୍ୟରେ ନଭେମ୍ବର ୧୮୬୩ ମସିହାରେ ତାଙ୍କର ମୃତ୍ୟୁ ଅନ୍ତେ ଜନ୍ ଲରେନ୍ସ ଭାଇସ୍‌ରାୟ ପଦରେ ନିଯୁକ୍ତ ହେଲେ । ଏଥିପୂର୍ବରୁ ଲରେନ୍ସ ପଞ୍ଜାବର ରେଭେନ୍ୟୁ ଅଫିସର ଓ ପରେ ଗଭର୍ଣ୍ଣର ନିଯୁକ୍ତ ହୋଇ ଅଶେଷ ଖ୍ୟାତି ଅର୍ଜନ କରିଥିଲେ । ଯଦିଓ ତାଙ୍କର ରୁକ୍ଷ ସ୍ୱଭାବ ଓ କଠୋର ମନୋଭାବ ହେତୁ ଭାରତରେ ଥିବା ବହୁ ୟୁରୋପିଆନ୍ ତାଙ୍କୁ ଶ୍ରଦ୍ଧା କରୁନଥିଲେ, କିନ୍ତୁ ପ୍ରଶାସନିକ ଅଭିଜ୍ଞତା ଓ ଦକ୍ଷତା ଦୃଷ୍ଟିରୁ ବୋଧହୁଏ ଭାଇସ୍‌ରାୟ ପଦପାଇଁ ତାଙ୍କର ମନୋନୟନ ଯଥାଯୁକ୍ତ ଥିଲା ।

ଲରେନ୍ସ୍‌ଙ୍କୁ କଲିକତାରେ ଅବସ୍ଥାନ ରୁଚିକର ନଥିଲା । ସେଥିପାଇଁ ଗ୍ରୀଷ୍ମ ଆରମ୍ଭ ହେଲେ ସେ ସିମଳାର ଶୀତଳ ଜଳବାୟୁରେ ରହିବାକୁ ସୁଖ ପାଉଥିଲେ । ପ୍ରଥମ ଥର ପାଇଁ ଏପ୍ରିଲ୍ ୧୮୬୪ ମସିହାରେ ଭାଇସ୍‌ରାୟ ସିମଳା ଯାତ୍ରା କଲେ ଏବଂ ଅନୁଭବ କଲେ ଯେ, ସିମଳାର ଶୀତଳ ପରିବେଶରେ ଦିନକ ମଧ୍ୟରେ ଯେତିକି

କାର୍ଯ୍ୟ ହୋଇପାରୁଛି, କଲିକତାରେ ସେତିକି କାର୍ଯ୍ୟ କରିବା ପାଇଁ ଅନ୍ତତଃ ପାଞ୍ଚଦିନ ଆବଶ୍ୟକ । କେବଳ ଭାଇସ୍‌ରାୟ ନୁହଁନ୍ତି, ତାଙ୍କ ସହିତ କାଉନ୍‌ସିଲ୍‌ର ସଦସ୍ୟମାନେ ମଧ୍ୟ ସିମଳା ଯାତ୍ରା କଲେ । ସେହି ସମୟରୁ ସିମଳା ଭାରତର ଗ୍ରୀଷ୍ମକାଳୀନ ରାଜଧାନୀ ଭାବେ ବିବେଚିତ ହେଲା ।

ଜନ୍ ଲରେନ୍ସ ଚାଷୀ ଓ ସରକାରଙ୍କ ମଧ୍ୟରେ ମଧ୍ୟ-ସତ୍ତ୍ୱାଧିକାରୀ ପ୍ରଥାର ଘୋର୍ ବିରୋଧୀ ଥିଲେ । ସେ ଅଭିଜ୍ଞତାରୁ ଜାଣିଥିଲେ ଯେ, ଏହାଦ୍ୱାରା ମଧ୍ୟ-ସତ୍ତ୍ୱାଧିକାରୀ ଜମିଦାର ବା ତାଲୁକଦାରମାନେ ଚାଷୀମାନଙ୍କ ଉପରେ ଶୋଷଣ ଓ ଅତ୍ୟାଚାର କରିବା ପାଇଁ ସୁଯୋଗ ପାଉଛନ୍ତି । ଅଥଚ୍ ପ୍ରକୃତ ଚାଷୀ ପାଇଁ ଏ ପ୍ରଥା କ୍ଷତିକାରକ । ରାଜୁଡ଼ା ଶାସନ ଯେତେ ବ୍ରିଟିଶ ସପକ୍ଷବାଦୀ ହୁଅନ୍ତୁନା କାହିଁକି, ବ୍ରିଟିଶ ଶାସନଠାରୁ ଦେଶୀୟ ରାଜ୍ୟ ଶାସନ ଥିଲା ଅଧିକ ଅନୁନ୍ନତ, ଅଧିକ ଅତ୍ୟାଚାରୀ ଓ ଅଧିକ ପ୍ରଜାପୀଡ଼କ । ସେ ଦୃଷ୍ଟିରୁ ରାଜା ବା ନବାବଙ୍କୁ ଅଧିକ ସୁବିଧା ସୁଯୋଗ ଦେଇ ସନ୍ତୁଷ୍ଟ କରିବାକୁ ସେ ଆଗ୍ରହୀ ନଥିଲେ । ଅବଶ୍ୟ ରାଜନୈତିକ ବା ପ୍ରଶାସନିକ ଦୃଷ୍ଟିରୁ ଏହି ମଧ୍ୟସତ୍ତ୍ୱାଧିକାରୀମାନଙ୍କୁ ନିଶ୍ଚିହ୍ନ କରିବା ସମ୍ଭବ ନଥିଲା । ପାର୍ଶ୍ୱବର୍ତ୍ତୀ ଦେଶ ଉପରେ ଅଯଥା ଆକ୍ରମଣ କରି ରାଜ୍ୟବିସ୍ତାର ପାଇଁ ମଧ୍ୟ ତାଙ୍କର ଆଗ୍ରହ ନଥିଲା । ଏଣୁ ପୂରା ପାଞ୍ଚବର୍ଷ କାଳ ଭାଇସ୍‌ରାୟ ପଦରେ ରହି ମୁଖ୍ୟତଃ ଦେଶରେ ଅର୍ଥନୈତିକ ଅଗ୍ରଗତି ପାଇଁ ସେ ବିଶେଷ ଧ୍ୟାନ ଦେଉଥିଲେ ଏବଂ ଜଳସେଚନ ବ୍ୟବସ୍ଥା ଓ ରାସ୍ତାଘାଟ ଆଦିର ଉନ୍ନତି ପାଇଁ ସେ ବିଶେଷ ଆଗ୍ରହୀ ଥିଲେ ।

ସିପାହୀ ବିଦ୍ରୋହର ମାତ୍ର କେତେବର୍ଷ ପରେ ଭାରତର ଅର୍ଥନୀତିରେ ଏକପ୍ରକାର ଅପ୍ରତ୍ୟାଶିତ ସମୁନ୍ନତି ଦେଖାଗଲା । ରାସ୍ତାଘାଟ, କେନାଲ୍ ଆଦି ତିଆରି କରିବାରେ ଅଧିକ ଅର୍ଥ ବିନିଯୋଗ ହେତୁ ସାଧାରଣ ଶ୍ରମିକ ଶ୍ରେଣୀର ନିଯୁକ୍ତିର ଆବଶ୍ୟକତା ବଢ଼ିଲା ଓ ତଦନୁଯାୟୀ ସେମାନଙ୍କର ରୋଜଗାର ମଧ୍ୟ ବଢ଼ିଲା । ଏଣେ ଉତ୍ତର ଓ ଦକ୍ଷିଣ ଆମେରିକା ମଧ୍ୟରେ ବିବାଦ ଓ ଯୁଦ୍ଧ ହେତୁ ଇଂଲଣ୍ଡକୁ କପା, ତୁଳାର ରପ୍ତାନୀ ପ୍ରାୟ ବନ୍ଦ ହୋଇଗଲା ଏବଂ ଲାଙ୍କାସାୟାରର କଳକାରଖାନାମାନ ଭାରତୀୟ ତୂଳା ଉପରେ ସମ୍ପୂର୍ଣ୍ଣ ନିର୍ଭର କଲେ । ଯାହାଫଳରେ କି ଏ ଦେଶରେ କୃଷିଜାତ ଦ୍ରବ୍ୟର ମୂଲ୍ୟ ବଢ଼ିଲା ଏବଂ କୃଷକମାନେ ଅଧିକ ଲାଭବାନ ହେଲେ । ଫଳତଃ ବମ୍ବେ ସହରର ବ୍ୟବସାୟୀମାନଙ୍କର ରପ୍ତାନୀ ବାଣିଜ୍ୟ ମଧ୍ୟ ବଢ଼ିବାକୁ ଲାଗିଲା । ଅବଶ୍ୟ ଏହି ତୂଳା ରପ୍ତାନୀ କରିବା ପାଇଁ ଉଭୟ ଇଂଲଣ୍ଡ ଓ ଭାରତରେ କେତେଗୁଡ଼ିଏ

ନୂଆନୂଆ କମ୍ପାନୀ ପ୍ରତିଷ୍ଠିତ ହୋଇଥିଲା । କିନ୍ତୁ ଦର୍‌ଦାମ୍ ବିଷୟରେ ଫଟକାବାଜି ବା ସେୟାର୍ ବଜାର୍‌ରେ ଅପ୍ରାକୃତିକ ମୂଲ୍ୟ ବୃଦ୍ଧି ହେତୁ ଏଥିରୁ ବହୁ କମ୍ପାନୀ ଦେବାଳିଆ ହୋଇଗଲେ । ଏହା ଫଳରେ କୃଷକମାନଙ୍କର କେତେକାଂଶରେ କ୍ଷତି ହେଲା ସତ, କିନ୍ତୁ ମୋଟାମୋଟି କୃଷିଜୀବୀମାନେ ବେଶ୍ ଅଗ୍ରଗତି କରିବାକୁ ସମର୍ଥ ହୋଇଥିଲେ ।

ଭାଇସରାୟ ଲରେନ୍‌ସ କେନାଲ୍, ରାସ୍ତା, ପୋଲ ଓ ସ୍ୱାସ୍ଥ୍ୟକର ଜୀବନଯାପନ ପାଇଁ ଯାହାସବୁ ଆବଶ୍ୟକ, ତାହାର ନିର୍ମାଣ ପାଇଁ ବିଶେଷ ଧ୍ୟାନ ଦେଉଥିଲେ । ରେଲ୍‌ୱେ ପ୍ରସାର ପ୍ରତି ସେ ଉଦାସୀନ ନଥିଲେ । କାର୍ଯ୍ୟତଃ ତାଙ୍କର ପାଞ୍ଚବର୍ଷିଆ ରାଜୁତି ସମୟରେ ଚାରିହଜାର ମାଇଲ୍ ରେଳ ଲାଇନ୍‌ର ନିର୍ମାଣ ଶେଷ ହୋଇଥିଲା । ଜଳସେଚନ ପ୍ରତି ଏହି ବିଶେଷ ଦୃଷ୍ଟି ପଛରେ ଥିଲା, ଇଂଜିନିଅର୍ କର୍ଣ୍ଣେଲ୍ ରିଚାର୍ଡ୍ ଷ୍ଟ୍ରାଚି ଏବଂ ତାଙ୍କର ଭାଇ ଜନ୍ ଷ୍ଟ୍ରାଚିଙ୍କର ବିଶେଷ ପ୍ରୋତ୍ସାହନ । କିନ୍ତୁ ଏହିସବୁ ନିର୍ମାଣାଧୀନ ବିଷୟ ସମ୍ପର୍କରେ କାଉନ୍‌ସିଲରେ ଏବଂ କଲିକତାର ୟୁରୋପିଆନ୍ ଅଧିବାସୀମାନଙ୍କ ମଧ୍ୟରେ ନାନାପ୍ରକାର ବିବାଦ ଆରମ୍ଭ ହେଲା । ତତ୍‌କାଳୀନ ସେକ୍ରେଟେରୀ ଅଫ୍ ଷ୍ଟେଟ୍ (ଭାରତ ବିଭାଗ ମନ୍ତ୍ରୀ) ଚାର୍ଲସ ଉଡ୍, ଯାହାଙ୍କୁ କି ଭାରତ ବର୍ଷରେ କର୍ମଚାରୀ ମହଲରେ ମହାରାଜା ଉଡ୍ ବୋଲି କହୁଥିଲେ, ସେ ଏସବୁ ବିଷୟରେ କୌଣସି ନିଷ୍ପତ୍ତି ନେଇପାରୁ ନଥିଲେ । ୧୮୬୬ ମସିହା ଶେଷ ଆଡ଼କୁ ଲର୍ଡ୍ କ୍ରାନ୍‌ବୋର୍ଣ୍ଣ କିଛି ଦିନ ପାଇଁ ସେକ୍ରେଟେରୀ ଦାୟିତ୍ୱରେ ଥିଲେ, ସେ ଜନ୍ ଲରେନ୍‌ସଙ୍କର ପ୍ରସ୍ତାବକୁ ସମର୍ଥନ କରି ଜଳସେଚନ କାର୍ଯ୍ୟରେ ଆଗେଇଯିବାପାଇଁ ଉତ୍ସାହିତ କଲେ । ସେତେବେଳକୁ କର୍ଣ୍ଣେଲ୍ ରିଚାର୍ଡ୍ ଷ୍ଟ୍ରାଚି ଛୁଟିରେ ଇଂଲଣ୍ଡରେ ଥାଆନ୍ତି । ଲରେନ୍‌ସ ତାଙ୍କୁ ତୁରନ୍ତ ଭାରତକୁ ଡକାଇ ପୂର୍ତ୍ତବିଭାଗ ଓ ଜଳସେଚନ ବିଭାଗକୁ ସ୍ୱତନ୍ତ୍ର କରି ଷ୍ଟ୍ରାଚିଙ୍କୁ ଜଳସେଚନ ବିଭାଗର ଦାୟିତ୍ୱ ଦେଲେ । ୧୮୬୯ ମସିହାରେ ଲରେନ୍‌ସ ଯେତେବେଳେ ଭାରତ ଛାଡ଼ିଲେ, ସେ ଗର୍ବର ସହିତ ଘୋଷଣା କଲେ ଯେ, ଭାରତର ପ୍ରତି ପ୍ରଦେଶରେ ଜଳସେଚନ ଯୋଜନାର ସମୀକ୍ଷା କରାଯାଇଅଛି ବା କେତେକ ଅଞ୍ଚଳରେ କେନାଲ ଖୋଳାଇ କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇଛି ।

ଜନ୍ ଲରେନ୍‌ସଙ୍କ ସମୟରେ ଗୋଟିଏ ଘଟଣା ହେତୁ ବହୁସହସ୍ର ବ୍ୟକ୍ତି ପ୍ରାଣ ହରାଇଥିଲେ । ତାହା ହେଲା ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷ । ୧୮୬୫ ସାଲ୍‌ରେ ଓଡ଼ିଶାରେ ବୃଷ୍ଟିପାତ ହେଲା ନାହିଁ କହିଲେ ଚଳେ । ଅକ୍ଟୋବର ମାସ ସୁଦ୍ଧା ବର୍ଷା ନହେବାରୁ ପୁରୀର କଲେକ୍ଟର ଆତଙ୍କ ଗଣିଲେ ଏବଂ ଚାଷୀମାନଙ୍କର ଖଜଣା ଛାଡ଼ କରିବା ପାଇଁ ସରକାରଙ୍କର ଅନୁମତି ଲୋଡ଼ିଲେ । ଓଡ଼ିଶାର ତତ୍‌କାଳୀନ କମିସନର ମିଃ.

ରେଭେନ୍ସା ଏବଂ ବେଙ୍ଗଲ ବୋର୍ଡ଼ ଅଫ୍ ରେଭେନ୍ୟୁ କଲେକ୍ଟରଙ୍କ ସୁପାରିଶ୍ ଗ୍ରହଣ ନକରି ବରଂ ବିରକ୍ତି ପ୍ରକାଶ କଲେ । ରେଭେନ୍ସା ସାହେବଙ୍କର ଧାରଣା ଥିଲା ଯେ, ଧାନବେପାରୀମାନେ ଧାନଚାଉଳ ଲୁଚାଇ ରଖି ବଜାରକୁ ଛାଡୁ ନାହାଁନ୍ତି, ସେଇଥିପାଇଁ ଏ ଅଭାବ । ଯେତେବେଳେ ମରୁଡ଼ିର କରାଳ ଛାଇ ଚାରିଆଡ଼େ ବ୍ୟାପିବାକୁ ଆରମ୍ଭ କଲା, କମିସନର ରେଭେନ୍ସା ସାହେବ ମଧ୍ୟ ଆତଙ୍କିତ ହେଲେ ଓ ଶୀଘ୍ର ଓଡ଼ିଶାକୁ ଚାଉଳ ପଠାଇବା ପାଇଁ ବଙ୍ଗଳା ଗଭର୍ଣ୍ଣର ସିସିଲ୍ ବିଡନ୍‌ଙ୍କୁ ଅନୁରୋଧ କଲେ । କିନ୍ତୁ ଲେଫ୍ଟନାଣ୍ଟ୍ ଗଭର୍ଣ୍ଣର ନିଜର ପୂର୍ବ ନିଷ୍ପତ୍ତିରୁ ପଛଘୁଞ୍ଚା ଦେବାକୁ ପ୍ରସ୍ତୁତ ନଥିଲେ । ଓଡ଼ିଶାର ଉପକୂଳବର୍ତ୍ତୀ ଲୋକେ ଭୋକଉପାସରେ ଆମ୍ବଟାକୁଆ, ମଞ୍ଜି ଓ ଜଙ୍ଗଲି ଗଛର ଚେର ଇତ୍ୟାଦି ଖାଇ କିଛିଦିନ ବଞ୍ଚିରହିଲେ ମଧ୍ୟ ଶେଷକୁ ହଜାର ହଜାର ଲୋକ ଦୁର୍ଭିକ୍ଷ, ମହାମାରୀ ଓ ନାନା ରୋଗରେ ପୀଡ଼ିତ ହୋଇ ପ୍ରାଣତ୍ୟାଗ କଲେ । କ୍ରମେ ଅବସ୍ଥା ଗୁରୁତର ହେଲା । ସମୟ ଯେପରି ଗଡ଼ିଚାଲିଲା, ବଙ୍ଗଳାର ଲେଫ୍ଟନାଣ୍ଟ୍ ଗଭର୍ଣ୍ଣର ସାର୍ ସିସିଲ୍ ବିଡନ୍ ଓଡ଼ିଶା ଗସ୍ତରେ ଆସି ଭାରତ ସରକାରଙ୍କୁ ରିପୋର୍ଟ ଦେଲେ ଯେ, ଆସନ୍ତା ଫସଲ ପର୍ଯ୍ୟନ୍ତ ଓଡ଼ିଶାରେ ଧାନ ଚାଉଳର ଅଭାବ ନାହିଁ । ଲରେନ୍ସ ଦ୍ୱିଧାର ସହ ତାଙ୍କ ରିପୋର୍ଟ ଗ୍ରହଣ କଲେ, କିନ୍ତୁ ୧୮୬୬ ମାର୍ଚ୍ଚ ମାସରେ ବର୍ମାରୁ ଚାଉଳ ଆମଦାନୀ କରି ପୁରୀକୁ ପଠାଇବା ପାଇଁ ବଙ୍ଗଳା ସରକାରଙ୍କୁ ପ୍ରସ୍ତାବ ଦେଲେ । ତା' ସତ୍ତ୍ୱେ ବଙ୍ଗଳାର ଗଭର୍ଣ୍ଣର ବିଡନ୍ ଏ ଦିଗରେ କୌଣସି ପଦକ୍ଷେପ ନେଲେ ନାହିଁ ଏବଂ ନିଜ ପୂର୍ବ ମତର ପୁନରାବୃତ୍ତି କଲେ ।

କିଛିଦିନ ପରେ ଗ୍ରୀଷ୍ମଋତୁ ଆଗମନ ହେତୁ ଲରେନ୍ସ ସିମଳା ଗଲେ ଓ ବିଡନ୍ ବଙ୍ଗଳାର ଗ୍ରୀଷ୍ମକାଳୀନ ରାଜଧାନୀ ଦାର୍ଜିଲିଂକୁ ପ୍ରସ୍ଥାନ କଲେ । ଏ ମଧ୍ୟରେ କଲିକତାରୁ ପ୍ରକାଶିତ ଏକ ଦୈନିକ ସମ୍ବାଦପତ୍ରରେ ଓଡ଼ିଶାର ଦୁର୍ଭିକ୍ଷ ସମ୍ବନ୍ଧରେ ଏକ ଦୁଃଖଦାୟକ ବିବରଣୀ ଲରେନ୍ସଙ୍କ ଦୃଷ୍ଟିରେ ପଡ଼ିଲା । କଲିକତାରୁ କେତେକ ପରିଚିତ ଇଂରେଜ ବ୍ୟବସାୟୀ ମଧ୍ୟ ଅନୁରୂପ ପତ୍ର ଲେଖି ଦୁର୍ଭିକ୍ଷର ମର୍ମନ୍ତୁଦ କାହାଣୀ ଭାଇସ୍‌ରାୟଙ୍କୁ ଜଣାଇଲେ । ଏଥର ଲରେନ୍ସ ଓଡ଼ିଶା ବ୍ୟାପାରରେ ହସ୍ତକ୍ଷେପ କରିବା ପାଇଁ ଦୃଢ଼ ପରିକର ହେଲେ । ସେ ଗଭର୍ଣ୍ଣର ସିସିଲ୍ ବିଡନ୍‌ଙ୍କୁ ଟେଲିଫୋନ୍‌ରେ ନିର୍ଦ୍ଦେଶ ଦେଲେ ଯେ, ତୁରନ୍ତ ବ୍ରହ୍ମଦେଶରୁ ଚାଉଳ ଆଣି ଓଡ଼ିଶାକୁ ପ୍ରେରଣ କରିବାକୁ ହେବ ଏବଂ ସେଥିପାଇଁ ଆବଶ୍ୟକ ଅର୍ଥର ମଧ୍ୟ ବ୍ୟବସ୍ଥା କଲେ । ଲରେନ୍ସଙ୍କ ନିର୍ଦ୍ଦେଶରେ ତୁରନ୍ତ ଗୋଟିଏ ଜାହାଜ ରେଙ୍ଗୁନ୍ ପଠାଯାଇ ବର୍ମାରୁ ଚାଉଳ ଧରି ଓଡ଼ିଶା ଉପକୂଳରେ ପହଞ୍ଚିଲା । କିନ୍ତୁ ସେତେବେଳକୁ ଘୋର୍ ବର୍ଷା ଆରମ୍ଭ ହୋଇ ବଙ୍ଗୋପସାଗରର

ଉତ୍ତାଳ ତରଙ୍ଗ ମଧ୍ୟରେ ଜାହାଜ କଟକ ବା ପୁରୀ ନିକଟବର୍ତ୍ତୀ କୌଣସି ସ୍ଥାନରେ ଏ ଚାଉଳକୁ ଖଲାସ କରି ପାରୁନଥାଏ । ସେପ୍ଟେମ୍ବର ମାସରେ ଜାହାଜରୁ ଚାଉଳ ଖଲାସ ହେବା ପରେ ସରକାରୀ ରିପୋର୍ଟ ଅନୁଯାୟୀ ଦୁଇଲକ୍ଷ ସତୁରି ହଜାର ଲୋକଙ୍କୁ ଆଗାମୀ ଫସଲ ଆମଦାନୀ ପର୍ଯ୍ୟନ୍ତ, ରିଲିଫ୍ କମିଟି ଜରିଆରେ ଚାଉଳ ବଣ୍ଟାଯାଇଥିଲା । କିନ୍ତୁ ସେତେବେଳକୁ ନେଡ଼ିଗୁଡ଼ କହୁଣିକୁ ବୋହି ଯାଇଥାଏ । ହଜାର ହଜାର ଲୋକ ଖାଇବାକୁ ନପାଇ ବା ପେଟ ବିକଳରେ ଅଖାଦ୍ୟ ଖାଇ ଜୀବନ ଦେଇ ସାରିଥିଲେ ।

ଓଡ଼ିଶାର ଏହି ମରୁଡ଼ି ଓ ଦୁର୍ଭିକ୍ଷ ହେତୁ, ଓଡ଼ିଶାବାସୀ ଯେଉଁ ଦୁଃଖ ଦୁର୍ବିପାକ ଦେଇ ଗତିକଲେ ଏବଂ ଯେଉଁ ହଜାର ହଜାର ଲୋକ ମୃତ୍ୟୁବରଣ କଲେ, ଏ କାହାଣୀ ଶୁଣି ଲରେନ୍ସ ଉତ୍କ୍ଷିପ୍ତ ହେଲେ । ତାଙ୍କର ପୂର୍ବ ପ୍ରସ୍ତାବକୁ ଯେ ଭାବରେ ବଙ୍ଗଳାର ଲେଫ୍ଟନାଣ୍ଟ୍ ଗଭର୍ଣ୍ଣର ଅମାନ୍ୟ କରିଥିଲେ, ସେ ସବୁ ତାଙ୍କର ମନେପଡ଼ିଲା । ଏହି ଅକାଳମୃତ୍ୟୁର କାରଣ ଅନୁସନ୍ଧାନ କରିବା ପାଇଁ ସେ ଗୋଟିଏ କମିଶନ୍ ବସାଇଲେ । କମିଶନ୍ ରିପୋର୍ଟ ଦେଲେ ଯେ, ଏ ଦୁର୍ବିପାକ ପାଇଁ ବଙ୍ଗଳାର ଗଭର୍ଣ୍ଣର ସିସିଲ୍ ବିଡନ୍ ସମ୍ପୂର୍ଣ୍ଣ ରୂପେ ଦାୟୀ । ପୁରୀର କଲେକ୍ଟର ଓ କିଛିମାସ ପରେ କମିସନର ରେଭେନ୍ସା ଚାଉଳ ଆମଦାନୀ କରିବା ପାଇଁ ଯେଉଁ ପ୍ରସ୍ତାବ ଦେଇଥିଲେ, ସିସିଲ୍ ବିଡନ୍ ତାହା ନାକଚ୍ କରିଦେଇଥିଲେ ଏବଂ ତାଙ୍କ ମତରେ ଓଡ଼ିଶାର ଧାନଚାଉଳ ବେପାରୀଙ୍କ ପାଖରେ ଯଥେଷ୍ଟ ମାଲ୍ ମହଜୁଦ ଅଛି ଏବଂ ସେମାନଙ୍କ ଉପରେ ଚାପଦେଲେ ସେମାନେ ଅବଶ୍ୟ ବଜାରକୁ ଚାଉଳ ଛାଡ଼ିବେ । ୧୮୬୫ରୁ ଦେଢ଼ବର୍ଷ ଧରି ଯେ ବର୍ଷା ହେଲାନାହିଁ ଓ ମରୁଡ଼ି ପଡ଼ିଲା, ତାହା ଲେଫ୍ଟନାଣ୍ଟ୍ ଗଭର୍ଣ୍ଣରଙ୍କ ଦୃଷ୍ଟିକୁ ଆସିଲା ନାହିଁ । ଯାହାହେଉ କମିଶନ୍ ଅଫ୍ ଇନ୍‌କ୍ୱାରୀ ତାଙ୍କ ବିରୋଧରେ ଯେଉଁ ରିପୋର୍ଟ ଦେଲେ ଏବଂ ତାଙ୍କୁ ଦୋଷୀ ସାବ୍ୟସ୍ତ କଲେ, ତାହାର ଫଳାଫଳ କ'ଣ ହେଲା ? ହଜାର ହଜାର ଲୋକଙ୍କର ମୃତ୍ୟୁର ବିଭୀଷିକା ସିସିଲ୍ ବିଡନ୍‌ଙ୍କର କୌଣସି କ୍ଷତି କରି ପାରିଲା ନାହିଁ । ବରଂଚ୍ ଓଡ଼ିଶାର ସାମାଜିକ ଜୀବନରେ ଘୋର୍ ପରିବର୍ତ୍ତନ ଆଣିଲା । ଭୋକିଲା ମଣିଷ ପେଟକୁ ଗଣ୍ଡେ ଦାନା ଦେବାର ବ୍ୟବସ୍ଥା କରି ଖ୍ରୀଷ୍ଟିଆନ୍ ମିଶନାରୀମାନେ ବହୁ ଦରିଦ୍ର ଓଡ଼ିଆଙ୍କୁ ଧର୍ମାନ୍ତରିକରଣ କରିବାରେ ସମର୍ଥ ହେଲେ । ଧୀରେ ଧୀରେ କଟକ, ବ୍ରହ୍ମପୁର, ସମ୍ବଲପୁର ଆଦି ସହରରେ ନୂଆ ନୂଆ ଖ୍ରୀଷ୍ଟିଆନ୍ ବସ୍ତି ଗଢ଼ି ଉଠିଲା । ସହର ବଜାରମାନଙ୍କରେ ନବନିର୍ମିତ ଗିର୍ଜାମାନ ମୁଣ୍ଡ ଟେକିଲା ।

ଆଫଗାନିସ୍ଥାନର ଅମୀର ଦୋସ୍ତ ମହମ୍ମଦ ତାଙ୍କର ଶେଷ ଜୀବନ ଇଂରେଜମାନଙ୍କ ସହିତ ଶାନ୍ତିରେ କଟାଇଥିଲେ । ୧୮୬୩ ମସିହାରେ ତାଙ୍କର ମୃତ୍ୟୁ ହେଲା । ମୃତ୍ୟୁ ପୂର୍ବରୁ ସେ ଲରେନ୍ସଙ୍କୁ ଅନୁରୋଧ କରୁଥିଲେ ଯେ, ତାଙ୍କ ପରେ ତାଙ୍କର ଷୋହଳ ପୁଅ ମଧ୍ୟରୁ ତୃତୀୟ ପୁତ୍ର ଶେର୍ ଅଲ୍ଲୀଙ୍କୁ କାବୁଲ୍ ଗାଦି ପାଇଁ ଇଂରେଜମାନେ ସମର୍ଥନ କରିବା ଉଚିତ । ତାହା ଯଦି କୌଣସି କାରଣରୁ ସମ୍ଭବ ନହୁଏ, ତା' ହେଲେ ଏହି ପୁତ୍ରମାନଙ୍କ ମଧ୍ୟରେ ନିଶ୍ଚିତ ଭାବରେ କାବୁଲ ଗାଦି ପାଇଁ ସଂଘର୍ଷ ହେବ ଏବଂ ଇଂରେଜମାନେ ଅନ୍ତତଃ ସେ ସଂଘର୍ଷରେ କାହା ସହିତ ସହଯୋଗ କରିବା ଉଚିତ ନୁହେଁ । ସତକୁ ସତ ଦୋସ୍ତ ମହମ୍ମଦଙ୍କ ମୃତ୍ୟୁ ପରେ ତାଙ୍କର ତୃତୀୟ ପୁତ୍ର ଆଫଗାନର ରାଜଗାଦି ଅଧିକାର କଲେ । କିଛିଦିନ ପରେ ଭାଇମାନଙ୍କ ସହିତ ସଂଘର୍ଷ ଆରମ୍ଭ ହେଲା ଏବଂ ମହମ୍ମଦ ଆଫ୍‌ଜଲ୍ ଶେର୍ ଅଲ୍ଲୀଙ୍କୁ ତଡ଼ି କାବୁଲ୍ ଅଧିକାର କଲେ । କିନ୍ତୁ ତାଙ୍କର ରାଜତ୍ୱ ବେଶୀ ଦିନ ସ୍ଥାୟୀ ହେଲାନାହିଁ । ୧୮୬୮ ମସିହାରେ ଅମୀର ଶେର୍ ଅଲ୍ଲୀ ନିଜ ଶକ୍ତି ବଳରେ ପୁଣି କ୍ଷମତାକୁ ଆସିଲେ । ଏତିକିବେଳେ ସମ୍ବାଦ ଆସୁଥାଏ ଯେ, ତାସ୍‌କେଣ୍ଟ ପଥରେ ରୁଷ୍ ସେନାବାହିନୀ ଭାରତ ଅଭିମୁଖେ ଆଗେଇଛନ୍ତି ଏବଂ ପର୍ସିଆ ମଧ୍ୟ ଆଫଗାନିସ୍ଥାନକୁ ଦଖଲ କରିବାକୁ ଉଦ୍ୟମ କରୁଛି । କିନ୍ତୁ କିଛିଦିନ ଅପେକ୍ଷା କଲାପରେ ଦେଖାଗଲା ଯେ, ଏ ଉଭୟ ସମ୍ବାଦରେ ବିଶେଷ ସତ୍ୟତା ନାହିଁ ଏବଂ ଶେର୍ ଅଲ୍ଲୀ କାବୁଲ୍‌ରେ ଦୃଢ଼ ହସ୍ତରେ ଶାସନ ଚଳାଇବାକୁ ସମର୍ଥ ହୋଇଛନ୍ତି । ଲରେନ୍ସ୍ ଅନୁଭବ କଲେ ଯେ, ପୂର୍ବର ଅନୁସୃତ ନିରପେକ୍ଷତା ଛାଡ଼ି ଏଥର ଶେର୍ ଅଲ୍ଲୀଙ୍କୁ ସମର୍ଥନ କରାଯାଇପାରେ । ସେ ସଙ୍ଗେ ସଙ୍ଗେ ଛଅ ଲକ୍ଷ ଟଙ୍କା ତାଙ୍କ ନିକଟକୁ ପଠାଇଲେ ଏବଂ ଅଧିକ ସାହାଯ୍ୟର ମଧ୍ୟ ପ୍ରତିଶ୍ରୁତି ଦେଲେ । ଲରେନ୍ସଙ୍କର ନୀତି ଥିଲା ଯେ, ଇଂରେଜମାନେ କାହାକୁ କ୍ଷମତା ଦଖଲ କରିବା ପାଇଁ ସାହାଯ୍ୟ କରିବେ ନାହିଁ । କିନ୍ତୁ ଯେଉଁ ପକ୍ଷ ନିଜ ଶକ୍ତି ବଳରେ ଶାସନ ଗାଦି ଅକ୍ତିଆର୍ କରିବ, ସେ ଯଦି ବାସ୍ତବିକ ବନ୍ଧୁତା ଚାହେଁ, ତା' ହେଲେ ତାକୁ ସାହାଯ୍ୟ କରିବାକୁ କୁଣ୍ଠିତ ହେବେ ନାହିଁ । ଶେର୍ ଅଲ୍ଲୀଙ୍କ ସହିତ ପଞ୍ଜାବର କୌଣସି ସ୍ଥାନରେ ବ୍ୟକ୍ତିଗତ ସାକ୍ଷାତ ଓ ଆଲୋଚନା ପାଇଁ ସେ ରାଜିହେଲେ । କିନ୍ତୁ ଏ ସାକ୍ଷାତକାର ଆୟୋଜିତ ହେବା ପୂର୍ବରୁ, ତାଙ୍କର ପାଞ୍ଚବର୍ଷିଆ କାର୍ଯ୍ୟକାଳ ସମାପ୍ତ ହୋଇଗଲା ଏବଂ ୧୮୬୮ ମସିହା ଶେଷ ଭାଗରେ ସେ ଲଣ୍ଡନ ଯାତ୍ରା କଲେ ।



# ଲରେନ୍ସଙ୍କ ଉତ୍ତରାଧିକାରୀ ମେୟୋ

ଲରେନ୍ସଙ୍କ ପରେ ଲର୍ଡ୍ ମେୟୋ ଓ ତାଙ୍କପରେ ଲର୍ଡ୍ ନର୍ଥ ବ୍ରୁକ୍ ଭାଇସ୍‌ରାୟ ପଦରେ ନିଯୁକ୍ତ ହେଲେ । ଲର୍ଡ୍ ମେୟୋ ଜଣେ ଆଇରିସ୍ ଲୋକ ଏବଂ ସେ ତିନିଥର ଆୟରଲ୍ୟାଣ୍ଡର ଚିଫ୍ ସେକ୍ରେଟେରୀ ଦାୟିତ୍ୱ ନିର୍ବାହ କରିଥିଲେ । କିନ୍ତୁ ଲର୍ଡ୍ ମେୟୋଙ୍କୁ ମନୋନୀତ କରିବାର ଏବଂ ମେୟୋ ଭାଇସ୍‌ରାୟ ପଦର ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ଇଂଲଣ୍ଡରେ ରାଜନୈତିକ ପରିବର୍ତ୍ତନ ହେଲା । ପ୍ରଧାନମନ୍ତ୍ରୀ ଡିସ୍‌ରାୟଲିଙ୍କୁ ଇସ୍ତଫା ଦେବାକୁ ପଡ଼ିଲା ଏବଂ ତାଙ୍କ ସ୍ଥାନରେ ବିରୋଧୀ ଦଳର ନେତା ଗ୍ଲାଡ୍‌ଷ୍ଟୋନ୍ ପ୍ରଧାନମନ୍ତ୍ରୀ ହେଲେ । ଅନେକେ ଆଶା କରୁଥିଲେ ଏବଂ ଗ୍ଲାଡ୍‌ଷ୍ଟୋନ୍‌ଙ୍କ ଉପରେ ମଧ୍ୟ ପ୍ରବଳ ଚାପ ପଡ଼ିଥିଲା, ଲର୍ଡ୍ ମେୟୋଙ୍କ ମନୋନୟନ ଖାରଜ କରିବା ପାଇଁ । କିନ୍ତୁ ସେ ସେପରି କଲେ ନାହିଁ ।

ଭାରତରେ ପହଞ୍ଚିବା ପରେ ପଞ୍ଜାବର ଅମ୍ବାଲାଠାରେ ଲର୍ଡ୍ ମେୟୋଙ୍କର ଅମୀର ଶେର୍ ଅଲ୍ଲୀଙ୍କ ସହ ସାକ୍ଷାତ ହେଲା । ଅମ୍ବାଲାରେ ଶେର୍ ଅଲ୍ଲୀଙ୍କର ସମ୍ବର୍ଦ୍ଧନା ଏପରି ଆଡ଼ମ୍ବରପୂର୍ଣ୍ଣ ଓ ଆମୋଦଦାୟକ ହୋଇଥିଲା ଯେ, ସେ ତାଙ୍କ ସହଯୋଗୀମାନଙ୍କ ନିକଟରେ ଖୋଲାଖୋଲି ପ୍ରକାଶ କଲେ– "ସେ ଆଜି ପ୍ରକୃତ ରାଜଗାଦିରେ ବସିବା ଭଳି ଅନୁଭବ କରୁଅଛନ୍ତି ।" ଶେର୍ ଅଲ୍ଲୀ ଅନୁରୋଧ କଲେ ଯେ, ତାଙ୍କ ମୃତ୍ୟୁ ପରେ ତାଙ୍କ ଜ୍ୟେଷ୍ଠପୁତ୍ର ପରିବର୍ତ୍ତେ କନିଷ୍ଠପୁତ୍ର ଅବ୍‌ଦୁଲ୍ଲା ଜାନ୍‌ଙ୍କୁ ଆଫଗାନର ରାଜା ଭାବରେ ସ୍ୱୀକୃତି ଦିଆଯାଉ । ଏ ସମ୍ପର୍କରେ ଲର୍ଡ୍ ମେୟୋ ଜନ୍ ଲରେନ୍ସଙ୍କ ନୀତି ଅନୁସରଣ କରୁଥିଲେ ଏବଂ ଆଫଗାନ୍ ରାଜପରିବାରର ଅନ୍ତର୍ନିହିତ ବ୍ୟାପାରରେ ସେ କୌଣସି ପ୍ରକାରେ ହସ୍ତକ୍ଷେପ କରିବେ ନାହିଁ ବୋଲି ଘୋଷଣା କଲେ । କିନ୍ତୁ ତାଙ୍କର ଆସନ ସୁଦୃଢ଼ କରିବା ପାଇଁ ଶେର୍ ଅଲ୍ଲୀଙ୍କୁ କୋଡ଼ିଏ ଲକ୍ଷ ଟଙ୍କା ଅନୁଦାନ ଦେଲେ ।

ଖର୍ଚ୍ଚ ଓ ହିସାବପତ୍ର ସମ୍ପର୍କରେ ମେୟୋ ଥିଲେ ଖୁବ୍ ଦୃଢ଼ମନା ଏବଂ ଅନେକାଂଶରେ ସରକାରୀ କାର୍ଯ୍ୟକଳାପଠାରୁ ଆରମ୍ଭ କରି ବିଭିନ୍ନ ପ୍ରଦେଶ ମଧ୍ୟରେ ଅର୍ଥ ବିନିମୟ ସଂକ୍ରାନ୍ତୀୟ ନୀତି ନିର୍ଦ୍ଧାରଣ କରିବାରେ ସେ ଲରେନ୍ସଙ୍କର ନିର୍ଦ୍ଦେଶିତ ପଥ ଅନୁସରଣ କରୁଥିଲେ । ଭାରତର ମୂଳ ଆୟରୁ କେଉଁ ପ୍ରଦେଶ କେତେ ଅର୍ଥ ପାଇବେ, ତା'ର ନୀତି ନିୟାମକ ସେ ସ୍ଥିର କରିଦେଇଥିଲେ ଏବଂ ନିୟମ ପ୍ରଣୟନ କରିଥିଲେ ଯେ, ପ୍ରଦେଶମାନେ ସେମାନଙ୍କୁ ପ୍ରଦତ୍ତ ଅର୍ଥର ସୀମା ଟପି ପାରିବେ ନାହିଁ । ମାତ୍ର ଆବଶ୍ୟକ ହେଲେ, ଗୋଟିଏ ବିଭାଗ ପାଇଁ ନିର୍ଦ୍ଧାରିତ ଅର୍ଥ ଅନ୍ୟ ବିଭାଗରେ ଖର୍ଚ୍ଚ କରିପାରିବେ । ଏହାପରେ କେନ୍ଦ୍ର ସରକାରଙ୍କ ସମ୍ମତି କ୍ରମେ ଯଦି ସମ୍ଭବ, ତା'ହେଲେ ପ୍ରଦେଶମାନେ ନିଜ ଖର୍ଚ୍ଚ ପାଇଁ ସ୍ୱତନ୍ତ୍ର ଟିକସ ଧାର୍ଯ୍ୟ କରିପାରିବେ ।

ମେୟୋଙ୍କର ସ୍ୱଭାବ, ଚରିତ୍ର ଓ ବ୍ୟବହାରରେ ସମସ୍ତେ ମୁଗ୍ଧ ଥିଲେ । ରାଜା, ମହାରାଜାମାନଙ୍କୁ ପରାମର୍ଶ ଦେଇ ସେ କାର୍ଯ୍ୟ ହାସଲ କରିପାରୁଥିଲେ । କୌଣସି କାର୍ଯ୍ୟାନୁଷ୍ଠାନର ଆବଶ୍ୟକତା ପଡୁ ନଥିଲା । ଅଲୱାର୍‌ର ଅତି ଉଦ୍ଭଟ, ଲମ୍ପଟ ଯୁବକ ମହାରାଜାଙ୍କୁ ବିତାଡ଼ିତ କରିବା ବ୍ୟତୀତ, ଅନ୍ୟ କୌଣସି ଦେଶୀୟ ରାଜାଙ୍କ ବିରୋଧରେ ଶାସ୍ତି ପ୍ରଦାନ କରିବାର ଆବଶ୍ୟକତା ଉଠି ନଥିଲା । ବରଂ ରାଜାରାଜୁଡ଼ାମାନଙ୍କର ଶିକ୍ଷାର ଅଗ୍ରଗତି ଲାଗି ଲର୍ଡ଼ ମେୟୋ ଦୁଇଟି କଲେଜ ପ୍ରତିଷ୍ଠା କରିଥିଲେ । କାଠିଆୱାର୍ ଅଞ୍ଚଳର ସ୍ଥାନୀୟ ଦେଶୀୟ ରାଜା ଓ ତାଙ୍କର ସମ୍ପର୍କୀୟମାନଙ୍କ ପାଇଁ ରାଜକୋଟରେ ଗୋଟିଏ କଲେଜ ଏବଂ ରାଜପୁତାନାର ଆଜ୍‌ମେର୍‌ଠାରେ "ମେୟୋ କଲେଜ" ଶୀର୍ଷକ ଏକ ଶିକ୍ଷାନୁଷ୍ଠାନ ସ୍ଥାପନ କରିଥିଲେ । ସେ ଅନୁଭବ କରୁଥିଲେ ଯେ, ବଙ୍ଗଳାରେ ଉଚ୍ଚଶିକ୍ଷା ପାଇଁ କେତେକ ଅନୁଷ୍ଠାନ ସ୍ଥାପିତ ହୋଇଥିଲେ ମଧ୍ୟ ପ୍ରାଥମିକ ସ୍ତରରେ ଶିକ୍ଷାର ଉନ୍ନତି ପାଇଁ କୌଣସି ବ୍ୟବସ୍ଥା କରାଯାଉନାହିଁ । ପୂର୍ବପ୍ରଚଳିତ ଗ୍ରାମ୍ୟ ବିଦ୍ୟାଳୟ ଓ ମାଦ୍ରାସା ଆଦି କେବଳ ସ୍ଥାନୀୟ ଚାନ୍ଦା ଓ ବଦାନ୍ୟ ବ୍ୟକ୍ତିଙ୍କ ଅନୁଦାନରେ ପରିଚାଳିତ ହେଉଅଛି । ଲର୍ଡ଼ ମେୟୋ ଏ ପରିସ୍ଥିତିରେ କ୍ଷୁବ୍ଧ ହୋଇ କହୁଥିଲେ ଯେ, ବଙ୍ଗଳାରେ ବହୁ ଅର୍ଥ ବ୍ୟୟ କରି ଆମେ କେବଳ କେତେଜଣ ବାବୁଙ୍କୁ ଉଚ୍ଚଶିକ୍ଷା ପ୍ରଦାନ କରୁଛୁ । ଏକମାତ୍ର ଉଦ୍ଦେଶ୍ୟ ହେଲା, ସେମାନେ ସରକାରୀ ଚାକିରିରେ ପ୍ରବେଶ କରିବେ । କିନ୍ତୁ ଗାଁ ଗହଳରେ ସାଧାରଣ ଲୋକଙ୍କୁ ଉନ୍ନତ ଧରଣର ପ୍ରାଥମିକ ଶିକ୍ଷା ପ୍ରଦାନ କରି ବରଂ ଦେଶର ଅଧିକ ମଙ୍ଗଳ

କରିହେବ । ବିଦ୍ୟାଳୟ ସ୍ଥାପିତ ହେଲେ ସେହିମାନେ ନିଜ ଚେଷ୍ଟାରେ ଉନ୍ନତ ପ୍ରାଥମିକ ଶିକ୍ଷା ଲାଭକରି ଉଚ୍ଚଶିକ୍ଷା ପାଇଁ ଆଗ୍ରହୀ ହେବେ ।

ଶିକ୍ଷାକ୍ଷେତ୍ରରେ ଏପରି ପରିସ୍ଥିତିର ଗୋଟିଏ ରାଜନୈତିକ ଦିଗ ଥିଲା । ସେକାଳରେ ବିହାର ଥିଲା ବଙ୍ଗପ୍ରଦେଶର ଅନ୍ତର୍ଭୁକ୍ତ । ଯଦିଓ ସଂଖ୍ୟା ଦୃଷ୍ଟିରୁ ମୁସଲମାନମାନଙ୍କ ସଂଖ୍ୟା ଥିଲା ଦୁଇ କୋଟି ଏବଂ ବଙ୍ଗଦେଶର ମୋଟ ଜନସଂଖ୍ୟାର ଏହା ଥିଲା ତିନିଭାଗରୁ ଭାଗେ । କିନ୍ତୁ ପ୍ରାଥମିକ ଛାତ୍ରସଂଖ୍ୟା ଦୃଷ୍ଟିରୁ ମାତ୍ର ଚଉଦ ହଜାର ମୁସଲମାନ ଛାତ୍ର ଅଧ୍ୟୟନ କରୁଥିଲେ । ଅଥଚ୍ ସେହି ଶ୍ରେଣୀର ହିନ୍ଦୁ ଛାତ୍ରମାନଙ୍କ ସଂଖ୍ୟା ଥିଲା ଏକଲକ୍ଷ । ଏହି କାରଣରୁ ପାଟନାରେ ବିଶେଷତଃ ଓ୍ୱାହାବୀମାନଙ୍କ ନେତୃତ୍ୱରେ ଅସନ୍ତୋଷ ବ୍ୟାପୁଥିଲା । ଓ୍ୱାହାବୀମାନେ ଅତୀତରେ ଥିଲେ ଆଫଗାନିସ୍ଥାନର ଅଧିବାସୀ । ସେହିମାନେ ବରଂ ଦୂରଦୂରାନ୍ତକୁ ବାର୍ତ୍ତା ପଠାଇ ଅସନ୍ତୋଷ ଯେପରି ବ୍ୟାପିବ, ତା'ର ଉଦ୍ୟମ କରୁଥିବାର ପୋଲିସ ଅନୁସନ୍ଧାନରୁ ଜଣାପଡ଼ିଥିଲା । ଏହି ଅସନ୍ତୋଷର ମୂଳପୋଛ କରିବା ପାଇଁ ବିନା ଦ୍ୱିଧାରେ କେତେକ ଓ୍ୱାହାବୀ ଓ ଜଣେ ଧନୀ ମୁସଲମାନ ବ୍ୟବସାୟୀଙ୍କୁ ଗିରଫ କରି ହାଇକୋର୍ଟରେ ବିଚାର ପାଇଁ କଲିକତା ଅଣାଗଲା ଏବଂ ରାଜଦ୍ରୋହ ଅପରାଧରେ ସେମାନଙ୍କୁ ଦଣ୍ଡିତ କରି ଆଣ୍ଡାମାନକୁ ଦ୍ୱୀପାନ୍ତର କରାଗଲା । ଅବଶ୍ୟ ଏହାଫଳରେ ଓ୍ୱାହାବୀମାନଙ୍କର ଆନ୍ଦୋଳନ ପୂରାପୂରି ନିର୍ବାପିତ ହୋଇଗଲା । କିନ୍ତୁ ଏହି ସମୟରେ କଲିକତାରେ ଏପରି ଏକ ଚାଞ୍ଚଲ୍ୟକର ଘଟଣା ଘଟିଲା, ଯାହାକି ଅତୀତରେ କେବେ ଶୁଣାନଥିଲା । ୧୮୭୧ ମସିହା ସେପ୍ଟେମ୍ବର ୨୦ ତାରିଖରେ ଚିଫ୍ ଜଷ୍ଟିସ୍ ଜେ.ପି. ନର୍ମାନ୍ ପାହାଚ୍ ଚଢ଼ି ହାଇକୋର୍ଟର ଉପର ମହଲାକୁ ଗଲାବେଳେ ହଠାତ୍ ଜଣେ ଲୋକ ତାଙ୍କୁ ଗୋଟିଏ କାଗଜ ପଢ଼ିବାକୁ ଦେଲା ଏବଂ ସେ କାଗଜ ଉପରେ ଆଖି ପକାଇବାମାତ୍ରେ ଏ ଆଗନ୍ତୁକ ପଛରୁ ଏକ ଛୁରାମାରି ଚିଫ୍ ଜଷ୍ଟିସ୍‌ଙ୍କୁ ସେହିଠାରେ ହତ୍ୟା କଲା । ଅନୁସନ୍ଧାନରୁ ଦେଖାଗଲା, ଏ ଘାତକ ଜଣେ ଓ୍ୱାହାବୀ ମୁସଲମାନ । ଠିକ୍ ଚାରିମାସ ପରେ ଏତାଦୃଶ୍ୟ ଅନ୍ୟ ଗୋଟିଏ ଘଟଣା ଆଣ୍ଡାମାନରେ ଘଟିଲା, ଯାହା ଇଂରେଜ ଶାସକ ଗୋଷ୍ଠୀକୁ ଚମକାଇ ଦେଇଥିଲା । ଆଣ୍ଡାମାନ ପରିଦର୍ଶନରେ ଯାଇ ଭାଇସ୍‌ରାୟ ମେୟୋ ପ୍ରାୟ ସନ୍ଧ୍ୟା ସମୟରେ ଭାରତ ପ୍ରତ୍ୟାବର୍ତ୍ତନ ଉଦ୍ଦେଶ୍ୟରେ ତାଙ୍କ ଲଞ୍ଚକୁ ଫେରିବା ବେଳେ, ଅନ୍ଧକାର ମଧ୍ୟରୁ ଜଣେ ଆତତାୟୀ ତାଙ୍କୁ ଛୁରାଘାତ କରି ତୁରନ୍ତ ହତ୍ୟାକଲା ଏବଂ ସେହି ଲୋକଟା ଥିଲା ମଧ୍ୟ ଉତ୍ତର ପଶ୍ଚିମ ଭାରତର ଜଣେ ପଠାନ୍

ଅଧିବାସୀ । ଚିଫ୍ ଜଷ୍ଟିସ୍ ଜେ.ପି. ନର୍ମାନ୍‌ଙ୍କର ହତ୍ୟାକାରୀ ସହିତ ମେୟୋଙ୍କ ଆତତାୟୀର ସମ୍ପର୍କ ନିର୍ଦ୍ଧାରଣ କରି ନହେଲେ ମଧ୍ୟ ଆତତାୟୀ ଯେ ଜଣେ ୱାହାବୀ, ଏ ବିଷୟରେ ସନ୍ଦେହ ରହିଲା ନାହିଁ ।

ନୂତନ ଭାଇସ୍‌ରାୟ ଲର୍ଡ୍ ନର୍ଥ ବ୍ରୁକ୍ ମଇ ୧୮୭୨ ମସିହାରେ ଭାରତରେ ଅବତରଣ କଲେ । ପ୍ରଧାନମନ୍ତ୍ରୀ ଗ୍ଲାଡ୍‌ଷ୍ଟୋନ୍‌ଙ୍କ ଜଣେ ଅନୁଗାମୀ ଭାବରେ ସେ ଏଥିପୂର୍ବରୁ ଯୁଦ୍ଧ ବିଭାଗର ଅଣ୍ଡର-ସେକ୍ରେଟେରୀ ଏବଂ ଚାର୍ଲସ୍ ଉଡ୍‌ଙ୍କ ଅଧୀନରେ ଇଣ୍ଡିଆ ଅଫିସ୍‌ରେ ଅଣ୍ଡର-ସେକ୍ରେଟେରୀ ରହି ଯଥେଷ୍ଟ ଅଭିଜ୍ଞତା ଅର୍ଜନ କରିଥିଲେ । ଭାରତରେ ପହଞ୍ଚିବା ପରେ ହଠାତ୍ ତାଙ୍କର ଧାରଣା ହେଲା ଯେ, ନୂଆ ଆୟକର ଆଦି ଅନେକ କିସମର ନୂଆ ନୂଆ ଆଇନ୍ ଫଳରେ ସାଧାରଣ ଲୋକଙ୍କର ଅସୁବିଧା ବଢୁଛି ଓ ସେମାନଙ୍କ ମଧ୍ୟରେ ଅସନ୍ତୋଷ ବୃଦ୍ଧି ପାଉଛି । ଏହି ଟିକସହାର କମାଇବା ପାଇଁ ତାଙ୍କର ଉଦ୍ୟମର ବିରୋଧ କରୁଥିଲେ ଜନ୍ ଷ୍ଟ୍ରାଚି ଓ କାଉନ୍‌ସିଲ୍‌ର ଅର୍ଥ ବିଭାଗର ସଭ୍ୟ ରିଚାର୍ଡ୍ ଟେମ୍ପଲ୍ ପ୍ରମୁଖ । ଯାହାହେଉ ସବୁ ବିରୋଧ ସତ୍ତ୍ୱେ ମାର୍ଚ୍ଚ ୧୮୭୩ ମସିହାରେ ଟେମ୍ପଲ ଓ ଷ୍ଟ୍ରାଚିଙ୍କ ବିରୋଧ ସତ୍ତ୍ୱେ ଆୟକର ଆଇନ୍‌କୁ ସମ୍ପୂର୍ଣ୍ଣ ଉଚ୍ଛେଦ କରାଗଲା । ଏହି ପଦକ୍ଷେପ ପାଇଁ ନର୍ଥ ବ୍ରୁକ୍‌ଙ୍କୁ ପ୍ରଭାବିତ କରିବାରେ ଅସଲ ଲୋକ ଥିଲେ କଲିକତାର ୟୁରୋପିଆନ୍ ବ୍ୟବସାୟୀ ଗୋଷ୍ଠୀ । ନର୍ଥ ବ୍ରୁକ୍‌ଙ୍କ ମନରେ ଧାରଣା ସୃଷ୍ଟି କରାଯାଇଥିଲା ଯେ, ଆୟକର ଉଠାଇ ନେଲେ ଭାରତର ୟୁରୋପିଆନ୍ ସଂପ୍ରଦାୟ ଓ ଶିକ୍ଷିତ ଭାରତୀୟମାନଙ୍କ ମଧ୍ୟରେ ବିଦ୍ୱେଷ ଲୋପ ପାଇବ ଓ ସାମ୍ୟ ଓ ବନ୍ଧୁତାର ବୃଦ୍ଧି ହେବ ।

ନର୍ଥ ବ୍ରୁକ୍ ତାଙ୍କର ପୂର୍ବାଧିକାରୀ ଲରେନ୍ସ ଓ ମେୟୋଙ୍କ ପରି କଠୋର ମିତବ୍ୟୟୀ ଥିଲେ । ଏହି ମିତବ୍ୟୟିତା ଫଳରେ ସେ ୧୮୭୪ ମସିହାରେ ସମ୍ଭାବ୍ୟ ଦୁର୍ଭିକ୍ଷକୁ ପ୍ରତିରୋଧ କରିବାକୁ ସମର୍ଥ ହୋଇଥିଲେ । ଓଡ଼ିଶା ଦୁର୍ଭିକ୍ଷର ଅଭିଜ୍ଞତା ତାଙ୍କ ମନରେ ଜାଗରୂକ ଥିଲା ଏବଂ ଜାନୁଆରୀ ୧୮୭୪ ମସିହାରେ ସେ ଚାରି ଲକ୍ଷ ପଚାଶ ହଜାର ଟନ୍ ଚାଉଳ ବର୍ମାରୁ ଆମଦାନୀ କରି ଗଚ୍ଛିତ ରଖିଥିଲେ ଏବଂ ଏହି ଚାଉଳକୁ ବିହାର ଓ ଉତ୍ତର ବଙ୍ଗ ଅଞ୍ଚଳରେ ରିଲିଫ୍ କମିଟି ଜରିଆରେ ବଣ୍ଟନ କରାଯାଇଥିଲା । ସେହି ସମୟରେ ଜର୍ଜ କ୍ୟାମ୍ପବେଲ୍ ଥିଲେ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର, କିନ୍ତୁ ସେ ଥିଲେ ଅତ୍ୟନ୍ତ ଅସୁସ୍ଥ । ନର୍ଥ ବ୍ରୁକ୍ ତାଙ୍କର ସହକାରୀ ରିଚାର୍ଡ୍

ଟେମ୍ପଲ୍‌ଙ୍କ ସହାୟତାରେ ଦୁର୍ଭିକ୍ଷ ସମସ୍ୟାର ସମାଧାନ କରିଥିଲେ । କିନ୍ତୁ ଏହି ସମୟରେ ଭାଇସ୍‌ରାୟ ଓ କ୍ୟାମ୍ପବେଲ୍‌ଙ୍କ ମଧ୍ୟରେ ଚାଉଳ ଆମଦାନୀ ବିଷୟରେ ମତଭେଦ ହୋଇଥିଲା । ବଙ୍ଗଳା ଏବଂ ଓଡ଼ିଶାରେ ଯଥେଷ୍ଟ ବୃଷ୍ଟି ଯୋଗୁ କେତେବର୍ଷ ଧରି ଭଲ ଫସଲ ହେଉଥିଲା ଏବଂ କଲିକତାର ବ୍ୟବସାୟୀମାନେ ଏହି ବଳକା ଅଞ୍ଚଳରୁ ଚାଉଳ ସଂଗ୍ରହ କରି ବାହାରକୁ ରପ୍ତାନୀ କରୁଥିଲେ । କ୍ୟାମ୍ପବେଲ୍‌ଙ୍କ ମତରେ ବର୍ମାରୁ ଚାଉଳ ଆମଦାନୀ କରି, ବଙ୍ଗଳା ଓ ଓଡ଼ିଶାର ବଳକା ଚାଉଳ ବାହାରକୁ ରପ୍ତାନୀ କରିବା ଉଚିତ ନୁହେଁ । କିନ୍ତୁ ନର୍ଥ ବ୍ରୁକ୍ କ୍ୟାମ୍ପବେଲ୍‌ଙ୍କ ପରାମର୍ଶ ଗ୍ରହଣ କଲେନାହିଁ । ହୁଗୁଳୀ ନଦୀରେ ବେଳେବେଳେ ଏପରି ଘଟୁଥିଲା ଯେ, ଚାଉଳ ବୋଝେଇ ଜାହାଜ ରପ୍ତାନୀ ଉଦ୍ଦେଶ୍ୟରେ ବାହାରକୁ ଯାଉଥିଲା ବେଳେ ବ୍ରହ୍ମଦେଶରୁ ଆମଦାନୀ କରା ହୋଇଥିବା ଚାଉଳ ବୋଝେଇ ଜାହାଜ ହୁଗୁଳୀ ନଦୀରେ ପ୍ରବେଶ କରୁଥିଲା । କ୍ୟାମ୍ପବେଲ୍‌ଙ୍କ ବିଚାରରେ ଏପରି କାର୍ଯଧାରା ସ୍ପୃହଣୀୟ ନୁହେଁ । କିନ୍ତୁ କଲିକତା ବ୍ୟବସାୟୀମାନେ ନର୍ଥ ବ୍ରୁକ୍‌ଙ୍କ ଉପରେ ଏପରି ଚାପ ଦେଉଥିଲେ ଯେ, ସେ କ୍ୟାମ୍ପବେଲ୍‌ଙ୍କର ପରାମର୍ଶ ସମ୍ପୂର୍ଣ୍ଣ ଅଗ୍ରାହ୍ୟ କଲେ ।

ଏହି ସମୟରେ ଚାଷୀମାନଙ୍କ ମଧ୍ୟରେ ଜମିଦାରୀ ଅତ୍ୟାଚାର ଓ ମହାଜନଙ୍କର ଉତ୍ପୀଡ଼ନ ବିରୁଦ୍ଧରେ ଅସନ୍ତୋଷ ବୃଦ୍ଧି ପାଉଥିଲା । ଅବସ୍ଥା ଏପରି ହେଲା ଯେ, ସରକାର ବାଧ ହୋଇ କେତେକ କୃଷକ ସହାୟକ ଆଇନ୍ ପ୍ରଣୟନ କରିଥିଲେ । ଯାହାହେଉ ଆଇନ୍ ବଳରେ ଚାଷୀମାନଙ୍କୁ କେତେକ ସୁରକ୍ଷା ଦିଆଯାଇଥିଲେ ମଧ୍ୟ ମହାଜନୀ ଅତ୍ୟାଚାର ବଢ଼ି ବଢ଼ି ଚାଲିଥିଲା । ଅବସ୍ଥା ଏପରି ସଂକଟପୂର୍ଣ୍ଣ ଥିଲା ଯେ, ୧୮୮୦ ମସିହାରେ ଯେଉଁ "ଫ୍ୟାମିନୀ କମିଶନ" ବସାଯାଇଥିଲା, ସେ କମିଶନ୍ ରିପୋର୍ଟ ଦେଲେ ଯେ ଚାଷୀମାନଙ୍କ ମଧ୍ୟରୁ ଅନ୍ତତଃ ଏକତୃତୀୟାଂଶ ଋଣରେ ବୁଡ଼ି ରହିଛନ୍ତି ।

୧୮୭୪ ମସିହାର ବସନ୍ତ କାଳରେ ଇଂଲଣ୍ଡରେ ସରକାର ପରିବର୍ତ୍ତନ ହେଲା । ଡିସ୍‌ରାୟଲୀ ଗ୍ଲାଡ୍‌ଷ୍ଟୋନ୍‌ଙ୍କ ଦଳକୁ ପରାସ୍ତ କରି ନିର୍ବାଚନରେ ଜୟଲାଭ କଲେ ଓ ପ୍ରଧାନମନ୍ତ୍ରୀ ହେଲେ । ଲର୍ଡ଼ ସେଲିସ୍‌ବରୀ ଭାରତୀୟ ସେକ୍ରେଟେରୀ ଭାବରେ ନିଯୁକ୍ତ ହେଲେ । ସେଲିସ୍‌ବରୀ ଓ ଲର୍ଡ଼ ନର୍ଥ ବ୍ରୁକ୍ ଉଭୟ ଥିଲେ ସାମ୍ରାଜ୍ୟବାଦୀ । ପାର୍ଥକ୍ୟ ଏତିକି ଯେ, ସେଲିସ୍‌ବେରୀ ଥିଲେ ରକ୍ଷଣଶୀଳ, ଜିଦ୍‌ଖୋର୍ ଅଥଚ ନର୍ଥ ବ୍ରୁକ୍ ଥିଲେ

ଉଦାରପନ୍ଥୀ ସ୍ୱାଧୀନଚେ଼ତା । ଏଣୁ ସବୁ ବିଷୟରେ ସେକ୍ରେଟେରୀ ଅଫ୍ ଷ୍ଟେଟ୍‌ଙ୍କ ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ଦୁଇଟି ମୁଖ୍ୟ ବିଷୟରେ ଏହି ମତଭେଦ ତୀବ୍ର ରୂପ ନେଇଥିଲା । ସେଲିସ୍‌ବରୀ ଚାହୁଁଥିଲେ ଯେ, ଭାରତକୁ ବ୍ରିଟେନ୍‌ର ଲାଙ୍କାସାୟାର୍‌ରୁ ଯେଉଁ ବସ୍ତ୍ର ଆମଦାନୀ କରାଯାଉଛି, ତା' ଉପରେ ଲାଗୁ ହେଉଥିବା ଆମଦାନୀ ଶୁଳ୍କ ଉଠାଇ ନିଆଯାଉ । କିନ୍ତୁ ନର୍ଥ ବ୍ରୁକ୍‌ଙ୍କ ମତଥିଲା, ଅର୍ଥନୀତି ଦୃଷ୍ଟିରୁ ଏପରି ଶୁଳ୍କ ଉଠାଇନେବା ଭାରତ ପକ୍ଷରେ କ୍ଷତିକାରକ ହେବ । ସେହିପରି ଆଫଗାନ୍ ସମସ୍ୟା ଉପରେ ସେଲିସ୍‌ବରୀ ନିର୍ଦ୍ଦେଶ ଦେଲେ ଯେ, ଋଷିଆନ୍ ଆକ୍ରମଣର ସମ୍ଭାବନା ଦୃଷ୍ଟିରୁ ଆଫଗାନିସ୍ଥାନରେ ତିନୋଟି ସ୍ଥାନରେ ବ୍ରିଟିଶ୍ ସୈନ୍ୟ ମହଜୁଦ୍ ରଖିବା ପାଇଁ ଆଫଗାନ୍‌ର ଅମୀର ଶେର୍ ଅଲ୍ଲୀଙ୍କର ସମ୍ମତି ଅଣାଯାଉ । ନର୍ଥ ବ୍ରୁକ୍‌ଙ୍କ ଉତ୍ତର ଥିଲା, ଏପରି ସମ୍ମତି ଆଣିବା ସମ୍ଭବପର ନୁହେଁ । କିନ୍ତୁ ସେଲିସ୍‌ବରୀ ସ୍ୱନିର୍ଦ୍ଦେଶରୁ ପଛଘୁଞ୍ଚା ଦେବାକୁ ପ୍ରସ୍ତୁତ ନଥିଲେ । ନର୍ଥ ବ୍ରୁକ୍ ଏକ ଘରୋଇ କାରଣ ଦର୍ଶାଇ ନିଜ ପଦବୀରୁ ଇସ୍ତଫା ଦେଲେ ଓ ୧୮୭୬ ଏପ୍ରିଲ୍ ମାସରେ କାର୍ଯ୍ୟକାଳ ପୂରିବାର ପୂର୍ବରୁ ଭାରତ ଛାଡ଼ି ଲଣ୍ଡନ୍ ଅଭିମୁଖେ ଯାତ୍ରା କଲେ । କିନ୍ତୁ ଭାରତ ଛାଡ଼ିବା ପୂର୍ବରୁ ସେ ତାଙ୍କର ଜଣେ ବନ୍ଧୁ ସାର୍ ଲୁଇସ୍ ମ୍ୟାଲେଟ୍‌ଙ୍କୁ ଲେଖିଥିଲେ, "ମୁଁ ଯେ ସେଲିସ୍‌ବରୀଙ୍କ ନିର୍ଦ୍ଦେଶ ଅମାନ୍ୟ କରୁଛି, ସେଥିପାଇଁ ସେ ନିଶ୍ଚିତ ଭାବରେ ମୋ ପ୍ରତି ଅସନ୍ତୁଷ୍ଟ ଥିବେ । କିନ୍ତୁ ମୁଁ ଭାବୁଛି, ଜଣେ ଗଭର୍ଣ୍ଣର ଜେନେରାଲ ଯେ କି ନିଜର କର୍ତ୍ତବ୍ୟ କରିବା ପାଇଁ ଏତେ ଅଧିକ ବେତନ ପାଉଛନ୍ତି, ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଯଦି ଅନ୍ୟାୟ ବା ଅବୈଧ ନିର୍ଦ୍ଦେଶ ଦିଅନ୍ତି, ତାହାହେଲେ ଗଭର୍ଣ୍ଣର ଜେନେରାଲ୍ ତାଙ୍କର କର୍ତ୍ତବ୍ୟ ଦୃଷ୍ଟିରୁ ସେ ନିର୍ଦ୍ଦେଶର ଅବୈଧତା ତାଙ୍କୁ ଦର୍ଶାଇଦେବା ଉଚିତ ।"



# ପୁଞ୍ଜିବାଦରୁ ସାମ୍ରାଜ୍ୟବାଦ

ଇଷ୍ଟ ଇଣ୍ଡିଆ କମ୍ପାନୀ ଆପଣାର ପୁଞ୍ଜି ବିନିଯୋଗ କରି ଅଧିକରୁ ଅଧିକ ଲାଭ କରିବାକୁ ପ୍ରତିଷ୍ଠିତ ହୋଇଥିଲା । ପ୍ରାରମ୍ଭରେ ଭାରତର ମୋଗଲ ସମ୍ରାଟ ଓ ରାଜା ଓ ନବାବ୍‌ମାନଙ୍କୁ ସନ୍ତୁଷ୍ଟ କରି ବ୍ୟବସାୟ ବଢ଼ାଇବା ଥିଲା ସେମାନଙ୍କର ଲକ୍ଷ୍ୟ । କିନ୍ତୁ ଭାରତରେ ପ୍ରାୟ ପଚାଶବର୍ଷ ବ୍ୟବସାୟ କରିସାରିବା ପରେ ମୋଗଲ ସାମ୍ରାଜ୍ୟ ଯେତେବେଳେ ଭୁଶୁଡ଼ି ପଡ଼ିଲା ଓ ୧୮୫୭ ମସିହାରେ ପଲାସି ଯୁଦ୍ଧରେ କ୍ଲାଇଭ୍ ସାମାନ୍ୟ କେତେଶହ ଇଂରେଜ ସୈନ୍ୟଙ୍କୁ ଧରି ମୁର୍ଶିଦାବାଦର ନବାବ୍ ସିରାଜ୍‌ଉଦ୍ଦୌଲାଙ୍କୁ ଯୁଦ୍ଧରେ ପରାଜିତ କରି ବଙ୍ଗଦେଶରେ ରାଜୁତି ସ୍ଥାପନ କଲେ, ସେ ସମୟରୁ ସିପାହୀ ବିଦ୍ରୋହ ପର୍ଯ୍ୟନ୍ତ ଶହେ ବର୍ଷ ମଧ୍ୟରେ ଇଂରେଜମାନେ ଧୀରେଧୀରେ ସାରା ଭାରତକୁ ଦଖଲ କରିଗଲେ । ପୁଞ୍ଜିବାଦ ଉଗ୍ର ସାମ୍ରାଜ୍ୟବାଦର ରୂପ ନେଲା ଏବଂ ସିପାହୀ ବିଦ୍ରୋହ ପରେ ଭାରତର ଧନ, ଜନ ଓ ମାନ ବିନିମୟରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ଯେପରି ସ୍ଥାୟୀ ହେବ ଓ ଶାସିତ ଜନସାଧାରଣଙ୍କର ଆସ୍ଥାଭାଜନ ହେବ, ସେଥିପାଇଁ ବିଭିନ୍ନ ବାଟରେ ଉଦ୍ୟମ ଆରମ୍ଭ ହେଲା ।

ନର୍ଥ ବ୍ରୁକ୍ ଭାରତରୁ ବିଦାୟ ନେବା ପରେ ଇଂରେଜମାନଙ୍କର ସାମ୍ରାଜ୍ୟବାଦୀ ପରିକଳ୍ପନା କିପରି କାର୍ଯ୍ୟକାରୀ ହେବ ସେଥିପାଇଁ ନର୍ଥ ବ୍ରୁକ୍‌ଙ୍କ ସ୍ଥାନରେ ଲର୍ଡ଼ ଲିଟନ୍‌ଙ୍କୁ ଭାରତର ଭାଇସ୍‌ରାୟ କରି ପଠାହେଲା । ଏହି ସମୟରେ ଲଣ୍ଡନରେ ରକ୍ଷଣଶୀଳ ଦଳର ନେତା ଡିସ୍‌ରାୟଲୀ ଉଦାରପନ୍ଥୀ ଗ୍ଲାଡ୍‌ଷ୍ଟୋନ୍‌ଙ୍କୁ ନିର୍ବାଚନରେ ପରାଜିତ କରି କ୍ଷମତା ଦଖଲ କଲେ । ଯଦିଓ ଲିଟନ୍‌ଙ୍କର ଜଣେ କ୍ଷୁଦ୍ର କବି ଭାବରେ ସାମାନ୍ୟ ଖ୍ୟାତି ଥିଲା, କିନ୍ତୁ ତାଙ୍କର କୌଣସି ପ୍ରକାର ପ୍ରଶାସନିକ ଅଭିଜ୍ଞତା ବା ଦକ୍ଷତା ନଥିଲା । କିନ୍ତୁ ଲିଟନ୍‌ଙ୍କର ପିତା ଥିଲେ ଡିସ୍‌ରାୟଲୀଙ୍କର ବନ୍ଧୁ ଏବଂ ବୋଧହୁଏ ସେହି ପର୍ଯ୍ୟାୟରେ ଲିଟନ୍‌ଙ୍କୁ ନିଯୁକ୍ତି ଦିଆଯାଇଥିଲା । ଆଫଗାନିସ୍ଥାନରେ ଯେଉଁ କାର୍ଯ୍ୟ

କରିବା ପାଇଁ ନର୍ଥ ବ୍ରୁକ୍ ଅସାମର୍ଥ୍ୟ ପ୍ରକାଶ କରିଥିଲେ ଓ ନିଜପଦରୁ ଇସ୍ତଫା ଦେଇଥିଲେ ତାହା ଦୃଢ଼ତାର ସହିତ କାର୍ଯ୍ୟକାରୀ କରିବା ପାଇଁ ସେକ୍ରେଟେରୀ ଅଫ୍ ଷ୍ଟେଟ୍ (ଭାରତ ବିଭାଗ ମନ୍ତ୍ରୀ) ସାଲିସବରୀ ନିର୍ଦ୍ଦେଶ ଦେଇଥିଲେ ଏବଂ ଲିଟନ୍ ସେ ନିର୍ଦ୍ଦେଶକୁ ଆନନ୍ଦର ସହିତ ଗ୍ରହଣ କରିଥିଲେ ।

ଏହି ସମୟରେ ଦକ୍ଷିଣ ଓ ପଶ୍ଚିମ ଭାରତରେ ଘୋର୍ ଦୁର୍ଭିକ୍ଷ ଦେଖା ଦେଲା । ୧୮୬୭ ମସିହାରେ ମରୁଡ଼ିର ପୂର୍ଣ୍ଣ ସୂଚ଼ନା ମିଳିଥିଲା । ତାହା ସତ୍ତ୍ୱେ ଲର୍ଡ଼ ଲିଟନ୍ ମହାରାଣୀ ଭିକ୍ଟୋରିଆଙ୍କୁ ଭାରତର ସାମ୍ରାଜ୍ଞୀ ରୂପେ ଘୋଷଣା କରିବା ପାଇଁ ଏକ ଆଡ଼ମ୍ବରପୂର୍ଣ୍ଣ ଦରବାରର ଆୟୋଜନ କରିଥିଲେ । ଏହି ଦରବାରକୁ ମୋଟ ସତୁରି ହଜାର ଅତିଥିଙ୍କୁ ନିମନ୍ତ୍ରଣ କରାଯାଇଥିଲା । ତା' ମଧ୍ୟରେ ଥିଲେ ୭୭ ଜଣ ରାଜା ଏବଂ ୩୦୦ ଜଣ ସମ୍ଭ୍ରାନ୍ତ ଶ୍ରେଣୀୟ ଲୋକଙ୍କ ସହିତ ବହୁ ସରକାରୀ କର୍ମଚାରୀ ଓ ସାମରିକ ଅଫିସର । ଏହି ଦରବାରରେ ଖୁବ୍ ଜାକଜମକରେ ପୂର୍ଣ୍ଣାହୁତି ଦିଆଗଲା । କାରଣ ଲିଟନ୍ ଭାବୁଥିଲେ ଏହି ପ୍ରକାରର ଆଡ଼ମ୍ବରପୂର୍ଣ୍ଣ ଚାକଚକ୍ୟ ଦ୍ୱାରା ଭାରତୀୟ ଲୋକେ ମହାରାଣୀଙ୍କୁ ଅଧିକ ସମ୍ମାନ ଦେବେ ।

ଦରବାର ସମାପ୍ତ ହେବା ପରେ ପରେ ଲର୍ଡ଼ ଲିଟନ୍, ଭାରତ ବିଭାଗ ମନ୍ତ୍ରୀ ସାଲିସ୍‌ବରୀଙ୍କୁ ନିର୍ଦ୍ଦେଶ ଦେଲେ ଆଫଗାନିସ୍ଥାନର ଅମୀର ଶେର୍ ଅଲ୍ଲୀଙ୍କୁ ପ୍ରଭାବିତ କରି ଆଫଗାନିସ୍ଥାନର ଲ, କାନ୍ଦାହାର ଏବଂ ପାରସ୍ୟ ନିକଟସ୍ଥ ହେରାଟ୍‌ରେ ତିନୋଟି ଦଳ ବ୍ରିଟିଶ୍ ସୈନ୍ୟଙ୍କୁ ଅବସ୍ଥାପିତ କରିବା ପାଇଁ । କାରଣ ବ୍ରିଟିଶ୍ ସରକାର ଆଶଙ୍କା କରୁଥିଲେ ଯେ, ଯେକୌଣସି ସମୟରେ ରୁଷିଆର ଜାର୍ ଶେର୍ ଅଲ୍ଲୀଙ୍କ ସହିତ ଚକ୍ରାନ୍ତ କରି ଆଫଗାନିସ୍ଥାନ ଦଖଲ କରିପାରନ୍ତି । ଅମୀର ଶେର୍ ଅଲ୍ଲୀ ସମ୍ମତ ହେଲେ ବିଦେଶୀ ଆକ୍ରମଣ ବିରୁଦ୍ଧରେ ଇଂରେଜମାନେ ଆଫଗାନିସ୍ଥାନକୁ ସାହାଯ୍ୟ କରିବେ ଓ ଶେର୍ ଅଲ୍ଲୀଙ୍କ ପୂର୍ବ ଅନୁରୋଧ ଅନୁଯାୟୀ ତାଙ୍କ ଅନ୍ତେ, କନିଷ୍ଠ ପୁତ୍ର ଅବଦୁଲ୍ଲା ଜାନ୍‌ଙ୍କୁ ରାଜଗାଦି ଦଖଲ କରିବା ପାଇଁ ସ୍ୱୀକୃତି ଦେବେ । କିନ୍ତୁ ଶେର୍ ଅଲ୍ଲୀ ଏ ପ୍ରସ୍ତାବକୁ ଗ୍ରହଣ କରିନଥିଲେ । ତାଙ୍କର ସନ୍ଦେହ ହେଉଥିଲା ଯେ, ଉଭୟ ଋଷିଆନ୍ ଓ ବ୍ରିଟିଶ୍‌ମାନେ ତାଙ୍କୁ ଧରି ଆଫଗାନିସ୍ଥାନର ପଶାପାଲିରେ ଗୋଟି ଚଳାଉଛନ୍ତି ।

୧୮୭୭ ମସିହାରେ ଦକ୍ଷିଣ ଓ ପଶ୍ଚିମ ଭାରତର ଦୁର୍ଭିକ୍ଷ ହେତୁ ଲିଟନ୍‌ଙ୍କୁ ମୁଖ୍ୟତଃ ସେହି କାର୍ଯ୍ୟରେ ନିଯୁକ୍ତ ରହିବାକୁ ହେଲା । ପରବର୍ଷ ରୁଷିଆରୁ ଷ୍ଟଲିଟଫ୍‌ଙ୍କ

ନେତୃତ୍ୱରେ ଗୋଟିଏ ଋଷିଆନ୍ ପ୍ରତିନିଧି ଦଳ କାବୁଲ୍‌ରେ ଆସି ପହଞ୍ଚିଲେ । ସେତେବେଳକୁ ବର୍ଲିନ୍ ଚୁକ୍ତି ଅନୁଯାୟୀ ଇଂରେଜ ଓ ଋଷିଆନ୍‌ଙ୍କ ମଧ୍ୟରେ ଯେ ମିତ୍ରତା ପ୍ରତିଷ୍ଠିତ ହୋଇଛି, ତାହା ଷ୍ଟଲିଟଫ୍‌ଙ୍କୁ ଜଣା ନଥିଲା । ଇଂରେଜମାନେ ଏ ସମ୍ବାଦ ପାଇ ଆତଙ୍କିତ ହୋଇଉଠିଲେ ଏବଂ ଲିଟନ୍ ଶେର୍ ଅଲ୍ଲୀଙ୍କର ସମ୍ମତି ନନେଇ ତାଙ୍କୁ ପତ୍ର ଲେଖିଲେ ଯେ, ଅଗଷ୍ଟ ୧୭ ତାରିଖରେ ଗୋଟିଏ ବ୍ରିଟିଶ ପ୍ରତିନିଧି ଦଳ ତାଙ୍କ ସହିତ ଆଲୋଚନା କରିବା ପାଇଁ କାବୁଲ୍‌ରେ ପହଞ୍ଚିବେ । ଏ ମଧ୍ୟରେ ବର୍ଲିନ୍ ଚୁକ୍ତି ହେତୁ ଜାର୍ ସରକାର ଷ୍ଟଲିଟଫ୍‌ଙ୍କୁ କାବୁଲ୍‌ରୁ ଫେରାଇ ନେଲେ । ଯେଉଁଦିନ ଇଂରେଜମାନଙ୍କର ପତ୍ର ପହଞ୍ଚିଲା, ତାହା ଥିଲା ଶେର୍ ଅଲ୍ଲୀଙ୍କ ପାଇଁ ଏକ ଦୁଃସମୟର ଦିନ । ସେହିଦିନ ତାଙ୍କର କନିଷ୍ଠ ପୁତ୍ର ଅବଦୁଲ୍ଲା ଜାନ୍ ରୋଗାକ୍ରାନ୍ତ ହୋଇ ଦେହ ତ୍ୟାଗ କରିଥିଲେ । ତେଣୁ ସେ ଇଂରେଜମାନଙ୍କର ପତ୍ରର ଉତ୍ତର ଦେବାର ଅବସ୍ଥାରେ ନଥିଲେ । ଯାହାହେଉ ସେପ୍ଟେମ୍ବର ମାସରେ ସେ ଇଂରେଜମାନଙ୍କୁ ଜଣାଇଦେଲେ ଯେ, ପୁତ୍ର ବିୟୋଗ ହେତୁ କାର୍ଯ୍ୟନିର୍ବାହ ପ୍ରତି ଧ୍ୟାନ ଦେଇ ପାରିନାହାଁନ୍ତି ଏବଂ ଯଦି ଇଂରେଜମାନେ ଜବରଦସ୍ତ କାବୁଲ୍‌ରେ ପ୍ରବେଶ କରିବାପାଇଁ ଉଦ୍ୟମ କରନ୍ତି, ତା'ହେଲେ ସେମାନଙ୍କୁ ନିଶ୍ଚିତ ଭାବରେ ପ୍ରତିରୋଧ କରାଯିବ । କିନ୍ତୁ ଯଦି ସେମାନେ ବାସ୍ତବିକ ବନ୍ଧୁତାମୂଳକ ସଂପର୍କ ରକ୍ଷା କରିବାକୁ ଚାହାଁନ୍ତି, ତା'ହେଲେ ଆଫଗାନ୍ ସରକାର ସେଥିରେ ସମ୍ମତ ଅଛନ୍ତି । ମାତ୍ର ଅଧିକ ଦିନ ଅପେକ୍ଷା କରିବା ପାଇଁ ଲିଟନ୍‌ଙ୍କର ଧୈର୍ଯ୍ୟ ନଥିଲା । ସେପ୍ଟେମ୍ବର ୨୧ ତାରିଖରେ ନେଭିଲ୍ ଚେମ୍ବର୍‌ଲେନ୍‌ଙ୍କ ନେତୃତ୍ୱରେ ଗୋଟିଏ ଆଗୁଆ ବାହିନୀ ପେଶାୱାରଠାରୁ ଖାଇବର୍‌ପାସ୍ ଦେଇ କାବୁଲ୍ ଅଭିମୁଖେ ଯାତ୍ରା ଆରମ୍ଭ କଲେ । କିନ୍ତୁ ଖାଇବରପାସ୍‌ର ମଝିରେ ଥିବା ମସ୍‌ଜିଦ୍‌ଠାରେ ଜଗୁଆଳ ଆଫଗାନ୍ ସୈନ୍ୟବାହିନୀ ସେମାନଙ୍କୁ ଭଦ୍ରଭାବରେ କହିଲେ ଯେ, ଅମୀରଙ୍କର ବିନାନୁମତିରେ ସେମାନେ ଖାଇବରପାସ୍ ଅତିକ୍ରମ କରିବାକୁ ଦେବେନାହିଁ ଏବଂ ଅମୀରଙ୍କର ସମ୍ମତି ନଥିଲେ ପ୍ରତିରୋଧ ଅବଶ୍ୟମ୍ଭାବୀ । ଆଗୁଆ ବାହିନୀ ସେହିଠାରୁ ଫେରିଆସିଲେ ଏବଂ ଏହି ଦୁଃସମ୍ବାଦ ଲିଟନ୍‌ଙ୍କୁ ଜଣାଇଲେ ।

ଏ ପରିସ୍ଥିତିରେ ଲିଟନ୍ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ବ୍ରିଟିଶ୍ ସରକାରଙ୍କ ସମ୍ମତି ଲୋଡ଼ିଲେ ଏବଂ ସମ୍ମତିପ୍ରାପ୍ତ ହେଲେ । ତିନୋଟି ଦଳ ବ୍ରିଟିଶ ସୈନ୍ୟ, ଗୋଟିଏ ପେଶାୱାର୍‌ରୁ ଖାଇବରପାସ୍ ଦେଇ କାବୁଲ୍ ଏବଂ ଅନ୍ୟ ଦଳଟି କୁରମ୍ ଉପତ୍ୟକା ଦେଇ ଓ ତୃତୀୟ ଦଳ କୁଏଟା ଦେଇ କାନ୍ଦାହାର୍ ପଥରେ କାବୁଲ୍ ଯାତ୍ରା କଲେ ।

ଆଫଗାନ୍‌କୁ ସୈନ୍ୟଚାଳନାରେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଡିସ୍‌ରାୟଲୀ ଏବଂ ଭାରତ ବିଭାଗମନ୍ତ୍ରୀ ସାଲିସବରୀ ଆଦୌ ସନ୍ତୁଷ୍ଟ ନଥିଲେ । ପ୍ରଥମ ଆଫଗାନ୍ ଯୁଦ୍ଧରେ ବ୍ରିଟିଶ୍ ବିପର୍ଯ୍ୟୟ ସମସ୍ତଙ୍କ ଆଖିଆଗରେ ନାଚୁଥିଲା । ସେତେବେଳକୁ ନଭେମ୍ବର ମାସ । ଶୀତର ପ୍ରକୋପରେ ଆଫଗାନ୍‌ର ଅଭ୍ୟନ୍ତରକୁ ଯିବାପାଇଁ ସୈନ୍ୟମାନେ ମଧ୍ୟ ସାହସ କରୁନଥିଲେ । ଏଣେ ଭାରବାହୀ ପଶୁର ଘୋର ଅଭାବ । ଏଣୁ ସୈନ୍ୟମାନେ ଅଟକି ରହିଲେ । ବ୍ରିଟିଶ୍ ସରକାରଙ୍କ ନିର୍ଦ୍ଦେଶରେ ଲର୍ଡ଼ ଲିଟନ୍ ଅମୀର ଶେର୍ ଅଲ୍ଲୀଙ୍କଠାରୁ କ୍ଷମାପ୍ରାର୍ଥନା ଦାବିକରି ଏକ ପତ୍ର ଲେଖିଲେ । ଶେର୍ ଅଲ୍ଲୀ ଋଷିଆନ୍‌ମାନଙ୍କଠାରୁ ସାହାଯ୍ୟ ପାଇବାର କୌଣସି ଆଶ୍ୱାସନା ପାଇନଥିଲେ ଏବଂ ବ୍ରିଟିଶ୍ ସରକାରଙ୍କର ପତ୍ରର ଉତ୍ତରରେ ମଧ୍ୟ ସେ କ୍ଷମାପ୍ରାର୍ଥନାର ଶବ୍ଦ ଉଚ୍ଚାରଣ କରି ନଥିଲେ । ଏଣୁ ନଭେମ୍ବର ୨୧ ତାରିଖରେ ତିନୋଟି ବ୍ରିଟିଶ୍ ବାହିନୀ ପୁନର୍ବାର ଆଫଗାନିସ୍ଥାନରେ ପ୍ରବେଶ କଲେ । ଶେର୍ ଅଲ୍ଲୀ ସବୁଆଡୁ ନିରାଶ ହୋଇ କାରାରୁଦ୍ଧ ଜ୍ୟେଷ୍ଠପୁତ୍ର ଯାକୁବ୍ ଖାଁଙ୍କୁ ମୁକ୍ତ କରିଦେଇ ଆଫଗାନ ସନ୍ନିକଟ ଋଷ ଅଞ୍ଚଳକୁ ପଳାୟନ କଲେ ଓ ଦୁଇମାସ ପରେ ସେହିଠାରେ ତାଙ୍କର ମୃତ୍ୟୁ ହେଲା । ଶେର୍ ଅଲ୍ଲୀଙ୍କ ପରେ କିଏ ଆଫଗାନର ରାଜଗାଦିରେ ଅଧିନାୟକ ହେବ, ଏହା ଗୋଟିଏ ସମସ୍ୟା ଆକାରରେ ଠିଆହେଲା । ଯେଉଁ ଦ୍ୱିତୀୟ ପୁତ୍ର ଅବଦୁଲ୍ଲା ଜାନଙ୍କୁ ସେ ଏତେ ଶ୍ରଦ୍ଧା କରୁଥିଲେ, ତାଙ୍କର ମୃତ୍ୟୁ ହୋଇଯାଇଥିଲା । ଏଣୁ ବ୍ରିଟିଶ୍ କର୍ତ୍ତୃପକ୍ଷ ଜ୍ୟେଷ୍ଠପୁତ୍ର ଯାକୁବ୍ ଖାଁଙ୍କୁ ରାଜମୁକୁଟ ଅର୍ପଣ କଲେ ଏବଂ ସେ ତାହା ଆନନ୍ଦର ସହ ଗ୍ରହଣ କଲେ । ବ୍ରିଟିଶ୍ ପକ୍ଷରୁ ମେଜର୍ କ୍ୟାଭାଗ୍‌ନାରୀଙ୍କ ଜରିଆରେ ଦୀର୍ଘ ଆଲୋଚ଼ନା ପରେ ମଇ ମାସ ୧୮୭୯ ମସିହାରେ ଗନ୍ଦାମାକ୍‌ଠାରେ ସନ୍ଧିଚୁକ୍ତି ସ୍ୱାକ୍ଷରିତ ହେଲା ଏବଂ ଯାକୁବ୍ ଖାଁ ବ୍ରିଟିଶମାନଙ୍କର ସମସ୍ତ ସର୍ତ୍ତ ଗ୍ରହଣ କଲେ ଓ ଇଂରେଜମାନଙ୍କର ସହମତି ବିନା କୌଣସି ବିଦେଶୀ ଶକ୍ତି ସହିତ ଚୁକ୍ତିବଦ୍ଧ ହେବେ ନାହିଁ ବୋଲି ସେ ଅଙ୍ଗୀକାର କଲେ । ବିଦେଶୀ ଆକ୍ରମଣକାରୀ ବିରୁଦ୍ଧରେ ଇଂରେଜମାନେ ତାଙ୍କୁ ପୂର୍ଣ୍ଣ ସାମରିକ ସାହାଯ୍ୟ ଦେବେ ଓ ବାର୍ଷିକ ଛଅଲକ୍ଷ ଟଙ୍କା ଆର୍ଥିକ ସହାୟତା ପ୍ରଦାନ କରିବାକୁ ସମ୍ମତ ହେଲେ । ଗନ୍ଦାମାକ୍ ଚୁକ୍ତି ଅନୁଯାୟୀ ବ୍ରିଟିଶ୍ ସେନାବାହିନୀ ଆଫଗାନିସ୍ଥାନରୁ ପ୍ରତ୍ୟାହୃତ ହେବେ ।

ଆଫଗାନ ସମସ୍ୟାର ପୂର୍ବୋକ୍ତ ସମାଧାନ ହେତୁ ଲଣ୍ଡନରେ ଆନନ୍ଦର ଲହରୀ ଖେଳିଗଲା । ଲର୍ଡ଼ ସାଲିସବେରୀ ଯେ କି ଲିଟନ୍‌ଙ୍କ କାର୍ଯ୍ୟ ନିର୍ବାହରେ ଅତ୍ୟନ୍ତ ଅସନ୍ତୁଷ୍ଟ ଥିଲେ, ସେ ଆନନ୍ଦରେ ଲିଟନ୍‌ଙ୍କୁ ସମ୍ବର୍ଦ୍ଧନା କରି ପତ୍ର ଲେଖିଲେ ଓ ମେଜର

କ୍ୟାଭାଗ୍‌ନାରୀଙ୍କୁ ନାଇଟ୍ ପଦରେ ଭୂଷିତ କରି ତାଙ୍କୁ କାବୁଲ୍‌ରେ ଇଂରେଜ ପ୍ରତିନିଧି ରୂପେ ନିଯୁକ୍ତ କଲେ । କିନ୍ତୁ କାବୁଲ୍‌ର ନୂତନ ବ୍ରିଟିଶ୍ ପ୍ରତିନିଧି ଥିଲେ ଅତ୍ୟନ୍ତ କ୍ଷମତାପ୍ରିୟ ଓ ଅହଂକାରୀ । ପରିସ୍ଥିତିର ସୀମା ଅତିକ୍ରମ କରି ସେ ସବୁ ବିଷୟରେ ୟାକୁବ୍‌ଙ୍କୁ ନିର୍ଦ୍ଦେଶ ଦେବାକୁ ଆରମ୍ଭ କଲେ । ସେପ୍ଟେମ୍ବର ୩ ତାରିଖରେ ହେରାଟ୍‌ରୁ ପଳାୟନ କରିଥିବା ଦଳେ ଆଫଗାନ୍ ସୈନିକ ନିଜର ପ୍ରାପ୍ୟ ପାଇବାରେ ଅସଫଳ ହୋଇ ବ୍ରିଟିଶ୍ ପ୍ରତିନିଧି ଓ ତାଙ୍କର ସହଯୋଗୀମାନଙ୍କୁ ହତ୍ୟା କଲେ । ଇତିହାସର ପୁନରାବୃତ୍ତି ହେଲା । କ୍ୟାଭାଗ୍‌ନାରୀଙ୍କ ହତ୍ୟା ପରେ ଜେନେରାଲ୍ ସାର୍ ଫ୍ରେଡେରିକ୍ ରବର୍ଟସଙ୍କୁ ଛଅହଜାର ସୈନ୍ୟଙ୍କ ସହିତ କୁରମ୍ ଉପତ୍ୟକା ଅତିକ୍ରମ କରି କାବୁଲ୍ ଯିବାପାଇଁ ନିର୍ଦ୍ଦେଶ ଦିଆଗଲା । ସେ କାବୁଲ୍‌ରେ ପହଞ୍ଚିବାର ତିନିଦିନ ପୂର୍ବରୁ ଅମୀର ୟାକୁବ୍ ଖାଁ ରବର୍ଟସଙ୍କୁ ସାକ୍ଷାତ କରି ପୂର୍ଣ୍ଣ ସମର୍ଥନର ପ୍ରତିଶ୍ରୁତି ଦେଲେ । କିନ୍ତୁ ସେ ଅନୁଭବ କଲେ ଯେ, ଇଂରେଜମାନେ ତାଙ୍କୁ ବିଶ୍ୱାସ କରୁନାହାନ୍ତି । ସେ ଅଧିକ ଦୂର ନଯାଇ ତତ୍‌କ୍ଷଣାତ୍ ଇସ୍ତଫା ପତ୍ର ଲେଖି ଅମୀର ଗାଦି ତ୍ୟାଗ କଲେ । ଲଣ୍ଡନରେ ଆଶଙ୍କା ହେଲା ଯେ, ଚାଳିଶି ବର୍ଷ ତଳର ବିପର୍ଯ୍ୟୟ ବ୍ରିଟିଶ ସେନାବାହିନୀ ସମ୍ମୁଖୀନ ହେବାକୁ ଯାଉଛି । କିନ୍ତୁ କାର୍ଯ୍ୟତଃ ସେପରି କିଛି ହେଲା ନାହିଁ । ବରଂ ରବର୍ଟସଙ୍କର ଆଧୁନିକ ରଣକୌଶଳ ପ୍ରୟୋଗ ଫଳରେ ଆଫଗାନ୍ ସୈନ୍ୟମାନେ ଛିନ୍‌ଛତ୍ର ହୋଇ ପଳାୟନ କଲେ ।

ଅମୀର ୟାକୁବ୍ ଖାଁଙ୍କର ଉତ୍ତରାଧିକାରୀ କିଏ ହେବ ଏହି ମୂଳପ୍ରଶ୍ନ ଅମୀମାଂସିତ ରହିଲା । ବହୁ ବିଚାରବିମର୍ଶ ଓ ବାଦବିସମ୍ବାଦ ପରେ ପୂର୍ବତନ ଅମୀର ଶେର୍ ଅଲ୍ଲୀଙ୍କର ପୁତୁରା ଅବଦୁର୍ ରହମାନ୍‌ଙ୍କ ସପକ୍ଷରେ ନିଷ୍ପତ୍ତି ନିଆହେଲା ଏବଂ ସେ କାବୁଲ୍ ଫେରିଆସି ୟାକୁବ୍ ଖାଁଙ୍କ ସ୍ଥାନରେ ଅମୀର ପଦରେ ନିଯୁକ୍ତ ହେଲେ ।



# ଜଣେ ଉଦାରପନ୍ଥୀ ଭାଇସରାୟ

ଲର୍ଡ଼ ଲିଟନ୍ ଭାରତର ଇଂରେଜୀ ଶିକ୍ଷିତ ବାବୁମାନଙ୍କୁ ପସନ୍ଦ କରୁ ନଥିଲେ ବରଂ ଯେଉଁ ରାଜାରାଜୁଡ଼ା ବା ତାଲୁକଦାରମାନେ ସିପାହୀ ବିଦ୍ରୋହପରେ ଇଂରେଜମାନଙ୍କୁ ସମର୍ଥନ ଦେଲେ, ସେହିମାନେ ଥିଲେ ଲିଟନ୍‌ଙ୍କର ବନ୍ଧୁ ଓ ଶ୍ରଦ୍ଧାଭାଜନ ବ୍ୟକ୍ତି । କିନ୍ତୁ ନୂତନ ଭାଇସରାୟ ଲର୍ଡ଼ ରିପନ୍‌ଙ୍କର ଦୃଷ୍ଟିଭଙ୍ଗୀ ଥିଲା ସଂପୂର୍ଣ୍ଣ ଭିନ୍ନ ଏବଂ ସେ ଆଶା କରୁଥିଲେ ଦିନେ ନା ଦିନେ ଏହି ଶିକ୍ଷିତ ଶ୍ରେଣୀ ରାଜ୍ୟ ଶାସନର ସମସ୍ତ ଦାୟିତ୍ୱ ଗ୍ରହଣ କରିବେ । ଭାରତୀୟ ସମସ୍ୟାଗୁଡ଼ିକ ସହିତ ରିପନ୍ ବହୁ ପୂର୍ବରୁ ଅବହିତ ଥିଲେ । କମ୍ପାନୀ ଅମଳରେ ତାଙ୍କର ପିତା ଲର୍ଡ଼ ଗଡେରିଚ୍ ବୋର୍ଡ଼ ଅଫ୍ କଣ୍ଟ୍ରୋଲର ସଭାପତି ଥିଲେ । ଏହି ବୋର୍ଡ଼ ଅଫ୍ କଣ୍ଟ୍ରୋଲ୍ ବ୍ରିଟିଶ ସରକାରଙ୍କ ତରଫରୁ କମ୍ପାନୀର ପ୍ରଶାସନିକ କାର୍ଯ୍ୟକଳାପର ସମୀକ୍ଷା କରୁଥିଲେ ଓ ବସ୍ତୁତଃ ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ଆବଶ୍ୟକ କ୍ଷେତ୍ରରେ ନିର୍ଦ୍ଦେଶ ଦେଉଥିଲେ । ଲର୍ଡ଼ ରିପନ୍ ୧୮୬୧ ମସିହାରେ ଭାରତ ବିଭାଗର ଅଣ୍ଡର-ସେକ୍ରେଟେରୀ ଓ ୧୮୬୬ ମସିହାରେ କିଛିଦିନ ପାଇଁ ସେକ୍ରେଟେରୀ ମଧ୍ୟ ଥିଲେ । ତାଙ୍କର ଚିନ୍ତାଧାରା ଥିଲା ଅଗ୍ରଗାମୀ ଓ ଉଦାରପନ୍ଥୀ ଏବଂ ୧୮୭୩ ମସିହାରେ ରୋମାନ୍ କ୍ୟାଥେଲିକ୍ ଧର୍ମଗ୍ରହଣ କରି ସେ ୧୮୮୦ ମସିହାରେ ଭାଇସରାୟ ପଦବୀରେ ଅବସ୍ଥାପିତ ହେଲେ ।

୧୮୫୮ ମସିହାରେ ମହାରଣୀଙ୍କର ସ୍ୱାୟତ୍ତଶାସନ ସଂକ୍ରାନ୍ତୀୟ ଘୋଷଣାପତ୍ର ସତ୍ତ୍ୱେ କୌଣସି ଭାଇସ୍‌ରାୟ ସେ ଦିଗରେ କିଛି ଉଦ୍ୟମ କରୁ ନଥିଲେ । ରିପନ୍ କ୍ଷମତାକୁ ଆସି ପ୍ରଥମରୁ ଭାରତୀୟମାନଙ୍କୁ ସନ୍ତୁଷ୍ଟ କଲାଭଳି କାର୍ଯ୍ୟକ୍ରମ ହାତକୁ ନେଲେ । ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଲର୍ଡ଼ ହାର୍ଟିଂଟନ୍‌ଙ୍କ ନିର୍ଦ୍ଦେଶ ଅନୁସାରେ ସେ ପ୍ରଥମେ ପୂର୍ବରୁ ପ୍ରଚଳିତ ଭର୍ଣ୍ଣାକୁଲାର୍ ପ୍ରେସ୍ ଆକ୍ଟକୁ ଉଚ୍ଛେଦ କରିବାପାଇଁ ଉଦ୍ୟମ

କଲେ । ଭାରତର ଅଧିବାସୀ ଇଂରେଜମାନେ ଏ ପ୍ରସ୍ତାବର ବିରୋଧ କରୁଥିଲେ, କିନ୍ତୁ କ୍ରମେ କାଉନ୍‌ସିଲର୍ ସଭ୍ୟମାନଙ୍କୁ ପ୍ରଭାବିତ କରି ରିପନ୍ ଉଚ୍ଛେଦ ଆଇନ୍‌କୁ କାଉନ୍‌ସିଲ୍‌ରେ ଗୃହୀତ କରାଇନେଲେ । ଏଥିପାଇଁ ଭାରତସାରା ଦେଶୀୟ ଭାଷାରେ ପ୍ରକାଶିତ ସମ୍ବାଦପତ୍ରମାନ ତାଙ୍କର ଭୂରି ଭୂରି ପ୍ରଶଂସା କରିଥିଲେ । ଭାରତୀୟ ସିଭିଲ୍ ସର୍ଭିସ୍ ପରୀକ୍ଷାରେ ସ୍ଥାନୀୟ ଲୋକଙ୍କୁ ଅଧିକ ସୁଯୋଗ ଦେବା ପାଇଁ ପ୍ରାର୍ଥୀମାନଙ୍କର ବୟସ ସୀମା ୧୯ରୁ ୨୧ ବର୍ଷକୁ ବଢ଼ାଇଦେବା ପାଇଁ ସେ ପ୍ରସ୍ତାବ କରିଥିଲେ । କିନ୍ତୁ ଲଣ୍ଡନ ସରକାର ଅନ୍ୟାୟ ଭାବରେ ପ୍ରସ୍ତାବକୁ ନାକଚ଼ କରିଦେଲେ । ମାତ୍ର ଭାରତର ଶିକ୍ଷିତ ସଂପ୍ରଦାୟ ଜାଣିଲେ ଯେ, ରିପନ୍ ସେମାନଙ୍କର ସୁବିଧାପାଇଁ ଉଦ୍ୟମ କରୁଛନ୍ତି, ଅଥଚ଼ ବ୍ରିଟିଶ ସରକାର ବିନା କାରଣରେ ତାହା କରାଇ ଦେଉନାହାଁନ୍ତି ।

ଜମିଜମା ଆଇନ୍‌ରେ ଚାଷୀମାନଙ୍କର ସୁବିଧାପାଇଁ କେତେକ ଉନ୍ନତ ବ୍ୟବସ୍ଥା ରଖିବା ପାଇଁ ରିପନ୍ ଅକ୍ଳାନ୍ତ ଉଦ୍ୟମ କରିଥିଲେ । କିଛି ବର୍ଷ ପୂର୍ବେ ଚାଷୀମାନଙ୍କ ତରଫରୁ ଏଥିପାଇଁ ବଙ୍ଗଳାରେ ଏକ ଆନ୍ଦୋଳନ ହୋଇଥିଲା । ଅଯୋଧ୍ୟାରେ ତାଲୁକଦାରମାନେ ମନଇଚ୍ଛା ରାଜସ୍ୱ ବୃଦ୍ଧି କରୁଥିବାରୁ ତା' ବିରୁଦ୍ଧରେ ମଧ୍ୟ ଆନ୍ଦୋଳନ ଜାଗି ଉଠିଥିଲା । କିନ୍ତୁ ଲଣ୍ଡନ ଅଫିସର ବିରୋଧ ହେତୁ ରିପନ୍ ଉତ୍ତର-ପଶ୍ଚିମ ପ୍ରଦେଶର ସମସ୍ୟାରେ ବିଶେଷ କିଛି କରିବାକୁ ସମର୍ଥ ହୋଇନଥିଲେ ଏବଂ ଆଶା କରୁଥିଲେ ଯେ ତାଙ୍କର ପରବର୍ତ୍ତୀ ଉତ୍ତରାଧିକାରୀ ଏ ବିଷୟରେ ନିଶ୍ଚିତ ଭାବରେ ଧ୍ୟାନ ଦେବେ ।

ବଙ୍ଗଳାରେ ଜମିଦାରମାନେ ଥିଲେ ଆହୁରି କ୍ଷମତାଶାଳୀ । ସେମାନଙ୍କ ସମ୍ପର୍କରେ ଆଇନ୍ ପ୍ରଣୟନ କରିବା ପୂର୍ବରୁ ୧୮୭୯ ମସିହାରେ ଗୋଟିଏ ରାଜସ୍ୱ କମିଶନ୍ ବସାଯାଇଥିଲା । ରିପନ୍ ଦାୟିତ୍ୱ ଗ୍ରହଣ କରିବାର କିଛିଦିନ ପରେ କମିଶନ୍‌ର ରିପୋର୍ଟ ତାଙ୍କର ହସ୍ତଗତ ହେଲା । ଯଦିଓ କମିଶନ୍‌ଙ୍କର ସୁପାରିଶ ଗୁଡ଼ିକ ସନ୍ତୋଷଜନକ ନଥିଲା, ତଥାପି ଚାଷୀମାନଙ୍କୁ ସ୍ଥିତିବାନ୍ ସତ୍ତ୍ୱ ଦେବା ପାଇଁ ଏଥିରେ କେତେକ ବ୍ୟବସ୍ଥା ରଖାଯାଇଥିଲା । ଲଣ୍ଡନ୍ ଅଫିସ୍ ପୂର୍ବବତ୍ ଏହାର ବିରୋଧ କରିଥିଲେ ଏବଂ ପ୍ରସ୍ତାବିତ ଆଇନ୍‌ରେ କେତେକ ପରିବର୍ତ୍ତନର ସୂଚ଼ନା ଦେଇଥିଲେ । ରିପନ୍ ଅଧିକ ବିରୋଧକୁ ପ୍ରଶ୍ରୟ ନଦେଇ ଲଣ୍ଡନ ଅଫିସର ସୂଚ଼ନା ଅନୁଯାୟୀ ବିଲ୍ ଆଗତ କଲେ ଓ ତାହା ଗୃହୀତ ହୋଇଥିଲା । ଏହି ଆଇନ୍‌ରେ ବ୍ୟବସ୍ଥା ରହିଲା ଯେ,

ଯେଉଁ ଚାଷୀମାନେ ବାରବର୍ଷ କିମ୍ବା ତଦୂର୍ଦ୍ଧ୍ୱ ସମୟ ଧରି ଜମି ଦଖଲରେ ଅଛନ୍ତି, ସେମାନଙ୍କୁ ସ୍ଥିତିବାନ୍ ସତ୍ତ୍ୱ ଦିଆଯିବ ଓ ଜମିରୁ ବେଦଖଲ କରାଯାଇ ପାରିବ ନାହିଁ।

ସିପାହୀ ବିଦ୍ରୋହ ପୂର୍ବରୁ କଲିକତା, ବମ୍ବେ ଓ ମାଡ୍ରାସ ଆଦି ମେଟ୍ରୋ ସହରମାନଙ୍କରେ ମ୍ୟୁନିସିପାଲିଟି ସ୍ଥାପିତ ହୋଇଥିଲା । କିନ୍ତୁ ତା'ର ସଭ୍ୟମାନେ ନିର୍ବାଚିତ ହେଉ ନଥିଲେ । ବିଦ୍ରୋହପରେ ଭାଇସ୍‌ରାୟ ଜନ୍ ଲରେନ୍‌ସ ଓ ଲର୍ଡ୍ ମେୟୋଙ୍କ ଉଦ୍ୟମରେ ଏହି ମ୍ୟୁନିସିପାଲିଟି ଓ ଲୋକାଲ୍ ବୋର୍ଡ୍ ଇତ୍ୟାଦିର ସଂଖ୍ୟା ବୃଦ୍ଧି ପାଇଥିଲା । ୧୮୭୩ ମସିହାରେ ଲର୍ଡ୍ ମେୟୋଙ୍କ ସୁପାରିଶ୍ କ୍ରମେ ଅଥଚ୍ ତାଙ୍କ ମୃତ୍ୟୁପରେ ଏହି ମ୍ୟୁନିସିପାଲିଟି ଓ ତାଲୁକ ବୋର୍ଡ୍‌ର କେତେକ ନିର୍ଦ୍ଦିଷ୍ଟ ସଭ୍ୟ ପଦ ପାଇଁ ନିର୍ବାଚନର ବ୍ୟବସ୍ଥା ହେଲା । ଏହି ଆଇନ୍ ଅନୁଯାୟୀ ମ୍ୟୁନିସିପାଲିଟିର କରଦାତାମାନଙ୍କ ଦ୍ୱାରା ଏବଂ ତାଲୁକ ବୋର୍ଡ୍ ଓ ରାଜସ୍ୱ ବୋର୍ଡ୍ ପାଇଁ କେତେକ ଶ୍ରେଣୀର ରାଜସ୍ୱ ଦାତାମାନେ ସଭ୍ୟ ନିର୍ବାଚନ କରିବା ପାଇଁ ବ୍ୟବସ୍ଥା ଜାରୀ ହେଲା । ଇଂଲଣ୍ଡ ବା ୟୁରୋପରେ ଏହି ସମୟରେ ଯେଉଁ ଗଣତାନ୍ତ୍ରିକ ପ୍ରଥାରେ ପାର୍ଲାମେଣ୍ଟ ବା ବିଧାନସଭାର ସଭ୍ୟମାନେ ନିର୍ବାଚିତ ହେଉଥିଲେ, ଲର୍ଡ୍ ରିପନ୍ ଯେ ସେହି ପ୍ରଥା ଭାରତବର୍ଷରେ ପ୍ରବର୍ତ୍ତନ କରିବାକୁ ଚାହୁଁଥିଲେ, ତାହା ନୁହେଁ । କିନ୍ତୁ ସେ ଜାଣିଥିଲେ ଯେ, ସ୍ୱାୟତ୍ତଶାସନ ପ୍ରଣାଳୀ ପ୍ରବର୍ତ୍ତନ କରିବାକୁ ହେଲେ ସାଧାରଣ ଲୋକଙ୍କୁ, ଅନ୍ତତଃ ଶିକ୍ଷିତ ଲୋକଙ୍କୁ ଗଣତାନ୍ତ୍ରିକ ପ୍ରଥା ସମ୍ପର୍କରେ ଅଧିକ ତାଲିମ ଦିଆଯିବା ଉଚିତ । ଭାରତର ବହୁ ଶିକ୍ଷିତ ଓ ବୁଦ୍ଧିଜୀବୀ ଏହାଦ୍ୱାରା ସାଧାରଣ କାର୍ଯ୍ୟରେ ଭାଗନେବା ପାଇଁ ପ୍ରସ୍ତୁତି ଆରମ୍ଭ କଲେ । ଯଦିଓ ଏହାଦ୍ୱାରା କୌଣସି ରାଜନୈତିକ ଉଦ୍ଦେଶ୍ୟ ବିଶେଷ ଭାବରେ ପ୍ରତିପାଳିତ ହୋଇ ନଥିଲା, ତଥାପି ଲୋକେ ଭୋଟ୍ ବ୍ୟବସ୍ଥା ସହିତ କ୍ରମେ ଅଭ୍ୟସ୍ତ ହେବାକୁ ଲାଗିଲେ । ରିପନ୍ ଭାରତ ଛାଡ଼ିବାର ପରବର୍ଷ ୧୮୮୫ ମସିହାରେ ଯେଉଁ କଂଗ୍ରେସ ଅନୁଷ୍ଠାନ ଜନ୍ମ ନେଲା, ରିପନ୍‌ଙ୍କର ଏହି ଅଗ୍ରଗାମୀ ଚିନ୍ତାଧାରା ତାହାର ଭିତ୍ତି ସ୍ଥାପନ କରିଥିଲା କହିଲେ ଚଳେ ।

ଆଇନ୍ କ୍ଷେତ୍ରରେ ରିପନ୍ ଯେଉଁ ସଂସ୍କାର ଆଣିବା ପାଇଁ ଉଦ୍ୟମ କଲେ, ଭାରତରେ ବସବାସ କରୁଥିବା ଇଂରେଜ ବ୍ୟବସାୟୀ, ଚା ବଗିଚାର ମାଲିକ ଓ ନୀଳଚାଷର ପ୍ରବର୍ତ୍ତକମାନେ ତାର ପ୍ରବଳ ପ୍ରତିରୋଧ କଲେ । ଏହି ସମୟରେ ଅତି କମ୍ ସଂଖ୍ୟାରେ ହେଲେ ମଧ, ଯେଉଁ ଭାରତୀୟମାନେ ଜିଲ୍ଲା ଜଜ୍ ବା ତା'ର ଉପରିସ୍ଥ

ପଦପଦବୀରେ ନିଯୁକ୍ତ ହେଉଥିଲେ, ସେମାନଙ୍କୁ ୟୁରୋପୀୟମାନଙ୍କ ଉପରେ ବିଚ୍ଚର ଅଧିକାର ଦିଆଯାଇ ନଥିଲା । କିଛିଦିନ ପାଇଁ ଏପରି ମଧ ବ୍ୟବସ୍ଥା ହେଲା ଯେ, ଯେକୌଣସି ଫୌଜଦାରୀ କେଶ୍‌ରେ ୟୁରୋପୀୟମାନେ ଅଭିଯୁକ୍ତ ହେଲେ ସେମାନଙ୍କର ବିଚ୍ଚର ପାଇଁ ୟୁରୋପୀୟ ଜୁରୀ ମନୋନୀତ ହେଉଥିଲେ । ଏହି ସମୟରେ ସାର୍ କର୍ଟନୀ ଇଲବର୍ଟ ଭାରତକୁ ଭାଇସରାୟଙ୍କ କାଉନ୍‌ସିଲ୍‌କୁ ଆଇନ୍ ସଭ୍ୟ ଭାବରେ ମନୋନୀତ ହେଲେ ଏବଂ ସେ ବିଚ୍ଚର ପଦ୍ଧତିର ପରିବର୍ତ୍ତନ ଓ ଭାରତୀୟ ବିଚ୍ଚରପତିମାନଙ୍କୁ ଅଧିକ କ୍ଷମତା ପ୍ରଦାନ କରିବା ସଂପର୍କରେ ଏକ ଚିଠା ଆଇନ୍ ଆଗତ କଲେ । ଏହା ଇଲ୍‌ବର୍ଟ ଆଇନ୍ ନାମରେ ଖ୍ୟାତ । କିନ୍ତୁ ଭାରତର ୟୁରୋପିଆନ୍ ଅଧିବାସୀମାନେ ଏହା କରାଇ ନଦେବା ପାଇଁ ଘୋର ପ୍ରତିବାଦ ଆରମ୍ଭ କଲେ । ଏଥିପାଇଁ ଇଂରେଜ ବ୍ୟବସାୟୀମାନଙ୍କ ଦ୍ୱାରା ଭାରତରୁ ପ୍ରକାଶିତ ଇଂରେଜୀ ସମ୍ବାଦପତ୍ରଗୁଡ଼ିକୁ ବ୍ୟବହାର କରାଗଲା ଏବଂ ସେହିସବୁ କାଗଜରେ ରିପନ୍‌ଙ୍କ ନାମରେ ନାନାପ୍ରକାର କୁତ୍ସା ପ୍ରଚାରିତ ହେଲା । ଏହି ସଂଘର୍ଷମୟ ପରିସ୍ଥିତି କିଛିଦିନ ଗତହେବା ପରେ କଲିକତା ହାଇକୋର୍ଟର ଚିଫ୍ ଜଷ୍ଟିସ୍ ସାର୍ ରିଚାର୍ଡ଼ ଗାର୍ଥ ଛୁଟି ନେଇ ବିଲାତ ଯିବାପରେ ତାଙ୍କ ସ୍ଥାନରେ ଜଣେ ସର୍ବ ବରିଷ୍ଠ ବିଚ୍ଚରପତିଙ୍କୁ ଚିଫ୍ ଜଷ୍ଟିସ୍ ନିଯୁକ୍ତ କରାଗଲା ଏବଂ ସେ ଥିଲେ ଜଣେ ଭାରତୀୟ । ଏଣିକି ବିରୋଧୀ ୟୁରୋପିଆନ୍‌ମାନଙ୍କ ସହିତ ଇଂରେଜ ବାରିଷ୍ଟରମାନେ ମଧ ଏହି ଆନ୍ଦୋଳନରେ ଯୋଗ ଦେଲେ । ଯାହାହେଉ ଗ୍ଲାଡ୍‌ଷ୍ଟୋନ୍‌ଙ୍କର ଲିବରାଲ୍ ସରକାର ଏହି ପ୍ରକାରର ସଂଘର୍ଷ ଓ ଆନ୍ଦୋଳନକୁ ସମର୍ଥନ କରୁନଥିଲେ । କେତେଦିନ ପରେ ଏ ବିରୋଧର ଏକ ପ୍ରକାର ସମାଧାନ ହେଲା । ଜଣେ ୟୁରୋପୀୟ ଫୌଜଦାରୀ ଦଫାରେ ଅଭିଯୁକ୍ତ ହେଲେ, ତା'ର ବିଚ୍ଚର ଯଦି ଜଣେ ସେସନ୍‌ସ ଜଜ୍ ବା ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ ପାହ୍ୟାର ଅଫିସରଙ୍କ ଦ୍ୱାରା କରାଯାଏ, ତା'ହେଲେ ୟୁରୋପିଆନ୍‌ମାନଙ୍କର ଆପତ୍ତି ରହିବ ନାହିଁ । ଭାଇସ୍‌ରାୟଙ୍କ କାଉନ୍‌ସିଲ୍‌ରେ ଇଲବର୍ଟ ଆଇନ୍ ଗୃହୀତ ହେଲା । ଯଦିଓ ବ୍ରିଟିଶ ଓ ଭାରତୀୟ ବିଚାରକମାନଙ୍କ ମଧରେ ପୂର୍ବଦିନର ପାର୍ଥକ୍ୟକୁ ଦୂରେଇ ଦିଆଗଲା, ୟୁରୋପିଆନ୍‌ମାନେ କେବଳ ଗୋଟିଏ ସର୍ତ୍ତ ଉପରେ ଜିଦ୍ ଧରି ବସିଲେ, ତାହାହେଲା ଯେକୌଣସି ଅଭିଯୁକ୍ତ ବ୍ରିଟିଶ ଲୋକ ଦାବି କରିପାରେ ଯେ, ତା'ର ବିଚ୍ଚର ଏପରି ଗୋଟିଏ ଜୁରୀ ଦ୍ୱାରା ହେବା ଉଚିତ, ଯାହାର ଅନ୍ତତଃ ଅର୍ଦ୍ଧାଂଶ ୟୁରୋପିଆନ୍

ହୋଇଥିବେ । କିନ୍ତୁ ଏହି ଘଟଣାରୁ ଶିକ୍ଷିତ ଭାରତୀୟମାନେ ଗୋଟିଏ ଶିକ୍ଷା ଲାଭ କଲେ ଯେ, ସେମାନଙ୍କର ସମସ୍ୟାର ସମାଧାନ ଏଣିକି ଆବେଦନ ନିବେଦନ ଦ୍ୱାରା ହୋଇପାରିବ ନାହିଁ, ବରଂଚ଼ ୟୁରୋପିଆନ୍‌ମାନେ ଯେପରି ଆନ୍ଦୋଳନ କଲେ, ସେହି ପ୍ରକ୍ରିୟାରେ କାର୍ଯ୍ୟ କଲେ କିଛି ସଫଳତା ମିଳିପାରେ । ଏହି ଚିନ୍ତାଧାରାର ମୁଖ୍ୟ ପ୍ରବର୍ତ୍ତକ ଥିଲେ ସାର୍ ସୁରେନ୍ଦ୍ର ନାଥ ବାନାର୍ଜୀ ।

୧୮୮୫ ମସିହାର ବସନ୍ତ ଋତୁରେ ରିପନ୍‌ଙ୍କର କାର୍ଯ୍ୟକାଳ ପୂର୍ଣ୍ଣ ହୋଇଥାଆନ୍ତା, କିନ୍ତୁ ସେ ଆଶଙ୍କା କରୁଥିଲେ ଗ୍ଲାଡ୍‌ଷ୍ଟୋନ୍‌ଙ୍କ ଉଦାରପନ୍ଥୀ ସରକାର (ଲିବରାଲ୍) ହୁଏତ ପୁନଶ୍ଚ ନିର୍ବାଚ଼ିତ ହୋଇ ଆସିପାରିବେ ନାହିଁ ଏବଂ ତା'ର ସୁବିଧା ନେଇ ରକ୍ଷଣଶୀଳ ଗୋଷ୍ଠୀ ଲିଟନ୍‌ଙ୍କ ପରି ଜଣେ କନ୍‌ଜରଭେଟିଭ୍‌ଙ୍କୁ ଭାରତର ଭାଇସ୍‌ରାୟ ପଦରେ ନିଯୁକ୍ତ କରିବେ । ଏଣୁ ୧୮୮୪ ମସିହା ଶେଷ ଭାଗରେ ସେ ନିଜପଦରୁ ଇସ୍ତଫା ଦେଇ ଇଂଲଣ୍ଡ ପ୍ରତ୍ୟାବର୍ତ୍ତନ କଲେ, ଯେପରିକି ତାଙ୍କ ସ୍ଥାନରେ ପ୍ରଧାନମନ୍ତ୍ରୀ ଗ୍ଲାଡ୍‌ଷ୍ଟୋନ୍ ଜଣେ ଉଦାରପନ୍ଥୀଙ୍କୁ ଭାଇସ୍‌ରାୟ ପଦରେ ନିଯୁକ୍ତ କରିବାକୁ ସମର୍ଥ ହେବେ ।



# ଜନଜାଗରଣ ଓ ଜାତୀୟ କଂଗ୍ରେସର ଜନ୍ମ

ରିପନ୍‌ଙ୍କ ପରେ ଭାରତର ରାଜନୈତିକ ଇତିହାସରେ ଯେଉଁ ପରିବର୍ତ୍ତନ ଦେଖାଦେଲା, ତା'ର ବିଶେଷତ୍ୱ ବୁଝିବାକୁ ହେଲେ ଉନବିଂଶ ଶତାବ୍ଦୀର ମଧ୍ୟାନ୍ତରର ପରିବର୍ତ୍ତନ ପ୍ରତି ଦୃଷ୍ଟିପାତ କରିବା ଆବଶ୍ୟକ । ଇଂରେଜମାନେ ଶହେବର୍ଷ ଧରି ଭାରତର ଶାସନ ଧୀରେ ଧୀରେ ହାତକୁ ନେବା ପରେ ନିଜର ପ୍ରଶାସନିକ ଆବଶ୍ୟକତା ଦୃଷ୍ଟିରୁ ଏ ଦେଶରେ ବିଶେଷତଃ ବଙ୍ଗଦେଶରେ ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ଆରମ୍ଭ କରିଥିଲେ । ମୁଖ୍ୟ ଉଦ୍ଦେଶ୍ୟ ଥିଲା ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ଫଳରେ ସେମାନେ ଅଧିକରୁ ଅଧିକ ଲୋକଙ୍କୁ ଇଷ୍ଟ ଇଣ୍ଡିଆ କମ୍ପାନୀର କିରାଣି କାର୍ଯ୍ୟରେ ନିଯୁକ୍ତ କରିପାରିବେ । ସେତେବେଳେ ଏକା ବଙ୍ଗ ପ୍ରଦେଶ ତିନୋଟି ଅଞ୍ଚଳକୁ ନେଇ ଗଠିତ ହୋଇଥିଲା । ଓଡ଼ିଶା ଓ ବିହାର ବଙ୍ଗଦେଶର ଅନ୍ତର୍ଭୁକ୍ତ ଥିଲା । ୧୯୧୧ ମସିହାରେ କଲିକତାରୁ ଦିଲ୍ଲୀକୁ ରାଜଧାନୀ ସ୍ଥାନାନ୍ତର କରିବାକୁ ନିଷ୍ପତ୍ତି ନିଆହେବା ପର୍ଯ୍ୟନ୍ତ, କଲିକତା ଥିଲା ଭାରତର ରାଜଧାନୀ । ଫଳତଃ ବଙ୍ଗଦେଶରେ ଓ କେତେକାଂଶରେ ମାଡ୍ରାସ ଓ ବମ୍ବେ ପ୍ରଦେଶରେ ଇଂରେଜୀ ଶିକ୍ଷା ପ୍ରଚଳନର ବ୍ୟବସ୍ଥା ଆରମ୍ଭ ହେଲା । ଅବଶ୍ୟ ସାଧାରଣ ଜନତାର ଏହା ସହିତ କୌଣସି ସମ୍ପର୍କ ନଥିଲା । କିନ୍ତୁ ଶିକ୍ଷା ପ୍ରସାରର ପ୍ରଭାବ ମୁଖ୍ୟତଃ ଧନିକ ଶ୍ରେଣୀ ଏବଂ ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀକୁ ଆକୃଷ୍ଟ କରିଥିଲା । ଏଣୁ ବହୁ ଯୁବକ ଇଂରେଜୀ ଶିକ୍ଷା ସମାପ୍ତ କରି ହୁଏତ ସରକାରୀ ଚାକିରି କିମ୍ବା ଓକିଲ, ଡାକ୍ତର ଆଦି ବୃତ୍ତିମାନଙ୍କରେ ଯୋଗ ଦେଉଥିଲେ ।

ଏହି ନବଶିକ୍ଷିତ ଯୁବକମାନେ ହିନ୍ଦୁ ଧର୍ମର ବହୁ କୁସଂସ୍କାର ଓ ପାରମ୍ପରିକ ନୀତିନିୟମକୁ ମାନିବାକୁ କୁଣ୍ଠିତ ଥିଲେ । ଏକ ପକ୍ଷରେ ଇଂରେଜୀ ଶିକ୍ଷା ଆଧୁନିକ ଶିଳ୍ପ ପ୍ରଗତି ଓ ବୈଜ୍ଞାନିକ ଅଗ୍ରଗତିର ପଥପ୍ରଦର୍ଶକ ଥିଲା । ଅନ୍ୟ ପକ୍ଷରେ ଯେଉଁ ମିଶନାରୀମାନେ କମ୍ପାନୀ ଓ ସରକାରଙ୍କର ପରୋକ୍ଷ ସାହାଯ୍ୟରେ ଭାରତରେ

ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପାଇଁ ଉଦ୍ୟମ ଚଳାଇଥିଲେ, ସେମାନେ ମଧ୍ୟ ହିନ୍ଦୁଧର୍ମର ମୂର୍ତ୍ତିପୂଜା ଓ ଅନ୍ୟାନ୍ୟ ସାମାଜିକ କୁସଂସ୍କାର ବିରୁଦ୍ଧରେ ଆନ୍ଦୋଳନ କରୁଥିଲେ । ଯାହା ଫଳରେ ବହୁ ଉଚ୍ଚ ଶ୍ରେଣୀର ଶିକ୍ଷିତ ହିନ୍ଦୁମାନଙ୍କ ମଧ୍ୟରେ ଧର୍ମର କୁସଂସ୍କାରଗୁଡ଼ିକୁ ଲୋପ କରିବା ପାଇଁ ସଂସ୍କାରବାଦୀ ଧର୍ମୀୟ ଚେତନାର ଆନ୍ଦୋଳନ ଆରମ୍ଭ ହେଲା । କଲିକତାର ସୁବିଖ୍ୟାତ ରାଜା ରାମମୋହନ ରାୟ ଥିଲେ ଏହି କୁସଂସ୍କାର ବିରୋଧୀ ଆନ୍ଦୋଳନର ଅଗ୍ରଦୂତ । ରାଜା ରାମମୋହନ ଥିଲେ 'ବ୍ରାହ୍ମ ସମାଜ'ର ପ୍ରତିଷ୍ଠାତା । ବ୍ରାହ୍ମ ଧର୍ମାବଲମ୍ବୀମାନେ ହିନ୍ଦୁ ସମାଜରୁ ସତୀପ୍ରଥା ଓ ଅନ୍ୟ କୁସଂସ୍କାର ଆଦି ଲୋପ କରିବାପାଇଁ ପ୍ରୟାସ କରୁଥିଲେ । ରାଜା ରାମମୋହନଙ୍କର ମୃତ୍ୟୁ ପରେ ରାଜା ଦ୍ୱାରିକା ମୋହନ ଠାକୁରଙ୍କର ପୁତ୍ର ଓ ରବୀନ୍ଦ୍ରନାଥ ଠାକୁରଙ୍କର ପିତା ମହର୍ଷି ଦେବେନ୍ଦ୍ରନାଥ ଠାକୁର ବ୍ରାହ୍ମ ସମାଜର ପରିଚାଳକ ହେଲେ । କେଶବ ଚନ୍ଦ୍ର ସେନ୍ ଓ ଆହୁରି ଅନେକ ଶିକ୍ଷିତ ବଙ୍ଗବାସୀ ବ୍ରାହ୍ମ ସମାଜରେ ଅନ୍ତର୍ଭୁକ୍ତ ହୋଇଥିଲେ । କିନ୍ତୁ ବ୍ରାହ୍ମ ସମାଜର ପରିସର ବଙ୍ଗଦେଶ ବାହାରକୁ ବ୍ୟାପି ନଥିଲା । ମୁଖ୍ୟତଃ ବ୍ରାହ୍ମ ସମାଜ ଧର୍ମୀୟ ମହୋତ୍ସବ ଓ ମୂର୍ତ୍ତିପୂଜା ଆଦିର ବିରୋଧ କରୁଥିଲେ ଏବଂ ସମାଜସଂସ୍କାର ବିଶେଷତଃ ନାରୀ ଶିକ୍ଷାର ପ୍ରସାର ପ୍ରତି ଧ୍ୟାନ ଦେଉଥିଲେ ।

ବଙ୍ଗଳାରେ ବ୍ରାହ୍ମ ସମାଜର ଜନ୍ମ ଓ ପ୍ରସାର ପରେ ଉତ୍ତର ଭାରତରେ ଏକ ନୂତନ ସଂସ୍କାରମୂଳକ ଧର୍ମୀୟ ଆନ୍ଦୋଳନ ଜନ୍ମ ନେଲା । ଏହି ଆନ୍ଦୋଳନର ପ୍ରତିଷ୍ଠାତା ଥିଲେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ । ମୁଖ୍ୟତଃ ଦିଲ୍ଲୀ ଓ ପଞ୍ଜାବରେ ସ୍ୱାମୀ ଦୟାନନ୍ଦଙ୍କର ପ୍ରଭାବ ବହୁ ଭାବରେ ବିଚ୍ଛୁରିତ ହୋଇଥିଲା । ତାଙ୍କ ଅନୁଷ୍ଠାନର ନାମ ଥିଲା 'ଆର୍ଯ୍ୟ ସମାଜ' ଏବଂ ପ୍ରଚାରର ମୂଳମନ୍ତ୍ର ଥିଲା ବେଦ ମନ୍ତ୍ରର ପୁନରୁଦ୍ଧାର । ବଙ୍ଗଳାରେ ବ୍ରାହ୍ମ ସମାଜ କେବଳ ଶିକ୍ଷିତ ବଙ୍ଗାଳୀମାନଙ୍କ ମଧ୍ୟରେ ଆବଦ୍ଧ ଥିଲା, ମାତ୍ର ପଞ୍ଜାବରେ ଆର୍ଯ୍ୟ ସମାଜ ବହୁଭାବରେ ଜନସାଧାରଣଙ୍କର ସମର୍ଥନ ଲାଭ କରିଥିଲା । ଠିକ୍ ଏହି ସମୟରେ କଲିକତାରେ ଦକ୍ଷିଣ କାଳୀ ମନ୍ଦିରରେ ଜଣେ ପୂଜକ ରାମକୃଷ୍ଣ ପରମହଂସ ସରଳ ବୋଧଗମ୍ୟ ଭାଷାରେ ଏବଂ ଅଭିଜ୍ଞତା ପ୍ରସୂତ ଘଟଣାବଳୀର ଉଲ୍ଲେଖ କରି ହିନ୍ଦୁ ଶାସ୍ତ୍ରର ଯେଉଁ ପରିବ୍ୟାଖ୍ୟା କରୁଥିଲେ, ତାହା ବହୁ ଉଚ୍ଚଶିକ୍ଷିତ ବଙ୍ଗବାସୀଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସେବାହିଁ ଥିଲା ପରମହଂସଙ୍କର ଧର୍ମୀୟ ଚେତନାର ମୂଳମନ୍ତ୍ର ଏବଂ ତାଙ୍କର ଜଣେ ଶିଷ୍ୟ ନରେନ୍ ଦତ୍ତ, ଯେ କି ପରେ ବିବେକାନନ୍ଦ ଭାବରେ ପୃଥିବୀବ୍ୟାପୀ ପରିଚିତ ଥିଲେ ଓ କନ୍ୟାକୁମାରୀଠାରେ ସମୁଦ୍ର ଜଳରାଶି ଆବୃତ

କ୍ଷୁଦ୍ର ପାହାଡ଼ ଉପରେ ତପସ୍ୟା କରି ଜ୍ଞାନାଲୋକ ପ୍ରାପ୍ତ ହୋଇଥିଲେ । ସନ୍ନ୍ୟାସୀ ବିବେକାନନ୍ଦ ଆମେରିକାରେ ପରିଭ୍ରମଣ କରି ବିଶ୍ୱଧର୍ମ ସମ୍ମିଳନୀରେ ହିନ୍ଦୁ ଆଦର୍ଶରେ ଯେଉଁ ମୌଳିକ ତଥ୍ୟ ପ୍ରଚାର କରିଥିଲେ, ତାହା ବହୁ ଆମେରିକାନ୍‌ଙ୍କୁ ହିନ୍ଦୁଧର୍ମ ପ୍ରତି ଆକୃଷ୍ଟ କରିଥିଲା । ବିବେକାନନ୍ଦଙ୍କର ପ୍ରଚାରର ମୌଳିକ ତତ୍ତ୍ୱ ଥିଲା "ସେବାହିଁ ପରମଧର୍ମ" ।

ହିନ୍ଦୁ ଶିକ୍ଷିତ ସମାଜରେ ଯେତେବେଳେ ଏହି ପ୍ରକାରର ଅଗ୍ରଗତି ଘଟୁଥିଲା, ମୁସଲମାନମାନେ ଏହି ଅଗ୍ରଗାମୀ ଆନ୍ଦୋଳନରୁ ସଂପୂର୍ଣ୍ଣ ବିମୁଖ ରହୁଥିଲେ । ସିପାହୀ ବିଦ୍ରୋହ ପରେ ସୟଦ୍ ଅହମ୍ମଦ ଖାଁ ଯେ କି ବିଦ୍ରୋହ ସମୟରେ ଇଂରେଜମାନଙ୍କୁ ସମର୍ଥନ କରୁଥିଲେ, ସେ ମୁସଲମାନମାନଙ୍କୁ ନୂତନ ଦୀକ୍ଷାରେ ଦୀକ୍ଷିତ କରିବା ପାଇଁ ଉଦ୍ୟମ କଲେ । ତାଙ୍କ ମତରେ ଯେଉଁ ହିନ୍ଦୁମାନେ ଚାରିଶହ ପାଞ୍ଚଶହ ବର୍ଷ ଧରି ମୁସଲମାନ ବାଦଶାହମାନଙ୍କର ଅଧସ୍ତନ ହୋଇ ରହିଥିଲେ, ସେମାନେ ଇଂରେଜୀ ଶିକ୍ଷା ଲାଭ କରି ଇଂରେଜମାନଙ୍କର ନିକଟତମ ହୋଇଛନ୍ତି ଏବଂ ଚାକିରିବାକିରି ଠାରୁ ଆରମ୍ଭ କରି ବ୍ୟବସାୟ ବାଣିଜ୍ୟ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ମୁସଲମାନମାନଙ୍କଠାରୁ ଆଗରେ ଅଛନ୍ତି । ସୟଦ ଅହମ୍ମଦଙ୍କ ମତରେ ମୁସଲମାନମାନେ ଯଦି ଇଂରେଜୀ ଶିକ୍ଷା ପ୍ରତି ଆକୃଷ୍ଟ ହୁଅନ୍ତି ଏବଂ ଶାସକ ଶ୍ରେଣୀର ବିରୁଦ୍ଧାଚରଣ ନକରି ନିକଟତମ ହେବାକୁ ଚେଷ୍ଟା କରନ୍ତି, ତା'ହେଲେ ହୁଏତ ସେମାନେ ହୃତ୍‌ଗୌରବ ଫେରି ପାଇବେ । ଇଂରେଜମାନେ ସୟଦ୍ ଅହମ୍ମଦଙ୍କୁ ସମର୍ଥନ କରୁଥିଲେ ଏବଂ ତାଙ୍କୁ ସାର୍ ଉପାଧିରେ ଭୂଷିତ କରିଥିଲେ । ସେ ଆଲିଗଡ଼ରେ ମୁସଲମାନମାନଙ୍କ ପାଇଁ ଯେଉଁ ସ୍ୱତନ୍ତ୍ର ଶିକ୍ଷାଳୟ ସ୍ଥାପନ କରିଥିଲେ, ପରକାଳରେ ତାହା ଆଲିଗଡ଼ ମୁସଲିମ୍ ୟୁନିଭରସିଟିରେ ପରିଣତ ହୋଇଥିଲା । ତାଙ୍କର ପ୍ରରୋଚନାରେ ମୁସଲମାନମାନେ ହିନ୍ଦୁମାନଙ୍କୁ ଜାତୀୟ କ୍ଷେତ୍ରରେ କୌଣସି ପ୍ରକାର ସହଯୋଗ ବା ସମର୍ଥନ ଦେଉନଥିଲେ ।

ଯଦିଓ ସାମଗ୍ରିକ ଦୃଷ୍ଟିରୁ ସାରା ଭାରତର ଲୋକେ ଦରିଦ୍ର ଓ ଅନୁନ୍ନତ ଅବସ୍ଥାରେ ଥିଲେ, କିନ୍ତୁ ତୁଳନାତ୍ମକ ଦୃଷ୍ଟିରୁ ବିଚାର କଲେ ମସୁଲମାନମାନେ ଥିଲେ ଅଧିକ ଦରିଦ୍ର, ଅଶିକ୍ଷିତ ଓ ଅନୁନ୍ନତ । ହିନ୍ଦୁମାନେ ଇଂରେଜୀ ଶିକ୍ଷା ଗ୍ରହଣ କରି ନିମ୍ନ ଶ୍ରେଣୀୟ ଚାକିରି କ୍ଷେତ୍ରରେ ଏବଂ ଡାକ୍ତରି, ଓକିଲାତି ଆଦି ବୃତ୍ତି କ୍ଷେତ୍ରରେ ଅନେକ ଆଗରେ ଥିଲେ । ସେମାନଙ୍କ ସହିତ ବମ୍ବେରେ ବସବାସ କରୁଥିବା ଓ ଗୁଜୁରାଟୀ

ମାତୃଭାଷା କହୁଥିବା ପାର୍ସିମାନେ ମଧ୍ୟ ଆଗେଇ ଚାଲିଥିଲେ । ଅବଶ୍ୟ ସେମାନଙ୍କ ସଂଖ୍ୟା ଥିଲା ଅତି ନଗଣ୍ୟ । ବଙ୍ଗଳା, ବିହାର ଓ ଓଡ଼ିଶାର ହିନ୍ଦୁ ଜମିଦାରମାନେ ମଧ୍ୟ ପ୍ରଜାମାନଙ୍କୁ ଶୋଷଣ କରି ବେଶ୍ ପୁଞ୍ଜି ଜମା କରିବାକୁ ଆରମ୍ଭ କଲେ ଏବଂ ଏହି ପେସାଦାର ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀର ଲୋକେ ଇଂରେଜମାନଙ୍କଠାରୁ ଶିଖି ସେମାନଙ୍କ ବଳକା ଅର୍ଥ କିପରି ଭାବରେ ବ୍ୟବସାୟ ବାଣିଜ୍ୟରେ ବିନିଯୋଗ କରିବେ, ତା'ର ଉଦ୍ୟମ କରୁଥିଲେ । ଅବଶ୍ୟ ଏ କ୍ଷେତ୍ରରେ ଏହି ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀକୁ ଇଂରେଜମାନଙ୍କଠାରୁ କୌଣସି ପ୍ରକାର ସାହାଯ୍ୟ ମିଳୁ ନଥିଲା । ବଙ୍ଗାଳୀ ଜମିଦାରମାନେ କଲିକତାରେ ବସବାସ କରି ଅଧିକରୁ ଅଧିକ କୋଠାବାଡ଼ି ନିର୍ମାଣ କରି ଜୀବନ କଟାଉଥିଲେ ବିଳାସ ବ୍ୟସନରେ । ଦେଶର ସୌଭାଗ୍ୟ, ଏହି ବିଳାସବ୍ୟସନ କେତେକାଂଶରେ ସାହିତ୍ୟ ଓ ସଂସ୍କୃତିର ସମୁନ୍ନତିରେ ବ୍ୟୟିତ ହେଉଥିଲା । ବଙ୍ଗଳା ସାହିତ୍ୟକୁ ଏହି କାଳରେ ନୂତନ ରୂପ ଦେଇଥିଲେ ଜଣେ ସରକାରୀ ଡେପୁଟି କଲେକ୍ଟର ବଙ୍କିମ ଚନ୍ଦ୍ର ଚାଟାର୍ଜୀ । ତାଙ୍କର ଉପନ୍ୟାସ ମଧ୍ୟରେ "ଆନନ୍ଦମଠ" ସୁବିଖ୍ୟାତ ଏବଂ "ବନ୍ଦେ ମାତରମ୍" ସଂଗୀତ ଏହି "ଆନନ୍ଦମଠ"ରେ ଅନ୍ତର୍ଭୁକ୍ତ । ରବୀନ୍ଦ୍ରନାଥ ଠାକୁରଙ୍କ ଲିଖିତ "ଜନଗଣ ମନ ଅଧିନାୟକ" ଭାରତର ଜାତୀୟ ସଂଗୀତ ରୂପେ ଗୃହୀତ ହେବା ପର୍ଯ୍ୟନ୍ତ 'ବନ୍ଦେ ମାତରମ୍' ହିଁ ଜାତୀୟ ସଂଗୀତ ରୂପେ ବିବେଚିତ ହେଉଥିଲା । ନୀଳଚାଷୀଙ୍କ ଉପରେ ଚାଲୁଥିବା ଇଂରେଜ ଭୂସ୍ୱାମୀମାନଙ୍କର ଅକଥନୀୟ ଅତ୍ୟାଚାରକୁ ଭିତ୍ତିକରି ଏହି ସମୟରେ ବଙ୍ଗଳାରେ "ନୀଳଦର୍ପଣ" ବୋଲି ଗୋଟିଏ ସଂଗୀତ ପୁସ୍ତକ ପ୍ରକାଶିତ ହୋଇଥିଲା, ଯାହାକି ବଙ୍ଗବାସୀମାନଙ୍କ ମଧ୍ୟରେ ଦାରୁଣ ବିକ୍ଷୋଭ ସୃଷ୍ଟି କରିଥିଲା ।

ଭାରତର ପରିସ୍ଥିତି ଏହି ପ୍ରକାରର ଥିବା ସମୟରେ ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀ ଓ ବିଭିନ୍ନ ବୃତ୍ତିରେ ସଂପୃକ୍ତ ଥିବା ଶିକ୍ଷିତ ଲୋକଙ୍କ ମଧ୍ୟରେ ଦେଖାଦେଲା ଏକ ପ୍ରକାରର ଜାତୀୟ ଉନ୍ମାଦନା । ଭାରତର ଭାଗ୍ୟ ଭଲ, ଏହି କାଳରେ କେତେଜଣ ଉଦାରପନ୍ଥୀ ଭାଇସରାୟ ଭାରତକୁ ପ୍ରେରିତ ହେଲେ । ଲର୍ଡ଼ ରିପନ୍ ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । ଭାରତରେ ଯେପରି ଗଣତନ୍ତ୍ରବାଦୀ ସଂସ୍ଥା ମୁଣ୍ଡ ଟେକିବ ଓ ସେହି ସଂସ୍ଥାଗୁଡ଼ିକରେ ଅଧିକରୁ ଅଧିକ ସଭ୍ୟ ନିର୍ବାଚନ ଜରିଆରେ ସଦସ୍ୟଭୁକ୍ତ ହେବେ ଏବଂ ଉଚ୍ଚସ୍ତରୀୟ ସରକାରୀ ଚାକିରିରେ ପ୍ରବେଶ କରିବା ପାଇଁ ଭାରତୀୟମାନଙ୍କୁ ସମାନ ସୁବିଧା ସୁଯୋଗ ଦିଆଯିବ, ସେହି ଲକ୍ଷ୍ୟରେ ରିପନ୍ କେତେକ ପଦକ୍ଷେପ

ନେଲେ । ବିଗ୍ଭର ବିଭାଗରେ ବିଗ୍ଭରପତିମାନେ ଯେପରି ସମାନ ପ୍ରକାର କ୍ଷମତା ଉପଭୋଗ କରିବେ ସେଥିପାଇଁ ଆଇନ୍ ସଚ଼ିବ ସାର୍ ଇଲବର୍ଟଙ୍କ ନାମରେ ଏକ ବିଲ୍ ଆଗତ କରାହେଲା । ତାହା "ଇଲ୍‌ବର୍ଟ ବିଲ୍" ନାମରେ ଖ୍ୟାତ । ଇଲ୍‌ବର୍ଟ ବିଲ୍‌କୁ ପ୍ରତ୍ୟାହୃତ କରିବା ପାଇଁ ଭାରତରେ ବସବାସ କରୁଥିବା ଇଂରେଜ ବ୍ୟବସାୟୀ ଓ କମ୍ପାନୀର ଇଂରେଜ କର୍ମଚାରୀ ନୀଳଚାଷର ଭୂସ୍ୱାମୀ ଓ ଗ୍ଭ ବଗିଗ୍ଭର ମାଲିକମାନେ ଯେଉଁ ପ୍ରତିରୋଧ ଆନ୍ଦୋଳନ କଲେ, ସେ ପ୍ରତିରୋଧକୁ ଭାଙ୍ଗିଦେବା ପାଇଁ ରିପନ୍ ଗ୍ଲାଡ୍‌ଷ୍ଟୋନ୍ ସରକାରଙ୍କଠାରୁ ଯେଉଁ ପ୍ରକାରର ସମର୍ଥନ ଆଶା କରୁଥିଲେ, ତାହା ମଧ୍ୟ ମିଳିଲା ନାହିଁ । ପରେ ଇଲ୍‌ବର୍ଟ ବିଲ୍ ଅବଶ୍ୟ ପାସ୍ ହେଲା । ଏହି ପ୍ରତିରୋଧ ଆନ୍ଦୋଳନର ଭିତ୍ତି ଥିଲା, ସିପାହୀ ବିଦ୍ରୋହ ପରେ ନିଜର ଶକ୍ତି ଓ ସାମର୍ଥ୍ୟ ଉପରେ ଇଂରେଜମାନଙ୍କର ଅତ୍ୟଧିକ ଆସ୍ଥା ଓ ଦେଶ ବିଜେତା ଭାବରେ ସେମାନଙ୍କର ଗର୍ବ, ଅହଂକାର ଓ ଔଦ୍ଧତ୍ୟ ।

କିନ୍ତୁ ଇଂରେଜମାନଙ୍କର ଆନ୍ଦୋଳନ ଭାରତର ଶିକ୍ଷିତ ଶ୍ରେଣୀ ମଧ୍ୟରେ ବିଷାକ୍ତ ପ୍ରତିଫଳ ସୃଷ୍ଟି କଲା । ଭାରତୀୟମାନେ ମଧ୍ୟ ଚିନ୍ତା କଲେ ଯେ ବ୍ରିଟିଶ୍ ସରକାରଠାରୁ କୌଣସି ଦାବି ହାସଲ କରିବାକୁ ହେଲେ, ଏହି ପ୍ରକାରର ଆନ୍ଦୋଳନ କରିବାକୁ ହେବ । ବଙ୍ଗଳାର ଜଣେ ବିଶିଷ୍ଟ ନେତା ସୁରେନ୍ଦ୍ର ନାଥ ବାନାର୍ଜୀ ଏହି ଚ଼ିନ୍ତାଧାରାର ପ୍ରଧାନ ପୃଷ୍ଠପୋଷକ ଥିଲେ । ସୁରେନ୍ଦ୍ର ନାଥ ୧୮୬୯ ମସିହାରେ ଇଣ୍ଡିଆନ୍ ସିଭିଲ୍ ସର୍ଭିସ୍ (ଆଇ.ସି.ଏସ୍.)ରେ ଯୋଗ ଦେଇଥିଲେ । କିଛି ବର୍ଷ ପରେ ୧୮୭୬ ମସିହାରେ ତାଙ୍କୁ ଅନ୍ୟାୟ ଭାବରେ ଗ୍ଭକିରିରୁ ବରଖାସ୍ତ କରାଯାଇଥିଲା ଏବଂ ତାହାପରେ ସେ ଅଧ୍ୟାପନା, ସାମ୍ବାଦିକତା ଓ ଦେଶସେବାରେ ନିମଜ୍ଜିତ ହେଲେ । ଇଲ୍‌ବର୍ଟ ଆଇନ୍ ବିରୋଧୀ ଆନ୍ଦୋଳନ ସଂକ୍ରାନ୍ତରେ ସୁରେନ୍ଦ୍ର ନାଥ ଲେଖିଥିଲେ "ଏହି ବିଲ୍ ବିରୁଦ୍ଧରେ ଭାରତରେ ବାସ କରୁଥିବା ଇଂରେଜମାନଙ୍କର ଆନ୍ଦୋଳନ ଆମ୍ଭମାନଙ୍କୁ ଏକ ସ୍ମରଣୀୟ ଶିକ୍ଷା ଦିଏ । ଅନ୍ୟାୟ ଓ ଅନାଚାର ବିରୋଧୀ ଆନ୍ଦୋଳନରେ ସଫଳତା ଆଣିବାକୁ ହେଲେ ସଂଘବଦ୍ଧ ଓ ଶୃଙ୍ଖଳିତ ପ୍ରଚ଼େଷ୍ଟାର ଆବଶ୍ୟକତା ଅଛି । ସମୟ ଆସିଛି, ଯେତେବେଳେ ଆମ୍ଭେମାନେ କ୍ଷୁଦ୍ର ମତଭେଦକୁ ଭୁଲି ଦେଶର ମଙ୍ଗଳ ପାଇଁ ସମ୍ମିଳିତ ଉଦ୍ୟମ କରିବା ।"

ଏଥିପୂର୍ବରୁ ୧୮୭୬ ମସିହାରେ ସୁରେନ୍ଦ୍ର ନାଥଙ୍କ ଉଦ୍ୟମରେ କଲିକତାରେ "ଇଣ୍ଡିଆନ୍ ଆସୋସିଏସନ୍" ଶୀର୍ଷକ ଏକ ଅନୁଷ୍ଠାନ ସ୍ଥାପିତ ହୋଇଥିଲା ଏବଂ

ଆସୋସିଏସନ୍ ବୈଠକରେ ବହୁ ସାଧାରଣ ସ୍ୱାର୍ଥ ଜଡ଼ିତ ବିଷୟ ଆଲୋଚିତ ହେଉଥିଲା । ରିପନ୍‌ଙ୍କ ଅନୁଗାମୀ କେତେକ ବ୍ରିଟିଶ୍ କର୍ମଚାରୀ ଭାବୁଥିଲେ, କଲିକତାର ଇଣ୍ଡିଆନ୍ ଆସୋସିଏସନ୍ ପରି ଭାରତର ବିଭିନ୍ନ ଅଞ୍ଚଳରେ ଯଦି ଅନୁରୂପ ଅନୁଷ୍ଠାନମାନ ଗଢ଼ି ଉଠନ୍ତା, ତାହାହେଲେ ଉଦାରପନ୍ଥୀ ଚିନ୍ତାଧାରାକୁ କାର୍ଯ୍ୟକାରୀ କରିବା ପାଇଁ ଶକ୍ତିଶାଳୀ ପଦକ୍ଷେପ ନିଆଯାଇପାରନ୍ତା । ଏହି କର୍ମଚାରୀମାନଙ୍କ ମଧ୍ୟରେ ଅଗ୍ରଗାମୀ ଥିଲେ ମିଷ୍ଟର ଏ.ଓ. ହ୍ୟୁମ୍ । ହ୍ୟୁମ୍ ୧୮୪୯ ମସିହାରେ ଭାରତକୁ ଆସିଥିଲେ ଇଷ୍ଟ ଇଣ୍ଡିଆ କମ୍ପାନୀର ଜଣେ କର୍ମଚାରୀ ଭାବରେ । ସିପାହୀ ବିଦ୍ରୋହ ସମୟରେ ସେ ଉତ୍ତର ପଶ୍ଚିମ ପ୍ରଦେଶର ଏଟଓ୍ୱା ଜିଲ୍ଲାର ଦାୟିତ୍ୱରେ ରହି ଉଭୟ ସାମରିକ ଓ ପ୍ରଶାସନିକ କ୍ଷେତ୍ରରେ ସଫଳତାର ସହିତ କାର୍ଯ୍ୟନିର୍ବାହ କରିଥିଲେ । ଦୀର୍ଘ କୋଡ଼ିଏ ବର୍ଷ ଧରି ଜଣେ ଜିଲ୍ଲା ଅଫିସର ଭାବରେ କାର୍ଯ୍ୟ କରିବା ପରେ ସେ ପ୍ରାୟ ନଅ ବର୍ଷକାଳ କେନ୍ଦ୍ର ସରକାରଙ୍କର ଜଣେ ବିଭାଗୀୟ ସେକ୍ରେଟେରୀ ଭାବରେ ଦାୟିତ୍ୱ ନିର୍ବାହ କରିଥିଲେ । ମାତ୍ର ୧୮୭୯ ମସିହାରେ ଉପରିସ୍ଥ କର୍ମକର୍ତ୍ତାମାନଙ୍କ ସହିତ ମତଭେଦ ହେତୁ ତାଙ୍କୁ ରାଜସ୍ୱ ଓ କୃଷି ବିଭାଗର ସଚିବ ପଦରୁ ଆଲ୍ଲାହାବାଦର ରାଜସ୍ୱ ପରିଷଦକୁ ସ୍ଥାନାନ୍ତରିତ କରାଯାଇଥିଲା । ଏହାର ତିନିବର୍ଷ ପରେ ଚାକିରିରୁ ଅବସର ନେବା ପରେ ସେ ଭାରତର ଜାତୀୟ ଆନ୍ଦୋଳନକୁ ଆଗେଇ ନେବା ପାଇଁ ଆପ୍ରାଣ ଉଦ୍ୟମ କଲେ ।

୧୮୮୩ ମସିହାରେ କଲିକତାରେ "ଜାତୀୟ ସମ୍ମିଳନୀ" ନାମକ ଏକ ଅନୁଷ୍ଠାନ ସ୍ଥାପିତ ହୋଇଥିଲା । ତା'ର ଦୁଇବର୍ଷ ପରେ ୧୮୮୫ ମସିହାରେ ଏକ ସର୍ବଭାରତୀୟ ଅନୁଷ୍ଠାନ କଲିକତାର ଜଣେ ବଙ୍ଗାଳୀ ବାରିଷ୍ଟର ଡବ୍ଲ୍ୟୁ. ସି. ବାନାର୍ଜୀଙ୍କ ଅଧ୍ୟକ୍ଷତାରେ ପ୍ରଥମ ଅଧିବେଶନ ବମ୍ବେରେ ଅନୁଷ୍ଠିତ ହୋଇଥିଲା । ଏଥିପୂର୍ବରୁ ଉଭୟ ହ୍ୟୁମ୍ ଓ ବାନାର୍ଜୀ ଭାରତର ବଡ଼ ବଡ଼ ସହର ପରିଦର୍ଶନ କରି ଯେପରି ଅଧିକ ସଂଖ୍ୟକ ପ୍ରତିନିଧି ବମ୍ବେ ଅଧିବେଶନରେ ଯୋଗ ଦିଅନ୍ତି ସେଥିପାଇଁ ପରିପ୍ରଚାର କରିଥିଲେ । ପ୍ରାୟ ୭୦ ଜଣ ପ୍ରତିନିଧି ବମ୍ବେ ଅଧିବେଶନରେ ଯୋଗ ଦେଇଥିଲେ । ୧୮୮୫ ମସିହାରେ ଏହି ପ୍ରଥମ ଅଧିବେଶନରେ ଅନୁଷ୍ଠାନର ନାମକରଣ ହୋଇଥିଲା "ଭାରତୀୟ ଜାତୀୟ କଂଗ୍ରେସ" । ସେହିଦିନଠାରୁ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ପ୍ରତିବର୍ଷ ନିୟମିତ ରୂପେ କଂଗ୍ରେସର ବାର୍ଷିକ ଅଧିବେଶନ ହୋଇଆସୁଛି । ପ୍ରଥମ ଅଧିବେଶନ ଆରମ୍ଭ ପୂର୍ବରୁ ହ୍ୟୁମ୍ ରିପନ୍‌ଙ୍କର ଉତ୍ତରାଧିକାରୀ ଲର୍ଡ଼ ଡଫେରିନ୍‌ଙ୍କ ସହ ପରାମର୍ଶ

କରିଥିଲେ ଏବଂ ଡଫେରିନ୍ ଆନୁଷ୍ଠାନିକ ଭାବରେ କୌଣସି ସରକାରୀ ଆଦେଶ ନଦେଇ ପରୋକ୍ଷ ସହାନୁଭୂତି ଜଣାଇଥିଲେ । ଦ୍ୱିତୀୟ ବର୍ଷ କଂଗ୍ରେସ ଅଧିବେଶନ କଲିକତାରେ ଅନୁଷ୍ଠିତ ହୋଇଥିଲା । ତୃତୀୟ ବର୍ଷ ଜଣେ ମୁସଲମାନ ସଭାପତିତ୍ୱ କରିଥିଲେ ମାଡ୍ରାସ୍ ଅଧିବେଶନରେ ।

ପରକାଳରେ କଂଗ୍ରେସ ଯେଉଁ ଭାବରେ ସଙ୍ଗଠିତ ହେଲା ଏବଂ ସ୍ୱରାଜ ଓ ସ୍ୱାଧୀନତା ପାଇଁ ଦେଶର ଅଗଣିତ ଜନତାକୁ ନେଇ ଯେଉଁ ସଂଗ୍ରାମ ଆରମ୍ଭ କଲା ଓ ପରିଶେଷରେ ଇଂରେଜମାନଙ୍କୁ ଭାରତରୁ ବିତାଡ଼ିତ କରି ଯେପରି ସ୍ୱାଧୀନତା ହାସଲ କଲା, ୧୮୮୫ ମସିହାରେ ପ୍ରତିଷ୍ଠିତ କଂଗ୍ରେସକୁ ସେହିଦୃଷ୍ଟିରୁ ବିଚାର କରାଯାଇ ପାରିବ ନାହିଁ । ମାତ୍ର ୭୦ ଜଣ କଂଗ୍ରେସର ପ୍ରଥମ ଅଧିବେଶନରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ କେତେକ ଉଚ୍ଚଶିକ୍ଷିତ ବାରିଷ୍ଟର, ଡାକ୍ତର ଆଦି ପେସାଦାର ଲୋକ ଓ ଧନିକ ଶ୍ରେଣୀର କେତେକ ବ୍ୟବସାୟୀ ପ୍ରଭୃତି । ଯେଉଁ ନେତୃସ୍ଥାନୀୟ ଲୋକେ କଂଗ୍ରେସ ଗଠନରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ଏ.ଓ. ହ୍ୟୁମ୍‌ଙ୍କ ସମେତ ସେମାନେ ହେଲେ ଡବ୍ଲ୍ୟୁ. ସି. ବାନାର୍ଜୀ, ସୁରେନ୍ଦ୍ରନାଥ ବାନାର୍ଜୀ, ବଦ୍ରୁଦ୍ଦିନ୍ ତୟାବଜୀ, ଫିରୋଜ ଶାହ ମେହେଟ୍ଟା, ଦାଦା ଭାଇ ନାରୋଜୀ ଓ ପଣ୍ଡିତ ମଦନ ମୋହନ ମାଲବ୍ୟ ପ୍ରମୁଖ । ଦାଦାଭାଇ ନାରୋଜୀଙ୍କୁ ଜଣେ ଅତି ସମ୍ମାନନୀୟ ନେତା ଭାବରେ ବିବେଚନା କରାଯାଉଥିଲା ଓ ସେହିଁ ପ୍ରଥମେ କହିଥିଲେ 'ସ୍ୱରାଜ ଭାରତର ଲକ୍ଷ୍ୟ' । ସାଧାରଣ ଲୋକେ କଂଗ୍ରେସର ନାମ ଶୁଣିନଥିଲେ କିମ୍ବା କେହି ଯୋଗ ଦେଇନଥିଲେ । ଅଥଚ ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ କଂଗ୍ରେସ ଅଧିବେଶନମାନଙ୍କରେ ଅନ୍ୟୂନ ସାତ ଆଠଲକ୍ଷ ସାଧାରଣ ଲୋକ ଯୋଗ ଦେଉଥିଲେ ।

ପ୍ରଥମ କେତୋଟି ଅଧିବେଶନରେ ଯେଉଁ ସବୁ ପ୍ରସ୍ତାବ ଗୃହୀତ ହୋଇଥିଲା, ତାହା ଥିଲା ଅତି ସାଧାରଣ । ହୁଏତ ଚାକିରିରେ ପ୍ରବେଶ କରିବା ପାଇଁ ଦାବି ବା କାଉନ୍‌ସିଲ ଇତ୍ୟାଦିରେ ଭାରତୀୟମାନଙ୍କର ସଂଖ୍ୟା ବୃଦ୍ଧି କରିବା ଓ ଯଥାସମ୍ଭବ ନିର୍ବାଚନ ଜରିଆରେ ସେହି ପଦ ପଦବୀ ପୂରଣ କରିବା ଥିଲା ଅଧିବେଶନର ଚିରାଚରିତ ଆହ୍ୱାନ । ବକ୍ତାମାନେ ପ୍ରଥମେ ବ୍ରିଟିଶ ସରକାରଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରି ତା'ପରେ ଭାଷଣ ଆରମ୍ଭ କରୁଥିଲେ । ପ୍ରଥମ ଅଧିବେଶନ ଶେଷରେ ଲର୍ଡ଼ ରିପନ୍‌ଙ୍କୁ ଧନ୍ୟବାଦ ଅର୍ପଣ କରି ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । କିଛିଦିନ

ଏରକମର ପ୍ରସ୍ତାବ ଅନୁମୋଦିତ ହେବାପରେ ଦେଖାଗଲା ଯେ, ବ୍ରିଟେନ୍‌ର ରକ୍ଷଣଶୀଳ ସରକାର ଏଥିରୁ ଗୋଟିଏ ମଧ୍ୟ ଦାବି ମଞ୍ଜୁର କରିନାହାନ୍ତି । କ୍ରମେ କଂଗ୍ରେସ ନେତା ଓ ସରକାରଙ୍କ ମଧ୍ୟରେ ବିଦ୍ୱେଷ ଆରମ୍ଭ ହେଲା । ହ୍ୟୁମ୍ ମଧ୍ୟ ଲଣ୍ଡନ ଫେରିଯାଇ ସେଠାରେ କେତେଜଣ ପୂର୍ବତନ ବ୍ରିଟିଶ କର୍ମଚାରୀଙ୍କୁ ନେଇ ଭାରତୀୟ ଦାବି ସପକ୍ଷରେ ଆନ୍ଦୋଳନ ଆରମ୍ଭ କଲେ । ଯେଉଁ ଭାଇସରାୟ ପ୍ରତି ବାର୍ଷିକ ଅଧିବେଶନରେ କଂଗ୍ରେସ ପ୍ରତିନିଧିମାନଙ୍କୁ ରାତ୍ରିଭୋଜନ ଦେଇ ଆପ୍ୟାୟିତ କରୁଥିଲେ କିମ୍ବା ବମ୍ବେ ବା ମାଡ୍ରାସ ଆଦି ସହରରେ ଅଧିବେଶନ ଅନୁଷ୍ଠିତ ହେଲେ ପ୍ରଦେଶର ଲେଫ୍‌ଟନାଣ୍ଟ ଗଭର୍ଣ୍ଣରମାନେ ଭାଇସରାୟଙ୍କ ପଦାଙ୍କ ଅନୁସରଣ କରୁଥିଲେ, କିଛିବର୍ଷ ପରେ ସେମାନେ କଂଗ୍ରେସ ପ୍ରତି ବୀତସ୍ପୃହ ହୋଇପଡ଼ିଲେ । କଂଗ୍ରେସ ପ୍ରତିନିଧିମାନେ ମଧ୍ୟ ଅନୁଭବ କଲେ ଯେ, ବର୍ଷକୁ ଥରେ ପ୍ରସ୍ତାବ ଗ୍ରହଣ କଲେ କାର୍ଯ୍ୟସିଦ୍ଧି ହୋଇପାରିବ ନାହିଁ ।

ଡଫେରିନ୍‌ଙ୍କ କାର୍ଯ୍ୟକାଳ ଭିତରେ ବ୍ରହ୍ମଦେଶର ରାଜାଙ୍କ ସହିତ ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି ସଂଘର୍ଷ ଘଟି ନଥିଲା । ଯାହାହେଉ ତାଙ୍କର ପାଞ୍ଚବର୍ଷିଆ କାର୍ଯ୍ୟକାଳ ସମାପ୍ତ ହେବା ପୂର୍ବରୁ ପାରିବାରିକ କାରଣରୁ ଡିସେମ୍ବର ୧୮୮୮ ମସିହାରେ ସେ ଲର୍ଡ୍ ଲାନ୍ସଡାଉନଙ୍କୁ କ୍ଷମତା ହସ୍ତାନ୍ତର କରି ଭାରତରୁ ବିଦାୟ ନେଲେ ।



# ସଫଳତାର ଶିଖରରେ ବ୍ରିଟିଶରାଜ

ଭାଇସରାୟ ଡଫେରିନଙ୍କ ଉତ୍ତରାଧିକାରୀ ଲର୍ଡ଼ ଲାନ୍ସଡାଉନଙ୍କର ରାଜୁତି ଐତିହାସିକମାନଙ୍କ ମତରେ ସଫଳତାର ଚରମ ସୀମାରେ ପହଞ୍ଚିଥିଲା । ଆଇରିସ୍ ପ୍ରଶ୍ନ ଉପରେ ମତଭେଦ ହେତୁ ସେ ଲିବରାଲ ଦଳ ଛାଡ଼ି ରକ୍ଷଣଶୀଳ ହୁଇଗ୍ ଦଳରେ ଯୋଗ ଦେଇଥିଲେ । ଅନ୍ୟଥା ସେ ଥିଲେ ଜଣେ ଅତି ବୁଦ୍ଧିମାନ୍ ଓ ସୁଦକ୍ଷ ଶାସକ । ପାଞ୍ଚବର୍ଷରୁ ସାମାନ୍ୟ ଅଧିକ କାଳ ସେ ଭାଇସରାୟ ରହିବା ସମୟରେ ଭାରତରେ ଶାନ୍ତି ଓ ସମୃଦ୍ଧି ବିରାଜମାନ କରୁଥିଲା । ଅବଶ୍ୟ ସମୃଦ୍ଧି କେବଳ ଆବଦ୍ଧ ଥିଲା ଉଚ୍ଚ-ମଧ୍ୟବିତ୍ତ ଓ ଧନୀ ଜମିଦାର ଶ୍ରେଣୀରେ । ତା'ସତ୍ତ୍ୱେ ଲାନ୍ସଡାଉନଙ୍କ ସମୟରେ ଶାନ୍ତି ପାଇଁ ଯୁଦ୍ଧ କରିବାକୁ ପଡ଼ିନାହିଁ । ହୁଇଗ୍ ଦଳର ସଭ୍ୟ ଥିଲେ ମଧ ସେ ଲିଟନଙ୍କ ପରି ଅତି ଅନିଶ୍ଚିତ ଓ ସନ୍ଦେହପୂର୍ଣ୍ଣ ନଥିଲେ ବା ରିପନଙ୍କ ପରି ଅତି ଉଦାରଚେତା ନଥିଲେ ।

ଏଥିପୂର୍ବରୁ ଜାତୀୟ କଂଗ୍ରେସର ବାରମ୍ବାର ଦାବି ଫଳରେ ଲେଜିସ୍-ଲେଟିଭ୍ କାଉନସିଲ ବା ବିଧାନସଭାର ପରିସର ତା'ର ପ୍ରସାରଣ ଓ କ୍ଷମତା ସମ୍ପର୍କରେ କୌଣସି କାର୍ଯ୍ୟାନୁଷ୍ଠାନ କରାଯାଉ ନଥିଲା । ଡଫେରିନଙ୍କର ଏ ପ୍ରସ୍ତାବକୁ ହୁଇଗ୍ ଦଳର ନେତା ପ୍ରଧାନମନ୍ତ୍ରୀ ଲର୍ଡ଼ ସାଲିସବେରୀ ନାକଚ କରି ଦେଇଥିଲେ । କିନ୍ତୁ ଲାନ୍ସଡାଉନ୍ ଯେତେବେଳେ ପୁନର୍ବାର ସେହି ପ୍ରସ୍ତାବର ପୁନରାବୃତ୍ତି କଲେ ଓ ତତ୍‌ସହ ଲେଖିଲେ ଯେ, ତାଙ୍କ କାଉନସିଲର ସମସ୍ତ ସଭ୍ୟ ଏଥିରେ ଏକମତ ଅଛନ୍ତି, ସାଲିସବେରୀ ଟିକେ ଅଡୁଆରେ ପଡ଼ିଲେ । ପରନ୍ତୁ ଦୁଇଜଣ ପୂର୍ବତନ ଭାଇସରାୟ ଲର୍ଡ଼ ନର୍ଥ ବ୍ରୁକ୍ ଓ ରିପନ୍ ମଧ ଏ ପ୍ରସ୍ତାବକୁ ସମର୍ଥନ କଲେ । ସାଲିସବେରୀ ଅନିଚ୍ଛା ସତ୍ତ୍ୱେ ପ୍ରସ୍ତାବକୁ ମଞ୍ଜୁର କଲେ ଓ ପ୍ରଥମ ଥର ପାଇଁ କଂଗ୍ରେସର ଦାବି କେତେକାଂଶରେ ଗୃହୀତ ହେଲା । ବିଧାନସଭାର ସଭ୍ୟ ସଂଖ୍ୟା ବୃଦ୍ଧି ହେଲା ଓ ତହିଁ ମଧ୍ୟରୁ ମ୍ୟୁନିସିପାଲିଟି, ବିଶ୍ୱବିଦ୍ୟାଳୟ ଓ ଚାମ୍ବର ଅଫ କମର୍ସ ଆଦି ଅନୁଷ୍ଠାନମାନଙ୍କ ଦ୍ୱାରା ମନୋନୀତ ସଭ୍ୟଙ୍କୁ ସଂସଦ ଭାବରେ ନିଆଗଲା ।

କଂଗ୍ରେସ ଦଳର ବ୍ରିଟିଶ ପାର୍ଲାମେଣ୍ଟରେ କେତେକ ସହାନୁଭୂତିଶୀଳ ସମର୍ଥକ ଥିଲେ । ସମାଜସଂସ୍କାର ପ୍ରଶ୍ନ ଯେତେବେଳେ ଆଲୋଚିତ ହେଲା, ବ୍ରାହ୍ମ ସମାଜର କେଶବ ଚନ୍ଦ୍ର ସେନ୍, ବମ୍ବେର ଏମ୍.ଜି. ରାରାଦେ ଓ କେ.ଟି. ତେଲାଙ୍ଗ ପ୍ରମୁଖ ନେତାମାନେ ଏହି ସଂସ୍କାର ପ୍ରକ୍ରିୟାକୁ ସମର୍ଥନ ଦେଲେ । କିନ୍ତୁ ଏହି ସମୟରେ ଏପରି ଗୋଟିଏ ଘଟଣା ଘଟିଲା ଯାହାକି ପାର୍ଲାମେଣ୍ଟରେ କଂଗ୍ରେସ ଦଳର ଖ୍ୟାତି ଓ ସୁପାରିଶ ଉପରେ ଆସ୍ଥା ଲୋପ କରିଦେଲା । ଏହି ସମୟରେ କଲିକତାର ଜଣେ ୩୫ ବର୍ଷୀୟ ଲୋକ ଗୋଟିଏ ୧୦ ବର୍ଷର ଝିଅକୁ ବିବାହ କରି ତା'ସହିତ ସହବାସ କରିବା ହେତୁ କନ୍ୟାଟିର ମୃତ୍ୟୁ ହେଲା । ଏହି ଅପମୃତ୍ୟୁ ବିରୁଦ୍ଧରେ ଚାରିଆଡ଼େ ଉଠିଲା ସମାଲୋଚନାର ଧ୍ୱନି । ସେତେବେଳେ ହିନ୍ଦୁ ଆଇନରେ ବିବାହ ପାଇଁ ଝିଅର ସମ୍ମତି ଦେବାର ବୟସ ଥିଲା ମାତ୍ର ଦଶବର୍ଷ । ଏହି ଆଇନର ସୁଯୋଗ ନେଇ ପୁରୁଷ ଲୋକଟି କୋର୍ଟ ବିଚାରରୁ ମୁକ୍ତ ହେଲା । ଏହାପରେ ଆଇନ୍‌ରେ ସମ୍ମତି ସୀମା ୧୨ କିମ୍ବା ୧୪ ବର୍ଷକୁ ବଢ଼ାଇ ଦେବାପାଇଁ ପ୍ରସ୍ତାବ ଉଠିଲା । ଲାନ୍ସଡାଉନ୍ ଅନୁଭବ କଲେ ଯେ, ଆଇନ୍ ଦ୍ୱାରା ଏହି ସମସ୍ୟାର ସମାଧାନ କଲେ ତାହା ସହଜରେ ଗ୍ରହଣୀୟ ହେବ । କିନ୍ତୁ କନ୍ୟାର ସମ୍ମତିସୂଚକ ସୀମା ୧୨ ବର୍ଷକୁ ବଢ଼ାଇ ଆଇନ୍‌ର ଚିଠା ଯେତେବେଳେ ପେସ୍ କରାଗଲା, ଅତି ଅପ୍ରତ୍ୟାଶିତ ସୂତ୍ରରୁ ପ୍ରତିଆକ୍ରମଣ ଆରମ୍ଭ ହେଲା । ଚିଠା ଆଇନ୍ ବିରୁଦ୍ଧରେ ବଙ୍ଗଳାର ଆନ୍ଦୋଳନ ଏତେ ତୀବ୍ର ଥିଲା ଯେ, ତାକୁ ଦମନ କରିବା ପାଇଁ ଆନ୍ଦୋଳନର ପୃଷ୍ଠପୋଷକ "ବଙ୍ଗବାସୀ" ଶୀର୍ଷକ ଏକ ସମ୍ବାଦପତ୍ର ବିରୁଦ୍ଧରେ ମୋକଦ୍ଦମା ଆଗତ କରି ତାକୁ ଦଣ୍ଡିତ କରାଗଲା । ବମ୍ବେରେ ପେଶୱା ବଂଶଜ ଜଣେ ଚିତ୍‌ପାବନ ବ୍ରାହ୍ମଣ ଶ୍ରୀ ବାଳ ଗଙ୍ଗାଧର ତିଳକ ମଧ ଏହି ପ୍ରତିବାଦ ଆନ୍ଦୋଳନରେ ଯୋଗଦେଲେ । ତିଳକ ଥିଲେ ଜ୍ଞାନୀ, ସୁଲେଖକ, ସୁବକ୍ତା ଓ 'କେଶରୀ' ସମ୍ବାଦପତ୍ରର ପ୍ରତିଷ୍ଠାତା ସମ୍ପାଦକ । କଂଗ୍ରେସ ଦଳର ଉଚ୍ଚଶିକ୍ଷିତ ସଭ୍ୟମାନେ ଯଦିଓ "କେଶରୀ" ଓ "ବଙ୍ଗବାସୀ" ଆଦି ସମ୍ବାଦପତ୍ରର ମତାମତ ସହ ସହମତ ନଥିଲେ, କାଳେ ଏହି ଦ୍ୱନ୍ଦ୍ୱରେ ଦଳ ଭାଙ୍ଗିଯିବ ସେହି ଆଶଙ୍କାରେ କଂଗ୍ରେସ ଅନୁଷ୍ଠାନ ଏହି ସମାଜସଂସ୍କାର ବିବାଦ ସଂପର୍କରେ ନିରବ ରହିଲେ । ଏହି ମଉକାରେ ଆଇନ୍‌ଟି ଅବଶ୍ୟ ପାସ୍ ହୋଇଗଲା । କିନ୍ତୁ ଲଣ୍ଡନର ଲିବରାଲ୍ ଦଳ ସମ୍ମୁଖରେ କଂଗ୍ରେସ ହରାଇ ବସିଲା ତା'ର ଯଶ ଓ ଖ୍ୟାତି ।

ଆସାମର ଦକ୍ଷିଣ-ପୂର୍ବ କୋଣରେ ଅବସ୍ଥିତ ମଣିପୁର ଏକ କ୍ଷୁଦ୍ର, ଅଥଚ ମନୋରମ ରାଜ୍ୟ । ବର୍ମା ଯୁଦ୍ଧ ସମୟରେ ମଣିପୁର ବ୍ରିଟିଶ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା, କିନ୍ତୁ ମଣିପୁରବାସୀମାନେ ଏକ ସ୍ୱତନ୍ତ୍ର ଜୀବନଯାତ୍ରା ନିର୍ବାହ କରୁଥିଲେ । ମଣିପୁର ରାଜା ଥିଲେ ଅତ୍ୟନ୍ତ ଦୁର୍ବଳ । ଆଠ ଭାଇଙ୍କ ମଧ୍ୟରେ ଅବଶ୍ୟ ସବୁଠାରୁ ବଡ଼, କିନ୍ତୁ ତାଙ୍କର ତୃତୀୟ ଭାଇ ଯାହାଙ୍କୁ କି ସେନାପତି ନାମରେ ଡାକୁଥିଲେ, ସେ ଥିଲେ ସବୁଠାରୁ ଶକ୍ତିଶାଳୀ ଏବଂ ଦ୍ୱିତୀୟ ଭାଇ ଯୁବରାଜ ସେନାପତିଙ୍କର ଅନୁଗାମୀ ଥିଲେ । ଏହି ଭାଇମାନେ ଦୁଇଦଳରେ ବିଭକ୍ତ ହୋଇ ପରସ୍ପର ବିବାଦରେ ଲିପ୍ତ ଥିଲେ । ତିନି ଭାଇ ମହାରାଜାଙ୍କୁ ସମର୍ଥନ କରୁଥିଲେ, କିନ୍ତୁ ଦ୍ୱିତୀୟ ଭ୍ରାତା ଯୁବରାଜଙ୍କ ସମେତ ଚାରିଜଣ ସେନାପତିଙ୍କର ସମର୍ଥକ ଥିଲେ । ସେପ୍ଟେମ୍ବର ୧୮୯୦ ମସିହାରେ ସେନାପତିଙ୍କର ଦୁଇଭାଇ ମହାରାଜାଙ୍କୁ ଆକ୍ରମଣ କରି ଗୁଳି ଚ଼ଳାଇଥିଲେ । ଏ ଆକ୍ରମଣରୁ ବର୍ତ୍ତିଯାଇ ମହାରାଜା ତୁରନ୍ତ ବ୍ରିଟିଶ ରେସିଡେନ୍‌ସୀ ପରିସରରେ ଆଶ୍ରୟ ନେଲେ ଏବଂ ସେଠାରେ ଗ୍ରୀମ୍‌ଉଡ୍‌ଙ୍କ ପ୍ରତିବାଦ ସତ୍ତ୍ୱେ ନିଜ ପଦରୁ ଇସ୍ତଫା ଦେଇ ଛତିଶ ଘଣ୍ଟା ମଧ୍ୟରେ ଅନ୍ୟ ତିନ ଭାଇଙ୍କ ସହିତ ରାଜ୍ୟ ଛାଡ଼ି ପଳାୟନ କଲେ । ଏହାପରେ ଇଂରେଜମାନେ ନିଷ୍ପତ୍ତି କଲେ ଯେ, ଦ୍ୱିତୀୟ ଭାଇ ଯୁବରାଜ ମହାରାଜା ପଦରେ ଆସୀନ ହେବେ ଓ ସେନାପତିଙ୍କୁ ରାଜ୍ୟରୁ ବିତାଡ଼ିତ କରାଯିବ । ଏହି ଘୋଷଣା କରିବା ପାଇଁ କ୍ୱିନଟନ୍ ଚାରିଶହ ଗୋର୍ଖା ସୈନ୍ୟଙ୍କୁ ନେଇ ମଣିପୁରରେ ପହଞ୍ଚିଲେ ଓ ମଣିପୁରର ସବୁ ରାଜପୁତ୍ରମାନଙ୍କୁ ରେସିଡେନ୍‌ସୀରେ ଅନୁଷ୍ଠିତ ଦରବାରରେ ଯୋଗଦେବା ପାଇଁ ଆମନ୍ତ୍ରଣ କଲେ । ନିର୍ଦ୍ଧାରିତ ସମୟରେ ମଣିପୁରର ଅବଶିଷ୍ଟ ରାଜପୁତ୍ରମାନେ ରେସିଡେନ୍‌ସୀ ଗେଟ୍‌ରେ ପହଞ୍ଚିଲା ବେଳକୁ କ୍ୱିନ୍‌ଟନ୍‌ଙ୍କ ଇଂରେଜୀ ଭାଷଣର ମଣିପୁରୀ ଅନୁବାଦ ସଂପୂର୍ଣ୍ଣ ହୋଇ ନଥିଲା । ଏଣୁ ଅତିଥିମାନଙ୍କୁ ଅପେକ୍ଷା କରିବାକୁ ପଡ଼ିଲା । ଏହି ଘଟଣା ସମସ୍ତଙ୍କ ମନରେ ସନ୍ଦେହ ସୃଷ୍ଟିକଲା । ବିଶେଷତଃ ଗୁର୍ଖା ସୈନ୍ୟମାନେ ରେସିଡେନ୍ସୀ ପରିସରର ଚତୁର୍ଦ୍ଦିଗରେ ଜଗିରହି ଥିବାର ଦେଖି ସନ୍ଦେହ ବଢ଼ିଥିଲା ଏବଂ ରାଜପୁତ୍ରମାନେ ଗେଟ୍‌ଛାଡ଼ି ପଳାୟନ କରିଥିଲେ । ଅନୁବାଦ ପ୍ରସ୍ତୁତି ସମାପ୍ତ ହେବା ପରେ ଗ୍ରୀମ୍‌ଉଡ୍ ନିଜେ ସେମାନଙ୍କୁ ନିମନ୍ତ୍ରଣ କରିବା ପାଇଁ ରାଜପ୍ରାସାଦକୁ ଗଲେ । କିନ୍ତୁ ଦରବାରକୁ ଆସିବା ପାଇଁ ସେନାପତି ପ୍ରସ୍ତୁତ ହେଲେ ନାହିଁ । ଏ ମଧ୍ୟରେ ସ୍ଥିର ହେଲା ପରଦିନ ବଡ଼ିସକାଳେ ସେନାପତି ରହୁଥିବା ବାସଗୃହ

ନିକଟରେ ପାଚେରିର କିଛି ଅଂଶ ଭାଙ୍ଗି ସୈନ୍ୟମାନେ ରାଜପ୍ରାସାଦରେ ପ୍ରବେଶ କରିବେ । ଅବଶ୍ୟ ପାଚେରିର କିଛି ଅଂଶ ଭଙ୍ଗାହେଲା, କିନ୍ତୁ ପ୍ରାସାଦ ମଧ୍ୟରେ ଥିବା ମଣିପୁରୀ ସୈନ୍ୟମାନେ ନିର୍ମମ ପ୍ରତିଆକ୍ରମଣ କଲେ । ଇଂରେଜମାନେ ଏହି ଅପ୍ରତ୍ୟାଶିତ ପରିସ୍ଥିତିରୁ ମୁକୁଳିବା ପାଇଁ ରେସିଡେନ୍‌ସୀକୁ ପ୍ରତ୍ୟାଗମନ କଲେ । କିନ୍ତୁ ସେତିକିରେ ମୁକ୍ତି ନଥିଲା । ମଣିପୁର ସୈନ୍ୟଙ୍କ ପାଖରେ ଯେଉଁ ଚାରିଟି କମାଣ ଥିଲା, ସେଥିରୁ ଗୋଳା ବର୍ଷଣ କରିବା ଫଳରେ ପଳାୟନ କରିବା ବ୍ୟତୀତ ଅନ୍ୟ ରାସ୍ତା ନଥିଲା । ତଥାପି ଗ୍ରୀମ୍‌ଉଡ୍, କର୍ଣ୍ଣେଲ୍ କ୍ୱିନ୍‌ଟନ୍ ଓ ଆଉ ଚାରିଜଣ କର୍ମଚାରୀ ଅସ୍ତ୍ରଚାଳନା ବନ୍ଦକରି ଆଲୋଚନା ପାଇଁ ରାଜପ୍ରାସାଦକୁ ଗଲେ । ଏଥିପୂର୍ବରୁ ଉଭୟ ପକ୍ଷର ସମ୍ମତି ଅନୁଯାୟୀ ସୈନ୍ୟଚାଳନା ନିଷିଦ୍ଧ କରାଯାଇଥିଲା । ମାତ୍ର ଗେଟ୍ ମଧ୍ୟରେ ପ୍ରବେଶ କଲାମାତ୍ରେ ଗ୍ରୀମ୍‌ଉଡ୍‌କୁ ଜଣେ ମଣିପୁରୀ ସୈନ୍ୟ ବର୍ଚ୍ଛା ମାରି ହତ୍ୟା କରିଥିଲା । ଏହାପରେ ଅନ୍ୟମାନଙ୍କୁ ମଧ୍ୟ ହତ୍ୟା କରାଯାଇଥିଲା । ଏ ସଂବାଦ ଭାରତ ସରକାରଙ୍କ ନିକଟରେ ପହଞ୍ଚିବା ମାତ୍ରେ ବର୍ମା ଓ ଆସାମରୁ କେତେକ ବଛା ବଛା ସୈନ୍ୟ ପଠାଇ ସେନାପତି ଓ ଯୁବରାଜଙ୍କୁ ଗିରଫ କରାଗଲା ଓ ବିଚାର ହୋଇ ୧୯ ଜଣ ମଣିପୁରୀଙ୍କୁ ଫାଶୀ ହୁକୁମ ହେଲା । କିନ୍ତୁ ଲାନ୍ସଡାଉନ୍ ବଡ଼ ସାବଧାନତାର ସହ କାର୍ଯ୍ୟ କରୁଥିଲେ । ସେ ନିର୍ଦ୍ଦୟ ଓ ପ୍ରତିହିଂସାପରାୟଣ ନ ହେବା ପାଇଁ ନିର୍ଦ୍ଦେଶ ଦେଲେ । ଏଣୁ ସେନାପତି ଓ ଯୁବରାଜଙ୍କ ସମେତ ଗ୍ରୀମ୍‌ଉଡ୍‌ଙ୍କ ହତ୍ୟାକାରୀ ସୈନ୍ୟଙ୍କୁ କେବଳ ଫାଶୀ ଦିଆଗଲା ।

ଲାନ୍ସଡାଉନ୍ ଦେଶୀୟ ରାଜାମାନଙ୍କ ସମ୍ପର୍କରେ ଖୁବ୍ ସତର୍କ ଥିଲେ । କେତେକ ରାଜା ଶାସନ ପ୍ରତି ଦୃଷ୍ଟି ନଦେଇ ମିଥ୍ୟା ବାହାନାରେ ୟୁରୋପ ଭ୍ରମଣ କରୁଥିଲେ । ସେମାନଙ୍କୁ ତାଗିଦ୍ କରି ଦିଆଗଲା । ଯେଉଁ ରାଜା ବା ଅମୀରମାନେ ପ୍ରଜାମାନଙ୍କ ପ୍ରତି ବର୍ବରୋଚିତ ଆଚରଣ ଓ ନିପୀଡ଼ନ କରୁଥିଲେ, ସେମାନଙ୍କୁ ମଧ୍ୟ ସତର୍କବାଣୀ ଶୁଣାଇ ଦିଆଯାଉଥିଲା । ଏହି ପର୍ଯ୍ୟାୟରେ ଖେଲାଟର ଖାନଙ୍କୁ ରାଜ୍ୟ ଶାସନରୁ ବିତାଡ଼ିତ କରାଯାଇଥିଲା । ମହାରାଜା କାଶ୍ମୀର ମଧ୍ୟ ସମଦଶା ଭୋଗିଥିଲେ । କିନ୍ତୁ ପରେ ଭାଇସରାୟ ଅନୁଭବ କଲେ ଯେ, ମହାରାଜା ଅତି ଦୁର୍ବଳ ଓ ନିର୍ବୋଧ ଥିଲେ ମଧ୍ୟ ବିଶ୍ୱାସଘାତକ ନଥିଲେ । ଏଣୁ ସେ ତାଙ୍କୁ ନିର୍ବାସନରୁ ଫେରାଇ ଆଣି ରାଜ୍ୟଶାସନ ପାଇଁ ନିଯୁକ୍ତ କାଉନ୍‌ସିଲ୍‌ର ସଭାପତି ମନୋନୀତ କଲେ । ଦେଶୀୟ ରାଜାମାନଙ୍କ

ସହିତ ଲାନ୍ସଡାଉନ୍‌ଙ୍କର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଥିଲା ରାଜାମାନଙ୍କର ବଡ଼ ବଡ଼ ସୈନ୍ୟବାହିନୀକୁ ଭାଙ୍ଗି ଅବଶିଷ୍ଟ ସୈନ୍ୟଙ୍କୁ ବ୍ରିଟିଶ୍ ସାମରିକ ତାଲିମ୍ ଦେଇ, ସୁସଂଗଠିତ ଓ ଶୃଙ୍ଖଳିତ କରିବା । ଏହି ପର୍ଯ୍ୟାୟରେ ଦେଖାଗଲା ଯେ, ପ୍ରଥମ ମହାଯୁଦ୍ଧ ବେଳକୁ ଦେଶୀୟ ରାଜ୍ୟଗୁଡ଼ିକରେ ୨୨,୦୦୦ ତାଲିମ୍‌ପ୍ରାପ୍ତ ସୈନ୍ୟ ଅଛନ୍ତି, ଯେଉଁମାନେ କି ମହାଯୁଦ୍ଧରେ ଶତ୍ରୁପକ୍ଷର ସମକକ୍ଷ ହୋଇ ଲଢ଼ିପାରିବେ ।

ଭାରତର ଉତ୍ତର ଓ ପୂର୍ବ ସୀମାନ୍ତରେ ସୀମାରେଖା ନିର୍ଣ୍ଣୟ କରିବା ଲାନ୍ସଡାଉନ୍‌ଙ୍କର ଅନ୍ୟ ଏକ କୀର୍ତ୍ତି । ସେ ଏବଂ ତାଙ୍କର ବୈଦେଶିକ ସେକ୍ରେଟେରୀ ଆଶଙ୍କା କରୁଥିଲେ ଯେ, ଦିନେ ନା ଦିନେ ହିମାଳୟ ପାର୍ଶ୍ୱବର୍ତ୍ତୀ ଅଞ୍ଚଳକୁ ନେଇ ଚୀନ୍ ସହିତ ବିବାଦ ହେବ । ଏଣେ ଚୀନ୍ ସରକାର ଆଶା କରୁଥିଲେ ଯେ ନେପାଳ, ଭୁଟାନ୍ ଉପରେ ତିବ୍‌ବତ୍‌ର ସାର୍ବଭୌମତ୍ୱ ଭାରତ ସ୍ୱୀକାର ନକରୁ । ବିଶେଷତଃ ତିବ୍‌ବତ୍ ଉପରେ ସେମାନଙ୍କର ଆଧିପତ୍ୟକୁ ଇଂରେଜମାନେ ସ୍ୱୀକାର କରନ୍ତୁ ବୋଲି ଚୀନା ସରକାର ଉଦ୍‌ଗ୍ରୀବ ଥିଲେ । ସିକିମ୍ ବର୍ତ୍ତମାନ ଭାରତର ଅନ୍ତର୍ଭୁକ୍ତ ଏବଂ ସିକିମ୍‌ର ରାଜାଙ୍କୁ ବିତାଡ଼ିତ କରାଯାଇ ସେଠାରେ ଗୋଟିଏ ଗଣତାନ୍ତ୍ରିକ ପ୍ରାଦେଶିକ ସରକାର କାର୍ଯ୍ୟ କରୁଛି । ସେ କାଳରେ ସିକିମ୍ ଏକ ସ୍ୱାଧୀନ ରାଜ୍ୟ ବୋଲି ଦାବି କରୁଥିଲା ଓ ତିବ୍‌ବତ୍‌ର ଜଣେ ରାଜକୁମାରୀ ସିକିମ୍‌ର ମହାରାଣୀ ଥିଲେ । ଏଣୁ ତିବ୍‌ବତ୍ ସହିତ ସଦ୍‌ଭାବ ରକ୍ଷା କରିବା ପାଇଁ ସିକିମ୍ ସରକାର ନିରନ୍ତର ଆଗ୍ରହୀ ଥିଲେ । କିନ୍ତୁ ସ୍ଥାନୀୟ ଅଧିବାସୀମାନେ ରାଜାଙ୍କର ଏହି ମନୋଭାବ ଗ୍ରହଣ କରୁନଥିଲେ । ତିବ୍‌ବତ୍ ସରକାର ୧୮୮୬ ମସିହାରେ ସିକିମ୍‌ର ଅଭ୍ୟନ୍ତରକୁ ପ୍ରବେଶ କରି ନିଜ ସୀମାର ବାର ମାଇଲ୍ ଦୂରରେ ଏକ ଦୁର୍ଗ ନିର୍ମାଣ କରିଥିଲେ । ଚତୁର ଲାନ୍ସଡାଉନ୍ ପ୍ରଥମେ ଚୀନ୍ ଜରିଆରେ ତିବ୍‌ବତ୍ ଉପରେ ପ୍ରଭାବ ପକାଇ ସିକିମ୍‌ରେ ନିର୍ମିତ ଦୁର୍ଗକୁ ଭାଙ୍ଗିଦେବା ପାଇଁ ଉଦ୍ୟମ କଲେ । କିନ୍ତୁ ଚୀନ୍ ଏ ଉଦ୍ୟମରେ ସଫଳ ହେଲାନାହିଁ । ଚୀନ୍ ଅବଶ୍ୟ ଇଂରେଜମାନଙ୍କର ପ୍ରଚେଷ୍ଟାକୁ ତାରିଫ୍ କରୁଥିଲେ । ପରିଶେଷରେ ସେହି ଦୁର୍ଗକୁ ଭାଙ୍ଗି ତିବ୍‌ବତ୍‌ର ଲାମା ସରକାରଙ୍କୁ ସିକିମ୍‌ରୁ ବିତାଡ଼ିତ କରାଗଲା । ୧୮୯୦ ମସିହାରେ ଗୋଟିଏ ପ୍ରତିନିଧିମୂଳକ ସଭାରେ ସିକିମ୍ ଉପରେ ଇଂରେଜମାନଙ୍କର କର୍ତ୍ତୃତ୍ୱ ରହିବ ବୋଲି ପକ୍ଷମାନେ ସମ୍ମତ ହେଲେ । ସିକିମ୍ ଉପରେ ଚୀନ୍‌ର ଯେ କୌଣସି ପ୍ରକାର ଆଧିପତ୍ୟ ରହିବ ନାହିଁ, ଏହା ମଧ୍ୟ ସେହି ସଭାରେ ଗୃହୀତ ହେଲା ।

ଉତ୍ତର ପଶ୍ଚିମରେ ଆଫଗାନିସ୍ଥାନର ରୁଷ୍ ସହିତ ସୀମା ବିବାଦର ସମାଧାନ ଲାନ୍ସଡାଉନ୍‌ଙ୍କର ଅନ୍ୟ ଏକ କୃତିତ୍ୱ । ପ୍ରଥମେ ଆଫଗାନିସ୍ଥାନର ଅମୀର ଏ ପ୍ରକାର ସମାଧାନରେ ଆଗ୍ରହୀ ନଥିଲେ । କିନ୍ତୁ ପରେ ୧୮୯୩ ମସିହାରେ ବୈଦେଶିକ ସଚିବ ସାର୍ ମୋର୍ଟିମର ଡୁରାଣ୍ଡ ଯେତେବେଳେ ଗୋଟିଏ ଆଲୋଚନାକାରୀ ଦଳଙ୍କୁ ସାଙ୍ଗରେ ଧରି କାବୁଲ୍‌ରେ ପହଞ୍ଚିଲେ, ଅମୀର ଅବଦୁର ରହମାନ ଆଲୋଚନାରେ ପୂର୍ଣ୍ଣ ସହଯୋଗ କଲେ । ଏଥିସହିତ ଆଫଗାନିସ୍ଥାନ ଓ ଭାରତ ମଧ୍ୟରେ ସୀମା ନିର୍ଦ୍ଧାରଣ ଚୁକ୍ତି ମଧ୍ୟ ସମ୍ପାଦିତ ହେଲା । ଲାନ୍ସଡାଉନ୍ ଡୁରାଣ୍ଡଙ୍କର କୂଟନୈତିକ ଚତୁରୀ ଓ ଅମୀରଙ୍କର ସହଯୋଗିତାରେ ପ୍ରୀତ ହୋଇ ଅମୀରଙ୍କର ବାର୍ଷିକ ସାହାଯ୍ୟ ବାର ଲକ୍ଷରୁ ଅଠର ଲକ୍ଷ ଟଙ୍କାକୁ ବଢ଼ାଇ ଦେଲେ । ଏହି ଚୁକ୍ତି ନଭେମ୍ବର ୧୮୯୩ରେ ସମ୍ପାଦିତ ହୋଇଥିଲା ଓ ୧୮୯୪ ଜାନୁଆରୀ ମାସରେ ସେ ଭାରତ ଛାଡ଼ି ଲଣ୍ଡନ ପ୍ରତ୍ୟାଗମନ କଲେ ।



# ଦିଗ୍‌ବଳୟରେ କୃଷ୍ଣମେଘ

ଲାନ୍ସଡାଉନ୍‌ଙ୍କ ପରେ କିଏ ଭାରତର ଭାଇସରାୟ ହେବ, ତାହା ବିଧିବଦ୍ଧ ଭାବରେ ସ୍ଥିର ହୋଇପାରୁନଥାଏ । ପ୍ରଥମେ ସାର୍ ହେନରୀ ନର୍ମାନ୍‌ଙ୍କୁ ଏହି ପଦବୀ ଅର୍ପଣ କରାଯାଇଥିଲା । କିନ୍ତୁ ବାର୍ଦ୍ଧକ୍ୟ ହେତୁ ସେ ତାହା ଗ୍ରହଣ କଲେ ନାହିଁ । ଶେଷରେ ହାତୀ କଳସ ଢାଳିଲା ଜଣେ ଦୁର୍ବଳ, ନିର୍ବୋଧ ଓ ଅକର୍ମଣ୍ୟ ଲର୍ଡ଼ ଏଲ୍‌ଗିନ୍‌ଙ୍କ ଉପରେ । ଏଲ୍‌ଗିନ୍ ବୋଧହୁଏ ନିଜର ଦୁର୍ବଳତା ବିଷୟରେ ସଚେତନ ଥିଲେ, ସେଥିପାଇଁ ପ୍ରଥମରୁ ଏ ପଦ ଗ୍ରହଣ କରିବା ପାଇଁ ଆଗ୍ରହୀ ନଥିଲେ । କିନ୍ତୁ ବନ୍ଧୁ ଲର୍ଡ଼ ରୋଜବେରୀଙ୍କ ପ୍ରରୋଚନାରେ ସେ ଭାରତ ଆସିବାକୁ ସମ୍ମତ ହେଲେ ।

ଭାରତରେ ପହଞ୍ଚିବା ପରେପରେ ତାଙ୍କର ଦୁର୍ବଳତା ପ୍ରକାଶିତ ହେଲା । ଏଥିପୂର୍ବରୁ ଲାଙ୍କାଶାୟାରର ବସ୍ତ୍ର ପ୍ରସ୍ତୁତକାରୀମାନଙ୍କ ପ୍ରଭାବରେ ଭାରତ ସରକାର ବସ୍ତ୍ର ଆମଦାନୀ ଉପରେ ଶୁଳ୍କ ଉଠାଇ ଦେଇଥିଲେ । ଲାନ୍ସଡାଉନ୍‌ଙ୍କ ସମୟରେ ନିଷ୍ପତ୍ତି ହେଲା ଯେ, ବିଦେଶରୁ ଆମଦାନୀ କରାଯାଉଥିବା ସବୁ ପ୍ରକାର ଦ୍ରବ୍ୟ ଉପରେ ଶତକଡ଼ା ପାଞ୍ଚଭାଗ ଶୁଳ୍କ ଆଦାୟ ହେବ । ଏହି ନିଷ୍ପତ୍ତି ବିରୁଦ୍ଧରେ ଲାଙ୍କାଶାୟାରର ଲୁଗାକଳ ମାଲିକମାନେ ତୁମୁଳ ଆନ୍ଦୋଳନ ଆରମ୍ଭ କଲେ । ସମସ୍ତେ ଆଶା କରୁଥିଲେ ଯେ, ଏଲ୍‌ଗିନ୍ ଦୃଢ଼ ହେଲେ ବ୍ରିଟିଶ୍ ସରକାରଙ୍କ ଲିବରାଲ୍ ପ୍ରଧାନମନ୍ତ୍ରୀ ଗ୍ଲାଡ୍‌ଷ୍ଟୋନ୍ ଅବଶ୍ୟ ଏ ଶୁଳ୍କକୁ ଲାଗୁ କରାଇବେ । କିନ୍ତୁ ଏଲ୍‌ଗିନ୍ ସଂପୂର୍ଣ୍ଣ ଆତ୍ମସମର୍ପଣ କଲେ । ବସ୍ତ୍ର ଉପରେ ଆମଦାନୀ ଶୁଳ୍କ ଲାଗୁ ହେଲା ନାହିଁ । ଏଲ୍‌ଗିନ୍‌ଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର ସଭ୍ୟମାନଙ୍କର ବଳିଷ୍ଠ ଯୁକ୍ତିଥିଲା ଯେ, ଭାରତର ଅର୍ଥନୀତିକୁ ଲାଙ୍କାଶାୟାର ନିକଟରେ ଅର୍ପଣ କରାଯାଉଛି । ଏହାର କୌଣସି ମୂଲ୍ୟ ରହିଲା ନାହିଁ । ଏଲ୍‌ଗିନ୍ ବରଂ ନିଜ ଆତ୍ମସମର୍ପଣରେ ଦୃଢ଼ ରହିଲେ ଓ ସେହେତୁ ଭାରତର ଅଜସ୍ର କ୍ଷତି ହେଲା ।

ଭାରତର ଦୁର୍ବିପାକ ଅନ୍ୟ ବହୁ କ୍ଷେତ୍ରରେ ପ୍ରକାଶିତ ହେଲା । ୧୮୯୫ ମସିହାରେ ମୌସୁମୀ ଦୁର୍ବଳ ଥିଲା, ତା'ର ପର ଦୁଇବର୍ଷ ମୌସୁମୀ ପ୍ରବାହିତ ହେଲାନାହିଁ । ଫଳରେ ଦେଶବ୍ୟାପୀ ବିଶେଷତଃ ଯୁକ୍ତ ପ୍ରଦେଶ, ମଧ୍ୟ ପ୍ରଦେଶ, ବିହାର, ବମ୍ବେ ଓ ପଞ୍ଜାବର କେତେକ ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଲା । ୧୮୯୯ ଓ ୧୯୦୦ ମସିହାରେ ଏଲଗିନ୍‌ଙ୍କ ପରେ ମଧ୍ୟ ଏ ଦୁର୍ଭିକ୍ଷ ଅବସ୍ଥା ଗ୍ଲଲୁ ରହିଲା ଏବଂ ମଧ୍ୟ ଭାରତ, ପଶ୍ଚିମ ଭାରତ ଓ ଗୁଜୁରାଟର ଉର୍ବର ଅଞ୍ଚଳରେ ମଧ୍ୟ ମରୁଡ଼ିରେ ବହୁ ଲୋକ ପ୍ରାଣ ହରାଇଲେ । ୧୮୯୬ ମସିହାରେ ବୁବୋନିକ୍ ପ୍ଲେଗ୍‌ରେ ବମ୍ବେ ଆକ୍ରାନ୍ତ ହେଲା । ସେ କାଳରେ ଭେଷଜ ବିଜ୍ଞାନ ଏତେ ଉନ୍ନତ ନଥିଲା ଏବଂ ମୂଷାମାନଙ୍କର ପ୍ରାବଲ୍ୟ ହେତୁ ପ୍ଲେଗ୍ ରୋଗ କିପରି ବ୍ୟାପେ, ସେ ବିଷୟରେ ଚିକିତ୍ସକମାନେ ଥିଲେ ଅଜ୍ଞ । ବମ୍ବେ ସହରରୁ ବହୁ ଲୋକ କଳକାରଖାନା ଛାଡ଼ି ଗ୍ରାମାଞ୍ଚଳକୁ ପଳାୟନ କଲେ । କିନ୍ତୁ ସାଙ୍ଗରେ ନେଇଥିଲେ ମାରାତ୍ମକ ପ୍ଲେଗ୍‌ର ଜୀବାଣୁ ଓ ପୁନାର ବହୁ ଲୋକ ଏଥିରେ ଆକ୍ରାନ୍ତ ହେଲେ । ଏଲଗିନ୍‌ଙ୍କ ସରକାରକୁ ମୂଷା ଅନ୍ୱେଷଣ ପାଇଁ ପୁନାର ଅଧିବାସୀମାନଙ୍କ ଉପରେ ପୋଲିସ୍ ନିର୍ଯ୍ୟାତନା ଦେବା ଛଡ଼ା ଅନ୍ୟ କୌଣସି ଉପାୟ ଜଣା ନଥିଲା । ଏହି ନିର୍ଯ୍ୟାତନା ବିରୁଦ୍ଧରେ ବାଳ ଗଙ୍ଗାଧର ତିଳକଙ୍କର "କେଶରୀ" ପତ୍ରିକାରେ ବିରୋଧାତ୍ମକ ପ୍ରତିକ୍ରିୟା ପ୍ରକାଶ ପାଇଲା । କିଛିଦିନ ପରେ ପ୍ଲେଗ୍ ପ୍ରତିଷେଧକ ବ୍ୟବସ୍ଥାରେ ନିଯୁକ୍ତ ଦୁଇଜଣ ଇଂରେଜ କର୍ମଚାରୀ ଅଜଣା ଆତତାୟୀଙ୍କ ଗୁଳିରେ ନିହତ ହେଲେ । ବମ୍ବେ ସରକାର ଆରମ୍ଭ କଲେ ଅନ୍ଧାଧୁନିଆ ଦମନଲୀଳା । ତିଳକଙ୍କର ସହକର୍ମୀ (ନାଟୁଭାଇ)ଙ୍କୁ ଗିରଫ କରାଯାଇ ପୁନାରେ ଅଟକ ରଖାଗଲା ଓ ରାଜଦ୍ରୋହ ଅଭିଯୋଗରେ "କେଶରୀ" ବିରୁଦ୍ଧରେ ମୋକଦ୍ଦମା ଆଗତ କରି ତିଳକଙ୍କୁ ଅଠର ମାସ କାରାଦଣ୍ଡ ଦିଆଗଲା । ଏହି ହତ୍ୟାକାଣ୍ଡ ସହିତ ତିଳକ ବା ତାଙ୍କ ସହଯୋଗୀଙ୍କର ସମ୍ପର୍କର କୌଣସି ପ୍ରମାଣ ନଥିଲେ ମଧ୍ୟ, ଇଂରେଜମାନଙ୍କର ନ୍ୟାୟଦଣ୍ଡରେ ସେମାନେ ଦଣ୍ଡିତ ହେଲେ । ତିଳକଙ୍କର ଦଣ୍ଡ ବିଧାନ ବିରୁଦ୍ଧରେ ଏକ ବିରାଟ ଷଡ଼ଯନ୍ତ୍ର କାର୍ଯ୍ୟ କରୁଥିଲା । ତିଳକ ଥିଲେ ମହାରାଷ୍ଟ୍ରର ରାଜା ଶିବାଜୀଙ୍କର ପ୍ରଧାନ ଭକ୍ତ ଓ ଅନୁଗାମୀ । ଏଣୁ ତାଙ୍କ ବିରୁଦ୍ଧରେ ଇଂରେଜ ଓ ମୁସଲମାନମାନେ ଏକତ୍ରିତ ହୋଇଥିଲେ । ହିନ୍ଦୁମାନଙ୍କ ବିରୁଦ୍ଧରେ ମୁସଲମାନମାନଙ୍କୁ ପ୍ରରୋଚିତ କରିବାର ପ୍ରକ୍ରିୟା ଇଂରେଜମାନେ ବହୁଦିନୁ ଆରମ୍ଭ କରିଦେଇଥିଲେ । ସାର୍ ସୟଦ୍ ଅହମ୍ମଦ ଖାଁ ଥିଲେ ଶାସକ ଶ୍ରେଣୀର ପ୍ରଧାନ ଆୟୁଧ । ସିପାହୀ ବିଦ୍ରୋହ ପରଠାରୁ

ନର୍ଥ ବ୍ରୁକ୍ ଓ ରିପନ୍‌ଙ୍କ ପରି ଜଣେ ଦୁଇଜଣଙ୍କୁ ବାଦ୍‌ଦେଲେ, ଅନ୍ୟ ସବୁ ଭାଇସରାୟ ଏହି ଷଡ଼ଯନ୍ତ୍ରର ପୁରୋଧା ଥିଲେ । ଏପରିକି, ଏହି ଷଡ଼ଯନ୍ତ୍ର ଫଳରେ ଭାରତ ବିଭାଜିତ ହେଲା ଏବଂ ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେବା ପରେ ମଧ୍ୟ ତା'ର ସମାପ୍ତି ଘଟି ନଥିଲା । ଇଂରେଜମାନେ ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେବା ପରେ ମଧ୍ୟ କାଶ୍ମୀର ବ୍ୟାପାର ଉପରେ ଜାତିସଂଘରେ ହିନ୍ଦୁ- ମୁସଲମାନ ବିରୋଧୀ ଜୁଆଖେଳ ଚାଲୁ ରଖିଥିଲେ ଏବଂ ଏବେ ମଧ୍ୟ ସେ ଖେଳ ଚାଲୁ ରହିଛି ।

ଲର୍ଡ଼ ଲାନ୍ସଡାଉନ୍‌ଙ୍କ ସମୟରେ ଉତ୍ତର-ପଶ୍ଚିମ ଅଞ୍ଚଳରେ ଅନେକଟା ଶାନ୍ତି ଫେରି ଆସିଥିଲା । ସାର୍ ମୋର୍ଟିମର ଡୁରାଣ୍ଡଙ୍କ ସହାୟତାରେ ଆଫଗାନିସ୍ଥାନ ରୁଷିଆର ସୀମାନ୍ତ ଓ ଭାରତ ଆଫଗାନିସ୍ଥାନର ସୀମାରେଖା ପ୍ରସ୍ତୁତ ହୋଇଥିଲା ଏବଂ ଦୁଇଜଣ କମିସନର ବସି ଡୁରାଣ୍ଡ ରେଖାକୁ ପ୍ରସ୍ତୁତ କରିଥିଲେ । କିନ୍ତୁ ଲର୍ଡ଼ ଏଲ୍‌ଗିନ୍‌ଙ୍କ ସମୟରେ ଏହି ଡୁରାଣ୍ଡ ସୀମାରେଖାକୁ ନିଶ୍ଚିହ୍ନ କରିବା ପାଇଁ ଉପଜାତୀୟ ଲୋକଙ୍କ ତରଫରୁ ଉଦ୍ୟମ ହେଲା । ମଝିରେ ମଝିରେ ଇଂରେଜମାନେ ଏହି ଉପଜାତି ଲୋକଙ୍କ ଉପରେ ଯେଉଁ ଆକ୍ରମଣ କରୁଥିଲେ, ତା'ର ପ୍ରତିଶୋଧ ନେବା ପାଇଁ ସେମାନଙ୍କ ତରଫରୁ ପ୍ରଚେଷ୍ଟା ଚାଲିଥିଲା । ଯାହାହେଉ ବ୍ରିଟିଶ୍ କ୍ଷମତା ଜାହିର କରିବା ପାଇଁ ଅନେକଥର ଉପଜାତିମାନଙ୍କ ଉପରେ ଆକ୍ରମଣ ହୋଇଥିଲା । ମହମ୍ମଦ ଓ ଅଫ୍ରିଦିମାନଙ୍କ ସହିତ ଯୁଦ୍ଧରେ ପ୍ରାୟ ୩୫,୦୦୦ ଇଂରେଜ ସୈନ୍ୟ ବ୍ୟାପୃତ ରହିଥିଲେ । ଏ ମଧ୍ୟରେ ଏଲିଗିନ୍‌ଙ୍କର କାର୍ଯ୍ୟକାଳ ଶେଷ ହେଲା ଏବଂ ଆଫଗାନ ସୀମାରୁ କୃଷ୍ଣମେଘର ଅପସାରଣ ଦାୟିତ୍ୱ ଲର୍ଡ଼ କର୍ଜନଙ୍କୁ ନେବାକୁ ହେଲା ।



# ସାମ୍ରାଜ୍ୟବାଦର ଅବତାର ଲର୍ଡ୍ କର୍ଜନ୍

ସାମ୍ରାଜ୍ୟବାଦର ସ୍ୱର୍ଣ୍ଣମୁକୁଟ ପିନ୍ଧି ସ୍ୱେଚ୍ଛାଚାରର ଅବତାର ରୂପେ ଜାନୁଆରୀ ୧୮୯୯ ମସିହାରେ ଲର୍ଡ୍ କର୍ଜନ୍ ଭାରତର ଭାଇସ୍‌ରାୟ ପଦରେ ଅବସ୍ଥାପିତ ହେଲେ । ତାଙ୍କର ପୂର୍ବତନ ପଦାଧିକାରୀ ଏଲ୍‌ଗିନ୍‌ଙ୍କଠାରୁ ସେ ଥିଲେ ଶତଗୁଣରେ ବୁଦ୍ଧିମାନ, ଜ୍ଞାନୀ, ସାହସୀ, ଚତୁର ଓ ସୁଦକ୍ଷ ପ୍ରଶାସକ । କିନ୍ତୁ ତାଙ୍କର ଚିନ୍ତାଧାରା ଓ କାର୍ଯ୍ୟକଳାପ ଏପରି ଥିଲା ଯେ, ସାତବର୍ଷର କାର୍ଯ୍ୟକାଳ ମଧ୍ୟରେ ତାଙ୍କର ସବୁ ଅନିଚ୍ଛାସତ୍ତ୍ୱେ, ଭାରତରେ ଜାତୀୟତାର ଉନ୍ମେଷ ପୂର୍ଣ୍ଣ ପ୍ରସ୍ଫୁଟିତ ପୁଷ୍ପରେ ପରିଣତ ହେଲା । ସାମ୍ରାଜ୍ୟବାଦର ଜୟଜୟକାର କରି ଭାରତୀୟମାନଙ୍କୁ ଅବଜ୍ଞା କରିବାର ପ୍ରତିଫଳ ହେଲା ଇଂରେଜଙ୍କ ବିରୁଦ୍ଧରେ ଭାରତବାସୀଙ୍କର ସମ୍ମିଳିତ ଆନ୍ଦୋଳନ ।

ସିପାହୀ ବିଦ୍ରୋହ ପୂର୍ବରୁ ଏକା ଲର୍ଡ୍ ଡେଲ୍‌ହାଉସୀ ୩୫ ବର୍ଷ ବୟସରେ ଗଭର୍ଣ୍ଣର ଜେନେରାଲ୍ ନିଯୁକ୍ତ ହୋଇଥିଲେ । ତାଙ୍କପରେ ଲର୍ଡ୍ କର୍ଜନ ୪୦ ବର୍ଷ ପୂର୍ବରୁ ଭାଇସ୍‌ରାୟ ପଦପାଇଁ ଯୋଗ୍ୟ ବିବେଚିତ ହେଲେ । ସାର୍ ଜନ୍ ଲରେନ୍‌ସ ସିପାହୀ ବିଦ୍ରୋହ ପରେ ଭାଇସରାୟ ନିଯୁକ୍ତ ହୋଇଥିଲେ ବିପୁଳ ଅଭିଜ୍ଞତାର ବାହକ ରୂପେ । କିନ୍ତୁ ଲର୍ଡ୍ କର୍ଜନ୍ ଅଳ୍ପ ବୟସରୁ ଚୀନ୍, ଜାପାନ୍, ସିଆମ୍, ପାରସ୍ୟ, ଆଫଗାନିସ୍ଥାନ ଓ ରୁଷିଆ ଅଧିକୃତ ତୁର୍କୀସ୍ଥାନ ଆଦି ପୂର୍ବାଞ୍ଚଳର ବହୁଦେଶ ପରିଭ୍ରମଣ କରିଥିଲେ । ଭାରତକୁ ମଧ୍ୟ ସେ ତିନିଥର ଆସି ଉତ୍ତର ଭାରତର କାଶ୍ମୀର ଓ ଚିତ୍ରାଲ ଆଦି ବହୁ ଅଞ୍ଚଳ ପରିଦର୍ଶନ କରିଥିଲେ । ଏହି ଭ୍ରମଣ ମଧ୍ୟରେ ସେ ହାଉସ୍ ଅଫ୍ କମନ୍‌ସର ସଭ୍ୟ ଭାବରେ ନିଜକୁ ରାଜକାର୍ଯ୍ୟ ପାଇଁ ପ୍ରସ୍ତୁତ କରୁଥିଲେ । ୧୮୯୧ ମସିହାରେ ସେ ବର୍ଷକ ପାଇଁ ଭାରତ ବିଭାଗର ଅଣ୍ଡର-ସେକ୍ରେଟେରୀ ଥିଲେ ଏବଂ ୧୮୯୫ ମସିହାରେ କଞ୍ଜରଭେଟିଭ୍‌ମାନେ କ୍ଷମତାକୁ ଫେରିଲା ପରେ ସେ ସାଲିସ୍‌ବେରୀଙ୍କ ଅଧୀନରେ ବୈଦେଶିକ ବିଭାଗର ଅଣ୍ଡର-ସେକ୍ରେଟେରୀ କାର୍ଯ୍ୟ ସମାପନ କରିଥିଲେ । ଏହି ସବୁ ଅଭିଜ୍ଞତାର ଭିତ୍ତିରେ ସେ ନିଜକୁ ଜଣେ ସୁଦକ୍ଷ ଶାସକ ରୂପେ ଉପସ୍ଥାପିତ କରିଥିଲେ । ତାଙ୍କ ମତରେ ଈଶ୍ୱରଙ୍କ ଆଶୀର୍ବାଦରୁ

ଇଂରେଜମାନେ ଭାରତ ଦଖଲ କରିଛନ୍ତି ଏବଂ ଭାରତୀୟମାନଙ୍କୁ ଉନ୍ନତି କରିବାକୁ ହେଲେ ଇଂରେଜମାନଙ୍କର ବାହୁଚ୍ଛାୟା ତଳେ ହିଁ କରିବାକୁ ହେବ । ୧୯୦୧ ମସିହାରେ ବାଲଫୋରଙ୍କୁ ଲିଖିତ ଏକ ପତ୍ରରେ ସେ ଲେଖିଥିଲେ, "ଯେତେଦିନ ପର୍ଯ୍ୟନ୍ତ ଆମେ ଭାରତରେ ଶାସନ କରିବୁ, ସେପର୍ଯ୍ୟନ୍ତ ଆମକୁ ବିଶ୍ୱର ସବୁଠାରୁ ଶକ୍ତିଶାଳୀ ରାଷ୍ଟ୍ରଭାବରେ ବିବେଚନା କରାଯିବ । ଭାରତ ଯେଉଁଦିନ ଆମ ଶିକୁଳିରୁ ଖସିଯିବ ସେଦିନ ଆମେ ହେବୁ ଏକ ତୃତୀୟ ଶ୍ରେଣୀର ଶକ୍ତି ।" ସେ ସେଥିପାଇଁ କହୁଥିଲେ ଭାରତର ଭାଗ୍ୟନିର୍ଣ୍ଣୟର ଚାବିକାଠି ଲଣ୍ଡନରେ ନାହିଁ କିମ୍ବା ହାଉସ୍ ଅଫ୍ କମନ୍ସରେ ନାହିଁ, ଚାବିକାଠି ଅଛି ଭାରତରେ କାର୍ଯ୍ୟରତ ଉଚ୍ଚ ଶ୍ରେଣୀର କର୍ମଚାରୀମାନଙ୍କର ଟେବୁଲର ଡ୍ର ମଧ୍ୟରେ ।

କର୍ଜନ ଥିଲେ ଜଣେ ଦକ୍ଷ ପ୍ରଶାସକ । ଯେଉଁ ଦାୟିତ୍ୱ ନେଉଥିଲେ ଯେକୌଣସି ପ୍ରକାରେ ତାକୁ ସଫଳତାର ସହିତ ସମାପ୍ତ କରୁଥିଲେ । ତାଙ୍କର ଦାୟିତ୍ୱବୋଧ ଥିଲା ଦୁର୍ଦ୍ଦମନୀୟ ଏବଂ ଦାୟିତ୍ୱକୁ ପରିପୂର୍ଣ୍ଣ କରିବାରେ ସେ ଥିଲେ ବିଶେଷ ଆଗ୍ରହୀ । କିନ୍ତୁ ସାଧାରଣ ଲୋକଙ୍କର ସେ ଶ୍ରଦ୍ଧାଭାଜନ ନଥିଲେ । ଆତ୍ମ ବଡ଼ିମାର ଡିଣ୍ଡିମ ପିଟିବାରେ ସେ ଥିଲେ ଧୁରନ୍ଧର । ତାଙ୍କର ଏହି ସଦ୍‌ଭାବ ରହିତ ବ୍ୟବହାର ହେତୁ ସେ କର୍ମଚାରୀମାନଙ୍କ ନିକଟରେ ଥିଲେ ଅତି ଅପ୍ରିୟ ।

ଦାୟିତ୍ୱ ଗ୍ରହଣ କରିବାର ଅଳ୍ପଦିନ ମଧ୍ୟରେ ଉତ୍ତର-ପଶ୍ଚିମ ସୀମାନ୍ତର ସମସ୍ୟା କେତେକାଂଶରେ ବିପଦପୂର୍ଣ୍ଣ ଆକାର ଧାରଣ କଲା । ସୀମାନ୍ତରେ ଉପଜାତିର ଲୋକଙ୍କ ବିରୁଦ୍ଧରେ ଚାଲିଥିବା ସଂଘର୍ଷ ଶିଥିଳ ହୋଇଯାଇଥିଲେ ମଧ୍ୟ, ଟ୍ରାଇବାଲମାନଙ୍କ ଆକ୍ରମଣ ସମ୍ପୂର୍ଣ୍ଣ ବନ୍ଦ ହୋଇନଥିଲା । ଏଣେ ଭାରତର ସୀମାରେଖା ବାହାରେ ଏହି ଉପଜାତୀୟ ଅଞ୍ଚଳରେ ୧୦,୦୦୦ରୁ ଅଧିକ ବ୍ରିଟିଶ ସୈନ୍ୟ ରହିଥିଲେ ଏବଂ ଦଳ ଦଳ ହୋଇ ସେମାନେ ଗୋଟିଏ ଲେଖାଏଁ କ୍ଷୁଦ୍ର ଦୁର୍ଗରେ ବସତି ବାନ୍ଧିଥିଲେ । ଏଥିପୂର୍ବରୁ ଏଲ୍‌ଗିନ୍ ପ୍ରସ୍ତାବ କରିଥିଲେ ଯେ, ଏହି ସୈନ୍ୟମାନେ ରହିବା ପାଇଁ ସ୍ଥାୟୀ ଭାବରେ କେତେଗୁଡ଼ିଏ ଦୃଢ଼ ସୈନ୍ୟଛାଉଣୀ ତିଆରି କରିବେ । କିନ୍ତୁ ଲଣ୍ଡନ ସରକାର ଦୁର୍ଗ ନିର୍ମାଣରେ ବା ଉପଜାତିମାନଙ୍କ ଗତାନୁଗତିକ ଜୀବନଧାରାରେ ହସ୍ତକ୍ଷେପ କରିବାକୁ ସମ୍ମତ ହେଲେ ନାହିଁ । କର୍ଜନ ଖାଇବରପାସ ଉତ୍ତରରେ ଥିବା ଚିତ୍ରାଲ ଅଞ୍ଚଳକୁ ବ୍ରିଟିଶ ସରକାରଙ୍କ କର୍ତ୍ତୃତ୍ୱରେ ରଖିବାକୁ ଇଚ୍ଛୁକ ଥିଲେ । ଏଣୁ ସେ ପେଶାୱାର

ନିକଟରୁ ଚିତ୍ରାଲ ପର୍ଯ୍ୟନ୍ତ ଏକ ରାସ୍ତା ନିର୍ମାଣ କରିବା ପାଇଁ ପ୍ରସ୍ତୁତ ହେଲେ ଓ ଖାଇବର ଗିରିପଥ ଯେପରି ଉତ୍ତର-ପଶ୍ଚିମାଞ୍ଚଳ ସହିତ ବ୍ୟବସାୟ ବାଣିଜ୍ୟ ପାଇଁ ଉନ୍ମୁକ୍ତ ରହେ, ତା'ର ବ୍ୟବସ୍ଥା କରିବାକୁ ଉଦ୍ୟମ କଲେ । ପାର୍ଲାମେଣ୍ଟକୁ ସନ୍ତୁଷ୍ଟ କରିବା ପାଇଁ ସେ ଘୋଷଣା କଲେ ଯେ, ସୀମାର ଉତ୍ତରରେ ବ୍ରିଟିଶ ସୈନ୍ୟ ରହିବେ ନାହିଁ ଏବଂ ଉତ୍ତର-ପଶ୍ଚିମ ସୀମା ବା ତା'ର ନିକଟସ୍ଥ ଦକ୍ଷିଣାଞ୍ଚଳରେ ଏହି ସୈନ୍ୟମାନେ ରହିବା ପାଇଁ ସୁଦୃଢ଼ ଦୁର୍ଗମାନ ନିର୍ମାଣ କରାଯିବ । ଏହା ବ୍ୟତୀତ ଏହି ଉପଜାତିର ଲୋକଙ୍କୁ ଉତ୍କୋଚ ଦେଇ ସୀମାନ୍ତର ଉତ୍ତରାଞ୍ଚଳରେ ଯେପରି ଶାନ୍ତି ରକ୍ଷା ହୁଏ, ତା'ର ମଧ ବ୍ୟବସ୍ଥା କଲେ । କିନ୍ତ ଏତିକିରେ ଶାନ୍ତି ଫେରି ଆସିଲା ନାହିଁ । ତେଣୁ ସେ ନିଷ୍ପତ୍ତି ନେଲେ, ସିନ୍ଧୁ ନଦୀର ଅପର ପାର୍ଶ୍ୱରେ ଥିବା ଅଞ୍ଚଳକୁ ପଞ୍ଜାବ ସରକାରଙ୍କ ନିୟନ୍ତ୍ରଣରୁ ମୁକ୍ତ କରି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଯିବ ଓ ଏହି ନୂତନ ପ୍ରଦେଶର ନାମ ହେବ "ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ" ଏବଂ ମୁଖ୍ୟତଃ ତାହା ହେବ ଏକ ମୁସଲମାନବହୁଳ ଅଞ୍ଚଳ ।

କର୍ଜନଙ୍କ ପ୍ରଥମ ବର୍ଷରେ ଦୁର୍ଭିକ୍ଷର କରାଳ ଗ୍ରାସରୁ ଭାରତ ସମ୍ପୂର୍ଣ୍ଣ ମୁକ୍ତ ହୋଇନଥିଲା । ହଜାର ହଜାର ଲୋକଙ୍କର ଅକାଳ ମୃତ୍ୟୁର ନିର୍ମମ ଛାୟା ତାଙ୍କୁ ଆଘାତ କରୁଥିଲା । ସ୍ଥାୟୀ ଭାବରେ ଏ ସମସ୍ୟାର ସମାଧାନ ପାଇଁ କର୍ଜନ ବ୍ୟାକୁଳ ଥିଲେ । ସେଥିପାଇଁ ନୂଆ ରେଳଲାଇନର ପ୍ରସାର କରିବା ଏବଂ କୃଷିର ଉନ୍ନତି ନିମିତ୍ତ ଅଧିକରୁ ଅଧିକ କେନାଲ ଖନନ କରିବାକୁ ସେ ନିଷ୍ପତ୍ତି ନେଲେ । କାର୍ଯ୍ୟତଃ କର୍ଜନଙ୍କ ସମୟରେ ଛଅହଜାର ମାଇଲ ଲମ୍ବ ନୂତନ ରେଳ ଲାଇନ ନିର୍ମାଣ କରାଯାଇଥିଲା । ରେଳ ବିଭାଗର ସୁପରିଚାଳନା ପାଇଁ ସେ ଲଣ୍ଡନ ସରକାରଙ୍କୁ କେତେକ ସୁପାରିଶ କରିଥିଲେ ଓ ତାହା ଗୃହୀତ ହୋଇଥିଲା । ସେହି ସମୟରୁ ରେଳ ପରିଚାଳନାକୁ ନିର୍ମାଣ ବିଭାଗ ଅଧୀନରୁ କାଢ଼ି ନେଇ ବିଶେଷଜ୍ଞମାନଙ୍କୁ ନେଇ ଗଠିତ ରେଲୱେ ବୋର୍ଡ଼ରେ ନ୍ୟସ୍ତ କରାଗଲା । ଅବଶ୍ୟ ରେଲୱେ ଲାଇନ ଓ ଜଳସେଚନ କାର୍ଯ୍ୟକ୍ରମ ବହୁ ପୂର୍ବରୁ ଆରମ୍ଭ ହୋଇଥିଲା । କର୍ଜନ ତାକୁ ଅଧିକ କାର୍ଯ୍ୟକ୍ଷମ କଲେ । ଏଥି ସହିତ କୃଷି ଓ ସହଯୋଗ କ୍ଷେତ୍ରରେ କର୍ଜନଙ୍କର ଅବଦାନ ଅତୁଳନୀୟ । ଭାଇସରାୟ ମେୟୋ ଯେଉଁ ରାଜସ୍ୱ ଓ କୃଷି ବିଭାଗ ପ୍ରତିଷ୍ଠା କରିଥିଲେ, ଅର୍ଥାଭାବରୁ ସେ ବିଭାଗରେ ବିଶେଷ କିଛି କାର୍ଯ୍ୟ ହେଉନଥିଲା । ସେ ପ୍ରଥମେ କାନାଡ଼ାରୁ ଜଣେ ବିଶେଷଜ୍ଞଙ୍କୁ କୃଷି ବିଭାଗରେ ଇନ୍‌ସପେକ୍ଟର ଜେନେରାଲ ରୂପେ ନିଯୁକ୍ତ କରି ବୈଜ୍ଞାନିକ ଦୃଷ୍ଟିକୋଣରୁ

କୃଷିର କିପରି ଉନ୍ନତି କରାଯାଇପାରିବ, ତା'ର ପରୀକ୍ଷା କରାଇଥିଲେ । ଜଣେ ଆମେରିକାନ ବଦାନ୍ୟ ବ୍ୟକ୍ତିଙ୍କ ସହାୟତାରେ ପୁଷାରେ ଏକ କୃଷି ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା ।

ଶିଳ୍ପ କ୍ଷେତ୍ରରେ ସରକାରୀ ସହାୟତା ଦେବା ଦିଗରେ କର୍ଜନ ଥିଲେ ପ୍ରଥମ ଭାଇସରାୟ । ୧୯୦୫ ମସିହାରେ କମର୍ସ ଓ ଇଣ୍ଡଷ୍ଟ୍ରି ଶୀର୍ଷକ ଏକ ସ୍ୱତନ୍ତ୍ର ବିଭାଗ ପ୍ରତିଷ୍ଠା କଲେ । ଶିଳ୍ପ ଓ ବାଣିଜ୍ୟ ସଂକ୍ରାନ୍ତୀୟ ସବୁ ପ୍ରକାର ନିୟନ୍ତ୍ରଣ ଏହି ବିଭାଗ ଦ୍ୱାରା କରାଯାଇଥିଲା ଏବଂ ରେଲୱେ ବୋର୍ଡ଼କୁ ମଧ୍ୟ ଏହି ବିଭାଗ ଅଧୀନରେ ରଖାଯାଇଥିଲା । ଏଥିପୂର୍ବରୁ ଶିଳ୍ପ କ୍ଷେତ୍ରରେ ଭାରତୀୟମାନଙ୍କୁ କୌଣସି ପ୍ରକାର ସୁବିଧା ସୁଯୋଗ ଦେବାକୁ ସରକାର କୁଣ୍ଠିତ ହେଉଥିଲେ । ଲୁହା ଓ କୋଇଲା ଖଣିର ଅବସ୍ଥିତି ବିଷୟରେ ସେ ବିଧିବଦ୍ଧ ଅନୁସନ୍ଧାନ କରାଇଥିଲେ । ଯଦିଓ ତତ୍‌କାଳୀନ ବ୍ରିଟିଶ ଅଫିସରମାନେ ମଧ୍ୟପ୍ରଦେଶ ଅଞ୍ଚଳରେ ଅନୁସନ୍ଧାନ କରି ଯଥେଷ୍ଟ ଲୁହା ଥିବା ଖଣିର ସନ୍ଧାନ ପାଇ ନଥିଲେ, କିନ୍ତୁ ଜଣେ ଅତି ଦକ୍ଷ ପାର୍ସୀ ଜମସେଦଜୀ ଟାଟା ବିହାରରେ ପ୍ରଚୁର ଲୁହାପଥର ଥିବାର ସନ୍ଧାନ ପାଇଥିଲେ ଏବଂ କର୍ଜନ ତାଙ୍କୁ ନାନା ଭାବରେ ପ୍ରୋତ୍ସାହିତ କରିଥିଲେ । ସେ ଭାରତରୁ ବିଦାୟ ନେବା ସମୟରେ ଭାରତୀୟ ବ୍ୟବସାୟୀ ଗୋଷ୍ଠୀ ଓ ଶିଳ୍ପପତିମାନେ ତାଙ୍କର ଭୂରି ଭୂରି ପ୍ରଶଂସା କରିଥିଲେ ।

ପୋଲିସ କମିଶନ ନିଯୁକ୍ତି ଏବଂ ପ୍ରାଚୀନ କୀର୍ତ୍ତି ସମ୍ବନ୍ଧୀୟ ଆଇନ ପ୍ରଣୟନ ତାଙ୍କର ମହାନ୍ କୀର୍ତ୍ତି । ଏହି ପୋଲିସ କମିଶନ ପ୍ରଥମଥର ପାଇଁ ଯେଉଁ ରିପୋର୍ଟ ଦାଖଲ କରିଥିଲେ, ପୋଲିସ ବିଭାଗ ଉପରେ ସେଥିରେ ଥିଲା ମାରାତ୍ମକ ମନ୍ତବ୍ୟ । କମିଶନଙ୍କ ମତରେ ଭାରତୀୟ ପୋଲିସମାନେ ଯଥାବିଧି ସମର୍ଥ ଓ କର୍ମକୁଶଳ ନୁହଁନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ନିଜ ଦାୟିତ୍ୱ ପାଳନରେ ଅକର୍ମଣ୍ୟ । ପରନ୍ତୁ ଅଧିକାଂଶ ଉତ୍କୋଚପ୍ରିୟ । ଲଣ୍ଡନ ସରକାର ଏହି ରିପୋର୍ଟକୁ ପ୍ରକାଶ ନକରିବା ପାଇଁ ଜିଦ୍ କରୁଥିଲେ । କିନ୍ତୁ କର୍ଜନ ଅତ୍ୟନ୍ତ ନିର୍ଭୀକ ଭାବରେ ଏହି ରିପୋର୍ଟ ପ୍ରକାଶ କରିଦେଲେ । ଯାହା ଫଳରେ ପୋଲିସମାନଙ୍କର ତାଲିମ ପାଇଁ ବ୍ୟବସ୍ଥା ହେଲା । ଦରମା କେତେକାଂଶରେ ବଢ଼ିଲା ଓ ପୋଲିସ ଫୋର୍ସ ସଂଖ୍ୟା ଦେଢ଼ ଲକ୍ଷରୁ ଏକ ଲକ୍ଷ ପଞ୍ଚସ୍ତରି ହଜାରକୁ ବୃଦ୍ଧି ପାଇଲା ।

ଭାରତର ପ୍ରାଚୀନ କୀର୍ତ୍ତିଗୁଡ଼ିକର ସୁରକ୍ଷା ପାଇଁ କର୍ଜନ ବିଶେଷ ଉଦ୍ୟମ କରିଥିଲେ । ସାମାନ୍ୟ ଖର୍ଚ୍ଚର ଅଭାବରେ କୀର୍ତ୍ତିଗୁଡ଼ିକ ଭାଙ୍ଗିପଡ଼ିଥିବାର ଦୃଶ୍ୟ ତାଙ୍କର

ସହନୀୟ ନଥିଲା । ସେ ଭାରତ ସାରା ବୁଲିବୁଲି କେଉଁଠାରେ କି ରକମର ମରାମତି କାର୍ଯ୍ୟ ହେବ, ତାହାର ନିର୍ଦ୍ଦେଶ ଦେଉଥିଲେ । କେବଳ ଆଗ୍ରାରେ ପୁରାତନ କୀର୍ତ୍ତିଗୁଡ଼ିକର ସୁରକ୍ଷା ପାଇଁ ସେ ଛଅ ସାତ ଲକ୍ଷ ଟଙ୍କା ମଞ୍ଜୁର କରିଥିଲେ ଏବଂ ତାଙ୍କରି ସମୟରେ କଲିକତା ମୈଦାନରେ ଭିକ୍ଟୋରିଆ ମେମୋରିଆଲ ପ୍ରାୟ ପଚାଶ ଲକ୍ଷ ପାଉଣ୍ଡ ବ୍ୟୟରେ ତାଜମହଲ ଢଙ୍ଗରେ ନିର୍ମିତ ହୋଇଥିଲା । ବିସ୍ତୀର୍ଣ୍ଣ ସବୁଜ ପ୍ରାନ୍ତର ମଧ୍ୟରେ ସମ୍ପୂର୍ଣ୍ଣ ଧଳା ମାର୍ବଲ ପଥରରେ ଭିକ୍ଟୋରିଆ ମେମୋରିଆଲର ଦୃଶ୍ୟ ଅତି ଚିତ୍ତାକର୍ଷକ । ମେମୋରିଆଲ ହଲ୍‌ର ସାମନାରେ ମାର୍ବଲ ଉପରେ କାରୁକାର୍ଯ୍ୟ ଖଚିତ ମହାରାଣୀ ଭିକ୍ଟୋରିଆଙ୍କର ଏକ ପ୍ରତିମୂର୍ତ୍ତି ଏହାର ଶୋଭା ବର୍ଦ୍ଧନ କରେ । ପ୍ରଶାସନର ବିଭିନ୍ନ କ୍ଷେତ୍ରରେ କର୍ଜନଙ୍କର ଦୃଢ଼ ଓ କ୍ଷିପ୍ର କାର୍ଯ୍ୟାନୁଷ୍ଠାନ ଭାରତୀୟ ବୁଦ୍ଧିଜୀବୀମାନଙ୍କ ଦ୍ୱାରା ବିଶେଷ ପ୍ରଶଂସିତ ହେଉଥିଲା ।

କର୍ଜନଙ୍କର କାର୍ଯ୍ୟକାଳ ଭିତରେ ଶିକ୍ଷା ବ୍ୟବସ୍ଥାର ଅଗ୍ରଗତି ଏକ ଉଲ୍ଲେଖନୀୟ କାର୍ଯ୍ୟ । କିନ୍ତୁ ଶିକ୍ଷା କ୍ଷେତ୍ରରେ ସେ ଯେଉଁ ସଂସ୍କାର ଆଣିଥିଲେ, ଭାରତୀୟ ବୁଦ୍ଧିଜୀବୀମାନେ ତାହାର ଦୃଢ଼ ପ୍ରତିରୋଧ କରିଥିଲେ । ମ୍ୟାକଲେଙ୍କ ସମୟରେ ପ୍ରାଥମିକ ସ୍ତରରୁ ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ଭାରତୀୟମାନଙ୍କର ଅସନ୍ତୋଷର ପ୍ରଧାନ କାରଣ ଥିଲା । ଏହାଦ୍ୱାରା କେବଳ ସରକାରଙ୍କର ଶାସନ ଚଳାଇବା ପାଇଁ ନିମ୍ନସ୍ତରର କର୍ମଚାରୀ ତାଲିମ ପାଉଥିଲେ । କିନ୍ତୁ ସେ ଯେତେବେଳେ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ କରିବାକୁ ଚାହିଁଲେ, ତାହା ମଧ୍ୟ ସହଜରେ ଗ୍ରହଣୀୟ ହେଲାନାହିଁ । ସେ ସମୟରେ ବିଶ୍ୱବିଦ୍ୟାଳୟଗୁଡ଼ିକ ମୁଖ୍ୟତଃ ପରୀକ୍ଷା ପରିଚାଳନାକାରୀ ଅନୁଷ୍ଠାନ ଥିଲା । ବିଭିନ୍ନ ନୂତନ ବିଷୟରେ ଶିକ୍ଷା ପ୍ରଦାନ କରିବା ପାଇଁ ବିଶ୍ୱବିଦ୍ୟାଳୟମାନଙ୍କରେ କୌଣସି ବ୍ୟବସ୍ଥା ନଥିଲା । ବିଶ୍ୱବିଦ୍ୟାଳୟର ଉନ୍ନତି ପାଇଁ କର୍ଜନ ଗୋଟିଏ ୟୁନିଭର୍ସିଟି କମିଶନ ନିଯୁକ୍ତ କଲେ । ମୁସଲମାନମାନଙ୍କ ମଧ୍ୟରୁ ହାଇଦ୍ରାବାଦର ଜଣେ ଶିକ୍ଷା ନିର୍ଦ୍ଦେଶକ କମିଶନର ସଭ୍ୟ ନିଯୁକ୍ତ ହୋଇଥିଲେ । ହିନ୍ଦୁମାନେ ଦାବି କରିବାରୁ କଲିକତା ହାଇକୋର୍ଟର ଜଣେ ହିନ୍ଦୁ ବିଚାରପତିଙ୍କୁ ସଭ୍ୟ ଭାବରେ ନିଆଗଲା । ଅନ୍ୟଥା କମିଶନର ସବୁ ସଦସ୍ୟ ଥିଲେ ଇଂରେଜ । କମିଶନଙ୍କ ସୁପାରିଶ ଅନୁସାରେ ବିଭିନ୍ନ ବିଶ୍ୱବିଦ୍ୟାଳୟ ପାଇଁ ସରକାର ଉପ-କୁଳପତି ବା ଭାଇସ୍-ଚାନ୍‌ସେଲର ନିଯୁକ୍ତ କଲେ । କଲେଜଗୁଡ଼ିକୁ ଅନୁବନ୍ଧନ ଦେବା ପୂର୍ବରୁ କଲେଜର ଶିକ୍ଷା ବ୍ୟବସ୍ଥାର ବିଶେଷ ସମୀକ୍ଷା କରାଗଲା । କମିଶନର ସୁପାରିଶ ଗୁଡ଼ିକ ଗୋଟିଏ ବିଲ୍ ଫର୍ମରେ ଆଗତ ହେଲା ଓ ୧୯୦୪ ମସିହାରେ ସେହି ବିଲ୍ ଗୃହୀତ

ହେଲା । ଏହି ବିଲ୍ ଭାରତରେ ତୁମୁଳ ପ୍ରତିବାଦର ଝଡ଼ ସୃଷ୍ଟି କଲା । କଲିକତାର ସୁରେନ୍ଦ୍ର ନାଥ ବାନାର୍ଜୀ ଏବଂ ବମ୍ବେର ଫିରୋଜ ଶାହ ମେହେଟା ପ୍ରମୁଖ ଏହି ଆନ୍ଦୋଳନର ଅଗ୍ରଣୀ ଥିଲେ । ବିଶ୍ୱବିଦ୍ୟାଳୟ ଉପରେ ସରକାର ନିୟନ୍ତ୍ରଣ ଓ ବିଶ୍ୱବିଦ୍ୟାଳୟ ସହିତ ସ୍ଥାନୀୟ କଲେଜଗୁଡ଼ିକର ଅନୁବନ୍ଧନ ବା ଆଫିଲିଏସନ ଭାରତୀୟମାନଙ୍କ ପାଇଁ କ୍ଷତିକାରକ ହେବ ବୋଲି ଏହି ନେତାମାନେ ଘୋଷଣା କରିଥିଲେ ।

ପ୍ରଶାସନିକ କ୍ଷେତ୍ରରେ ଉପରୋକ୍ତ ଅଗ୍ରଗତି ବ୍ୟତୀତ ତାଙ୍କର ଅନ୍ୟ କେତେକ କାର୍ଯ୍ୟ ଭାରତରେ ବିଶେଷତଃ ବଙ୍ଗଦେଶରେ ତୁମୁଳ ଅସନ୍ତୋଷ ସୃଷ୍ଟି କରିଥିଲା । ଭାଇସରାୟ ଭାବୁଥିଲେ ଭାରତ ବ୍ରିଟିଶ ସାମ୍ରାଜ୍ୟର କେନ୍ଦ୍ରଭୂମି ଏବଂ ତାହାର ସ୍ୱତନ୍ତ୍ର ବୈଦେଶିକ ନୀତି ରହିବା ଉଚିତ । ରୁଷିଆକୁ ସେ ବ୍ରିଟେନର ଓ ଭାରତର ପ୍ରଧାନଶତ୍ରୁ ଭାବରେ ବିବେଚନା କରୁଥିଲେ । କିନ୍ତୁ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ୟୁରୋପରେ ଜର୍ମାନୀର କ୍ଷମତା କ୍ରମେ ବୃଦ୍ଧି ପାଉଥିଲା ଏବଂ ତାକୁ ରୋକିବା ପାଇଁ ବ୍ରିଟେନ୍ ଫ୍ରାନ୍ସ ଓ ତା'ର ବନ୍ଧୁ ରୁଷିଆର ଜାରଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଗଢ଼ିବାକୁ ବ୍ୟଗ୍ର ଥିଲା ଏବଂ ସେ ଦିଗରେ କେତେକାଂଶରେ ସଫଳ ମଧ୍ୟ ହୋଇଥିଲା । ଏଣୁ କର୍ଜନଙ୍କର ତଥାକଥିତ ରୁଷ୍-ବିରୋଧୀ ବୈଦେଶିକ ନୀତି ବ୍ରିଟିଶ ସରକାରଙ୍କଠାରୁ ସମର୍ଥନ ପାଇନଥିଲା । କର୍ଜନଙ୍କର ଆଫଗାନ ନୀତି ସମ୍ପର୍କରେ ମତଭେଦ ଫୁଟି ଉଠିଥିଲା । ଏହି ସମୟରେ ଆଫଗାନିସ୍ଥାନର ଅମୀର ଅବଦୁର ରହେମାନ୍ ବିଭିନ୍ନ ସୂତ୍ରରୁ ବହୁ ଅସ୍ତ୍ରଶସ୍ତ୍ର ସଂଗ୍ରହ କରୁଥିଲେ । କର୍ଜନ ତାଙ୍କୁ ସାବଧାନ କରାଇ ଦେବାକୁ ଚାହୁଁଥିଲେ ଯେ, ବ୍ରିଟିଶ ସରକାର ଏ ପ୍ରକାର ନୀତି କେବେହେଁ ବରଦାସ୍ତ କରିବେ ନାହିଁ । କିନ୍ତୁ ସେହି ସମୟରେ ଦକ୍ଷିଣ ଆଫ୍ରିକା ସହିତ ଯୁଦ୍ଧ ଚାଲିଥିଲା ଏବଂ ସରକାର ଭାରତରେ ନୂତନ ଯୁଦ୍ଧରେ ପ୍ରବେଶ କରିବାକୁ କୁଣ୍ଠିତ ଥିଲେ । କର୍ଜନଙ୍କର ଭାଗ୍ୟ ଭଲ, ୧୯୦୧ ମସିହାରେ ଅବଦୁର ରହେମାନଙ୍କର ମୃତ୍ୟୁ ହେଲା ଏବଂ ତାଙ୍କର ଜ୍ୟେଷ୍ଠପୁତ୍ର ହବିବୁଲ୍ଲା ଅମୀର ପଦରେ ଅଧିଷ୍ଠିତ ହେଲେ । କର୍ଜନଙ୍କ ମତରେ ଅବଦୁର ରହେମାନଙ୍କ ସହିତ ପୂର୍ବରୁ ଯେଉଁସବୁ ଚୁକ୍ତି ହୋଇଛି, ତାଙ୍କର ମୃତ୍ୟୁ ସହିତ ସେ ସବୁ ଚୁକ୍ତି ରଦ୍ଦ ହୋଇଯାଇଛି । ଏଣୁ ସେ ଦାବିକଲେ ଯେ, ହବିବୁଲ୍ଲା ପେଶାଓ୍ୱାର ଆସି ଭାଇସରାୟଙ୍କ ସହିତ ଆଲୋଚନା କରନ୍ତୁ ଓ ନୂତନ ଚୁକ୍ତିନାମାର ସର୍ତ୍ତ ସମ୍ପର୍କରେ ବିଚାରବିମର୍ଶ ହେଉ । କିନ୍ତୁ ହବିବୁଲ୍ଲା ପେଶାଓ୍ୱାର ଆସିବାକୁ ଚାହିଁଲେ ନାହିଁ । ଏଣୁ କର୍ଜନ ସନ୍ଦେହ କଲେ ଯେ, ହବିବୁଲ୍ଲା ବୋଧହୁଏ ବ୍ରିଟେନ ସହିତ ବନ୍ଧୁତ୍ୱ ରକ୍ଷା କରିବା ପାଇଁ ବ୍ୟାକୁଳ

ନୁହଁନ୍ତି । ତେଣୁ ତୁରନ୍ତ ସାମରିକ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରି ଅନ୍ତତଃ କାନ୍ଧାହାର ଦଖଲ କରିବା ଉଚିତ । ଏ ପ୍ରସ୍ତାବ ଶୁଣିବା ମାତ୍ରେ ବ୍ରିଟିଶ ସରକାର ଅତ୍ୟନ୍ତ କ୍ଷୁବ୍ଧ ହେଲେ ଓ ତୁରନ୍ତ ଟେଲିଗ୍ରାମ ଜରିଆରେ ବ୍ରିଟିଶ ସରକାରଙ୍କର ନିଷ୍ପତ୍ତିର ଅମାନ୍ୟ ନକରିବା ପାଇଁ କର୍ଜନଙ୍କୁ ନିର୍ଦ୍ଦେଶ ଦେଲେ । କିଛିଦିନ ପରେ ହବିବୁଲ୍ଲା ଭାଇସରାୟଙ୍କୁ ଯଥାବିଧି ମାନ୍ୟତା ସହ ଏକ ପତ୍ର ଲେଖିଲେ, ଯାହାକି ପରିସ୍ଥିତିକୁ ଅନେକଟା ଶୀତଳ କରିଦେଲା । ତଥାପି ହବିବୁଲ୍ଲା ପେଶାୱାର ଆସିଲେ ନାହିଁ । ୧୯୦୪ ମସିହାରେ କର୍ଜନ ଛୁଟି ନେଇ ଲଣ୍ଡନ ଗଲେ ଓ ତାଙ୍କରି ଅନୁପସ୍ଥିତିର ସୁଯୋଗ ନେଇ ଅସ୍ଥାୟୀ ଭାଇସରାୟ ଲର୍ଡ଼ ଆମ୍ପଟ୍‌ହିଲ୍ ପ୍ରସ୍ତାବ ଦେଲେ ଯେ, ହବିବୁଲ୍ଲା ପେଶାୱାର ନ ଆସିଲେ ନୂତନ ଚୁକ୍ତି ସମ୍ପର୍କରେ ଆଲୋଚନା କରିବା ପାଇଁ ଜଣେ ପ୍ରତିନିଧିଙ୍କୁ କାବୁଲ ପଠାଯାଉ । ଯାହାହେଉ ୧୯୦୭ ମସିହା ବେଳକୁ ହବିବୁଲ୍ଲାଙ୍କର ଦମ୍ଭ ଭାଙ୍ଗିଯାଇଥିଲା ଓ ସେ ବ୍ରିଟେନ୍ ସହିତ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରକ୍ଷା କରିବା ପାଇଁ ସମ୍ମତ ହେଲେ ।

ତିବ୍ବତ୍ ସହିତ ସଂଘର୍ଷ ସାମ୍ରାଜ୍ୟବାଦର ଧ୍ୱଜାଧାରୀ କର୍ଜନଙ୍କର ଅନ୍ୟ ଏକ ଉଲ୍ଲେଖନୀୟ କାର୍ଯ୍ୟ । ତିବ୍ବତ୍‌ର ରାଜଧାନୀ ଲାସାରେ ଜଣେ ବ୍ରିଟିଶ ପ୍ରତିନିଧି ରଖାଇବା ପାଇଁ କର୍ଜନ ଯେଉଁ ଦାବି କରୁଥିଲେ, ତିବ୍ବତ୍‌ର ଲାମା ତାକୁ ଅଗ୍ରାହ୍ୟ କଲେ । ଏହାହିଁ ଥିଲା ବିବାଦର ମୂଳକାରଣ । ଚୀନ୍ ସୂତ୍ରରୁ ଆଗତ ଏକ ପ୍ରସ୍ତାବରେ ଉଲ୍ଲେଖ ଥିଲା ଯେ, ସୀମା ବିବାଦର ସମାଧାନ ପାଇଁ ଗୋଟିଏ ସମ୍ମିଳନୀ ବସିବା ଉଚିତ । ତଦନୁଯାୟୀ ତିବ୍ବତ୍‌ର ଅନ୍ତର୍ଭୁକ୍ତ ଖମ୍ବାଜୋଙ୍ଗ୍‌ଠାରେ ସମ୍ମିଳନୀ ପାଇଁ ଏକ ନିଷ୍ପତ୍ତି ହେଲା । ଲଣ୍ଡନରେ ବ୍ରିଟିଶ ସରକାର ଦୁଇଟି ସର୍ତ୍ତରେ ଏ ପ୍ରସ୍ତାବରେ ସମ୍ମତ ହେଲେ । ପ୍ରଥମତଃ ସୀମା ନିର୍ଦ୍ଧାରଣ ସଂକ୍ରାନ୍ତୀୟ ବିବାଦ ଓ ତିବ୍ବତ୍ ସହିତ ବାଣିଜ୍ୟ ବ୍ୟବସାୟର ବ୍ୟବସ୍ଥା ସଂକ୍ରାନ୍ତୀୟ ପ୍ରଶ୍ନ ବ୍ୟତୀତ ଅନ୍ୟ କୌଣସି ବିଷୟ ସେ ସମ୍ମିଳନୀରେ ଆଲୋଚନା କରାଯିବ ନାହିଁ । ଜୁଲାଇ ୧୯୦୩ ମସିହାରେ କର୍ଣ୍ଣେଲ ୟଙ୍ଗ୍ ହଜବ୍ୟାଣ୍ଡଙ୍କ ନେତୃତ୍ୱରେ କେତେକ ପ୍ରତିନିଧି ସୀମା ଅତିକ୍ରମ କରି ତିବ୍ବତ୍‌ରେ ପ୍ରବେଶ କଲେ । କିନ୍ତୁ ଖମ୍ବାଜୋଙ୍ଗ୍ ଆଲୋଚନା ବିଫଳ ହେଲା । ଏଣୁ ଲଣ୍ଡନ ସରକାରଙ୍କର ସମ୍ମତିକ୍ରମେ ୟଙ୍ଗ୍ ହଜବ୍ୟାଣ୍ଡ ଓ ତାଙ୍କର ସାମରିକ ସହଯୋଗୀମାନେ ଗ୍ୟାଣ୍ଟେ ଅଭିମୁଖେ ଯାତ୍ରା କଲେ । ସେହି ପାହାଡ଼ୀ ରାସ୍ତାରେ ଇଂରେଜମାନଙ୍କୁ କେତେକ ତିବ୍ବତୀୟ ସୈନ୍ୟଙ୍କ ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ିଲା । ଏହି ସଂଘର୍ଷରେ ଛଅଶହ ତିବ୍ବତୀୟ ପ୍ରାଣ ହରାଇଥିଲେ ଏବଂ ବ୍ରିଟିଶ ପକ୍ଷର ବିଶେଷ କୌଣସି କ୍ଷତି ହୋଇନଥିଲା । ଗ୍ୟାଣ୍ଟସେରେ ଆଲୋଚନା କରିବା ପାଇଁ କୌଣସି

ତିବ୍‌ବତୀୟ ପ୍ରତିନିଧି ଉପସ୍ଥିତ ନଥିବାରୁ କାର୍ଯ୍ୟକାରୀ ଭାଇସରାୟଙ୍କ ନିର୍ଦ୍ଦେଶ କ୍ରମେ ୟଙ୍ଗ୍ ହଜବ୍ୟାଣ୍ଡ ଲାସା ଅଭିମୁଖେ ଯାତ୍ରା କରି ଦେଖିଲେ, ଦଲାଇଲାମା ଲାସାରୁ ପଳାୟନ କରିଛନ୍ତି । ଏଣୁ କେତେକ ସ୍ଥାନୀୟ ପ୍ରତିପତ୍ତିଶୀଳ ତିବ୍‌ବତୀୟଙ୍କ ସହ ଆଲୋଚନା ଆବଦ୍ଧ ରହିଲା ।

ପରିଶେଷରେ ନିଷ୍ପତ୍ତି ହେଲା ଯେ, ତିବ୍‌ବତ୍ ସରକାର ଇଂରେଜଙ୍କୁ କ୍ଷତିପୂରଣ ବାବଦକୁ ୭୫ ବର୍ଷରେ ୭୫ ଲକ୍ଷ ଟଙ୍କା ଦେବେ ଓ ସମସ୍ତ ଟଙ୍କା ପରିଶୋଧ ନହେବା ପର୍ଯ୍ୟନ୍ତ ତିବ୍‌ବତର କେତେକ ଅଞ୍ଚଳ ଇଂରେଜଙ୍କ ଅଧୀନରେ ରହିବ । ଗ୍ୟାଣ୍ଟସେରେ ଏକ ବ୍ରିଟିଶ ପ୍ରତିନିଧି ଦଳ ଅବସ୍ଥାପିତ ହେବେ ଓ ଆବଶ୍ୟକ ହେଲେ ସେମାନେ ଲାସା ଯାତ୍ରା କରିପାରିବେ । ଲଣ୍ଡନ ସରକାର ଚୁକ୍ତିର ସର୍ତ୍ତ ଦେଖି ଉତ୍‌କ୍ଷିପ୍ତ ହେଲେ । କ୍ଷତିପୂରଣ ଟଙ୍କା ତୁରନ୍ତ ଦୁଇ-ତୃତୀୟାଂଶ କାଟି ଦିଆଗଲା ଓ ବାସ୍ତବିକ କର୍ଜନଙ୍କ ପାଇଁ ଉଦ୍ଦିଷ୍ଟ ୟଙ୍ଗ ହଜବ୍ୟାଣ୍ଡଙ୍କ ନାମରେ ଏକ କଠୋର ଭାଷାରେ ଲିଖିତ ପତ୍ର ପଠାଗଲା । ତିବ୍‌ବତ୍‌ର କୌଣସି ଅଞ୍ଚଳ ଇଂରେଜମାନେ ଦଖଲ କରିବେ ନାହିଁ ଏବଂ ଗ୍ୟାଣ୍ଟସେରେ ଅବସ୍ଥାପିତ ଇଂରେଜ ପ୍ରତିନିଧି କେବଳ ବ୍ୟବସାୟ ବାଣିଜ୍ୟ ନିୟନ୍ତ୍ରଣ କରିବେ ।

ବଙ୍ଗ ବିଭାଜନ କର୍ଜନଙ୍କ ଶାସନର ସବୁଠାରୁ ବଡ଼ ଅପକୀର୍ତ୍ତି । ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ଆଣ୍ଡ୍ରୁ ଫ୍ରେଜରଙ୍କ ସମୟରେ ବଙ୍ଗ ପ୍ରଦେଶରେ ବିହାର ଓ ଓଡ଼ିଶା ଅନ୍ତର୍ଭୁକ୍ତ ଥିଲା ଏବଂ ଏହି ବିସ୍ତୀର୍ଣ୍ଣ ଅଞ୍ଚଳର ପରିସର ଥିଲା ଶହେ ଅଣାନବେ ହଜାର ବର୍ଗ ମାଇଲ ଓ ଲୋକସଂଖ୍ୟା ଥିଲା ସାତ କୋଟି ଆଠ ଲକ୍ଷ । ଫ୍ରେଜର ପ୍ରସ୍ତାବ ସପକ୍ଷରେ ଲେଖିଥିଲେ, ଏତେ ବିରାଟ ଅଞ୍ଚଳକୁ ଶାସନ କରିବା ଜଣେ ଗଭର୍ଣ୍ଣର ପକ୍ଷରେ ସମ୍ଭବ ନୁହେଁ । କର୍ଜନ ପ୍ରଶାସନିକ ଦୃଷ୍ଟିରୁ ଏଥି ସହିତ ଏକମତ ହୋଇ ଡିସେମ୍ବର ୧୯୦୩ ମସିହାରେ ତିନୋଟି ଜନବହୁଳ ଜିଲ୍ଲାକୁ ଆସାମ ସହିତ ମିଶେଇଦେବା ପାଇଁ ସମ୍ମତ ହେଲେ । ଏ ପ୍ରସ୍ତାବ ସେକ୍ରେଟେରୀ ଅଫ୍ ଷ୍ଟେଟ୍‌ଙ୍କ ପାଖକୁ ଫେବୃଆରୀ ୧୯୦୫ ମସିହାରେ ପ୍ରେରିତ ହେବା ପରେ ସେ "ପୂର୍ବ ବଙ୍ଗ ଓ ଆସାମ" ଶୀର୍ଷକ ଏକ ନୂତନ ପ୍ରଦେଶ ଉତ୍ତର ଓ ପୂର୍ବ ବଙ୍ଗର ତିନୋଟି ଡିଭିଜନକୁ ନେଇ ଗଠନ କରିବାକୁ ସମ୍ମତି ଦେଲେ । ଏହି ନୂତନ ପ୍ରଦେଶର ଲୋକସଂଖ୍ୟା ହେଲା ତିନି କୋଟି ଏକ ଲକ୍ଷ ଓ ସେଥିରୁ ମୁସଲମାନଙ୍କ ସଂଖ୍ୟା ଥିଲା ଏକ କୋଟି ଆଠ ଲକ୍ଷ । ସେହି କାଳରେ ବଙ୍ଗଳାର ବିଶିଷ୍ଟ କଂଗ୍ରେସ ନେତାମାନେ କଲିକତା ସହରରେ ବସବାସ କରୁଥିଲେ ଓ କଲିକତାରୁ ପ୍ରକାଶିତ ବଙ୍ଗଳା ଖବରକାଗଜ ଜନମତ ସୃଷ୍ଟି କରିବାରେ

ଅଗ୍ରଣୀ ଥିଲେ ଏବଂ ସେମାନେ ଏକ ସ୍ୱରରେ ବଙ୍ଗ ବିଭାଜନ ପ୍ରସ୍ତାବକୁ ବିରୋଧ କରିଥିଲେ । ଏହି ନେତାମାନେ ଥିଲେ ମୁଖ୍ୟତଃ ହିନ୍ଦୁ ଓ ସମ୍ବାଦପତ୍ରଗୁଡ଼ିକ ହିନ୍ଦୁମାନଙ୍କ ଦ୍ୱାରା ପରିଚାଳିତ ଓ ପ୍ରକାଶିତ । ଏହି ଜନମତ ସୃଷ୍ଟିକାରୀ ଶକ୍ତିକୁ ବିଭାଜନ ଦ୍ୱାରା ଦୁର୍ବଳ କରିଦେବା ଓ ମୁସଲମାନଙ୍କୁ ସଂଖ୍ୟାବହୁଳ ହିନ୍ଦୁଙ୍କ ବିରୁଦ୍ଧରେ ପ୍ରୟୋଗ କରିବା ମୂଳତଃ ସାର୍ ଫ୍ରେଜରଙ୍କର ଉଦ୍ଦେଶ୍ୟ ଥିଲା । କର୍ଜନ ଯେତେବେଳେ ଏହି ଭିତିରି ଉଦ୍ଦେଶ୍ୟ ସମ୍ପର୍କରେ ଅବଗତ ହେଲେ, ସେ ଇଂରେଜ ବିରୋଧୀ ଶକ୍ତିକୁ ଦୁର୍ବଳ କରିବା ପାଇଁ ଏ ପ୍ରସ୍ତାବର ପ୍ରଧାନ ସମର୍ଥକ ହୋଇ ଠିଆହେଲେ ।

ମର୍ଡ଼ରେଟ୍ କଂଗ୍ରେସ ନେତା ସୁରେନ୍ଦ୍ର ନାଥ ବାନାର୍ଜୀ ଥିଲେ ବଙ୍ଗ ବିଭାଜନର ଘୋର ବିରୋଧୀ ଏବଂ କଲିକତାରେ ବହୁ ସଭାସମିତି କରି ସେ ଓ ତାଙ୍କ ସହଯୋଗୀମାନେ ଏ ପ୍ରସ୍ତାବର ବିରୋଧ କରିଥିଲେ । ଆନ୍ଦୋଳନ କ୍ରମେ ଭିନ୍ନ ରୂପ ନେଲା । ବହୁ ବଙ୍ଗୀୟ ଯୁବକ ସନ୍ତ୍ରାସବାଦ ପ୍ରତି ଆକୃଷ୍ଟ ହୋଇ ଇଂରେଜ ଓ ତାଙ୍କର ସାମରିକ ସମର୍ଥକମାନଙ୍କୁ ଆବଶ୍ୟକ ହେଲେ ଗୁଳିମାରି ହତ୍ୟା କରୁଥିଲେ । ଏଣେ କମାଣ୍ଡର-ଇନ୍-ଚିଫ୍ କିଚନରଙ୍କ ସହିତ ବହୁ ବିଷୟରେ କର୍ଜନଙ୍କର ମତଭେଦ ଘଟୁଥିଲା ଏବଂ ବ୍ରିଟିଶ ସରକାର କର୍ଜନଙ୍କ ପରିବର୍ତ୍ତେ କିଚନର୍‌ଙ୍କୁ ସମର୍ଥନ କରୁଥିଲେ । ଛୁଟିରୁ ଫେରି କର୍ଜନ ଏପରି ପରିସ୍ଥିତିର ସମ୍ମୁଖୀନ ହେଲେ ଯେ, ତାଙ୍କ ପକ୍ଷରେ ଶାସନ ଚଳାଇବା କଷ୍ଟକର ହୋଇଉଠିଲା ଏବଂ ଅଗଷ୍ଟ ୧୨ ତାରିଖରେ ସେ ଇସ୍ତଫା ଦେଲେ । କିଚ୍‌ନର୍ ମଧ୍ୟ ଭାଇସରାୟ ପଦ ପାଇଁ ଲାଳାୟିତ ଥିଲେ । କିନ୍ତୁ ବ୍ରିଟିଶ ମନ୍ତ୍ରିମଣ୍ଡଳ ଜଣେ ସାମରିକ ଅଫିସରଙ୍କୁ ଭାଇସରାୟ ଗାଦି ଅର୍ପଣ କରିବାକୁ ପ୍ରସ୍ତୁତ ନଥିଲେ । ଲର୍ଡ଼ ମିଣ୍ଟୋ ଏଥିପାଇଁ ମନୋନୀତ ହେଲେ । ୧୯୦୫ ମସିହା ଅଗଷ୍ଟ ୨୧ ତାରିଖରେ କର୍ଜନଙ୍କ ଇସ୍ତଫାପତ୍ର ଗୃହୀତ ହେଲା ଓ ସେହିଦିନ ଲର୍ଡ଼ ମିଣ୍ଟୋଙ୍କ ନିଯୁକ୍ତି ଘୋଷିତ ହେଲା । କିନ୍ତୁ ଏହି ସମୟରେ ପ୍ରିନ୍ସ ଅଫ୍ ୱେଲ୍‌ସ ଭାରତ ପରିଭ୍ରମଣରେ ଆସିବାର ଯୋଜନା ଥିଲା । ଏଣୁ ରାଜାଙ୍କ ଅନୁରୋଧ କ୍ରମେ ପ୍ରିନ୍ସ ଅଫ୍ ୱେଲ୍‌ସଙ୍କ ଦରବାରର ସୁପରିଚାଳନା ପାଇଁ କର୍ଜନଙ୍କୁ ଆଉ ତିନିମାସ ଭାରତରେ ରହିବାକୁ ହେଲା । ସେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲାବେଳକୁ ଭାରତରେ ତାଙ୍କର ଖ୍ୟାତି ଓ ପ୍ରତିଷ୍ଠାରେ ଅବକ୍ଷୟ ଘଟିଥିଲା ଏବଂ ବଙ୍ଗ ବିଭାଜନ ଥିଲା ତା'ର ମୁଖ୍ୟ କାରଣ ।



# ବଙ୍ଗ ବିଭାଜନର ରକ୍ତାକ୍ତ ପରିଣତି

ଲର୍ଡ଼ ମିଣ୍ଟୋ ନଭେମ୍ବର ୧୯୦୫ ମସିହାରେ ଭାରତର ଭାଇସରାୟ ପଦ ଗ୍ରହଣ କଲେ । ସେତେବେଳକୁ ବଙ୍ଗ ବିଭାଜନ ଆନ୍ଦୋଳନ କ୍ରମଶଃ ଶୀଥିଳ ହୋଇ ଆସୁଥିଲା । କିନ୍ତୁ ତାହା ଥିଲା ଝଡ଼ର ପୂର୍ବବର୍ତ୍ତୀ ନୀରବତା ପରି । ସମ୍ମୁଖ ଆନ୍ଦୋଳନ ପରିହାର କରି ବଙ୍ଗୀୟ ଯୁବକମାନେ ସନ୍ତ୍ରାସବାଦର ଦୀକ୍ଷା ନେଲେ । ଏ ପ୍ରକାର ପ୍ରତିରୋଧ କ୍ରମେ କଂଗ୍ରେସ ମଧ୍ୟକୁ ପ୍ରବେଶ କଲା । ଅଧିକାଂଶ କଂଗ୍ରେସ ନେତା ମଧ୍ୟମପନ୍ଥୀ ଥିଲେ ମଧ୍ୟ ବ୍ରିଟିଶ ସରକାରଙ୍କର କାର୍ଯ୍ୟାବଳୀକୁ କେହି ସମର୍ଥନ କରୁନଥିଲେ । ଏଣେ ବିଦେଶୀ ସାମଗ୍ରୀର ବର୍ଜନ କଂଗ୍ରେସ ସମର୍ଥନରେ ଦ୍ରୁତଗତିରେ ଚାଲିଥିଲା । ସ୍କୁଲ୍ ଓ କଲେଜର ଛାତ୍ରଛାତ୍ରୀମାନେ ବିଭିନ୍ନ ପ୍ରକାର କ୍ଲବ୍‌ର ସଭ୍ୟ ହୋଇ ସେସବୁ ଅନୁଷ୍ଠାନକୁ ସନ୍ତ୍ରାସବାଦୀ ସଙ୍ଗଠନରେ ପରିଣତ କରିବାକୁ ଉଦ୍ୟମ କଲେ । ଅନୁଶୀଳନ ସମିତି ଏସବୁ କ୍ଲବ୍ ମଧ୍ୟରେ ଅନ୍ୟତମ ଏବଂ ପ୍ରଖ୍ୟାତ ଇଂରାଜୀ ଅଧ୍ୟାପକ ଅରବିନ୍ଦ ଘୋଷଙ୍କର ସାନଭାଇ ବରେନ୍ଦ୍ର କୁମାର ଘୋଷ ଥିଲେ ଅନୁଶୀଳନ ସମିତିର ଅଗ୍ରଗାମୀ ନେତା । ରାଜଦ୍ରୋହ ଥିଲା ଏହିସବୁ ସମିତିର ମୁଖ୍ୟ ଆଦର୍ଶ । ବଙ୍ଗଳା ଭାଷାରେ ପ୍ରଚାରପତ୍ର ଛାପି ବଣ୍ଟନ କରାଯାଉଥିଲା ଓ ଇଂରେଜମାନଙ୍କ ରକ୍ତ ମା' କାଳୀଙ୍କୁ ଅର୍ପଣ କରିବା ଦେଶପ୍ରେମର ନିଦର୍ଶନ ରୂପେ ପ୍ରଚାର କରାଯାଉଥିଲା ।

୧୯୦୭ ମସିହା ଡିସେମ୍ବର ମାସରେ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର୍ ସାର୍ ଆଣ୍ଡ୍ରୁ ଫ୍ରେଜର ମେଦିନୀପୁର ଦେଇ ଟ୍ରେନ୍‌ରେ ଯାତ୍ରା କରୁଥିବା ସମୟରେ ତାଙ୍କ ରେଳଡବା ପ୍ରତି ବୋମା ଆକ୍ରମଣ କରାଯାଇଥିଲା । ଦୁଇ ସପ୍ତାହ ପରେ ଢାକାର ଜିଲ୍ଲା ମାଜିଷ୍ଟ୍ରେଟ୍‌କୁ ଗୁଳିମାରି ଆହତ କରାଗଲା, ଯଦିଓ ମୃତ୍ୟୁମୁଖରୁ ସେ ଅଳ୍ପକେ ବର୍ତ୍ତି ଯାଇଥିଲେ । ବିହାରର ମୁଜାଫର୍‌ପୁରଠାରେ ମିସେସ୍ ଓ ମିସ୍ କେନେଡ଼ି ନାମଧେୟ ଦୁଇଜଣ ଭଦ୍ରମହିଳାଙ୍କ ଘୋଡ଼ାଗାଡ଼ିରେ ବୋମା ନିକ୍ଷେପ କରି ହତ୍ୟା କରାଯାଇଥିଲା । ଅବଶ୍ୟ ହତ୍ୟାକାରୀମାନେ ଭାବିଥିଲେ ଯେ, ସେ ଗାଡ଼ିରେ

କଲିକତାର ଚିଫ୍ ପ୍ରେସିଡେନ୍‌ସୀ ମାଜିଷ୍ଟ୍ରେଟ୍ ଯାତ୍ରା କରୁଛନ୍ତି । ଯାହାହେଉ ପୋଲିସ ଅନୁସନ୍ଧାନରେ ଦୁଇଜଣ ଗିରଫ୍ ହେଲେ । ସେମାନଙ୍କ ମଧ୍ୟରୁ ଜଣେ ଆତ୍ମହତ୍ୟା କଲେ ଓ ଅନ୍ୟ ଜଣକ ଦୋଷ ସ୍ୱୀକାର କରି ଫାଶୀଦଣ୍ଡ ପ୍ରାପ୍ତ ହେଲେ । ଅଭିଯୁକ୍ତଙ୍କର ସ୍ୱୀକାରୋକ୍ତିରୁ ପୋଲିସ୍ ଜାଣିବାକୁ ପାଇଲେ ଯେ, କଲିକତାର ସହରତଳି ଅଞ୍ଚଳରେ ଥିବା ଅରବିନ୍ଦ ଘୋଷ ଓ ବରେନ୍ଦ୍ର ଘୋଷଙ୍କର ବଗିଚା ଘରେ ଏକ ବୋମା କାରଖାନା ରହିଛି ଏବଂ ଅନୁଶୀଳନ ସମିତି ଓ ଅନ୍ୟ ଯୁବକ ଗୋଷ୍ଠୀ ଯେଉଁ ବୋମା ବ୍ୟବହାର କରୁଛନ୍ତି, ତାହା ସେହିଠାରେ ନିର୍ମିତ ହେଉଛି । ଏହି ଘଟଣାରେ ବରେନ୍ଦ୍ର କୁମାରଙ୍କ ସମେତ ତିରିଶି ଜଣ ଯୁବକ ଗିରଫ ହେଲେ ଓ ଆଲୀପୁର ଷଡ଼ଯନ୍ତ୍ର ମୋକଦ୍ଦମାରେ ସେମାନଙ୍କ ମଧ୍ୟରୁ ୧୯ ଜଣଙ୍କୁ ଦଣ୍ଡ ଦିଆଗଲା । ଏହାପରେ ସନ୍ତ୍ରାସବାଦ କ୍ଷିପ୍ର ଗତିରେ ବଙ୍ଗଳାରେ ବ୍ୟାପିବାକୁ ଆରମ୍ଭ କଲା ।

ନଭେମ୍ବର ୧୯୦୮ ମସିହାରେ ସାର୍ ଆଣ୍ଡ୍ରୁ ଫ୍ରେଜରଙ୍କୁ ହତ୍ୟା କରିବା ପାଇଁ ପୁନର୍ବାର ଉଦ୍ୟମ କରାଯାଇଥିଲା, ଯଦିଓ ଏ ଆକ୍ରମଣ ଫଳପ୍ରଦ ହୋଇନଥିଲା । ମୁଜାଫରପୁର କେନେଡ଼ି ହତ୍ୟା ଅନୁସନ୍ଧାନରେ ସମ୍ପୃକ୍ତ ଜଣେ ଭାରତୀୟ ପୁଲିସ ଅଫିସରଙ୍କୁ କଲିକତା ସହରରେ ଗୁଳିକରି ହତ୍ୟା କରାଗଲା । ଏହାପରେ ଆଲୀପୁର ଷଡ଼ଯନ୍ତ୍ର ମୋକଦ୍ଦମାରେ ପବ୍ଲିକ୍ ପ୍ରୋସିକ୍ୟୁଟର ବା ସରକାରୀ ଅଭିଯୋକ୍ତା ସନ୍ତ୍ରାସବାଦୀଙ୍କ ଗୁଳିରେ ନିହତ ହେଲେ । ପରବର୍ଷ ଜୁଲାଇ ମାସରେ ସେକ୍ରେଟେରୀ ଅଫ୍ ଷ୍ଟେଟ୍ (ଭାରତ ସଚିବ) ମର୍ଲେଙ୍କ ସେକ୍ରେଟେରୀ ଲଣ୍ଡନରେ ପଞ୍ଜାବର ଜଣେ ଆତଙ୍କବାଦୀ ଏମ୍.ଏଲ୍. ଡିଙ୍ଗ୍ରାଙ୍କ ଗୁଳିରେ ଆହତ ହୋଇ ପ୍ରାଣତ୍ୟାଗ କଲେ । ଏପରିକି ସେହିବର୍ଷ ନଭେମ୍ବରରେ ଭାଇସରାୟ ମିଣ୍ଟୋ ଗୋଟିଏ ଘୋଡ଼ା ଗାଡ଼ିରେ ଯାତ୍ରା କରୁଥିବା ସମୟରେ ଦୁଇଟି ବୋମା ନିକ୍ଷେପ କରାଯାଇଥିଲା । ତାଙ୍କର ବହୁ ଭାଗ୍ୟ ଯେ ବୋମା ଦୁଇଟି ଫୁଟିଲା ନାହିଁ । ଡିସେମ୍ବର ମାସରେ ନାସିକର କଲେକ୍ଟର ମିଃ. ଜ୍ୟାକ୍‌ସନ୍‌ଙ୍କୁ ଗୁଳିକରି ହତ୍ୟା କରାଗଲା । ଦେଶର ବିଭିନ୍ନ ଅଞ୍ଚଳରେ ରାଜନୈତିକ ଡକାୟତି ମାଧ୍ୟମରେ ପାଣ୍ଠି ସଂଗ୍ରହ କରିବାକୁ ଉଦ୍ୟମ ହେଉଥିଲା ।

ବମ୍ବେ ଓ ପଞ୍ଜାବରେ ମଧ୍ୟ ଏହାର ପ୍ରତିକ୍ରିୟା ଦେଖା ଦେଇଥିଲା । କଂଗ୍ରେସର ଜଣେ ଚରମପନ୍ଥୀ ନେତା ବିପିନ୍ ଚନ୍ଦ୍ର ପାଲଙ୍କର ମାଡ୍ରାସରେ "ସ୍ୱରାଜ" ସପକ୍ଷରେ ଭାଷଣ ହେତୁ ଉତ୍ତେଜନାମୂଳକ ପରିସ୍ଥିତି ସୃଷ୍ଟି ହୋଇଥିଲା । ପଞ୍ଜାବରେ ଅସନ୍ତୋଷ ମୁଖ୍ୟତଃ ବଙ୍ଗ ବିଭାଜନର ପ୍ରତିକ୍ରିୟା ଓ ରାଜସ୍ୱ ବୃଦ୍ଧି ହେତୁ ଆରମ୍ଭ ହୋଇଥିଲା ।

ଏପରିକି ଲାୟଲପୁର ଜିଲ୍ଲାରେ ରାଜସ୍ୱ ନଦେଲେ ଜଳକର ବୃଦ୍ଧି କରାଯିବ ଓ ସରକାରୀ ଜମି ଲିଜ୍ ଦିଆଯାଇଥିବା ବ୍ୟକ୍ତିଙ୍କର ମୃତ୍ୟୁ ହେଲେ କେବଳ ତାଙ୍କର ଜ୍ୟେଷ୍ଠପୁତ୍ର ଜମିର ମାଲିକ ଦଖଲକାର ହେବେ ବୋଲି ଗୋଟିଏ ବିଲ୍ ଆଗତ ହେଲା । ଏହା ବିରୁଦ୍ଧରେ ପ୍ରତିବାଦ କରିବା ହେତୁ ପଞ୍ଜାବର ଦୁଇଜଣ ମୁଖ୍ୟ ନେତା ଲାଲା ଲଜପତ୍ ରାୟ ଓ ଅଜିତ୍ ସିଂଙ୍କୁ ଗିରଫ କରାଯାଇ ବ୍ରହ୍ମଦେଶକୁ ଦେଶାନ୍ତର କରାଗଲା । ମିଣ୍ଟୋଙ୍କର ସଦ୍‌ବୁଦ୍ଧି ହେଲା ସେ ଜ୍ୟେଷ୍ଠାଂଶ ସମ୍ପର୍କୀୟ କଲୋନାଇଜେସନ ବିଲ୍‌କୁ ସମ୍ମତି ଦେଲେନାହିଁ ଓ ତାହା ଆଇନରେ ପରିଣତ ହୋଇପାରିଲା ନାହିଁ ।

ଏହି ସମୟରେ ବମ୍ବେରେ ବାଳ ଗଙ୍ଗାଧର ତିଳକ ତାଙ୍କ ସମ୍ପାଦିତ "କେଶରୀ" ପତ୍ରିକାରେ ରାଜଦ୍ରୋହ ସୂଚକ ଲେଖା ଲେଖୁଥିଲେ । ଭାରତରେ ମିଣ୍ଟୋ ଓ ଲଣ୍ଡନରେ ସେକ୍ରେଟେରୀ ମର୍ଲେ ପରସ୍ପର ଆଲୋଚନା କରି ବୁଝିଲେ ଯେ ସନ୍ତ୍ରାସବାଦ ସମ୍ପର୍କରେ ଲଣ୍ଡନରେ ଯାହାସବୁ ପ୍ରଚାର ହେଉଛି, ତାହା ଅନେକାଂଶରେ ଅତିରଞ୍ଜିତ । ଅବଶ୍ୟ ସେମାନେ ସ୍ଥିର କଲେ ଯେ, ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଯଥାବିଧି ଫୌଜଦାରୀ ଆଇନ ପ୍ରଣୟନ କରିବା ଉଚିତ ଏବଂ ଚଳନ୍ତି ଆଇନରେ ମଧ୍ୟ ବହୁ ସଂଶୋଧନ ଆବଶ୍ୟକ । ତଦନୁଯାୟୀ କେତେକ ନୂଆ ଆଇନ ପ୍ରଣୀତ ହେଲା ।

ବଙ୍ଗ ବିଭାଜନର ପ୍ରତିକ୍ରିୟା ମଧ୍ୟ କଂଗ୍ରେସ ସଂଗଠନକୁ କ୍ଷତାକ୍ତ କରିଥିଲା । ବିଭାଜନର ବିରୋଧୀ ମହାରାଷ୍ଟ୍ରର ଚରମପନ୍ଥୀ ନେତା ତିଳକଙ୍କୁ ବହୁ ବଙ୍ଗାଳୀ ଯୁବକ ସମର୍ଥନ କରୁଥିଲେ । ଏପରିକି ଅରବିନ୍ଦ ଘୋଷ ଭାବୁଥିଲେ ଯେ, ସେ ବଙ୍ଗଳାର ସନ୍ତ୍ରାସବାଦୀମାନଙ୍କର ମୁଖ୍ୟ ଭାବରେ କଂଗ୍ରେସରୁ ବହୁ ନରମପନ୍ଥୀ ବା ମଡ଼ରେଟ୍ ନେତାଙ୍କୁ କ୍ଷମତାଚ୍ୟୁତ କରି ପାରିବେ । ତିଳକ ଭାବୁଥିଲେ ଯେ, ଭିକ୍ଷାଥାଳ ଧରି ଦାନସୂତ୍ରରେ ଇଂରେଜମାନଙ୍କଠାରୁ କୌଣସି ସୁବିଧା ସୁଯୋଗ ହାସଲ କରାଯାଇ ପାରିବନାହିଁ । ଅଥଚ ସେହି ମହାରାଷ୍ଟ୍ରର ନରମପନ୍ଥୀ ନେତା ଗୋପାଳକୃଷ୍ଣ ଗୋଖଲେ ଇଂରେଜମାନଙ୍କଠାରୁ ସମ୍ପର୍କ ଛିନ୍ନ କରିବାକୁ ଚାହୁଁ ନଥିଲେ । ଉଭୟେ ଥିଲେ ମହାରାଷ୍ଟ୍ରର ଚିତ୍‌ପାବନ ଗୋଷ୍ଠୀର ବ୍ରାହ୍ମଣ ଏବଂ ଉଭୟ ଜୀବନ ଆରମ୍ଭ କରିଥିଲେ ପୁନାର ଫର୍ଗୁସନ୍ କଲେଜର ଅଧ୍ୟାପକ ଭାବରେ । କିନ୍ତୁ ଉଭୟଙ୍କ ମଧ୍ୟରେ ମତଭେଦ ଥିଲା ଗଭୀର । ଜନସେବା ପାଇଁ ଗୋଖଲେ ବମ୍ବେରେ ଭାରତ ସେବକ ସମିତି ପ୍ରତିଷ୍ଠା କରିଥିଲେ । ଅଥଚ ତିଳକ ନିୟମିତ ରୂପେ ସ୍ୱପ୍ରତିଷ୍ଠିତ "କେଶରୀ" ସମ୍ବାଦପତ୍ରରେ ରାଜଦ୍ରୋହମୂଳକ ଲେଖା ଲେଖୁଥିଲେ । ଏପରିକି ମୁଜାଫରପୁରରେ ଇଂରେଜ

ମହିଳାମାନଙ୍କର ହତ୍ୟାକୁ ସମର୍ଥନ କରି "କେଶରୀ" ପତ୍ରିକାରେ ମତାମତ ପ୍ରକାଶିତ ହେଲା । ଏହି ମଉକାର ସୁବିଧା ନେଇ "କେଶରୀ" ପତ୍ରିକା ବିରୁଦ୍ଧରେ ରାଜଦ୍ରୋହ ଅଭିଯୋଗରେ ମୋକଦ୍ଦମା କରାଗଲା ଓ ତିଳକଙ୍କୁ ଛଅବର୍ଷ ପାଇଁ ନିର୍ବାସନ ଦଣ୍ଡ ଦିଆଗଲା । କଂଗ୍ରେସ ନେତାମାନଙ୍କ ମଧ୍ୟରେ ଏହି ପ୍ରକାର ବିରୋଧ ମନୋଭାବ ହେତୁ ୧୯୦୬ ମସିହାରେ କଂଗ୍ରେସର ଅତି ପୁରୁଖା ସମ୍ମାନନୀୟ ନେତା ଦାଦା ଭାଇ ନାରୋଜୀ, ଯେ କି ଏଥିପୂର୍ବରୁ ବ୍ରିଟିଶ୍ ପାର୍ଲାମେଣ୍ଟରେ ସଦସ୍ୟ ଥିଲେ, ସେହି ୮୧ ବର୍ଷ ବୟସ୍କ ପାର୍ସୀ ନେତାଙ୍କୁ କଂଗ୍ରେସର ସଭାପତି ଭାବରେ ମନୋନୀତ କରାଗଲା ଏବଂ ତାଙ୍କର ପ୍ରତିଷ୍ଠା ଦୃଷ୍ଟିରୁ କୌଣସି ଗୋଷ୍ଠୀ ତାଙ୍କର ବିରୋଧ କଲେନାହିଁ । କିନ୍ତୁ ୧୯୦୭ ମସିହାରେ ଗୁଜୁରାଟର ସୁରାଟ ନଗରୀରେ ଦୁଇଗୋଷ୍ଠୀଙ୍କ ମଧ୍ୟରେ ବିବାଦ ହେତୁ କିଏ କଂଗ୍ରେସ ସଭାପତି ହେବେ, ସେଥିପାଇଁ ସଂଘର୍ଷ ଆରମ୍ଭ ହୋଇଗଲା । ଚୌକି, ବେଞ୍ଚ ଭଙ୍ଗାଭଙ୍ଗିଠାରୁ ଆରମ୍ଭ କରି ଗଣ୍ଡଗୋଳ ଏତେ ବ୍ୟାପକ ହେଲା ଯେ, ଶେଷକୁ ପୋଲିସ ହସ୍ତକ୍ଷେପ ଫଳରେ ଅଧିବେଶନ ସ୍ଥଗିତ ରହିଲା । ୧୯୨୫ ମସିହାରେ ଗୋପାଳକୃଷ୍ଣ ଗୋଖଲେଙ୍କର ମୃତ୍ୟୁ ହେଲା ଏବଂ ତାହାପରେ କଂଗ୍ରେସର ଅନ୍ତର୍ନିହିତ ସଂଘର୍ଷ କେତେକାଂଶରେ ଦୂର ହେଲା ।

ଇଂରେଜମାନେ କେବଳ ରାଜଦ୍ରୋହ ଦଫାରେ ଦଣ୍ଡବିଧାନ କରି ସନ୍ତୁଷ୍ଟ ହୋଇନଥିଲେ । ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ପ୍ରଚଳିତ ବିବାଦର ସେମାନେ ସୁବିଧା ନେବାକୁ ଆରମ୍ଭ କଲେ । ସାର୍ ସୟଦ୍ ଅହମ୍ମଦ ଖାଁଙ୍କ ପ୍ରରୋଚନାରେ ମୁସଲମାନମାନେ କଂଗ୍ରେସ ଆନ୍ଦୋଳନରୁ ନିର୍ଲିପ୍ତ ରହିଥିଲେ । ୧୮୯୮ ମସିହାରେ ସାର୍ ସୟଦଙ୍କ ମୃତ୍ୟୁପରେ ଆଶା କରାଯାଉଥିଲା ଯେ, ହିନ୍ଦୁ ନେତାମାନଙ୍କ ପ୍ରତି ମୁସଲମାନମାନଙ୍କର ତିକ୍ତତା କିଛି ଅଂଶରେ ମଉଳିଯିବ । କିନ୍ତୁ ଇଂରେଜମାନେ ନୂଆ ଚାଲ ଖେଳିବାକୁ ଆରମ୍ଭ କଲେ । ଏକ ପକ୍ଷରେ ବ୍ରିଟେନର ରାଜା ଘୋଷଣା କଲେ ଯେ, ଭାରତ ଶାସନ ପାଇଁ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ପ୍ରଚଳନ କରିବା ପାଇଁ ସମୟ ଆସିଛି । ୧୯୦୯ ମସିହାରେ ନୂତନ ଭାରତୀୟ କାଉନସିଲ ଆକ୍ଟ ପାର୍ଲାମେଣ୍ଟରେ ଗୃହୀତ ହେଲା ଏବଂ ସେ ଆଇନଟି ମର୍ଲେ-ମିଣ୍ଟୋ ସଂସ୍କାର ନାମରେ ପରିଚିତ । ଏହି ଆଇନର ବ୍ୟବସ୍ଥା ଅନୁସାରେ କେନ୍ଦ୍ର ଓ ପ୍ରାଦେଶିକ ବିଧାନସଭାମାନଙ୍କରେ ସଭ୍ୟସଂଖ୍ୟା ବୃଦ୍ଧି କରାଗଲା ଓ ତତ୍‌ସହିତ ଭାରତୀୟ ପ୍ରତିନିଧିଙ୍କ ସଂଖ୍ୟା ମଧ୍ୟ ବଢ଼ିଲା । ଏହି ସଭ୍ୟମାନଙ୍କ ମଧ୍ୟରୁ କେତେକ ମନୋନୀତ ଓ

ଅନ୍ୟ କେତେଜଣ ନିର୍ବାଚିତ ହେଉଥିଲେ । କେତେକ ପ୍ରଦେଶରେ ଭାରତୀୟ ବ୍ୟବସ୍ଥାପକଙ୍କ ସଂଖ୍ୟା ଅର୍ଦ୍ଧରୁ ଅଧିକ ହୋଇଥିଲା । କିନ୍ତୁ ବ୍ୟବସ୍ଥା ସଭାର ସୁପାରିଶ୍‌ଗୁଡ଼ିକ ଗ୍ରହଣ କରିବାକୁ ଭାଇସରାୟ ବା ଗଭର୍ଣ୍ଣରଙ୍କ ଏକଜିକ୍ୟୁଟିଭ କାଉନସିଲ୍ ବାଧ୍ୟ ନଥିଲେ । ଏପରିକି ଜଣେ ଭାରତୀୟ ବଙ୍ଗଳାର ଆଡ୍‌ଭୋକେଟ୍ ଜେନେରାଲ ସତ୍ୟେନ୍ଦ୍ର ନାଥ ସିହ୍ନାଙ୍କୁ ଭାଇସରାୟଙ୍କ ଏକଜିକ୍ୟୁଟିଭ୍ କାଉନସିଲ୍‌ର ଆଇନ ସଭ୍ୟ ଭାବରେ ନିଯୁକ୍ତି ଦିଆଯାଇଥିଲା । କଂଗ୍ରେସର ମର୍ଡରେଟ୍ ନେତାମାନେ ଏହି ସବୁ ସଂସ୍କାରକୁ ଆନନ୍ଦର ସହ ଗ୍ରହଣ କରିଥିଲେ । ସୁରେନ୍ଦ୍ରନାଥ ବାନାର୍ଜୀ, ଆର୍.ସି. ଦତ୍ତ ଓ ପଣ୍ଡିତ ମଦନ ମୋହନ ମାଲବ୍ୟ ପ୍ରମୁଖ କଂଗ୍ରେସ ନେତାମାନେ ଏହି ପରିବର୍ତ୍ତନକୁ ସ୍ୱାଗତ କରିଥିଲେ । କିନ୍ତୁ ମୁସଲମାନ ସମ୍ପ୍ରଦାୟ ମଧ୍ୟରେ ଏହା ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା ।

ଆଗା ଖାଁଙ୍କ ନେତୃତ୍ୱରେ କେତେକ ମୁସ୍‌ଲିମ୍ ନେତା ଲଣ୍ଡନ ଯାଇ ଭାରତ ସଚିବ ମର୍ଲେଙ୍କୁ ସାକ୍ଷାତ କଲେ ଏବଂ ମୁସଲମାନମାନଙ୍କ ପାଇଁ ନିର୍ବାଚନରେ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷିତ ରଖିବାକୁ ଦାବି କଲେ । ସେମାନେ ଚାହୁଁଥିଲେ ସଂଖ୍ୟା ଅନୁପାତ ଦୃଷ୍ଟିରୁ ସବୁ ପ୍ରଦେଶରେ ମୁସଲମାନମାନଙ୍କ ପାଇଁ ପ୍ରତିନିଧି ସ୍ଥାନ ନିରୂପଣ କରାଯାଉ ଏବଂ ତତ୍‌ସହ ଏ ବ୍ୟବସ୍ଥା ମଧ୍ୟ ରହୁ ଯେ, ମୁସଲମାନ୍ ପ୍ରତିନିଧିମାନେ କେବଳ ମୁସଲମାନ୍ ଭୋଟ୍‌ଦାତାଙ୍କ ଦ୍ୱାରା ନିର୍ବାଚିତ ହୋଇପାରିବେ । ଅର୍ଥାତ୍ ହିନ୍ଦୁ ମୁସଲମାନ୍ ବିଭେଦ ଯେପରି ସମାଜର ସବୁ ସ୍ତରରେ ମୁକ୍ତ ଭାବରେ ବିକଶିତ ହେବ, ତା'ର ବ୍ୟବସ୍ଥା ହେଉ । ଏହି ସଂରକ୍ଷଣ ବ୍ୟବସ୍ଥାକୁ କୁହାଯାଉଥିଲା "କମ୍ୟୁନାଲ୍ ଆୱାର୍ଡ" । ଏପରି କ୍ଷତିକାରକ ନିଷ୍ପତ୍ତିର ହିନ୍ଦୁମାନେ ବିରୋଧ କରୁଥିଲେ । କିନ୍ତୁ ହିନ୍ଦୁ ମୁସଲମାନ୍‌ମାନଙ୍କ ମଧ୍ୟରେ ସ୍ଥାୟୀ ଭାବରେ ବିଭେଦ ସୃଷ୍ଟି କରିବା ପାଇଁ ଏହାହିଁ ଥିଲା ଇଂରେଜଙ୍କର ପ୍ରଧାନ ଅସ୍ତ୍ର ଏବଂ ସେ ଅସ୍ତ୍ରକୁ ସେମାନେ ହାତଛଡ଼ା କରିବାକୁ ଚାହିଁଲେ ନାହିଁ । ସ୍ମରଣ କରାଯାଇପାରେ ଯେ ସ୍ୱାଧୀନତା ସଂଗ୍ରାମକୁ ବ୍ୟର୍ଥ କରିବା ପାଇଁ ଇଂରେଜ ଶାସକମାନେ ଏହି ଅସ୍ତ୍ର ବ୍ୟବହାର କରି ଆସିଛନ୍ତି । ଭାରତରେ ଯେତେ ସାଂପ୍ରଦାୟିକ ବିଭେଦ, ଦଙ୍ଗାହଙ୍ଗାମା ହୋଇଛି ଏବଂ ପରିଶେଷରେ ଭାରତ ବିଭାଜିତ ହୋଇ ଯେପରି ପାକିସ୍ତାନ ସୃଷ୍ଟି ହେଲା, ତା'ର ମୂଳଭିତ୍ତି ଥିଲା ଏହି ସାଂପ୍ରଦାୟିକ ସଂରକ୍ଷଣ ନୀତି ।



# ପ୍ରଥମ ବିଶ୍ୱଯୁଦ୍ଧ

ଯଦିଓ ମିଣ୍ଟୋଙ୍କ ଅମଳରେ ଶାସନ ସଂସ୍କାର ପ୍ରଚଳିତ ହେଲା ଓ ସଂରକ୍ଷଣ ନୀତି ମଧ୍ୟ ପ୍ରୟୋଗ କରାଗଲା, ତଥାପି କର୍ଜନଙ୍କ ତୁଳନାରେ ମିଣ୍ଟୋ ଥିଲେ ଅତି ଧୀରସ୍ଥିର ଓ ଶାନ୍ତଶିଷ୍ଟ । ଯେଉଁ ଦେଶୀୟ ରାଜାମାନଙ୍କୁ କର୍ଜନ ଧମକ ସୂତ୍ରରେ ବା ଦଣ୍ଡବିଧାନ କରି ଆକଟ କରୁଥିଲେ, ମିଣ୍ଟୋଙ୍କ ସମୟରେ ସେମାନେ ସରକାରଙ୍କର ସୁନାପୁଅ ଗୋଷ୍ଠୀ ଭାବରେ ବିବେଚିତ ହେଲେ, ଯେପରିକି ଭବିଷ୍ୟତର କୌଣସି ବିପଦ ସମୟରେ ସେମାନେ ଇଂରେଜ ସରକାରଙ୍କର ବନ୍ଧୁ ଭାବରେ ଉଭା ହେବେ । କାର୍ଯ୍ୟତଃ ତାହାହିଁ ହୋଇଥିଲା । ରାଜାମାନଙ୍କର ଆଭ୍ୟନ୍ତରୀଣ ଶାସନରେ କୌଣସି ପ୍ରକାର ହସ୍ତକ୍ଷେପ ନକରିବା ହେଲା ବ୍ରିଟିଶ୍ ସରକାରଙ୍କର ନୀତି । ଅନ୍ୟଥା ଭାରତୀୟ ସମ୍ବାଦପତ୍ରଗୁଡ଼ିକ ଯେପରି ରାଜଦ୍ରୋହର ସୀମାସ୍ପର୍ଶ ନକରନ୍ତି, ସେଥିପାଇଁ ନୂତନ ପ୍ରେସ୍ ଆଇନ୍ ପ୍ରଣୀତ ହେଲା । କିନ୍ତୁ ଏହି ବ୍ୟବସ୍ଥା ଦ୍ୱାରା ବ୍ରିଟିଶ୍ ବିରୋଧୀ ସନ୍ତ୍ରାସବାଦର ବିଲୋପ ଘଟିଲା ନାହିଁ । ୧୯୧୦ ମସିହା ଜାନୁଆରୀ ୨୫ ତାରିଖରେ ଯେଉଁଦିନ ନୂତନ ବିଧାନସଭା ଉଦ୍‌ଘାଟିତ ହେଲା, ଠିକ୍ ସେହିଦିନ ଆଲୀପୁର ଷଡ଼ଯନ୍ତ୍ର ମୋକଦ୍ଦମା ଚଳାଉଥିବା ଜଣେ ମୁସ୍‌ଲିମ୍ ପୋଲିସ୍ ଅଫିସରଙ୍କୁ ଆତଙ୍କବାଦୀମାନେ ହତ୍ୟାକଲେ । ମନେ ହେଉଥିଲା ଯେ ସନ୍ତ୍ରାସବାଦ ଭାରତରେ, ବିଶେଷତଃ ବଙ୍ଗ ଦେଶରେ ସ୍ଥାୟୀ ଆସନ ପ୍ରତିଷ୍ଠା କରିଛି ।

କାର୍ଯ୍ୟକାଳ ଶେଷହେବା ପରେ ମିଣ୍ଟୋ ନଭେମ୍ବର ୧୯୧୦ ମସିହାରେ ଭାରତରୁ ବିଦାୟ ନେଲେ ଓ ତାଙ୍କ ସ୍ଥାନରେ ସାର୍ ଚାର୍ଲସ୍ ହାର୍ଡିଞ୍ଜଙ୍କୁ ଲର୍ଡ଼ ପଦରେ ଭୂଷିତ କରି ଭାରତର ଭାଇସ୍‌ରାୟ ନିଯୁକ୍ତ କରାଗଲା । ପୂର୍ବତନ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ମର୍ଲେ ବଙ୍ଗ ବିଭାଜନ ନିଷ୍ପତ୍ତିର କୌଣସି ନିଷ୍ପତ୍ତି ଚାହୁଁ ନଥିଲେ । କିନ୍ତୁ ମର୍ଲେଙ୍କ ସ୍ଥାନରେ ଯିଏ ନୂତନ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ନିଯୁକ୍ତ ହୋଇଥିଲେ,

ସେହି ଲର୍ଡ଼ କ୍ରେୱେ ଏ ପ୍ରଶ୍ନ ଉପରେ ନୂତନ ଦୃଷ୍ଟିପାତ କରିଥିଲେ । କ୍ରେୱେ ଓ ହାର୍ଡ଼ିଞ୍ଜ ଦୁଇଟି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଇଥିଲେ ଯାହାକୁ କି ପରବର୍ଷ ଡିସେମ୍ବର ମାସରେ ସମ୍ରାଟ ପଞ୍ଚମ ଜର୍ଜ ଭାରତ ଆସିବା ପର୍ଯ୍ୟନ୍ତ ଗୁପ୍ତ ରଖାଯାଇଥିଲା । ପଞ୍ଚମ ଜର୍ଜଙ୍କ ଉପଲକ୍ଷେ ଯେଉଁ ଦରବାର ଅନୁଷ୍ଠିତ ହେଲା, ସେଥିରେ ସମ୍ରାଟ ନିଜେ ଏ ଦୁଇଟି ଘୋଷଣା କରିଥିଲେ । ପ୍ରଥମଟି ହେଲା ଯେ, ବଙ୍ଗ ବିଭାଜନ ନିଷ୍ପତ୍ତିକୁ ରଦ୍ଦ କରାଯିବ ଏବଂ ଦ୍ୱିତୀୟତଃ ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀକୁ ସ୍ଥାନାନ୍ତରିତ ହେବ । ବଙ୍ଗ ବିଭାଜନ ଏଣିକି ଭିନ୍ନ ରୂପ ନେଲା । ଆସାମ୍ ପୂର୍ବବତ୍ ଜଣେ ଚିଫ୍ କମିସନରଙ୍କ ଅଧୀନରେ ସ୍ୱତନ୍ତ୍ର ପ୍ରଦେଶ ହୋଇ ରହିଲା । ବିହାର ଓ ଓଡ଼ିଶାକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେଲା ଏବଂ ପୂର୍ବ ବଙ୍ଗ ଓ ପଶ୍ଚିମ ବଙ୍ଗ ପୂର୍ବ୍ବବତ୍ ଏକତ୍ର ରହି ବଙ୍ଗ ପ୍ରଦେଶ ପୁନର୍ଗଠିତ ହେଲା । ଇଂରେଜ ଶାସକମାନେ ଭାବୁଥିଲେ, ଏ ନିଷ୍ପତ୍ତି ଦ୍ୱାରା ବଙ୍ଗାଳୀମାନେ ସନ୍ତୁଷ୍ଟ ହେବେ କିନ୍ତୁ କାର୍ଯ୍ୟତଃ ଫଳ ହେଲା ଓଲଟା । ପୂର୍ବବଙ୍ଗର ମୁସଲମାନବହୁଳ ଜିଲ୍ଲାଗୁଡ଼ିକରେ ବରଂଚ୍ ଅଶାନ୍ତି ସୃଷ୍ଟି ହେଲା । ମୁସ୍‌ଲିମ୍ କର୍ତ୍ତୃତ୍ୱରୁ ପୂର୍ବବଙ୍ଗର ଜିଲ୍ଲାଗୁଡ଼ିକ ଚାଲିଯିବା ହେତୁ ମୁସଲ୍‌ମାନ୍‌ମାନେ ବରଂ ଅସନ୍ତୁଷ୍ଟ ଓ କ୍ଷୁବ୍ଧ ହୋଇଥିଲେ ।

ରାଜଧାନୀ ଦିଲ୍ଲୀକୁ ସ୍ଥାନାନ୍ତର କରିବା ବିଷୟରେ ବଙ୍ଗଳା ବ୍ୟତୀତ ଅନ୍ୟ ପ୍ରଦେଶମାନେ ଅସନ୍ତୁଷ୍ଟ ହେବାର କାରଣ ନଥିଲା । ମୁସଲ୍‌ମାନ୍ ଓ ମୋଗଲ୍ ରାଜୁତି ସମୟରେ ଦିଲ୍ଲୀ ଥିଲା ଭାରତର ରାଜଧାନୀ । ଇଂରେଜମାନେ ଏହି ଐତିହ୍ୟର ସୁବିଧା ନେବାକୁ ଚାହୁଁଥିଲେ । ୧୯୧୧ ମସିହା ଡିସେମ୍ବର ମାସରେ ଏ ନିଷ୍ପତ୍ତି ଘୋଷଣା କରାଗଲେ ମଧ୍ୟ ୧୯୧୪ ମସିହାରେ ପ୍ରଥମ ମହାଯୁଦ୍ଧ ଆରମ୍ଭ ହୋଇଥିଲା ଏବଂ ଦିଲ୍ଲୀରେ ଗୋଟିଏ ନୂଆ ସହର ଗଢ଼ିବା ପାଇଁ ସରକାରଙ୍କର ଅର୍ଥାଭାବ ହେଲା । ତା' ସତ୍ତ୍ୱେ ୧୯୧୨ ମସିହା ଶରତ ଋତୁରେ ପୁରୁଣା ଦିଲ୍ଲୀର ଉତ୍ତର ଦିଗରେ କେତେକ ଅସ୍ଥାୟୀ ଘରେ ଭାଇସ୍‌ରାୟ ଓ ଭାରତ ସରକାରଙ୍କର ଉଚ୍ଚପଦସ୍ଥ ଅଫିସର୍‌ମାନେ ବସବାସ ଓ ଅଫିସ୍ କାର୍ଯ୍ୟ ଆରମ୍ଭ କଲେ । ଏହି ସମୟରେ ଏପରି ଏକ ଘଟଣା ଘଟିଲା, ଯାହାକି ପୁନର୍ବାର ଇଂରେଜମାନଙ୍କର ମତିଭ୍ରମ କରିଦେଲା । ଦରବାରର ବର୍ଷକ ପରେ ଯେଉଁଦିନ ହାର୍ଡ଼ିଞ୍ଜ ହାତୀ ଉପରେ ଚଢ଼ି ନୂତନ ରାଜଧାନୀ ଦିଲ୍ଲୀରେ ପ୍ରବେଶ କରୁଥିଲେ, ସେଦିନ ତାଙ୍କ ଉପରକୁ ଗୋଟିଏ ବୋମା ନିକ୍ଷେପ କରାଗଲା ।

ଯାହାଫଳରେ ତାଙ୍କ ପିଠିରେ ବହୁତ ଆଘାତ ହୋଇଥିଲା ଓ ସାଥିରେ ଥିବା ଅର୍ଡ଼ରଲିମାନଙ୍କ ମଧ୍ୟରୁ ଜଣଙ୍କର ମୃତ୍ୟୁ ଘଟିଥିଲା । ଡେରାଡୁନ୍‌ରେ ଚାକିରି କରୁଥିବା ରାସ ବିହାରୀ ବୋଷଙ୍କ ନେତୃତ୍ୱରେ ଏହି ଆକ୍ରମଣ କରାଯାଇଥିଲା । ଏହାପରେ ରାସ ବିହାରୀ ବୋଷ ଜାପାନକୁ ପଳାୟନ କରିଥିଲେ ଏବଂ ଅତି ବୃଦ୍ଧ ବୟସରେ ସ୍ୱାଧୀନତା ପ୍ରାପ୍ତି ପରେ ଭାରତକୁ ଫେରିଥିଲେ ।

ଏହି ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଛଡ଼ା ଭାରତର ରାଜନୈତିକ ଅବସ୍ଥା ଅନ୍ୟଥା ଶାନ୍ତିପୂର୍ଣ୍ଣ ଥିଲା । ମର୍ଡ଼ରେଟ୍ ବା ନରମପନ୍ଥୀମାନେ କଂଗ୍ରେସକୁ ନିୟନ୍ତ୍ରଣ କରୁଥିଲେ । ତିଳକ ଥିଲେ ଜେଲ୍‌ରେ ଏବଂ ଅରବିନ୍ଦ ଘୋଷ ପଣ୍ଡିଚେରୀରେ ସନ୍ନ୍ୟାସ ଜୀବନ କଟାଉଥିଲେ । ନରମପନ୍ଥୀମାନେ ଅବଶ୍ୟ କାଉନ୍‌ସିଲ୍ ପରିଗଠନ ଓ ସେଥିରେ ନିର୍ବାଚିତ ପ୍ରତିନିଧିଙ୍କର ସଂଖ୍ୟା ବଢ଼ାଇବା ପାଇଁ ଦାବି କରୁଥିଲେ । ପ୍ରଦେଶମାନଙ୍କୁ ଯଥାସମ୍ଭବ କେନ୍ଦ୍ରର ନିୟନ୍ତ୍ରଣରୁ ମୁକ୍ତ ରଖିବା ପାଇଁ ମଧ୍ୟ ଦାବି ହେଉଥିଲା, କିନ୍ତୁ ବ୍ରିଟିଶ ସରକାର ଏସବୁ ପ୍ରତି ଆଦୌ ନଜର ଦେଉନଥିଲେ । ଏହି ସମୟରେ ଇଂରେଜ ଅଧିକୃତ ଆଫ୍ରିକା, ମରିସସ, ବ୍ରିଟିଶ୍ ଗାଏନା, ଫିଜି, ନାଟାଲ ଓ ପୂର୍ବ ଆଫ୍ରିକାର ବହୁ ଦେଶରେ ସ୍ଥାନୀୟ ଇଂରେଜ ଶିଳ୍ପପତି ଓ ବ୍ୟବସାୟୀମାନଙ୍କୁ ସାହାଯ୍ୟ କରିବା ପାଇଁ ବହୁ ଭାରତୀୟ ଶ୍ରମିକ ସେ ସବୁ ଦେଶରେ ବସତି ବାନ୍ଧିଥିଲେ । ଦକ୍ଷିଣ ଆଫ୍ରିକାରେ ମଧ୍ୟ ବହୁ ଭାରତୀୟ ପରିବାର ସହ ବସବାସ କରୁଥିଲେ । ଏମାନଙ୍କ ସଂଖ୍ୟା ୨୫ ଲକ୍ଷରୁ କମ୍ ହେବନାହିଁ । ନାଟାଲ, ଦକ୍ଷିଣ ଆଫ୍ରିକା ଆଦି କେତେକ ଦେଶ ପାଇଁ ଭାରତୀୟମାନଙ୍କ ସହିତ ପାଞ୍ଚବର୍ଷିଆ ଚୁକ୍ତି କରାଯାଉଥିଲା ଏବଂ ଚୁକ୍ତି ସମୟ ପୂର୍ଣ୍ଣ ହେଲେ ସେମାନେ ଯଦି ଭାରତକୁ ନ ଫେରନ୍ତି, ତାହାହେଲେ ତାଙ୍କଠାରୁ ପ୍ରତିବର୍ଷ ଜୋରିମାନା ସ୍ୱରୂପ ଏକପ୍ରକାରର ଟିକସ ଆଦାୟ କରାଯାଉଥିଲା ଏବଂ ଅନ୍ୟାନ୍ୟ ବହୁପ୍ରକାର ପ୍ରତିବନ୍ଧକ ଦେଇ ସେମାନଙ୍କୁ ଗତି କରିବାକୁ ହେଉଥିଲା । ଏହି ସମୟରେ ୧୮୯୩ ମସିହାରେ ବାରିଷ୍ଟର ମୋହନ ଦାସ କରମ ଚାନ୍ଦ ଗାନ୍ଧି କେତେଜଣ ମହକିଲଙ୍କର ତରଫରୁ ମୋକଦ୍ଦମା ଚଳାଇବା ପାଇଁ ଦକ୍ଷିଣ ଆଫ୍ରିକା ଯାଇଥିଲେ । କିନ୍ତୁ ସେଠାରେ ଗୋରା-କଳା ଭେଦ କାରଣରୁ ଭାରତୀୟମାନଙ୍କ ଉପରେ ନାନାରକମର ଅତ୍ୟାଚାର କରାଯାଉଥିଲା । ଏପରିକି ଜଣେ ବାରିଷ୍ଟର ହୋଇଥିଲେ ମଧ୍ୟ, କୃଷ୍ଣକାୟ ଥିବା ହେତୁ ଖୋଦ୍ ଗାନ୍ଧିଙ୍କ ଉପରେ ମଧ୍ୟ ଦୈହିକ ଅତ୍ୟାଚାର ହୋଇଥିଲା । ଗାନ୍ଧି ବିଭିନ୍ନ ଉପାୟରେ ଭାରତୀୟମାନଙ୍କ ଉପରେ ଏ

ପ୍ରକାର ଅତ୍ୟାଚାର ବନ୍ଦ କରିବାକୁ ଆପ୍ରାଣ ଉଦ୍ୟମ କଲେ । ଭାରତୀୟମାନଙ୍କ ବିରୁଦ୍ଧରେ ପ୍ରଚଳିତ ଆଇନ୍‌ରେ ଯେଉଁସବୁ ନିଷେଧ ରଖାଯାଇଥିଲା, ତାକୁ ଦୂର କରିବା ପାଇଁ ସେ ଆନ୍ଦୋଳନ କଲେ । ଦକ୍ଷିଣ ଆଫ୍ରିକାରେ ପୋଲ୍ ଟ୍ୟାକ୍ସ ଏବଂ ନାମ ରେଜିଷ୍ଟ୍ରେସନ୍ କରିବା ପାଇଁ ଯେଉଁ ନିୟମ କରାଯାଇଥିଲା, ତା' ବିରୁଦ୍ଧରେ ଅହିଂସ ସଂଗ୍ରାମ ଆରମ୍ଭ କଲେ ।

ତାଙ୍କର ଧାରଣା ଥିଲା ଯେ, ଇଂରେଜମାନଙ୍କ ପରି ଗୋଟିଏ ସଭ୍ୟ ଜାତି ଭାରତୀୟମାନଙ୍କ ବିରୁଦ୍ଧରେ ଏପରି ବର୍ବରତା ପ୍ରୟୋଗ କରିବେ ନାହିଁ । ସେଥିପାଇଁ ବୁଅର ଯୁଦ୍ଧରେ ସେ ଏକ ଆମ୍ବୁଲାନ୍ସ ବାହିନୀ ଗଢ଼ି ଆହତ ବ୍ରିଟିଶ ସୈନ୍ୟମାନଙ୍କର ସେବାଶୁଶ୍ରୂଷା କରିଥିଲେ ଏବଂ ଜୁଲୁ ବିଦ୍ରୋହରେ ସେ ବ୍ରିଟିଶମାନଙ୍କ ପକ୍ଷରୁ ପୂର୍ବବତ୍ ଆମ୍ବୁଲାନ୍ସ ବାହିନୀର ଦାୟିତ୍ୱ ନେଇଥିଲେ । ଏହାପରେ ସେ ପୁଣିଥରେ ଇଂଲଣ୍ଡ ଯାଇ ଯେତେବେଳେ ଭାରତୀୟମାନଙ୍କର ଦୁର୍ଦ୍ଦଶା ସଂପର୍କରେ କର୍ତ୍ତୃପକ୍ଷଙ୍କ ସମ୍ମୁଖରେ ଉତ୍‌ଥାପନ କଲେ, ସେଠି କେହି ତାଙ୍କ କଥା ଶୁଣିଲେ ନାହିଁ । ବରଂ ତାଙ୍କୁ କୁହାଗଲା ଯେ, ଟ୍ରାନ୍ସଭାଲ୍ ଓ ଦକ୍ଷିଣ ଆଫ୍ରିକାକୁ ସ୍ୱାୟତ୍ତଶାସନ ଦିଆଯାଇଛି ଏବଂ ସେମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ବ୍ରିଟିଶ ସରକାର ହସ୍ତକ୍ଷେପ କରିବେ ନାହିଁ । ଇଂଲଣ୍ଡରୁ ଫେରି ଗାନ୍ଧି ଅହିଂସା ପ୍ରତିରୋଧ ଆନ୍ଦୋଳନ ଆରମ୍ଭ କଲେ । ତାଙ୍କ ନେତୃତ୍ୱରେ ଟ୍ରାନ୍ସଭାଲ୍‌ରେ ଥିବା ଭାରତୀୟମାନେ ନୂଆ ଆଇନ୍ ଅନୁଯାୟୀ ନିଜକୁ ରେଜିଷ୍ଟ୍ରିଭୁକ୍ତ କଲେ ନାହିଁ । ଗାନ୍ଧିଙ୍କୁ ଗିରଫ କରି କାରାଦଣ୍ଡ ଦିଆଗଲା, କିନ୍ତୁ ଗାନ୍ଧିଙ୍କର ମତାମତରେ କୌଣସି ପରିବର୍ତ୍ତନ ହେଲାନାହିଁ ।

ଏଣେ ଦକ୍ଷିଣ ଆଫ୍ରିକାରେ ଭାରତୀୟମାନଙ୍କ ପ୍ରତି ଅତ୍ୟାଚାର ବିରୁଦ୍ଧରେ ଭାରତରେ ତୁମୁଳ ଅସନ୍ତୋଷ ବ୍ୟାପିଥିଲା ଏବଂ ସମ୍ବାଦପତ୍ରମାନେ ଗାନ୍ଧିଙ୍କର ସତ୍ୟାଗ୍ରହ ସଂପର୍କରେ ବିଶେଷ ବିବରଣୀମାନ ପ୍ରକାଶ କରୁଥିଲେ । କଂଗ୍ରେସ ନେତା ଗୋପାଳ କୃଷ୍ଣ ଗୋଖଲେ ତାଙ୍କର ଜଣେ ପ୍ରଧାନ ସମର୍ଥକ ଥିଲେ । ଭାରତକୁ ଫେରି ଆସି ଜାତୀୟ କଂଗ୍ରେସର ଦାୟିତ୍ୱ ନେବାପାଇଁ ସେ ଗାନ୍ଧିଙ୍କୁ ପତ୍ରଦ୍ୱାରା ଅନୁରୋଧ କରୁଥିଲେ । କିନ୍ତୁ ଏହି ପତ୍ରାଳାପ ଫଳବତୀ ନହେବାରୁ ୧୯୧୨ ମସିହାରେ ଗୋଖଲେ ଦକ୍ଷିଣ ଆଫ୍ରିକାରେ ତାଙ୍କୁ ସାକ୍ଷାତ କଲେ । ଭାରତ ସରକାରଙ୍କ ସମ୍ମତିକ୍ରମେ ଗୋଖଲେ ଗାନ୍ଧିଙ୍କ ସହ ମିଶି ଦକ୍ଷିଣ ଆଫ୍ରିକାର ନେତା ବୋଥା ଓ ଜେନେରାଲ୍ ସ୍ମଟସ୍‌ଙ୍କୁ ସାକ୍ଷାତ କରି ଭାରତ ବିରୋଧୀ ଆଇନ୍‌ଗୁଡ଼ିକୁ ଅକାମୀ କରିବାକୁ ଅନୁରୋଧ କଲେ । ବୋଥା

ଏଥିରେ ସମ୍ମତ ହେବାରୁ ଆଇନ୍ ଦୁଇଟି ଅବଶ୍ୟ ନାକଚ ହୋଇଗଲା, କିନ୍ତୁ ନାଟାଲ୍‌ରେ ଚୁକ୍ତି ସମୟ ପରେ ସେଠାରେ ରହିଥିବା ଭାରତୀୟମାନଙ୍କୁ ଯେଉଁ ଟିକସ୍ ଦେବାର ବ୍ୟବସ୍ଥା ରହିଥିଲା, ତାହା ପୂର୍ବବତ୍ ଚାଲୁ ରହିଲା । ଏଣୁ ଗାନ୍ଧି ପୁନର୍ବାର ତାଙ୍କର ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କଲେ । ଏହି ଆନ୍ଦୋଳନରେ ସ୍ଥାନୀୟ ସରକାର ବହୁ ଭାରତୀୟଙ୍କୁ ଗିରଫ କଲେ । ଟିକସ ଆଦାୟ ବନ୍ଦ କରିବା ପାଇଁ ଗାନ୍ଧି ବହୁ ଭାରତୀୟ ମହିଳାଙ୍କୁ ଆନ୍ଦୋଳନରେ ସାମିଲ କଲେ ଏବଂ ସେ ଓ ତାଙ୍କ ସହଯୋଗୀଙ୍କ ନେତୃତ୍ୱରେ ପ୍ରାୟ ଦୁଇହଜାର ଭାରତୀୟ ପୂର୍ବାନୁମତି ନନେଇ ଟ୍ରାନ୍ସଭାଲ୍‌ରେ ପ୍ରବେଶ କଲେ । ସୀମାପାର ହେବାମାତ୍ରେ ଗାନ୍ଧିଙ୍କୁ ଗିରଫ କରାଗଲା ଏବଂ ଶୋଭାଯାତ୍ରାକାରୀମାନଙ୍କୁ ଗିରଫ କରି ବନ୍ଦୀ ଭାବରେ ଖଣିରେ କାର୍ଯ୍ୟ କରିବା ପାଇଁ ପଠାଇ ଦିଆଗଲା । କିନ୍ତୁ ସେମାନେ ଏ କାର୍ଯ୍ୟ କଲେ ନାହିଁ । ସେଠାରେ ମହିଳା ଶ୍ରମିକମାନଙ୍କ ଉପରେ ଚାଲିଥିବା ଦମନଲୀଳା ବିରୁଦ୍ଧରେ ଜନମତ ଜାଗ୍ରତ ହେଲା ଏବଂ ଭାରତୀୟ ସମ୍ବାଦପତ୍ରମାନେ ଏହି ଜନଜାଗରଣ ସୃଷ୍ଟି କରିବାରେ ସହାୟକ ହେଲେ । ଭାରତ ସରକାର ମଧ ଦକ୍ଷିଣ ଆଫ୍ରିକା ସମସ୍ୟା ସଂପର୍କରେ ବୋଥା ଓ ସ୍ମଟ୍‌ସଙ୍କୁ ପ୍ରତିବାଦ ଜଣାଇଲେ ଏବଂ ପରିଶେଷରେ ୧୯୧୪ ମସିହାରେ ଏହି ଆଇନ୍‌ଗୁଡ଼ିକୁ ଦକ୍ଷିଣ ଆଫ୍ରିକା ସରକାର ରଦ୍ଦ କଲେ । ଭାରତବାସୀଙ୍କ ଅନୁରୋଧ ରକ୍ଷାକରି ମୋହନ ଦାସ କରମ ଚାନ୍ଦ ଗାନ୍ଧି ଠିକ୍ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ଭାରତରେ ପହଞ୍ଚିଲେ । ବମ୍ବେ ବନ୍ଦର ନିକଟରେ ଗାନ୍ଧିଙ୍କୁ ଅଭ୍ୟର୍ଥନା କରାଯାଇଥିଲା ଓ ସେହି ସଭାରେ ତାଙ୍କୁ "ମହାତ୍ମା" ଉପାଧିରେ ଭୂଷିତ କରାଯାଇଥିଲା ।

ବିଶ୍ୱଯୁଦ୍ଧ ଆରମ୍ଭରେ ଜର୍ମାନମାନେ ଭାବିଥିଲେ ଯେ, ଇଂରେଜମାନଙ୍କ ଉପରେ ଆକ୍ରମଣ ହେବା ମାତ୍ରେ ଭାରତ ସାମ୍ରାଜ୍ୟ ଭୁଶୁଡ଼ି ପଡ଼ିବ ଓ ଭାରତୀୟମାନେ ଅବିଳମ୍ବେ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ କରିବେ । କିନ୍ତୁ ଫଳ ହେଲା ଓଲଟା । ଜର୍ମାନମାନଙ୍କର ବିରୁଦ୍ଧରେ ସଂଘର୍ଷ କରିବା ପରିବର୍ତ୍ତେ ଭାରତୀୟମାନେ ଇଂରେଜଙ୍କ ପ୍ରରୋଚନାରେ ସରକାରଙ୍କ ସପକ୍ଷରେ ସ୍ୱର ଉତ୍ତୋଳନ କଲେ । ଏପରିକି ଦେଶୀୟ ରାଜାମାନେ ମଧ ସମସ୍ତ ପ୍ରକାର ସାମରିକ ସାହାଯ୍ୟ ଦେବା ପାଇଁ ଭାଇସ୍‌ରାୟଙ୍କୁ ପତ୍ର ଲେଖିଲେ । କେନ୍ଦ୍ର ବିଧାନସଭାର ସେପ୍ଟେମ୍ବର ମାସରେ ବୈଠକ ବସିଲାବେଳେ ବେସରକାରୀ ସଭ୍ୟଙ୍କ ଦ୍ୱାରା ଆଗତ ସରକାରଙ୍କୁ ଯୁଦ୍ଧ ସମୟରେ ପୂର୍ଣ୍ଣ ସମର୍ଥନ ଜଣାଇ ଯେଉଁ ପ୍ରସ୍ତାବ ଆଗତ ହୋଇଥିଲା, ତାହା ନିର୍ବିବାଦରେ ଗୃହୀତ ହୋଇଥିଲା ।

ଜର୍ମାନମାନଙ୍କର ଗୁପ୍ତଚରମାନେ ଯେ ଅତିରଞ୍ଜିତ ଓ ମିଥ୍ୟା ସମ୍ବାଦ ଯୋଗାଇଛନ୍ତି, ତାହା ଅଚିରେ ପ୍ରମାଣିତ ହେଲା । ଭାରତର ବୁଦ୍ଧିଜୀବୀମାନେ ମର୍ଲେ-ମିଣ୍ଟୋ ସଂସ୍କାର ଆଇନ୍ ପରେ ବିଧାନସଭାର ପରିସର ଓ ଭାରତୀୟ ସଭ୍ୟମାନଙ୍କର କ୍ଷମତା ବୃଦ୍ଧି ସଂପର୍କରେ ଆଶାନ୍ୱିତ ହୋଇ ବ୍ରିଟିଶ ସରକାରଙ୍କୁ ବିପଦ ସମୟରେ ସାହାଯ୍ୟ କରିବା ପାଇଁ ନିଷ୍ପତ୍ତି କଲେ । କେବଳ ଦୁଇଟି ପ୍ରଦେଶରେ ସନ୍ତ୍ରାସବାଦୀମାନେ ନିଜର କାର୍ଯ୍ୟ ଧାରାରେ ଅଟଳ ରହିଲେ । ବଙ୍ଗଳାରେ ସନ୍ତ୍ରାସବାଦୀ ହତ୍ୟାକାଣ୍ଡ ବଢ଼ିଚାଲିଲା । ୧୯୧୪ ମସିହାରେ ମାତ୍ର ୧୪ଟି ହିଂସାକାଣ୍ଡ ଘଟିଥିଲା ବେଳେ ୧୯୧୫ ମସିହାରେ ଏହାର ସଂଖ୍ୟା ହେଲା ୩୬ଟି ଏବଂ ୧୯୧୬ ମସିହାର ପ୍ରଥମାର୍ଦ୍ଧରେ ସଂଖ୍ୟା ପଚିଶିକୁ ବୃଦ୍ଧି ପାଇଲା । ସେହିବର୍ଷ ସରକାର ରେଗୁଲେସନ୍ ୧୮୦୩ ଅନୁଯାୟୀ କାର୍ଯ୍ୟକରି ଆତତାୟୀମାନଙ୍କ ବିରୁଦ୍ଧରେ କଠୋର ଦଣ୍ଡବିଧାନର ବ୍ୟବସ୍ଥା କଲେ ଏବଂ ହତ୍ୟା ବଦଳରେ ଫାଶୀ ବା ନିର୍ବାସନ ଦଣ୍ଡ ପ୍ରଦାନ କରି ସନ୍ତ୍ରାସବାଦୀମାନଙ୍କର ଶକ୍ତିଛେଦନ କରାଯାଇଥିଲା ।

ପଞ୍ଜାବରେ ଘଦ୍ଦର ପାର୍ଟିର (ବିଦ୍ରୋହୀ ଦଳ) କାର୍ଯ୍ୟକଳାପ କେତେକାଂଶରେ ବୃଦ୍ଧି ପାଇଥିଲା । ଗୁରୁଦିତ୍ ସିଂ ନାମକ ଜଣେ ଶିଖ୍ ବ୍ୟବସାୟୀ କୋଙ୍ଗାମାତା ମାରୁ ନାମକ ଗୋଟିଏ ଜାପାନୀ ଜାହାଜ ଭଡ଼ା କରି ୩୭୬ ଜଣ ପଞ୍ଜାବୀଙ୍କୁ କାନାଡ଼ା ନେବାକୁ ଉଦ୍ୟମ କରିଥିଲେ । ଭ୍ୟାଙ୍କୋଭର୍‌ରେ ପହଞ୍ଚିବା ପରେ କାନାଡ଼ା ସରକାର ସେମାନଙ୍କୁ ଜାହାଜରୁ ଓହ୍ଲାଇବାକୁ ଅନୁମତି ଦେଲେ ନାହିଁ । ଦୁଇମାସ ଭ୍ୟାଙ୍କୋଭରରେ ଅଟକି ରହିବା ପରେ ଜାହାଜଟି ଭାରତକୁ ଫେରିବାକୁ ବାଧ ହେଲା । କାନାଡ଼ା ସରକାର ଏ ସଂପର୍କୀୟ ସମସ୍ତ ସମ୍ବାଦ ବ୍ରିଟିଶ୍ ସରକାରଙ୍କୁ ଜଣାଇ ଦେଇଥିଲେ । ଏଣୁ କୋଙ୍ଗାମାତା ମାରୁ ଜାହାଜ ହୁଗୁଳୀ ମୁହାଁଣରେ ପହଞ୍ଚିଲା ପରେ ଭାରତ ସରକାର ଶିଖ୍‌ମାନଙ୍କୁ କଲିକତାରେ ଅବତରଣ କରିବାକୁ ଅନୁମତି ଦେଲେନାହିଁ । ବଜ୍‌ବଜ୍‌ଠାରୁ ଟ୍ରେନ୍‌ରେ ବସାଇ ସେମାନଙ୍କୁ ପଞ୍ଜାବ ନେଇଯିବାର ବ୍ୟବସ୍ଥା କଲେ । ପୋଲିସ୍ ସହିତ ସଂଘର୍ଷରେ ପ୍ରାୟ ୨୦ ଜଣ ଶିଖ୍ ନିହତ ହେଲେ, କିନ୍ତୁ ଗୁରୁଦିତ୍ ସିଂ ଓ ଅନ୍ୟ ୨୮ ଜଣ ଛଦ୍ମବେଶରେ ପଳାୟନ କଲେ । ସିଙ୍ଗାପୁର୍‌ରୁ କାନାଡ଼ା ଅଭିମୁଖେ ଯାତ୍ରା କରିଥିବା ସବୁ ଶିଖ୍ ଘଦ୍ଦର ପାର୍ଟିର ସଭ୍ୟ ନଥିଲେ, କିନ୍ତୁ ଏଇ ଦୀର୍ଘ ଦିନର ଜଳଯାତ୍ରା ମଧ୍ୟରେ ଦୁଃଖ କଷ୍ଟ ସହି ସେମାନଙ୍କ ମଧ୍ୟରୁ ଅନେକ ବିପ୍ଳବୀ ଦଳରେ ଯୋଗ ଦେଇଥିଲେ । ଘଦ୍ଦର ପାର୍ଟିର ସଭ୍ୟମାନେ ଭାବିଥିଲେ ଯେ, ପଞ୍ଜାବରେ ସମସ୍ତେ ବ୍ରିଟିଶ୍ ବିରୋଧୀ

ଏବଂ ସେମାନେ କେବଳ ଅଗ୍ନି ସଂଯୋଗ କଲେ ଇଂରେଜ-ବିରୋଧୀ ନିଆଁ ଜଳିଉଠିବ । ଅଚିରେ ସେମାନଙ୍କର ଧାରଣା ଦୂରୀଭୂତ ହେଲା । ସେମାନଙ୍କ ମଧ୍ୟ ବହୁ ନେତୃସ୍ଥାନୀୟ ବ୍ରିଟିଶ-ବିରୋଧୀଙ୍କୁ ସରକାର ଗିରଫ କଲେ ଓ ପଞ୍ଜାବରୁ ସନ୍ତ୍ରାସବାଦର ନିରାକରଣ ପାଇଁ ସମସ୍ତ ବ୍ୟବସ୍ଥା କଲେ । ଶିଖ୍‌ମାନେ ରାସବିହାରୀ ବୋଷ୍‌ଙ୍କ ସାହାଯ୍ୟରେ ସନ୍ତ୍ରାସବାଦକୁ ସୁସଂଗଠିତ କରିବା ପାଇଁ ଉଦ୍ୟମ କଲେ । କିନ୍ତୁ ସେ ଉଦ୍ୟମ ନିଷ୍ଫଳ ହେଲା । ସେମାନେ ସାଧାରଣ ପଞ୍ଜାବୀଙ୍କର ସମର୍ଥନ ପାଇଲେ ନାହିଁ ।

ଯୁଦ୍ଧପାଇଁ ବ୍ରିଟିଶ୍ ସରକାର ଭାରତରୁ ନାନା ଭାବରେ ଫାଇଦା ଉଠାଇଥିଲେ । ୧୯୧୪ ମସିହାରେ ଭାରତର ମୋଟ ସୈନ୍ୟ ସଂଖ୍ୟା ଥିଲା ଦୁଇଲକ୍ଷ ପଞ୍ଚତିରିଶି ହଜାର, ସେଥିରୁ ୧,୬୦,୦୦୦ ଭାରତୀୟ ସୈନ୍ୟ ଓ ୭୫,୦୦୦ ଇଂରେଜ ସୈନ୍ୟ । ମାତ୍ର କେତେ ମାସ ମଧ୍ୟରେ ୨୩,୫୦୦ ବ୍ରିଟିଶ୍ ସୈନ୍ୟଙ୍କ ସମେତ ୧,୦୦,୦୦୦ ସୈନ୍ୟ ଦରିଆପାରି ସଂଘର୍ଷରେ ନିଯୁକ୍ତ ହୋଇଥିଲେ । ଧୀରେ ଧୀରେ ଭାରତୀୟ ସୈନ୍ୟ ପ୍ରେରଣ ବଢ଼ିଚାଲିଲା ଏବଂ ବିଶ୍ୱଯୁଦ୍ଧର ଗୋଟିଏ ସମୟରେ ଭାରତରେ ମାତ୍ର ୧୫,୦୦୦ ବ୍ରିଟିଶ୍ ସୈନ୍ୟ ଥିଲେ । ବ୍ରିଟେନ୍ ସପକ୍ଷରେ ଓ ଜର୍ମାନ୍ ବିରୋଧରେ ଭାରତରେ ଯେଉଁ ଜନମତ ସୃଷ୍ଟି ହୋଇଥିଲା, ତତ୍‌ସହିତ ଏହି ଅସଂଖ୍ୟ ଭାରୀତୟ ସୈନ୍ୟଙ୍କର ଯୁଦ୍ଧରେ ଯୋଗଦାନ ବ୍ରିଟିଶବାସୀଙ୍କୁ ବିସ୍ମିତ କରିଥିଲା । ଫ୍ରାନ୍ସରେ ସେପ୍ଟେମ୍ବର ମାସ ଶେଷ ସୁଦ୍ଧା ଭାରତୀୟ ସୈନ୍ୟମାନଙ୍କର ଉପସ୍ଥିତି ଫଳରେ ଫ୍ରାନ୍ସର ଉପକୂଳରେ ଅବସ୍ଥିତ ପୋର୍ଟଗୁଡ଼ିକର ଅଭିମୁଖେ ଜର୍ମାନମାନଙ୍କର ଅଭିଯାନ କେତେକାଂଶରେ ରୋକାଯାଇ ପାରିଥିଲା । ଭାରତୀୟ ସୈନ୍ୟମାନେ ସେହି କର୍ଦ୍ଦମାକ୍ତ ମାଟି ଓ ଥଣ୍ଡାରେ ଅଶେଷ ବୀରତ୍ୱର ସହ ଜର୍ମାନୀ ବିରୁଦ୍ଧରେ ଲଢ଼େଇ କରିଥିଲେ । ଯୁଦ୍ଧ ଶେଷବେଳକୁ ତେର ଲକ୍ଷ ସୈନ୍ୟ ବିଦେଶରେ ଲଢ଼େଇ କରୁଥିଲେ । ସେ ମଧ୍ୟରୁ କେବଳ ଏଗାର ଲକ୍ଷ ଥିଲେ ଭାରତୀୟ ଓ ଅବଶିଷ୍ଟ ଦୁଇଲକ୍ଷ ଥିଲେ ଭାରତୀୟ ସେନାବାହିନୀର ୟୁରୋପିଆନ୍ ଅଂଶ । ଯୁଦ୍ଧ ପୂର୍ବରୁ ହାରାହାରି ବର୍ଷକୁ ୧୫,୦୦୦ ସୈନ୍ୟ ନିଯୁକ୍ତ ହେଉଥିଲେ । ୧୯୧୮ ମସିହା ବେଳକୁ ଏହି ନିଯୁକ୍ତି ସଂଖ୍ୟା ବଢ଼ି ବର୍ଷକୁ ୩,୦୦,୦୦୦ରେ ପରିଣତ ହୋଇଥିଲା । ଏହି ଭାରତୀୟ ସୈନ୍ୟମାନେ ୟୁରୋପର ଫ୍ରାନ୍ସ, ମଧ୍ୟପ୍ରାଚ୍ୟରେ ମେସୋପଟାମିଆ, ମିଶର (ଇଜିପ୍ଟ), ପାଲେଷ୍ଟାଇନ୍ ଓ ପୂର୍ବ ଆଫ୍ରିକାରେ ମୁଖ୍ୟତଃ ଯୁଦ୍ଧ ପାଇଁ ପ୍ରଯୁକ୍ତ କରାଯାଇଥିଲା ।

ଭାରତରେ ଟାଟା ଆଇରନ୍ ଷ୍ଟିଲ୍ କମ୍ପାନୀ ବ୍ୟତୀତ ଅନ୍ୟ କୌଣସି ବଡ଼ ଶିଳ୍ପସଂସ୍ଥା ନଥିଲା । ମାତ୍ର ଯୁଦ୍ଧର ଆବଶ୍ୟକତା ହେତୁ ଭାରତରେ ଶିଳ୍ପର ଅଗ୍ରଗତି ବହୁଧା ବୃଦ୍ଧି ପାଇଥିଲା । ସୈନ୍ୟମାନଙ୍କୁ ଅସ୍ତ୍ରଶସ୍ତ୍ର ଓ ବସ୍ତ୍ର ଯୋଗାଇବା ପାଇଁ ଭାରତରେ ନୂଆନୂଆ ଅସ୍ତ୍ର ନିର୍ମାଣକାରୀ କାରଖାନା ଓ ରେଲ୍‌ୱେ ସାମଗ୍ରୀ ପ୍ରସ୍ତୁତ କରିବା ପାଇଁ ଶିଳ୍ପ ସଂସ୍ଥା ଓ ବସ୍ତ୍ର ପ୍ରସ୍ତୁତି ପାଇଁ ବମ୍ବେ ନିକଟବର୍ତ୍ତୀ ଅଞ୍ଚଳରେ ବହୁ ନୂତନ ଟେକ୍ସଟାଇଲ୍ ମିଲ୍ ଗଢ଼ି ଉଠିଲା । ସୈନ୍ୟ ଯାତାୟାତ ଓ ମାଲ୍ ପରିବହନ ପାଇଁ ଅନେକ ନୂଆ ରେଳଲାଇନ୍ ନିର୍ମିତ ହେଲା ଏବଂ ଆବଶ୍ୟକ ସ୍ଥଳେ ବ୍ରିଟେନ୍‌ର ସହଯୋଗୀମାନଙ୍କୁ ମାଙ୍ଗାନିଜ୍, ମାଇକା ପ୍ରଭୃତି ଖଣିଜ ଦ୍ରବ୍ୟ ଯୋଗାଇ ଦିଆଯାଉଥିଲା । କେନ୍ଦ୍ର ଆସେମ୍ବ୍ଲିର ନିଷ୍ପତ୍ତି ଅନୁଯାୟୀ ଭାରତରୁ ପ୍ରେରିତ ସୈନ୍ୟମାନଙ୍କର ସମସ୍ତ ଦେୟ ଯୁଦ୍ଧପୂର୍ବ ଦର ଅନୁସାରେ ଭାରତ ସରକାର ବହନ କରିଥିଲେ । ବଳକା ଖର୍ଚ୍ଚ ଅବଶ୍ୟ ବ୍ରିଟିଶ ସରକାରଙ୍କ ପାଣ୍ଠିରୁ ଖର୍ଚ୍ଚ ହୋଇଥିଲା । ସରକାରଙ୍କୁ ୧୦୦ ମିଲିୟନ୍ ପାଉଣ୍ଡ ଦାନ କରିବା ସମେତ ଯୁଦ୍ଧ ପାଇଁ ଭାରତ ମୋଟ ୧୫୦ ମିଲିୟନ୍ ପାଉଣ୍ଡ ଖର୍ଚ୍ଚର ଦାୟିତ୍ୱ ବହନ କରିଥିଲେ ।

ପ୍ରଥମ ବିଶ୍ୱଯୁଦ୍ଧ ପାଇଁ ଭାରତର ଏହି ଧନଜନ ଯୋଗାଣ କେତେଦୂର ସ୍ୱେଚ୍ଛାକୃତ, ତାହା ଏକ ଗୁରୁତର ପ୍ରଶ୍ନବାଚୀ । ଅବଶ୍ୟ ମଡ଼ରେଟ୍ କଂଗ୍ରେସ ନେତାମାନେ ବ୍ରିଟେନ୍‌ର ସୁରକ୍ଷା ପାଇଁ ସୈନ୍ୟସାମନ୍ତ ଓ ଅର୍ଥ ଯୋଗାଇବାକୁ ଭାରତର କର୍ତ୍ତବ୍ୟ ବୋଲି ପ୍ରଚାର କରୁଥିଲେ ଏବଂ ଯୁଦ୍ଧ ପରେ ଭାରତକୁ ସ୍ୱାୟତ୍ତ ଶାସନ ପ୍ରଦାନରେ ନିଶ୍ଚିତ ଅଗ୍ରଗତି ହେବ ବୋଲି ଆଶା କରୁଥିଲେ । କିନ୍ତୁ କାର୍ଯ୍ୟତଃ ସେପରି ହେଲା ନାହିଁ ।



# ମଣ୍ଟେଗ୍ୟୁ-ଚେମ୍‌ସଫୋର୍ଡ୍ ସଂସ୍କାର ଆଇନ୍

ହାର୍ଡିଞ୍ଜଙ୍କ ବିଦାୟ ପରେ ଚେମ୍‌ସ୍‌ଫୋର୍ଡ ଏପ୍ରିଲ୍ ୧୯୧୬ ମସିହାରେ ଭାଇସ୍‌ରାୟ ଦାୟିତ୍ୱ ନେବା ବେଳକୁ ପ୍ରଥମ ବିଶ୍ୱଯୁଦ୍ଧର ଦେଢ଼ବର୍ଷରୁ ଅଧିକ କାଳ ଅତିକ୍ରାନ୍ତ ହୋଇଥିଲା । ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଭାରତୀୟମାନଙ୍କର ସଦିଚ୍ଛା ଓ ତତ୍‌ପରତା ଇଂରେଜମାନଙ୍କୁ ଅଭିଭୂତ କରିଥିଲା । କି ଭାବରେ, କେଉଁ ରୀତିରେ ଭାରତ ଶାସନର ଅଗ୍ରଗତି ହୋଇପାରିବ ଓ ଭାରତୀୟମାନଙ୍କୁ ସନ୍ତୋଷ ଦେବ, ଚେମସ୍‌ଫୋର୍ଡ଼ ଏଥିପାଇଁ ବିଶେଷ ଚିନ୍ତିତ ଥିଲେ । ଭାରତରେ ରାଜନେତାମାନେ ହୋମ୍‌ରୁଲ୍ ଦାବି କରି ଯେଉଁ ଆନ୍ଦୋଳନ ଆରମ୍ଭ କରିଥିଲେ, ତାହାର ଅନ୍ତିମ ଲକ୍ଷ୍ୟ କ'ଣ ହେବା ଉଚିତ ଏବଂ ସେହି ଲକ୍ଷ୍ୟ ହାସଲ କରିବା ପାଇଁ କେଉଁ କାର୍ଯ୍ୟଧାରା ଗ୍ରହଣ କରିବା ଉଚିତ, ସେ ସମ୍ପର୍କରେ ସେ ବିଶେଷ ଚିନ୍ତାଗ୍ରସ୍ତ ଥିଲେ । ଉଭୟ ଭାରତ ଓ ଇଂଲଣ୍ଡରେ ଥିବା ବହୁ ବିଶିଷ୍ଟ ଲୋକ ଏପରିକି ଭାରତ ସଚିବ ଚେମ୍ବରଲେନ୍ ମନେ କରୁଥିଲେ ଯେ, ଭାରତରେ ଇଂରେଜ ଶାସନର ଅନ୍ତିମ ଲକ୍ଷ୍ୟ କ'ଣ ହେବ ସେ ବିଷୟରେ ଅଧିକ ଚିନ୍ତା କରି ଲାଭ ନାହିଁ । କିନ୍ତୁ ଭାଇସ୍‌ରାୟ ଚେମ୍‌ସଫୋର୍ଡ଼ ଓ ତାଙ୍କ କାଉନ୍‌ସିଲ୍‌ର ସଭ୍ୟମାନେ ସ୍ଥିର ନିଶ୍ଚିତ ଥିଲେ ଯେ, ଭାରତ ବ୍ରିଟିଶ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ରହିବ ସତ୍ୟ, କିନ୍ତୁ ସେହି ପରିପ୍ରେକ୍ଷୀରେ ସ୍ୱାୟତ୍ତଶାସନ ଅଧିକାର କେତେଦୂର ଦିଆଯାଇପାରିବ, ତାହାହିଁ କେବଳ ବିଚାର୍ଯ୍ୟ ବିଷୟ ।

ଏହି ସମୟରେ ଭାରତର ବିଭିନ୍ନ ରାଜନୈତିକ ଦଳ ମଧ୍ୟରେ କେତେକାଂଶରେ ବୁଝାମଣା ହୋଇଥିଲା । ୧୯୧୫ ଆରମ୍ଭରେ ଗୋଖଲେ ଅବଶ୍ୟ ଦେହତ୍ୟାଗ କରିଥିଲେ । ତାଙ୍କର କେହି ଉତ୍ତରାଧିକାରୀ ନଥିଲେ । କେବଳ ଚରମପନ୍ଥୀ ନେତା ବାଳ ଗଙ୍ଗାଧର ତିଳକ କଂଗ୍ରେସର ନେତୃତ୍ୱ ନେବାପାଇଁ ଆଗେଇ ଆସିଥିଲେ ଏବଂ ଗୋଖଲେଙ୍କର ଅନୁପସ୍ଥିତିରେ କଂଗ୍ରେସ ଲୋକେ ତିଳକ ଓ ତାଙ୍କର ସହକର୍ମୀମାନଙ୍କୁ

ଶ୍ରଦ୍ଧାର ସହ ଗ୍ରହଣ କରି ନେଇଥିଲେ । କଂଗ୍ରେସ ସହିତ କାଳେ ମତଭେଦ ହେବ, ତିଳକ ସେଥିପାଇଁ କଂଗ୍ରେସ ଅନୁଷ୍ଠାନ ବାହାରେ "ହୋମରୁଲ୍ ଲିଗ୍" ଶୀର୍ଷକ ଏକ ଅନୁଷ୍ଠାନ ପ୍ରତିଷ୍ଠା କଲେ । ଠିକ୍ ସେତିକିବେଳେ ମାନ୍ଦ୍ରାସରେ ବ୍ରହ୍ମ ବିଦ୍ୟା ସମିତିର ସଭାନେତ୍ରୀ ଆଇରିସ୍ ମହିଳା ଆନି ବେସାନ୍ତ "ହୋମରୁଲ୍ ଲିଗ୍" ନାମରେ ଆଉ ଏକ ଅନୁଷ୍ଠାନ ସ୍ଥାପନ କଲେ । ଅବଶ୍ୟ ଏହି ଦୁଇଟି ଅନୁଷ୍ଠାନ ମଧ୍ୟରେ କୌଣସି ବିବାଦ ନଥିଲା । ଯୁକ୍ତ ପ୍ରଦେଶର କଂଗ୍ରେସ ନେତା ମୋତିଲାଲ୍ ନେହୁରୁ ଓ ତାଙ୍କ ପୁତ୍ର ଜଓ୍ୱାହରଲାଲ୍ ନେହୁରୁ ଆନି ବେସାନ୍ତଙ୍କ ଲିଗ୍‌ର ସଦସ୍ୟ ଥିଲେ ଓ ମୋତିଲାଲ୍ ଥିଲେ ତା'ର ପ୍ରାଦେଶିକ ସଭାପତି । ତିଳକ ଅବଶ୍ୟ ଦୀର୍ଘଦିନ କାରାଦଣ୍ଡ ଭୋଗି ଅନେକଟା ଭାଙ୍ଗି ପଡ଼ିଥିଲେ ଏବଂ କଂଗ୍ରେସର ସାମ୍ବିଧାନିକ ଆନ୍ଦୋଳନର ସୀମା ମଧ୍ୟରେ କାର୍ଯ୍ୟ କରିବାକୁ ପ୍ରସ୍ତୁତ ଥିଲେ । ଏହି ସମୟରେ ଆଉ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ଘଟିଲା । କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍ ମଧ୍ୟରେ ବିଚାରବିମର୍ଶ ହୋଇ ଲକ୍ଷ୍ନୌରେ ୧୯୧୬ ମସିହାରେ ଗୋଟିଏ ଚୁକ୍ତି ସ୍ୱାକ୍ଷରିତ ହେଲା । ଏହି ଚୁକ୍ତି ବଳରେ ବ୍ରିଟିଶ ସରକାର ମୁସଲମାନ୍‌ମାନଙ୍କ ପକ୍ଷରେ ଯେଉଁ ସାଂପ୍ରଦାୟିକ ସଂରକ୍ଷଣ ନୀତି ବା "କମ୍ୟୁନାଲ୍ ଆଓ୍ୱାର୍ଡ଼" ଘୋଷଣା କରିଥିଲେ, ତାହାକୁ କଂଗ୍ରେସ ଗ୍ରହଣ କରିନେଲା ।

ଭାରତର ସାମ୍ବିଧାନିକ ଅଗ୍ରଗତି ସମ୍ପର୍କରେ ଉଭୟେ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍ ସହମତ ହେଲେ ଯେ, ଭାରତକୁ ତୁରନ୍ତ ସ୍ୱାୟତ୍ତଶାସନ ଅଧିକାର ଦେବା ଉଚିତ ଏବଂ ପ୍ରକ୍ରିୟାରେ କଂଗ୍ରେସ ଓ ଲିଗ୍ ନେତାମାନେ ତିନୋଟି ଦାବି ବ୍ରିଟିଶ୍ ସରକାରଙ୍କ ପାଖରେ ପେସ୍ କରିଥିଲେ–

(କ) କେନ୍ଦ୍ର ଓ ପ୍ରାଦେଶିକ ସରକାରଙ୍କର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌କୁ ଅନ୍ତତଃ ଅର୍ଦ୍ଧାଧିକ ସଭ୍ୟ ବିଧାନସଭା ଦ୍ୱାରା ନିର୍ବାଚିତ ହେବେ ।

(ଖ) ବିଧାନସଭାର ଅନ୍ତତଃ ଅଶୀଭାଗ ସଦସ୍ୟ ଏକ ବ୍ୟାପକ ଭୋଟ୍ ଅଧିକାର ଭିତ୍ତିରେ ନିର୍ବାଚିତ ହେବେ ।

(ଗ) ପ୍ରାଦେଶିକ ସରକାର ଓ କେନ୍ଦ୍ର ସରକାର ପ୍ରାଦେଶିକ ବିଧାନସଭା ଓ କେନ୍ଦ୍ର ବିଧାନସଭାର ନିଷ୍ପତ୍ତି ମାନିବାକୁ ବାଧ୍ୟ ହେବେ, ଅବଶ୍ୟ ଯଦି ପ୍ରାଦେଶିକ ଗଭର୍ଣ୍ଣର ବା ଭାଇସରାୟ ସଂପୃକ୍ତ ନିଷ୍ପତ୍ତିକୁ ଭେଟୋ ବା ନାକଚ କରିନଥାନ୍ତି । ନାକଚ ହୋଇଥିଲେ ମଧ୍ୟ ପ୍ରସ୍ତାବଟି ଯଦି ବର୍ଷକ ପରେ ପୁନର୍ବାର ବିଧାନସଭା ଦ୍ୱାରା ମଞ୍ଜୁର

ପ୍ରାପ୍ତ ହୁଏ, ତା'ହେଲେ ବର୍ଷକ ପରେ ପ୍ରାଦେଶିକ ସରକାର ବା କେନ୍ଦ୍ର ସରକାର ତାକୁ ଅମାନ୍ୟ କରିପାରିବେ ନାହିଁ ।

କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍‌ର ଏହି ମିଳିତ ଉଦ୍ୟମ ତତ୍‌କାଳୀନ ରାଜନୈତିକ ପୃଷ୍ଠଭୂମିରେ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ । ଅବଶ୍ୟ ଲକ୍ଷ୍ନୌ ନିଷ୍ପତ୍ତି ଓ ଉପରୋକ୍ତ ସମ୍ମିଳିତ ଦାବି ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ପରି କେତେଜଣ ତରୁଣ ଓ ଉଚ୍ଚଶିକ୍ଷିତ ଯୁବ ନେତୃତ୍ୱଙ୍କ ହେତୁ ସମ୍ଭବ ହୋଇଥିଲା । କିନ୍ତୁ ପଞ୍ଜାବ ଓ ଯୁକ୍ତ ପ୍ରଦେଶର ମୁସ୍‌ଲିମ୍ ତାଲୁକ୍‌ଦାର୍, ଯେଉଁମାନେ କି ସ୍ଥାନୀୟ ଲିଗ୍‌କୁ ନିୟନ୍ତ୍ରଣ କରୁଥିଲେ, ସେମାନଙ୍କର ଏହି ମିଳିତ ପଦକ୍ଷେପ ପ୍ରତି ସମର୍ଥନ ନଥିଲା । ଇଂରେଜମାନେ ଏହି ଅନ୍ତର୍ନିହିତ ବିବାଦ ବିଷୟରେ ସଂପୂର୍ଣ୍ଣ ଅବଗତ ଥିଲେ ଓ ଆବଶ୍ୟକ ସ୍ଥଳେ ଏ ବିବାଦରେ ଅଗ୍ନିସଂଯୋଗ କରୁଥିଲେ ।

ବିଲାତର କାଠ ଦଳର ସଭ୍ୟ ଓ ଭାରତରେ ଅବସ୍ଥାପିତ ଇଂରେଜ କର୍ମଚାରୀ ଓ ପରାମର୍ଶଦାତାମାନେ ମନେ କରୁଥିଲେ ଯେ, ସ୍ୱାୟତ୍ତ ଶାସନ ପାଇଁ ଭାରତୀୟମାନେ ଏବେ ବି ଯୋଗ୍ୟ ହୋଇନାହାନ୍ତି ଓ ଏଥିପାଇଁ ଇଂରେଜମାନଙ୍କଠାରୁ ଆହୁରି ତାଲିମ୍ ଦରକାର । ଗୁକିରି କ୍ଷେତ୍ରରେ ଭାରତୀୟମାନଙ୍କୁ କିଛି ସୁବିଧା ସୁଯୋଗ ଦେଲେ, ସେମାନଙ୍କର ଅଭୀପ୍‌ସା ଅନେକାଂଶରେ ପୂରଣ ହୋଇପାରିବ । ଉଲ୍ଲେଖଯୋଗ୍ୟ ଯେ, ହୋମ୍‌ରୁଲ୍ ଓ ସେଲ୍‌ଫ ଗଭର୍ଣ୍ଣମେଣ୍ଟ (ସ୍ୱାୟତ୍ତ ଶାସନ) ମଧ୍ୟରେ ବିଶେଷ ପାର୍ଥକ୍ୟ ନଥିଲେ ମଧ୍ୟ, କେତେଜଣ ନରମପନ୍ଥୀ ଲିବରାଲ୍ ଇଂରେଜଙ୍କୁ ବାଦ୍ ଦେଲେ ଅନ୍ୟମାନେ ହୋମରୁଲ୍ ନାଁ ଶୁଣିଲେ ନାକ ଟେକୁଥିଲେ । ମାଡ୍ରାସର ଗଭର୍ଣ୍ଣର ଲର୍ଡ଼ ପେଣ୍ଟଲ୍ୟାଣ୍ଡ ଭାଇସ୍‌ରାୟ ଚେମସ୍‌ଫୋର୍ଡ଼ଙ୍କ ସହ ପରାମର୍ଶ ନକରି ଘୋଷଣା କରିଥିଲେ, ଯୁଦ୍ଧ ଶେଷରେ ଯାହାକିଛି ରାଜନୈତିକ ସଂସ୍କାର ଓ ପରିବର୍ତ୍ତନ କରାଯାଉ ପଛେ, ତାହା କେବେ 'ହୋମ୍‌ରୁଲ'ର ପଦ ସ୍ପର୍ଶ କରିପାରିବ ନାହିଁ । ଏଣୁ ବର୍ତ୍ତମାନ ଯେଉଁମାନେ 'ହୋମ୍‌ରୁଲ୍' ସପକ୍ଷରେ ଚିହ୍ନାର କରୁଛନ୍ତି, ସେମାନଙ୍କ ପ୍ରତି ଏବେଠାରୁ କଟକଣା ଲାଗୁ କରିବା ଉଚିତ । ଚେମ୍‌ସଫୋର୍ଡ଼ ଶେଷକୁ ପ୍ରସ୍ତାବ ଦେଲେ ଯେ ଭାରତ ସଚିବ ଉଇଲଂଡନ୍ ଥରେ ଭାରତ ପରିଦର୍ଶନରେ ଆସି ପରିସ୍ଥିତିର ସମୀକ୍ଷା କରି ଶେଷ ନିଷ୍ପତ୍ତି ନିଅନ୍ତୁ । ଭାଗ୍ୟକୁ ସେପରି ହେବା ପୂର୍ବରୁ, ମେସୋପଟାମିଆ ଯୁଦ୍ଧରେ ପରାଜୟଜନିତ ବଦନାମ ହୋଇ ଜୁଲାଇ ୧୨ ତାରିଖରେ ପ୍ରଧାନମନ୍ତ୍ରୀ ଆସ୍‌କ୍ୱିଥ୍‌ଙ୍କ

ସହିତ ଉଇଲିଂଡନ୍ ସ୍ୱପଦରୁ ଇସ୍ତଫା ଦେଲେ । ଲଏଡ୍ ଜର୍ଜ ହେଲେ ବ୍ରିଟେନ୍‌ର ନୂତନ ପ୍ରଧାନମନ୍ତ୍ରୀ ଓ ମଣ୍ଟେଗ୍ୟୁ ଭାରତ ସଚିବ ପଦରେ ନିଯୁକ୍ତ ହେଲେ । ଲଏଡ୍ ଜର୍ଜ ଥିଲେ କଠୋର ଜାଠ ନେତା ମାତ୍ର ମଣ୍ଟେଗ୍ୟୁ ଥିଲେ ଲିବରାଲ୍ ଦଳର ସଭ୍ୟ । କିନ୍ତୁ ଏହି ନରମପନ୍ଥୀ ମଣ୍ଟେଗ୍ୟୁ ଅନୁଭବ କଲେ ଯେ, ଭାରତର ଭବିଷ୍ୟତ ସମ୍ପର୍କରେ ତୁରନ୍ତ କୌଣସି ନିଷ୍ପତ୍ତି ନନେଲେ, ଭାରତୀୟ ରାଜନୀତିରୁ ସବୁ ନରମପନ୍ଥୀମାନେ ଚରମପନ୍ଥୀ ଗୋଷ୍ଠୀକୁ ଡିଆଁ ମାରିବେ । ବହୁ ବିଚାରବିମର୍ଷ ପରେ ୧୯୧୭ ମସିହା ଅଗଷ୍ଟ ୨୦ ତାରିଖରେ ମଣ୍ଟେଗ୍ୟୁ ହାଉସ୍ ଅଫ୍ କମନ୍‌ସରେ ଏକ ଐତିହାସିକ ବିବୃତି ଦେଲେ । ସେ ଘୋଷଣା କଲେ, ସବୁ ରାଜକାର୍ଯ୍ୟ ସମ୍ପନ୍ନ କରିବାରେ ଅଧିକରୁ ଅଧିକ ଭାରତୀୟଙ୍କ ସହଯୋଗ ନେବା ଓ ବ୍ରିଟିଶ ସାମ୍ରାଜ୍ୟ ଅଧୀନରେ ଭାରତୀୟମାନଙ୍କୁ କ୍ରମଭିତ୍ତିରେ ସ୍ୱାୟତ୍ତ ଶାସନ ଦେବା ପାଇଁ ବ୍ୟବସ୍ଥା କରିବା ଗ୍ରେଟ୍ ବ୍ରିଟେନ୍‌ର ଯୁଦ୍ଧପର ଲକ୍ଷ୍ୟ ହେବ ।

ପାର୍ଲାମେଣ୍ଟରେ ଉପରୋକ୍ତ ଘୋଷଣା ପରେ ଅକ୍ଟୋବର ମାସରେ ମଣ୍ଟେଗ୍ୟୁ ଭାରତ ପରିଦର୍ଶନରେ ଆସିଲେ ଏବଂ ଏପ୍ରିଲ୍ ପର୍ଯ୍ୟନ୍ତ ଏଠାରେ ରହି ସେ ରାଜନୈତିକ ପରିସ୍ଥିତିର ସମୀକ୍ଷା କଲେ । ମଣ୍ଟେଗ୍ୟୁଙ୍କର ଥିଲା ଆକର୍ଷଣୀୟ ବ୍ୟକ୍ତିତ୍ୱ ଏବଂ ତାଙ୍କର ପାର୍ଲାମେଣ୍ଟ ଘୋଷଣା ପରେ ସେ ଥିଲେ ଭାରତବାସୀଙ୍କର ଶ୍ରଦ୍ଧାଭାଜନ । ଭାରତକୁ ଆସିବା ପୂର୍ବରୁ ସେ ଚେମ୍‌ସଫୋର୍ଡ଼ଙ୍କୁ ନିର୍ଦ୍ଦେଶ ଦେଲେ ଯେ, 'ହୋମ୍‌ରୁଲ୍ ଲିଗ୍'ର ପ୍ରତିଷ୍ଠାତା ଆନି ବେସାନ୍ତଙ୍କୁ ତୁରନ୍ତ ମୁକ୍ତି ଦିଆଯାଉ ଓ ତାଙ୍କ ଉପରୁ ସବୁ ପ୍ରକାର କଟକଣା ଉଠାଇ ନିଆଯାଉ । ଦୀର୍ଘ ପାଞ୍ଚମାସ ଧରି ବିଚାରବିମର୍ଶ ପରେ ମଣ୍ଟେଗ୍ୟୁ ଓ ଚେମ୍‌ସଫୋର୍ଡ଼ ଯେଉଁ ମିଳିତ ରିପୋର୍ଟ ଦେଲେ, ତାହା ଅନ୍ୟଥା 'ଦ୍ୱୈତ ଶାସନ' ବା 'ଡାୟାରକି' ନାମରେ ପରିଚିତ । ଏହି ରିପୋର୍ଟରେ ବିଧାନସଭାରେ ସଭ୍ୟ ସଂଖ୍ୟା ବୃଦ୍ଧି ପାଇଁ ଓ ସମ୍ପତ୍ତି ପରିମାଣ ଭିତ୍ତିରେ ଭୋଟ ଅଧିକାର ବଢ଼ାଇବା ପାଇଁ କେତେକ ସୁପାରିଶ୍ କରାଯାଇଥିଲା । ପୂର୍ବରୁ ନିର୍ଦ୍ଧାରିତ ସାଂପ୍ରଦାୟିକ ସଂରକ୍ଷଣ ବ୍ୟବସ୍ଥା ଅନୁଯାୟୀ ନିର୍ବାଚନ ହେବ ଓ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ରେ ମଧ୍ୟ କିଛି ଅଧିକ ସଂଖ୍ୟକ ଭାରତୀୟ ପ୍ରତିନିଧିଙ୍କୁ ଭାଇସ୍‌ରାୟ ଓ ଗଭର୍ଣ୍ଣରମାନେ ମନୋନୀତ କରିବେ ବୋଲି ସୁପାରିଶ କରାଗଲା । ଏହି ରିପୋର୍ଟ ୧୯୧୮ ମସିହା ଜୁଲାଇ ମାସରେ ପ୍ରକାଶିତ ହେଲା ଏବଂ ଧୀରମନ୍ଥର ଗତିରେ କମନ୍‌ସ ସଭାରେ ବିତର୍କିତ ହୋଇ ୧୯୧୯ ମସିହା ଡିସେମ୍ବର ମାସରେ ଗୃହୀତ ହେଲା । ଏହା ୧୯୧୯ ଭାରତ ଶାସନ ଆଇନ୍ ନାମରେ ଖ୍ୟାତ ।

ଏହି ଦ୍ୱୈତ ଶାସନ ବ୍ୟବସ୍ଥା କେବଳ ପ୍ରଦେଶମାନଙ୍କରେ ଲାଗୁ ହେଲା । ଆଠଟି ପ୍ରଦେଶରେ ନ୍ୟାୟ, ପୋଲିସ୍, ଜେଲ୍ ଓ ରାଜସ୍ୱ ଆଦି ଚାରୋଟି ବିଷୟର ଶାସନ ଗଭର୍ଣ୍ଣରଙ୍କ ଉପରେ ନ୍ୟସ୍ତ ହେଲା ଏବଂ ସେ ତାଙ୍କର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍ ସଦସ୍ୟମାନଙ୍କ ସହାୟତାରେ ଏସବୁ ବିଭାଗର ଶାସନ ପରିଚାଳନା କରିବେ । ଅନ୍ୟାନ୍ୟ ବିଷୟ ସମ୍ବଳିତ ବିଭାଗଗୁଡ଼ିକ ବିଧାନସଭାକୁ ନିର୍ବାଚିତ ସଭ୍ୟମାନଙ୍କ ମଧ୍ୟରୁ ମନୋନୀତ ମନ୍ତ୍ରୀମାନଙ୍କର ସହାୟତାରେ ଗଭର୍ଣ୍ଣର ଶାସନ କରିବେ । ପ୍ରାଦେଶିକ ବିଧାନସଭାଗୁଡ଼ିକର ସଭ୍ୟ ସଂଖ୍ୟା ବୃଦ୍ଧି ହେଲା ଏବଂ ଅନ୍ତତଃ ବିଧାନସଭାର ସତୁରି ପ୍ରତିଶତ ସଦସ୍ୟ ନିର୍ବାଚିତ ହେଲେ ।

ଏହି ଦ୍ୱୈତ ଶାସନ ବ୍ୟବସ୍ଥା କେନ୍ଦ୍ର ପ୍ରତି ପ୍ରଯୁଜ୍ୟ ନଥିଲା, ଯଦିଓ ଭାଇସ୍‌ରାୟଙ୍କ କାଉନ୍‌ସିଲ୍‌କୁ ଆଠ-ଦଶଜଣ ସଦସ୍ୟଙ୍କ ମଧ୍ୟରୁ ପୂର୍ବରୁ ଜଣେ ମାତ୍ର ଭାରତୀୟ ମନୋନୀତ ହେଉଥିଲେ । କିନ୍ତୁ ଏହି ନୂତନ ଶାସନ ବ୍ୟବସ୍ଥା ପ୍ରଚଳିତ ହେବା ପରେ ତିନିଜଣ ଭାରତୀୟ ଭାଇସ୍‌ରାୟଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌କୁ ମନୋନୀତ ହେଲେ । କେନ୍ଦ୍ର ବ୍ୟବସ୍ଥା ସଭାରେ କେତେକ ମୌଳିକ ପରିବର୍ତ୍ତନ କରାଯାଇଥିଲା । "ବ୍ୟବସ୍ଥାସଭା" ଦୁଇଭାଗରେ ବିଭକ୍ତ ହେଲା । ପ୍ରଥମ ସଭାର ନାମ ରହିଲା ଲେଜିସ୍‌ଲେଟିଭ୍ ଆସେମ୍ବ୍ଲି ଏବଂ ଅନ୍ୟଟିର ନାମ ହେଲା କାଉନ୍‌ସିଲ୍ ଅଫ୍ ଷ୍ଟେଟ୍ । ଅବଶ୍ୟ ଉଭୟ ସଭାକୁ ଯେପରି ଅଧିକ ସଂଖ୍ୟକ ସଭ୍ୟ ନିର୍ବାଚିତ ହେବେ, ସେଥିପାଇଁ ଆଇନଗତ ବ୍ୟବସ୍ଥା କରାଗଲା ।



# ଜାଲିଆନାୱାଲାବାଗ୍ ଗଣହତ୍ୟା

ମଣ୍ଟେଗ୍ୟୁ-ଚେମ୍‌ସଫୋର୍ଡ଼ ରିପୋର୍ଟ ପ୍ରକାଶିତ ହେବାପରେ ଏବଂ ତାହା କାର୍ଯ୍ୟକାରୀ ହେବା ପୂର୍ବରୁ ଏହି ରିପୋର୍ଟରେ ସମୀକ୍ଷା କରିବା ପାଇଁ ବାଳ ଗଙ୍ଗାଧର ତିଳକଙ୍କ ନେତୃତ୍ୱରେ କଂଗ୍ରେସର ଏକ ବିଶେଷ ଅଧିବେଶନ ବମ୍ବେରେ ଅନୁଷ୍ଠିତ ହେଲା । ମର୍ଲେ-ମିଣ୍ଟୋ ଶାସନ ବ୍ୟବସ୍ଥାଠାରୁ ମଣ୍ଟେଗ୍ୟୁ-ଚେମ୍‌ସ୍‌ଫୋର୍ଡ଼ ରିପୋର୍ଟରେ ଯେ ଅନେକ ଅଗ୍ରଗତି ହୋଇଛି, ଏଥିରେ କାହାର ସନ୍ଦେହ ନଥିଲା । କିନ୍ତୁ କଂଗ୍ରେସ ଓ ମୁସଲିମ୍ ଲିଗ୍‌ର ସମ୍ମିଳିତ ଦାବି ଦୃଷ୍ଟିରୁ ଏହା ଯେ ଅତ୍ୟନ୍ତ ନୈରାଶ୍ୟଜନକ, ଏ ବିଷୟରେ ସବୁ ଶ୍ରେଣୀର କଂଗ୍ରେସ ନେତାମାନଙ୍କ ମଧ୍ୟରେ ସହମତ ପ୍ରକାଶିତ ହେଲା । ଦାୟିତ୍ୱମୂଳକ ଶାସନ ପରିବର୍ତ୍ତେ, ଭାଇସ୍‌ରାୟଙ୍କ ଉପରେ ଯେ ସ୍ୱେଚ୍ଛାଚାରୀ କ୍ଷମତା ନ୍ୟସ୍ତ କରାଯାଇଥିଲା, ଏ ବିଷୟରେ ସମସ୍ତେ ନିଃସନ୍ଦେହ ଥିଲେ । ସୁରେନ୍ଦ୍ରନାଥ ବାନାର୍ଜୀ ପ୍ରମୁଖ କେତେକ ପୁରାତନ କଂଗ୍ରେସ ନେତା ଏହି ଅସନ୍ତୋଷ ବିରୁଦ୍ଧରେ ମତବ୍ୟକ୍ତ କରି କଂଗ୍ରେସରୁ ବିଚ୍ଛିନ୍ନ ହୋଇଗଲେ । ଗୋଖଲେଙ୍କ ମୃତ୍ୟୁପରେ ନରମପନ୍ଥୀ ଓ ଚରମପନ୍ଥୀମାନଙ୍କ ମଧ୍ୟରେ ଯେଉଁ ଐକ୍ୟ ଫେରିଆସିଥିଲା ଏହିଠାରେ ତା'ର ସମାପ୍ତି ଘଟିଲା ।

ବିଶ୍ୱଯୁଦ୍ଧରେ ବିଜୟ ପରେ କଂଗ୍ରେସ ବ୍ରିଟେନ୍‌ର ରାଜାଙ୍କୁ ଅଭିନନ୍ଦନ ଜଣାଇ ଏକ ପ୍ରସ୍ତାବ ଗ୍ରହଣ କଲେ । ରାଜନେତାମାନେ ଭାବୁଥିଲେ, ଯୁଦ୍ଧରେ ଜୟଲାଭ ପାଇଁ ଭାରତର ଅବଦାନ ଦୃଷ୍ଟିରୁ ଏବଂ ଫ୍ରାନ୍ସ, ମଧ୍ୟପ୍ରାଚ୍ୟ ବିଶେଷତଃ ମେସୋପଟାମିଆରେ ଭାରତୀୟ ସୈନ୍ୟମାନେ ବୀରତ୍ୱର ଯେଉଁ ପରାକାଷ୍ଠା ଦେଖାଇଛନ୍ତି, ଅନ୍ତତଃ ସେ ଦୃଷ୍ଟିରୁ ବ୍ରିଟିଶ୍ ସରକାର ଭାରତ ପାଇଁ ଅଧିକ ଦାୟିତ୍ୱଶୀଳ ଶାସନ ବ୍ୟବସ୍ଥା ପ୍ରଣୟନ କରିବା ଉଚିତ । ଯଦିଓ ଯୁଦ୍ଧ ସମାପ୍ତି ଜନିତ ଅଫିସିଆଲ୍ ଘୋଷଣା ପାଇଁ ଅନେକ ସମୟ ଥିଲା, ଇଂରେଜ ସରକାର ଭାବୁଥିଲେ ଯୁଦ୍ଧ ସମାପ୍ତିର ଛଅମାସ ପରେ ଭାରତ

ରକ୍ଷା ଆଇନ୍ ଆଦି ଦମନମୂଳକ ବ୍ୟବସ୍ଥା ରଦ୍ଦ ହୋଇଯିବ । ତେଣୁ ଭବିଷ୍ୟତକୁ ଦୃଷ୍ଟିରେ ରଖି ବର୍ତ୍ତମାନଠାରୁ ରାଜଦ୍ରୋହ ଦମନ କରିବା ପାଇଁ ଆଇନ୍ ପ୍ରଣୀତ ହେବା ଉଚିତ । ଭାରତ ସଚିବଙ୍କ ପରାମର୍ଶ ଅନୁଯାୟୀ ୧୯୧୭ ମସିହାରେ ଜଷ୍ଟିସ୍ ରାଓଲାଟ୍‌ଙ୍କ ସଭାପତିତ୍ୱରେ ଗୋଟିଏ କମିଟି ଗଠିତ ହେଲା । ଭାରତରକ୍ଷା ଆଇନ୍ ରଦ୍ଦ ହୋଇଗଲା ପରେ ମଣ୍ଟେଗ୍ୟୁ-ଚେମ୍‌ସଫୋର୍ଡ଼ ରିପୋର୍ଟ ବିରୁଦ୍ଧରେ ଯେଉଁ ଜନ ଆନ୍ଦୋଳନ ଆରମ୍ଭ ହୋଇଛି, ତାକୁ ବିଧିବଦ୍ଧ ଭାବରେ ଜବତ କରିବା ପାଇଁ ଯଥାଯୁକ୍ତ ଆଇନ୍‌ର ଚିଠା ପ୍ରସ୍ତୁତ କରିବା ଥିଲା ଏ କମିଟିର କାର୍ଯ୍ୟ । ଜଷ୍ଟିସ ରାଓଲାଟ୍‌ଙ୍କ ରିପୋର୍ଟ ଗୃହୀତ ହୋଇ ଫେବୃଆରୀ ୧୯୧୯ ମସିହାରେ କେନ୍ଦ୍ର ବ୍ୟବସ୍ଥା ସଭାରେ ପେସ୍ ହେଲା । କିନ୍ତୁ କେନ୍ଦ୍ର ବ୍ୟବସ୍ଥାସଭାର କୌଣସି ବେସରକାରୀ ସଭ୍ୟ ଏହା ସପକ୍ଷରେ ଭୋଟ୍ ଦେଇ ନଥିଲେ । ନିର୍ବାଚିତ ସଭ୍ୟମାନଙ୍କ ମଧ୍ୟରୁ ଜଣେ ମଧ୍ୟ ରାଓଲାଟ୍ ଆଇନ୍‌ର ବ୍ୟବସ୍ଥାକୁ ସମର୍ଥନ କରି ନଥିଲେ । ବରଂଚ ଚିଠା ଆଇନ୍‌ର ପ୍ରତିବାଦ କରି ମହମ୍ମଦ ଅଲ୍ଲୀ ଜିନ୍ନା ଓ ପଣ୍ଡିତ ମଦନ ମୋହନ ମାଲବ୍ୟ କେନ୍ଦ୍ର ବ୍ୟବସ୍ଥା ସଭାରୁ ଇସ୍ତଫା ଦେଲେ । ତା'ସତ୍ତ୍ୱେ ଭାଇସ୍‌ରାୟ ଚେମସ୍‌ଫୋର୍ଡ଼ ସ୍ୱକ୍ଷମତା ବଳରେ ରାଓଲାଟ୍ ଆଇନ୍ ପାସ କରାଇଦେଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜର୍ମାନୀର ପରାଜୟ ଇଂରେଜମାନଙ୍କର ମନୋବଳ ଆହୁରି ଦୃଢ଼ କରିଥିଲା । ଇଂରେଜମାନେ ଭାରତୀୟଙ୍କ ପ୍ରତି ଅଧିକ ଉଦ୍ଧତ ଓ ଅବଜ୍ଞାସୂଚକ ବ୍ୟବହାର ପ୍ରଦର୍ଶନ କଲେ, ଯାହାକି ଭାରତର ଶିକ୍ଷିତ ଶ୍ରେଣୀ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ଗାନ୍ଧିଜୀ ୧୯୧୫ ମସିହାରେ ଭାରତରେ ଅବତରଣ କଲାପରେ ହଠାତ୍ କୌଣସି ରାଜନୈତିକ ଦାୟିତ୍ୱ ଗ୍ରହଣ କରିନଥିଲେ । ବରଂ ଗୋପାଳକୃଷ୍ଣ ଗୋଖଲେଙ୍କ ପୂର୍ବ ପରମାର୍ଶ ଅନୁଯାୟୀ ଦେଶସାରା ପରିଭ୍ରମଣ କରି ଭାରତର ପରିସ୍ଥିତି ସଂପର୍କରେ ନିଜକୁ ଅବଗତ କରାଇଲେ । ଅହମ୍ମଦାବାଦ ନିକଟସ୍ଥ ସାବରମତୀଠାରେ ଦକ୍ଷିଣ ଆଫ୍ରିକା ଆନ୍ଦୋଳନର ସହକର୍ମୀ ଥିବା ବନ୍ଧୁମାନଙ୍କର ରହିବା ପାଇଁ ଏକ ଆଶ୍ରମ ପ୍ରତିଷ୍ଠା କଲେ । କିନ୍ତୁ ରାଓଲାଟ୍ ଆଇନ୍ ବିରୋଧୀ ଆନ୍ଦୋଳନ ଯେତେବେଳେ ପରିବ୍ୟାପ୍ତ ହେଲା, ଗାନ୍ଧିଜୀ ଚେମ୍‌ସଫୋର୍ଡ଼ଙ୍କୁ ନିଜର ମତାମତ ଜଣାଇ ତୁରନ୍ତ ଏ ଆଇନ୍‌କୁ ପ୍ରତ୍ୟାହାର କରିବାକୁ ଅନୁରୋଧ କଲେ । କିନ୍ତୁ ଗାନ୍ଧିଜୀଙ୍କ ଆହ୍ୱାନ ଇଂରେଜ ସରକାରଙ୍କୁ ବିଚଳିତ କଲାନାହିଁ ଏବଂ ଯେଉଁଠି ଏ ଆଇନ୍ ବିରୋଧୀ ପ୍ରତିକ୍ରିୟା ପ୍ରକାଶ ପାଇଲା, ତାକୁ ନିର୍ମମ ଭାବରେ ଦମନ କରାଗଲା ।

ପ୍ରତିବାଦ ମୁଖ୍ୟତଃ ଦିଲ୍ଲୀ ଓ ପଞ୍ଜାବରେ ଆରମ୍ଭ ହେଲା । ପଞ୍ଜାବରେ ପ୍ରତିବାଦ ଏପରି ଉଗ୍ରରୂପ ଧାରଣ କଲା ଯାହାକି ସିପାହୀ ବିଦ୍ରୋହ ସମୟରେ ମଧ୍ୟ ଘଟି ନଥିଲା । ସେତେବେଳେ ସାର୍ ମାଇକେଲ୍ ଓଡାୟାର୍ ପଞ୍ଜାବର ଗଭର୍ଣ୍ଣର ଏବଂ ସୈନ୍ୟବାହିନୀର ମୁଖ୍ୟ ଥିଲେ ବ୍ରିଗେଡିଅର୍ ଜେନେରାଲ୍ ଡାୟାର୍ । ଯୁଦ୍ଧରେ ସାହାଯ୍ୟ ସଂଗ୍ରହ କରିବା ପାଇଁ ସେ ବହୁ କଠୋର ଭାବରେ ପଞ୍ଜାବର ଶାସନ ପରିଚାଳନା କରୁଥିଲେ ଓ ତାଙ୍କର ଏହି ପ୍ରକାର ଆଚରଣ ସାଧାରଣ ଲୋକେ ବରଦାସ୍ତ କରିପାରୁ ନଥିଲେ । ପଞ୍ଜାବରେ ପ୍ରଥମ ବିସ୍ଫୋରଣ ଆରମ୍ଭ ହେଲା ଅମୃତସର ସହରରେ । ଏପ୍ରିଲ ଆରମ୍ଭରେ ଅମୃତସରର ଦୁଇଜଣ ବିଶିଷ୍ଟ ନେତା ଡାଃ କିଚ୍‌ଲ୍ୟୁ ଓ ଡାଃ ସତ୍ୟ ପାଲ୍ ସାଧାରଣ ସଭା କରି ଉତ୍ତେଜନାମୂଳକ ଭାଷଣ ଦେଇଥିଲେ । ଡାଃ କିଚ୍‌ଲ୍ୟୁ ଥିଲେ ଜଣେ ମୁସ୍‌ଲିମ୍ ଓକିଲ ଓ ସତ୍ୟପାଲ୍ ଥିଲେ ଜଣେ ଚିକିତ୍ସକ । ଏମାନଙ୍କର ପ୍ରଭାବଶାଳୀ ବକ୍ତୃତାରେ ସ୍ଥାନୀୟ ଜିଲ୍ଲା ମାଜିଷ୍ଟ୍ରେଟ୍ ନିଜକୁ ଅସହାୟ ମନେକଲେ ଏବଂ ତୁରନ୍ତ ସାମରିକ ସାହାଯ୍ୟ ପାଇଁ ଅନୁରୋଧ କଲେ । ସୈନ୍ୟମାନେ ଆସି ପହଞ୍ଚିବା ପୂର୍ବରୁ କିଚ୍‌ଲ୍ୟୁ ଓ ସତ୍ୟ ପାଲ୍‌ଙ୍କୁ ଗିରଫ କରାଗଲା ଏବଂ ୧୦ ତାରିଖ ସକାଳେ ସେମାନଙ୍କୁ ଅନ୍ୟ ଗୋଟିଏ ଜିଲ୍ଲାର କାରାଗାରକୁ ପଠାଇ ଦିଆଗଲା ।

ଏମାନଙ୍କର ଗିରଫଦାରୀ ହେତୁ ଅମୃତସରରେ ଉତ୍ତେଜନା ବୃଦ୍ଧି ପାଇଲା ଏବଂ ଉତ୍ତ୍ୟକ୍ତ ଜନତା କେତେଜଣ ୟୁରୋପିଆନ୍‌ଙ୍କୁ ହତ୍ୟା କଲେ । ୧୧ ତାରିଖ ସନ୍ଧ୍ୟାରେ ବ୍ରିଗେଡିଅର ଡାୟାର ଜଳନ୍ଧରରୁ କେତେକ ସୈନ୍ୟଙ୍କୁ ଧରି ଅମୃତସରରେ ଉପସ୍ଥିତ ହେଲେ । ପରଦିନ ସେ ନାଗରା ଦେଇ କୌଣସି ପ୍ରକାର ସଭା ଓ ଶୋଭାଯାତ୍ରା କରିବାକୁ ନିଷେଧ ଆଦେଶ ଜାରୀ କଲେ । ଏପ୍ରିଲ୍ ୧୩ ତାରିଖ ଦିନ ଅପରାହ୍ଣ ୪ଟା ସମୟରେ ସେ ସମ୍ବାଦ ପାଇଲେ ଯେ, ତାଙ୍କର ଆଦେଶ ଅମାନ୍ୟ କରି ଜାଲିଆନାୱାଲାବାଗରେ ସାଧାରଣ ସଭା ହେଉଛି । ସେ ତୁରନ୍ତ ୯୦ ଜଣ ଭାରତୀୟ ଓ ଗୁର୍ଖା ସିପାହୀଙ୍କୁ ଦୁଇଟି ସାମରିକ ଗାଡ଼ିରେ ନେଇ ସେଠାରେ ପହଞ୍ଚିଲେ । ଏହି ସଭାସ୍ଥଳର ନାମ ବାଗ୍ ବା ଉଦ୍ୟାନ ଥିଲେ ମଧ୍ୟ କାଳକ୍ରମେ ଏହା ଏକ ଖାଲୁଆ ସମତଳ ଜମିରେ ପରିଣତ ହୋଇଥିଲା । ଚାରିଆଡ଼େ ଘରବାଡ଼ି ଓ ଉଦ୍ୟାନକୁ ଯିବାପାଇଁ କେତୋଟି ଛୋଟ ଦ୍ୱାର ଥିଲେ ମଧ, ମୁଖ୍ୟ ପ୍ରବେଶ ଦ୍ୱାର ଥିଲା ଗୋଟିଏ । ବ୍ରିଗେଡିଅର ଜେନେରାଲ ଡାୟାର ଏହି ମୁଖ୍ୟ ଦ୍ୱାରରେ ରହି ସଭାରେ ସମବେତ ସାଧାରଣ ଲୋକଙ୍କ ଉପରେ ଗୁଳି ଚଳାଇବା ପାଇଁ ଆଦେଶ ଦେଲେ । ସଭାସ୍ଥଳରୁ

ପଳାୟନ କରିବା ପାଇଁ ସମୟ ଦିଆଯାଇ ନଥିଲା ବା ସତର୍କ ମଧ୍ୟ କରି ଦିଆଯାଇନଥିଲା । ମୁଖ୍ୟଦ୍ୱାର ସୈନ୍ୟମାନଙ୍କ ଦ୍ୱାରା ବନ୍ଦ ଥିବା ହେତୁ ଆକ୍ରାନ୍ତ ଜନତା ସହଜରେ ଅନ୍ୟ କୌଣସି ରାସ୍ତା ଦେଇ ପଳାଇ ପାରିଲେ ନାହିଁ । ଏହି ଆକ୍ରମଣରେ ୩୭୯ ଜଣ ଲୋକ ପ୍ରାଣ ହରାଇଥିଲେ ଓ ୧୨୦୦ରୁ ଅଧିକ ଲୋକ ଆହତ ହୋଇଥିଲେ । ବାସ୍ତବରେ ମୃତ୍ୟୁ ସଂଖ୍ୟା ସହସ୍ରରୁ ଅଧିକ ହେବ ବୋଲି ଜନମୁଖରେ ପ୍ରଚାରିତ ହେଲା । ଡାୟାର ଏ ଗଣହତ୍ୟା ସମାପ୍ତ କରି ସେ ସ୍ଥାନରୁ ଫେରିଯାଇଥିଲେ ଏବଂ ଆହତ ଲୋକଙ୍କର ଚିକିତ୍ସା ପାଇଁ ମଧ୍ୟ କୌଣସି ବ୍ୟବସ୍ଥା କରିନଥିଲେ ।

ଜାଲିଆନାୱାଲାବାଗ୍ ଗଣହତ୍ୟାର ପୂର୍ଣ୍ଣ ବିବରଣୀ ଯେତେବେଳେ ପ୍ରକାଶିତ ହେଲା, ଭାରତୀୟ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ତାହା ଏକ ବିସ୍ଫୋରଣ ସୃଷ୍ଟି କରିଥିଲା । ଯେପରି ନିର୍ମମ ଭାବରେ ଏ ଗଣହତ୍ୟା କରାଯାଇଛି, ସେ ସମ୍ପର୍କରେ ବରିଷ୍ଠ ବ୍ରିଟିଶ କର୍ମଚାରୀମାନେ ଏକ ଅନୁସନ୍ଧାନ କମିଟି ବସାଇବା ପାଇଁ ପ୍ରସ୍ତାବ କରୁଥିଲେ । ସେପରି କରିଥିଲେ ହୁଏତ ଅସନ୍ତୋଷ ଏତେ ଗଭୀର ଓ ତୀବ୍ର ହୋଇନଥାନ୍ତା । କିନ୍ତୁ ମଣ୍ଟେଗ୍ୟୁ ଓ ଚେମସଫୋର୍ଡ୍‌ଙ୍କ ଭିତରେ ସହମତ ନଥିବାରୁ ଜୁଲାଇ ପର୍ଯ୍ୟନ୍ତ ବିଚାରବିମର୍ଶ ଚାଲିଲା ଏବଂ ପରିଶେଷରେ ଲର୍ଡ୍ ହଣ୍ଟରଙ୍କ ଅଧ୍ୟକ୍ଷତାରେ ଏ ଗଣହତ୍ୟାର ଅନୁସନ୍ଧାନ ପାଇଁ ଏକ କମିଟି ଗଠିତ ହେଲା । ଇଂରେଜମାନଙ୍କର କାର୍ଯ୍ୟପ୍ରତି ବିଶେଷତଃ ଜାଲିଆନାୱାଲାବାଗ୍ ଗଣହତ୍ୟା ପ୍ରତି ଘୃଣା ଓ ଅସନ୍ତୋଷ ଏତେ ଗଭୀର ଥିଲା ଯେ, କଂଗ୍ରେସ ଶେଷକୁ ଏହି ସରକାରୀ କମିଟି ସହିତ ସହଯୋଗ କରିବେ ନାହିଁ ବୋଲି ନିଷ୍ପତ୍ତି ନେଲେ । ବରଂଚ ଚିତ୍ତରଞ୍ଜନ ଦାସ, ମୋତିଲାଲ ନେହୁରୁ ପ୍ରମୁଖ କେତେଜଣଙ୍କୁ ନେଇ କଂଗ୍ରେସ ଗୋଟିଏ ଅନୁସନ୍ଧାନ କମିଟି ଗଠନ କଲେ । ଜୱାହରଲାଲ ନିଯୁକ୍ତ ହେଲେ ଏହାର ସମ୍ପାଦକ । ବ୍ରିଗେଡ଼ିଅର ଜେନେରାଲ ଡାୟାର ହଣ୍ଟର କମିଟି ସମ୍ମୁଖରେ ସାକ୍ଷ୍ୟ ଦେବାପାଇଁ ଅତ୍ୟନ୍ତ ଭୟାତୁର ଥିଲେ । କିନ୍ତୁ ତାଙ୍କୁ ସାହସ ଦେବାପାଇଁ ବନ୍ଧୁମାନେ ତାଙ୍କୁ ପରାମର୍ଶ ଦେଲେ ଯେ, ସେ ଏକ ମହାନ୍ କାର୍ଯ୍ୟ ସମ୍ପାଦନ କରିଛନ୍ତି । ବିଦ୍ରୋହ କବଳରୁ ଭାରତକୁ ଉଦ୍ଧାର କରି ସେ ବ୍ରିଟେନ୍‌କୁ ଅର୍ପଣ କରିଛନ୍ତି । ଏହାପରେ ଡାୟାର ସେହି ମର୍ମରେ ସାକ୍ଷ୍ୟ ଦେଲେ । କିନ୍ତୁ ହଣ୍ଟର କମିଟିର ସଭ୍ୟମାନେ ବିଦ୍ରୋହର କୌଣସି ପ୍ରମାଣ ପାଇଲେ ନାହିଁ । ବରଂଚ ଗଣହତ୍ୟା ପରେ ମଧ୍ୟ ଇଂରେଜମାନଙ୍କ ସାମ୍ନାରେ ଭାରତୀୟମାନେ ଯେପରି ମୁଣ୍ଡ ତଳକୁ କରି ଯିବେ, ସେପରି ଆଦେଶ ଦେଇ ଅଯଥା ଭାରତୀୟମାନଙ୍କୁ ଅବମାନନା କରିବାର କୌଣସି

ଆବଶ୍ୟକତା ନଥିଲା । କିନ୍ତୁ ଇଂଲଣ୍ଡରେ ଓ ପାର୍ଲାମେଣ୍ଟରେ ଡାୟାରଙ୍କର ବହୁ ବନ୍ଧୁ ଥିଲେ ଏବଂ ସେମାନେ ଡାୟାରଙ୍କ କାର୍ଯ୍ୟର ପ୍ରଶଂସା କରି ତାଙ୍କୁ ସମ୍ମାନିତ କରିବା ପାଇଁ ୨୬,୦୦୦ ପାଉଣ୍ଡ ଓ ଗୋଟିଏ ସୁନାର ଖଡ୍ଗ ପ୍ରଦାନ କରିଥିଲେ ।

କିନ୍ତୁ ଏହି ଘଟଣା ପରେ ଭାରତରେ ପ୍ରତିବାଦ ଓ ହରତାଳର ଦାବାନଳ ଜଳିଉଠିଲା । ଭାରତୀୟମାନେ ଇଂରେଜମାନଙ୍କ ଉପରୁ ସମସ୍ତ ଆସ୍ଥା ହରାଇଲେ । ଏପରିକି ମହାତ୍ମାଗାନ୍ଧିଙ୍କ ପରି ବ୍ୟକ୍ତି, ଯାହାଙ୍କର ବ୍ରିଟିଶ ଶାସନ ଉପରେ ବହୁ ବିଶ୍ୱାସ ଥିଲା, ସେ ବ୍ରିଟିଶ-ବିରୋଧୀ ମଞ୍ଚକୁ ଲମ୍ଫ ଦେଲେ । ଗାନ୍ଧିଜୀ ଅନୁଭବ କଲେ, ଇଂରେଜମାନଙ୍କ ସାମ୍ନାରେ ମୁଣ୍ଡ ତଳକୁ କରି ଚାଲିବାଠାରୁ ଆଉ ବୋଧେ ଅଧିକ ଅପମାନଜନକ କାର୍ଯ୍ୟ ନାହିଁ । ସେ ଏଣିକି ବ୍ରିଟିଶ ବିରୋଧୀ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିବା ପାଇଁ ବଦ୍ଧପରିକର ହେଲେ । ବହୁ ମର୍ଡ଼ରେଟ୍ ନେତାଙ୍କର ଇଂରେଜମାନଙ୍କ ପ୍ରତି ଆଉ ଶ୍ରଦ୍ଧା ରହିଲା ନାହିଁ । ସେମାନଙ୍କ ମଧ୍ୟରେ ମୋତିଲାଲ ନେହୁରୁ ଓ ଚିତ୍ତରଞ୍ଜନ ଦାସ ପ୍ରମୁଖ ଇଂରେଜଙ୍କର କାର୍ଯ୍ୟକୁ ଘୃଣା କରିବାକୁ ଆରମ୍ଭ କଲେ । ଏପରିକି କବିଗୁରୁ ରବୀନ୍ଦ୍ରନାଥ ଠାକୁର, ଯେ କି କୌଣସି ରାଜନୈତିକ ଦଳ ସହିତ ସମ୍ପୃକ୍ତ ନଥିଲେ, ସେ ମଧ୍ୟ ନିକଟରେ ପ୍ରାପ୍ତ ହୋଇଥିବା ନାଇଟ୍ ଉପାଧି ବ୍ରିଟିଶ ସରକାରଙ୍କୁ ପ୍ରତ୍ୟର୍ପଣକଲେ । ପରନ୍ତୁ ସନ୍ତ୍ରାସବାଦ ପୁଣିଥରେ ପଞ୍ଜାବରେ ମୁଣ୍ଡ ଟେକିଲା ।

ଅବଶ୍ୟ ବିଲାତର ଜାଠ ଦଳର ସଭ୍ୟ ଓ ଭାରତରେ ଅବସ୍ଥାପିତ ଇଂରେଜ କର୍ମଚାରୀ, ପରାମର୍ଶଦାତା ଓ ବ୍ୟବସାୟୀ ଗୋଷ୍ଠୀ ମନେ କରୁଥିଲେ ଯେ, ଚାକିରି କ୍ଷେତ୍ରରେ ଭାରତୀୟଙ୍କୁ ସାମାନ୍ୟ ସୁବିଧା ସୁଯୋଗ ଦେଲେ, ସେମାନଙ୍କର ଅଭୀପ୍ସା ଅନେକାଂଶରେ ପୂରଣ ହୋଇପାରିବ । ମାଡ୍ରାସ ଗଭର୍ଣ୍ଣର ଲର୍ଡ଼ ପେଣ୍ଟ୍‌ଲ୍ୟାଣ୍ଡ ଉପରିସ୍ଥ କର୍ମକର୍ତ୍ତାଙ୍କ ସହିତ ପରାମର୍ଶ ନକରି ଘୋଷଣା କରିଥିଲେ ଯେ, ଯୁଦ୍ଧ ଶେଷରେ ଯାହାକିଛି ରାଜନୈତିକ ସଂସ୍କାର କରାଯିବ, ତାହା କେବେହେଲେ "ହୋମରୁଲ୍" ପଦ ସ୍ପର୍ଶ କରିପାରିବ ନାହିଁ । ଏଣୁ ଯେଉଁମାନେ ହୋମରୁଲ ପକ୍ଷରେ ଚିତ୍କାର କରୁଛନ୍ତି, ସେମାନଙ୍କ ପ୍ରତି ବର୍ତ୍ତମାନଠାରୁ କଟକଣା ଲାଗୁ କରିବା ଉଚିତ । ଉଲ୍ଲେଖଯୋଗ୍ୟ ଯେ, ହୋମରୁଲ ଓ ସ୍ୱାୟତ୍ତଶାସନ ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ । କିନ୍ତୁ ଇଂରେଜମାନଙ୍କର ଏପ୍ରକାର ମନୋବୃତ୍ତିରେ ନା ରାଜକର୍ମଚାରୀ ନା ରାଜନେତା, କେହି ସନ୍ତୁଷ୍ଟ ନଥିଲେ । ଦୀର୍ଘଦିନ ଧରି ବ୍ରିଟିଶ କ୍ୟାବିନେଟ୍‌ରେ ପ୍ରଶାସନିକ ସଂସ୍କାର

ସମ୍ପର୍କରେ କୌଣସି ନିଷ୍ପତ୍ତି ନିଆଯାଇ ପାରିନଥିଲା । ଚେମସଫୋର୍ଡ଼ ଶେଷକୁ ପ୍ରସ୍ତାବ କଲେ, ଭାରତ ସଚିବ ଉଇଲିଂଡନ୍ ଥରେ ଭାରତ ପରିଦର୍ଶନରେ ଆସି ପରିସ୍ଥିତିର ସମୀକ୍ଷା କରି ଶେଷ ନିଷ୍ପତ୍ତି ନିଅନ୍ତୁ । ଭାଗ୍ୟକୁ ସେପରି ହେବା ପୂର୍ବରୁ ମେସୋପଟାମିଆ ଯୁଦ୍ଧରେ ବଦନାମ ହୋଇ ଜୁଲାଇ ୧୨ ତାରିଖରେ ପ୍ରଧାନମନ୍ତ୍ରୀ ଆସ୍‌କ୍ୱିଥ୍‌ଙ୍କ ସହିତ ସ୍ୱପଦରୁ ଇସ୍ତଫା ଦେଲେ । ଲଏଡ୍ ଜର୍ଜ ହେଲେ ନୂତନ ପ୍ରଧାନମନ୍ତ୍ରୀ ଓ ମଣ୍ଟେଗ୍ୟୁ ଭାରତ ଶାସନ ସଚିବ । ଭାରତୀୟମାନେ ଯେପରି ନରମପନ୍ଥୀ ଗୋଷ୍ଠୀରୁ ଦୂରନ୍ତ ଚରମପନ୍ଥୀମାନଙ୍କ ଆଡ଼କୁ ଡିଆଁ ନ ମାରନ୍ତି, ତା'ର ବ୍ୟବସ୍ଥା କରିବାକୁ ମଣ୍ଟେଗ୍ୟୁ ତତ୍‌ପର ହେଲେ । ବହୁ ବିଚାରବିମର୍ଶ ପରେ ୧୯୧୭ ମସିହା ଅଗଷ୍ଟ ମାସରେ ମଣ୍ଟେଗ୍ୟୁ ହାଉସ୍ ଅଫ୍ କମନ୍‌ସରେ ଘୋଷଣା କଲେ ଯେ, ରାଜକାର୍ଯ୍ୟ ସମ୍ପନ୍ନ କରିବାରେ ଅଧିକରୁ ଅଧିକ ଭାରତୀୟଙ୍କର ସହଯୋଗ ନେବା ଏବଂ ବ୍ରିଟିଶ ସାମ୍ରାଜ୍ୟ ଅଧୀନରେ ଭାରତୀୟମାନଙ୍କୁ କ୍ରମଭିତ୍ତିରେ ସ୍ୱାୟତ୍ତଶାସନ ଦେବା ପାଇଁ ବ୍ୟବସ୍ଥା କରିବା ଗ୍ରେଟ୍ ବ୍ରିଟେନ୍‌ର ଯୁଦ୍ଧପର ଲକ୍ଷ୍ୟ ହେବ ।

ଅମୃତସର ବିଶେଷତଃ ଜାଲିଆନାୱାଲାବାଗ୍‌ରେ ଯେଉଁ ନିର୍ମମ ହତ୍ୟାକାଣ୍ଡ ଘଟିଗଲା; ଭାରତ ଓ ଇଂଲଣ୍ଡ ମଧ୍ୟରେ ସଦ୍‌ଭାବ ଫେରାଇ ଆଣିବା ପାଇଁ ଆଦୌ ଅନୁକୂଳ ନଥିଲା । ମଣ୍ଟେଗ୍ୟୁ-ଚେମସଫୋର୍ଡ଼ ଭାରତ ଶାସନ ଆଇନ୍ ୧୯୧୯ ମସିହା ଡିସେମ୍ବର ମାସରେ ଇଂଲଣ୍ଡ ରାଜାଙ୍କର ସ୍ୱୀକୃତି ପାଇ ଆଇନରେ ପରିଣତ ହେବାର କିଛି ଦିନ ପରେ ଅମୃତସରରେ କଂଗ୍ରେସର ବାର୍ଷିକ ଅଧିବେଶନ ହେଲା । ମହାରାଷ୍ଟ୍ରର ତିଳକ ଓ ବଙ୍ଗଳାର ସି.ଆର୍. ଦାସ ପ୍ରମୁଖ ନେତାମାନେ ଏ ନୂତନ ଆଇନକୁ ପ୍ରତ୍ୟାଖ୍ୟାନ କରିବା ପାଇଁ ଦାବି କଲେ । କିନ୍ତୁ କଂଗ୍ରେସରେ ନୂଆ କରି ନେତୃତ୍ୱ ଗ୍ରହଣ କରିଥିବା ମୋହନ ଦାସ କରମ ଚାନ୍ଦ ଗାନ୍ଧି ଯୁକ୍ତି କଲେ ଯେ, ଏ ଆଇନର ସବୁ ତ୍ରୁଟିବିଚ୍ୟୁତି ସତ୍ତ୍ୱେ ଏହାକୁ କାର୍ଯ୍ୟକାରୀ କରାଯାଇପାରେ । ତାଙ୍କ ମତରେ ଡାୟାରଙ୍କ ଗଣହତ୍ୟା ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କର ଔଦ୍ଧତ୍ୟ ଓ ନିର୍ବୋଧତାର ଯେପରି ପରିପ୍ରକାଶ ମଣ୍ଟେଗ୍ୟୁଙ୍କ ଉଦ୍ୟମରେ ପ୍ରଣୀତ ଏ ଆଇନ୍ ସେହିପରି ଇଂରେଜମାନଙ୍କର ସଭ୍ୟ ଆଚରଣର ଅଭିପ୍ରକାଶ । ପରିଶେଷରେ କଂଗ୍ରେସରେ ଏକ ଆପୋସ ନିଷ୍ପତ୍ତି କରାଗଲା । ମଣ୍ଟେଗ୍ୟୁ-ଚେମ୍‌ସଫୋର୍ଡ଼ ଆଇନ୍‌ର ଦୋଷତ୍ରୁଟି ପାଇଁ ତା'ର ତୀବ୍ର ନିନ୍ଦା କରାଯିବା ସହିତ ସେହି ଆଇନ୍ ଅନୁଯାୟୀ ନିର୍ବାଚନରେ ଭାଗ ନେବା ପାଇଁ ସ୍ଥିର ହେଲା । ଅମୃତସର ଅଧିବେଶନ ଥିଲା ମୋହନ ଦାସ କରମ ଚାନ୍ଦ ଗାନ୍ଧିଙ୍କ ପାଇଁ

ଭାରତୀୟ ରାଜନୀତିର ପ୍ରଥମ ଅନୁଭୂତି । ଏଣେ ଭାରତର ଉଷ୍ମ ରାଜନୈତିକ ବାତାବରଣରେ ଶିଥିଳତା ଆଣିବା ପାଇଁ ସବୁ ରାଜବନ୍ଦୀ ଓ ଅନ୍ତରୀଣ ବନ୍ଦୀମାନଙ୍କୁ ମୁକ୍ତ କରିବା ପାଇଁ ମଣ୍ଟେଗ୍ୟୁ ଆଦେଶ ଦେଲେ ଏବଂ ଅନିଚ୍ଛା ସତ୍ତ୍ୱେ ଚେମସ୍‌ଫୋର୍ଡ଼ ଏ ଆଦେଶ କାର୍ଯ୍ୟକାରୀ କଲେ । ଯାହାଫଳରେ ସାଧାରଣ ରାଜନୈତିକ ବନ୍ଦୀଙ୍କ ସହିତ ବହୁ ସନ୍ତ୍ରାସବାଦୀ ମଧ୍ୟ ଖଲାସ ହେଲେ । ଏହିଠାରୁ ଆରମ୍ଭ ହେଲା ମଣ୍ଟେଗ୍ୟୁ ଓ ଚେମସଫୋର୍ଡ଼ଙ୍କ ମଧ୍ୟରେ ବିବାଦ । ଏଥି ସହିତ ଦିଲ୍ଲୀର ଦୁଇଜଣ ମୁସଲିମ ନେତା ମହମ୍ମଦ ଅଲ୍ଲୀ ଓ ସୌକତ୍ ଅଲ୍ଲୀ ମଧ୍ୟ କାରାମୁକ୍ତ ହେଲେ ।

ପ୍ରଥମ ବିଶ୍ୱଯୁଦ୍ଧର ଶେଷ ପର୍ଯ୍ୟାୟରେ ତୁର୍କୀର ସୁଲତାନ ବା ଖଲିଫା ବ୍ରିଟିଶ ଓ ତାଙ୍କର ସହଯୋଗୀଙ୍କ ଦ୍ୱାରା ଯୁଦ୍ଧରେ ପରାସ୍ତ ହୋଇ କ୍ଷମତାଚ୍ୟୁତ ହେଲେ । ସେତେବେଳେ ତୁର୍କୀର ଖଲିଫା ବା କ୍ୟାଲିଫେଟ୍‌ଙ୍କୁ ମୁସଲମାନ ଧର୍ମଗୁରୁ ଭାବରେ ବିବେଚନା କରାଯାଉଥିଲା । ଏଣୁ ମକ୍କା ମଦିନା ଆଦି ତୁର୍କୀର ସୁଲତାନଙ୍କ କର୍ତ୍ତୃତ୍ୱରୁ ମୁକ୍ତ ହେବା ପରେ ମହମ୍ମଦ ଅଲ୍ଲୀ ଓ ସୌକତ୍ ଅଲ୍ଲୀଙ୍କ ନେତୃତ୍ୱରେ ତୁର୍କୀର ଖଲିଫାଙ୍କୁ ସମର୍ଥନ କରି ଆନ୍ଦୋଳନ ଆରମ୍ଭ ହେଲା । ଗାନ୍ଧିଜୀ ଭାବିଲେ ଭାରତର ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠା କରିବା ପାଇଁ ଖିଲାଫତ୍ ଆନ୍ଦୋଳନକୁ ସମର୍ଥନ କରିବା ଉଚିତ ଏବଂ ସେହି ମର୍ମରେ ସେ କଂଗ୍ରେସରେ ଏକ ନୂତନ ବାତାବରଣ ସୃଷ୍ଟି କରିବାକୁ ଚେଷ୍ଟା କଲେ, କିନ୍ତୁ ଏସବୁ ଉଦ୍ୟମ ବିଫଳ ହେଲା । ଖିଲାଫତ୍ କମିଟି ତରଫରୁ ମହମ୍ମଦ ଅଲ୍ଲୀଙ୍କ ନେତୃତ୍ୱରେ ଗୋଟିଏ ପ୍ରତିନିଧି ଦଳ ଇଂଲଣ୍ଡର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଲଏଡ୍ ଜର୍ଜଙ୍କୁ ସାକ୍ଷାତ କଲେ । କିନ୍ତୁ ପ୍ରଧାନମନ୍ତ୍ରୀ ପତ୍ରିନିଧିମାନଙ୍କୁ ସ୍ପଷ୍ଟ କହିଲେ ଯେ, ନିଜ ରାଜ୍ୟ ବାହାରେ ଅନ୍ୟ କୌଣସି ଅଞ୍ଚଳରେ କ୍ଷମତା ଜାହିର୍ କରିବାକୁ ତୁର୍କୀ କ୍ୟାଲିଫେଟ୍‌ଙ୍କୁ ସୁଯୋଗ ଦିଆଯିବ ନାହିଁ । ଦୁର୍ଭାଗ୍ୟର କଥା ଯେ, ନଭେମ୍ବର ୧ ୯ ୨ ୨ ମସିହାରେ ତୁର୍କୀର ଖଲିଫା କନ୍‌ଷ୍ଟାଣ୍ଟିନୋପଲ୍‌ରୁ ବିତାଡ଼ିତ ହେଲେ ଏବଂ ଜଣେ ସାଧାରଣ ଲୋକ ମୁସ୍ତାଫା କେମାଲ ପାଶା ତୁର୍କୀରେ କ୍ଷମତା ଅଧିକାର କଲେ । ଇଂରେଜମାନେ ଖୁବ୍ ଖୁସି ହେଲେ ଯେ, ଖିଲାଫତ୍ ଆନ୍ଦୋଳନର ବିଲୋପ ଘଟିଛି ଏବଂ ହିନ୍ଦୁ ମୁସଲମାନ ଏକତା ଫେରାଇ ଆଣିବା ପାଇଁ ଗାନ୍ଧିଜୀ ଯେଉଁ ଉଦ୍ୟମ କରୁଥିଲେ, ତାହା ବିଫଳ ହୋଇଛି ।



# ଅସହଯୋଗ ଓ ଚୌରୀଚୌରା

ଯେଉଁ ରାଜନୈତିକ ନେତୃତ୍ୱର ନୈତିକ ଧାରା ଗାନ୍ଧିଜୀଙ୍କୁ ଅମୃତସର କଂଗ୍ରେସ ଅଧିବେଶନର ଶୀର୍ଷସ୍ଥାନରେ ଆସୀନ କରିଥିଲା, ଜାନୁଆରୀ ୧୯୨୦ ମସିହାରେ ଅଗ୍ରଗାମୀ ନେତା ବାଳ ଗଙ୍ଗାଧର ତିଳକଙ୍କ ମୃତ୍ୟୁପରେ ସେ ଖ୍ୟାତିର ଅଧିକ ପ୍ରସାର ଘଟିଲା । ଭାରତ ସଚିବ ମଣ୍ଟେଗ୍ୟୁ ରାଜବନ୍ଦୀମାନଙ୍କୁ ଓ ସନ୍ତ୍ରାସବାଦୀମାନଙ୍କୁ ମୁକ୍ତ କରି ତାହାର ପଥ ପରିଷ୍କାର କରି ଦେଇଥିଲେ । ତିଳକଙ୍କ ମୃତ୍ୟୁ ପରେ ଯେଉଁ ଚରମପନ୍ଥୀ ନେତା କ୍ଷମତାରେ ଥିଲେ ଗାନ୍ଧିଜୀଙ୍କର କାର୍ଯ୍ୟକ୍ରମ ଦ୍ୱାରା ସେମାନେ ଆକୃଷ୍ଟ ହୋଇନଥିଲେ । ଦେଶର ଏହି ସଙ୍କଟମୟ ମୁହୂର୍ତ୍ତରେ କିପରି ଭାବରେ ହିନ୍ଦୁ-ମୁସଲମାନ ଏକତା ଆନ୍ଦୋଳନ ସୁରକ୍ଷିତ ହେବ ଏବଂ ମଣ୍ଟେଗ୍ୟୁ-ଚେମ୍ସଫୋର୍ଡ଼ ଆଇନକୁ କାର୍ଯ୍ୟକାରୀ କରିବାରେ ଯାହାସବୁ ପ୍ରତିବନ୍ଧକ ରହିଛି ସେ ଦୃଷ୍ଟିରୁ ନିର୍ବାଚନରେ ଭାଗନେବା କେତେଦୂର ସମୀଚୀନ ହେବ ତାହା ଗାନ୍ଧିଜୀଙ୍କୁ ବିବ୍ରତ କରୁଥିଲା । ଚିତ୍ତରଞ୍ଜନ ଦାସଙ୍କ ପରି ନେତାମାନେ ନିର୍ବାଚନରେ ଭାଗ ନନେବା ପ୍ରସ୍ତାବର ବିରୋଧ କରୁଥିଲେ ।

କିନ୍ତୁ ନିର୍ବାଚନରେ ଭାଗ ନନେବା ପାଇଁ ଗାନ୍ଧିଜୀଙ୍କ ପରିବର୍ତ୍ତିତ ପ୍ରସ୍ତାବ ୧୯୨୦ ମସିହା ନଭେମ୍ବର କଲିକତାରେ ଅନୁଷ୍ଠିତ କଂଗ୍ରେସର ବିଶେଷ ଅଧିବେଶନରେ ଗୃହୀତ ହୋଇଥିଲା । ତରୁଣ କଂଗ୍ରେସ ନେତା ଜଓ୍ୱାହରଲାଲ ନେହ୍ରୁ ଓ ତାଙ୍କ ପିତା ମୋତିଲାଲ ନେହ୍ରୁ ଗାନ୍ଧିଙ୍କୁ ଦୃଢ ସମର୍ଥନ କରିଥିଲେ । କଲିକତା ବିଶେଷ ଅଧିବେଶନରେ ଗୃହୀତ ପ୍ରସ୍ତାବ ସେହିବର୍ଷ ଡିସେମ୍ବର ମାସରେ ନାଗପୁରରେ ଅନୁଷ୍ଠିତ ବାର୍ଷିକ ଅଧିବେଶନରେ ଅନୁମୋଦିତ ହୋଇଥିଲା । ସନ୍ନ୍ୟାସୀର ବିଚାରଧାରା

"ସତ୍ୟ ଓ ଅହିଂସା" ଏଣିକି କଂଗ୍ରେସର କାର୍ଯ୍ୟକ୍ରମରେ ନିରନ୍ତର ପ୍ରତିଫଳିତ ହେଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ବ୍ରିଟିଶ ସରକାରଙ୍କ ସହିତ ଅସହଯୋଗ ପାଇଁ ନିଷ୍ପତ୍ତି ନିଆହେଲା ।

ଏହି କଲିକତା ଓ ନାଗପୁର ଅଧିବେଶନକୁ ଉପଲକ୍ଷ୍ୟ କରି ଜୱାହରଲାଲ ନେହୁରୁ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ, "ଗାନ୍ଧିଜୀଙ୍କର କଂଗ୍ରେସକୁ ଆଗମନ ପରେ କଂଗ୍ରେସର ସାଧାରଣ ଅଧିବେଶନର ରୂପରେଖ, ବେଶଭୂଷା ଆଦି ସବୁକିଛିରେ ବିରାଟ ପରିବର୍ତ୍ତନ ଦେଖା ଦେଇଥିଲା । ୟୁରୋପିଆନ ସୁଟ୍ ଓ ଟାଇ ବଦଳରେ ପ୍ରତିନିଧିମାନେ ଖଦଡ଼ ପରିଧାନ କରୁଥିଲେ ଏବଂ ନିମ୍ନ-ମଧ୍ୟବିତ୍ତ ଶ୍ରେଣୀର ବହୁସଂଖ୍ୟକ ପ୍ରତିନିଧି କଂଗ୍ରେସରେ ଯୋଗ ଦେଉଥିଲେ । ଏପରିକି ଇଂରେଜୀ ଭାଷାରେ ଅଭିଭାଷଣ ତ୍ୟାଗ କରି କଂଗ୍ରେସ ପ୍ରତିନିଧିମାନେ ଉର୍ଦ୍ଦୁ ଓ ମୁଖ୍ୟତଃ ହିନ୍ଦୀ ଭାଷାରେ ଭାଷଣ ଦେଉଥିଲେ ।"

ବସ୍ତୁତଃ ତେଜ୍ ବାହାଦୂର ସାପ୍ରୁ, ଏମ୍.ଆର୍. ଜୟକାର ଓ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ପରି ପୁରୁଣାକାଳିଆ ନେତାମାନେ ପ୍ରଚଳିତ ରୀତିସମ୍ମତ ଫ୍ୟାସନେବଲ ୟୁରୋପିଆନ ସୁଟ୍ ଓ ଟାଇ ପରିଧାନ କରିବାର ଅଭ୍ୟାସ ଚାଲୁ ରଖିଲେ । ଜିନ୍ନା ଯଦିଓ ପ୍ରଥମରୁ କଂଗ୍ରେସ ସହିତ ସଂଶ୍ଳିଷ୍ଟ ଥିଲେ, ଗାନ୍ଧିଜୀ କଂଗ୍ରେସର ନେତୃତ୍ୱ ଗ୍ରହଣ କରିବା ପରେ ସେ ଧୀରେ ଧୀରେ କଂଗ୍ରେସ ଅନୁଷ୍ଠାନ ଛାଡ଼ି ମୁସଲିମ ଲିଗ୍‌ର ସମର୍ଥକ ଓ ସଙ୍ଗଠକ ହେଲେ । ଖିଲାଫତ୍ ଆନ୍ଦୋଳନ ଫଳରେ ଅଧିକରୁ ଅଧିକ ସଂଖ୍ୟକ ମୁସଲମାନ ନେତା କଂଗ୍ରେସ ଆନ୍ଦୋଳନରେ ଯୋଗ ଦେବା ହେତୁ ମହମ୍ମଦ ଅଲ୍ଲୀ ଜିନ୍ନା ଆଶଙ୍କା କଲେ, ସେ କଂଗ୍ରେସରେ ଏଣିକି ଗୌଣ ସ୍ଥାନ ଅଧିକାର କରିବେ ।

୧୯୨୧ ମସିହାରେ ଗାନ୍ଧିଜୀ ବ୍ରିଟିଶ ସରକାରଙ୍କ ସହିତ ଅସହଯୋଗ ପାଇଁ ଆହ୍ୱାନ ଦେଲେ ଓ ସେହି ପର୍ଯ୍ୟାୟରେ ଦେଶ ଆଗରେ ଯେଉଁ କାର୍ଯ୍ୟକ୍ରମ ଉପସ୍ଥାପିତ କଲେ, ସେଥିରେ ସ୍ପଷ୍ଟ ଉଲ୍ଲେଖ ଥିଲା ଯେ ଓକିଲ ଓ ଡାକ୍ତର ଆଦି ପ୍ରଫେସନାଲ ଲୋକେ ତାଙ୍କ ବୃତ୍ତିରୁ ଇସ୍ତଫା ଦିଅନ୍ତୁ । ଛାତ୍ରଛାତ୍ରୀ ଓ ଶିକ୍ଷକମାନେ ଇଂରାଜୀ ଅଧ୍ୟୟନରୁ ନିବୃତ୍ତ ରୁହନ୍ତୁ ଏବଂ ବିଲାତି ବସ୍ତ୍ର ପରିଧାନ ବଦଳରେ ସମସ୍ତେ ହାତ-ତିଆରି ଖଦଡ଼ ଲୁଗା ପରିଧାନ କରନ୍ତୁ । ପ୍ରାରମ୍ଭରୁ ବୁଦ୍ଧିଜୀବୀମାନଙ୍କୁ ଏ କାର୍ଯ୍ୟକ୍ରମ ବିଶେଷ ଆକୃଷ୍ଟ

କରି ନଥିଲା । ତା'ପରେ ଗାନ୍ଧିଜୀ ବ୍ୟବସ୍ଥା ସଭା ନିର୍ବାଚନରେ ନିଜେ ଭାଗ ନନେଲେ ମଧ୍ୟ ଅନ୍ୟ ନିର୍ବାଚନ ସମର୍ଥକମାନଙ୍କ ସହିତ କୌଣସି ପ୍ରକାର ବିବାଦ ନକରି ସେହି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ସେମାନଙ୍କୁ ସୁସଙ୍ଗଠିତ କରିବା ପାଇଁ "ସ୍ୱରାଜ୍ୟ ଦଳ" ଗଠନ କରିବାକୁ ଅନୁମତି ଦେଲେ । ବିଲାତିବସ୍ତ୍ର ବର୍ଜନ, ଅରଟ ଚାଳନ ଓ ଖଦଡ଼ ପରିଧାନର କାର୍ଯ୍ୟକ୍ରମ ମୁଖ୍ୟତଃ କଂଗ୍ରେସ କର୍ମୀମାନେ ହାତକୁ ନେଲେ । ମୋତିଲାଲ ନେହୁରୁ ଓ ସି.ଆର୍. ଦାସ ଆଦି ଯେଉଁମାନେ ନିର୍ବାଚନରେ ଅଂଶଗ୍ରହଣ କଲେ, ସେମାନେ ମୁଖ୍ୟତଃ ସ୍ୱରାଜ ଦଳରେ ଯୋଗ ଦେଲେ ଏବଂ ଏହି ସ୍ୱରାଜ ଦଳର ନେତାମାନେ ବ୍ୟବସ୍ଥାସଭାକୁ ମଧ୍ୟ ବହୁସଂଖ୍ୟାରେ ନିର୍ବାଚିତ ହୋଇଥିଲେ ।

ଏହି ସମୟରେ ଭାଇସରାୟ ଗାଦିରେ ପରିବର୍ତ୍ତନ ହେଲା । ଚେମସଫୋର୍ଡ଼ଙ୍କ ସ୍ଥାନରେ ୧୯୨୧ ମସିହାରେ ଜଣେ ପୂର୍ବତନ ଚିଫ୍ ଜଷ୍ଟିସ ଲର୍ଡ଼ ରିଡ଼ିଂ ଭାଇସରାୟ ପଦରେ ନିଯୁକ୍ତ ହେଲେ । ଭାରତରେ ପହଞ୍ଚି ରିଡିଂ ଦେଖିଲେ ଅସହଯୋଗର ହାୱା ଭାରତକୁ ଆବୋରି ରହିଛି । ଅଥଚ କେରଳର ମୋପ୍ଲା ବିଦ୍ରୋହ ଫଳରେ ହିନ୍ଦୁ-ମୁସଲମାନ ଏକତା ଓ ଇଂରେଜମାନଙ୍କ ସହିତ ମୋପ୍ଲାମାନଙ୍କର ସମ୍ପର୍କ ସମ୍ପୂର୍ଣ୍ଣ ରୂପେ ନଷ୍ଟଭ୍ରଷ୍ଟ । ଏତିକିବେଳେ ସ୍ୱାସ୍ଥ୍ୟଗତ କାରଣରୁ ଥରେ ଘୁଞ୍ଚିବା ପରେ ୧୯୨୧ ନଭେମ୍ବର ମାସରେ ୱେଲ୍ସର ଯୁବରାଜ ବା ପ୍ରିନ୍ସ ଅଫ୍ ୱେଲ୍‌ସଙ୍କର ଭାରତ ପରିଦର୍ଶନ ହେତୁ ଲର୍ଡ଼ ରିଡ଼ିଂଙ୍କର ମସ୍ତିଷ୍କ ଭାରାକ୍ରାନ୍ତ । ମୋତିଲାଲ ନେହେରୁ ଓ ଜୱାହରଲାଲ ଆଦି କଂଗ୍ରେସ ନେତାମାନଙ୍କ ଦ୍ୱାରା ଭାରତର କାରାଗାର ଭରପୂର । ଗାନ୍ଧିଜୀଙ୍କୁ ଗିରଫ କରିବେ କି ନାହିଁ, ଏ ସମ୍ପର୍କରେ ସରକାରୀ ସ୍ତରରେ ମୁନିନାଂ ଚ ମତିଭ୍ରମଃ ।

ଠିକ୍ ଏତିକିବେଳେ ଯୁକ୍ତ ପ୍ରଦେଶର ଗୋରଖପୁର ଜିଲ୍ଲାର ଚୌରୀଚୌରା ଗ୍ରାମରେ ଏପରି ଗୋଟିଏ ଘଟଣା ଘଟିଲା, ଯାହାକି ପ୍ରଶାସନର ଓ କଂଗ୍ରେସ କର୍ମୀମାନଙ୍କ ସମେତ ଦେଶପ୍ରେମୀଙ୍କର ଭାରସାମ୍ୟ ଦୋହଲାଇ ଦେଲା । ଚୌରୀଚୌରାର ସ୍ଥାନୀୟ କେତେକ କୃଷକ ଥାନା ଉପରେ ଆକ୍ରମଣ କରି ଥାନାଗୃହରେ ଅଗ୍ନି ସଂଯୋଗ କରିଥିଲେ ଏବଂ ଫଳରେ ବାଇଶି ଜଣ ପୋଲିସ ସିପାହୀଙ୍କର ମୃତ୍ୟୁ ହେଲା । ମହାତ୍ମାଗାନ୍ଧି ଅନୁଭବ କଲେ ଯେ ଭାରତ ସତ୍ୟ, ଅହିଂସା ସଂଗ୍ରାମ ପାଇଁ ପ୍ରସ୍ତୁତ ହୋଇନାହିଁ । ସେ ତୁରନ୍ତ କଂଗ୍ରେସ କାର୍ଯ୍ୟକାରୀ ସମିତିର ବୈଠକ

ଡକାଇ ଅସହଯୋଗ ଆନ୍ଦୋଳନର ପରିସମାପ୍ତି ଘୋଷଣା କଲେ ଓ ଆତ୍ମଶୁଦ୍ଧି ପାଇଁ ଦୀର୍ଘ ପାଞ୍ଚଦିନବ୍ୟାପୀ ଅନଶନ ଘୋଷଣା କଲେ । ଏହି ସମ୍ବାଦ ପାଇବା ମାତ୍ରେ ଲର୍ଡ଼ ରିଡ଼ିଂ ତାଙ୍କ କାଉନସିଲର ଭାରତୀୟ ସଭ୍ୟମାନଙ୍କର ପରାମର୍ଶ କ୍ରମେ କିଛିଦିନ ପାଇଁ ଗାନ୍ଧିଙ୍କ ଗିରଫଦାରୀ ସ୍ଥଗିତ ରଖିଲେ । କିନ୍ତୁ ବିଭିନ୍ନ ରାଜ୍ୟର ଗଭର୍ଣ୍ଣରମାନେ ଉତ୍‌କ୍ଷିପ୍ତ ହେଉଥିଲେ । ପରିଶେଷରେ ସେମାନଙ୍କ ଚାପରେ ମାର୍ଚ୍ଚ ୧୯ ତାରିଖ ଦିନ ଗାନ୍ଧିଜୀଙ୍କୁ ଗିରଫ କରାଗଲା ଓ ଛଅବର୍ଷ କାରାଦଣ୍ଡ ଦିଆଗଲା । ଅସହଯୋଗୀ କାରାଭୁକ୍ତ କଂଗ୍ରେସନେତା ଓ କର୍ମୀମାନଙ୍କ ଉପରେ ଓ ଦେଶବାସୀଙ୍କ ଉପରେ ଏହି ଘଟଣାର ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ଜେଲରେ ରହି ମଧ୍ୟ ଅନେକ ନେତା କଂଗ୍ରେସ ନେତୃତ୍ୱର ଦକ୍ଷତା ଉପରେ ଆଶଙ୍କା ପ୍ରକାଶ କଲେ । ଏଥି ସହିତ ଅସହଯୋଗ ଆନ୍ଦୋଳନ ଓ ଖିଲାଫତ୍ ଆନ୍ଦୋଳନର ସମାପ୍ତି ଘଟିଲା । ଦଣ୍ଡାଦେଶ ଅନୁଯାୟୀ ରାଜବନ୍ଦୀମାନେ କ୍ରମେ କାରାମୁକ୍ତ ହେଲେ ।



# ସାଇମନ କମିଶନ

ଏପ୍ରିଲ ୧୯୨୬ ମସିହାରେ ରିଡ଼ିଂ ଭାରତ ଛାଡ଼ିବା ପରେ ଲର୍ଡ଼ ଇରଓ୍ୱିନ୍ ସେହି ସ୍ଥାନ ଅଧିକାର କଲେ । ରିଡ଼ିଂ ଭାରତ ଛାଡ଼ିବା ସମୟରେ ଘୋଷଣା କରିଥିଲେ ଯେ, ଆସନ୍ତା ତିନିବର୍ଷ ଲାଗି ଭାରତରେ ଶାନ୍ତିଶୃଙ୍ଖଳା ବଜାୟ ରହିବ । କିନ୍ତୁ କେରଳରେ ମୋପ୍ଲା ବିଦ୍ରୋହ ପରେ ପରେ କଲିକତାରେ ସାମ୍ପ୍ରଦାୟିକ ଦଙ୍ଗାହଙ୍ଗାମା ଆରମ୍ଭ ହୋଇଗଲା ଏବଂ ଏହି ସାମ୍ପ୍ରଦାୟିକ ହିଂସା ପ୍ରାୟ ଦୁଇ ସପ୍ତାହ ପର୍ଯ୍ୟନ୍ତ ବ୍ୟାପି ରହିଲା । ଅନ୍ୟୂନ ବିଭିନ୍ନ ସମ୍ପ୍ରଦାୟର ପ୍ରାୟ ଶହେ ଜଣ ଲୋକ ପ୍ରାଣ ହରାଇଥିଲେ । ୧୯୨୬ ସାଲରେ ଭାରତର ବିଭିନ୍ନ ସ୍ଥାନରେ ୩୫ଟି ବ୍ୟାପକ ହିନ୍ଦୁ-ମୁସଲମାନ ଶାନ୍ତିଭଙ୍ଗ ଘଟିଥିଲା । ଏଣେ ଦିଲ୍ଲୀରେ ଆର୍ଯ୍ୟ ସମାଜର ପ୍ରଧାନ ପ୍ରଚାରକ ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କୁ ଜଣେ ମୁସଲିମ ଧର୍ମାନ୍ଧ ହତ୍ୟା କରିଥିଲେ । ତାର ପ୍ରତିକ୍ରିୟା ଭାରତସାରା ବ୍ୟାପିଯାଇଥିଲା । ମହାପୁରୁଷ ମହମ୍ମଦଙ୍କର ଜୀବନର ଗୋଟିଏ କଳଙ୍କିତ ଅଧ୍ୟାୟ ବର୍ଣ୍ଣନା କରି "ରଙ୍ଗିଲା ରସୁଲ" ଶୀର୍ଷକ ପୁସ୍ତକର ଲେଖକଙ୍କୁ ମଧ୍ୟ ହତ୍ୟା କରାଗଲା । ଭାଇସରାୟ ଇରଓ୍ୱିନ ତାଙ୍କର ପ୍ରାଥମିକ ଭାଷଣଗୁଡ଼ିକରେ ସାମ୍ପ୍ରଦାୟିକ ଶାନ୍ତିରକ୍ଷା କରିବା ପାଇଁ ଭାରତବାସୀଙ୍କୁ ଆହ୍ୱାନ କରିଥିଲେ ଏବଂ ବାରବାର ଖଣ୍ଡନ କରିଥିଲେ ଯେ, ଏହି ଗଣ୍ଡଗୋଳ ପଛରେ ବ୍ରିଟିଶ ସରକାରଙ୍କର ସମ୍ମତି ବା ଚକ୍ରାନ୍ତ ରହିଛି । କିନ୍ତୁ ସେ ନିବେଦନ ବା ତାହାର ଭିତ୍ତି କେହି ଗ୍ରହଣ କରିନଥିଲେ ।

ମଣ୍ଟେଗ୍ୟୁ-ଚେମ୍‌ସଫୋର୍ଡ଼ ଆଇନରେ ଉଲ୍ଲେଖ ଥିଲା ଯେ, ପ୍ରାୟ ଦଶବର୍ଷ ବ୍ୟାପୀ ଏ ଆଇନର କାର୍ଯ୍ୟକାରିତା ସମ୍ପର୍କରେ ଅନୁଧ୍ୟାନ କରିବା ପରେ ଏ ସଂକ୍ରାନ୍ତ ବିଶେଷ ଅନୁସନ୍ଧାନ କରିବା ପାଇଁ ଆଉ ଗୋଟିଏ କମିଟି ଗଠିତ ହେବ । ସେତେବେଳେ କଠୋର ରକ୍ଷଣଶୀଳ ନେତା ଲର୍ଡ଼ ବାର୍କେନହେଡ଼୍ ପାର୍ଲାମେଣ୍ଟରେ ଏକ ସଂଶୋଧିତ

ଆଇନ କରାଇ ଏ ଆଇନର ପରୀକ୍ଷା ନିରୀକ୍ଷା କରିବା ପାଇଁ ଏକ ନୂତନ କମିଟି ଗଠନ କଲେ । ତାଙ୍କର ଆଶଙ୍କା ଥିଲା କାଳେ ଆସନ୍ତା ନିର୍ବାଚନରେ ଲେବର ପାର୍ଟି କ୍ଷମତାକୁ ଆସିବେ ଓ ଭାରତୀୟ କଂଗ୍ରେସର ସହଯୋଗିତାରେ ଭାରତ ପକ୍ଷପାତି ଅନ୍ୟ ଗୋଟିଏ କମିଟି ଗଠିତ ହେବ । ଏହି କମିଟିର ନାମଗୁଡ଼ିକ ୧୯୨୭ ନଭେମ୍ବର ମାସରେ ପ୍ରକାଶିତ ହେଲା । ପ୍ରଖ୍ୟାତ ବାରିଷ୍ଟର ସାର୍ ଜନ୍ ସାଇମନ୍ କମିଟିର ଚେୟାରମ୍ୟାନ୍ ଓ ଅନ୍ୟ ଛଅଜଣ ଅନାମଧେୟ ପାର୍ଲାମେଣ୍ଟ ସଦସ୍ୟଙ୍କୁ ନେଇ ଏହି କମିଟି ଗଠିତ ହେଲା । ସାଇମନଙ୍କର ମଧ ଭାରତ ସମସ୍ୟା ସମ୍ପର୍କରେ କୌଣସି ପୂର୍ବାନୁଭୂତି ନଥିଲା । ଜଣେ ହେଲେ ମଧ ଭାରତୀୟ ଏହି କମିଟିର ସଭ୍ୟ ନଥିଲେ । ଏହି କମିଟି ଗଠନର ସମାଲୋଚନାର ଉତ୍ତର ଦେଇ ଲର୍ଡ୍ ଇରୱିନ୍ କହିଥିଲେ, ଏହାଦ୍ୱାରା ଭାରତ ପ୍ରତି କୌଣସି ଅନ୍ୟାୟ ବା ଅପମାନ କରାଯାଇ ନାହିଁ । ଭାରତର ଶାସନ ସଂସ୍କାର ସଂକ୍ରାନ୍ତୀୟ ସାତଜଣିଆ ସମିତି ପାଇଁ ଜଣେ ମଧ ଭାରତୀୟ ଯୋଗ୍ୟ ବିବେଚିତ ହେଲେନାହିଁ । ଲଜ୍ଜାର କଥା, ଇରୱିନ୍‌ଙ୍କ ଭଳି ବିଜ୍ଞ ବ୍ୟକ୍ତି ଏହା କଳ୍ପନା କରିପାରିଲେ ନାହିଁ ।

ସାଇମନ କମିଶନ ପ୍ରତି ଭାରତର ପ୍ରତିକ୍ରିୟା ସମ୍ପୂର୍ଣ୍ଣ ନାସ୍ତିମୂଳକ ଥିଲା । ୧୯୨୮ ମସିହା ଡିସେମ୍ବର ମାସରେ ସାଇମନ କମିଶନକୁ ବାସନ୍ଦ କରିବା ପାଇଁ ଜୱାହରଲାଲଙ୍କ ପ୍ରେରଣାରେ ନିର୍ଦ୍ଧାରଣ ନିଆହେଲା । ଭାରତର ଲିବରାଲ ନେତା ସାପ୍ରୁ ଓ ଜୟକାର ପ୍ରଭୃତି କଂଗ୍ରେସର ଏହି ପ୍ରତିବାଦ ସପକ୍ଷରେ ମତ ପ୍ରକାଶ କଲେ । ମାତ୍ର ମୁସଲିମ୍ ଲିଗ୍‌ର ସାର୍ ମହମ୍ମଦ ସାଫିଙ୍କ ନେତୃତ୍ୱରେ ଗଠିତ ଗୋଟିଏ ଗୋଷ୍ଠୀ ଓ ମହମ୍ମଦ ଅଲ୍ଲୀ ଜିନ୍ନା ଗୋଷ୍ଠୀ କଂଗ୍ରେସରୁ ବିଚ୍ଛିନ୍ନ ହୋଇଗଲେ । ପ୍ରଥମଥର ଭାରତରେ ଅଳ୍ପଦିନ କଟାଇ ସାଇମନ ଲଣ୍ଡନ ଫେରିଗଲେ ଏବଂ ପୁନର୍ବାର ଅକ୍ଟୋବର ୧୯୨୮ ମସିହାରେ ଭାରତ ପରିଦର୍ଶନରେ ଆସି ସେମାନେ ସବୁ ଦଳମତର ନେତାମାନଙ୍କ ସହ ଆଲୋଚନା କରିବା ପାଇଁ ଉଦ୍ୟମ କରିଥିଲେ, କିନ୍ତୁ ସେ ଉଦ୍ୟମ ସଫଳ ହୋଇନଥିଲା । ବରଂ କମିଶନ ଯେଉଁଠିକି ଗଲେ "ସାଇମନ ଫେରିଯାଅ" ଧ୍ୱନିରେ ଗଗନପବନ ପ୍ରକମ୍ପିତ ହେଲା । ସାଇମନ ଯେତେବେଳେ ଲାହୋର ସହରରେ ପହଞ୍ଚିଲେ, ବୟୋବୃଦ୍ଧ ସମ୍ମାନିତ କଂଗ୍ରେସ ନେତା ଲାଲା ଲଜପତ୍ ରାୟ ଏହି ପ୍ରତିବାଦ ଶୋଭାଯାତ୍ରା ଆଗେଇ ନେଉଥିଲେ । ଜଣେ ବ୍ରିଟିଶ ପୋଲିସ୍ ସୁପରିନ୍‌ଟେଣ୍ଡେଣ୍ଟଙ୍କ

ନିର୍ମମ ଲାଠି ପ୍ରହାରରେ ଲାଲାଜୀ ତଳେ ପଡ଼ିଗଲେ । ଲାଲାଜୀ ସେତେବେଳେ ସମ୍ପୂର୍ଣ୍ଣ ଅସୁସ୍ଥ । ଲାଠିମାଡ଼ର ଏହି ଆଘାତରେ ଶଯ୍ୟାଶାୟୀ ହୋଇ ସେ ପନ୍ଦର ଦିନ ପରେ ଦେହତ୍ୟାଗ କଲେ ।

ସାଇମନ କମିଶନ ଯେତେବେଳେ ଲକ୍ଷ୍ନୌରେ ଆସି ପହଞ୍ଚିଲେ, ତାଙ୍କୁ କଳାପତାକା ଦେଖାଇ ୱାପସ ଯିବା ପାଇଁ ଯେଉଁ ପ୍ରତିବାଦ ସଭା ଓ ଶୋଭାଯାତ୍ରା ହେଉଥିଲା, ନିଜେ ଜୱାହରଲାଲ ଥିଲେ ତା'ର ସଞ୍ଚାଳକ । କମିଶନ ଲକ୍ଷ୍ନୌରେ ପହଞ୍ଚିବାର କିଛି ଦିନ ପୂର୍ବରୁ ଜୱାହରଲାଲ ଲକ୍ଷ୍ନୌ ଆସି ପ୍ରତିବାଦ ଶୋଭାଯାତ୍ରାର ଆୟୋଜନ କରିଥିଲେ । କ୍ଷୁଦ୍ର ଶୋଭାଯାତ୍ରାମାନ ରାସ୍ତା ଅତିକ୍ରମ କରି ଆଇନ ଭଙ୍ଗ ନକରି ମୁଖ୍ୟ ପ୍ରତିବାଦ ଦିବସ ଦିନ କିପରି ଷ୍ଟେସନକୁ ଯିବେ, କେତେଦିନ ଆଗରୁ ତା'ର ପ୍ରସ୍ତୁତି ଚାଲିଥିଲା । ଏହିପରି ଛୋଟ ପ୍ରସ୍ତୁତି ଶୋଭାଯାତ୍ରାର ଆୟୋଜନ କଲାବେଳେ ଜୱାହରଲାଲଙ୍କ ଉପରେ ବ୍ୟାଟନ୍ ମାଡ଼ ଓ ଲାଠିବର୍ଷଣ ହୋଇଥିଲା । ଘଟଣାଦିନ ସେ ଗୋଟିଏ ଛୋଟ ଶୋଭାଯାତ୍ରାର ଆଗେ ଆଗେ ଚାଲୁଥିଲେ । ପଛରୁ ଗୋବିନ୍ଦ ବଲ୍ଲଭ ପନ୍ଥ (ପରକାଳରେ ଯୁକ୍ତ ପ୍ରଦେଶର ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ର କ୍ୟାବିନେଟ୍‌ର ଗୃହମନ୍ତ୍ରୀ) ଆଉ ଦଳେ ସ୍ୱେଚ୍ଛାସେବକଙ୍କୁ ସାଙ୍ଗରେ ଧରି ଆସୁଥିଲେ । ହଠାତ୍ ଦୂରରୁ ଶୁଭିଲା ଅଶ୍ୱାରୋହୀ ପୋଲିସ୍ ବାହିନୀର ଆଗମନର ପ୍ରତିଧ୍ୱନି । ଧାବମାନ ଘୋଡ଼ାମାନଙ୍କର ଠକ୍ ଠକ୍ ଶବ୍ଦ ଧ୍ୱନିରେ ରାସ୍ତାଘାଟ ବି କମ୍ପିତ ହେବାକୁ ଲାଗିଲା । ଅଶ୍ୱାରୋହୀ ପୋଲିସ ସ୍ୱେଚ୍ଛାସେବକମାନଙ୍କ ଉପରେ ଆକ୍ରମଣ ଆରମ୍ଭ କଲେ । ଜୱାହରଲାଲଙ୍କ ପକ୍ଷରେ ଲାଠିମାଡ଼ର ଏ ପ୍ରଥମ ଅଭିଜ୍ଞତା । ସେ ଦେଖିଲେ ଘୋଡ଼ସବାର ବାହିନୀ ଚଢ଼ାଉ କଲାବେଳେ ସ୍ୱେଚ୍ଛାସେବକମାନେ ପାର୍ଶ୍ୱକୁ ଘୁଞ୍ଚି ଯାଉଛନ୍ତି । ଘୋଡ଼ାମାନେ ଅତି ଦର୍ପର ସହ ମଣିଷକୁ ଆକ୍ରମଣ କରୁଛନ୍ତି ଓ ଘୋଡ଼ା ଉପରେ ବସି ମାଉଣ୍ଟେଡ୍ ପୋଲିସ ଲାଠି, ବ୍ୟାଟନ ଇତ୍ୟାଦି ଧରି ଶୋଭାଯାତ୍ରାକାରୀମାନଙ୍କ ଉପରେ ଲାଠିବର୍ଷଣ କରୁଛନ୍ତି । ମୁହୂର୍ତ୍ତକ ପାଇଁ ଜୱାହରଲାଲଙ୍କ ମନରେ ଦୁର୍ବଳତା ଆସିଲା ଏବଂ ସେ ଭାବିଲେ ସେ ମଧ ରାସ୍ତାକଡ଼କୁ ଘୁଞ୍ଚିଯିବେ । କିନ୍ତୁ କ୍ଷଣକରେ ସେ ଦୁର୍ବଳତା ମନରୁ ପୋଛି ହୋଇଗଲା । ସାହସ ଓ ଭୀରୁତା ମଧରେ ଲୁଚକାଳି ଖେଳର ମୁହୂର୍ତ୍ତକ ମଧରେ ଅବସାନ ଘଟିଲା ଏବଂ ସେ ପୂର୍ବବତ୍ ରାସ୍ତା ମଝିରେ ଚାଲିବାକୁ ଆରମ୍ଭ କଲେ । ଏହି ଘଟଣାଟି ଉଲ୍ଲେଖ କରି ଜୱାହରଲାଲ ତାଙ୍କ ଆତ୍ମଜୀବନୀରେ ପୁନଶ୍ଚ ଲେଖିଛନ୍ତି –

"ମୁଁ ଯେତେବେଳେ ଦେଖିଲି ଘୋଡ଼ାଗୁଡ଼ିକ ମୋ ଉପରେ ଆକ୍ରମଣ କରିବାକୁ ଉଦ୍ୟତ, ସେତେବେଳେ ମୋ ମନରେ ଆତ୍ମରକ୍ଷାର ସ୍ୱାଭାବିକ ଦୁର୍ବଳତା ଜାଗ୍ରତ ହେଲା । ନିମିଷକ ମଧ୍ୟରେ ମନରେ ପୁଣି ଭାବାନ୍ତର ଘଟିଲା । ପ୍ରଥମ ଆକ୍ରମଣ ମୁଁ ସହି ଯାଇଥିଲି । ହଠାତ୍ ଦେଖିଲି ଅଶ୍ୱାରୋହୀ ବାହିନୀ ସାମନାରେ ମୁଁ ଏକଲା ରାସ୍ତା ମଝିରେ ଠିଆ ହୋଇଛି । ମନରେ ଦୁର୍ବଳତା ଛୁଇଁଲା, ରାସ୍ତାପାର୍ଶ୍ୱକୁ ଘୁଞ୍ଚିଯିବ । ପର ମୁହୂର୍ତ୍ତରେ ମନରେ ଖେଳିଗଲା ଏକ ନୂତନ ଭାବନା – ପଛଘୁଞ୍ଚାଠାରୁ ହୀନ କାପୁରୁଷତା ଆଉ କ'ଣ ଥାଇପାରେ ? କାପୁରୁଷତା ବିରୁଦ୍ଧରେ ମୋର ଗର୍ବ ଓ ଆତ୍ମାଭିମାନ ଜାଗ୍ରତ ହୋଇଉଠିଲା । କାପୁରୁଷତା ଓ ସାହସ ମଧ୍ୟରେ ବ୍ୟବଧାନ ଅତି ସାମାନ୍ୟ । ମୁଁ ଯେ ପଳାୟନ ନକରିବାକୁ ସିଦ୍ଧାନ୍ତ ନେଲି, ତା'ର ପରମୁହୂର୍ତ୍ତରେ ଦେଖିଲି ଜଣେ ଅଶ୍ୱାରୋହୀ ପୋଲିସ ଦୀର୍ଘ ଲାଠିଧରି ମୋତେ ଆକ୍ରମଣ କରିବାକୁ ଦୌଡ଼ି ଆସୁଛି ।"

ଶୋଭାଯାତ୍ରାକାରୀଙ୍କ ଉପରେ ଘୋଡ଼ସବାର ବାହିନୀର ଆକ୍ରମଣ ସମ୍ବାଦ ଲକ୍ଷ୍ନୌରେ କ୍ଷିପ୍ର ବେଗରେ ବ୍ୟାପିଗଲା । କାଳେ ସମ୍ବାଦପତ୍ରରୁ ଖବରଟା ପଢ଼ି ମୋତିଲାଲ ବ୍ୟତିବ୍ୟସ୍ତ ହୋଇପଡ଼ିବେ ସେଥିପାଇଁ ଜୱାହରଲାଲ ନିଜେ ତାଙ୍କୁ ଫୋନ୍ କରି ଜଣାଇଦେଲେ । କିନ୍ତୁ ବ୍ୟସ୍ତ ନହେବା ଅନୁରୋଧଟି ବୋଧହୁଏ ବ୍ୟସ୍ତତା ବଢ଼ାଇ ଦିଏ । ସେତେବେଳକୁ ଆଲ୍ଲାହାବାଦରୁ ଲକ୍ଷ୍ନୌକୁ ଆସୁଥିବା ଟ୍ରେନ୍ ଛାଡ଼ି ସାରିଥିଲା । ମୋତିଲାଲ ଅତି ଆକୁଳ ହୋଇ କାର୍‌ରେ ଏହି ଦୀର୍ଘପଥ ଅତିକ୍ରମ କରି ସକାଳୁ ଲକ୍ଷ୍ନୌରେ ଆସି ପହଞ୍ଚିଲେ । ସକାଳେ ମୁଖ୍ୟ ଶୋଭାଯାତ୍ରା । ସୂର୍ଯ୍ୟୋଦୟ ପୂର୍ବରୁ ହଜାର ହଜାର ଲୋକ କଂଗ୍ରେସ ଅଫିସରେ ଉପସ୍ଥିତ, ଶୋଭାଯାତ୍ରାରେ ଷ୍ଟେସନ ଯିବାପାଇଁ । କଳା ପତାକା ଧରି "ସାଇମନ୍ ଫେରିଯାଅ" ଧ୍ୱନି ଦେଇ ଶୋଭାଯାତ୍ରା ବାହାରିଲା । ଷ୍ଟେସନ ନିକଟବର୍ତ୍ତୀ ଗୋଟିଏ ସ୍ଥାନରେ ପୋଲିସ ଶୋଭାଯାତ୍ରାକାରୀଙ୍କୁ ଅଟକ କଲେ ଏବଂ ଷ୍ଟେସନ ସାମନାରେ ପ୍ରାୟ ଅଧମାଇଲବ୍ୟାପୀ ଖୋଲା ମଇଦାନରେ ଲୋକଙ୍କୁ ଆବଦ୍ଧ କରି ରଖିଲେ । ଶୋଭାଯାତ୍ରା ସହ ଅସମ୍ପୃକ୍ତ ବହୁ ଉତ୍ସୁକ ଦର୍ଶକ ମଧ୍ୟ ସେହି ମଇଦାନରେ ଜମାହେଲେ । ସାମନାରେ ଷ୍ଟେସନ ପଟକୁ ଥିଲେ ବହୁ ପଦାତିକ ଓ ଅଶ୍ୱାରୋହୀ ପୋଲିସ ଓ ସୈନ୍ୟବାହିନୀ । ହଠାତ୍ ଦେଖାଗଲା ଦୁଇ ତିନି ଧାଡ଼ି ହୋଇ ଅଶ୍ୱାରୋହୀ ପୋଲିସ ଶୋଭାଯାତ୍ରାକାରୀମାନଙ୍କ ଆଡ଼କୁ

ମାଡ଼ି ଆସୁଛନ୍ତି । ସାମନାରେ ଥିବା ଲୋକେ ଘୋଡ଼ାର ଆକ୍ରମଣରେ ଦଳିଚକଟି ହୋଇପଡ଼ିଲେ । ଚିନ୍ତା କରିବାକୁ ସମୟ ନଥିଲା । ମୁହୂର୍ତ୍ତକ ମଧ୍ୟରେ ଅଶ୍ୱାରୋହୀ ପୋଲିସର ଲାଠିମାଡ଼ର ଯନ୍ତ୍ରଣାରେ ଜୱାହରଲାଲ ଅନ୍ଧ ହୋଇଗଲେ । କିନ୍ତୁ ଗୋଟିଏ ନିଷ୍ପତ୍ତି ତାଙ୍କ ମନରେ ଛାପ ମାରି ରହିଥିଲା । ଭୀରୁ ପରି ପଳାୟନ ନାହିଁ । କ୍ରମେ ପ୍ରହାର ସଂଖ୍ୟା ବଢ଼ିବାକୁ ଲାଗିଲା । ହଠାତ୍ ସେ ମନେକଲେ କେହି ଯେପରି ତାଙ୍କ ପାଦ ତଳୁ ତାଙ୍କୁ ଉଠାଇ ନେଉଛି । ବସ୍ତୁତଃ ଆସନ୍ନ ମୃତ୍ୟୁମୁଖରୁ ରକ୍ଷା କରିବା ପାଇଁ କେତେକ ସ୍ୱେଚ୍ଛାସେବକ ତାଙ୍କୁ ଚାରିପଟୁ ଘେରିଯାଇ ଗୋଟିଏ ପାର୍ଶ୍ୱକୁ ଟେକି ନେଇଥିଲେ ।

ଏଣେ ସାଇମନ୍ ବିରୋଧୀ ପ୍ରତିବାଦ ଆନ୍ଦୋଳନ ଖୁବ୍ ଜୋର୍‌ସୋର୍‌ରେ ଚାଲିଥିଲା ବେଳେ ସ୍ୱରାଜ ଦଳର ନେତାମାନେ ସମ୍ପୂର୍ଣ୍ଣ ବୀତସ୍ପୃହ ହୋଇ ପଡ଼ିଥାଆନ୍ତି । ଆଇନଗତ ଓ ସାମ୍ବିଧାନିକ ମନୋବୃତ୍ତି ସତ୍ତ୍ୱେ ସ୍ୱରାଜ ଦଳର କାର୍ଯ୍ୟକ୍ରମକୁ ଆଗେଇ ନେବାରେ କୌଣସି ସମ୍ଭାବନା ଦିଶୁନଥାଏ । ଭାଇସରାୟଙ୍କୁ ପ୍ରଦତ୍ତ ଅଖଣ୍ଡ କ୍ଷମତା ଆସେମ୍ବ୍ଲିର ସମସ୍ତ ନିଷ୍ପତ୍ତିକୁ ବ୍ୟର୍ଥ କରିଦେବାର ସମ୍ଭାବନା ମୋତିଲାଲଙ୍କ ମନରେ ଗଭୀର ନୈରାଶ୍ୟ ସୃଷ୍ଟି କରିଥାଏ । ସେଥିପାଇଁ ସ୍ୱରାଜ ଦଳୀୟ ନେତାଙ୍କ ସମେତ ସବୁ ମଡ଼ରେଟ୍ ନେତା ମଧ୍ୟ ପ୍ରତିବାଦ ଆନ୍ଦୋଳନକୁ ସମର୍ଥନ କରୁଥାଆନ୍ତି । ଏହି ସମୟରେ ଏପରି ଏକ ଚାଞ୍ଚଲ୍ୟକର ଘଟଣା ଘଟିଲା, ଯାହା ସମସ୍ତଙ୍କର ନିଶ୍ଚଳତା ମୁହୂର୍ତ୍ତକରେ ଭାଙ୍ଗିଦେଲା । ବ୍ୟବସ୍ଥା ପରିଷଦ ଯେତେବେଳେ କୌଣସି ଏକ ବିବାଦ ଉପରେ ନିଷ୍ପତ୍ତି ପ୍ରତି ଆଗ୍ରହ ପ୍ରକାଶ କରୁନଥାନ୍ତି, ଠିକ୍ ଏତିକିବେଳେ ଦର୍ଶକ ଗ୍ୟାଲେରିରୁ ହଠାତ୍ ଭଗତ୍ ସିଂ ଓ ବି.କେ. ଦତ୍ତ ନାମକ ଦୁଇଜଣ ଯୁବକ ଦୁଇଟି ବୋମା ନିକ୍ଷେପ କଲେ । କେହି ଅବଶ୍ୟ ଆହତ ହୋଇନଥିଲେ ବା କାହାକୁ ଆଘାତ କରିବା ସେମାନଙ୍କର ଉଦ୍ଦେଶ୍ୟ ନଥିଲା । ପୋଲିସ ସେମାନଙ୍କୁ ଗିରଫ କରି ଓ ଅନ୍ୟ କେତେଜଣ ଆତଙ୍କବାଦୀଙ୍କୁ ଏଥିରେ ସମ୍ପୃକ୍ତ କରି ବିଖ୍ୟାତ ଲାହୋର ଷଡ଼ଯନ୍ତ୍ର ମୋକଦ୍ଦମା ରୁଜୁ କଲେ ।

ବିଚାର ଚାଲୁଥିବା ସମୟରେ ପୋଲିସ ଓ ଜେଲ୍ କର୍ତ୍ତୃପକ୍ଷ ଆସାମୀମାନଙ୍କ ପ୍ରତି ଗର୍ହିତ ଦୁର୍ବ୍ୟବହାର କରୁଥିଲେ ଓ ଏହାର ପ୍ରତିବାଦ ସ୍ୱରୂପ ବନ୍ଦୀମାନେ ଲାହୋର

ଜେଲ୍‌ରେ ଅନଶନ କଲେ । ଅନଶନ ହେବାର ମାସକ ପରେ ଜୱାହରଲାଲ ଲାହୋର ଯାଇ ବନ୍ଦୀମାନଙ୍କୁ ସାକ୍ଷାତ କରିଥିଲେ । ଭଗତ୍ ସିଂଙ୍କ ମୁଖମଣ୍ଡଳରେ ଏକ କମନୀୟ ଦୀପ୍ତି ବିଶେଷ ଭାବରେ ପରିସ୍ଫୁଟ ଥିଲା । ଯତୀନ ଦାସ ଥିଲେ କୁମାରୀକନ୍ୟା ପରି କୋମଳ ଓ ଶାନ୍ତ ଏବଂ ଅକଥନୀୟ ବେଦନାରେ ଶଯ୍ୟାଶାୟୀ । ଏକଷଠି ଦିନ ଅନଶନ କରିବା ପରେ ଯତୀନ ଦାସଙ୍କର ଦେହାନ୍ତ ହେଲା । ଏହାର ପ୍ରତିବାଦରେ ଦେଶରେ ପୁନଶ୍ଚ ବିରାଟ ଆଲୋଡ଼ନ ସୃଷ୍ଟି ହେଲା ।

୧୯୨୭ କଂଗ୍ରେସ ଅଧିବେଶନରେ ଭାରତର ଚିଠା ଶାସନ ଖସଡ଼ା ପ୍ରସ୍ତୁତ କରିବାପାଇଁ ମୋତିଲାଲଙ୍କ ଅଧକ୍ଷତାରେ ଏକ କମିଟି ଗଠିତ ହୋଇଥିଲା । ପରିଣତ ବୟସ ସତ୍ତ୍ୱେ ମୋତିଲାଲ ଓ ତାଙ୍କର ସହଯୋଗୀମାନେ ଏଥିପାଇଁ ବହୁ ଶ୍ରମ କରି ୧୯୨୮ ମସିହା କଂଗ୍ରେସ ଅଧିବେଶନରେ ଏ ରିପୋର୍ଟ ପେସ୍ କରିଥିଲେ । ରିପୋର୍ଟ ଆଲୋଚନା ବେଳେ ତୁମୁଳ ବାଦାନୁବାଦ ସୃଷ୍ଟି ହୋଇଥିଲା । କିନ୍ତୁ ଗାନ୍ଧିଜୀ ଜାଣିଥିଲେ ଏ ରିପୋର୍ଟର ପ୍ରଥମ ବିରୋଧୀ କିଏ । ଚିଠା ପ୍ରସ୍ତାବର ଭିତ୍ତି ଥିଲା ଡୋମିନିଅନ ଷ୍ଟାଟସ । କିନ୍ତୁ ପୂର୍ଣ୍ଣ ସ୍ୱାଧୀନତା ବ୍ୟତିରେକେ କୌଣସି ପ୍ରକାରର ଚିଠା ବା ସମାଧାନ ଜୱାହରଲାଲ ନେହୁରୁଙ୍କ ପକ୍ଷରେ ଗ୍ରହଣୀୟ ନଥିଲା । ଯଦିଓ ଜୱାହରଲାଲ ପିତା ମୋତିଲାଲଙ୍କୁ ଅତ୍ୟନ୍ତ ସ୍ନେହ ଓ ସମ୍ମାନ କରୁଥିଲେ, ତଥାପି ସ୍ୱାଧୀନତାର ମୌଳିକ ନୀତି ଉପରେ କୌଣସି ପ୍ରକାର ବିଚ୍ୟୁତି ସେ ଗ୍ରହଣ କରିପାରୁ ନଥିଲେ । ଗାନ୍ଧିଜୀ ଆପୋସ ମିଳାମିଶାର ଏକ ସୂତ୍ର ବାହାର କଲେ । ସେ ଅଧିବେଶନରେ ସ୍ପଷ୍ଟ ଭାବରେ କହିଲେ ଯେ, ଯଦି ଏହି ରିପୋର୍ଟ୍‌ର ଭିତ୍ତି ଓ ସୁପାରିଶ ଉପରେ ବର୍ଷକ ମଧ୍ୟରେ ସରକାର ତରଫରୁ କାର୍ଯ୍ୟ କରାନଯାଏ, ତାହାହେଲେ "ପୂର୍ଣ୍ଣ ସ୍ୱାଧୀନତା" ଭାରତର ଲକ୍ଷ୍ୟ ବୋଲି ବିବେଚନା କରାଯିବ । ଏହି ଭିତ୍ତିରେ ରିପୋର୍ଟଟି ଗୃହୀତ ହୋଇଥିଲା । କିନ୍ତୁ ସବୁ ନେତା ଜାଣିଥିଲେ ଯେ, ବ୍ରିଟିଶ ସରକାର "ପୂର୍ଣ୍ଣ ସ୍ୱାଧୀନତା" ତ ଦୂରର କଥା ଡୋମିନିଅନ ଷ୍ଟାଟସ ଦେବାକୁ ମଧ୍ୟ ରାଜି ନାହାନ୍ତି ।

୧୯୨୯ ମସିହା କଂଗ୍ରେସ ଅଧିବେଶନରେ "ପୂର୍ଣ୍ଣ ସ୍ୱାଧୀନତା" ଲକ୍ଷ୍ୟ ପ୍ରସ୍ତାବ ଗ୍ରହଣ କରିବା ପାଇଁ ଯେ ଅନ୍ୟ କୌଣସି ବିବାଦ ନାହିଁ, ଏହା ସମସ୍ତେ ଉପଲବ୍ଧି କରିଥିଲେ । ଏଣୁ ଆଗାମୀ ଅଧିବେଶନରେ କିଏ ସଭାପତି ହେବ ସେଥିପାଇଁ ଅଗଷ୍ଟ

ମାସରୁ ଉଦ୍ୟମ ଆରମ୍ଭ ହୋଇଯାଇଥାଏ । ସବୁ ବିଶିଷ୍ଟ କଂଗ୍ରେସ ନେତା ଓ ପ୍ରାଦେଶିକ ପ୍ରତିନିଧିମାନେ ସଭାପତି ପଦ ପାଇଁ ଗାନ୍ଧିଜୀଙ୍କ ନାମ ସମସ୍ୱରରେ ପେସ୍ କରୁଥାଆନ୍ତି । କିନ୍ତୁ ପୂର୍ବପରି ଗାନ୍ଧିଜୀ କେବେ ସଭାପତି ପଦ ଗ୍ରହଣ କରନ୍ତି ନାହିଁ । ବାରବାର ସେହି ଗୋଟିଏ ପ୍ରସ୍ତାବ ସମସ୍ତେ ଏକସ୍ୱରରେ ପେସ୍ କରିବା ସତ୍ତ୍ୱେ ଗାନ୍ଧିଜୀ ନିଜ ତରଫରୁ ଜୱାହରଲାଲ ନେହରୁଙ୍କ ନାମ ସୁପାରିଶ କରିଥିଲେ । ଏପରି ପରୋକ୍ଷ ରାସ୍ତା ଦେଇ ସଭାପତି ପଦ ଗ୍ରହଣ କରିବା କେତେଦୂର ସମୀଚୀନ ହେବ ଜୱାହରଲାଲ ସେ ବିଷୟରେ ବିଶେଷ ଚିନ୍ତାଗ୍ରସ୍ତ ଥିଲେ । କିନ୍ତୁ ଗାନ୍ଧିଜୀଙ୍କୁ ଅମାନ୍ୟ କରିବା ତାଙ୍କର ସାହସ ନଥିଲା । ବ୍ୟକ୍ତିଗତ ସ୍ତରରେ ମଧ୍ୟ ଜୱାହରଲାଲଙ୍କ ପାଇଁ ଏ ଦାୟିତ୍ୱ ଥିଲା ଏକ ଗୌରବମୟ ନିଷ୍ପତ୍ତି । ବହୁଦିନ ଧରି ସେ "ପୂର୍ଣ୍ଣ ସ୍ୱାଧୀନତା" ସପକ୍ଷରେ ପ୍ରଚାର କରି ଆସୁଥିଲେ । ଏବେ ସେ ଲକ୍ଷ୍ୟ ପୂରଣ କରିବା ପାଇଁ ଗାନ୍ଧିଜୀଙ୍କ ଆଶୀର୍ବାଦରୁ ସୁଯୋଗ ମିଳିଥିବାରୁ, ଆନନ୍ଦ ଓ ସାହସର ସହିତ ସେ ଦାୟିତ୍ୱ ଗ୍ରହଣ କରିଥିଲେ । ୧୯୨୯ ମସିହା ଡିସେମ୍ବର ୩୧ ତାରିଖ ମଧ୍ୟରାତ୍ରିରେ ପୁରୁଣା ବର୍ଷର ବିଦାୟ ଓ ନୂତନ ବର୍ଷର ଆଗମନର ମଧ୍ୟକାଳରେ ଲାହୋର କଂଗ୍ରେସ ଅଧିବେଶନର ମୂଳ ପ୍ରସ୍ତାବର ସମସ୍ତ ସଂଶୋଧନ ପ୍ରସ୍ତାବ ପରିତ୍ୟକ୍ତ ହେଲା ଓ ଈପ୍ସିତ "ପୂର୍ଣ୍ଣ ସ୍ୱାଧୀନତା" ପ୍ରସ୍ତାବଟି ବିନା ବାଧାରେ ଘନଘନ କରତାଳି ମଧ୍ୟରେ ଗୃହୀତ ହେଲା ।

ଲାହୋର କଂଗ୍ରେସ ଅଧିବେଶନର ସବୁଠାରୁ ଉଲ୍ଲେଖଯୋଗ୍ୟ ବିଶେଷତ୍ୱ ହେଲା ଜୱାହରଲାଲଙ୍କ ସଭାପତି ଅଭିଭାଷଣ । "ପୂର୍ଣ୍ଣ ସ୍ୱାଧୀନତା" ପାଇଁ ମାର୍ମିକ ଉଦ୍‌ବେଗ, ବ୍ରିଟିଶ ସାମ୍ରାଜ୍ୟବାଦ ସହ ସମ୍ପର୍କ ଛିନ୍ନ କରିବାର ବ୍ୟାକୁଳତା ଓ ସମାଜବାଦୀ ଚିନ୍ତାଧାରାର ବ୍ୟାଖ୍ୟାନରେ ତାଙ୍କ ଭାଷଣ ବିମଣ୍ଡିତ ଥିଲା । ଜୱାହରଲାଲ ତାଙ୍କ ଭାଷଣରେ ଲେଖିଥିଲେ, "ଯୁଗ ଯୁଗ ଧରି ଭାରତର ସମାଜ ବ୍ୟବସ୍ଥା ସୁଦୃଢ଼ ରହିଆସିଥିଲେ ମଧ୍ୟ, ସାମାଜିକ ଓ ଅର୍ଥନୈତିକ ଅନୈକ୍ୟ ଓ କୁସଂସ୍କାର ସାମାଜିକ ଅଗ୍ରଗତିର କଣ୍ଠରୋଧ କରିଅଛି । ଭାରତର ପ୍ରତିଭା ଓ ନିଜସ୍ୱ ଚିନ୍ତା ଓ ସଂସ୍କୃତି ଉପରେ ଏକ ନୂତନ ପରିମାର୍ଜିତ ସଂସ୍କୃତି ଓ ସମାଜବ୍ୟବସ୍ଥା ଗଠନ କରିବାକୁ ହେବ ଏବଂ ଏହାଦ୍ୱାରା କେବଳ ସାମ୍ପ୍ରଦାୟିକ ବିଭେଦ ଦୂର ହୋଇପାରିବ । ବ୍ରିଟିଶ ସୈନ୍ୟବାହିନୀ ଭାରତର ବୁକୁ ଉପରେ ଦାମ୍ଭିକତାର ସହ ପଦଚାଳନା କରୁଅଛି ଏବଂ ଯେଉଁମାନେ ପରାଧୀନତାର ଏ ଶୃଙ୍ଖଳ ଭାଙ୍ଗିବାକୁ ଉଦ୍ୟମ କରିବେ, ସେଇମାନଙ୍କ

ଉପରେ ଏ ସୈନ୍ୟବାହିନୀ ପଦାଘାତ କରିବ । ତା'ସତ୍ତ୍ୱେ ଭୟ ବା ଆତଙ୍କରେ ବିବ୍ରତ ନହୋଇ ଭାରତର ଶୃଙ୍ଖଳ ଛିନ୍ନକରିବା ପାଇଁ ସଂଗ୍ରାମ କରିବାକୁ ହେବ ।"

ତାଙ୍କ ଅଭିଭାଷଣରେ ସେ ପୁନଶ୍ଚ ଲେଖିଥିଲେ "ମୁଁ ଜଣେ ସାମ୍ୟବାଦୀ ଓ ଗଣତନ୍ତ୍ରବାଦୀ । ପୁରାତନ ରାଜାରାଜୁଡ଼ା ଶାସନରେ ମୁଁ ବିଶ୍ୱାସ କରେନାହିଁ । ଯେଉଁ ବ୍ୟବସ୍ଥା ଶିଳ୍ପ କ୍ଷେତ୍ରରେ ନୂତନ ରାଜଗାଦି ପ୍ରତିଷ୍ଠା କରିବାକୁ ଉଦ୍ୟତ ଏବଂ ଯେଉଁ ଶିଳ୍ପପତିମାନେ ପୁରାତନ ରାଜା ଓ ଜମିଦାରଙ୍କଠାରୁ ଅଧିକ ଅତ୍ୟାଚାରୀ ଓ ଲୁଣ୍ଠନକାରୀ ବ୍ୟବସ୍ଥା ପ୍ରଚଳନ କରିବାକୁ ଆଗ୍ରହୀ, ମୁଁ ସେମାନଙ୍କୁ ବିରୋଧ କରେ ।"

ଜୱାହରଲାଲଙ୍କ ସଭାପତି ଅଭିଭାଷଣ ପ୍ରତିନିଧିମାନଙ୍କ ମନରେ ତୀବ୍ର ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ।



# ଆଇନ ଅମାନ୍ୟ ଆନ୍ଦୋଳନ
# ଓ
# ଲବଣ ସତ୍ୟାଗ୍ରହ

ଅଧିବେଶନ ସମାପ୍ତ ହେବା ପରେ ତୁରନ୍ତ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ବସିଲା । ସମସ୍ତ ଧର୍ମବିଶ୍ୱାସ ସତ୍ତ୍ୱେ ଗାନ୍ଧିଜୀ ଯେ ପରାଧୀନତାର ଶୃଙ୍ଖଳ ଛିନ୍ନ କରିବା ପାଇଁ ଏକମାତ୍ର ବ୍ୟକ୍ତି, ଜଓ୍ୱାହରଲାଲ୍‌ଙ୍କର ଏଥିରେ ସନ୍ଦେହ ନଥିଲା । ଏଣୁ କାର୍ଯ୍ୟକାରୀ ସମିତି ସ୍ୱାଧୀନତା ସଂଗ୍ରାମର ନୂତନ କର୍ମପନ୍ଥା ନିର୍ଣ୍ଣୟ କରିବା ପାଇଁ ଗାନ୍ଧିଜୀଙ୍କ ଉପରେ ସମସ୍ତ ଦାୟିତ୍ୱ ନ୍ୟସ୍ତ କଲେ । ଜଓ୍ୱାହରଲାଲଙ୍କ ମତରେ ସେ ହିଁ ଏକମାତ୍ର ଲୋକ ଯେ କି ସଠିକ ଜନପ୍ରିୟ କାର୍ଯ୍ୟକ୍ରମ ନିର୍ଣ୍ଣୟ କରିପାରିବେ ।

ଏଣେ ଦେଶବାସୀ "ପୂର୍ଣ୍ଣ ସ୍ୱାଧୀନତା" ଘୋଷଣାର ଗୁରୁତ୍ୱ ଉପଲବ୍‌ଧି କରିବା ପାଇଁ ଜଓ୍ୱାହରଲାଲ ନେହୁରୁ ପ୍ରତିବର୍ଷ ଜାନୁଆରୀ ୨୬ ତାରିଖ ଦିନଟି ସ୍ୱାଧୀନତା ଦିବସ ରୂପେ ପାଳନ କରିବା ନିମନ୍ତେ ଆହ୍ୱାନ ଦେଇଥାନ୍ତି । ୧୯୩୦ ଜାନୁଆରୀ ୨୬ ତାରିଖରେ ପ୍ରଥମ ସ୍ୱାଧୀନତା ଦିବସ ଏପରି ମହାସମାରୋହରେ ପାଳିତ ହେଲା ଯେ, କଂଗ୍ରେସ ନେତାମାନେ ସେ ସଫଳତାରେ ଅଭିଭୂତ ହୋଇପଡ଼ିଥିଲେ । ସ୍ୱାଧୀନତା ଦିବସର ଆନନ୍ଦ ଓ ଉନ୍ମାଦନାରେ ଦେଶ ଉଦ୍‌ବେଳିତ ; ସର୍ବତ୍ର ଗାମ୍ଭୀର୍ଯ୍ୟପୂର୍ଣ୍ଣ କଣ୍ଠରେ ସ୍ୱାଧୀନତା ସଂକଳ୍ପର ପୁନରାବୃତ୍ତି ; ବକ୍ତୃତା ନାହିଁ, ଅନୁରୋଧ ନାହିଁ, ଉପରୋଧ ନାହିଁ, କେବଳ 'ବନ୍ଦେ ମାତରଂ' ଧ୍ୱନି ; ସଂଗ୍ରାମର ପ୍ରତିଶ୍ରୁତି ଓ ଆତ୍ମବିସର୍ଜନର ବିହ୍ୱଳତା ! ଭାବୋଚ୍ଛ୍ୱାସର ଏ ଉଦ୍ଦାମ ପ୍ରବାହରେ ଗାନ୍ଧିଜୀ ମଧ୍ୟ ଅନୁପ୍ରାଣିତ ହୋଇଥିଲେ । ସେ ମଧ୍ୟ ଉପଲବ୍‌ଧି କଲେ ଯେ ସଂଘର୍ଷର ସମୟ ଉପସ୍ଥିତ ।

ଅହିଂସା ଗାନ୍ଧିଜୀଙ୍କ ସଂଗ୍ରାମର ମୂଳମନ୍ତ୍ର ଥିଲା । ଦେଶର ପ୍ରଚ଼ଳିତ ପରିସ୍ଥିତିରେ ଅହିଂସାର ପଥ ଗ୍ରହଣୀୟ ହେଲେ ମଧ୍ୟ ସବୁ ଅବସ୍ଥାରେ ଓ ସବୁ ପରିସ୍ଥିତିରେ ଯେ ଏହି

ଆଦର୍ଶକୁ ପାଳନ କରାଯାଇପାରିବ ଏ ବିଷୟରେ ଜଓ୍ୱାହରଲାଲ ସନ୍ଦିହାନ ଥିଲେ । ଯଦି ଅହିଂସା ଆନ୍ଦୋଳନରେ ସାମାନ୍ୟ କେଉଁଠି ତ୍ରୁଟିବିଚ୍ୟୁତି ଘଟେ, ତା'ହେଲେ କ'ଣ ଗାନ୍ଧିଜୀ ଚୌରୀଚୌରା ନିଷ୍ପତ୍ତିର ପୁନରାବୃତ୍ତି କରିବେ ଓ ଆନ୍ଦୋଳନକୁ ନିଲମ୍ବିତ କରିଦିଆଯିବ ? ଗାନ୍ଧିଜୀ ଅବଶ୍ୟ ତାଙ୍କ ଚିନ୍ତାଧାରାରେ ପରିବର୍ତ୍ତନର ସୂଚନା ଦେଇଥିଲେ ଏବଂ ସାମାନ୍ୟ ବିଚ୍ୟୁତି ପାଇଁ ଆନ୍ଦୋଳନକୁ ସ୍ଥଗିତ ରଖାଯିବ ନାହିଁ ବୋଲି କେତେକ ଆଭାସ ଦେଇଥିଲେ, କିନ୍ତୁ ସବୁ ପ୍ରକାରର ମାନସିକ ଦ୍ୱନ୍ଦ୍ୱ ସତ୍ତ୍ୱେ ଜଓ୍ୱାହରଲାଲ ନିଃସନ୍ଦେହ ଥିଲେ ଯେ, ଆନ୍ଦୋଳନ ପରିଚାଳନା କରିବା ପାଇଁ ଗାନ୍ଧିଜୀ ଏକମାତ୍ର ନିଷ୍ଠାବାନ ଓ ଦକ୍ଷ ବ୍ୟକ୍ତି ଏବଂ ତାଙ୍କର ପୂର୍ଣ୍ଣ ଭରସା ଥିଲା ଯେ ଗାନ୍ଧିଜୀ ନିଶ୍ଚିତ ଭାବରେ ଏପରି ଗୋଟିଏ ସରଳ ଓ ସୁନିର୍ଦ୍ଦିଷ୍ଟ ପନ୍ଥା ନିର୍ଦ୍ଧାରଣ କରିବେ, ଯାହା ସମଗ୍ର ଦେଶବାସୀଙ୍କ ପକ୍ଷରେ ଗ୍ରହଣୀୟ ହେବ ।

କେଉଁ ସମସ୍ୟା ଉପରେ ଆଇନର ପ୍ରତିରୋଧ କରାଯିବ, ତାହା ନିର୍ଣ୍ଣୟ କରିବାକୁ ବିଶେଷ ସମୟ ଲାଗିଲା ନାହିଁ । ଇଷ୍ଟ ଇଣ୍ଡିଆ କମ୍ପାନୀ ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ବିଲାତରୁ ଆସି ଭାରତରେ ବ୍ୟବସାୟ କରିବା ପାଇଁ ମୋଗଲ ବାଦଶାହଙ୍କଠାରୁ ଅନୁମତି ଭିକ୍ଷା କରିଥିଲେ । କାଳକ୍ରମେ ନିଜର ଆସ୍ଥାନ ଦୃଢ଼ କରିବା ପରେ ପଲାସି ଯୁଦ୍ଧର ଆଠବର୍ଷ ପରେ କମ୍ପାନୀ ତିନୋଟି ଦ୍ରବ୍ୟ, ଯଥା– ଧୂଆଁପତ୍ର, ଗୁଆ ଓ ଲୁଣ ଉପରେ ଅବକାରୀ ଶୁଳ୍କ ଆଦାୟ କରିବାକୁ ନିଷ୍ପତ୍ତି ନେଇଥିଲେ । ସେ କାଳରେ ଗୁଆ ଓ ଧୂଆଁପତ୍ର ବିଳାସ ସାମଗ୍ରୀ ରୂପେ ବିବେଚିତ ହେଉଥିଲା । କିନ୍ତୁ ଲୁଣଥିଲା ସମସ୍ତଙ୍କର ଦୈନନ୍ଦିନ ବ୍ୟବହାର୍ଯ୍ୟ ଖାଦ୍ୟପଦାର୍ଥ । ଏଣୁ ଲୁଣ ଟିକସ ପ୍ରଥମେ ଇଷ୍ଟ ଇଣ୍ଡିଆ କମ୍ପାନୀ ଓ ସିପାହୀ ବିଦ୍ରୋହ ପରେ ବ୍ରିଟିଶ ସରକାରଙ୍କ ଆୟର ଏକ ପ୍ରଧାନ ଉତ୍ସ ଥିଲା । ଗାନ୍ଧିଜୀ ବିବେଚନା କଲେ, ସମୁଦ୍ର ଜଳରୁ ଆମଦାନୀ କରାଯାଉଥିବା ଲୁଣ ଉପରେ ଟିକସ ବସାଇବା ପାଇଁ ସରକାରଙ୍କର କୌଣସି ନୈତିକ ଅଧିକାର ନାହିଁ ।

ଗାନ୍ଧିଜୀ ଘୋଷଣା କଲେ, ଏପ୍ରିଲ୍ ୬ ତାରିଖ ଜାଲିଆନାୱାଲାବାଗ ଦିବସରେ ଗୁଜୁରାଟ ଉପକୂଳସ୍ଥ ଦାଣ୍ଡିଠାରେ ସେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବେ ଏବଂ ସେହି ଉଦ୍ଦେଶ୍ୟରେ ମାର୍ଚ୍ଚ ୧୨ ତାରିଖରେ ସାବରମତୀ ଆଶ୍ରମରୁ କେତେଜଣ ସହକର୍ମୀଙ୍କ ସହ ସେ ପଦଯାତ୍ରା ଆରମ୍ଭ କରିବେ । ଉପରୋକ୍ତ ମର୍ମରେ ପତ୍ର ଲେଖି ସେ ଭାଇସରାୟଙ୍କୁ ପଠାଇ ଦେଲେ । ଏଣେ ଏପ୍ରିଲ୍ ୬ ତାରିଖ ଜାଲିଆନାୱାଲାବାଗ

ଦିବସ ଦିନ ଗାନ୍ଧିଜୀ ଦାଣ୍ଡିଠାରେ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ଭାରତର ସମୁଦ୍ର ଉପକୂଳବର୍ତ୍ତୀ ଅନ୍ୟ ସ୍ଥାନମାନଙ୍କରେ ମଧ୍ୟ ଅନୁରୂପ ସତ୍ୟାଗ୍ରହ ଆରମ୍ଭ ହେଲା । କଂଗ୍ରେସ ସଭାପତି ଜଓ୍ୱାହରଲାଲ ନେହରୁ ଆଲ୍ଲାହାବାଦ୍‌ରୁ ଆଇନ୍ ଅମାନ୍ୟ ଆନ୍ଦୋଳନ ପାଇଁ ଦେଶବାସୀଙ୍କୁ ଆହ୍ୱାନ ଦେଲେ । ଏଥିସହ ବିଲାତି ବସ୍ତ୍ର ବର୍ଜନଠାରୁ ଆରମ୍ଭ କରି ବିଭିନ୍ନ ରୂପରେ ସରକାର ବିରୋଧୀ ବିକ୍ଷୋଭ ପ୍ରକାଶିତ ହେଲା । ଏଣେ ଯୁକ୍ତ ପ୍ରଦେଶର ରାୟବରେଲୀ ଜିଲ୍ଲାରେ ଖଜଣାବନ୍ଦ ଆନ୍ଦୋଳନର ଶୁଭାରମ୍ଭ ହେଲା । ଆନ୍ଦୋଳନର ଏହି ପରିବୃଦ୍ଧିରେ ସରକାର ଆତଙ୍କିତ ହେଲେ ।

ଏପ୍ରିଲ୍ ୧୪ ତାରିଖ ଜାଲିଆନାଓ୍ୱାଲାବାଗ୍ ସପ୍ତାହର ଶେଷ ଦିବସ । ମଧ୍ୟପ୍ରଦେଶର ରାୟପୁରରେ ଅନୁଷ୍ଠିତ ହିନ୍ଦୀ ସମ୍ମିଳନୀରେ ଯୋଗଦେବା ପାଇଁ ଜଂଓ୍ୱାହରଲାଲ ୧୪ ତାରିଖ ସକାଳେ ଯାତ୍ରା କରୁଥିଲେ । ମାତ୍ର ଆହ୍ଲାବାଦ ନିକଟସ୍ଥ ଚେ଼ଓକି ରେଳଷ୍ଟେସନରେ ତାଙ୍କୁ ଗିରଫ କରାଯାଇ ନୈନୀ କେନ୍ଦ୍ର ଜେଲ୍‌କୁ ପଠାଇ ଦିଆଗଲା । ବେଆଇନ୍ ଲୁଣ ଉତ୍ପାଦନରେ ସାହାଯ୍ୟ କରୁଥିବା ଅଭିଯୋଗରେ ତାଙ୍କର ବିଗ୍ଭର ହୋଇ ଛଅମାସ କାରାଦଣ୍ଡ ହେଲା । ସରକାର ଭାବିଥିଲେ ଜଓ୍ୱାହରଲାଲଙ୍କୁ କାରାବାସରେ ଆବଦ୍ଧ ରଖିଲେ ଆନ୍ଦୋଳନ ଆପଣାଛାଏଁ ଦବିଯିବ, କିନ୍ତୁ ଫଳ ହେଲା ଓଲଟା । ନେତାମାନଙ୍କ ଗିରଫଦାରୀ ଆନ୍ଦୋଳନକୁ ଆହୁରି ପ୍ରଜ୍ୱଳିତ କରିଥିଲା ।

ଭାଇସ୍‌ରାୟ ଇରୱିନ୍ ଲବଣ ସତ୍ୟାଗ୍ରହର ମୁଖ୍ୟଗୁରୁ ମୋହନଦାସ କରମ ଚ୍ଭନ୍ଦ ଗାନ୍ଧିଙ୍କୁ ଗିରଫ କରାଯିବ କି ନାହିଁ, ସେ ସମ୍ପର୍କରେ ମନସ୍ଥିର କରିପାରୁନଥିଲେ । ଯାହାହେଉ ମଇ ମାସ ୫ ତାରିଖରେ ତାଙ୍କୁ ଗିରଫ କରାହେଲା । ପଶ୍ଚିମ ଉପକୂଳରେ ଥିବା ଲୁଣ ତିଆରି ସରଞ୍ଜାମଗୁଡ଼ିକୁ ପୋଲିସ ଭାଙ୍ଗି ଧ୍ୱଂସ କରିଦେଇଥିଲେ । ଗାନ୍ଧିଙ୍କ ଗିରଫ ବିରୁଦ୍ଧରେ ବମ୍ବେ ସହରରେ ତୁମୁଳ ବିକ୍ଷୋଭ ଆରମ୍ଭ ହେଲା । ସରକାର ଏ ସଭା, ଶୋଭାଯାତ୍ରା ଓ ହରତାଳରେ ଅସ୍ତବ୍ୟସ୍ତ ହୋଇପଡ଼ିଲେ । ଜୁନ୍ ମଧ୍ୟଭାଗରେ ମୋତିଲାଲ୍ ନେହରୁ ପତ୍ନୀ ସ୍ୱରୂପା ରାଣୀ ଓ ପୁତ୍ରବଧୂ କମଳା ନେହରୁଙ୍କ ସହ ବମ୍ବେ ପରିଦର୍ଶନରେ ଯାଇଥିଲେ ଓ ବମ୍ବେରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା । ଆଲ୍ଲାହାବାଦ ଫେରିବା ପରେ ଜୁନ୍ ୩୦ ତାରିଖରେ ତାଙ୍କୁ ଗିରଫ କରି ନୈନୀ ଜେଲ୍‌କୁ ପଠାଇ ଦିଆଗଲା ।



# ଗାନ୍ଧି-ଇରୱିନ୍ ଚୁକ୍ତି

ଭାରତୀୟମାନଙ୍କୁ ସମ୍ପୂର୍ଣ୍ଣ ବାଦ୍‌ଦେଇ ସାତଜଣ ଇଂରେଜ ନେତାଙ୍କୁ ନେଇ ଯେ ଭାବରେ ସାଇମନ୍ କମିଶନ୍‌ଙ୍କୁ ନିଯୁକ୍ତ କରାଗଲା, ତାହା ଇରୱିନ୍‌ଙ୍କୁ ବିସ୍ମିତ କରିଥିଲା । ସ୍ୱାୟତ୍ତଶାସନ ବା ତଥାକଥିତ ଡୋମିନିଅନ୍ ଷ୍ଟାଟସ୍ ସମ୍ପର୍କରେ ଆଲୋଚ଼ନା କରିବା ପାଇଁ କମିଶନଙ୍କୁ କୌଣସି ନିର୍ଦ୍ଦେଶ ନଥିଲା ଏବଂ କମିଶନ୍ ବିରୁଦ୍ଧରେ ଭାରତରେ ଯେ ପ୍ରକାରର ପ୍ରତିକ୍ରିୟା ସୃଷ୍ଟି ହେଲା, ସେଥିରେ ମଧ ଇରୱିନ୍ ଖୁସି ନଥିଲେ । ଯାହାହେଉ ୧୯୨୯ ମସିହା ଗ୍ରୀଷ୍ମ ଋତୁରେ ସେ ଛୁଟି ନେଇ କିଛିଦିନ ପାଇଁ ଲଣ୍ଡନ ଗଲେ । ସେତେବେଳକୁ ଲଣ୍ଡନରେ ଟୋରି ସରକାର ପରିବର୍ତ୍ତେ ଶ୍ରମିକ ଦଳ ରାମସେ ମ୍ୟାକ୍‌ଡୋନାଲଡଙ୍କ ନେତୃତ୍ୱରେ କ୍ଷମତାକୁ ଆସିଥାଆନ୍ତି । ଇରୱିନ୍ ନୂତନ ପ୍ରଧାନମନ୍ତ୍ରୀଙ୍କ ସହ ଆଲୋଚ଼ନା କଲେ ଏବଂ ସାଇମନ କମିଶନଙ୍କ ରିପୋର୍ଟ ପ୍ରାପ୍ତ ହେଲେ, ସରକାର ତାକୁ ତୁରନ୍ତ ଗ୍ରହଣ ନକରି, ଏଥିପାଇଁ ଆବଶ୍ୟକ ହେଲେ ଗୋଲଟେବୁଲ୍ ବୈଠକ ଡକାଇ ଭାରତୀୟ ନେତାମାନଙ୍କ ସହିତ ବିଧିବଦ୍ଧ ଆଲୋଚନା କରିବା ଉଚିତ ହେବ ବୋଲି ମତ ଦେଇଥିଲେ । ଅଳ୍ପଦିନ ପରେ ସେ ଭାରତକୁ ଫେରି ଆସିଲେ । କିନ୍ତୁ ଏ ମଧରେ ୧୯୨୮ ମସିହା କଂଗ୍ରେସ ଅଧିବେଶନରେ ମୋତିଲାଲ୍ ନେହୁରୁଙ୍କ ରିପୋର୍ଟ ଉପରେ ଗୃହୀତ ହୋଇଥିବା ପ୍ରସ୍ତାବ କାର୍ଯ୍ୟକାରୀ କରିବାର ସମୟ ନିକଟ ହୋଇ ଆସୁଥିଲା ।

୧୯୨୯ ମସିହା ଡିସେମ୍ବର ୩୧ ତାରିଖରେ ଲାହୋର ଅଧିବେଶନରେ ଜୱାହରଲାଲ୍ ନେହୁରୁ ସଭାପତି ନିର୍ବାଚ଼ିତ ହେଲେ ଓ "ପୂର୍ଣ୍ଣ ସ୍ୱାଧୀନତା" ଦାବି ପ୍ରସ୍ତାବ ଗୃହୀତ ହୋଇଗଲା ଏବଂ ଗାନ୍ଧିଙ୍କ ନେତୃତ୍ୱରେ ଆଇନ୍ ଅମାନ୍ୟ ଆନ୍ଦୋଳନ

ଓ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଇରୱିନ୍ ଜାଠ ଦଳର ସଭ୍ୟ ଥିଲେ ଏବଂ ଜାଠ ଦଳର ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଭାଇସରାୟ ପଦରେ ମନୋନୀତ ହୋଇଥିଲେ ମଧ୍ୟ ତାଙ୍କର ଚିନ୍ତାଧାରା ଥିଲା ସଂପୂର୍ଣ୍ଣ ଭିନ୍ନ ଏବଂ ସେ ଆଶା କରୁଥିଲେ, ଶ୍ରମିକ ଦଳର ସରକାର ତାଙ୍କ ସହ ଏକମତ ହେବେ । ତାଙ୍କର ଇଚ୍ଛା ଥିଲା ଗୋଲଟେବୁଲ ସମ୍ମିଳନୀକୁ କଂଗ୍ରେସ ସମେତ ଭାରତର ବିଭିନ୍ନ ଶ୍ରେଣୀର ନେତାମାନଙ୍କୁ ଆମନ୍ତ୍ରଣ କରିବା ପାଇଁ । କିନ୍ତୁ ପରିବର୍ତ୍ତିତ ପରିସ୍ଥିତିର ଚାପରେ ସେ ବାଧ୍ୟହୋଇ କଂଗ୍ରେସକୁ ବାଦ୍‌ଦେଇ, ବିଭିନ୍ନ ଭାରତୀୟ ଦଳର ନେତା ମୁସ୍‌ଲିମ୍ ଲିଗ୍, ହିନ୍ଦୁ ମହାସଭା ଓ ମର୍ଡ଼ରେଟ୍ ନେତାମାନଙ୍କଠାରୁ ଆରମ୍ଭ କରି କେତେଜଣ ପ୍ରମୁଖ ଦେଶୀୟ ରାଜାମାନଙ୍କର ତାଲିକା ପ୍ରସ୍ତୁତ କରିବାକୁ ଆରମ୍ଭ କଲେ ।

ଗାନ୍ଧିଙ୍କ ଗିରଫର ସପ୍ତାହକ ପରେ ଇରୱିନ୍ ଗୋଟିଏ ଭାଷଣରେ ଘୋଷଣା କଲେ, ଆଇନ୍ ଅମାନ୍ୟ ଆନ୍ଦୋଳନ ଭାରତ ପ୍ରତି ବ୍ରିଟେନ୍‌ର ନୀତିରେ କୌଣସି ପରିବର୍ତ୍ତନ ଆଣିବନାହିଁ ଏବଂ ଅକ୍ଟୋବର ଶେଷ ଆଡ଼କୁ ପ୍ରଥମ ଗୋଲ ଟେବୁଲ୍ ବୈଠକ ପାଇଁ ଚାଲିଥିବା ସମସ୍ତ ପ୍ରସ୍ତୁତି ଚାଲୁ ରହିବ । କିଛିଦିନ ପରେ ସାଇମନ୍ କମିଶନ ରିପୋର୍ଟ ପ୍ରକାଶିତ ହେଲା । ଯେ ଭାବରେ ଅନ୍ୟ କେତେଜଣ ସଭ୍ୟଙ୍କୁ ଏକମତ କରି ସେ ରିପୋର୍ଟ ପ୍ରସ୍ତୁତ କରିଥିଲେ, ତାହା ଅବଶ୍ୟ ତାଙ୍କର ଦକ୍ଷତାର ପ୍ରମାଣ ଦିଏ । କିନ୍ତୁ ଏ ରିପୋର୍ଟ ପାଠ କରି ବ୍ରିଟିଶ୍ ସରକାର ଓ ଖୋଦ୍ ଇରୱିନ୍ ସନ୍ତୁଷ୍ଟ ନଥିଲେ । ରିପୋର୍ଟରେ ଡୋମିନିଅନ୍ ଷ୍ଟାଟସ୍‌ର କୌଣସି ଉଲ୍ଲେଖ ନଥିଲା । ସ୍ୱାୟତ୍ତ ଶାସନ ସଂପର୍କରେ ମଧ୍ୟ କୌଣସି ଆଶ୍ୱାସନା ନଥିଲା । ନୂଆ ପ୍ରଧାନମନ୍ତ୍ରୀ ରାମସେ ମ୍ୟାକ୍‌ଡୋନାଲଡ୍ ଓ ଇରୱିନ୍ ଅନେକାଂଶରେ ଏକମତ ଥିଲେ ଯେ, ଏହି ଆଲୋଚନାରେ କଂଗ୍ରେସକୁ ଯେକୌଣସିମତେ ଅନ୍ତର୍ଭୁକ୍ତ କରିବାକୁ ହେବ ।

ଭାରତର ଦୁଇଜଣ ମୁଖ୍ୟ ମର୍ଡ଼ରେଟ୍ ନେତା ଆଲ୍ଲାହାବାଦର ଆଡ୍‌ଭୋକେଟ୍ ସାର୍ ତେଜ୍ ବାହାଦୁର ସାପ୍ରୁ ଓ ମହାରାଷ୍ଟ୍ରର ସୁବିଖ୍ୟାତ ଅଧିବକ୍ତା ଏମ୍.ଆର୍. ଜୟକାର ଇରୱିନ୍‌ଙ୍କ ଆନ୍ତରିକତାରେ ଏତେଦୂର ଅଭିଭୂତ ହୋଇପଡ଼ିଥିଲେ ଯେ, ସେ ଗାନ୍ଧି ଓ ମୋତିଲାଲ୍ ନେହୁରୁଙ୍କ ସହିତ ଆଲୋଚନା କରିବା ପାଇଁ ଭାଇସ୍‌ରାୟଙ୍କର ସମ୍ମତି ହାସଲ କରିଥିଲେ । ସାପ୍ରୁ ଓ ଜୟକାର ଏରୱାଡ଼ା ଜେଲ୍‌ରେ ବନ୍ଦୀଥିବା ଗାନ୍ଧି ଏବଂ

ନୈନୀ ଜେଲ୍‌ରେ ମୋତିଲାଲ୍ ନେହ୍ରୁ ଓ କଂଗ୍ରେସ ସଭାପତି ଜଓ୍ୱାହରଲାଲ୍‌ଙ୍କ ସହିତ ଆଲୋଚ଼ନା କଲେ । କିନ୍ତୁ ସମସ୍ତେ ଏକ ସ୍ୱରରେ କହିଲେ ଯେ, କଂଗ୍ରେସ ନେତାମାନଙ୍କର ସମ୍ମିଳିତ ଆଲୋଚ଼ନା ପରେ ଯାହାକିଛି ନିଷ୍ପତ୍ତି ନିଆଯାଇପାରେ । ଏଣୁ ଭାଇସ୍‌ରାୟଙ୍କ ଆଦେଶ ଅନୁସାରେ ଜଓ୍ୱାହରଲାଲ ଓ ପିତା ମୋତିଲାଲ ନେହ୍ରୁଙ୍କୁ ଏରଓ୍ୱାଡା ଜେଲ୍‌କୁ ଅସ୍ଥାୟୀ ଭାବରେ ସ୍ଥାନାନ୍ତରିତ କରାହେଲା । ସେତେବେଳକୁ ମୋତିଲାଲ୍ ଅତ୍ୟନ୍ତ ଅସୁସ୍ଥ । ଏରଓ୍ୱାଡାରେ ପହଞ୍ଚି ସେମାନେ ଦାବି କଲେ ଯେ, କଂଗ୍ରେସ କାର୍ଯ୍ୟକାରୀ ସମିତିର ଅନ୍ୟ ସଦସ୍ୟ, ଯଥା– ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ସରୋଜିନୀ ନାଇଡୁ ପ୍ରମୁଖ ଅନ୍ୟ ଯେଉଁମାନେ ସେହି ଜେଲ୍‌ରେ ଅଛନ୍ତି, ଏ ସମସ୍ତଙ୍କୁ ଆଲୋଚ଼ନାକୁ ଆମନ୍ତ୍ରଣ କରାଯାଉ । ଏରଓ୍ୱାଡା ଜେଲ୍‌ର ଏହି ମିଳିତ ଆଲୋଚ଼ନାରେ ଭାଇସ୍‌ରାୟଙ୍କର ଅନୁରୋଧ ରକ୍ଷା କରିବା ସମ୍ଭବ ହେଲା ନାହିଁ । ଯେ କେତେକ ମୁଖ୍ୟ ଦାବି କଂଗ୍ରେସ ନେତାମାନେ ଉପସ୍ଥାପିତ କଲେ, ଭାଇସ୍‌ରାୟ ମଧ୍ୟ ସେଗୁଡ଼ିକୁ ଗ୍ରହଣ କରିବାକୁ ଅସାମର୍ଥ୍ୟ ପ୍ରକାଶ କଲେ । ଏଣୁ ଯେଉଁ ଗୋଲ୍‌ଟେବୁଲ୍ ବୈଠକ ଲଣ୍ଡନରେ ଚ଼ାଲିଥିଲା, ତାହା ବିଧିବଦ୍ଧ ଭାବରେ ଆରମ୍ଭ ହେଲା । କଂଗ୍ରେସକୁ ବାଦ୍ ଦେଇ ଅନ୍ୟ ସବୁଦଳର ଓ ଦେଶୀୟ ରାଜାମାନଙ୍କର ପ୍ରତିନିଧିମାନେ ଏ ବୈଠକରେ ଯୋଗ ଦେଇଥିଲେ । କେତେକ ଗୌଣ ବିଷୟରେ ପ୍ରତିନିଧିମାନେ ସମ୍ମତ ହେଲେ ମଧ୍ୟ ହିନ୍ଦୁ ମୁସଲମାନ ବିବାଦ ସଂପର୍କୀୟ ବହୁ ପ୍ରଶ୍ନ ଉପରେ ସହମତି ସମ୍ଭବ ହେଲା ନାହିଁ । ୧୯୩୧ ଜାନୁଆରୀ ୧୯ ତାରିଖରେ ପ୍ରଧାନମନ୍ତ୍ରୀ ରାମସେ ମ୍ୟାକ୍‌ଡୋନାଲ୍ଡ ଭାରତୀୟ ମନୋଭାବକୁ ସନ୍ତୁଷ୍ଟ କଲାଭଳି କେତେକ ମନ୍ତବ୍ୟ ଦେଇ ଆସନ୍ତା ବୈଠକରେ କଂଗ୍ରେସ ନେତାମାନେ ଯୋଗଦାନ କରି ଏ ଆଲୋଚ଼ନାକୁ ସଫଳ କରିବେ ବୋଲି ଆଶା ପ୍ରକାଶ କଲେ । ସେକ୍ସପିଅର୍‌ଙ୍କ ନାଟକରୁ ଉଦ୍ଧାର କରି କେହି କେହି ମନ୍ତବ୍ୟ ଦେଲେ– କଂଗ୍ରେସର ସହଯୋଗ ନଆଣିଲେ ପ୍ରିନ୍ସ ଅଫ୍ ଡେନ୍‌ମାର୍କଙ୍କ ଅଭାବରେ "ହାମ୍‌ଲେଟ୍" ଅଭିନୀତ ହୋଇପାରିବ ନାହିଁ ।

ଲଣ୍ଡନ ସମ୍ମିଳନୀ ଶେଷ ହେବାର ଦୁଇଦିନ ପୂର୍ବରୁ ଇରଓ୍ୱିନ୍ କେନ୍ଦ୍ର ଆସେମ୍ବ୍ଲି ହଲ୍‌ରେ ଭାଷଣ ଦେଇ ଗାନ୍ଧି ଓ କଂଗ୍ରେସ ନେତାମାନେ ଅତୀତକୁ ଭୁଲି ଏ ସାମ୍ବିଧାନିକ

ସମସ୍ୟାର ସମାଧାନରେ ସହଯୋଗ କରିବା ପାଇଁ ଆହ୍ୱାନ୍ କରିଥିଲେ । କେତେଦିନ ପରେ ଗାନ୍ଧିଜୀ ଓ ତାଙ୍କର ପ୍ରମୁଖ ସହଯୋଗୀମାନଙ୍କୁ କାରାମୁକ୍ତ କରିବାକୁ ଇରୱିନ୍ ଘୋଷଣା କଲେ । ମାତ୍ର ସେତେବେଳକୁ ମୋତିଲାଲ୍ ନେହରୁ ସଂପୂର୍ଣ୍ଣ ଶଯ୍ୟାଶାୟୀ । ଗାନ୍ଧିଜୀ ଏରୱାଡା ଜେଲ୍‌ରୁ ଖଲାସ ହୋଇ ବମ୍ବେ ଯାତ୍ରା କଲେ ଓ ସେଠାରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା । ପରଦିନ ସକାଳୁ ସେ ଅସୁସ୍ଥ ମୋତିଲାଲ୍‌ଙ୍କୁ ସାକ୍ଷାତ କରିବା ପାଇଁ ଆଲ୍ଲାହାବାଦରେ ପହଞ୍ଚିଲେ । କିନ୍ତୁ ମୋତିଲାଲଙ୍କୁ ରକ୍ଷା କରାଯାଇ ପାରିଲା ନାହିଁ । ୧୯୩୧ ମସିହା ଫେବୃଆରୀ ୬ ତାରିଖରେ ତାଙ୍କର ଦେହାନ୍ତ ହେଲା । କେତେକ କଂଗ୍ରେସ ନେତା ଆନ୍ଦୋଳନ ସମୟରେ ଚାଲିଥିବା ପୋଲିସ ଅତ୍ୟାଚାର ବିରୁଦ୍ଧରେ ଅନୁସନ୍ଧାନ କରିବା ପାଇଁ ଦାବି କଲେ । ଇରୱିନ୍ ଅନୁସନ୍ଧାନ ଦାବି ପ୍ରତ୍ୟାଖ୍ୟାନ କଲେ ସତ, କିନ୍ତୁ ସେ ତୁରନ୍ତ ସବୁ ରାଜନୈତିକ ବନ୍ଦୀମାନଙ୍କୁ ଖଲାସ କରିବା ପାଇଁ ଆଦେଶ ଦେଲେ । ଏହି ରାଜବନ୍ଦୀମାନଙ୍କର ସଂଖ୍ୟା ଥିଲା ୧୮,୮୦୦ । ଏଣେ ସାପ୍ରୁ, ଜୟକାର ଓ ଗୋଖଲେଙ୍କ ପ୍ରତିଷ୍ଠିତ ଭାରତ ସେବକ ସମିତିର ସଭାପତି ଶ୍ରୀ ଶ୍ରୀନିବାସ ଶାସ୍ତ୍ରୀ ଗାନ୍ଧିଜୀଙ୍କୁ ସାକ୍ଷାତ କରି ମ୍ୟାକ୍‌ଡୋନାଲ୍‌ଡଙ୍କର ଅନୁରୋଧ ଓ ଇରୱିନ୍‌ଙ୍କ ଆନ୍ତରିକ ପ୍ରଚେଷ୍ଟା ସଂପର୍କରେ ଜଣାଇଥିଲେ ଏବଂ ଇରୱିନଙ୍କୁ ପତ୍ର ଲେଖିବା ପାଇଁ ଗାନ୍ଧିଙ୍କୁ ଅନୁରୋଧ କରିଥିଲେ । ଗାନ୍ଧି ଅବଶ୍ୟ ଆଲୋଚନା ପାଇଁ କେବେ ବିମୁଖ ହୁଅନ୍ତି ନାହିଁ । ଶତ୍ରୁ ସହିତ ଆଲୋଚନା କରି ଯଦି ତାଙ୍କୁ ନିଜର ମତାମତରେ ଦୀକ୍ଷିତ କରି ପାରିବେ, ତାହେଲେ ସେ ଆଲୋଚନାକୁ ତାଙ୍କର କୁଣ୍ଠା ନଥାଏ । ଯାହାହେଉ, ଅନ୍ୟ କଂଗ୍ରେସ ନେତାମାନଙ୍କ ସହିତ ପରାମର୍ଶ କରି ସେ ଇରୱିନ୍‌ଙ୍କ ସହିତ ପତ୍ରାଳାପ ଆରମ୍ଭ କଲେ । ଜୱାହରଲାଲ୍ ସେତେବେଳେ ମୋତିଲାଲ୍‌ଙ୍କ ମୃତ୍ୟୁରେ ଏତେଦୂର ମର୍ମାହତ ଥିଲେ ଯେ, ସେ କୌଣସି ଆଲୋଚନାରେ ଭାଗ ନେବା ପାଇଁ ସକ୍ଷମ ନଥିଲେ । ଇରୱିନ୍‌ଙ୍କ ସହିତ ଆଲୋଚନା ପାଇଁ ଫେବୃଆରୀ ୧୭ ତାରିଖ ଧାର୍ଯ୍ୟ ହେଲା ଓ ଆଲୋଚନା ସମୟରେ କଂଗ୍ରେସ ଦଳର ଅନ୍ୟ ବିଶିଷ୍ଟ ନେତାମାନେ ଦିଲ୍ଲୀରେ ଉପସ୍ଥିତ ରହିବାକୁ ଗାନ୍ଧି ଅନୁରୋଧ କରିଥିଲେ ।

ଫେବୃଆରୀ ୧୭ରୁ ମାର୍ଚ୍ଚ ୫ ତାରିଖ ପର୍ଯ୍ୟନ୍ତ ଏ ଆଲୋଚନା ଚାଲୁ ରହିଥିଲା । ବିଭିନ୍ନ ପ୍ରସଙ୍ଗ ଉପରେ ଦୀର୍ଘଦିନ ଧରି ଆଲୋଚନା ଚାଲୁ ରହିଲେ ମଧ୍ୟ ଶେଷଆଡ଼କୁ

ଭାଇସ୍‌ରାୟଙ୍କଠାରୁ ସାକ୍ଷାତ ପାଇଁ କୌଣସି ସମୟ ନିର୍ଘଣ୍ଟ ଆସିଲା ନାହିଁ । କଂଗ୍ରେସ ନେତାମାନେ ଆଶଙ୍କା କଲେ, ବୋଧହୁଏ ଆଲୋଚନା ବିଫଳ ହୋଇଛି କିମ୍ବା ଇରଓ୍ୱିନ୍ ଅଧିକ ଦୂର ଅଗ୍ରସର ହେବାପାଇଁ ଲଣ୍ଡନରୁ ପ୍ରତିରୋଧ ଆସୁଛି । ମାର୍ଚ୍ଚ ୫ ତାରିଖ ଦିନ ପୁନଶ୍ଚ ସାକ୍ଷାତ ପାଇଁ ହଠାତ୍ ଭାଇସ୍‌ରାୟଙ୍କ ଚିଠି ଆସି ପହଞ୍ଚିଥିଲା । ସେଦିନ ଗାନ୍ଧିଜୀ ଭାଇସ୍‌ରାୟଙ୍କ ଘରୁ ଫେରିଲାବେଳକୁ ରାତି ୧୨ଟା । ସେ ଆସି ତାଙ୍କର ବନ୍ଧୁମାନଙ୍କ ନିକଟରେ ଘୋଷଣା କଲେ, ସେ ଇରଓ୍ୱିନ୍‌ଙ୍କ ସହିତ ଚୁକ୍ତିପତ୍ର ସ୍ୱାକ୍ଷର କରିଛନ୍ତି ଏବଂ ଗୋଲଟେବୁଲ୍ ବୈଠକରେ ଯୋଗଦେବେ ବୋଲି ସ୍ୱୀକୃତି ଦେଇଛନ୍ତି । ଏହି ଚୁକ୍ତିରେ ସ୍ପଷ୍ଟ ଉଲ୍ଲେଖ ଥିଲା ଯେ, ଆଇନ୍ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହୃତ ହେବ ଓ ଗାନ୍ଧିଜୀ ଗୋଲ୍‌ଟେବୁଲ୍ ବୈଠକରେ ଯୋଗ ଦେବେ । ଏ ଘୋଷଣାରେ କଂଗ୍ରେସ ନେତାମାନେ ମର୍ମାହତ ହୋଇପଡ଼ିଲେ । ଜଓ୍ୱାହରଲାଲ୍ ସନ୍ଦେହ ଦୋଳାରେ ଦୋଳାୟିତ । ଗାନ୍ଧିଜୀ ତାଙ୍କର ଅନ୍ତର୍ବେଦନାର ମର୍ମ ବୁଝିପାରୁଥିଲେ । ଗାନ୍ଧିଜୀ ଆଶ୍ୱାସନା ଦେଉଥିଲେ ସ୍ୱାଧୀନତା ଦାବିରୁ ସେ କେବେ ଓହରିଯାଇ ନାହାଁନ୍ତି ବା ଯିବେ ନାହିଁ ।

ଯାହାହେଉ ଗାନ୍ଧି-ଇରଓ୍ୱିନ୍ ଚୁକ୍ତିର ଗୁରୁତ୍ୱ ଦୃଷ୍ଟିରୁ କରାଚୀରେ କଂଗ୍ରେସର ଏକ ଅଧିବେଶନ ଅନୁଷ୍ଠିତ ହେଲା । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଏ ଅଧିବେଶନର ସଭାପତି । ଗାନ୍ଧିଜୀଙ୍କ ଅନୁରୋଧ କ୍ରମେ ଜଓ୍ୱାହରଲାଲ୍ ନେହୁରୁ ଗାନ୍ଧି-ଇରଓ୍ୱିନ୍ ଚୁକ୍ତିକୁ ସମର୍ଥନ କରି ପ୍ରସ୍ତାବ ଆଗତ କଲେ ଓ ତାହା ସମସ୍ୱରରେ ଗୃହୀତ ହୋଇଯାଇଥିଲା । ସମସ୍ତେ ବୁଝିଥିଲେ ଯେ, ଜଓ୍ୱାହରଲାଲ୍ କେବଳ ଗାନ୍ଧିଙ୍କୁ ଅସନ୍ତୁଷ୍ଟ ନକରିବା ପାଇଁ ଏପରି ପଦକ୍ଷେପ ନେଇଛନ୍ତି, କିନ୍ତୁ ଏ ସମର୍ଥନ ପଛରେ କୌଣସି ଆନ୍ତରିକତା ନାହିଁ । କିନ୍ତୁ କରାଚୀ ପ୍ରସ୍ତାବରେ ସ୍ପଷ୍ଟ ଉଲ୍ଲେଖ ଥିଲା ଯେ କଂଗ୍ରେସର ପୂର୍ଣ୍ଣ ସ୍ୱାଧୀନତା ଦାବି ପରିପ୍ରେକ୍ଷୀରେ ଗାନ୍ଧିଜୀ ଲଣ୍ଡନରେ ଯାହାକିଛି ମତାମତ ଦେବେ ।

ଏଣେ ଲଣ୍ଡନରେ ଟୋରି ଦଳର ବହୁ ସଦସ୍ୟ ସେମାନଙ୍କର ନେତା ବଲ୍‌ଡୁଇନ୍ ଇରଓ୍ୱିନ୍‌ଙ୍କ ବିରୁଦ୍ଧରେ ଉତ୍‌କ୍ଷିପ୍ତ ହେଲେ । ସେମାନେ ଇରଓ୍ୱିନ୍‌ଙ୍କୁ ତୁରନ୍ତ ଭାରତରୁ ପ୍ରତ୍ୟାହାର କରିବା ପାଇଁ ଦାବି କରୁଥିଲେ । ଚର୍ଚ୍ଚିଲ୍ ଘୋଷଣା କଲେ, ବର୍ତ୍ତମାନ

ଜୀବିତ ଥିବା କୌଣସି କଂଗ୍ରେସ ନେତାଙ୍କ ଜୀବଦ୍ଦଶାରେ ଡୋମିନିଅନ୍ ଷ୍ଟାଟସ୍ ଭାରତକୁ ଉପଲବ୍ଧ ହେବନାହିଁ । ଗାନ୍ଧିଜୀଙ୍କୁ ତାଚ୍ଛଲ୍ୟ କରି ଚର୍ଚ୍ଚିଲ୍ କହିଥିଲେ ଯେ, ଗାନ୍ଧିଙ୍କ ଭଳି ଜଣେ ବିଦ୍ରୋହୀ, ଅର୍ଦ୍ଧନଗ୍ନ ଫକୀର ବ୍ରିଟିଶ୍ ସମ୍ରାଟଙ୍କ ପ୍ରତିନିଧି ଭାଇସ୍‌ରାୟଙ୍କ ମାର୍ବଲ ଭବନରେ ତାଙ୍କ ସହିତ ସମସ୍ତରରେ ଆଲୋଚନା କରିବା ଦୃଶ୍ୟ ତାଙ୍କ ପକ୍ଷରେ ଅସହ୍ୟ ଓ ଅପମାନଜନକ ।

କରାଚୀ ସମ୍ମିଳନୀରେ ଗାନ୍ଧି-ଇର୍‌ୱିନ୍ ଚୁକ୍ତି ଗୃହୀତ ହେଲାବେଳକୁ ଇର୍‌ୱିନ୍‌ଙ୍କର ପାଞ୍ଚବର୍ଷିଆ କାର୍ଯ୍ୟକାଳ ସମାପ୍ତ ହୋଇ ଆସୁଥିଲା । ସେ ୧୯୩୧ ଏପ୍ରିଲ୍ ମାସରେ ଭାରତରୁ ବିଦାୟ ନେଲେ । କେତେକ ସମ୍ବାଦପତ୍ର ତାଙ୍କର ସହାନୁଭୂତିଶୀଳ ମନୋଭାବ ହେତୁ ତାଙ୍କର ପ୍ରଶଂସା କରିଥିଲେ । କିନ୍ତୁ ଜୱାହରଲାଲ୍‌ଙ୍କ ପରି କେତେ କଂଗ୍ରେସ ନେତା ମନେ କରୁଥିଲେ, ଆଇନ୍ ଅମାନ୍ୟ ଆନ୍ଦୋଳନକୁ ବିଭ୍ରାନ୍ତ ଓ ବିଧ୍ୱସ୍ତ କରିବା ପାଇଁ ଗୋଲ୍‌ଟେବୁଲ୍ ସମ୍ମିଳନୀ ବ୍ରିଟିଶ୍ ସାମ୍ରାଜ୍ୟବାଦୀଙ୍କର ଏକ ଷଡ଼ଯନ୍ତ୍ର ଓ ଇର୍‌ୱିନ୍ ଏ ଷଡ଼ଯନ୍ତ୍ରର ମୁଖ୍ୟ ସୂତ୍ରଧର ।



# ଦ୍ୱିତୀୟ ଗୋଲ୍‌ଟେବୁଲ୍ ସମ୍ମିଳନୀର ବିଫଳତା ଓ ଭାରତରେ ନିର୍ମମ ଦମନଲୀଳା

ଲର୍ଡ଼ ଇର୍‌ୱିନ୍‌ଙ୍କର କାର୍ଯ୍ୟକାଳ ସମାପ୍ତ ହେବା ପରେ ଲର୍ଡ଼ ୱିଲିଂଡନ୍‌ଙ୍କୁ ଭାରତର ଭାଇସ୍‌ରାୟ ରୂପେ ନିଯୁକ୍ତ କରାଗଲା । ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ ଅନ୍ୟ ଜଣଙ୍କୁ ଏହି ପଦବୀ ଅର୍ପଣ କରିବାକୁ ଚାହୁଁଥିଲେ । କିନ୍ତୁ ବ୍ରିଟେନ୍‌ର ସମ୍ରାଟ୍‌ଙ୍କର ଇଙ୍ଗିତ କ୍ରମେ ୱିଲିଂଡନ୍‌ଙ୍କୁ ନିଯୁକ୍ତି ଦିଆହେଲା । ଭାରତରେ କାର୍ଯ୍ୟଭାର ଗ୍ରହଣ କଲାବେଳକୁ ତାଙ୍କୁ ୬୫ ବର୍ଷ ବୟସ । ଲର୍ଡ଼ କର୍ଜନଙ୍କ ପରେ ଯେତେଜଣ ଭାଇସ୍‌ରାୟ ପଦରେ ନିଯୁକ୍ତ ହୋଇଥିଲେ, ସେମାନଙ୍କଠାରୁ ୱିଲିଂଡନ୍ ଥିଲେ ଚତୁର, କଠୋର ଓ ବ୍ରିଟିଶ୍ ସ୍ୱାର୍ଥ ରକ୍ଷା ପାଇଁ ସର୍ବାଧିକ ବ୍ୟାକୁଳ । ଇଂରେଜମାନେ କହନ୍ତି ସେ ଥିଲେ ଜଣେ ଦକ୍ଷ ଶାସକ । କିନ୍ତୁ ଭାରତୀୟମାନଙ୍କ ଦୃଷ୍ଟିରେ ୱିଲିଂଡନ୍ ଥିଲେ କଠୋର ସାମ୍ରାଜ୍ୟବାଦୀ । ୱିଲିଂଡନ୍ ଭାରତରେ ପହଞ୍ଚି ପ୍ରଥମେ ୧୯୩୧ ଅଗଷ୍ଟ ମାସରେ ଗାନ୍ଧିଜୀଙ୍କୁ ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକରେ ଯୋଗଦେବା ପାଇଁ ପଠାଇଦେଲେ । କଂଗ୍ରେସ ନିଷ୍ପତ୍ତି କରିଥିଲେ ଯେ, ଗାନ୍ଧି କଂଗ୍ରେସର ଏକମାତ୍ର ପ୍ରତିନିଧି ଭାବେ ଏହି ବୈଠକରେ ଯୋଗଦେବେ । କିନ୍ତୁ ପରେ ସେ ସରୋଜିନୀ ନାଇଡୁ ଓ ଅନ୍ୟ କେତେଜଣ କଂଗ୍ରେସ ନେତାଙ୍କୁ ତାଙ୍କ ସହିତ ବ୍ୟକ୍ତିଗତ ଭାବରେ ଯିବାପାଇଁ ଅନୁରୋଧ କଲେ ଓ ଭାଇସ୍‌ରାୟ ଏଥିରେ ସମ୍ମତି ଦେଲେ ।

ସେପ୍ଟେମ୍ବର ମାସରେ ଦ୍ୱିତୀୟ କନ୍‌ଫରେନ୍ସ ଆରମ୍ଭ ହେଲା । ଏହି ସମୟରେ ସୁରଟ୍ ଓ କାନପୁର୍‌ରେ ହିନ୍ଦୁ ମୁସଲ୍‌ମାନ୍ ଦଙ୍ଗା ଚାଲି ବିକଟ ପରିସ୍ଥିତି ସୃଷ୍ଟି ହୋଇଥିଲା ।

କଂଗ୍ରେସ ନେତାମାନେ ଆଶଙ୍କା କରୁଥିଲେ ଯେ, ଗୋଲ୍‌ଟେବୁଲ୍ ସମ୍ମିଳନୀକୁ ପ୍ରଭାବିତ କରିବା ପାଇଁ ଏ ଦଙ୍ଗାହଙ୍ଗାମାକୁ ପ୍ରଶ୍ରୟ ଦିଆଯାଉଛି । ସେତେବେଳକୁ ଖୋଦ୍ ବ୍ରିଟିଶ୍ ସରକାର ଆର୍ଥିକ ଦୁଃସମୟ ଦେଇ ଗତି କରୁଥିଲେ । ବିଶ୍ୱବ୍ୟାପୀ ଅର୍ଥନୈତିକ ମାନ୍ଦା ଅବସ୍ଥା ହେତୁ ଏବଂ ମୁଦ୍ରାର ମୂଲ୍ୟ ହ୍ରାସ ପାଇବା ହେତୁ ବ୍ରିଟେନ୍ ଗୋଲ୍ଡ ଷ୍ଟାଣ୍ଡାର୍ଡ଼ ତ୍ୟାଗ କରିଥାଏ । ଏ ପରିସ୍ଥିତିରେ ବ୍ରିଟିଶ ସାମ୍ରାଜ୍ୟବାଦୀମାନେ ଭାରତର ସ୍ୱାଧୀନତା ଦାବି ସହାନୁଭୂତିର ସହିତ ବିଚାର କରିବା ତ ଦୂରର କଥା, ଭାରତ ଉପରେ ସବୁ ପ୍ରକାର ନିୟନ୍ତ୍ରଣକୁ କଠୋର କରିବା ପାଇଁ ବ୍ୟାକୁଳ ଥାଆନ୍ତି । ଏହି ସମୟରେ ବ୍ରିଟେନ୍‌ରେ ଶ୍ରମିକ ଦଳ ସରକାରର ପତନ ହେଲା ଓ ରାମ୍‌ସେ ମ୍ୟାକ୍‌ଡୋନାଲ୍ଡଙ୍କ ପ୍ରଧାନମନ୍ତ୍ରିତ୍ୱରେ ଏକ ମିଳିତ ସରକାର ବା 'ଜାତୀୟ ସରକାର' ଗଠିତ ହେଲା । ଏହି ସରକାରରେ କଞ୍ଜରଭେଟିଭ୍ ଦଳର ପ୍ରାଧାନ୍ୟ ଥିଲା ଓ ନୂତନ ସରକାର ଭାରତୀୟ ସମସ୍ୟାର ସମାଧାନ ପାଇଁ କୌଣସି ବ୍ୟଗ୍ରତା ପ୍ରକାଶ କରୁନଥିଲେ । ଗାନ୍ଧିଜୀ ଅନୁଭବ କଲେ ଯେ, ଗୋଲ୍‌ଟେବୁଲ୍‌ରେ ସମସ୍ତ ଆଲୋଚନା ନିରର୍ଥକ ଚାଲିଛି ଏବଂ ଇରଓ୍ୱିନ୍‌ଙ୍କ ସହ ଚୁକ୍ତିରେ ସେ ଯେଉଁସବୁ ସର୍ତ୍ତରେ ସମ୍ମତ ହୋଇଥିଲେ, ସେ ବିଷୟରେ ବିଚାର କରିବାକୁ କେହି ଆଗ୍ରହୀ ନୁହଁନ୍ତି ବା ସେ ଦୃଷ୍ଟିରୁ ଭାରତୀୟ ସମସ୍ୟାର ସମାଧାନ ପାଇଁ କୌଣସି ବ୍ୟାକୁଳତା ନାହିଁ ।

ଦ୍ୱିତୀୟ ଗୋଲ୍‌ଟେବୁଲ୍ ଆଲୋଚନାର ବିଫଳତା ଗାନ୍ଧିଜୀଙ୍କୁ ଜଳଜଳ ହୋଇ ଦିଶୁଥାଏ । କଂଗ୍ରେସର ପୂର୍ଣ୍ଣ ସ୍ୱାଧୀନତା ଦାବି ପରିପ୍ରେକ୍ଷୀରେ ଆଲୋଚନା ଆଗେଇବାର ପ୍ରଶ୍ନ ନଥାଏ । ଭାରତର ସାମ୍ପ୍ରଦାୟିକ ସମସ୍ୟା ଓ ସଂଖ୍ୟାଲଘୁ ସଂପ୍ରଦାୟର ଦାବିଗୁଡ଼ିକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଥାଏ । ପ୍ରସ୍ତାବିତ ନୂତନ ଆଇନରେ ଭାଇସରାୟ ଓ ଗଭର୍ଣ୍ଣରମାନଙ୍କ ହାତରେ ରକ୍ଷାକବଚ ସଦୃଶ ଯେଉଁସବୁ ବିଶେଷ କ୍ଷମତା ଅର୍ପଣ କରାଯିବାର ଯୋଜନା ଥାଏ, ସେ ବିଷୟରେ କୌଣସି ସମ୍ମତି ଦେବାପାଇଁ ଗାନ୍ଧି ପ୍ରସ୍ତୁତ ନଥିଲେ ଏବଂ ସ୍ପଷ୍ଟ କହିଥିଲେ ଯେ, ଏହା ତାଙ୍କର ନିର୍ଦ୍ଦେଶର ବହିର୍ଭୂତ । କରାଚି ଅଧିବେଶନରେ ଗାନ୍ଧି-ଇରଓ୍ୱିନ୍ ଚୁକ୍ତିକୁ ସମର୍ଥନ କରି ପ୍ରସ୍ତାବ ଗ୍ରହଣ କଲାବେଳେ ସ୍ପଷ୍ଟ କୁହାଯାଇଥିଲା ଯେ, ଗୋଲ୍‌ଟେବୁଲ୍ ବୈଠକରେ ସେ "ପୂର୍ଣ୍ଣ ସ୍ୱାଧୀନତା" ଦାବିର ପରିପ୍ରେକ୍ଷୀରେ ଯାହାକିଛି ମତାମତ ଦେବେ ।

ଭାରତରେ ଗାନ୍ଧିଜୀଙ୍କ ସହଯୋଗୀ ଓ ସହକର୍ମୀମାନେ ଗୋଲ୍‌ଟେବୁଲ୍ ସମ୍ମିଳନୀର ପରିଣତି ବିଷୟରେ ବିସ୍ମିତ ହୋଇନଥିଲେ । କଂଗ୍ରେସର ପ୍ରତିନିଧି ଭାବରେ ଗାନ୍ଧିଜୀଙ୍କ ବ୍ୟତୀତ ଅନ୍ୟ ସାମନ୍ତବାଦୀ ସାଂପ୍ରଦାୟିକତାବାଦୀ ଓ ନ୍ୟସ୍ତସ୍ୱାର୍ଥବାଦୀଙ୍କର ଏହି ବୈଠକରେ ଭାରତୀୟ ପ୍ରତିନିଧିମାନଙ୍କର ନେତା ଥିଲେ ବ୍ରିଟିଶ୍ ସରକାରଙ୍କର ଜଣେ ସୁପ୍ରସିଦ୍ଧ ଖିଦ୍‌ମତ୍‌ଗାର୍ ଆଗା ଖାଁ; ଯେ ଆଜୀବନ ବ୍ରିଟିଶ ସାମ୍ରାଜ୍ୟବାଦର ସ୍ତାବକ ଓ ସମର୍ଥକ ଏବଂ ଯାହାଙ୍କର ଜୀବନ କଟୁଥିଲା ଲଣ୍ଡନ ସହରରେ ବିଳାସବ୍ୟସନ ମଧ୍ୟରେ । ଅଦୃଷ୍ଟର ଏପରି ନିଷ୍ଠୁର ପରିହାସ ଯେ ସେହିଭଳି ଜଣେ ବ୍ୟକ୍ତି ଭାରତୀୟ ପ୍ରତିନିଧିମାନଙ୍କର ନେତାଭାବରେ ବ୍ରିଟିଶ ସରକାରଙ୍କୁ ପରାମର୍ଶ ଦେଉଥିଲେ । ଦ୍ୱିତୀୟ ଗୋଲ୍‌ଟେବୁଲ୍ ସମ୍ମିଳନୀ ଆରମ୍ଭରେ ପ୍ରଧାନମନ୍ତ୍ରୀ ଯେଉଁ ନୈରାଶ୍ୟଜନକ ଘୋଷଣା କରିଥିଲେ ତାହା କଂଗ୍ରେସ ନେତାମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ସେ ଉଦ୍‌ବୋଧନ ଦେଇ କହିଲେ ଯେ, ପ୍ରଥମ ବୈଠକରେ ଯାହା ଯାହା ସ୍ଥିର ହୋଇଛି ସେଥିରୁ ପ୍ରତ୍ୟାବର୍ତ୍ତନ ନାହିଁ । ଆମେ କେବଳ ତା'ର ପରବର୍ତ୍ତୀ ପଦକ୍ଷେପ ସମ୍ପର୍କରେ ଆଲୋଚନା କରିବା । ଜୱାହରଲାଲ୍ ନେହୁରୁଙ୍କ ଦୃଷ୍ଟିରେ ସମ୍ମିଳନୀର ସାଫଲ୍ୟର ପ୍ରଶ୍ନ ନଥିଲା । ଭାରତୀୟ ଜନମତକୁ ବିଭ୍ରାନ୍ତ କରିବା ପାଇଁ ଏହା ଯେ ଏକ ଖଳ ଉଦ୍ୟମ ଓ ଷଡ଼ଯନ୍ତ୍ର, ତାହା ସେ ପ୍ରଥମରୁ ଉପଲବ୍ଧି କରିଥିଲେ ।

କାର୍ଯ୍ୟତଃ ଗାନ୍ଧିଜୀ ଭାଇସ୍‌ରାୟ ଏବଂ ଗଭର୍ଣ୍ଣରମାନଙ୍କ ପ୍ରସ୍ତାବିତ ଆଇନ୍‌ରେ ଯେଉଁ ବିଶେଷ କ୍ଷମତା ଓ ଅଧିକାର ଦିଆଯାଇଛି ତାକୁ ଗ୍ରହଣ କରିବା ପାଇଁ ଅସମ୍ମତ ହେବା ପରେ, ଡିସେମ୍ବର ପହିଲା ତାରିଖରେ ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକର ସମାପ୍ତି ଘୋଷଣା କରାଗଲା । ପ୍ରଧାନମନ୍ତ୍ରୀ ରାମ୍‌ସେ ମ୍ୟାକ୍‌ଡୋନାଲ୍ଡ ତାଙ୍କର ଅନ୍ତିମ ଭାଷଣରେ ପୁନର୍ବାର କହିଥିଲେ ଯେ ଭାଇସ୍‌ରାୟଙ୍କ ହାତରେ କେତେକ ନିର୍ଦ୍ଦିଷ୍ଟ ଅଧିକାର ଓ ବିଶେଷ କ୍ଷମତା ଦେଇ କେନ୍ଦ୍ରରେ ଏକ ରାଷ୍ଟ୍ରସଂଘ ପ୍ରତିଷ୍ଠା କରିବା ଉଦ୍ୟମରୁ ଆମେ ଲକ୍ଷ୍ୟଚ୍ୟୁତ ହୋଇନାହୁଁ । ଆମେ ଏକମତ ଯେ ପ୍ରଦେଶଗୁଡ଼ିକରେ ଗଭର୍ଣ୍ଣରମାନଙ୍କ ଅଧୀନରେ ଯେଉଁ ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠିତ ହେବ, ସେମାନେ ପ୍ରଦେଶମାନଙ୍କୁ ହସ୍ତାନ୍ତର ହୋଇଥିବା ବିଭାଗଗୁଡ଼ିକୁ ଯଥାସମ୍ଭବ ଗଭର୍ଣ୍ଣରଙ୍କ ବିନା ନିୟନ୍ତ୍ରଣରେ ପରିଚାଳନା କରିବେ । ଏହାପରେ ଗାନ୍ଧିଜୀ ଡିସେମ୍ବର ୬ ତାରିଖରେ

ତାଙ୍କର ସହଯୋଗୀମାନଙ୍କ ସହିତ ନିରାଶ ମନରେ ଭାରତ ପ୍ରତ୍ୟାବର୍ତ୍ତନ କରିବା ପାଇଁ ଜାହାଜରେ ଉଠିଲେ ।

ସେତେବେଳେ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଖାଁ ଅବ୍‌ଦୁଲ ଗଫର୍ ଖାଁଙ୍କ ନେତୃତ୍ୱରେ ଲାଲ୍‌କୁର୍ତ୍ତା ଦଳ ପ୍ରଦେଶ ସାରା ଘୂରି ବ୍ରିଟିଶ୍ ସରକାର ବିରୁଦ୍ଧରେ ଜୋର୍ ପ୍ରଚ୍ଚର ଚଳାଇଥାଆନ୍ତି । ଯୁକ୍ତ ପ୍ରଦେଶରେ ମଧ୍ୟ ଖଜଣା ଆଦାୟ ବିରୋଧୀ ଆନ୍ଦୋଳନ ମୁଣ୍ଡ ଟେକୁଥାଏ । ଗାନ୍ଧିଜୀ ୨୮ ତାରିଖ ଦିନ ବମ୍ବେରେ ପହଞ୍ଚି ଜାଣିବାକୁ ପାଇଲେ ଯେ, ଦୁଇଦିନ ପୂର୍ବରୁ ଜଓ୍ୱାହରଲାଲ୍ ନେହ୍ରୁଙ୍କୁ ଗିରଫ କରାଯାଇଛି ଓ ତା ପୂର୍ବରୁ ସୀମାନ୍ତ ପ୍ରଦେଶର ଅବଦୁଲ୍ ଗଫର୍ ଖାଁ ଓ ତାଙ୍କର ସହଯୋଗୀମାନଙ୍କୁ ମଧ୍ୟ କାରାରୁଦ୍ଧ କରାଯାଇଛି । ବମ୍ବେରେ ପହଞ୍ଚି ସେ ଏ ସଂକ୍ରାନ୍ତରେ ଆଲୋଚନା କରିବା ପାଇଁ ଭାଇସ୍‌ରାୟ ଓ୍ୱିଲିଂଡନ୍‌ଙ୍କୁ ପତ୍ର ଲେଖିଲେ । କିନ୍ତୁ ଓ୍ୱିଲିଂଡନ୍ ଅତି ରୁକ୍ଷ ଭାବରେ ଆଲୋଚନା ପାଇଁ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଥିଲେ । ତେଣୁ ଗାନ୍ଧି ଓ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ମିଳିତ ହୋଇ ଆଇନ୍ ଅମାନ୍ୟ ଆନ୍ଦୋଳନର ପୁନରାବୃତ୍ତି କରିବା ପାଇଁ ନିଷ୍ପତ୍ତି ନେଲେ । କିନ୍ତୁ ଏହି ନିଷ୍ପତ୍ତି କାର୍ଯ୍ୟକାରୀ ହେବା ପୂର୍ବରୁ ଗାନ୍ଧିଜୀ ଓ କଂଗ୍ରେସ ସଭାପତି ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍‌ଙ୍କୁ ଗିରଫ କରି ଏରଓ୍ୱାଡା ଜେଲ୍‌କୁ ପଠାଇ ଦିଆଗଲା । କଂଗ୍ରେସକୁ ଏକ ବେଆଇନ୍ ଅନୁଷ୍ଠାନ ବୋଲି ଘୋଷଣା କରାଗଲା ଓ କଂଗ୍ରେସର ଯାହାକିଛି ଅର୍ଥ ଓ ଅନ୍ୟ ସମ୍ପତ୍ତି ଥିଲା ତାକୁ ବାଜ୍ୟାପ୍ତ କରି ନିଆହେଲା । ଭାଇସ୍‌ରାୟ ଓ୍ୱିଲିଂଡନ୍ ସ୍ୱାଧୀନତା ଆନ୍ଦୋଳନକୁ ନିର୍ମୂଳ କରିବା ପାଇଁ ଅନେକ ଗୁଡ଼ିଏ ଅର୍ଡ଼ିନାନ୍ସ ଓ ନୂତନ ଆଇନ୍‌ର ଯୋଜନା କରି ରଖିଥିଲେ ଏବଂ ଗାନ୍ଧିଜୀଙ୍କ ପ୍ରତ୍ୟାବର୍ତ୍ତନ ପରେ ଏହି ତଥାକଥିତ ଆଇନ୍ ପ୍ରଣୟନ ଓ ପ୍ରୟୋଗ କରି ଦେଶବ୍ୟାପୀ ପ୍ରାୟ ୩୪,୦୦୦ କଂଗ୍ରେସ ନେତା ଓ କର୍ମୀଙ୍କୁ ଗିରଫ କରାଗଲା ଓ ପୋଲିସ୍‌ର ଲାଠି ଓ ବେତ୍ରାଘାତରେ ହଜାର ହଜାର ଛାତ୍ର ଓ ଯୁବକ ବାନରସେନା ଆହତ ହେଲେ । ଓ୍ୱିଲିଂଡନ୍‌ଙ୍କର କାଉନ୍‌ସିଲ୍‌ର ଗୃହ ସଦସ୍ୟ ସାର୍ ହ୍ୟାରୀ ହେଗ୍ ଘୋଷଣା କଲେ, ସେ କଂଗ୍ରେସର ସଦିଚ୍ଛା ଉପରେ ଭରସା କରନ୍ତି ନାହିଁ ଏବଂ କଂଗ୍ରେସର ସଦିଚ୍ଛା ନଥିଲେ ମଧ୍ୟ ଇଂରେଜମାନେ ଭାରତ ଶାସନ ଚ୍ଚଲୁ ରଖିବେ ।

ବ୍ରିଟିଶ ସରକାର ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେବା ସତ୍ତ୍ୱେ ନୂତନ ଶାସନ ବିଧି ପ୍ରଣୟନରେ ମନୋନିବେଶ କଲେ । ଏଥିପାଇଁ ତିନୋଟି ସ୍ୱତନ୍ତ୍ର କମିଟି ଗଠନ କରାଗଲା ଏବଂ ସେମାନେ ଭାରତ ପରିଭ୍ରମଣ କରି ବିଭିନ୍ନ ସମସ୍ୟା ଉପରେ ସେମାନଙ୍କର ରିପୋର୍ଟ ଦାଖଲ କଲେ । ଅଗଷ୍ଟ ୧୯୩୨ ମସିହାରେ ପ୍ରଧାନମନ୍ତ୍ରୀ ମ୍ୟାକ୍‌ଡୋନାଲ୍‌ଡ ବ୍ରିଟିଶ ସରକାରଙ୍କର କମ୍ୟୁନାଲ୍ ଆୱାର୍ଡ଼ ଘୋଷଣା କଲେ । ପୂର୍ବବତ୍ ମୁସଲମାନ୍‌ମାନେ ନିର୍ବାଚନରେ ଭାଗନେବା ପାଇଁ ସ୍ୱତନ୍ତ୍ର ସିଟ୍ ଓ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀର ସୁବିଧା ଭୋଗ କରିବେ । ତତ୍‌ସହିତ ଡକ୍ଟର ଆମ୍ବେଦକରଙ୍କର ଦାବି ଅନୁଯାୟୀ ଦଳିତ ଶ୍ରେଣୀ ପାଇଁ ମଧ୍ୟ ଅନୁରୂପ ବ୍ୟବସ୍ଥା ରଖାଗଲା ଓ ସେମାନଙ୍କ ପାଇଁ ମଧ୍ୟ ସ୍ୱତନ୍ତ୍ର ସିଟ୍ ଓ ନିର୍ବାଚନମଣ୍ଡଳୀ ମଞ୍ଜୁର ହେଲା । ଏର୍‌ୱାଡା ଜେଲ୍‌ରେ ଥାଇ ଗାନ୍ଧିଜୀ ଘୋଷଣା କଲେ ଯେ, ଦଳିତମାନଙ୍କ ପାଇଁ ଆମ୍ବେଦକରଙ୍କ ପ୍ରସ୍ତାବିତ ନୀତି ଗୃହୀତ ହେଲେ ସେ ସେପ୍ଟେମ୍ବର ୨୦ ତାରିଖରୁ ଆମରଣ ଅନଶନ କରିବେ । ଏ ସମ୍ବାଦ ପ୍ରଚାରିତ ହେବା ମାତ୍ରେ ହିନ୍ଦୁ ଓ ଦଳିତ ଶ୍ରେଣୀର ନେତାମାନେ ବମ୍ବେରେ ମିଳିତ ହୋଇ ଏହି ଆମରଣ ଅନଶନକୁ ବନ୍ଦ କରିବା ପାଇଁ ଆଲୋଚନା ଆରମ୍ଭ କଲେ । ତେଜ୍ ବାହାଦୁର ସାପ୍ରୁ ମଧ୍ୟ ଏ ଆଲୋଚନାରେ ଯୋଗ ଦେଇଥିଲେ । ପ୍ରଥମେ ଆମ୍ବେଦକର କହୁଥିଲେ ଯେ, ଏ ରକମର ଅନଶନ ଧମକ ଏକ ପ୍ରକାରର ରାଜନୈତିକ ଚାଲବାଜି । କିନ୍ତୁ ପରେ ପୁନାଠାରେ ମିଳିତ ହୋଇ ଏହି ନେତାମାନେ ଆମ୍ବେଦକରଙ୍କୁ ରାଜି କରାଇଲେ । ସେ ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ପ୍ରଥା ଉପରେ ଆଉ ଜୋର୍ ଦେଲେନାହିଁ । ନିଷ୍ପତ୍ତି ହେଲା ଯେ, ପ୍ରତି ପ୍ରଦେଶରେ ଦଳିତମାନଙ୍କ ପାଇଁ ଯେତେ ସଂଖ୍ୟକ ସଭ୍ୟ ଅଛନ୍ତି, ତାହାର ସଂଖ୍ୟା ବୃଦ୍ଧି କରି ଦିଆହେବ । କିନ୍ତୁ ସେମାନେ ସେହି ନିର୍ବାଚନ ମଣ୍ଡଳୀରେ ପୂର୍ବବତ୍ ମିଳିତ ଭୋଟରେ ନିର୍ବାଚିତ ହେବେ । ଦଳିତ ସଭ୍ୟଙ୍କର ନିର୍ବାଚନ ପାଇଁ ମୁସଲମାନମାନଙ୍କ ପରି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଗଠିତ ହେବ ନାହିଁ । ଗାନ୍ଧିଜୀ ଏଥିରେ ସମ୍ମତ ହେଲେ ଓ ବ୍ରିଟିଶ ସରକାର ତଦନୁଯାୟୀ କମ୍ୟୁନାଲ୍ ଆୱାର୍ଡ଼ ସମ୍ପର୍କରେ ତାଙ୍କର ନୀତି ପରିବର୍ତ୍ତନ କଲେ । ଭବିଷ୍ୟତ ପାଇଁ ଏ ନିଷ୍ପତ୍ତି ଏକ ବିରାଟ ସଫଳତା ।

ଏହାପରେ ଗାନ୍ଧିଜୀ ଜେଲ୍ ମଧ୍ୟରେ ଥାଇ ଦଳିତମାନଙ୍କୁ ହରିଜନ (ଈଶ୍ୱରଙ୍କ ସନ୍ତାନ) ବୋଲି ଆଖ୍ୟା ଦେଲେ ଓ ହରିଜନମାନଙ୍କ ବିରୁଦ୍ଧରେ ସମାଜରେ ପ୍ରଚଳିତ

କୁସଂସ୍କାର ଓ ଛୁଆଁ-ଅଛୁଆଁ ଭେଦଭାବ ଦୂର କରିବା ପାଇଁ ଆନ୍ଦୋଳନ ଆରମ୍ଭ କଲେ । ଏରଓ୍ୱାଡା ଜେଲ୍‌ରେ ରହି ହରିଜନ ଆନ୍ଦୋଳନକୁ କିଛିଦିନ ଚଳାଇବା ପରେ ସେ ଅନୁଭବ କଲେ, ଏ ଆନ୍ଦୋଳନ ଯଥେଷ୍ଟ ଜନ ସମର୍ଥନ ହାସଲ କରିପାରୁନାହିଁ । ୧୯୩୩ ମସିହା ମଇ ମାସରେ ସେ ତାଙ୍କର ଅସନ୍ତୋଷ ବ୍ୟକ୍ତ କରିବା ପାଇଁ ୨୧ ଦିନିଆ ଅନଶନ ଘୋଷଣା କଲେ । ସରକାର ତାଙ୍କୁ ପ୍ରଥମ ଦିନ ବିନାସର୍ତ୍ତରେ ଏରଓ୍ୱାଡା ଜେଲ୍‌ରୁ ମୁକ୍ତ କରିଦେଲେ । କାରାବାସରୁ ମୁକ୍ତ ହୋଇ ଗାନ୍ଧିଜୀ ଯେତେବେଳେ ଭାଇସ୍‌ରାୟଙ୍କ ସହିତ ସାକ୍ଷାତ ପାଇଁ ଅନୁରୋଧ କଲେ ଓ୍ୱିଲିଂଡନ୍ ଜବାବ୍ ଦେଲେ ଯେ, ଆଇନ୍ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହୃତ ନହେବା ପର୍ଯ୍ୟନ୍ତ ଏପରି ସାକ୍ଷାତକାରର ପ୍ରଶ୍ନ ନାହିଁ । ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଆଇନ୍ ଅମାନ୍ୟ ଆନ୍ଦୋଳନକୁ ପ୍ରଥମେ ଛଅ ସପ୍ତାହ ଓ ପୁନର୍ବାର ଆହୁରି ଛଅସପ୍ତାହ ପାଇଁ ବିଳମ୍ବିତ କରାଗଲା । ଆଇନ୍ ଅମାନ୍ୟ ଆନ୍ଦୋଳନ ବିଳମ୍ବିତ ହେଲେ ମଧ୍ୟ ସେ ସ୍ପଷ୍ଟୀକରଣ ଦେଲେ ଯେ ବ୍ୟକ୍ତିଗତ ଭାବରେ ଯେଉଁମାନେ ଚାହାଁନ୍ତି, ସେମାନେ ଏ ଆଇନ୍ ଅମାନ୍ୟରେ ଯୋଗଦେଇ ପାରନ୍ତି । ଏତକ କହି ସେ ନିଜେ ସରକାରୀ ଆଦେଶ ଅମାନ୍ୟ କରି କାରାବରଣ କଲେ ଏବଂ ପୁନା ସହରର ସୀମାକୁ ସରକାରଙ୍କ ବିନା ଅନୁମତିରେ ଅତିକ୍ରମ କରିଥିବା ହେତୁ ତାଙ୍କୁ ଏକବର୍ଷ କାରାଦଣ୍ଡ ଦିଆଗଲା । ଜେଲ୍ ମଧ୍ୟରେ ରହି ପୂର୍ବପରି ହରିଜନ ଆନ୍ଦୋଳନକୁ ପରିଚାଳିତ କରିବା ପାଇଁ ତାଙ୍କୁ ଅନୁମତି ଦିଆଗଲା ନାହିଁ । ସରକାରୀ ଆଦେଶର ପ୍ରତିବାଦ କରି ଗାନ୍ଧିଜୀ ପୁନର୍ବାର ଆମରଣ ଅନଶନ ଆରମ୍ଭ କଲେ । କିନ୍ତୁ ତାଙ୍କର ସ୍ୱାସ୍ଥ୍ୟର ଦ୍ରୁତ ଅବନତି ଘଟିବାରୁ ସରକାର ଏକ ସପ୍ତାହ ପରେ ତାଙ୍କୁ ଜେଲ୍‌ରୁ ମୁକ୍ତ କରିଦେଲେ ।

ଗାନ୍ଧିଜୀଙ୍କର ଏହି ଆମରଣ ଅନଶନ ଧମକ ଅନେକ କଂଗ୍ରେସ ନେତାଙ୍କ ଦୃଷ୍ଟିରେ ସନ୍ତୋଷଜନକ ନଥିଲା । ଜେଲ୍ ମଧ୍ୟରେ ରହି ଜଓ୍ୱାହରଲାଲ୍ ନେହରୁ ଭାବୁଥିଲେ, ଯେଉଁ ମୂଲ୍ୟବାନ ଜୀବନ ପୂର୍ଣ୍ଣ ସ୍ୱାଧୀନତା ହାସଲ କରିବା ପାଇଁ ଉଦ୍ଦିଷ୍ଟ, ତାହାକୁ ଗାନ୍ଧିଜୀ ଛୋଟ ଛୋଟ କଥାରେ ବା ଗୌଣ ସମସ୍ୟା ଉପରେ ବିନଷ୍ଟ କରିଦେବା ସମୁଚିତ ନୁହେଁ । ଏପରିକି ସାଧାରଣ କଂଗ୍ରେସ କର୍ମୀମାନେ ମଧ୍ୟ ସଂପୂର୍ଣ୍ଣ ଭାବେ ନିରାଶ ହୋଇ କେବଳ ଗାନ୍ଧିଜୀଙ୍କ ନିର୍ଦ୍ଦେଶିତ ଗଠନମୂଳକ କାର୍ଯ୍ୟରେ ନିଜକୁ ଆବଦ୍ଧ ରଖିବାକୁ ପ୍ରସ୍ତୁତ ନଥିଲେ । ୧୯୩୪ ମସିହା ଜାନୁଆରୀ ମାସରେ ବିହାରରେ

ଏକ ଭୟାବହ ଭୂମିକମ୍ପ ହୋଇ ହଜାର ହଜାର ଲୋକ ପ୍ରାଣ ହରାଇଲେ ଓ ଭୂମିକମ୍ପରେ ଧ୍ୱସ୍ତବିଧ୍ୱସ୍ତ ବିହାରବାସୀଙ୍କର ସେବା କରିବା ପାଇଁ ବିହାରର କଂଗ୍ରେସ ନେତା ରାଜେନ୍ଦ୍ର ପ୍ରସାଦ ଏବଂ ଆହ୍ଲାବାଦରୁ ଜଓ୍ୱାହରଲାଲ୍ ନେହୁରୁ ପ୍ରମୁଖ ସ୍ଥାନୀୟ ସ୍ୱେଚ୍ଛାସେବକଙ୍କୁ ନେଇ ଉଦ୍ଧାର କାର୍ଯ୍ୟ ଚଲୁ ରଖିଲେ । ଗାନ୍ଧିଜୀ ଏହି ସମୟରେ ଗୋଟିଏ ଖବରକାଗଜରେ ବିବୃତି ଦେଇ କହିଲେ, ହରିଜନମାନଙ୍କୁ ଅବହେଳା କରିବା ହେତୁ ବିହାର ଭୂମିକମ୍ପ ଭଗବାନଙ୍କର ଅଭିଶାପ । ଏପରି ମନ୍ତବ୍ୟକୁ ସାଧାରଣ କଂଗ୍ରେସ ଲୋକେ ମଧ ପସନ୍ଦ କରିନଥିଲେ । ଏପରିକି ରବୀନ୍ଦ୍ରନାଥ ଠାକୁରଙ୍କ ପରି କବି ଓ ସଂସ୍କୃତି- ପ୍ରେମୀମାନେ ଗାନ୍ଧିଜୀଙ୍କର ଏ ପ୍ରକାରର ବକ୍ତବ୍ୟକୁ ନାପସନ୍ଦ କରି ବିବୃତି ଦେଇଥିଲେ ।

୧୯୩୦ରୁ ୧୯୩୪ ମସିହା ପର୍ଯ୍ୟନ୍ତ ବଙ୍ଗଳାରେ ସନ୍ତ୍ରାସବାଦୀ ଆନ୍ଦୋଳନ ଉଗ୍ରରୂପ ଧାରଣ କରିଥିଲା । ସ୍ୱାଧୀନତାପ୍ରେମୀ ଶିକ୍ଷିତ ଯୁବକମାନେ ସନ୍ତ୍ରାସବାଦୀ କାର୍ଯ୍ୟକ୍ରମର ମୁଖ୍ୟ ଅଂଶୀଦାର ଓ ସମର୍ଥକ ଥିଲେ । ସନ୍ତ୍ରାସବାଦକୁ ଆମୂଳେ ନିଶ୍ଚିହ୍ନ କରିବା ପାଇଁ ସାର୍ ଜନ୍ ଆଣ୍ଡରସନ୍‌କୁ ବଙ୍ଗଳାର ଗଭର୍ଣ୍ଣର ପଦରେ ନିଯୁକ୍ତ କରାଗଲା । ସେ ବଙ୍ଗଳା ପାଇଁ ବିଭିନ୍ନ ପ୍ରକାରର କଠୋର ଆଇନ୍ ପ୍ରଣୟନ କରି ବିନା ବିଚାରରେ ଉଗ୍ରପନ୍ଥୀମାନଙ୍କୁ ଦମନ କରିବାକୁ ସମର୍ଥ ହୋଇଥିଲେ ଏବଂ ୧୯୩୪ ମସିହା ବେଳକୁ ବହୁ ସନ୍ତ୍ରାସବାଦୀ ଯୁବକ ପୋଲିସ୍ ସହ ସଂଘର୍ଷରେ ପ୍ରାଣ ହରାଇଥିଲେ କିମ୍ବା ସେମାନଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଦେଇ ଆଣ୍ଡାମାନକୁ ଦେଶାନ୍ତର କରାଯାଇଥିଲା ।

ଡେରାଡୁନ୍ ଜେଲ୍‌ରୁ ଖଲାସ ହେବା ପରେ ଜଓ୍ୱାହରଲାଲ୍‌ଙ୍କୁ ସାଢ଼େ ପାଞ୍ଚମାସ ବାହାରେ ରହିବାର ସୁଯୋଗ ମିଳିଥିଲା । ସେ କଂଗ୍ରେସର ସାଧାରଣ ସମ୍ପାଦକ ଭାବରେ ଏକ ବିବୃତି ଦେଇ ଜାନୁଆରୀ ୨୬ ତାରିଖର ସ୍ୱାଧୀନତା ଦିବସକୁ ନିଷ୍ଠା ଓ ଆଡ଼ମ୍ବର ସହକାରେ ପାଳନ କରିବା ପାଇଁ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ । କଲିକତାର ଘଟଣାବଳୀ ଏବଂ ବଙ୍ଗଦେଶରେ ଆଣ୍ଡରସନ ଶାସନର ଭୟାବହ ପରିଣତି ଅନୁଧ୍ୟାନ କରିବାପାଇଁ ଏବଂ ବଙ୍ଗବାସୀଙ୍କୁ ସେମାନଙ୍କର ଉଜ୍ଜ୍ୱଳ ଦେଶପ୍ରେମ ଓ ଆତ୍ମୋତ୍ସର୍ଗ ପାଇଁ ଅଭିନନ୍ଦନ ଜଣାଇବା ନିମନ୍ତେ ସେ ୧୯୩୪ ଜାନୁଆରୀ ମାସରେ କଲିକତା ଯାଇଥିଲେ ଓ ସେଠାରେ ସେ ଦୁଇ ତିନୋଟି ବିରାଟ ଜନସଭାରେ ଭାଷଣ

ଦେଇଥିଲେ । ସେ ସନ୍ତ୍ରାସବାଦର ସମାଲୋଚନା କଲେ ମଧ୍ୟ ବ୍ରିଟିଶ ସରକାରଙ୍କ ନୀତି ଓ କାର୍ଯ୍ୟକଳାପର ଗଭୀର ନିନ୍ଦା କରିଥିଲେ । କଲିକତାରୁ ଫେରିବା ପରେ ସମ୍ବାଦ ମିଳିଥିଲା ଯେ, ସରକାର ଜୱାହରଲାଲଙ୍କ କାର୍ଯ୍ୟକଳାପରେ ଅତ୍ୟନ୍ତ କ୍ରୁଦ୍ଧ ଏବଂ ତାଙ୍କୁ କୌଣସି ଗୁରୁତର ଅପରାଧ ଅଭିଯୋଗରେ ଗିରଫ କରିବା ପାଇଁ ବିଭିନ୍ନ ପ୍ରାଦେଶିକ ସରକାରଙ୍କୁ ଭାରତ ସରକାର ଗୁପ୍ତ ନିର୍ଦ୍ଦେଶ ଦେଇଛନ୍ତି । ଫେବୃଆରୀ ୧୨ ତାରିଖ ଦିନ ତାଙ୍କୁ ପୁନଶ୍ଚ ଗିରଫ କରି କଲିକତା ପଠାଇ ଦିଆଗଲା । ଜାନୁଆରୀ ମାସରେ କଲିକତାରେ ରାଜଦ୍ରୋହମୂଳକ ଭାଷଣ ଦେଇଥିବା ଅଭିଯୋଗରେ ବଙ୍ଗଳା ସରକାରଙ୍କ ଦ୍ୱାରା ତାଙ୍କୁ ଗିରଫ କରାଯାଇଥିଲା ।

ଯାହାହେଉ ଜୱାହରଲାଲ ଜେଲ୍‌ରେ ଥିବା ସମୟରେ ୧୯୩୪ ମେ ମାସରେ ପାଟନା ସହରରେ ନିଖିଳ ଭାରତ କଂଗ୍ରେସ କମିଟିର ଗୋଟିଏ ଅଧିବେଶନ ବସିଲା, ସେ ଅଧିବେଶନରେ ଆଇନ୍ ଅମାନ୍ୟ ଆନ୍ଦୋଳନକୁ ବିଧିବଦ୍ଧ ଭାବରେ ପ୍ରତ୍ୟାହାର କରାଗଲା ଓ ଏକ ପ୍ରସ୍ତାବ ଗୃହୀତ ହେଲା ଯେ କଂଗ୍ରେସ ଲୋକେ ଏଣିକି ସଂସଦୀୟ କାର୍ଯ୍ୟକ୍ରମ ଓ ସେଥିପାଇଁ ଆବଶ୍ୟକ ହେଲେ ନିର୍ବାଚନରେ ଭାଗ ନେବା ପାଇଁ ପ୍ରସ୍ତୁତ ହେବେ । ଏହାପରେ ୱିଲିଂଡନ୍ ସରକାର କଂଗ୍ରେସ ଉପରୁ ନିଷେଧାଜ୍ଞା ଉଠାଇ ନେଲେ । ଗାନ୍ଧିଜୀ ଅନୁଭବ କଲେ ଯେ, ଅଧିକାଂଶ କଂଗ୍ରେସ କର୍ମୀ ତାଙ୍କ ନିର୍ଦ୍ଦେଶିତ ଗଠନମୂଳକ କାର୍ଯ୍ୟକ୍ରମରେ ସନ୍ତୁଷ୍ଟ ନୁହଁନ୍ତି । ଅକ୍ଟୋବର ୧୯୩୪ ମସିହାରେ ଗାନ୍ଧିଜୀ କଂଗ୍ରେସରୁ ଇସ୍ତଫା ଦେଲେ ଓ ଗଠନମୂଳକ କାର୍ଯ୍ୟକ୍ରମ ଚଳାଇବାରେ ନିଜକୁ ଆବଦ୍ଧ ରଖିଲେ ।



# ୧୯୩୫ ଭାରତ ଶାସନ ଆଇନ୍

ଭାରତରେ ନିର୍ମମ ଦମନଲୀଳା ଚଳାଇ ଆଇନ୍ ଅମାନ୍ୟ ଆନ୍ଦୋଳନକୁ ନିଶ୍ଚିହ୍ନ କରିବାର ସରକାରୀ ଉଦ୍ୟମ ଚାଲୁ ରହିଥିବା ବେଳେ ବ୍ରିଟିଶ ସରକାର ଲଣ୍ଡନରେ ନୂତନ ଭାରତ ଶାସନ ଆଇନ୍ ପ୍ରଣୟନ କରିବା ପାଇଁ ଆଗଭର ହେଲେ । ଇଣ୍ଡିଆ ବିଲ୍ ନାମରେ ଡିସେମ୍ବର ୧୯୩୪ ମସିହାରେ ପାର୍ଲାମେଣ୍ଟରେ ଏହା ଆଗତ ହେଲା । ଟିକିନିଖି ଆଲୋଚନା ବେଳେ ପାର୍ଲାମେଣ୍ଟର କଞ୍ଜରଭେଟିଭ୍ ଦଳର ଜଣେ ମୁଖ୍ୟ ନେତା ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ଓ ତାଙ୍କ ସହଯୋଗୀମାନଙ୍କର ତୀବ୍ର ବିରୋଧ ସତ୍ତ୍ୱେ ଆଲୋଚନା ଚାଲୁ ରହିଲା । ଚର୍ଚ୍ଚିଲ୍ ଓ ତାଙ୍କର ସହଯୋଗୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ବ୍ରିଟିଶ ସ୍ୱାର୍ଥ ସମ୍ବଳିତ ବ୍ୟବସାୟ ବାଣିଜ୍ୟକୁ ସୁରକ୍ଷା ଦେବା ପାଇଁ କେତେଗୁଡ଼ିଏ ସର୍ତ୍ତ ଆଇନ୍‌ରେ ସନ୍ନିବିଷ୍ଟ ହେଲା । ପରିଶେଷରେ ଚର୍ଚ୍ଚିଲ୍‌ଙ୍କର ସବୁ ବିରୋଧ ସତ୍ତ୍ୱେ ଆଇନ୍‌ଟି ପାର୍ଲାମେଣ୍ଟରେ ଗୃହୀତ ହୋଇ ୧୯୩୫ ମସିହା ଅଗଷ୍ଟ ୪ ତାରିଖରେ ବ୍ରିଟେନ୍ ରାଜାଙ୍କର ସ୍ୱୀକୃତି ଲାଭ କଲା ଓ ତାହା ୧୯୩୫ ମସିହା ଭାରତ ଶାସନ ଆଇନ୍ ନାମରେ ଖ୍ୟାତ ।

ଏ ଆଇନ୍‌ଟି ଖୁବ୍ ବ୍ୟାପକ ହେଲେ ମଧ୍ୟ ଏଥିରେ ରାଜ୍ୟ ପରିଗଠନ ସମ୍ପର୍କରେ କେତେଗୁଡ଼ିଏ ସ୍ୱତନ୍ତ୍ର ବ୍ୟବସ୍ଥା ଥିଲା । ବ୍ରହ୍ମଦେଶ ଭାରତରୁ ବିଚ୍ଛିନ୍ନ ହୋଇ ଗ୍ରେଟ୍ ବ୍ରିଟେନ୍ ଅଧୀନରେ ଏକ ସ୍ୱତନ୍ତ୍ର ଦେଶ ରୂପେ ପରିଗଣିତ ହେଲା । ଦୁଇଟି ନୂଆ ପ୍ରଦେଶ ସୃଷ୍ଟି ହେଲା । ବମ୍ବେ ପ୍ରଦେଶରୁ ବିଚ୍ଛିନ୍ନ କରି ସିନ୍ଧୁକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଓ ସେହିପରି ବିହାରରୁ ବିଚ୍ଛିନ୍ନ କରି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ପାହ୍ୟାର ମାନ୍ୟତା ଦିଆଗଲା । ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ମଧ୍ୟ ଗଭର୍ଣ୍ଣର ଶାସିତ ପ୍ରଦେଶ ରୂପେ ବିବେଚିତ ହେଲା ।

ଏହି ନୂତନ ଶାସନ ବିଧିରେ କେନ୍ଦ୍ର ପାଇଁ ଗୋଟିଏ ରାଷ୍ଟ୍ରସଂଘ ଓ ପ୍ରଦେଶମାନଙ୍କରେ ଦାୟିତ୍ୱମୂଳକ ଶାସନ ଚଳାଇବାର ବ୍ୟବସ୍ଥା ରଖାଯାଇଥିଲା । ଶାସନ ପରିଚାଳନା ପାଇଁ କେନ୍ଦ୍ର ଓ ପ୍ରଦେଶ ମଧ୍ୟରେ ବିଭାଗଗୁଡ଼ିକୁ ବାଣ୍ଟି ଦିଆଯାଇଥିଲା । ଦେଶରକ୍ଷା, ପରରାଷ୍ଟ୍ର ନୀତି ଏବଂ ଆର୍ଥିକ ବ୍ୟବସ୍ଥାକୁ ସୁରକ୍ଷିତ କରିବା ପାଇଁ ସମସ୍ତ କ୍ଷମତା କେନ୍ଦ୍ର ନିୟନ୍ତ୍ରଣରେ ରହିଲା । ଅନ୍ୟ ସବୁ ବିଭାଗ ପ୍ରଦେଶମାନଙ୍କୁ ବଣ୍ଟନ କରାଗଲା । କିନ୍ତୁ ରାଷ୍ଟ୍ରସଂଘ ପରିଚାଳନା କରିବା ପାଇଁ ଯେଉଁ ବ୍ୟବସ୍ଥା ହେଲା, ତଦ୍ଵାରା କେନ୍ଦ୍ର ସରକାରରେ କୌଣସି ପରିବର୍ତ୍ତନ ହେବାର ସୂଚନା ଦେଖାଯାଉ ନଥାଏ । କେନ୍ଦ୍ର ବ୍ୟବସ୍ଥା ସଭା ପାଇଁ ପ୍ରଦେଶ- ଗୁଡ଼ିକର ନିର୍ବାଚିତ ସଭ୍ୟମାନଙ୍କ ସହିତ ଦେଶୀୟ ରାଜ୍ୟ ରାଜାମାନଙ୍କ ମନୋନୀତ ପ୍ରତିନିଧିମାନେ ଏକତ୍ର ବସିବାର ନୂଆ ଶାସନ ବିଧିରେ ବ୍ୟବସ୍ଥା ଥିଲା ଏବଂ ଦେଶୀୟ ରାଜାମାନେ ଗୋଟିଏ ଦଲିଲ୍‌ରେ ଦସ୍ତଖତ କରି ସେମାନଙ୍କର ସମ୍ମତି ଭାଇସରାୟଙ୍କୁ ନ ଜଣାଇଲେ ରାଷ୍ଟ୍ରସଂଘ ଗଠନର ପ୍ରଶ୍ନ ନଥିଲା ।

କଂଗ୍ରେସ ନେତାମାନେ ଆଶଙ୍କା କଲେ ଯେ ବ୍ରିଟିଶ୍ ସରକାରଙ୍କ ମନୋଭାବ ଦୃଷ୍ଟିରୁ କେନ୍ଦ୍ରରେ ନିକଟରେ କୌଣସି ପରିବର୍ତ୍ତନ ହେବାକୁ ଯାଉନାହିଁ ଏବଂ ପୂର୍ବବତ୍ ୧୯୧୯ ଆଇନ୍ ଅନୁଯାୟୀ କେନ୍ଦ୍ର ଶାସନ ଚାଲୁ ରହିବ । ପ୍ରଦେଶମାନଙ୍କ ପାଇଁ ଯେଉଁ ଆଇନ୍‌ଗତ ବ୍ୟବସ୍ଥା ରଖାଯାଇଥିଲା, ସେଥିରେ ନିର୍ବାଚିତ ମନ୍ତ୍ରୀମାନେ ବିଧାନସଭା ନିକଟରେ ଦାୟୀ ରହିବେ ଏବଂ ପ୍ରଦେଶକୁ ହସ୍ତାନ୍ତରିତ ବିଭାଗଗୁଡ଼ିକର ପରିଚାଳନା ସଂପର୍କରେ ଯେଉଁ ନିଷ୍ପତ୍ତି ନେବେ ତାହା କେବଳ ଗଭର୍ଣ୍ଣରଙ୍କର ସ୍ୱୀକୃତିପ୍ରାପ୍ତ ହେଲେ କାର୍ଯ୍ୟକାରୀ ହେବ । ଗଭର୍ଣ୍ଣରଙ୍କୁ ଯେଉଁ ବିଶେଷ କ୍ଷମତା ଦିଆଯାଇଥିଲା ତାହା ବଳରେ ସେ ମନ୍ତ୍ରୀଙ୍କର ଯେକୌଣସି ନିଷ୍ପତ୍ତିକୁ ଅକାମୀ କରି ଦେଇପାରିବେ । ଏପରିକି ଆବଶ୍ୟକ ହେଲେ ଆଇନ୍‌ର ୯୩ ଧାରା ଅନୁସାରେ ବିଧାନସଭାକୁ ଭାଙ୍ଗିଦେଇ ପୂର୍ଣ୍ଣ ଶାସନ କ୍ଷମତା ହାତକୁ ନେଇ ପାରିବେ ।

ଉପରୋକ୍ତ ବ୍ୟବସ୍ଥାଗୁଡ଼ିକୁ ଦୃଷ୍ଟିରେ ରଖି ତଥାକଥିତ ଦାୟିତ୍ୱମୂଳକ ଶାସନରେ ଭାଗୀଦାର ହେବା କେତେଦୂର ସମୀଚୀନ ହେବ, ତାହା କଂଗ୍ରେସ ନେତାମାନଙ୍କର ପ୍ରଧାନ ବିଚାର୍ଯ୍ୟ ବିଷୟ ହେଲା । ଅବଶ୍ୟ ୧୯୩୪ ମସିହା ମଇ ମାସରେ ଆଇନ୍ ଅମାନ୍ୟ ଆନ୍ଦୋଳନକୁ ପ୍ରତ୍ୟାହାର କରି ସଂସଦୀୟ ବ୍ୟବସ୍ଥା ଓ ସେଥିପାଇଁ ଆବଶ୍ୟକ

ହେଲେ ନିର୍ବାଚନରେ ଭାଗନେବା ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା । କିନ୍ତୁ ୧୯୩୫ ମସିହାରେ ନୂତନ ଭାରତ ଶାସନ ଆଇନ୍ କାର୍ଯ୍ୟକାରୀ ହେବା ପରେ ଏ ପ୍ରଶ୍ନ ଏକ ବିରାଟ ବିବାଦରେ ପରିଣତ ହେଲା । ୧୯୩୪ ମସିହାରୁ ଗାନ୍ଧିଜୀଙ୍କ ଗଠନମୂଳକ କାର୍ଯ୍ୟକ୍ରମ ଓ ହରିଜନ ଆନ୍ଦୋଳନରେ ବିବ୍ରତ ହୋଇ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ୟୁସୁଫ୍ ମେହେରଲ୍ଲୀ ଓ ଏମ୍. ଆର୍. ମସାନି ପ୍ରମୁଖ କେତେକ ଅଗ୍ରଗାମୀ କଂଗ୍ରେସ ନେତା କଂଗ୍ରେସ ମଧ୍ୟରେ ଏକ "କଂଗ୍ରେସ ସୋସାଲିଷ୍ଟ ପାର୍ଟି" ଶୀର୍ଷକ ସାମ୍ୟବାଦୀ ଗୋଷ୍ଠୀ ଗଠନ କରିଥିଲେ । କ୍ରମେ ବହୁ ଯୁବକଂଗ୍ରେସ ନେତା ଏହି କଂଗ୍ରେସ ସୋସାଲିଷ୍ଟ ଦଳର ସଭ୍ୟ ହୋଇଥିଲେ ଓ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମକୁ ଅଧିକ କ୍ରିୟାଶୀଳ କରିବା ପାଇଁ ଉଦ୍ୟମ କରୁଥିଲେ । ଜୱାହାରଲାଲଙ୍କ ପରି ସେମାନେ ମଧ୍ୟ ନିର୍ବାଚନ ଓ ମନ୍ତ୍ରିତ୍ୱ ଗ୍ରହଣ ଆଦି ହଟଚମଟରେ ପ୍ରବେଶ କରିବାକୁ ବିରୋଧ କରୁଥିଲେ । କିନ୍ତୁ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ବିହାରର ରାଜେନ୍ଦ୍ର ପ୍ରସାଦ ଓ ମାନ୍ଦ୍ରାଜର ରାଜଗୋପାଳଚ୍ଚରୀ ପ୍ରମୁଖ ପୁରୁଖା କଂଗ୍ରେସ ନେତାମାନେ ସମାଜବାଦୀମାନଙ୍କର ତୀବ୍ର ବିରୋଧ କରୁଥିଲେ । ଗାନ୍ଧିଜୀ କଂଗ୍ରେସ ସଭ୍ୟ ପଦରୁ ଇସ୍ତଫା ଦେଇଥିଲେ ମଧ୍ୟ ତାଙ୍କ ସହିତ ବିନା ପରାମର୍ଶରେ କୌଣସି କାର୍ଯ୍ୟ ହେଉ ନଥିଲା । ଗାନ୍ଧିଜୀ ଆଶଙ୍କା କରୁଥିଲେ, କଂଗ୍ରେସ ଆଉ ଏକ ବିଭାଜନର ସମ୍ମୁଖୀନ । ସେ ପୁନଶ୍ଚ ଭାବୁଥିଲେ, ସର୍ଦ୍ଦାର ପଟେଲ ଓ ରାଜଗୋପାଳଚ୍ଚରୀ ପ୍ରମୁଖ ସୋସାଲିଷ୍ଟମାନଙ୍କ ବିରୁଦ୍ଧରେ ଯେଉଁ ତୀବ୍ର ଆକ୍ରମଣ ଚଳାଇଛନ୍ତି, ତାହା ଏହି ବିଭାଜନକୁ ଆଗେଇ ନେବ । ତାଙ୍କ ମତରେ ଜୱାହରଲାଲ ନେହୁରୁ ଏକମାତ୍ର ଲୋକ ଯେ କି ଏହି ବିବାଦରୁ କଂଗ୍ରେସକୁ ଉଦ୍ଧାର କରିପାରିବେ । କିନ୍ତୁ ଜୱାହରଲାଲ ସେତେବେଳେ କଲିକତାରେ ରାଜଦ୍ରୋହମୂଳକ ଭାଷଣ ଦେଇଥିବା ହେତୁ ୧୯୩୪ ମସିହା ଫେବୃଆରୀ ମାସରୁ ଦୁଇବର୍ଷ ପାଇଁ କାରାବାସରେ ବନ୍ଦୀ ।

ଅବଶ୍ୟ ୧୯୩୫ ମସିହା ସେପ୍ଟେମ୍ବର ମାସରେ ସହଧର୍ମିଣୀ କମଳା ନେହୁରୁଙ୍କର ସ୍ୱାସ୍ଥ୍ୟ ଅବସ୍ଥା ଅତି ସଂକଟାପନ୍ନ ଥିବା ହେତୁ, ଜୱାହାରଲାଲ୍‌ଙ୍କୁ ୟୁରୋପ ଯିବାକୁ ସୁବିଧା ଦେବା ନିମନ୍ତେ ସରକାର କାରାଦଣ୍ଡକୁ ସ୍ଥଗିତ ରଖିଲେ  କିନ୍ତୁ ସର୍ତ୍ତ ରଖିଲେ ଯେ ଯଦି ୧୯୩୬ ଫେବୃଆରୀ ୧୬ ତାରିଖ ପୂର୍ବରୁ ସେ ଭାରତକୁ ଫେରିଆସନ୍ତି, ତା'ହେଲେ ତାଙ୍କୁ କାରାଦଣ୍ଡର ଅବଶିଷ୍ଟ ମିଆଦ ଭୋଗ କରିବାକୁ

ହେବ । କିନ୍ତୁ ସବୁ ଉଦ୍ୟମ ସତ୍ତ୍ୱେ ଫେବୃଆରୀ ୨୮ ତାରିଖ ୧୯୩୬ ମସିହାରେ ସ୍ୱିଜରଲାଣ୍ଡର ଏକ ସ୍ୱାସ୍ଥ୍ୟ ନିବାସରେ କମଳାଙ୍କର ଜୀବନଦୀପ ଚିରଦିନ ପାଇଁ ନିଷ୍ପ୍ରଭ ହୋଇଗଲା । ୧୯୩୬ ମସିହା ମାର୍ଚ୍ଚ ୧୦ ତାରିଖରେ ସେ କମଳାଙ୍କର ଚିତାଭସ୍ମ ଓ ତତ୍‌କାଳୀନ ୟୁରୋପରେ ଚାଲିଥିବା ଫ୍ୟାସିଷ୍ଟ ଅତ୍ୟାଚାରର ବହୁ ସ୍ମୃତି ଧରି କରାଚୀରେ ଅବତରଣ କଲେ । ତାଙ୍କର ଆଗମନ ଗାନ୍ଧିଜୀଙ୍କୁ ଆଶ୍ୱାସନା ଦେଲା ଓ ସେ ତୁରନ୍ତ ତାଙ୍କୁ ଲକ୍ଷ୍ନୌ କଂଗ୍ରେସ ଅଧିବେଶନରେ ସଭାପତି ହେବା ପାଇଁ ପ୍ରସ୍ତାବ କଲେ । ଗାନ୍ଧିଜୀଙ୍କର ପରାମର୍ଶ ଅମାନ୍ୟ କରିବାକୁ କାହାର ସାହସ ନଥିଲା । ଶେଷରେ ଜୱାହରଲାଲ୍ ଏପ୍ରିଲ୍ ମାସରେ ଲକ୍ଷ୍ନୌ କଂଗ୍ରେସ ଅଧିବେଶନରେ ସଭାପତିତ୍ୱ କରିଥିଲେ ।

ଏଣେ ୧୯୩୬ ମସିହା ପ୍ରାରମ୍ଭ କାଳରେ ବ୍ରିଟେନ୍‌ରେ ବହୁ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ପରିବର୍ତ୍ତନ ଘଟିଥିଲା । ନିର୍ବାଚନରେ ଜୟଯୁକ୍ତ ହୋଇ କଞ୍ଜରଭେଟିଭ୍ ଦଳର ନେତା ବଲ୍‌ଡୁଇନ୍ ରାମସେ ମ୍ୟାକ୍‌ଡୋନାଲଡ୍‌ଙ୍କ ସ୍ଥାନରେ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ୱିଲିଂଡନ୍‌ଙ୍କ କାର୍ଯ୍ୟକାଳ ସମାପ୍ତ ହେବା ପରେ ବଲ୍‌ଡୁଇନ୍ ମାର୍କ୍ୱିସ ଅଫ୍ ଲିନ୍‌ଲିଥ୍‌ଗୋଙ୍କୁ ଭାରତର ଭାଇସ୍‌ରାୟ ପଦରେ ନିଯୁକ୍ତ କଲେ । ୧୯୩୫ ଭାରତ ଶାସନ ବିଧି ପ୍ରସ୍ତୁତ କରିବା ପାଇଁ ଯେଉଁ ସଂସଦୀୟ କମିଟି ଗଠିତ ହୋଇଥିଲା ସେ ଥିଲେ ତାହାର ସଭାପତି ଏବଂ ସେହି ଆଇନ୍‌କୁ କାର୍ଯ୍ୟକାରୀ କରିବା ପାଇଁ ଲିନ୍‌ଲିଥ୍‌ଗୋଙ୍କୁ ନିଯୁକ୍ତି ଦେବାରେ କୌଣସି ଅସ୍ୱାଭାବିକତା ନଥିଲା । କିନ୍ତୁ ଲିନ୍‌ଲିଥ୍‌ଗୋ ଥିଲେ ଅତି ଶୁଷ୍କ, ନୀରସ ପ୍ରକୃତିର ଲୋକ । ଏକେତ ସେ ଥିଲେ ମାନ୍ଧାଦଳିଆ ନେତା, ପରନ୍ତୁ ଅଗ୍ରଗାମୀ ଚିନ୍ତାଧାରା ଠାରୁ ବହୁଦୂର । କୌଣସି ରାଜନୈତିକ ସମସ୍ୟା ଉପୁଜିଲେ ତା' ଉପରେ ତୁରନ୍ତ ନିଷ୍ପତ୍ତି ଗ୍ରହଣ କରିବା ତାଙ୍କ ସ୍ୱଭାବ-ବିରୁଦ୍ଧ । ଯାହାହେଉ ଭାରତ ଶାସନ ଆଇନ୍‌କୁ କାର୍ଯ୍ୟକାରୀ କରିବାକୁ ଯାଇ ୧୯୩୬ ମସିହା ଶେଷ ଓ ୧୯୩୭ ମସିହାର ଶୀତକାଳରେ ପ୍ରାଦେଶିକ ବ୍ୟବସ୍ଥା ସଭା ପାଇଁ ନିର୍ବାଚନ କରିବାକୁ ସେ କାର୍ଯ୍ୟକ୍ରମ ରଖିଥିଲେ ।

ଏଣେ ୧୯୩୬ ମସିହା ଏପ୍ରିଲ୍ ମାସରେ କଂଗ୍ରେସର ଲକ୍ଷ୍ନୌ ଅଧିବେଶନରେ ସଭାପତିତ୍ୱ କରି ଜୱାହରଲାଲ ନେହେରୁ ନୂଆ ଭାରତ ଶାସନ ଆଇନକୁ ଦାସତ୍ୱର ଏକ ସନନ୍ଦ ରୂପେ ବର୍ଣ୍ଣନା କରିଥିଲେ । ତାଙ୍କ ମତରେ ୧୯୩୫ ମସିହା ଭାରତ

ଶାସନ ଆଇନ୍ ସ୍ୱାଧୀନତା ପଥରେ ଏକ କଣ୍ଟକମୟ ମୁକୁଟ । ଏହି ମୁକୁଟ ପରିଧାନ କଲେ ଦାସତ୍ୱ ଅଧିକ ଦିନ ସ୍ଥାୟୀ ହେବ ଓ ସ୍ୱାଧୀନତାର ସ୍ୱପ୍ନ ମଉଳିଯିବ । ବହୁ ଯୁବ କଂଗ୍ରେସ ନେତା ଓ କଂଗ୍ରେସ ସୋସାଲିଷ୍ଟ ଦଳ ତାଙ୍କୁ ସମର୍ଥନ କରୁଥିଲେ, କିନ୍ତୁ କଂଗ୍ରେସ କାର୍ଯ୍ୟକାରୀ ସମିତିର କେତେକ ସଭ୍ୟ, ବିଶେଷତଃ ଦକ୍ଷିଣ ଭାରତର ସଭ୍ୟମାନେ ମନ୍ତ୍ରୀପଦ ପାଇଁ ବ୍ୟାକୁଳ ଥିଲେ । ଉଭୟ ଗୋଷ୍ଠୀ ମଧ୍ୟରେ ଗୁରୁତର ମତଭେଦ ହେତୁ କେବଳ ନିର୍ବାଚନ ଲଢ଼ିବା ପାଇଁ ନିଷ୍ପତ୍ତି ନିଆହେଲା ଏବଂ ନିର୍ବାଚନ ପରେ ଫଳାଫଳ ଦୃଷ୍ଟିରୁ ମନ୍ତ୍ରୀପଦ ଗ୍ରହଣ କରାଯିବ କି ନାହିଁ, ତାହା ପରକାଳରେ ସ୍ଥିର କରିବାକୁ ସମସ୍ତେ ସମ୍ମତ ହେଲେ । ପରବର୍ତ୍ତୀ କଂଗ୍ରେସ ଅଧିବେଶନ ୧୯୩୬ ଡିସେମ୍ବର ମାସରେ ଫୈଜାବାଦଠାରେ ଅନୁଷ୍ଠିତ ହେଲା ଏବଂ ନିର୍ବାଚନ ପରିଚାଳନା କରିବା ପାଇଁ ପୁନର୍ବାର ଜଓ୍ୱାହରଲାଲ ନେହୁରୁ କଂଗ୍ରେସର ସଭାପତି ନିର୍ବାଚିତ ହେଲେ ।

ସେତେବେଳେ ଭାରତର ଲୋକସଂଖ୍ୟା ଥିଲା ୩୫ କୋଟି । ରେଡିଓ ବା ଟେଲିଭିଜନ ଆଦି ନଥିଲା । ଏପରିକି ଭାରତୀୟ ଭାଷାରେ ପ୍ରକାଶିତ ସମ୍ବାଦପତ୍ରର ସଂଖ୍ୟା ଥିଲା ନଗଣ୍ୟ । ଯାତାୟାତ ପାଇଁ ଉଡ଼ାଜାହାଜର ବ୍ୟବସ୍ଥା ନଥିଲା । ଏହି ପରିସ୍ଥିତିରେ କଂଗ୍ରେସ ସଭାପତି ଭାବରେ ନିର୍ବାଚନ ପ୍ରଚାରର ଦାୟିତ୍ୱ ନେଇ ଜଓ୍ୱାହରଲାଲ ୫୦ ହଜାର ମାଇଲ୍ ରାସ୍ତା ପରିଭ୍ରମଣ କରିଥିଲେ । ସାତ ସପ୍ତାହ ଧରି ପ୍ରତିଦିନ ପ୍ରାୟ ଦଶ ବାରୋଟି ସଭାରେ ସେ ଭାଷଣ ଦେଉଥିଲେ ଏବଂ ଏକ କୋଟିରୁ ଅଧିକ ସଂଖ୍ୟକ ଲୋକଙ୍କୁ ସ୍ପର୍ଶ କରି ପାରିଥିଲେ । ତାଙ୍କ ଭାଷଣର ପ୍ରତିକ୍ରିୟା ଥିଲା ଅନୁକୂଳ ଓ ସନ୍ତୋଷଜନକ ।

୧୯୩୭ ମାର୍ଚ୍ଚ ମାସରେ ଭୋଟ୍ ଗଣତି ପରେ ଦେଖାଗଲା ସିନ୍ଧୁ ପଞ୍ଜାବ ଆଦି କେତେକ ମୁସଲମାନବହୁଳ ପ୍ରଦେଶକୁ ବାଦ୍ ଦେଇ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ସମେତ ଉତ୍ତରପ୍ରଦେଶ, ବିହାର, ଆସାମ, ଓଡ଼ିଶା, ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଓ ବମ୍ବେ ପ୍ରଦେଶରେ କଂଗ୍ରେସ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ଲାଭ କରିଛି । ସିନ୍ଧୁ ପ୍ରଦେଶରେ ଏକ ସ୍ଥାନୀୟ ମୁସଲିମ୍ ଦଳ ଓ ପଞ୍ଜାବରେ ହିନ୍ଦୁ, ଶିଖ୍ ଓ ମୁସଲିମ୍ ଜମିଦାରମାନଙ୍କୁ ନେଇ ଗଠିତ ୟୁନିୟନିଷ୍ଟ ପାର୍ଟି କ୍ଷମତାକୁ ଆସିଥିଲେ । ବଙ୍ଗଳାରେ କୃଷକ ପ୍ରଜା ପାର୍ଟି ନେତା ଫଜଲ୍-ଉଲ୍-ହକ୍‌ଙ୍କ ନେତୃତ୍ୱରେ ମୁସ୍‌ଲିମ୍ ଲିଗ୍ ନେତା ନିଜାମୁଦ୍ଦିନ୍ ଓ କେତେଜଣ ହିନ୍ଦୁ ଦଳିତ ପ୍ରାର୍ଥୀଙ୍କ ସହାୟତାରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । କିନ୍ତୁ

ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ନେତୃତ୍ୱରେ ପରିଚାଳିତ ମୁସ୍‌ଲିମ୍ ଲିଗ୍‌ର ବିଫଳତା ଥିଲା ଅତି ସୁସ୍ପଷ୍ଟ । ନିର୍ବାଚନରେ ମୁସଲ୍‌ମାନ ପ୍ରତିନିଧିମାନଙ୍କ ପାଇଁ ସ୍ଥାନ ସଂଖ୍ୟା ସଂରକ୍ଷିତ ଥିଲା । ଆସାମରେ ଏ ପ୍ରକାରର ୩୪ଟି ସଂରକ୍ଷିତ ସ୍ଥାନରୁ ଲିଗ୍ ମାତ୍ର ୯ଟି ସ୍ଥାନରେ, ବଙ୍ଗଳାରେ ସଂରକ୍ଷିତ ୧୧୯ଟି ସ୍ଥାନରୁ ୪୦ଟି ସ୍ଥାନରେ, ବମ୍ବେ ପ୍ରଦେଶରେ ୩୦ଟି ସ୍ଥାନରୁ ୧୮ଟି ସ୍ଥାନରେ, ମଧ୍ୟ ପ୍ରଦେଶରେ ୧୪ଟି ସ୍ଥାନରୁ ୫ଟି ସ୍ଥାନରେ, ମାନ୍ଦ୍ରାଜ୍‌ରେ ୨୯ଟି ସ୍ଥାନ ମଧ୍ୟରୁ ୯ଟି ସ୍ଥାନରେ, ପଞ୍ଜାବରେ ୪୬ଟି ସ୍ଥାନ ମଧ୍ୟରୁ ୧ଟି ସ୍ଥାନରେ, ଯୁକ୍ତ ପ୍ରଦେଶରେ ସଂରକ୍ଷିତ ୬୬ଟି ସ୍ଥାନ ମଧ୍ୟରୁ ୨୬ଟି ସ୍ଥାନରେ ମୁସ୍‌ଲିମ୍ ଲିଗ୍ ଜୟଲାଭ କରିଥିଲେ । ସିନ୍ଧ୍ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଲିଗ୍ ଗୋଟିଏ ମାତ୍ର ସ୍ଥାନ ପାଇ ନଥିଲେ ।

ନିର୍ବାଚନ ସଂକ୍ରାନ୍ତରେ ଲର୍ଡ୍ ଲିନ୍‌ଲିଥ୍‌ଗୋ ଓ ତାଙ୍କର ପ୍ରାଦେଶିକ ଗଭର୍ଣ୍ଣରମାନେ କଂଗ୍ରେସର ପରାଜୟ ସଂପର୍କରେ ଯେଉଁ ଆକଳନ କରିଥିଲେ ତାହା ସଂପୂର୍ଣ୍ଣ ଭ୍ରମାତ୍ମକ ବୋଲି ପ୍ରମାଣିତ ହେଲା । ରାଜା, ଜମିଦାର ଓ ତାଲୁକଦାରମାନଙ୍କର ଜନପ୍ରିୟତା ସଂପର୍କରେ ସେମାନେ ଯେଉଁ ସମୀକ୍ଷା କରିଥିଲେ, ତାହା ପୂର୍ଣ୍ଣ ଭିତ୍ତିହୀନ ବୋଲି ଜଣାପଡ଼ିଲା । ଭାରତର ସର୍ବାଧିକ ଲୋକ ଓ ଅଞ୍ଚଳ ଯେ କଂଗ୍ରେସର ସମର୍ଥକ, ଏହା ସ୍ପଷ୍ଟ ସାବ୍ୟସ୍ତ ହେଲା ।

ନିର୍ବାଚନରେ ବିପୁଳ ସଫଳତା କଂଗ୍ରେସ ନେତାମାନଙ୍କ ମଧ୍ୟରେ କ୍ଷମତା ଆହରଣ ଲିପ୍‌ସା ପୁନରୁଜ୍ଜୀବିତ କଲା । ପ୍ରଦେଶର ନେତାମାନଙ୍କ ମଧ୍ୟରେ ମନ୍ତ୍ରୀପଦ ଲାଳସା ଜାଗ୍ରତ ହେଲା । ବିଶେଷତଃ ଦକ୍ଷିଣ ଭାରତରେ ନିର୍ବାଚିତ ପ୍ରତିନିଧିମାନଙ୍କ ମଧ୍ୟରେ କ୍ଷମତାଲିପ୍‌ସା ଅତିମାତ୍ରାରେ ଉଦ୍ରେକ ହୋଇଥିଲା । ମାନ୍ଦ୍ରାଜ ପ୍ରଦେଶ ସେ କାଳରେ ଏକ ବିରାଟ ଅଞ୍ଚଳ । ଆନ୍ଧ୍ର, କର୍ଣ୍ଣାଟକ, ମାଲାବାର ଓ ତାମିଲନାଡୁକୁ ନେଇ ଏଇ ବିରାଟ ପ୍ରଦେଶ ଗଠିତ ହୋଇଥିଲା ଏବଂ କଂଗ୍ରେସ ଦଳର ନେତା ଥିଲେ ଜଣେ ଅତି ସୁଚତୁର ଅଧିବକ୍ତା ଚକ୍ରବର୍ତ୍ତୀ ରାଜଗୋପାଳଚାରୀ । ମାନ୍ଦ୍ରାଜର ନେତାମାନଙ୍କୁ ଦେଖି କେହି କେହି ଆଶଙ୍କା କରୁଥିଲେ ଯେ, ମନ୍ତ୍ରୀପଦ ଗ୍ରହଣ ନକଲେ ସେମାନେ ହୁଏତ କଂଗ୍ରେସରୁ ବିଛିନ୍ନ ହୋଇଯିବେ । କିନ୍ତୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ବହୁ ବିଶିଷ୍ଟ ନେତା ମନ୍ତ୍ରୀପଦ ଗ୍ରହଣକୁ ବିରୋଧ କରୁଥିଲେ । ଏହି ସମୟରେ ମହାତ୍ମା ଗାନ୍ଧି ଓ୍ୱାର୍ଦ୍ଧାଠାରେ ଏକ ସ୍ୱତନ୍ତ୍ର ଆଶ୍ରମ ପ୍ରତିଷ୍ଠା କରି ସେହିଠାରୁ ଖଦୀ ଓ ଗ୍ରାମୋଦ୍ୟୋଗ

ଆନ୍ଦୋଳନ ପରିଚ୍ଚାଳନା କରୁଥିଲେ । ନିର୍ବାଚନ ପ୍ରଚ୍ଚାରରେ ସେ ବିଶେଷ ଭାଗ ନେଇ ନଥିଲେ । କଂଗ୍ରେସର ଏ ପରିସ୍ଥିତି ଦେଖି ଗାନ୍ଧିଜୀ ଗୋଟିଏ ପରାମର୍ଶ ଦେଲେ । ଯଦି ପ୍ରାଦେଶିକ ଗଭର୍ଣ୍ଣରମାନେ ମନ୍ତ୍ରୀଙ୍କ କାର୍ଯ୍ୟରେ ହସ୍ତକ୍ଷେପ ନ କରିବା ପାଇଁ ପ୍ରତିଶ୍ରୁତି ଦିଅନ୍ତି, ତା'ହେଲେ କଂଗ୍ରେସ ସରକାର ଗଠନ କରିପାରେ । ଏହି ପରାମର୍ଶ ସବୁ ନେତାମାନଙ୍କୁ ସନ୍ତୁଷ୍ଟ କରିଥିଲା ଓ ତଦନୁଯାୟୀ ଭାଇସରାୟଙ୍କୁ ମଧ୍ୟ ଏ ସଂପର୍କରେ ତୁରନ୍ତ ନିଷ୍ପତ୍ତି ଘୋଷଣା କରିବା ପାଇଁ ଜଣାଇ ଦିଆଗଲା ।

ନିର୍ବାଚନ ପରେ ଲିନ୍‌ଲିଥ୍‌ଗୋ ଶୁଷ୍କ ପ୍ରସ୍ତରଖଣ୍ଡ ପରି ନୀରବ ରହିଥିଲେ । କୌଣସି ପ୍ରକାର ଉତ୍ସାହପୂର୍ଣ୍ଣ ରାଜନୈତିକ ପଦକ୍ଷେପ ନେବାକୁ ସେ ଆଗଭର ହୋଇ ନଥିଲେ । ଏଥିପାଇଁ ବ୍ରିଟିଶ ମନ୍ତ୍ରୀ ପରିଷଦରେ ତାଙ୍କ ବିରୁଦ୍ଧରେ ଆଲୋଚନା ହୋଇଥିଲା । ସେ କାହିଁକି ଚୁପ୍ କରି ବସି ରହିଛନ୍ତି, ସେଥିପାଇଁ ବ୍ରିଟିଶ୍ ସମ୍ବାଦପତ୍ରଗୁଡ଼ିକରେ ତାଙ୍କୁ ସମାଲୋଚନା କରି ଲେଖା ପ୍ରକାଶ ପାଇଥିଲା । ଏପରିକି କଲିକତାର ପ୍ରଖ୍ୟାତ ଇଂରାଜୀ ସମ୍ବାଦପତ୍ର 'ଷ୍ଟେଟସ୍‌ମ୍ୟାନ୍' ଭାଇସ୍‌ରାୟଙ୍କୁ ସମାଲୋଚନା କରିଥିଲେ । ଲିନ୍‌ଲିଥ୍‌ଗୋ ଅବଶ୍ୟ ଜାଣିଥିଲେ ଯେ, କଂଗ୍ରେସର ଅସହଯୋଗ ହେତୁ ଜମିଦାର ଓ ତାଲୁକଦାରମାନଙ୍କୁ ନେଇ ଯେଉଁସବୁ ମନ୍ତ୍ରିମଣ୍ଡଳ ଗଢ଼ାଯାଇଛି, ତାହା ବେଶିଦିନ ସ୍ଥାୟୀ ହେବନାହିଁ । କାରଣ ଛଅମାସ ମଧ୍ୟରେ ବିଧାନସଭାର ଅଧିବେଶନ ଆହ୍ୱାନ କରିବାକୁ ହେବ ଏବଂ ସେଠାରେ ଗଭର୍ଣ୍ଣରମାନଙ୍କ ମନୋନୀତ ମନ୍ତ୍ରିମଣ୍ଡଳ ଆସ୍ଥାଭୋଟରେ ଜୟଯୁକ୍ତ ହୋଇପାରିବେ ନାହିଁ ଏବଂ ଗଭର୍ଣ୍ଣରମାନଙ୍କୁ ବାଧ୍ୟ ହୋଇ ବିଧାନସଭାକୁ ଭାଙ୍ଗି ୯୩ ଧାରା ଅନୁସାରେ ପ୍ରଦେଶ ଶାସନର କ୍ଷମତା ହାତକୁ ନେବାକୁ ହେବ । ୧୯୩୫ ଶାସନ ବିଧିର ଏପରି ପରିଣତି ବ୍ରିଟିଶ ସରକାର ଚ୍ଚାହୁଁ ନଥିଲେ ।

ଜୁନ୍ ୨୨ ତାରିଖରେ ଲିନ୍‌ଲିଥ୍‌ଗୋ ଗୋଟିଏ ଘୋଷଣାନାମାରେ କହିଥିଲେ ଯେ, ପ୍ରାଦେଶିକ ଗଭର୍ଣ୍ଣରମାନେ ମନ୍ତ୍ରୀମାନଙ୍କ ସହିତ ବିବାଦଗ୍ରସ୍ତ ହେବାକୁ ବ୍ୟାକୁଳ ନୁହଁନ୍ତି ଏବଂ ମନ୍ତ୍ରୀମାନଙ୍କ ସହିତ ମତଭେଦ ଦୂର କରିବା ପାଇଁ ସକଳ ପ୍ରକାର ଉଦ୍ୟମ କରିବାକୁ ଆଗ୍ରହୀ ଅଛନ୍ତି । ଏହି ଘୋଷଣାରେ ଅବଶ୍ୟ କଂଗ୍ରେସର ଦାବି ଅନୁଯାୟୀ ମନ୍ତ୍ରୀମାନଙ୍କ ନିଷ୍ପତ୍ତିରେ ହସ୍ତକ୍ଷେପ ନ କରିବା ପାଇଁ ନିର୍ଧାର୍ଯ୍ୟ ପ୍ରତିଶ୍ରୁତି ଦିଆଯାଇ ନଥିଲା । କିନ୍ତୁ ଭାଇସ୍‌ରାୟଙ୍କର ପୂର୍ବ ଦିନର ନୀରବତା ଓ କାର୍ଯ୍ୟ ପ୍ରଣାଳୀ କଂଗ୍ରେସ

ଭିତରେ ଯେଉଁ ବିଦ୍ରୋହ ଭାବ ଉଦ୍ରେକ କରିଥିଲା ତାହା ଅନେକାଂଶରେ ମଉଳିଗଲା । ଅଣକଂଗ୍ରେସ ରାଜା ଓ ଜମିଦାରମାନେ ଯେଉଁସବୁ ଅସ୍ଥାୟୀ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ, ସେଥିରୁ ସେମାନେ ଇସ୍ତଫା ଦେଲେ ଏବଂ ସେହି ସ୍ଥାନରେ କଂଗ୍ରେସର ନିର୍ବାଚିତ ପ୍ରତିନିଧିମାନେ ମନ୍ତ୍ରୀ ପରିଷଦ ଗଠନ କଲେ ।

ପ୍ରଦେଶର ମନ୍ତ୍ରୀପରିଷଦଗୁଡ଼ିକ ଉପରେ ଯଥାଯୁକ୍ତ ନିୟନ୍ତ୍ରଣ ରକ୍ଷା କରିବା ପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟି ଗୋଟିଏ କ୍ଷୁଦ୍ର ତିନିଜଣିଆ ପାର୍ଲାମେଣ୍ଟାରୀ ସବ୍‌କମିଟି ଗଠନ କରିଥିଲେ । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍ ଥିଲେ ତା'ର ଚେୟାରମ୍ୟାନ୍ ଓ ମୌଲାନା ଅବୁଲ୍ କଲାମ ଆଜାଦ୍ ଏବଂ ରାଜେନ୍ଦ୍ର ପ୍ରସାଦ ଥିଲେ ଏହାର ସଭ୍ୟ । ମନ୍ତ୍ରୀମାନଙ୍କୁ ଆବଶ୍ୟକତା ଅନୁଯାୟୀ ନିର୍ଦ୍ଦେଶ ଦେବାକୁ ଏହି ସବ୍‌କମିଟିକୁ କ୍ଷମତା ଦିଆଯାଇଥିଲା । ଅନେକେ ସମାଲୋଚନା କରିଥିଲେ ଯେ, ଏହାଦ୍ୱାରା କଂଗ୍ରେସ ଦଳ ଗଣତନ୍ତ୍ରକୁ ହାସ୍ୟାସ୍ପଦ କରୁଛି । ତା'ର ଜବାବରେ ଜଓ୍ୱାହରଲାଲ୍ ନେହ୍ରୁ କହିଥିଲେ ଯେଉଁ ନିର୍ବାଚକ ଜନତା କଂଗ୍ରେସ ଦଳକୁ ସେମାନଙ୍କର ସମର୍ଥନ ଜଣାଇଛନ୍ତି ସେମାନଙ୍କ ପ୍ରତି କଂଗ୍ରେସର ଗୁରୁଦାୟିତ୍ୱ ଅଛି । ଏଣୁ ଜନତାଙ୍କ ହିତ ଦୃଷ୍ଟିରୁ ମନ୍ତ୍ରୀମାନଙ୍କର କାର୍ଯ୍ୟଧାରା କଂଗ୍ରେସ କର୍ତ୍ତୃପକ୍ଷ ନିୟନ୍ତ୍ରଣ କରିବା ଯଥାର୍ଥ । କଂଗ୍ରେସ ମନ୍ତ୍ରୀମାନେ ଦଳର ନିର୍ଦ୍ଧାରିତ ନିର୍ବାଚନୀ ଇସ୍ତାହାର କାର୍ଯ୍ୟକାରୀ କରିବାକୁ ଯାଇ ଚାଷୀ ଓ କୃଷକମାନଙ୍କର ସୁବିଧା ପାଇଁ ଜମିଜମା ଆଇନ୍‌ରେ ଅନେକ ପରିବର୍ତ୍ତନ କରିବାକୁ ଉଦ୍ୟମ କରିଥିଲେ । କିନ୍ତୁ ନୂତନ ଶାସନ ବିଧିର ପରିସର ମଧ୍ୟରେ ଜମିଜମା ଆଇନ୍‌ରେ କୌଣସି ମୌଳିକ ପରିବର୍ତ୍ତନ କରିବା ସମ୍ଭବ ନଥିଲା । ଏପରିକି ଗାନ୍ଧିଜୀଙ୍କ ନିର୍ଦ୍ଦେଶିତ ନିଶାନିବାରଣ ଓ ମୌଳିକ ଶିକ୍ଷାନୀତି ପ୍ରତି ରାଜ୍ୟରେ କଂଗ୍ରେସ ମନ୍ତ୍ରୀମାନେ ଉତ୍ସାହର ସହ ପ୍ରବର୍ତ୍ତନ କରିଥିଲେ । ମଧ୍ୟପ୍ରଦେଶରେ ମନ୍ତ୍ରୀ ପରିଷଦ ମଧ୍ୟରେ ବିବାଦ ଉପୁଜିବା ହେତୁ ପାର୍ଲାମେଣ୍ଟାରୀ ବୋର୍ଡ଼ ମୁଖ୍ୟମନ୍ତ୍ରୀ ଏନ୍.ବି. ଖାରେଙ୍କୁ ବିଦାୟ ଦେଇ ତାଙ୍କ ସ୍ଥାନରେ ପଣ୍ଡିତ ରବିଶଙ୍କର ଶୁକ୍ଳଙ୍କୁ ମୁଖ୍ୟମନ୍ତ୍ରୀ ପଦ ପାଇଁ ଦଳର ନେତା ରୂପେ ନିଯୁକ୍ତ କରିଥିଲେ ।

ଏହିସବୁ ଲୋକହିତକର କାର୍ଯ୍ୟକ୍ରମ ସହିତ କଂଗ୍ରେସ ମନ୍ତ୍ରିମଣ୍ଡଳମାନେ ଆଇନ୍ ଶୃଙ୍ଖଳା ରକ୍ଷା କରିବା ପାଇଁ ଯଥାସମ୍ଭବ ଉଦ୍ୟମ କରୁଥିଲେ । ମାନ୍ଦ୍ରାଜରେ ଉତ୍ତେଜନାମୂଳକ ଭାଷଣ ଦେଇଥିବା ହେତୁ ପ୍ରଧାନମନ୍ତ୍ରୀ ରାଜଗୋପାଳଚାରୀଙ୍କ

ନିର୍ଦ୍ଦେଶରେ କମ୍ୟୁନିଷ୍ଟ ନେତା ସୋଲୀ ବଟଲୀଓ୍ୱାଲାଙ୍କୁ ଗିରଫ କରାଯାଇଥିଲା । ଯେଉଁଥିପାଇଁ ରାଜଗୋପାଳଚାରୀଙ୍କର ଏହି କାର୍ଯ୍ୟର ପ୍ରତିବାଦ କରି ଦେଶବ୍ୟାପୀ ଯୁବ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସାଧାରଣତଃ ପ୍ରଦେଶର ମନ୍ତ୍ରୀମାନଙ୍କ କାର୍ଯ୍ୟରେ ସ୍ଥାନୀୟ ଗଭର୍ଣ୍ଣରମାନେ ମୋଟାମୋଟି ହସ୍ତକ୍ଷେପ କରୁନଥିଲେ । କେବଳ ଗୋଟିଏ ପ୍ରଶ୍ନ ଉପରେ ଯୁକ୍ତ ପ୍ରଦେଶ ଓ ବିହାରର ମନ୍ତ୍ରିମଣ୍ଡଳ ସହିତ ଗଭର୍ଣ୍ଣରଙ୍କ ମତଭେଦ ଆରମ୍ଭ ହୋଇଥିଲା । କ୍ଷମତାକୁ ଆସିବା କିଛିଦିନ ପରେ ଯୁକ୍ତ ପ୍ରଦେଶ ଓ ବିହାରର କଂଗ୍ରେସ ସରକାରମାନେ ଜେଲ୍ ଭୋଗୁଥିବା ରାଜବନ୍ଦୀମାନଙ୍କୁ ଅବିଳମ୍ବେ ମୁକ୍ତି ଦେବା ପାଇଁ ସ୍ଥିର କରିଥିଲେ । କିନ୍ତୁ ଲିନ୍‌ଲିଥ୍‌ଗୋଙ୍କ ନିର୍ଦ୍ଦେଶରେ ଗଭର୍ଣ୍ଣରମାନେ ଏ ନିଷ୍ପତ୍ତିରେ ସମ୍ମତି ଦେଲେନାହିଁ । ଫଳତଃ ଉପରୋକ୍ତ ଦୁଇ ପ୍ରଦେଶର ମୁଖ୍ୟମନ୍ତ୍ରୀମାନେ ଇସ୍ତଫା ପ୍ରଦାନ କରିଥିଲେ ।  ପରିଶେଷରେ ଉଭୟପକ୍ଷ ମଧ୍ୟରେ ଏକରକମର ମିଳାମିଶା ପାଇଁ ଉଦ୍ୟମ ଆରମ୍ଭ ହେଲା । ବନ୍ଦୀମାନେ ଏକାଦିନେ ମୁକ୍ତ ନହୋଇ ଦୁଇତିନି ସପ୍ତାହ ମଧ୍ୟରେ ଜଣଜଣ କରି ମୁକ୍ତ ହେଲେ ଓ ଦୁଇ ପ୍ରଦେଶର ପ୍ରଧାନମନ୍ତ୍ରୀମାନେ ଇସ୍ତଫା ପତ୍ର ଫେରାଇ ନେଲେ ।



# କେନ୍ଦ୍ରରେ ରାଷ୍ଟ୍ରସଂଘ ପ୍ରତିଷ୍ଠା ବିଫଳ ଓ କଂଗ୍ରେସ-ମୁସ୍‌ଲିମ୍ ଲିଗ୍ ବିବାଦ ଘନୀଭୂତ

ଦେଶୀୟ ରାଜାମାନଙ୍କୁ ନେଇ କେନ୍ଦ୍ରରେ ରାଷ୍ଟ୍ରସଂଘ ଗଠନ କରିବାର ଯୋଜନା କାର୍ଯ୍ୟକାରୀ ହେଲା ନାହିଁ । ରାଜନୈତିକ ବିଭାଗର କର୍ମକର୍ତ୍ତାମାନେ ଲିନ୍‌ଲିଥ୍‌ଗୋଙ୍କୁ ପରାମର୍ଶ ଦେଇଥିଲେ ଯେ, ଦେଶୀୟ ରାଜ୍ୟଗୁଡ଼ିକରେ ଅବସ୍ଥାପିତ କେନ୍ଦ୍ର ସରକାରଙ୍କ ପ୍ରତିନିଧିମାନଙ୍କୁ ଏହି କାର୍ଯ୍ୟରେ ନିଯୁକ୍ତ କଲେ ସେମାନେ ସହଜରେ ଏ ଦାୟିତ୍ୱ ନିର୍ବାହ କରିପାରିବେ । ରାଜାମାନଙ୍କର ଦୋଷ ଓ ଦୁର୍ବଳତା ସବୁ ସେମାନଙ୍କୁ ଜଣାଅଛି । ସେମାନଙ୍କ ଉପରେ ଚାପ ପ୍ରୟୋଗ କରି ପ୍ରତିନିଧିମାନେ ରାଜା ଓ ନବାବମାନଙ୍କର ସମ୍ମତି ସହଜରେ ହାସଲ କରିପାରିବେ । କିନ୍ତୁ ଲିନ୍‌ଲିଥ୍‌ଗୋ ସେ ପରାମର୍ଶ ଗ୍ରହଣ ନକରି ରାଜାମାନଙ୍କୁ ଭେଟିବା ପାଇଁ ଗୋଟିଏ ତିନିଜଣିଆ ଅଫିସର କମିଟି ଗଠନ କଲେ । ଯେଉଁମାନେ କି ରାଜାମାନଙ୍କୁ ଭେଟି ୧୯୩୫ ନୂଆ ଭାରତ ଶାସନ ଆଇନ୍‌ର ପରିସର ସମ୍ପର୍କରେ ସେମାନଙ୍କୁ ଅବଗତ କରାଇଥିଲେ । କିନ୍ତୁ ରାଷ୍ଟ୍ରସଂଘରେ ଯୋଗଦେବା ପାଇଁ କୌଣସି ପ୍ରକାର ଚାପ ପ୍ରୟୋଗ କରି ନଥିଲେ । ଏହାର ଫଳ ହେଲା ଯେ, ରାଜାମାନେ ନୀରବ ରହିଲେ । ଲିନ୍‌ଲିଥ୍‌ଗୋ ସେମାନଙ୍କୁ ସ୍ପଷ୍ଟ କହିଲେ ନାହିଁ ଯେ, ଭାରତର ଜନମତ ବିରୁଦ୍ଧରେ ତିଷ୍ଠି ରହିବା ପାଇଁ କେନ୍ଦ୍ର ସରକାରରେ ଯୋଗଦେବା ସେମାନଙ୍କର ଶେଷ ଆଶ୍ରୟ ।

ଏହି ସମୟରେ ପଡ଼ୋଶୀ କଂଗ୍ରେସ ଶାସିତ ଅଞ୍ଚଳରେ ଚାଷୀ ଓ ଶ୍ରମିକ ଆନ୍ଦୋଳନ ଜୋର୍‌ସୋର୍‌ରେ ଆରମ୍ଭ ହୋଇଥାଏ ଏବଂ ଏହାର ପ୍ରଭାବରେ ଦେଶୀୟ ରାଜ୍ୟର ପ୍ରଜାମାନେ ମଧ୍ୟ ସଂଗଠିତ ହୋଇ ରାଜ-ଅତ୍ୟାଚାର ବିରୁଦ୍ଧରେ ଆନ୍ଦୋଳନ କରିବାକୁ ଆରମ୍ଭ କରନ୍ତି । ମହୀଶୂର, ହାଇଦ୍ରାବାଦ୍ ଓ କାଶ୍ମୀରଠାରୁ ଆରମ୍ଭ କରି ଓଡ଼ିଶାର ଛୋଟଛୋଟ ଗଡ଼ଜାତମାନଙ୍କରେ ଏହି ଆନ୍ଦୋଳନ ଆତ୍ମପ୍ରକାଶ କଲା ।

ଅବଶ୍ୟ ବ୍ରିଟିଶ ସରକାର ରାଜାମାନଙ୍କୁ ସାମରିକ ସାହାଯ୍ୟ ଦେଇ, ଏସବୁ ଆନ୍ଦୋଳନକୁ ଦମନ କରିବାକୁ ଉଦ୍ୟମ କରିଥିଲେ । କିନ୍ତୁ ଗଡ଼ଜାତ ପ୍ରଜା ଆନ୍ଦୋଳନ କ୍ରମେ ଅଧିକ ଶକ୍ତିଶାଳୀ ହେଲା । ଗାନ୍ଧିଜୀ ଏଥିରେ ବିଶେଷ ଆଗ୍ରହୀ ନଥିଲେ । ମାତ୍ର ଜଓ୍ୱାହରଲାଲ୍ ନେହରୁ ଓ ଅନ୍ୟ କଂଗ୍ରେସ ନେତାମାନେ ଏହି ଆନ୍ଦୋଳନକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରୁଥିଲେ । ୧୯୩୮ କଂଗ୍ରେସ ଅଧିବେଶନରେ ଗୋଟିଏ ପ୍ରସ୍ତାବ ଗୃହୀତ ହେଲା ଯେ, ରାଷ୍ଟ୍ରସଂଘରେ ଯୋଗଦେବା ପାଇଁ ଦେଶୀୟ ରାଜ୍ୟର ପ୍ରତିନିଧିମାନେ ରାଜାଙ୍କ ଦ୍ୱାରା ମନୋନୀତ ନହୋଇ ଭାରତର ଅନ୍ୟ ଅଞ୍ଚଳ ପରି ଜନସାଧାରଣଙ୍କ ଦ୍ୱାରା ନିର୍ବାଚିତ ହେବା ଆବଶ୍ୟକ । ତାହା ନହେଲେ ରାଷ୍ଟ୍ରସଂଘ କଂଗ୍ରେସ ପକ୍ଷରେ ଗ୍ରହଣୀୟ ହେବନାହିଁ । ଏଣେ ମୁସ୍‌ଲିମ୍ ଲିଗ୍ ମଧ ରାଷ୍ଟ୍ରସଂଘରେ ଯୋଗଦେବାର ପକ୍ଷପାତୀ ନଥିଲେ । ସେମାନେ ଆଶଙ୍କା କରୁଥିଲେ ଯେ କେନ୍ଦ୍ରରେ ହିନ୍ଦୁମାନେ ଏକଜୁଟ୍ ହେଲେ ମୁସଲମାନମାନଙ୍କର ସବୁ ଆଶା ଆକାଂକ୍ଷା ଧୂଳିସାତ୍ ହେବ । ଲିନ୍‌ଲିଥ୍‌ଗୋ ପରିସ୍ଥିତିର ସୁଯୋଗ ନେଇ କେନ୍ଦ୍ରରେ ଏକଗ୍ଛଟିଆ ବ୍ରିଟିଶ ଶାସନ ଗ୍ଲୁ ରଖିଲେ ।

ପୂର୍ବରୁ କୁହାଯାଇଛି ଯେ, ୧୯୩୭ ମାର୍ଚ୍ଚ ନିର୍ବାଚନରେ ମୁସ୍‌ଲିମ୍‌ଲିଗ୍ କୌଣସି ସଫଳତା ହାସଲ କରିପାରି ନଥିଲା । ଏପରିକି ମୁସଲ୍‌ମାନ୍‌ବହୁଳ ସିନ୍ଧ୍ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଲିଗ୍ ଗୋଟିଏ ମାତ୍ର ସ୍ଥାନ ପାଇ ନଥିଲା ଏବଂ ପଞ୍ଜାବରେ ମାତ୍ର ଗୋଟିଏ ସ୍ଥାନ ଲାଭ କରିଥିଲା । ଯେଉଁ ପ୍ରଦେଶ ଗୁଡ଼ିକରେ କଂଗ୍ରେସ କ୍ଷମତା ହାସଲ କରିଥିଲା, ସେସବୁ ପ୍ରଦେଶରେ ମଧ ସଂରକ୍ଷିତ ମୁସଲମାନ ନିର୍ବାଚନ ମଣ୍ଡଳୀରେ ମୁସ୍‌ଲିମ୍ ଲିଗ୍ ସଫଳତା ଥିଲା ନଗଣ୍ୟ । ଜୁନ୍‌ମାସ ଶେଷଆଡ଼କୁ ଯେତେବେଳେ ମନ୍ତ୍ରିତ୍ୱ ଗ୍ରହଣ ନିକଟେଇ ଆସୁଥିଲା, ସେହି ସମୟରେ ଯୁକ୍ତ ପ୍ରଦେଶର ମୁସ୍‌ଲିମ୍ ଲିଗ୍ ନେତା ଖଲିକୁଜ୍ ଜାମନ୍ ଓ ନବାବ ଇସ୍‌ମାଇଲ୍ ଖାଁ କଂଗ୍ରେସ ନେତା ମୌଲାନା ଅବୁଲ୍ କଲାମ୍ ଆଜାଦଙ୍କ ମଧରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ ସମ୍ପର୍କରେ ଆଲୋଚନା ହେଲା । ଆଜାଦ୍ ପ୍ରସ୍ତାବ ଦେଲେ ଯେ ଲିଗ୍ ଯଦି ନିଜକୁ ଆନୁଷ୍ଠାନିକ ଭାବରେ ଭାଙ୍ଗିଦିଏ ଓ କଂଗ୍ରେସ କାର୍ଯ୍ୟକ୍ରମକୁ ଗ୍ରହଣ କରେ, ତାହା ହେଲେ ଖଲିକୁଜ୍ ଜାମନ୍ ଓ ନବାବ୍ ଇସ୍‌ମାଇଲ୍ ଖାଁଙ୍କୁ ଯୁକ୍ତ ପ୍ରଦେଶ ମନ୍ତ୍ରିମଣ୍ଡଳରେ ଗ୍ରହଣ କରାଯାଇପାରେ । ଲିଗ୍ ସଦସ୍ୟମାନେ ଏହି କଠୋର ସର୍ତ୍ତଗୁଡ଼ିକୁ ଗ୍ରହଣ କଲେନାହିଁ ଓ ମହମ୍ମଦ ଅଲ୍ଲୀ ଜିନ୍ନା କଂଗ୍ରେସ ସହିତ ମିଳାମିଶା ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ ।

ସିନ୍ଧୁ, ପଞ୍ଜାବ ଓ ବଙ୍ଗଳାକୁ ଛାଡ଼ି ଅନ୍ୟ ପ୍ରଦେଶଗୁଡ଼ିକରେ କଂଗ୍ରେସ କ୍ଷମତା ଅଧିକାରୀ ହେବାରୁ ସେହିସବୁ ରାଜ୍ୟରେ ମୁସ୍‌ଲିମ୍ ଲିଗ୍ ଉଗ୍ର ସାଂପ୍ରଦାୟିକତାର ପ୍ରଚାରକ ରୂପେ ଅବତୀର୍ଣ୍ଣ ହେଲା । 'ଇସ୍‌ଲାମ୍-ବିପଦଗ୍ରସ୍ତ' ଏହା ଥିଲା ସେମାନଙ୍କର ମୁଖ୍ୟ ଧ୍ୱନି । ଜନସାଧାରଣଙ୍କ ପାଇଁ ମୁସ୍‌ଲିମ୍ ଲିଗ୍‌ର କୌଣସି ଅର୍ଥନୈତିକ କାର୍ଯ୍ୟକ୍ରମ ନଥିଲା ଏବଂ ଲିଗ୍‌ର ନେତା ଥିଲେ ନବାବ ଓ ତାଲୁକଦାରମାନେ । ଏହାର ଦୁଇଶହ ବର୍ଷ ପୂର୍ବରୁ ମୋଗଲ ବାଦଶାହମାନେ ସମଗ୍ର ଭାରତରେ ରାଜତ୍ୱ କରୁଥିଲେ । ଏବେ କଂଗ୍ରେସ ଶାସନରେ ମୁସଲମାନ୍‌ମାନଙ୍କୁ ହିନ୍ଦୁଙ୍କ ଅଧୀନରେ ଦାସତ୍ୱ ସ୍ୱୀକାର କରିବାକୁ ହେବ, ଏହି ପ୍ରକାରର ପରିପ୍ରଚାର କରି ଲିଗ୍ ନେତା ଜିନ୍ନା ମୁସ୍‌ଲିମ୍ ଜନସାଧାରଣଙ୍କୁ ବିଭ୍ରାନ୍ତ କରିବାରେ ଅନେକାଂଶରେ ସମର୍ଥ ହୋଇଥିଲେ । ଏହି ସମୟରେ ବିଭିନ୍ନ ପ୍ରଦେଶଗୁଡ଼ିକରେ ୨୮ଟି ସାଂପ୍ରଦାୟିକ ଦଙ୍ଗା ସଂଘଟିତ ହୋଇଥିଲା । କଂଗ୍ରେସ ନେତାମାନେ ଅନୁଭବ କରିଥିଲେ, ଏସବୁ ସଂଘର୍ଷ ମୂଳରେ ଜିନ୍ନାଙ୍କର କାରସାଦି ନିହିତ ଅଛି ।

ଏଥିପୂର୍ବରୁ ମୁସ୍‌ଲିମ୍ ଲିଗ୍ ଥିଲା ନବାବ, ଜମିଦାର ଓ ତାଲୁକଦାର ଆଦି ସମ୍ଭ୍ରାନ୍ତ ଶ୍ରେଣୀର ଏକ ଅନୁଷ୍ଠାନ । କିନ୍ତୁ ନିର୍ବାଚନରେ ପରାଜୟ ପରେ ଜିନ୍ନା ଲିଗ୍‌ର ଦୁର୍ବଳତା ବିଷୟରେ ସଚେତ ହେଲେ । କଂଗ୍ରେସ ପରି ଲିଗ୍‌ରେ ସାଧାରଣ ଲୋକଙ୍କୁ ସଦସ୍ୟ କରିବାର ପରମ୍ପରା ନଥିଲା । ଜିନ୍ନା କଂଗ୍ରେସ୍‌କୁ ଅନୁକରଣ କରି ମାତ୍ର ଦୁଇଅଣା ସଭ୍ୟ ଚାନ୍ଦା ରଖି ସାଧାରଣ ମୁସ୍‌ଲିମ୍ ଲୋକଙ୍କୁ ସଭ୍ୟ ଶ୍ରେଣୀଭୁକ୍ତ କରିବା ପାଇଁ ନିର୍ଦ୍ଦେଶ ଦେଲେ । କେବଳ ଯୁକ୍ତ ପ୍ରଦେଶରେ ତିନିମାସ ମଧ୍ୟରେ ଏକଲକ୍ଷ ସଭ୍ୟ ସଂଗ୍ରହ କରାଯାଇଛି ଓ ଶହେ ସତୁରିଟି ନୂତନ ଶାଖା ଅନୁଷ୍ଠାନ ଗଠନ କରାଯାଇଛି ବୋଲି ଘୋଷଣା କରାଗଲା । ଲିଗ୍ ନେତାମାନେ କଂଗ୍ରେସ ମନ୍ତ୍ରୀମାନଙ୍କ ଦ୍ୱାରା ମୁସଲମାନ୍‌ମାନେ କିପରି ନିର୍ଯ୍ୟାତିତ ହେଉଛନ୍ତି, ତା'ର କିମ୍ଭୂତକିମାକାର ଚିତ୍ର ପ୍ରଚାର କଲେ । ଏପରିକି ବଙ୍ଗଳାର ପ୍ରଧାନମନ୍ତ୍ରୀ ଫଜଲ୍-ଉଲ୍-ହକ୍ "କଂଗ୍ରେସ ଅଧୀନରେ ମୁସ୍‌ଲିମ୍ ନିର୍ଯ୍ୟାତନା" ଶୀର୍ଷକ ଏକ ପୁସ୍ତକ ପ୍ରକାଶ କରି ତହିଁରେ ନାନାପ୍ରକାରର ମିଥ୍ୟା ଅଭିଯୋଗ ବର୍ଣ୍ଣନା କରିଥିଲେ । ମୁସଲମାନ୍ ଧର୍ମର ଅବମାନନା, ଗୋହତ୍ୟା ଉପରେ ନିଷେଧ ଏବଂ ମସ୍‌ଜିଦ୍‌ମାନଙ୍କରେ 'ଆଜାନ୍' ଡାକିବା ଉପରେ କଟକଣା ଆଦି ନାନା ପ୍ରକାର କପୋଳକଳ୍ପିତ ପ୍ରଚାର ଏହି ପୁସ୍ତକରେ ପରିବେଷିତ ହୋଇଥିଲା

ଏବଂ ତାହାକୁ ଭିତ୍ତିକରି ସାଧାରଣ ଲିଗ୍ କର୍ମୀମାନେ ବସ୍ତି ବସ୍ତିରେ ଉତ୍ତେଜନାମୂଳକ ପ୍ରଚାର କରୁଥିଲେ ।

ମୁସ୍‌ଲିମ୍ ଲିଗ୍‌ର ଏହି ଉଦ୍ଭଟ କାର୍ଯ୍ୟାବଳୀ କଂଗ୍ରେସ ନେତାମାନଙ୍କୁ ବିସ୍ମିତ କରିଥିଲା । ୧୯୩୮ ମସିହାରେ ଗାନ୍ଧିଜୀ ଓ ତତ୍‌କାଳୀନ କଂଗ୍ରେସ ସଭାପତି ସୁଭାଷ ଚନ୍ଦ୍ର ବୋଷ ଜିନ୍ନାଙ୍କୁ ସାକ୍ଷାତ କରିଥିଲେ । କିନ୍ତୁ ସେମାନଙ୍କର ଉଦ୍ୟମ ନିଷ୍ଫଳ ହେଲା । ଜିନ୍ନା ଯିଏକି ଅତୀତରେ ଇଂରେଜଙ୍କ ବିରୁଦ୍ଧରେ କଂଗ୍ରେସର ସହଯାତ୍ରୀ ଥିଲେ, ସେ ଏବେ ଅତି ପ୍ରଚଣ୍ଡ ଓ ଭୟଙ୍କର କଂଗ୍ରେସ ବିରୋଧୀ ରୂପେ ଉଭା ହେଲେ । ସାଂପ୍ରଦାୟିକ ବିବାଦ ଛଡ଼ା କୌଣସି ସାମାଜିକ ବା ଅର୍ଥନୈତିକ କାର୍ଯ୍ୟକ୍ରମ ଜିନ୍ନାଙ୍କୁ ଆକୃଷ୍ଟ କରୁନଥିଲା ।

ଏହି ସମୟରେ ସୁଭାଷ ବୋଷଙ୍କ ଆଗମନଜନିତ ପରିସ୍ଥିତିରେ କଂଗ୍ରେସ ଦଳ ମଧ୍ୟରେ ଅନ୍ତର୍ବିବାଦ ଆରମ୍ଭ ହୋଇଥିଲା । ଚିକିତ୍ସା ପାଇଁ କେତେବର୍ଷ ୟୁରୋପରେ ରହିବା ପରେ ସୁଭାଷ ଚନ୍ଦ୍ର ବୋଷ ୧୯୩୮ ମସିହାରେ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ । ସେ କରାଚୀରେ ଅବତରଣ କରିବା ମାତ୍ରେ ଗାନ୍ଧିଜୀ ଏକ ତାରବାର୍ତ୍ତା ପଠାଇ ତାଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇଥିଲେ । ସେହି ବର୍ଷ ଗାନ୍ଧିଜୀଙ୍କ ସମର୍ଥନ କ୍ରମେ ସେ ହରିପୁରାଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ସଭାପତି ନିର୍ବାଚିତ ହେଲେ । ବହୁ କଂଗ୍ରେସ ନେତା ବିଚାରୁଥିଲେ, ବ୍ରିଟିଶ ସରକାର ସୁଭାଷଙ୍କୁ ଯେଉଁ ଭାବରେ ନିର୍ଯ୍ୟାତିତ କରିଛନ୍ତି, ଅନ୍ତତଃ ତା'ର ଜବାବରେ ତାଙ୍କୁ ସମ୍ମାନିତ କରିବା ଉଚିତ । ଅବଶ୍ୟ ଗାନ୍ଧିଜୀଙ୍କର ସୁଭାଷଙ୍କ ସହିତ ବିଶେଷ ଆତ୍ମୀୟତା ନଥିଲା । ପ୍ରଥମ ଅବସ୍ଥାରେ ସେ ସୁଭାଷଙ୍କୁ ଆପଣାର କରିବାକୁ ଉଦ୍ୟମ କରିଥିଲେ ଏବଂ ଚିଠିପତ୍ରରେ ତାଙ୍କୁ ପୁତ୍ର ଭାବରେ ସମ୍ବୋଧନ କରୁଥିଲେ । କିନ୍ତୁ ପରେ ସେ ଅନୁଭବ କଲେ ଯେ, ସୁଭାଷଙ୍କ ମନୋବୃତ୍ତି ସଂପୂର୍ଣ୍ଣ ଭିନ୍ନ ରୁଚିର ଏବଂ ରାଜନୈତିକ ମତଭେଦକୁ ବାଦଦେଇ ବ୍ୟକ୍ତିଗତ ସ୍ତରରେ ମଧ୍ୟ ତାଙ୍କ ଉପରେ ଆସ୍ଥା ରଖାଯାଇ ପାରିବ ନାହିଁ ।

ଜୱାହରଲାଲଙ୍କ ସହିତ ଗାନ୍ଧିଜୀଙ୍କ ସମ୍ପର୍କ ଥିଲା ସଂପୂର୍ଣ୍ଣ ଭିନ୍ନ ପ୍ରକାରର । ଅସଂଖ୍ୟ ବ୍ୟାପାରରେ ଗୁରୁତର ମତଭେଦ ଥିଲେ ମଧ୍ୟ, ଜୱାହରଲାଲ୍‌ଙ୍କ ନିଷ୍ଠା ଉପରେ ତାଙ୍କର ଗଭୀର ଆସ୍ଥା ଥିଲା । ଏହି ସମୟରେ କଂଗ୍ରେସ ସେବା ଦଳର ମୁଖ୍ୟ ପରିଚାଳକ ଏନ୍.ଏସ୍. ହାର୍ଦ୍ଦିକରଙ୍କୁ ଗାନ୍ଧିଜୀ ଗୋଟିଏ ପତ୍ରରେ ଲେଖିଥିଲେ, "ଜୀବନର ଏ ମୁହୂର୍ତ୍ତରେ ମୁଁ ଜୱାହରଲାଲ୍‌ଙ୍କ ଅନୁମୋଦନ ଓ ସାହଚର୍ଯ୍ୟ ବିନା କୌଣସି

ନୂତନ ରାଜନୈତିକ ପଦକ୍ଷେପ ନେବାକୁ ଅକ୍ଷମ ।" ସୁଭାଷ ବୋଷ କଂଗ୍ରେସ ସଭାପତି ଥିବା ସମୟରେ ଭାରତର ରାଜନୀତିରେ ଏକ ପ୍ରକାରର ସ୍ଥାଣୁ ଅବସ୍ଥା ସୃଷ୍ଟି ହୋଇଥିଲା । ମହାତ୍ମା ଗାନ୍ଧି ନିଜକୁ ରଚନାତ୍ମକ କାର୍ଯ୍ୟରେ ଆବଦ୍ଧ ରଖୁଥିଲେ । ବଙ୍ଗଳା, ପଞ୍ଜାବ, ସିନ୍ଧୁକୁ ବାଦ୍‌ଦେଇ ଅନ୍ୟ ପ୍ରଦେଶମାନଙ୍କରେ କଂଗ୍ରେସ ମନ୍ତ୍ରୀଙ୍କର ଶାସନ ଚାଲିଥିଲା ଏବଂ ସେମାନଙ୍କର କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରୁଥିଲେ ପାର୍ଲାମେଣ୍ଟାରୀ ବୋର୍ଡ଼, ଯାହାର ସର୍ବୋଚ୍ଚ କର୍ତ୍ତା ଥିଲେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ । ପଟେଲଙ୍କ ସହ ସୁଭାଷଙ୍କର ସୌହାର୍ଦ୍ଦ୍ୟ ନଥିଲା । ଏ ପରିସ୍ଥିତିରେ କୌଣସି ନୂତନ କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରିବା ବୋଷଙ୍କ ପକ୍ଷରେ ସମ୍ଭବ ହେଲାନାହିଁ । ୧୯୩୯ ମସିହା ପ୍ରାରମ୍ଭରେ ତ୍ରିପୁରୀଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେଲା । ପୁନର୍ବାର ସଭାପତି ହେବା ପାଇଁ ସୁଭାଷଙ୍କଠାରୁ ପ୍ରସ୍ତାବ ଆସିଲା । କଂଗ୍ରେସର ପୁରାତନ ନେତୃମଣ୍ଡଳୀ ରାଜେନ୍ଦ୍ର ପ୍ରସାଦ ବା ମୌଲାନା ଆଜାଦଙ୍କୁ ସଭାପତି ପଦରେ ଅଧିଷ୍ଠିତ କରିବାକୁ ଚାହୁଁଥିଲେ । କିନ୍ତୁ ସୁଭାଷ ବୋଷ ନିଜ ନିଷ୍ପତ୍ତିରେ ଅଟଳ । ଦକ୍ଷିଣପନ୍ଥୀ ନେତାମାନେ ଆନ୍ଧ୍ରପ୍ରଦେଶର ପଟ୍ଟାଭି ସୀତାରାମାୟାଙ୍କୁ ପ୍ରାର୍ଥୀ ମନୋନୀତ କଲେ । ଏ ମନୋନୟନ ପଛରେ ଥିଲା ଗାନ୍ଧିଜୀଙ୍କର ପୂର୍ଣ୍ଣ ସମର୍ଥନ । ସାଧାରଣ ନିର୍ବାଚନ ଲଢ଼େଇରେ ଯେଉଁ ପ୍ରକାରର ଅପପ୍ରଚାର ଓ କୁତ୍ସାରଟନା ଆଦି କରାଯାଏ, ଏ ନିର୍ବାଚନ ସେଥିରୁ ମୁକ୍ତ ନଥିଲା କିନ୍ତୁ ଶେଷରେ ସୁଭାଷ ଚନ୍ଦ୍ର ବୋଷ ନିର୍ବାଚନରେ ଜୟଲାଭ କଲେ । ଗାନ୍ଧିଜୀ ଘୋଷଣା କଲେ ପଟ୍ଟାଭିଙ୍କର ପରାଜୟ ତାଙ୍କର ବ୍ୟକ୍ତିଗତ ପରାଜୟ ।

ଗାନ୍ଧିଜୀଙ୍କର ଉପରୋକ୍ତ ଘୋଷଣା କଂଗ୍ରେସ ସଂଗଠନ ମଧ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କଲା । ତ୍ରିପୁରୀ ଅଧିବେଶନରେ ଗାନ୍ଧି-ସମର୍ଥକମାନଙ୍କ ପକ୍ଷରୁ ଏକ ପ୍ରସ୍ତାବ ଆଗତ ହେଲା ଯେ, କଂଗ୍ରେସ ସଭାପତି ମହାତ୍ମାଗାନ୍ଧିଙ୍କ ଅନୁମୋଦନ କ୍ରମେ କାର୍ଯ୍ୟକାରୀ କମିଟି ଗଠନ କରିବେ । କିନ୍ତୁ ମହାତ୍ମାଗାନ୍ଧି ଏ ଦାୟିତ୍ୱ ନେବାକୁ ଅନିଚ୍ଛା ପ୍ରକାଶ କଲେ । ଏ ଅଡୁଆ ପରିସ୍ଥିତିରୁ ଉଦ୍ଧୁରିବାର କୌଣସି ଉପାୟ ନ ଦେଖି ସୁଭାଷ ବୋଷ ବାଧ୍ୟ ହୋଇ ସଭାପତି ପଦରୁ ଇସ୍ତଫା ଦେଲେ ଏବଂ କିଛିଦିନ ପରେ "ଫରୱାର୍ଡ଼ ବ୍ଲକ୍" ନାମରେ ଏକ ନୂତନ ସଂସ୍ଥା ଗଠନ କଲେ । ବିଶୃଙ୍ଖଳାଜନିତ କାରଣରୁ ସୁଭାଷ ବୋଷଙ୍କୁ କଂଗ୍ରେସରୁ ବିତାଡ଼ିତ କରାଗଲା ଓ ତାଙ୍କ ସ୍ଥାନରେ ରାଜେନ୍ଦ୍ର ପ୍ରସାଦ କଂଗ୍ରେସର ସଭାପତି ନିର୍ବାଚିତ ହେଲେ ।



# ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ
# ଲିଗ୍‌ର ଭାରତ ବିଭାଜନ ଯୋଜନା

ଭାରତର ଅର୍ଦ୍ଧାଧିକ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମାନେ ସୁରୁଖୁରୁରେ କାର୍ଯ୍ୟନିର୍ବାହ କରୁଥିବା ସମୟରେ ୧୯୩୯ ମସିହା ସେପ୍ଟେମ୍ବର ୩ ତାରିଖ ଦିନ ବ୍ରିଟିଶ ସରକାରଙ୍କ ପ୍ରଧାନମନ୍ତ୍ରୀ ନେଭିଲ ଚେମ୍ବରଲେନ୍ ହିଟ୍‌ଲର୍ ଶାସିତ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ହିଟ୍‌ଲର୍ ପୋଲାଣ୍ଡ ଆକ୍ରମଣ କରିବା ହେତୁ ଫ୍ରାନ୍ସ ସହିତ ମିଶି ବ୍ରିଟିଶ ସରକାର ଏ ପଦକ୍ଷେପ ନେଇଥିଲେ । ସେହିଦିନ ଦିଲ୍ଲୀରେ ଥାଇ ଭାଇସ୍‌ରାୟ ଲିନ୍‌ଲିଥିଗୋ ଭାରତକୁ ଯୁଦ୍ଧରେ ଭାଗୀଦାର କରି ଏକ ଘୋଷଣାନାମା ପ୍ରକାଶ କଲେ ଓ ଭାରତରେ ଜରୁରୀକାଳୀନ ଅବସ୍ଥା ସୃଷ୍ଟି ହୋଇଛି ବୋଲି ଇସ୍ତାହାର ଜାରୀ କଲେ । ଏହି ଘୋଷଣା ପୂର୍ବରୁ ସେ ଭାରତର କୌଣସି ରାଜନୈତିକ ନେତା, ଦଳ, ଏପରିକି ପ୍ରାଦେଶିକ ମନ୍ତ୍ରୀ ପରିଷଦଗୁଡ଼ିକ ସହିତ ମଧ୍ୟ ପରାମର୍ଶ କରି ନଥିଲେ । ବ୍ରିଟେନ୍ ଯୁଦ୍ଧ ଆରମ୍ଭ କଲେ ଭାରତ ଯେ ଆପଣାଛାଏଁ ସେ ଯୁଦ୍ଧରେ ଅଂଶୀଦାର ହେବ, ଏ ପ୍ରକାର ଚିନ୍ତାଧାରା ଭାରତୀୟମାନଙ୍କ ପକ୍ଷରେ ଗ୍ରହଣୀୟ ହୋଇନଥିଲା । ଜାତୀୟବାଦୀମାନେ ମନେକଲେ, ସେମାନଙ୍କ ସହିତ ବିନା ପରାମର୍ଶରେ ଏପରି ଘୋଷଣା ଜାରୀ କରିବା ଭାରତ ପ୍ରତି ଓ ଭାରତବାସୀଙ୍କ ପ୍ରତି ଘୋର ଅପମାନ ।

ଲିନ୍‌ଲିଥିଗୋ ସେପ୍ଟେମ୍ବର ୫ ତାରିଖ ଦିନ ଗାନ୍ଧିଜୀଙ୍କୁ ସାକ୍ଷାତ ପାଇଁ ଆମନ୍ତ୍ରଣ କଲେ । ଗାନ୍ଧିଜୀ ତାଙ୍କୁ ସ୍ପଷ୍ଟ କହିଲେ ଯେ, ଏ ଦୁର୍ଦ୍ଦିନରେ ବ୍ରିଟେନ୍ ଓ ଫ୍ରାନ୍ସ ପ୍ରତି ତାଙ୍କର ଆନ୍ତରିକ ସମର୍ଥନ ରହିଛି, କିନ୍ତୁ ପରେ ସେ ସ୍ପଷ୍ଟୀକରଣ ଦେଇଥିଲେ ଯେ, ତାଙ୍କର ସମର୍ଥନ ଅର୍ଥ ସଂପୂର୍ଣ୍ଣ 'ଅହିଂସ' ସମର୍ଥନ । ଜୱାହରଲାଲ୍ ନେହରୁ ସେତେବେଳେ ଚୀନ୍ ପରିଭ୍ରମଣରେ ଥିଲେ । ଯୁଦ୍ଧ ସମ୍ବାଦ ପାଇ ସେ ତୁରନ୍ତ ଚୁଙ୍ଗ୍-

କିଙ୍ଗ୍‌ରୁ ରେଙ୍ଗୁନ୍ ବାଟଦେଇ ଭାରତକୁ ଫେରି ଆସିଲେ । ପରେ ପରେ କଂଗ୍ରେସ କାର୍ଯ୍ୟକାରୀ ସମିତିର ବୈଠକ ବସି ଯୁଦ୍ଧ କାଳରେ କଂଗ୍ରେସର କାର୍ଯ୍ୟପନ୍ଥା କ'ଣ ହେବ, ସେ ସମ୍ପର୍କରେ ଦୀର୍ଘ ଆଲୋଚନା ଚାଲିଲା । ସେପ୍ଟେମ୍ବର ୧୫ ତାରିଖ ଦିନ କାର୍ଯ୍ୟକାରୀ କମିଟି ଏକ ପ୍ରସ୍ତାବ ଗ୍ରହଣ କଲେ, ଯଦିଓ ଗଣତନ୍ତ୍ର ଓ ଫାସୀବାଦ ମଧ୍ୟରେ ସଂଘର୍ଷରେ କଂଗ୍ରେସର ଗଣତନ୍ତ୍ର ପ୍ରତି ସମର୍ଥନ ରହିଛି, ତଥାପି ଏ ସମର୍ଥନ କାର୍ଯ୍ୟକାରୀ ହୋଇପାରିବ ଯଦି ବ୍ରିଟିଶ୍ ସରକାର ଏହି ଯୁଦ୍ଧର ଅନ୍ତିମ ଲକ୍ଷ୍ୟ ସମ୍ପର୍କରେ ସ୍ପଷ୍ଟ ଘୋଷଣା କରନ୍ତି । ସାମ୍ରାଜ୍ୟବାଦୀ ସରକାର କେଉଁ ଭିତ୍ତିରେ ଭାରତର ସମର୍ଥନ ଚାହାଁନ୍ତି, ତାହା ଜାଣିଲା ପରେହିଁ ଏ ସମ୍ପର୍କୀୟ ନିଷ୍ପତ୍ତି ନିଆଯାଇପାରିବ । ତିନିଦିନ ପରେ ମୁସ୍‌ଲିମ୍ ଲିଗ୍ ମଧ୍ୟ ସର୍ତ୍ତବିହୀନ ସହଯୋଗ ଦେବାପାଇଁ ଅକ୍ଷମତା ପ୍ରକାଶ କଲେ । କିନ୍ତୁ ସେମାନେ ବ୍ରିଟିଶ ସରକାରଙ୍କୁ ଜଣାଇଦେଲେ ଯେ, ମୁସଲମାନମାନଙ୍କର ସାହାଯ୍ୟ ନେବାକୁ ହେଲେ ସେମାନଙ୍କ ପ୍ରତି ନ୍ୟାୟ ବିଚାର କରିବା ଉଚିତ ଏବଂ ସେମାନଙ୍କ ସମ୍ମତି ବ୍ୟତିରେକେ କୌଣସି ପ୍ରକାର ସାମ୍ବିଧାନିକ ଅଗ୍ରଗତି ହୋଇପାରିବ ନାହିଁ ବୋଲି ବ୍ରିଟିଶ ସରକାର ଘୋଷଣା କରିବା ଆବଶ୍ୟକ ।

ଯୁଦ୍ଧ ଲକ୍ଷ୍ୟ ଘୋଷଣା କରିବା ପାଇଁ କଂଗ୍ରେସର ଦାବି ସଂକ୍ରାନ୍ତରେ ଭାରତର ସବୁ ଇଂରାଜୀ ସମ୍ବାଦପତ୍ରମାନେ ସହାନୁଭୂତିଶୀଳ ମନ୍ତବ୍ୟ ପ୍ରକାଶ କଲେ । ଇଂଲଣ୍ଡର ଖ୍ୟାତନାମା ଦୈନିକ 'ମାଞ୍ଚେଷ୍ଟର ଗାର୍ଡ଼ିଆନ୍' ମଧ୍ୟ ଏହାକୁ ସମର୍ଥନ କରିଥିଲା । ଶ୍ରମିକ ନେତା ଅଟଲୀ ଘୋଷଣା କଲେ ଯେ, ବ୍ରିଟିଶ୍ ସରକାର ତୁରନ୍ତ ଦୂରଦୃଷ୍ଟି ସହିତ କଂଗ୍ରେସ ପ୍ରସ୍ତାବକୁ ବିଚାର କରି ତାଙ୍କର ପ୍ରତିକ୍ରିୟା ପ୍ରକାଶ କରିବା ଉଚିତ । ପଣ୍ଡିତ ନେହୁରୁ ଯେ କି ଫାସିଷ୍ଟମାନଙ୍କର ପୂର୍ଣ୍ଣ ବିରୋଧୀ ଥିଲେ, ସେ ଅକ୍ଟୋବର ୬ ତାରିଖରେ ଲିନ୍‌ଲିଥ୍‌ଗୋଙ୍କୁ ଖଣ୍ଡେ ପତ୍ର ଲେଖି ଜଣାଇଲେ ଯେ, ଭାରତ ଓ ଇଂଲଣ୍ଡ ମଧ୍ୟରେ ଚାଲିଥିବା ବିବାଦର ତୁରନ୍ତ ସମାଧାନ ପାଇଁ ସେ ଆଗ୍ରହୀ ଏବଂ ସେ ଆଶା ପ୍ରକାଶ କରିଥିଲେ ଯେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ଏହି ସମାଧାନ ପାଇଁ ସୁଯୋଗ ଆଣିଦେଇଛି । 'ପାଓନିୟର୍' କାଗଜର ସମ୍ପାଦକ ଓ ଅନ୍ୟ କେତେକ ଲିନ୍‌ଲିଥ୍‌ଗୋଙ୍କୁ କହିଥିଲେ ଯେ, ନେହୁରୁଙ୍କ ପତ୍ରର ଅନ୍ତର୍ନିହିତ ମର୍ମ ପ୍ରତି ଧ୍ୟାନ ଦେବା ଉଚିତ । କିନ୍ତୁ ଲିନ୍‌ଲିଥ୍‌ଗୋ ଅଯଥା ପଚାଶ ଜଣ ଭାରତୀୟ ନେତାଙ୍କୁ ସାକ୍ଷାତ କରି ଅକ୍ଟୋବର ୧୭ ତାରିଖରେ ଏକ ନୈରାଶ୍ୟଜନକ ବିବୃତି ଦେଲେ । ସେ କହିଲେ ଯେ, ଡୋମିନିଅନ୍ ଷ୍ଟାଟସ୍ ବ୍ରିଟିଶ୍ ନୀତିର ଅନ୍ତିମ ଲକ୍ଷ୍ୟ ଏବଂ ଯୁଦ୍ଧ ଶେଷ ପରେ ୧୯୩୫ ଶାସନ ବିଧିକୁ

ଭାରତୀୟ ନେତାମାନଙ୍କର ମତାମତ ଦୃଷ୍ଟିରୁ ଯଥାବିଧି ପରିବର୍ତ୍ତନ କରାଯିବ । ଏହାପରେ ବ୍ରିଟିଶ ସରକାରଙ୍କର ଯୁଦ୍ଧ ସଂପର୍କୀୟ କାର୍ଯ୍ୟକ୍ରମରେ ସହଯୋଗ କରିବାକୁ କଂଗ୍ରେସ ଅନିଚ୍ଛୁକ ହେଲେ ଏବଂ କଂଗ୍ରେସ ଚାଳିତ ମନ୍ତ୍ରୀ ପରିଷଦମାନଙ୍କୁ ତୁରନ୍ତ ଇସ୍ତଫା ଦେବାପାଇଁ ନିର୍ଦ୍ଦେଶ ଦେଲେ । ଗଭର୍ଣ୍ଣରମାନେ ଭାରତ ଶାସନ ଆଇନ୍‌ର ୯୩ ଧାରା ଅନୁଯାୟୀ ପ୍ରଦେଶର ଶାସନଭାର ହାତକୁ ନେଲେ ଏବଂ ମଣ୍ଟେଗ୍ୟୁ-ଚେମ୍‌ସଫୋର୍ଡ଼ ସଂସ୍କାର ଆଇନ୍ ପୂର୍ବରୁ ଯେପରି ନିପଟ ଅମଲାତାନ୍ତ୍ରିକ ଶାସନ ଚାଲୁଥିଲା, ସେହି ଅବସ୍ଥାକୁ ଭାରତକୁ ଫେରାଇ ଆଣିଲେ ।

ଜୱାହରଲାଲ୍ ନେହରୁ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କୁ ଏକ ପତ୍ର ଲେଖି ଲିନ୍‌ଲିଥ୍‌ଗୋଙ୍କ ନିଷ୍ପତ୍ତିକୁ ପ୍ରତ୍ୟାଖ୍ୟାନ କରିବା ପାଇଁ ଅନୁରୋଧ କରିଥିଲେ । ଅକ୍ଟୋବର ଶେଷର ଗାନ୍ଧିଜୀ ଓ ରାଜେନ୍ଦ୍ର ପ୍ରସାଦଙ୍କ ସହ ସେ ଜିନ୍ନାଙ୍କ ସହିତ ସାକ୍ଷାତ କରି ଏହି ଅନୁରୋଧର ପୂନରାବୃତ୍ତି କରିଥିଲେ । ଏହି ପତ୍ରାଳାପର ସମ୍ବାଦରେ ଲିନ୍‌ଲିଥ୍‌ଗୋ ଆଶଙ୍କା କଲେ ଯେ, ୧୯୨୦-୨୧ ମସିହା ପରି କଂଗ୍ରେସ ଓ ମୁସଲମାନ୍‌ମାନେ ଯଦି କୌଣସି ମିଳିତ ନିଷ୍ପତ୍ତି ନିଅନ୍ତି, ତା'ହେଲେ ବ୍ରିଟିଶ ସରକାରଙ୍କର ଅକଳ୍ପନୀୟ କ୍ଷତି ହୋଇପାରେ ଓ ଏହି ମର୍ମରେ ସେ ଭାରତ ସଚିବଙ୍କୁ ଏକ ପତ୍ର ମଧ ଲେଖିଥିଲେ । କିନ୍ତୁ ଜିନ୍ନାଙ୍କର ଶେଷ ନିଷ୍ପତ୍ତି ହେତୁ ତାଙ୍କର ସମସ୍ତ ଆଶଙ୍କା ଦୂର ହୋଇଥିଲା । କଂଗ୍ରେସ ସହିତ ସହଯୋଗ ପରିବର୍ତ୍ତେ କଂଗ୍ରେସ ମନ୍ତ୍ରୀମାନେ ଇସ୍ତଫା ଦେଇଥିବା ଯୋଗେ ହିନ୍ଦୁ ଶାସନରୁ ମୁକ୍ତି ମିଳିଥିବାରୁ ମୁସଲମାନମାନେ ଭାରତବ୍ୟାପୀ ଏକ ପରିତ୍ରାଣ ଦିବସ (ଡେଲିଭରେନ୍ସ ଡେ) ପାଳନ କରିବା ପାଇଁ ଜିନ୍ନା ନିର୍ଦ୍ଦେଶ ଦେଲେ । ଭାରତର ସମ୍ବିଧାନ ରଚନା କରିବା ପାଇଁ ଏକ ଗଣପରିଷଦ ଗଠନ କରିବା ନିମନ୍ତେ ନେହରୁ ଓ କଂଗ୍ରେସ କାର୍ଯ୍ୟକାରୀ ସମିତି ଜିନ୍ନାଙ୍କୁ ସହଯୋଗ ପାଇଁ ଯେଉଁ ଅନୁରୋଧ କରିଥିଲେ, ତାକୁ ଅବଜ୍ଞାର ସହ ପ୍ରତ୍ୟାଖ୍ୟାନ କରି ଜିନ୍ନା କହିଥିଲେ ଯେ, ସମ୍ବିଧାନ ପ୍ରଣୟନକାରୀ ଏହି ଗଣପରିଷଦ କଂଗ୍ରେସର ହାତବାରିସି ରୂପେ କାର୍ଯ୍ୟ କରିବ ଏବଂ ମୁସଲମାନମାନଙ୍କର ସେଠାରେ ସ୍ଥାନ ନାହିଁ ।

ଲିନ୍‌ଲିଥ୍‌ଗୋଙ୍କର ମତିଗତି ଓ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ପ୍ରତିରୋଧ ପରେ କଂଗ୍ରେସ ପକ୍ଷରେ ଯୁଦ୍ଧରେ ସହଯୋଗ କରିବା ପାଇଁ ବାଟ ରହିଲା ନାହିଁ । ୧୯୪୦ ମାର୍ଚ୍ଚମାସରେ ରାମଗଡ଼ରେ ଅନୁଷ୍ଠିତ କଂଗ୍ରେସର ବାର୍ଷିକ ଅଧିବେଶନରେ ଏକ ପ୍ରସ୍ତାବ ଗୃହୀତ ହେଲା ଯେ, ଭାରତର ସ୍ୱାଧୀନତା ଦାବି ପ୍ରତି ବ୍ରିଟେନ୍‌ର ମତିଗତି ଦୃଷ୍ଟିରୁ ଏ

ସାମ୍ରାଜ୍ୟବାଦୀ ଯୁଦ୍ଧରେ ସହଯୋଗ କରିବାର ପ୍ରଶ୍ନ ନାହିଁ । ରାମଗଡ଼ ଅଧିବେଶନ ସମାପ୍ତ ହେବାର କିଛିଦିନ ପରେ ୧୯୪୦ ମାର୍ଚ୍ଚ ୨୩ ତାରିଖ ଦିନ ମୁସ୍‌ଲିମ୍ ଲିଗ୍ ଲାହୋରରେ ଅନୁଷ୍ଠିତ ତା'ର ବାର୍ଷିକ ଅଧିବେଶନରେ ଭାରତ ବିଭାଜନ ପାଇଁ 'ପାକିସ୍ଥାନ' ପ୍ରସ୍ତାବ ଗ୍ରହଣ କଲେ । ଏହି ପ୍ରସ୍ତାବରେ କୁହାଯାଇଥିଲା, ଭାରତର ଉତ୍ତର ପଶ୍ଚିମ ଓ ପୂର୍ବାଞ୍ଚଳରେ ଥିବା ମୁସ୍‌ଲିମ୍ ସଂଖ୍ୟାଧିକ ପ୍ରଦେଶରେ ଦୁଇଟି ସ୍ୱତନ୍ତ୍ର ରାଜ୍ୟ ଗଠିତ ହେବା ଉଚିତ ଏବଂ ଏହାଦ୍ୱାରା କେବଳ ମୁସଲମାନମାନେ ହିନ୍ଦୁଙ୍କ ଉତ୍ପୀଡ଼ନ ଓ ଅତ୍ୟାଚ୍ଚରରୁ ମୁକ୍ତି ପାଇପାରିବେ । ଅବଶ୍ୟ ପଞ୍ଜାବର ପ୍ରଧାନମନ୍ତ୍ରୀ ସାର୍ ସିକନ୍ଦର ହାୟତ୍ ଖାଁ ଓ ବଙ୍ଗଳାର ପ୍ରଧାନମନ୍ତ୍ରୀ ଫଜଲ୍-ଉଲ୍-ହକ୍ ଏହି ବିଭାଜନକୁ ସମର୍ଥନ କରୁ ନଥିଲେ । କିନ୍ତୁ ସେତେବେଳକୁ ସେମାନେ ମୁସଲିମ୍ ଲିଗ୍‌ରେ ଯୋଗ ଦେଇ ସାରିଥିଲେ ଓ ଜିନ୍ନାଙ୍କୁ ପ୍ରତିରୋଧ କରିବା ପାଇଁ ସେମାନଙ୍କର ସାହସ ନଥିଲା । ଉପରୋକ୍ତ ଆଲୋଚ଼ନାରୁ ଦେଖାଯିବ, କଂଗ୍ରେସ ସ୍ୱାଧୀନତା ଦାବି ସପକ୍ଷରେ ଗୋଟିଏ ପାଦ ଆଗକୁ ଗଲେ ମୁସ୍‌ଲିମ୍ ଲିଗ୍ ବ୍ରିଟିଶ୍ ରାଜ୍ ବିରୁଦ୍ଧରେ ସ୍ୱର ଉତ୍ତୋଳନ ନ କରି କଂଗ୍ରେସ ବିରୁଦ୍ଧରେ ଦୁଇପାଦ ଆଗେଇ ଯାଉଥିଲେ ।

୧୯୪୦ ମସିହା ମେ ଜୁନ୍ ମାସରୁ ବ୍ରିଟେନ୍ ଉପରେ ଜର୍ମାନୀର ଉଡ଼ାଜାହାଜ ଅକ୍ରମଣ (ବ୍ଲିଜ୍ କ୍ରିଗ୍) ଆରମ୍ଭ ହୋଇଯାଇଥିଲା । ଇଟାଲୀ ଯୁଦ୍ଧରେ ଝାମ୍ପଦେଲା ଓ ସ୍ଥଳଯୁଦ୍ଧରେ ଜର୍ମାନୀ ଟ୍ୟାଙ୍କ ବାହିନୀ ଫ୍ରାନ୍ସ, ଡେନମାର୍କ ଓ ହଲାଣ୍ଡ ଆଦି ପଶ୍ଚିମ ଉପକୂଳର ରାଜ୍ୟଗୁଡ଼ିକୁ ଦଖଲ କରିନେଲେ । ଏତିକିବେଳେ ଗାନ୍ଧିଜୀ ହିଟଲର ଓ ମୁସୋଲିନ୍ ବିରୁଦ୍ଧରେ ଅହିଂସ ପ୍ରତିରୋଧ କରିବାକୁ ପରାମର୍ଶ ଦେଲେ । କିନ୍ତୁ କଂଗ୍ରେସ କାର୍ଯ୍ୟକାରୀ ସମିତି ଏପରି ପରାମର୍ଶ ଗ୍ରହଣ ନକରି ଇଂରେଜମାନଙ୍କୁ ସ୍ପଷ୍ଟ ଜଣାଇଦେଲେ, ଯୁଦ୍ଧରେ ଭାରତର ସହଯୋଗ ନେବାକୁ ହେଲେ, ଯୁଦ୍ଧପରେ ପୂର୍ଣ୍ଣ ସ୍ୱାଧୀନତା ପ୍ରଦାନ ଘୋଷଣା ଏବଂ ଯୁଦ୍ଧକାଳୀନ ପରିସ୍ଥିତିରେ ଅସ୍ଥାୟୀ ଭାବରେ କେନ୍ଦ୍ରରେ ଏକ ଜାତୀୟ ସରକାର ପ୍ରତିଷ୍ଠିତ ହେବା ଆବଶ୍ୟକ । କିନ୍ତୁ ଲିନ୍‌ଲିଥିଗୋ ଏ ଦାବିକୁ ଅଗ୍ରାହ୍ୟ କଲେ । ଲିନ୍‌ଲିଥିଗୋ ତାଙ୍କର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ର ପରିସର ବୃଦ୍ଧି କରିବା ପାଇଁ ଚିନ୍ତା କରୁଥିଲେ ଏବଂ ଭାରତ ସଚ଼ିବ ଆମେରୀଙ୍କ ସହ ପରାମର୍ଶ କରି ସେ ସ୍ଥିର କଲେ ଯେ, ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍ ସଦସ୍ୟମାନଙ୍କ ସଂଖ୍ୟା ବୃଦ୍ଧି କରିବେ ଓ କେତେକ ବିଶିଷ୍ଟ ଭାରତୀୟଙ୍କୁ ନେଇ ଗୋଟିଏ ଯୁଦ୍ଧ ପରାମର୍ଶଦାତା କମିଟି ଗଠନ କରିବେ । ତଦନୁଯାୟୀ ଅଗଷ୍ଟ ମାସରେ ସେ ଏକ ଘୋଷଣାନାମା

ଜାରୀ କଲେ– ଯୁଦ୍ଧ ଶେଷ ହେବାପରେ ଭାରତକୁ 'ଷ୍ଟାଟ୍ୟୁଟ୍ ଅଫ୍ ୱେଷ୍ଟମିନିଷ୍ଟର' ଅନୁଯାୟୀ ଏକ ଡୋମିନିଅନ୍ ବା ଉପନିବେଶରେ ପରିଣତ କରାଯିବ ।

ଅଧିକ କିଛି ପ୍ରତିଶ୍ରୁତି ଅର୍ପଣ କରିବା ଲିନ୍‌ଲିଥ୍‌ଗୋଙ୍କ କଳ୍ପନାରେ ନଥିଲା । ଘୋଷଣାନାମାରେ ପୁନଶ୍ଚ କୁହାଯାଇଥିଲା ଯେ ଭାରତର ଭବିଷ୍ୟତ ଶାସନବିଧି କେଉଁ ରୂପରେଖ ନେବ, ତାହା ଭାରତୀୟମାନେ ସ୍ଥିର କରିବେ । ଏଥିରୁ ଦେଖାଯିବ ଯେ ଉପନିବେଶ ପ୍ରତିଷ୍ଠାର ସମୟସୀମା ଧାର୍ଯ୍ୟ କରାଯାଇ ନଥିଲା । ପରନ୍ତୁ ଏହି ଘୋଷଣାରେ ମୁସ୍‌ଲିମ୍ ଲିଗ୍‌ର ଦାବି ପ୍ରତି ଗୁରୁତ୍ୱ ଦିଆଯାଇଥିଲା । ଭାରତ ବିଭାଜିତ ହେବ କି ନାହିଁ, ବ୍ରିଟିଶ ସରକାର ସେ ବିଷୟରେ ନୀରବ ରହିଥିଲେ । ଏ ଘୋଷଣାନାମାକୁ କଂଗ୍ରେସ ନେତାମାନେ ଅବିଳମ୍ବେ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ରାଜେନ୍ଦ୍ର ପ୍ରସାଦଙ୍କ ପରେ କଂଗ୍ରେସର ନୂତନ ସଭାପତି ମୌଲାନା ଅବୁଲ୍ କଲାମ୍ ଆଜାଦ୍ ଏ ବିଷୟରେ ଭାଇସ୍‌ରାୟଙ୍କ ସହିତ ଆଲୋଚନା କରିବା ପାଇଁ ମଧ୍ୟ ଅସମ୍ମତ ହେଲେ । ଗାନ୍ଧିଜୀ କହିଲେ ଯେ ଏପରି ନିଷ୍ପତ୍ତି ଦ୍ୱାରା ଭାରତ ଓ ବ୍ରିଟେନ୍ ମଧ୍ୟରେ ଦୂରତ୍ୱ ବଢ଼ିଯାଇଛି ।

ବ୍ରିଟିଶ ସରକାରଙ୍କ ଏ ଘୋଷଣା ପ୍ରତି ମୁସ୍‌ଲିମ୍ ଲିଗ୍‌ର ପ୍ରତିକ୍ରିୟା ଥିଲା ଅତି ବିଚିତ୍ର । କଂଗ୍ରେସ ମନ୍ତ୍ରୀମାନେ ଇସ୍ତଫା ଦେବାପରେ ଆସାମରେ ମୁସ୍‌ଲିମ୍ ଲିଗ୍ କେତେକ କ୍ଷୁଦ୍ର ଦଳର ସହାୟତା ନେଇ ମନ୍ତ୍ରୀପରିଷଦ ଗଠନ କରିଥିଲେ । ପଞ୍ଜାବର ପ୍ରଧାନମନ୍ତ୍ରୀ ସାର୍ ସିକନ୍ଦର ହୟତ୍ ଖାଁ ଓ ବଙ୍ଗଳାର ପ୍ରଧାନମନ୍ତ୍ରୀ ଫଜଲ୍-ଉଲ୍-ହକ୍ ଭାଇସ୍‌ରାୟଙ୍କ ଅଗଷ୍ଟ ଘୋଷଣାକୁ ପୂରାପୂରି ଗ୍ରହଣ କରିନେବା ପାଇଁ ମତ ଦେଇଥିଲେ । ଲିଗ୍ ସଭାପତି ଜିନ୍ନା ପଞ୍ଜାବ ଓ ବଙ୍ଗଳା ସରକାର ଯେପରି ଯୁଦ୍ଧକୁ ସାହାଯ୍ୟ କରୁଛନ୍ତି, ସେଥିରେ କୌଣସି ବାଧା ପ୍ରଦାନ କଲେ ନାହିଁ, କିନ୍ତୁ ସେ ଦାବି କଲେ ଯେ ମୁସ୍‌ଲିମ୍ ଲିଗ୍‌ର 'ପାକିସ୍ତାନ' ଦାବି ସ୍ୱୀକୃତ ନଦେବା ପର୍ଯ୍ୟନ୍ତ ମୁସଲମାନମାନଙ୍କର ପ୍ରତିନିଧି ରୂପେ ମୁସଲିମ୍ ଲିଗ୍ ଏ ନିଷ୍ପତ୍ତିରେ ଭାଗୀଦାର ହେବନାହିଁ, କିମ୍ବା ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ର ସଂଖ୍ୟା ବୃଦ୍ଧି ହେଲେ ମଧ୍ୟ ସେଥିରେ ଯୋଗ ଦେବନାହିଁ । ଏହାପରେ ଲିନ୍‌ଲିଥ୍‌ଗୋ ଭାରତୀୟ ନେତାମାନଙ୍କ ସହ ଅଧିକ ବିଗ୍ରହବିମର୍ଶ ନ କରିବାକୁ ସ୍ଥିର କଲେ ।

ଏହି ପରିସ୍ଥିତିରେ କଂଗ୍ରେସ କାର୍ଯ୍ୟକାରୀ କମିଟି କଂଗ୍ରେସର ନେତୃତ୍ୱ ଦେବାପାଇଁ ଗାନ୍ଧିଜୀଙ୍କୁ ପୁଣି ଆମନ୍ତ୍ରଣ କଲେ । ଗାନ୍ଧିଜୀ ନିଷ୍ପତ୍ତି ନେଲେ ଯେ, ଯୁଦ୍ଧ

ବ୍ୟାପାରରେ ବ୍ରିଟିଶ୍ ସରକାର ସହିତ କୌଣସି ପ୍ରକାର ସଂଘର୍ଷ ନ କରି ଅହିଂସ ଉପାୟରେ ସେ କେବଳ ତା'ର ପ୍ରତିରୋଧ କରିବେ । ଗାନ୍ଧିଙ୍କ ନିର୍ଦ୍ଦେଶ ଅନୁଯାୟୀ ତାଙ୍କର ଜଣେ ଶିଷ୍ୟ ଆଚାର୍ଯ୍ୟ ବିନୋବା ବାଭେ ୱାର୍ଦ୍ଧା ନିକଟରେ ଏକ ସଭାରେ ଯୁଦ୍ଧ ପାଣ୍ଠିକୁ ଚନ୍ଦା ନଦେବା ପାଇଁ ଓ ଯୁଦ୍ଧରେ ସହଯୋଗ ନ କରିବା ପାଇଁ ଭାଷଣ ଦେଇ ଗିରଫ ହେଲେ । ଗାନ୍ଧିଙ୍କର ଇଚ୍ଛା ଥିଲା ଯେ, ସେ ଜୱାହରଲାଲ୍‌ଙ୍କୁ ଦ୍ୱିତୀୟ ସତ୍ୟାଗ୍ରହୀ ଭାବରେ ମନୋନୀତ କରିବେ । କିନ୍ତୁ ଜୱାହରଲାଲ୍ ଏପରି କିଛି କରିବା ପୂର୍ବରୁ ବ୍ରିଟିଶ ସରକାର ତାଙ୍କୁ ଓ ତା'ର ଅଳ୍ପଦିନ ପରେ ମୌଲାନା ଅବୁଲ କଲାମ ଆଜାଦ୍‌ଙ୍କୁ ଗିରଫ କରିନେଲେ । ଏହା ପରେ ଗାନ୍ଧିଜୀ ଜଣଜଣ କରି କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଓ ଅନ୍ୟ ନେତାମାନଙ୍କୁ ସତ୍ୟାଗ୍ରହୀ ମନୋନୀତ କଲେ ଓ ସେମାନେ ମଧ୍ୟ ବିନା ପ୍ରତିରୋଧରେ କାରାବରଣ କଲେ । ଯେତେ ଯେଉଁଠି କଂଗ୍ରେସ ନେତାମାନେ ଉପରୋକ୍ତ ପ୍ରକାରର ସତ୍ୟାଗ୍ରହ କଲେ, ସେମାନଙ୍କୁ ସରକାର ଗିରଫ କଲେ ଓ ୧୯୪୧ ମସିହାରେ ଏହିପରି ମୋଟ ୧୪,୦୦୦ କର୍ମୀ ଗିରଫ ହୋଇଥିଲେ । କିନ୍ତୁ ଏହି ପ୍ରକାରର ସତ୍ୟାଗ୍ରହ ଦ୍ୱାରା ସରକାରଙ୍କ ଯୁଦ୍ଧ ଆୟୋଜନରେ କୌଣସି ବାଧାବିଘ୍ନ ଘଟି ନଥିଲା ।

ଭାଇସରାୟ ଭାବୁଥିଲେ ତାଙ୍କର ଏକ୍‌ଜିକ୍ୟୁଟିଭ୍ କାଉନସିଲର ସଂଖ୍ୟା ବଢ଼ାଇଦେଲେ ଭାରତର ଅସନ୍ତୋଷ ଥଣ୍ଡା ପଡ଼ିଯିବ । ତଦନୁଯାୟୀ ସେ ଅର୍ଥ ବିଭାଗ, ଗୃହ ବିଭାଗ ଓ ଯାତାୟାତ ବିଭାଗ ଆଦି କେତୋଟି ଗୁରୁତ୍ୱପୂର୍ଣ୍ଣ ବିଭାଗ ତିନିଜଣ ଇଂରେଜ ସଭ୍ୟଙ୍କ ଅଧୀନରେ ରଖିଲେ ଏବଂ ଅନ୍ୟ ବିଭାଗଗୁଡ଼ିକ ଆଠଜଣ ଭାରତୀୟ ସଭ୍ୟଙ୍କ ମଧ୍ୟରେ ବାଣ୍ଟିଦେଲେ । ସେ ସଭ୍ୟ ମନୋନୟନ ବ୍ୟାପାରରେ କଂଗ୍ରେସ, ମୁସଲିମ୍ ଲିଗ୍ ବା ଅନ୍ୟ କୌଣସି ଦଳ ସହିତ ପରାମର୍ଶ ନକରି କେବଳ ବ୍ୟକ୍ତିଗତ ପ୍ରତିଷ୍ଠା ଦୃଷ୍ଟିରୁ ଆଠଜଣଙ୍କୁ ବାଛିଥିଲେ । ପରିକଳ୍ପିତ ଯୁଦ୍ଧ ପରାମର୍ଶଦାତା କମିଟିରେ ସେ ପଞ୍ଜାବ ଓ ବଙ୍ଗଳାର ପ୍ରଧାନମନ୍ତ୍ରୀଙ୍କୁ ସଭ୍ୟ ଭାବରେ ଗ୍ରହଣ କରିଥିଲେ । ଏ ସମ୍ବାଦ ଶୁଣି ଜିନ୍ନା ଉତ୍‌କ୍ଷିପ୍ତ ହେଲେ ଏବଂ 'ପାକିସ୍ତାନ' ଦାବି ଗ୍ରହଣ ହେବା ପୂର୍ବରୁ ବ୍ରିଟେନ ସହିତ ସହଯୋଗର ପ୍ରଶ୍ନ ନାହିଁ ବୋଲି ତୁରନ୍ତ ସାର୍ ସିକନ୍ଦର ଓ ଫଜଲ୍-ଉଲ୍-ହକ୍‌ଙ୍କୁ ପରାମର୍ଶଦାତା କମିଟିରୁ ଇସ୍ତଫା ଦେବାକୁ ନିର୍ଦ୍ଦେଶ ଦେଲେ । ସେ ଦୁଇଜଣ ଜିନ୍ନାଙ୍କର ଆଦେଶ ଅନୁଯାୟୀ ଇସ୍ତଫା ପ୍ରଦାନ କରିଥିଲେ, ମାତ୍ର ଫଜଲ-ଉଲ୍-ହକ୍‌ଙ୍କର ଇସ୍ତଫା ଦେବାରେ ସାମାନ୍ୟ ବିଳମ୍ବ ଯୋଗୁ ଜିନ୍ନା ତାଙ୍କୁ ତିରସ୍କାର

କରିଥିଲେ । ଏହାପରେ ଏକ୍‌ଜିକ୍ୟୁଟିଭ୍ କାଉନସିଲ୍‌ର ତିନିଜଣ ସଦସ୍ୟ ନେହ୍ରୁ ଓ ଆଜାଦଙ୍କୁ ତୁରନ୍ତ ଖଲାସ କରିଦେବା ପାଇଁ ଭାଇସରାୟଙ୍କ ଉପରେ ଚାପ ପକାଇଲେ । ୧୯୧୯ ମସିହା ଆଇନ ଅନୁଯାୟୀ ଗଠିତ କେନ୍ଦ୍ର ବିଧାନସଭାରେ ମଧ୍ୟ ନେହ୍ରୁ, ଆଜାଦ ଓ ଅନ୍ୟ ସମସ୍ତ ସତ୍ୟାଗ୍ରହୀଙ୍କୁ କାରାମୁକ୍ତ କରିବା ପାଇଁ ଗୋଟିଏ ପ୍ରସ୍ତାବ ଗୃହୀତ ହେଲା । ସତ୍ୟାଗ୍ରହୀମାନଙ୍କୁ ଖଲାସ କରିଦେବା ପାଇଁ ଭାଇସରାୟଙ୍କର ଆପତ୍ତି ନଥିଲା । କାରଣ ସେତେବେଳକୁ ଗାନ୍ଧିଜୀଙ୍କ ନିର୍ଦ୍ଦେଶିତ ବ୍ୟକ୍ତିର ସତ୍ୟାଗ୍ରହ ସମ୍ପୂର୍ଣ୍ଣ ମଉଳି ଯାଇଥିଲା । କିନ୍ତୁ ନେହ୍ରୁ ଓ ଆଜାଦଙ୍କୁ ଖଲାସ କରିବା ପାଇଁ ସେ ରାଜି ନଥିଲେ । ତାଙ୍କ ଏକ୍‌ଜିକ୍ୟୁଟିଭ କାଉନସିଲ୍‌ର ଭାରତୀୟ ସଦସ୍ୟମାନେ ତାଙ୍କୁ ବାରବାର ଅନୁରୋଧ କରିବାରୁ ସେ ବାଧ୍ୟ ହୋଇ ନେହ୍ରୁ ଓ ଆଜାଦଙ୍କ ମୁକ୍ତି ବିଷୟରେ ବ୍ରିଟିଶ ସରକାରଙ୍କ ନିଷ୍ପତ୍ତି ପାଇଁ ଅପେକ୍ଷା କଲେ । ଲଣ୍ଡନରେ ନବଗଠିତ ଜାତୀୟ ସରକାର ଦୁଇଜଣ କଂଗ୍ରେସ ନେତାଙ୍କୁ ମୁକ୍ତ କରିବାର ପକ୍ଷପାତୀ ଥିଲେ, କେବଳ ବ୍ରିଟେନର ନୂଆ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ଏହାର ବିରୋଧ କରୁଥିଲେ । ପରିଶେଷରେ କ୍ୟାବିନେଟ୍ ସଦସ୍ୟମାନଙ୍କର ଚାପ ପ୍ରୟୋଗ ଫଳରେ ଚର୍ଚ୍ଚିଲ ତାଙ୍କର ସମ୍ମତି ଦେଲେ ଏବଂ ୧୯୪୧ ଡିସେମ୍ବର ୩ ତାରିଖରେ ନେହ୍ରୁ, ଆଜାଦଙ୍କ ସମେତ ଅନ୍ୟ ସମସ୍ତ ସତ୍ୟାଗ୍ରହୀ କାରାମୁକ୍ତ ହେଲେ । ଏହାର ଚାରିଦିନ ପରେ ଯୁକ୍ତରାଷ୍ଟ୍ର ଆମେରିକାର ପଶ୍ଚିମ ଉପକୂଳରେ ପାର୍ଲ ହାର୍ବର ନୌବନ୍ଦର ଉପରେ ଜାପାନୀ ଯୁଦ୍ଧଜାହାଜମାନେ ଆକ୍ରମଣ କଲେ ଓ ଆମେରିକା ସେହିଦିନଠାରୁ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଭାଗୀଦାର ହେଲା ।



# କ୍ରିପ୍ସ ମିଶନ୍

ପ୍ରଶାନ୍ତ ମହାସାଗର ଉପକୂଳରେ ଆମେରିକାର ପାର୍ଲ ହାର୍ବର ନୌଭେଳା ଉପରେ ଜାପାନର ଅତର୍କିତ ଆକ୍ରମଣ ଥିଲା ଅତି ମାରାତ୍ମକ । ପଶ୍ଚିମ ଉପକୂଳସ୍ଥ ଯୁଦ୍ଧଜାହାଜଗୁଡ଼ିକ ଧ୍ୱଂସ ହୋଇଯିବା ହେତୁ ଆମେରିକାର ଯୁଦ୍ଧ ପ୍ରସ୍ତୁତି କେତେକାଂଶରେ ପଙ୍ଗୁ ହୋଇଯାଇଥିଲା । ତା'ର ସୁବିଧା ନେଇ ଜାପାନ ଭାରତ ମହାସାଗର ଉପକୂଳରେ ତା'ର ଆକ୍ରମଣ ଆରମ୍ଭ କରିଦେଲା । ୧୯୪୨ ମସିହା ଫେବୃଆରୀ ୧୫ ତାରିଖରେ ସିଙ୍ଗାପୁରର ପତନ ହେଲା । ବର୍ମା ଉପରେ ଆକ୍ରମଣ ହେତୁ ବ୍ରିଟିଶ ସୈନ୍ୟମାନେ ମାର୍ଚ୍ଚ ୭ ତାରିଖରେ ରେଙ୍ଗୁନକୁ ପରିତ୍ୟାଗ କରି ଭାରତକୁ ପଳାୟନ କରିଥିଲେ । ଯୁଦ୍ଧ ଆଶଙ୍କା ଏଣିକି ଦକ୍ଷିଣ-ପୂର୍ବ ବଙ୍ଗୋପସାଗର ଉପକୂଳରେ ଜମାଟ ବାନ୍ଧିଲା । କଲିକତା, ପାରାଦ୍ୱୀପ ଓ ମାଡ୍ରାସ ପ୍ରଦେଶର ବିଶାଖାପାଟଣା ଓ କୋକୋନାଡ଼ା ନିକଟରେ ଜାପାନୀ ବୋମା ଫୁଟିଥିଲା ଓ ଗୁଜବ ପ୍ରଚାର ଏତେ ବ୍ୟାପକ ହେଲା ଯେ, କଲିକତା ଓ ମାଡ୍ରାସ ଆଦି ସହରରୁ ହଜାର ହଜାର ଲୋକ ପଳାୟନ କଲେ । କଲିକତାରେ ରାଜସ୍ଥାନ ଓ ଉତ୍ତର ଭାରତର ରହୁଥିବା ବ୍ୟବସାୟୀ ଓ ସାଧାରଣ ଲୋକ ଘରଦ୍ୱାର ଛାଡ଼ି ଉତ୍ତରାଭିମୁଖୀ ହେଲେ । ମାଡ୍ରାସ ସହରରେ ମଧ୍ୟ ଅନୁରୂପ ଘଟଣା ଘଟିଥିଲା । ଏସବୁ ସତ୍ତ୍ୱେ ଭାରତର ବ୍ରିଟିଶ ଭାଇସରାୟ ଲିନ୍‌ଲିଥ୍‌ଗୋ ଏ ଦେଶବାସୀଙ୍କର ସହଯୋଗ ଓ ସମର୍ଥନ ନେବା ପାଇଁ କୌଣସି ରାଜନୈତିକ ପଦକ୍ଷେପ ନେଇନଥିଲେ ।

ଏହି ସମୟରେ ଭାରତରୁ କେତେକ ଉଦାରପନ୍ଥୀ ନେତା ସାର୍ ତେଜ୍ ବାହାଦୁର ସାପ୍ରୁଙ୍କ ନେତୃତ୍ୱରେ ଚର୍ଚ୍ଚିଲଙ୍କୁ ଏକ ପତ୍ର ଲେଖି ଭାରତୀୟ ସମସ୍ୟାର ସମାଧାନ ନିମନ୍ତେ ତୁରନ୍ତ ଏକ ସାହସିକ ଓ ଦୃଢ଼ ପଦକ୍ଷେପ ନେବାପାଇଁ ଅନୁରୋଧ କରିଥିଲେ । ଏଣେ ଚୀନର ରାଷ୍ଟ୍ରପତି ଜେନେରାଲ ଚିଆଙ୍ଗ୍ କୈଶାକ୍ ଫେବୃଆରୀ

ମାସରେ ଭାରତ ପରିଭ୍ରମଣରେ ଆସି କଂଗ୍ରେସ ନେତାମାନଙ୍କ ସହ ଆଲୋଚନା କରି ଉଭୟେ ରୁଜ୍‌ଭେଲ୍‌ଟ୍ ଓ ଚର୍ଚ୍ଚିଲଙ୍କୁ ପତ୍ର ଲେଖି ଜଣାଇଲେ ଯେ, ଭାରତୀୟ ସମସ୍ୟାର ସମାଧାନ ନହେଲେ, ଭାରତ ଉପରେ ଜାପାନୀ ଆକ୍ରମଣ କୌଣସି ପ୍ରତିରୋଧର ସମ୍ମୁଖୀନ ହେବନାହିଁ । ଚିଆଙ୍ଗ୍ କୈଶାକ୍‌ଙ୍କର ଏହି ଚିଠି ପ୍ରକାଶିତ ହେବାପରେ ଆମେରିକାରେ ଜନମତ ଭିନ୍ନ ରୂପ ଧାରଣ କଲା ଏବଂ ତଦନୁଯାୟୀ ରୁଜ୍‌ଭେଲ୍‌ଟ୍ ବ୍ରିଟିଶ ସରକାରଙ୍କୁ ସ୍ପଷ୍ଟ ଜଣାଇଲେ ଯେ, ତୁରନ୍ତ ଭାରତୀୟ ସମସ୍ୟାର ସମାଧାନ ପାଇଁ ବ୍ରିଟିଶ ସରକାର ଭାରତକୁ ଅବିଳମ୍ବେ ଅଷ୍ଟ୍ରେଲିଆ, କାନାଡ଼ା ପରି ଏକ ଡୋମିନିଅନ ଭାବେ ଘୋଷଣା କରନ୍ତୁ । ଏହିସବୁ ପତ୍ରାଳାପ ଓ ବୈଦେଶିକ ଚାପ ସତ୍ତ୍ୱେ ଲିନ୍‌ଲିଥ୍‌ଗୋ ବିଚଳିତ ହେଲେନାହିଁ । ବରଂ ବ୍ରିଟିଶ ସରକାରଙ୍କୁ ଏକ ପତ୍ର ଲେଖି ସ୍ପଷ୍ଟଭାବରେ କହିଲେ ଯେ, 'ପୂର୍ଣ୍ଣ ସ୍ୱାଧୀନତା' ବ୍ୟତୀତ ଅନ୍ୟ କୌଣସି ପ୍ରସ୍ତାବରେ କଂଗ୍ରେସ ନେତାମାନେ ରାଜି ହେବେନାହିଁ ଏବଂ କଂଗ୍ରେସର ସହଯୋଗ ମିଳିଲେ ମଧ୍ୟ ଯୁଦ୍ଧ ପ୍ରସ୍ତୁତି ଓ ଯୁଦ୍ଧ ସରଞ୍ଜାମ ଆୟୋଜନ କରିବାରେ ସେମାନେ ବିଶେଷ ସହାୟକ ହେବେନାହିଁ ।

ଭାଇସରାୟଙ୍କର ପତ୍ର ନବଗଠିତ ଜାତୀୟ ସରକାରରେ ଆଲୋଡ଼ନ ସୃଷ୍ଟି କଲା । ଶ୍ରମିକ ଦଳର ନେତା ଅଟଲୀ ବ୍ରିଟିଶ କ୍ୟାବିନେଟ୍‌କୁ ଏକ ସ୍ମାରକ ପତ୍ର ଦେଇ ଲିନ୍‌ଲିଥଗୋଙ୍କର ମତାମତକୁ ସମ୍ପୂର୍ଣ୍ଣ ଅଗ୍ରାହ୍ୟ କରିଥିଲେ । କ୍ୟାବିନେଟ୍‌ରେ ଏ ସଂକ୍ରାନ୍ତୀୟ ଆଲୋଚନା ବେଳେ କେହି ଜଣେ ପ୍ରସ୍ତାବ କଲେ ଯେ, ମନ୍ତ୍ରୀ ପରିଷଦର ଜଣେ ବରିଷ୍ଠ ସଭ୍ୟଙ୍କୁ ଭାରତୀୟ ନେତାମାନଙ୍କ ସହ ଆଲୋଚନା କରିବା ପାଇଁ ପଠାଇବା ଉଚିତ । ବ୍ରିଟିଶ କ୍ୟାବିନେଟ୍ ଏହା ଉପରେ ବିଶେଷ ଗୁରୁତ୍ୱ ଦେଇଥିଲେ । ଏହି ସମୟରେ ବ୍ରିଟେନର ଜଣେ ବିଶିଷ୍ଟ ଅଧିବକ୍ତା ସାର୍ ଷ୍ଟାଫୋର୍ଡ କ୍ରିପ୍ସ ଯେ କି ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ ବ୍ୟକ୍ତିଗତ ଭାବରେ ଭାରତକୁ ଆସି ଜୱାହରଲାଲଙ୍କ ସହିତ ବିଶ୍ୱ ପରିସ୍ଥିତି ସମ୍ପର୍କରେ ଆଲୋଚନା କରିଥିଲେ ଓ ଭାରତରେ ଅଠର ଦିନ କଟାଇ ଭାଇସରାୟ ଓ ଅନ୍ୟ ନେତାମାନଙ୍କ ସହ ବିଚାରବିମର୍ଶ କଲାପରେ ସେ ରେଙ୍ଗୁନ ବାଟ ଦେଇ ଚୀନ ଯାତ୍ରା କଲେ । ଅବଶ୍ୟ ଏହା ଥିଲା ତାଙ୍କର ସମ୍ପୂର୍ଣ୍ଣ ଘରୋଇ ପରିଭ୍ରମଣ । ୧୯୪୧ ମସିହା ଜୁନ୍ ମାସରେ ହିଟଲର ସୋଭିଏତ୍ ୟୁନିଅନ ଉପରେ ଆକ୍ରମଣ କରିବା ପରେ ସେହି ବର୍ଷ ଜୁଲାଇ ମାସରେ କ୍ରିପ୍ସଙ୍କ ଉଦ୍ୟମରେ ବ୍ରିଟେନ୍ ଓ ରୁଷିଆ ମଧ୍ୟରେ ଆଙ୍ଗ୍ଲୋ-ସୋଭିଏତ୍ ଚୁକ୍ତି ସ୍ୱାକ୍ଷରିତ ହେଲା । ଏହାପରେ ଶ୍ରମିକ

ଦଳର ପ୍ରତିନିଧି ଭାବରେ ଲର୍ଡ ପ୍ରିଭିସିଲ ଓ ୧୯୪୨ ଫେବୃଆରୀ ମାସରେ ବ୍ରିଟିଶ କ୍ୟାବିନେଟର ସଭ୍ୟ ଭାବରେ ତାଙ୍କୁ ସ୍ଥାନିତ କରାଯାଇଥିଲା । ବ୍ୟକ୍ତିଗତ ଭାବରେ ସାର୍ ଷ୍ଟାଫୋର୍ଡ କ୍ରିପ୍ସ ଥିଲେ ଜୱାହରଲାଲଙ୍କର ସମବୟସ୍କ । କ୍ରିପ୍ସ ଥିଲେ ଶ୍ରମିକ ଦଳର ବାମପନ୍ଥୀ ଗୋଷ୍ଠୀର ସଭ୍ୟ ଓ ଉଭୟେ ଥିଲେ ବାମପନ୍ଥୀ, ସାମ୍ୟବାଦୀ ଓ ସାମ୍ରାଜ୍ୟବାଦ ବିରୋଧୀ । ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ସେ ଜଣେ ସମର୍ଥକ ଭାବରେ ବିବେଚିତ ହେଉଥିଲେ । ଏହି ପଟ୍ଟଭୂମିରେ କ୍ରିପ୍ସଙ୍କୁ ଅଟଲୀଙ୍କ ସହିତ ୱାର୍ କ୍ୟାବିନେଟ୍‌ର 'ଇଣ୍ଡିଆ କମିଟି'ର ସଭ୍ୟ ଭାବରେ ଗ୍ରହଣ କରାଯାଇଥିଲା ଓ ତାଙ୍କୁ ଭାରତୀୟ ନେତାମାନଙ୍କ ସହିତ ଆଲୋଚନା କରିବା ପାଇଁ ନୂଆଦିଲ୍ଲୀକୁ ପଠାଇବା ପାଇଁ ବ୍ରିଟିଶ କ୍ୟାବିନେଟ୍ ନିଷ୍ପତ୍ତି କରିଥିଲେ ।

କ୍ରିପ୍ସଙ୍କ ଆଲୋଚନାର ବିଷୟବସ୍ତୁ ସମ୍ପର୍କରେ ବ୍ରିଟିଶ କ୍ୟାବିନେଟ୍‌ରେ ନିଷ୍ପତ୍ତି ନିଆଯାଇଥିଲା ଯେ, ସେ ଯୁଦ୍ଧ ପରେ ଭାରତରେ ଏକ ଡୋମିନିଅନ୍ ପ୍ରତିଷ୍ଠିତ ହେବ, ଭାରତବାସୀଙ୍କୁ ପୂର୍ଣ୍ଣ ସ୍ୱାୟତ୍ତ ଶାସନ ଉପଲବ୍ଧ ହେବ ବୋଲି ଘୋଷଣା କରିବେ ଏବଂ ମଧ୍ୟବର୍ତ୍ତୀ କାଳରେ ସରକାରୀ କାର୍ଯ୍ୟ ନିର୍ବାହ ପାଇଁ ଗୋଟିଏ ଭାରତୀୟ କାଉନ୍‌ସିଲ୍ ଭାଇସ୍‌ରାୟଙ୍କ ଅଧୀନରେ ଗଠିତ ହେବ, ଯାହାକି ଯୁଦ୍ଧ ପରିଚାଳନାରେ ଭାଇସ୍‌ରାୟଙ୍କୁ ଯଥାଯୁକ୍ତ ପରାମର୍ଶ ଦେବେ । ସଂଖ୍ୟାନୁପାତିକ ଭୋଟ୍ ଦ୍ୱାରା ନିର୍ବାଚିତ ଏକ କନ୍‌ଷ୍ଟିଚୁଏଣ୍ଟ ଆସେମ୍ବ୍ଲି ବା ଗଣ-ପରିଷଦ ଭାରତର ସମ୍ବିଧାନ ପ୍ରଣୟନ କରିବେ । ଏହି ଗଣ-ପରିଷଦର ସଭ୍ୟମାନେ ପ୍ରାଦେଶିକ ବିଧାନସଭା ଦ୍ୱାରା ନିର୍ବାଚିତ ହେବେ । କୌଣସି ପ୍ରଦେଶ ଯଦି କେନ୍ଦ୍ରରୁ ସ୍ୱତନ୍ତ୍ର ରହିବାକୁ ଚାହେଁ, ତାହେଲେ ପ୍ରଦେଶର ସେ ଅଧିକାର ସ୍ୱୀକୃତ ହେବ । କିନ୍ତୁ ଏହି ନିଷ୍ପତ୍ତିକୁ ହଠାତ୍ ଘୋଷଣା ନ କରି କ୍ରିପ୍ସ ଭାରତରେ ପହଞ୍ଚି ପ୍ରଥମେ ଭାଇସ୍‌ରାୟ ଓ ତାଙ୍କ କାଉନ୍‌ସିଲ୍‌ର ସଦସ୍ୟ ଓ ପରେ ଅନ୍ୟ ଭାରତୀୟ ନେତାମାନଙ୍କ ସହିତ ପ୍ରାଥମିକ ଆଲୋଚନା କରିବା ପରେ ବ୍ରିଟିଶ ସରକାରଙ୍କ ନିଷ୍ପତ୍ତିଟିକୁ ଘୋଷଣା କରିବା ଉଚିତ ହେବ ।

ଉପରୋକ୍ତ ନିଷ୍ପତ୍ତି ଅନୁଯାୟୀ ୧୯୪୨ ମାର୍ଚ୍ଚ ୨୨ ତାରିଖରେ କ୍ରିପ୍ସ ଭାରତରେ ପହଞ୍ଚିଲେ ଓ ପ୍ରଥମେ ଭାଇସ୍‌ରାୟ ଓ ତାଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର ସଭ୍ୟମାନଙ୍କୁ ପ୍ରସ୍ତାବିତ ନିଷ୍ପତ୍ତିର ସର୍ତ୍ତଗୁଡ଼ିକ ସମ୍ପର୍କରେ ସୂଚନା ଦେଲେ ଓ ତା'ପରେ ବିଭିନ୍ନ ରାଜନୈତିକ ନେତାମାନଙ୍କ ସହିତ ଏ ବିଷୟରେ ଆଲୋଚନା କଲେ । ମାର୍ଚ୍ଚ ୨୯

ତାରିଖରେ ବ୍ରିଟିଶ୍ ସରକାରଙ୍କର ନିଷ୍ପତ୍ତିକୁ ଘୋଷଣା କରାଗଲା ଓ ଏକ ସାମ୍ବାଦିକ ସମ୍ମିଳନୀରେ କ୍ରିପ୍ସ ଏ ବିଷୟରେ ବିସ୍ତୃତ ସୂଚନା ଦେଲେ ।

କ୍ରିପ୍ସଙ୍କ ଭାରତ ଆଗମନ ସମୟରେ ଜୱାହରଲାଲ୍ ନେହରୁ ତାଙ୍କର କନ୍ୟା ବିବାହ ହେତୁ ଆଲ୍ଲାହାବାଦ୍‌ରେ କାର୍ଯ୍ୟବ୍ୟସ୍ତ ଥିଲେ । ଏଣେ ଗାନ୍ଧିଜୀ କଂଗ୍ରେସ କାର୍ଯ୍ୟକାରୀ କମିଟି ଓ ଜୱାହରଲାଲ୍‌ଙ୍କ ଉପରେ ସମସ୍ତ ଦାୟିତ୍ୱ ଛାଡ଼ିଦେଇ ନିଜେ ବିଚାରବିମର୍ଶରୁ ଅଲଗା ରହିଥିଲେ । ରାଜଗୋପାଳଚାରୀ କ୍ରିପ୍ସଙ୍କ ପ୍ରସ୍ତାବକୁ ଗ୍ରହଣ କରିନେବାପାଇଁ ଅନୁକୂଳ ମତ ପ୍ରକାଶ କରିଥିଲେ । କିନ୍ତୁ ଗାନ୍ଧିଜୀ ଓ ଅନ୍ୟ କଂଗ୍ରେସ ନେତାମାନେ ଏ ପ୍ରସ୍ତାବର ବିରୋଧ କରୁଥିଲେ । ଜିନ୍ନା ଓ ମୁସ୍‌ଲିମ୍ ଲିଗ୍‌କୁ ସନ୍ତୁଷ୍ଟ କରିବା ପାଇଁ ଏ ପ୍ରସ୍ତାବରେ ଯେ ଦେଶ ବିଭାଜନର ବୀଜ ସନ୍ନିହିତ ଅଛି, ତାହା କଂଗ୍ରେସ ନେତାମାନଙ୍କୁ ବିସ୍ମିତ କରିଥିଲା । କଂଗ୍ରେସ ସଭାପତି ମୌଲାନା ଆଜାଦ ମନ୍ତବ୍ୟ ଦେଇଥିଲେ ଯେ, ଦେଶରକ୍ଷା ଦାୟିତ୍ୱ ଭାରତୀୟମାନଙ୍କୁ ଅର୍ପଣ କରିବା ପାଇଁ ଏଥିରେ ସ୍ପଷ୍ଟ ସୂଚନା ନାହିଁ । ଆଲ୍ଲାହାବାଦରୁ ଫେରି ଜୱାହରଲାଲ୍ ନେହରୁ କହିଥିଲେ ଯେ, ଭାରତୀୟମାନଙ୍କୁ ଯଦି ଅସଲ ଫଳପ୍ରଦ କ୍ଷମତା ପ୍ରଦାନ କରାଯାଏ, ତା'ହେଲେ ଭାରତ ଫାସିଷ୍ଟ ବିରୋଧୀ ଯୁଦ୍ଧରେ ସହଯୋଗ କରିପାରେ । କିନ୍ତୁ ତାଙ୍କ ମତରେ ଏ ପ୍ରକାର କ୍ଷମତା ପ୍ରଦାନର କୌଣସି ସ୍ପଷ୍ଟ ଇଙ୍ଗିତ ଦୃଷ୍ଟିକୁ ଆସୁନାହିଁ ।

ଦିଲ୍ଲୀରେ ଥିବା ସମୟରେ ଭାରତୀୟ ନେତାମାନଙ୍କ ସହ ଆଲୋଚନା କରିବା ମଧ୍ୟରେ କ୍ରିପ୍ସ ତାଙ୍କର ମୂଳ ପ୍ରସ୍ତାବରେ କେତେକ ପରିବର୍ତ୍ତନ କରିଥିଲେ । ପରିବର୍ତ୍ତିତ ପ୍ରସ୍ତାବରେ ଉଲ୍ଲେଖ ଥିଲା, ଭାରତର ଦେଶରକ୍ଷା ଭାରତ ସରକାରଙ୍କ ଦାୟିତ୍ୱ । ଏଣୁ ପ୍ରତିରକ୍ଷା ବିଭାଗ ସମେତ କାର୍ଯ୍ୟନିର୍ବାହର ଅନ୍ୟ ସମସ୍ତ ଦାୟିତ୍ୱ ଭାରତୀୟମାନଙ୍କ ସହାୟତାରେ ଚାଲିବ । କିନ୍ତୁ ଭାଇସ୍‌ରାୟ ଏହାର ତୀବ୍ର ବିରୋଧ କଲେ ଓ ତାଙ୍କ ବିରୋଧର କାରଣ ଚର୍ଚ୍ଚିଲ୍‌ଙ୍କୁ ମଧ୍ୟ ଜଣାଇଦେଲେ । ସେନାପତି ୱାଭେଲ୍ କହିଲେ ଯେ, ତାଙ୍କ କ୍ଷମତାରେ କୌଣସି ମନ୍ତ୍ରୀ ବା ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର ହସ୍ତକ୍ଷେପ କରିପାରିବେ ନାହିଁ । ଭାଇସ୍‌ରାୟଙ୍କ ଉପରେ ନ୍ୟସ୍ତ ଥିବା 'ଭେଟୋ' କ୍ଷମତାକୁ କନ୍‌ଭେନ୍‌ସନ୍ (ପରମ୍ପରା) ଅନୁଯାୟୀ ବ୍ୟବହାର କରିବାକୁ ଭାଇସ୍‌ରାୟଙ୍କ ନିକଟରେ ଯେଉଁ ଦାବି କରାଯାଇଥିଲା, ସେ ତାକୁ ସଂପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ କରିଥିଲେ । ଏଣେ ପାର୍ଲାମେଣ୍ଟରେ ଭାରତ ସଚିବ ଆମେରୀ ସମାଲୋଚନା କଲେ ଯେ, କ୍ରିପ୍ସ

ତାଙ୍କୁ ପ୍ରଦତ୍ତ ଆଲୋଚ଼ନା ସର୍ତ୍ତର ସୀମା ଲଙ୍ଘନ କରୁଛନ୍ତି । କ୍ରିପ୍ସ ଚର୍ଚ୍ଚିଲ୍‌ଙ୍କ ସହିତ ପରାମର୍ଶ କରି ତାଙ୍କ ପରିବର୍ତ୍ତିତ ପ୍ରସ୍ତାବରେ ଆଉ ଆଗେଇଲେ ନାହିଁ ।

ଏହାପରେ କଂଗ୍ରେସ କାର୍ଯ୍ୟକାରୀ କମିଟି କ୍ରିପ୍ସ ପ୍ରସ୍ତାବକୁ ସଂପୂର୍ଣ୍ଣ ଭାବେ ପ୍ରତ୍ୟାଖ୍ୟାନ କଲେ । ମୌଲାନା ଆଜାଦ୍ କ୍ରିପ୍ସଙ୍କୁ ଗୋଟିଏ ପତ୍ର ଲେଖି କହିଥିଲେ, "ଆମକୁ ଏକ ଧାରଣା ଦିଆଯାଇଥିଲା ଯେ, ଭାଇସ୍‌ରାୟଙ୍କ ଅଧୀନରେ ଯେଉଁ କାଉନ୍‌ସିଲ୍ ଗଠିତ ହେବ, ତାହା ପ୍ରକୃତରେ ମନ୍ତ୍ରୀ ପରିଷଦ ଭାବରେ କାର୍ଯ୍ୟ କରିବ ଓ ଭାଇସ୍‌ରାୟ କେବଳ ସାମ୍ବିଧାନିକ କର୍ତ୍ତା ହୋଇ ରହିବେ । କିନ୍ତୁ ଆପଣ ବର୍ତ୍ତମାନ କହୁଛନ୍ତି, ଭାଇସ୍‌ରାୟ ଓ ତାଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍ ପୂର୍ବବତ୍ କାର୍ଯ୍ୟ କରିବେ ଓ ଭାଇସ୍‌ରାୟ ଆବଶ୍ୟକ ମନେକଲେ ତାଙ୍କର ସମସ୍ତ 'ଭେଟୋ' କ୍ଷମତା ବ୍ୟବହାର କରି ପାରିବେ ଏବଂ ବ୍ରିଟିଶ୍ ଶାସନରେ ପ୍ରଚ଼ଳିତ କନ୍‌ଭେନ୍‌ସନ୍ ଅନୁଯାୟୀ ଭାଇସ୍‌ରାୟ କାର୍ଯ୍ୟ କରିବା ସମ୍ପର୍କରେ ବର୍ତ୍ତମାନ କିଛି କୁହାଯାଇ ପାରିବନାହିଁ । ପ୍ରସ୍ତାବିତ ସରକାରର ରୂପରେଖ ଏପରି ହେଲେ, ଆମେମାନେ ତହିଁରେ ପ୍ରବେଶ କରିପାରିବୁ ନାହିଁ ।"

ଏ ପତ୍ରଟି ପାଇବା ପରେ କ୍ରିପ୍ସ ଚର୍ଚ୍ଚିଲ୍‌ଙ୍କୁ ଟେଲିଗ୍ରାମ୍ କରି ଜଣାଇଦେଲେ ଯେ ସମାଧାନର କୌଣସି ସମ୍ଭାବନା ନାହିଁ । ଦୁଇଦିନ ପରେ ସେ ଭାରତ ଛାଡ଼ି ଇଂଲଣ୍ଡ ପ୍ରତ୍ୟାବର୍ତ୍ତନ କଲେ । ସେ ଯିବା ପୂର୍ବରୁ ମୁସ୍‌ଲିମ୍ ଲିଗ୍ ଘୋଷଣା କଲା ଯେ, ପାକିସ୍ଥାନ ପ୍ରସ୍ତାବକୁ ଏଥିରେ ସ୍ପଷ୍ଟ ଭାବରେ ଗ୍ରହଣ କରାଯାଇ ନଥିବାରୁ ଲିଗ୍ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରୁଛି ।

କ୍ରିପ୍ସ ମିଶନ ବିଫଳ ହେଲା । ଭାଇସ୍‌ରାୟ ଲିନ୍‌ଲିଥ୍‌ଗୋ, ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ଓ ଭାରତ ସଚ଼ିବ ଆମେରୀ ଯେପରି ଆଶା କରୁଥିଲେ, ତାହାହିଁ ଫଳବତୀ ହେଲା । ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ଏହି ବିଫଳତାରେ ନିଜର ସଂଭ୍ରମତା ହରାଇ ଆନନ୍ଦରେ କ୍ରିପ୍ସଙ୍କୁ ଓଲଟା ଅଭିନନ୍ଦନ ଜଣାଇଥିଲେ ।



# ନଅ ଅଗଷ୍ଟ

କ୍ରିପ୍ସ ମିଶନର ବିଫଳତା ପରେ କଂଗ୍ରେସର ଦୃଢ଼ ଧାରଣା ହେଲା ଯେ, ବ୍ରିଟିଶ ସରକାର କୌଣସି ପ୍ରକାରେ ହେଲେ ମଧ୍ୟ କ୍ଷମତା ଛାଡ଼ିବାକୁ ନାରାଜ । ଗାନ୍ଧିଜୀ ତ ପ୍ରାରମ୍ଭରୁ ଏ ପ୍ରସ୍ତାବର ବିରୋଧୀ ଥିଲେ, କିନ୍ତୁ ତାଙ୍କ ବିରୋଧର ଭିତ୍ତି ଥିଲା ଅହିଂସା । ଯୁଦ୍ଧରେ ସହଯୋଗ କରି ଜାପାନ ବିରୁଦ୍ଧରେ ଅସ୍ତ୍ରଶସ୍ତ୍ର ବଳରେ ଲଢ଼େଇ କରିବାକୁ ସେ ଆଦୌ ଗ୍ରହଣ କରୁନଥିଲେ । ଜୱାହରଲାଲ୍ ନେହୁରୁ ଓ ମୌଲାନା ଆଜାଦ୍ ପ୍ରମୁଖ ନେତାମାନେ ମଧ୍ୟ ଅନୁଭବ କଲେ ଯେ, ଏକ ସାମ୍ରାଜ୍ୟବାଦୀ ସରକାରର ବାହୁଛାୟା ତଳେ ଫାସୀବାଦ ବିରୁଦ୍ଧରେ ସଂଘର୍ଷ ସମ୍ଭବ ନୁହେଁ । ଜୁଲାଇ ୬ ତାରିଖରେ ୱାର୍ଦ୍ଧାଠାରେ ଦୀର୍ଘ ଆଠ ଦିନ ଧରି ଆଲୋଚ଼ନା ପରେ କଂଗ୍ରେସ କାର୍ଯ୍ୟକାରୀ କମିଟି ପ୍ରସ୍ତାବ ଗ୍ରହଣ କଲେ– ବ୍ରିଟିଶ ସରକାର ତୁରନ୍ତ ଭାରତରୁ ଓହରିଯିବା ଉଚିତ । ନଚେତ୍ କଂଗ୍ରେସ ତା'ର ସମସ୍ତ ଶକ୍ତି ଦେଇ ଭାରତର ରାଜନୈତିକ ଅଧିକାର ସାବ୍ୟସ୍ତ କରିବା ପାଇଁ ଅହିଂସା ସଂଗ୍ରାମ କରିବ ଏବଂ ମହାତ୍ମା ଗାନ୍ଧି ଏହି ସଂଗ୍ରାମର ହେବେ ମୁଖ୍ୟ ପୁରୋଧା ଓ ସଞ୍ଚାଳକ । ବିଷୟର ଗୁରୁତ୍ୱ ଦୃଷ୍ଟିରୁ ଏହି ପ୍ରସ୍ତାବଟି ସର୍ବଭାରତୀୟ କଂଗ୍ରେସ କମିଟି ଅଧିବେଶନରେ ବିଚାର ପାଇଁ ନିଷ୍ପତ୍ତି ହେଲା ।

ଏ ପ୍ରସ୍ତାବ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ନୂତନ ଆଗ୍ରହ ଓ ସଂଗ୍ରାମଶୀଳ ମନୋଭାବ ସୃଷ୍ଟି କରିଥିଲା । କିନ୍ତୁ ଉଦାରପନ୍ଥୀ ନେତାମାନେ ଏଥିସହିତ ଏକମତ ହେଲେନାହିଁ । ଜିନ୍ନା ଏକ କଠୋର ମନ୍ତବ୍ୟ ଦେଲେ ଯେ, କଂଗ୍ରେସ ପ୍ରସ୍ତାବ ବ୍ରିଟିଶ ସରକାରଙ୍କୁ ଧମକେଇ କାର୍ଯ୍ୟ ହାସଲ କରିବାର ପନ୍ଥା । ଯାହାହେଉ ବମ୍ବେରେ ଅଗଷ୍ଟ ସାତ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ଅନୁଷ୍ଠିତ ହେଲା । ସାତ ଓ ଆଠ ଦୁଇଦିନ ଧରି ଆଲୋଚ଼ନା ପରେ, ଆଠ ତାରିଖ ମଧ୍ୟରାତ୍ରିରେ ପ୍ରସ୍ତାବଟି

ଗୃହୀତ ହୋଇଥିଲା । ଗାନ୍ଧିଜୀଙ୍କ ପରାମର୍ଶ ଅନୁଯାୟୀ ଜୱାହରଲାଲ୍ ନେହ୍ରୁ ଏ ପ୍ରସ୍ତାବ ଆଗତ କରିଥିଲେ ଏବଂ ପ୍ରସ୍ତାବକୁ ସମର୍ଥନ କରିଥିଲେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍ । କଂଗ୍ରେସରୁ ଇସ୍ତଫା ଦେଇଥିବା ରାଜାଜୀ (ରାଜଗୋପାଳଚାରୀ) ସ୍ୱଭାବତଃ ଏ ଅଧିବେଶନରେ ଯୋଗ ଦେଇନଥିଲେ ଏବଂ ଏହାର ବିରୋଧ କରି ସମ୍ବାଦପତ୍ରରେ ବିବୃତି ଦେଇଥିଲେ । ପ୍ରସ୍ତାବ ଆଗତ କରି ଜୱାହରଲାଲ କହିଥିଲେ, "ସ୍ୱାଧୀନତା ଭାରତବାସୀଙ୍କର ଏକ ତୁରନ୍ତ ଆବଶ୍ୟକତା । ଏ ଆବଶ୍ୟକତା ପୂରଣ ନହେଲେ ଭାରତ ଫାସିଷ୍ଟ ବିରୋଧୀ ସଂଗ୍ରାମରେ ସାହାଯ୍ୟ କରିବାକୁ ସମର୍ଥ ହେବନାହିଁ ।" ସେ ପୁଣି କହିଲେ, "ମୁଁ ଦାରିଦ୍ର୍ୟକୁ ଘୃଣା କରେ, କିନ୍ତୁ ମୋର ଅଭିଯୋଗ, ବ୍ରିଟିଶ ସରକାର ଭାରତବାସୀଙ୍କୁ ଦରିଦ୍ରରୁ ଦରିଦ୍ରତର କରି ରଖିଅଛନ୍ତି । ଭାରତବାସୀ ଦାରିଦ୍ର୍ୟ ପ୍ରପୀଡ଼ିତ ଜରାଜୀର୍ଣ୍ଣ ମଣିଷରେ ପରିଣତ ହୋଇଛନ୍ତି ।" ଆବେଗରେ ଉଦ୍‌ବେଳିତ ହୋଇ ସେ ପୁଣି କହି ଚାଲିଲେ, "ଆମେମାନେ ଏକ ଝଡ଼ଝଞ୍ଜାମୟ ମହାସମୁଦ୍ରକୁ ଲମ୍ଫ ଦେବାକୁ ଯାଉଛୁ । ହୁଏତ ଆମେ ସ୍ୱାଧୀନ ମଣିଷ ଭାବରେ ଫେରିଆସିବୁ, ନଚେତ୍ ଅତଳ ସାଗରରେ ଲୀନ ହୋଇଯିବୁ । ଏହା ଏକ କ୍ଷଣସ୍ଥାୟୀ ସଂଗ୍ରାମ ନୁହେଁ । ଏ ଆନ୍ଦୋଳନକୁ କେହି ବିଳମ୍ବିତ କରିପାରିବେ ନାହିଁ । କଂଗ୍ରେସ ତା'ର ଜୀବନ ଉଦ୍ଧାରକାରୀ ତରୀରେ ଅଗ୍ନିସଂଯୋଗ କରିଛି ଏବଂ ପ୍ରତ୍ୟାବର୍ତ୍ତନର ପଥ ରୁଦ୍ଧ ।"

ମହାତ୍ମା ଗାନ୍ଧି ଅବଶ୍ୟ ବାଗ୍ମୀ ନଥିଲେ, କିନ୍ତୁ ତାଙ୍କ ଭାଷଣର ପ୍ରତିକ୍ରିୟା ଥିଲା ସୁଦୂରପ୍ରସାରୀ । ତାଙ୍କର ଅନାବିଳ ଆନ୍ତରିକ ଉଦ୍‌ବୋଧନ ପ୍ରତିନିଧି ଓ ଦର୍ଶକମାନଙ୍କୁ ଅଭିଭୂତ କରିଥିଲା । ଦୀର୍ଘ କୋଡ଼ିଏ ବର୍ଷର ରାଜନୈତିକ ନେତୃତ୍ୱର ଅନୁଭୂତି, ଅହିଂସାରେ ପ୍ରଗାଢ଼ ବିଶ୍ୱାସ ଓ ଦେଶବାସୀଙ୍କ ଉପରେ ଗଭୀର ଆସ୍ଥା ଏ ଭାଷଣରେ ସ୍ପଷ୍ଟ ପରିସ୍ଫୁଟ ହୋଇଥିଲା । ଭାବବିହ୍ୱଳ ହୋଇ ଗାନ୍ଧିଜୀ କହିଥିଲେ, "ମୋର ଗୋଟିଏ ମନ୍ତ୍ର, ଅତି କ୍ଷୁଦ୍ର ମନ୍ତ୍ର । ସେ ମନ୍ତ୍ର ହେଲା 'କର ବା ମର' । ହୁଏତ ଆମେ ଭାରତକୁ ସ୍ୱାଧୀନ କରିବା, ଆବଶ୍ୟକ ହେଲେ ସେଥିପାଇଁ ପ୍ରାଣବଳି ଦେବା, କିନ୍ତୁ ଦାସତ୍ୱ ବନ୍ଧନରେ ଅଧିକ ଦିନ ବଞ୍ଚି ରହିବା ନାହିଁ ।" ସେ ପୁଣି କହିଲେ, "ତୁମ ପାଇଁ ମୋର ଗୋଟିଏ ବାର୍ତ୍ତା ଏବଂ ତୁମ ଜରିଆରେ ତାହା ସାରା ଭାରତକୁ ଜଣାଇଦେଉଛି । ମୁଁ ଚାହେଁ ତୁରନ୍ତ ସ୍ୱାଧୀନତା– ସମ୍ଭବ ହେଲେ ଆଜି ସନ୍ଧ୍ୟାରେ, ସକାଳର ସୂର୍ଯ୍ୟୋଦୟ ପୂର୍ବରୁ... ।"

କିନ୍ତୁ ସ୍ୱାଧୀନତାର ବାର୍ତ୍ତା ଯେପରି ବିଛୁରିତ ନ ହେବ ଲିନ୍‌ଲିଥ୍‌ଗୋ ତା'ର ସମସ୍ତ ପ୍ରତିଷେଧକ ବ୍ୟବସ୍ଥା ପୂର୍ବରୁ ପ୍ରସ୍ତୁତ କରି ରଖିଥିଲେ । ଅଧିବେଶନ ଶେଷ ହେଲା ଅଗଷ୍ଟ ଆଠ ତାରିଖ ମଧ୍ୟ ରାତ୍ରିରେ । ସୂର୍ଯ୍ୟୋଦୟ ପୂର୍ବରୁ ନଅ ତାରିଖ ସକାଳ ବ୍ରାହ୍ମମୁହୂର୍ତ୍ତରେ ବମ୍ବେର ପୋଲିସ୍ କମିସନର ଗାନ୍ଧିଜୀଙ୍କୁ ଗିରଫ ପରୱାନା ଦେଖାଇଲେ । ନେହରୁ ରହୁଥିଲେ କନିଷ୍ଠା ଭଗିନୀ କ୍ରୀଷ୍ଣା ହାତୀ ସିଂଙ୍କ କାର୍‌ମାଇକାଲ ରୋଡ୍ ବାସଭବନରେ । ସକାଳ ୫ଟା ୪୫ ମିନିଟ୍‌ରେ ନିଦ୍ରାରତ ନେହରୁଙ୍କୁ ପୋଲିସ୍ ଆଗମନର ସମ୍ବାଦ ଦିଆହେଲା ଓ ନିତ୍ୟକର୍ମ ଶେଷ କରିବାପରେ ତାଙ୍କୁ ମଧ୍ୟ ଭିକ୍ଟୋରିଆ ଟର୍ମିନସ୍ ଷ୍ଟେସନ୍‌ରୁ ଯାତ୍ରା କରୁଥିବା ସ୍ପେଶାଲ୍ ଟ୍ରେନ୍‌କୁ ନିଆଗଲା । ଏହିପରି ଭାବରେ ଭାଇସ୍‌ରାୟଙ୍କ ଆଦେଶରେ କଂଗ୍ରେସ ସଭାପତି ମୌଲାନା ଆଜାଦ, ସର୍ଦ୍ଦାର ପଟେଲ୍, ରାଜେନ୍ଦ୍ର ପ୍ରସାଦ ପ୍ରମୁଖ କାର୍ଯ୍ୟକାରୀ କମିଟିର ସମସ୍ତ ସଭ୍ୟଙ୍କୁ ଗିରଫ କରି ସେହି ସ୍ପେଶାଲ୍ ଟ୍ରେନ୍‌କୁ ପଠାଇ ଦିଆଗଲା । ଏହି ସ୍ପେଶାଲ୍ ଟ୍ରେନ୍‌ଟି ବମ୍ବେରୁ ଯାତ୍ରାକରି ପୁନା ନିକଟବର୍ତ୍ତୀ ଏକ ଛୋଟ ଷ୍ଟେସନ୍‌ରେ ରହିଲା ଓ ସେଠାରୁ କଂଗ୍ରେସ ନେତାମାନଙ୍କୁ ଅହମ୍ମଦ ନଗର ଫୋର୍ଟକୁ ନିଆଗଲା । ଗାନ୍ଧିଜୀ, କସ୍ତୁରବା ଗାନ୍ଧି ଓ ସେକ୍ରେଟେରୀ ମହାଦେବ ଦେଶାଇଙ୍କୁ ଆଗା ଖାଁ ପ୍ୟାଲେସ୍‌ରେ କାରାରୁଦ୍ଧ କରି ରଖାଗଲା । ଭାଇସ୍‌ରାୟଙ୍କ ଆଦେଶ ଅନୁଯାୟୀ ଯେତେ ଯେଉଁଠି କଂଗ୍ରେସ କର୍ମୀ ଓ ସମର୍ଥକ ଥିଲେ, ସେମାନଙ୍କୁ ସବୁ ଯେତେ ଶୀଘ୍ର ସମ୍ଭବ ଗିରଫ କରାଗଲା । କଂଗ୍ରେସ କର୍ମୀମାନେ ଯେପରି କୌଣସି ଆନ୍ଦୋଳନର ସୂତ୍ରପାତ ନ କରିବେ, ସେଥିପାଇଁ ଏ ସବୁ ପ୍ରତିଷେଧକ ବ୍ୟବସ୍ଥା ନିଆଯାଇଥିଲା ।

ଉପରୋକ୍ତ ବ୍ୟବସ୍ଥା ସତ୍ତ୍ୱେ ଅଗଷ୍ଟ ନଅର ଆହ୍ୱାନ ଦେଶବାସୀଙ୍କ ପାଖରେ ଅଛପା ରହିଲା ନାହିଁ । ଡିଫେନ୍ସ ଅଫ୍ ଇଣ୍ଡିଆ ରୁଲ୍‌ସ୍ ଓ ଅନ୍ୟ ବହୁ ପ୍ରକାରର ଆଇନଗତ କଟକଣା ଜାରୀ କରି ସମ୍ବାଦପତ୍ରମାନଙ୍କର ସମ୍ବାଦ ପ୍ରକାଶ କରିବାର ଅଧିକାରକୁ ଅନେକାଂଶରେ ପ୍ରତିହତ କରାଯାଇଥିଲା, ତା' ସତ୍ତ୍ୱେ ଏ ସମ୍ବାଦ ଦେଶବ୍ୟାପୀ ଅଗ୍ନିସମ ବିସ୍ଫୋରଣ ସୃଷ୍ଟି କଲା । କଂଗ୍ରେସ ସମାଜବାଦୀ ଦଳର ନେତାମାନେ ଗାନ୍ଧିଙ୍କର 'କର ବା ମର' ଆହ୍ୱାନକୁ 'ମାର' ଅର୍ଥରେ ଚିତ୍ରଣ କଲେ ଏବଂ ସାମ୍ୟବାଦୀ ଫର୍‌ୱାର୍ଡ଼ ବ୍ଲକ୍ ଓ ଅନ୍ୟାନ୍ୟ ବିପ୍ଳବୀ ଅନୁଷ୍ଠାନଗୁଡ଼ିକର ସହାୟତାରେ ଦେଶବ୍ୟାପୀ ହିଂସାକାଣ୍ଡ ଆରମ୍ଭ ହେଲା । ରେଳଷ୍ଟେସନ୍ ପୋଡ଼ିଦେବା, ରେଳ୍‌ଲାଇନ୍ ଓ ସ୍ଲିପର୍‌ଗୁଡ଼ିକୁ ନଷ୍ଟ କରିଦେବା

ଓ ଟେଲିଗ୍ରାଫ୍ ଓ ଟେଲିଫୋନ୍ ଲାଇନ୍‌କୁ କାଟିଦେବା ଆଦି ସବୁପ୍ରକାରର ହିଂସାକାଣ୍ଡ ଆରମ୍ଭ ହେଲା । ସର୍ବମୋଟ ୨୫୦ ରେଲଷ୍ଟେସନ୍, ୫୦ଟି ପୋଷ୍ଟ ଅଫିସ୍ ଓ ୨୦୦ ପୋଲିସ୍ ଷ୍ଟେସନ୍ ଧ୍ୱଂସ କରି ଦିଆଯାଇଥିଲା । ଉତ୍ତରପ୍ରଦେଶର ପୂର୍ବାଞ୍ଚଳ ଓ ବିହାରର ଉତ୍ତରାଞ୍ଚଳରେ ବିଶେଷତଃ ରାଜଧାନୀ ପାଟନା ସହର ନିକଟରେ ବ୍ରିଟିଶ୍ ବିରୋଧୀ ଧ୍ୱଂସଲୀଳା ବହୁଦିନ ଧରି ଚାଲୁ ରହିଥିଲା । ପାଟନା ଓ ମୋଗଲସରାଇର ଷ୍ଟେସନ୍‌ଗୁଡ଼ିକ ଭାଙ୍ଗିରୁଜି ଯିବାପରେ କଲିକତା ଓ ଉତ୍ତରାଞ୍ଚଳ ମଧ୍ୟରେ ଯୋଗାଯୋଗ ଛିନ୍ନ ହେଲା ।

କିନ୍ତୁ ଆନ୍ଦୋଳନ ଯେତିକି ପ୍ରଖର ହେଉଥିଲା ଦମନଲୀଳାର ପ୍ରକୋପ ହେଉଥିଲା ତା'ଠାରୁ ଅଧିକ ତୀବ୍ର, ଶାଣିତ ଓ ବର୍ବର । ଅଗଷ୍ଟ ନଅ ତାରିଖ ଦମନର ପ୍ରତିବାଦରେ ବମ୍ବେ ସହରରେ ଯେଉଁ ଜନବିକ୍ଷୋଭ ହେଲା, ସେଥିରେ ସାତଜଣ ଲୋକ ପ୍ରାଣ ହରାଇଥିଲେ । ଅଗଷ୍ଟ ୧୧ ତାରିଖ ମଧ୍ୟରେ କେବଳ ବମ୍ବେ ସହରରେ ୩୧ ଜଣ, ଦିଲ୍ଲୀରେ ୧୨ ଜଣ, କଲିକତାରେ ୨ ଜଣ, ମାନ୍ଦ୍ରାଜରେ ୪ ଜଣ, ଢାକାରେ ୫ ଜଣ ଓ ଆଲ୍ଲାହାବାଦ୍‌ରେ ୩ ଜଣ ଲୋକ ପୋଲିସ୍ ଗୁଳିରେ ନିହତ ହୋଇଥିଲେ ଓ ହଜାର ହଜାର ଲୋକ ଆହତ ହୋଇଥିଲେ । ମୋଟ ୩୫,୦୦୦ କଂଗ୍ରେସ ନେତା ଓ କର୍ମୀଙ୍କୁ ଗିରଫ କରାଯାଇ କାରାରୁଦ୍ଧ କରାଯାଇଥିଲା । ବ୍ରିଟିଶ ସରକାର ଛଅମାସ ମଧ୍ୟରେ ସମସ୍ତ ପ୍ରକାର ପ୍ରତିବାଦକୁ ନିଶ୍ଚିହ୍ନ ଓ ନୀରବ କରିବା ପାଇଁ ସମର୍ଥ ହୋଇଥିଲେ ।

୧୯୪୩ ଆରମ୍ଭରେ ଗାନ୍ଧିଜୀ ଲିନ୍‌ଲିଥ୍‌ଗୋଙ୍କୁ ପତ୍ର ଲେଖିଲେ, ପରିସ୍ଥିତିର ଚାପରେ ସେ ୨୧ ଦିନ ଅନଶନ କରିବେ । ଗାନ୍ଧିଜୀଙ୍କୁ ସେତେବେଳେ ୭୩ ବର୍ଷ ବୟସ ଏବଂ ଉଚ୍ଚ ରକ୍ତଚାପରେ ସେ ପୀଡ଼ିତ । ବମ୍ବେର ସର୍ଜନ ଜେନେରାଲ୍ ମେଜର୍ ଜେନେରାଲ୍ କ୍ୟାଣ୍ଡି ଯେ କି ଗାନ୍ଧିଜୀଙ୍କୁ ପୂର୍ବରୁ କେତେଥର ପରୀକ୍ଷା କରିଥିଲେ, ସେ ମତ ଦେଲେ ଯେ ଗାନ୍ଧିଜୀ ୧୦/୧୨ ଦିନରୁ ଅଧିକ ବଞ୍ଚି ପାରିବେ ନାହିଁ । ବମ୍ବେର ଗଭର୍ଣ୍ଣର ଲୁମଲେ ଭାଇସ୍‌ରାୟଙ୍କୁ ଲେଖିଲେ ଯେ, ଅନଶନ ହେତୁ କାରାଗାରରେ ଗାନ୍ଧିଜୀଙ୍କର ମୃତ୍ୟୁ ହେଲେ ବମ୍ବେର ରାସ୍ତାଘାଟରେ ନିଆଁ ଜଳିବ । ଭାଇସ୍‌ରାୟଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର ସଭ୍ୟମାନେ ସର୍ବସମ୍ମତ ମତ ଦେଲେ ଯେ, ଅନଶନ କାଳରେ ଗାନ୍ଧିଜୀଙ୍କୁ ମୁକ୍ତ କରିଦେବା ଉଚିତ । କିନ୍ତୁ ଚର୍ଚ୍ଚିଲ୍‌ଙ୍କ ଓ୍ୱାର୍ କ୍ୟାବିନେଟ୍ ଏପରି କାର୍ଯ୍ୟପନ୍ଥାର ବିରୋଧ କରୁଥିଲେ । ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ରେ ଗୋଟିଏ

ପ୍ରସ୍ତାବ ହେଲା ଯେ ଗାନ୍ଧିଙ୍କୁ ମୁକ୍ତ କରାଯାଉ ଓ ଅନଶନ ଭାଙ୍ଗିବା ପରେ ପୁନର୍ବାର ଗିରଫ କରାଯାଇ ଦଣ୍ଡର ଅବଶିଷ୍ଟ ମିଆଦ ସମାପ୍ତ ହେବା ପର୍ଯ୍ୟନ୍ତ ତାଙ୍କୁ କାରାରୁଦ୍ଧ ରଖାଯାଉ । କିନ୍ତୁ ନିଜେ ଗାନ୍ଧିଜୀ ଏପରି ପ୍ରସ୍ତାବର ବିରୋଧ କଲେ ଏବଂ ଫେବୃଆରୀ ୧୯୪୩ ମସିହା ୧୦ ତାରିଖ ସକାଳେ ଅନଶନ ଆରମ୍ଭ କଲେ । କିନ୍ତୁ କାହାର କୌଣସି ପରାମର୍ଶ ନଶୁଣି ଲିନ୍‌ଲିଥ୍‌ଗୋ ତାଙ୍କୁ କାରାମୁକ୍ତ କଲେ ନାହିଁ ।

ଭାଇସ୍‌ରାୟଙ୍କ କଠୋର ମନୋଭାବର ପ୍ରତିବାଦରେ ତାଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ର ତିନିଜଣ ସଦସ୍ୟ ହିନ୍ଦୁନେତା ଏମ୍.ଏସ୍. ଆଣେ, କଲିକତାର ଏନ୍.ଆର୍. ସରକାର ଓ ପାର୍ସୀନେତା ସାର୍ ହୋମି ମୋଦି କାଉନ୍‌ସିଲ୍‌ରୁ ଇସ୍ତଫା ପ୍ରଦାନ କରିଥିଲେ । ଅବଶ୍ୟ ଭାରତର ଭାଗ୍ୟ ଭଲ, ଗାନ୍ଧିଜୀ ପୂରା ଏକୋଇଶ ଦିନ ଅନଶନ ପାଳନ କରି ମାର୍ଚ୍ଚ ୩ ତାରିଖରେ ଅନଶନ ଭଙ୍ଗ କଲେ । ଗାନ୍ଧିଙ୍କୁ ଉପଯୁକ୍ତ ଜବାବ ଦେଇଛନ୍ତି ବୋଲି ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ୍ ଓ ଭାରତ ସଚିବ ଆମେରୀ ଲିନ୍‌ଲିଥ୍‌ଗୋଙ୍କୁ ଅଭିନନ୍ଦନ ଜଣାଇଥିଲେ ।



# ୱାଭେଲ୍ ଓ ସିମଳା ସମ୍ମିଳନୀ

୧୯୪୩ ମସିହା ମଧ୍ୟାନ୍ତର ବେଳକୁ ମହାଯୁଦ୍ଧରେ ଜର୍ମାନ୍‌ମାନଙ୍କର ବିଜୟର ସ୍ୱପ୍ନ ମଉଳି ଆସିଥିଲା । ରୁଷିଆର ଷ୍ଟାଲିନ୍‌ଗ୍ରାଡ୍‌ଠାରେ ସେମାନେ ଲାଲବାହିନୀଠାରୁ ଏପରି ପ୍ରତିରୋଧ ପାଇଥିଲେ ଯେ, ଜର୍ମାନମାନଙ୍କର ଷ୍ଟାଲିନ୍‌ଗ୍ରାଡ୍ ଦଖଲ କରି କକେସସ୍ ଆଡ଼କୁ ଆଗେଇବାର ପ୍ରଶ୍ନ ନଥିଲା । ସେହିଠାରୁ ସେମାନେ ପଛଘୁଞ୍ଚା ଦେଇ ଜର୍ମାନୀକୁ ଫେରିବାକୁ ଆରମ୍ଭ କଲେ । ଉତ୍ତର-ପୂର୍ବରେ ଲେନିନ୍‌ଗ୍ରାଡ୍ ସହରଠାରେ ରୁଷ୍ ସେନାବାହିନୀ ଓ ଜନତାର ସମ୍ମିଳିତ ପ୍ରତିରୋଧ ଏତେ ସୁଦୃଢ଼ ହେଲା ଯେ, ଜର୍ମାନ୍‌ମାନେ ଉତ୍ତରପୂର୍ବରେ ଆଉ ପାଦେ ଆଗେଇ ପାରିଲେ ନାହିଁ ।

୧୯୪୧ ପ୍ରାରମ୍ଭରେ ସୁଭାଷ ଚନ୍ଦ୍ର ବୋଷ ଆଫଗାନିସ୍ଥାନ ଦେଇ ଜର୍ମାନୀକୁ ପଳାୟନ କରିଥିଲେ । କିନ୍ତୁ ବର୍ଷାଧିକ କାଳ ଜର୍ମାନୀରେ ଅପେକ୍ଷା କଲେ ମଧ୍ୟ ହିଟଲର ଭାରତ ଆକ୍ରମଣର କୌଣସି ସୂଚନା ଦେଉ ନଥିଲେ । ନିରାଶ ହୋଇ ସୁଭାଷ ବୋଷ ଗୋଟିଏ ଜର୍ମାନ୍ 'ସବ୍‌ମେରିନ୍'ରେ ଜାପାନ୍‌କୁ ଯାତ୍ରା କଲେ । ଜାପାନୀ ଆକ୍ରମଣର ମୁକାବିଲା କରିବା ପାଇଁ ଭାରତୀୟ ସୈନ୍ୟବାହିନୀର ଯେଉଁମାନେ ସିଙ୍ଗାପୁର ଓ ରେଙ୍ଗୁନ୍‌ରେ ରହି ଯାଇଥିଲେ, ଜାପାନୀମାନଙ୍କ ସହିତ ଯୁଦ୍ଧରେ ସେମାନଙ୍କୁ ଆତ୍ମସମର୍ପଣ କରିବାକୁ ହେଲା ଏବଂ ଏହି ଆତ୍ମସମର୍ପଣକାରୀ ସୈନ୍ୟମାନଙ୍କୁ ନେଇ ସୁଭାଷ ଚନ୍ଦ୍ର ବୋଷ ଭାରତର ମୁକ୍ତିବାହିନୀ (ଆଇ.ଏନ୍.ଏ.) ଗଠନ କରିଥିଲେ । କିନ୍ତୁ ତାହା ସତ୍ତ୍ୱେ ଭାରତର ଉପକୂଳରେ ଅବତରଣ କରିବା ପାଇଁ ଜାପାନୀମାନଙ୍କର ସାହସ ନଥିଲା ଏବଂ ବ୍ରିଟିଶ୍ ସରକାର ଅନୁଭବ କରିଥିଲେ ଯେ, ଅଳ୍ପକାଳ ମଧ୍ୟରେ ଜାପାନୀମାନଙ୍କର ମଧ୍ୟ ପରାଜୟ ଘଟିବ ।

ଏହି ସମୟରେ ଭାରତର ଭାଇସ୍‌ରାୟ ଓ ଗଭର୍ଣ୍ଣର ଜେନେରାଲ୍ ଲିନ୍‌ଲିଥ୍‌ଗୋ ବିଦ୍ରୋହୀ କଂଗ୍ରେସନେତା ଓ ତାଙ୍କର ସମର୍ଥକମାନଙ୍କୁ କାରାଗାରରେ ବନ୍ଦ ରଖି

ଅନେକଟା ଆଶ୍ୱସ୍ତ ଥିଲେ । ଲିନ୍‌ଲିଥ୍‌ଗୋଙ୍କର ନୀତି ଥିଲା, କଂଗ୍ରେସ ନେତାମାନଙ୍କୁ କାରାରୁଦ୍ଧ କରି ମୁସ୍‌ଲିମ୍ ଲିଗ୍ ନେତାମାନଙ୍କୁ କ୍ଷମତାର ପରିସର ବଢ଼ାଇବା ପାଇଁ ପ୍ରୋତ୍ସାହନ ଦେବା । ଏହି ପ୍ରକ୍ରିୟାରେ କଂଗ୍ରେସ ମନ୍ତ୍ରୀମାନେ ଇସ୍ତଫା ଦେବାପରେ ମହମ୍ମଦ ଅଲ୍ଲୀ ଜିନ୍ନା ଛଅଟି ପ୍ରଦେଶରେ ଲିଗ୍ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇଥିଲେ । ସିନ୍ଧୁପ୍ରଦେଶରେ ଖାନ୍ ବାହାଦୁର ଆଲ୍ଲାବକ୍ସ କଂଗ୍ରେସ ଓ ଅନ୍ୟ କେତେକ କ୍ଷୁଦ୍ର ମୁସ୍‌ଲିମ୍ ଗୋଷ୍ଠୀର ସମର୍ଥନରେ ପ୍ରଧାନମନ୍ତ୍ରୀ ହୋଇଥିଲେ । ୧୯୪୨ ଅଗଷ୍ଟରେ କଂଗ୍ରେସ ଉପରେ ବ୍ରିଟିଶ ସରକାରଙ୍କର ବର୍ବରୋଚିତ ଆକ୍ରମଣରେ ବିଚଳିତ ହୋଇ ସେପ୍ଟେମ୍ବର ମାସରେ ସେ 'ଖାନ୍ ବାହାଦୁର' ଓ ଅନ୍ୟାନ୍ୟ ସରକାରୀ ପଦପଦବୀ ପ୍ରତ୍ୟାଖ୍ୟାନ କରିଥିଲେ । ଏଥିରେ ଉତ୍ତ୍ୟକ୍ତ ହୋଇ ସିନ୍ଧୁର ଗଭର୍ଣ୍ଣର ଆଲ୍ଲାବକ୍ସଙ୍କୁ ବରଖାସ୍ତ କରିଥିଲେ ଓ କିଛିଦିନ ପରେ ଜିନ୍ନାଙ୍କ ପ୍ରଚେଷ୍ଟା ଓ ବ୍ରିଟିଶ୍ ସରକାରଙ୍କ ପ୍ରଚ୍ଛନ୍ନ ସହାୟତା ବଳରେ ସିନ୍ଧୁପ୍ରଦେଶରେ ଏକ ଲିଗ୍ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠିତ ହୋଇଥିଲା । ଜିନ୍ନାଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେହିବର୍ଷ ଡିସେମ୍ବର ମାସରେ କରାଚୀ ବିଧାନସଭାରେ 'ପାକିସ୍ତାନ' ପ୍ରସ୍ତାବ ଗୃହୀତ ହୋଇଥିଲା । ସେହିପରି ଉତ୍ତର-ପଶ୍ଚିମ ସୀମାନ୍ତପ୍ରଦେଶରେ କଂଗ୍ରେସ ନେତା ଡାଃ. ଖାଁ ସାହେବ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେବାପରେ ୧୯୪୩ ମେ ମାସରେ ମୁସ୍‌ଲିମ୍ ଲିଗ୍‌ର ମନ୍ତ୍ରିମଣ୍ଡଳ ପ୍ରତିଷ୍ଠିତ ହେଲା । ଜିନ୍ନା କହି ଚାଲିଲେ ଯେ, କଂଗ୍ରେସ ଶାସିତ ପ୍ରଦେଶଗୁଡ଼ିକରେ ମଧ୍ୟ ମୁସ୍‌ଲିମ୍ ଲିଗ୍ ସରକାର ପ୍ରତିଷ୍ଠା କରିବାକୁ ସକ୍ଷମ ହୋଇଛନ୍ତି ।

ପଞ୍ଜାବରେ ୟୁନିଅନିଷ୍ଟ ପାର୍ଟିର ଶାସନ ଚାଲିଥିଲା ଏବଂ ସାର୍ ସିକନ୍ଦର ହୟତ୍ ଖାଁ ହିନ୍ଦୁ, ମୁସଲମାନ ଓ ଶିଖ୍ ଜମିଦାର ଗୋଷ୍ଠୀର ସହାୟତାରେ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠା କରିଥିଲେ । ୧୯୩୭ ନିର୍ବାଚନରେ ପଞ୍ଜାବ ବିଧାନସଭାକୁ ମୁସ୍‌ଲିମ୍ ଲିଗ୍‌ର ଜଣେ ମାତ୍ର ସଦସ୍ୟ ନିର୍ବାଚିତ ହୋଇଥିଲେ । ସାର୍ ସିକନ୍ଦର, ସେ ଜିନ୍ନାଙ୍କ ମୁସ୍‌ଲିମ୍ ଲିଗ୍‌ର ସମର୍ଥକ ନଥିଲେ ବା ଜିନ୍ନାଙ୍କ ପାକିସ୍ତାନ ପ୍ରସ୍ତାବକୁ ଗ୍ରହଣ କରିପାରୁନଥିଲେ । କିନ୍ତୁ ୧୯୪୨ ଡିସେମ୍ବରରେ ତାଙ୍କର ମୃତ୍ୟୁ ହେଲା ଓ ତା'ପରେ ଖିଜିର୍ ହୟତ ଖାଁ ତିୱାନା ପଞ୍ଜାବର ନୂଆ ପ୍ରଧାନମନ୍ତ୍ରୀ ହେଲେ । ସେ ଥିଲେ ଦୁର୍ବଳମନା ଏବଂ ଜିନ୍ନାଙ୍କ ସହିତ କୌଣସି ବିବାଦରେ ଲିପ୍ତ ନ ହୋଇ ସେ ତାଙ୍କୁ ସମର୍ଥନ କରିଥିଲେ । ସେହିପରି

ଆସାମରେ କଂଗ୍ରେସ ନେତା ଗୋପୀନାଥ ବର୍ଦ୍ଦୋଲାଇଙ୍କ ଇସ୍ତଫା ପରେ ମୁସ୍‌ଲିମ୍ ଲିଗ୍ ନେତା ସାର୍ ମହମ୍ମଦ ସାର୍ଦ୍ଦୁଲା କ୍ଷମତାକୁ ଆସିଥିଲେ । ବଙ୍ଗଳାରେ କୃଷକ ମଜଦୁର ପ୍ରଜା ପାର୍ଟିର ନେତା ଫଜଲ୍-ଉଲ୍-ହକ୍ ଜାତୀୟ ସୁରକ୍ଷା ପରିଷଦରୁ ଜିନ୍ନାଙ୍କ ନିର୍ଦ୍ଦେଶ ଅନୁଯାୟୀ ତୁରନ୍ତ ଇସ୍ତଫା ନଦେବା ହେତୁ, ଜିନ୍ନାଙ୍କ ନିର୍ଦ୍ଦେଶରେ ମୁସ୍‌ଲିମ୍ ଲିଗ୍ ତାଙ୍କ ମନ୍ତ୍ରୀପରିଷଦରୁ ସମର୍ଥନ ପ୍ରତ୍ୟାହାର କରି ନେଇଥିଲେ ଓ ମାର୍ଚ୍ଚ ୧୯୪୩ ମସିହାରେ ଫଜଲ୍-ଉଲ୍-ହକ୍‌ଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା । ସେହି ସ୍ଥାନରେ ବଙ୍ଗଳା ଗଭର୍ଣ୍ଣରଙ୍କ ଆହ୍ୱାନରେ ଲିଗ୍ ନେତା ସାର୍ ନାଜିମୁଦ୍ଦିନ୍ ବଙ୍ଗଳାର ପ୍ରଧାନମନ୍ତ୍ରୀ ହୋଇଥିଲେ । ଉପରୋକ୍ତ ପ୍ରକାରେ ମହମ୍ମଦ ଅଲ୍ଲୀ ଜିନ୍ନା ଛ'ଟି ପ୍ରଦେଶରେ କର୍ତ୍ତୃତ୍ୱ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇଥିଲେ ।

କଂଗ୍ରେସକୁ କାରାରୁଦ୍ଧ ରଖି ମୁସଲିମ୍ ଲିଗ୍‌କୁ ଛ'ଟି ପ୍ରଦେଶରେ ଶାସନଗାଦିରେ ବସାଇ ଲିନ୍‌ଲିଥିଗୋ ଦୀର୍ଘ ସାଢ଼େ ସାତବର୍ଷ ପରେ ୧୯୪୩ ଅକ୍ଟୋବର ମାସରେ ଭାରତରୁ ବିଦାୟ ନେଲେ । ତାଙ୍କ ସ୍ଥାନରେ କମାଣ୍ଡର-ଇନ୍-ଚିଫ୍ ୱାଭେଲଙ୍କୁ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ୍ ଭାଇସ୍‌ରାୟ ପଦରେ ନିଯୁକ୍ତ କରିଥିଲେ । ସେତେବେଳେ ବଙ୍ଗ ପ୍ରଦେଶରେ ମରୁଡ଼ି ପରିସ୍ଥିତି ହେତୁ କରାଳ ଦୁର୍ଭିକ୍ଷର ସମ୍ମୁଖୀନ ହୋଇଥାଏ ଏବଂ ବଙ୍ଗବାସୀ କ୍ଷୁଧା ଓ ନାନା ଦୁଃଖ ଦୁର୍ବିପାକରେ ଦିନ କଟାଉଥାଆନ୍ତି । ଅଭାବ ସମୟରେ ପୂର୍ବେ ରେଙ୍ଗୁନ୍ ବାଟଦେଇ ଯେଉଁ ବର୍ମା ଚାଉଳ ଆମଦାନୀ କରାଯାଉଥିଲା, ଜାପାନୀ ଆକ୍ରମଣରେ ରେଙ୍ଗୁନ୍‌ର ପତନ ପରେ ପୂର୍ବପରି ଚାଉଳ ଆମଦାନୀ କରାଯାଇ ପାରିଲା ନାହିଁ । ଲିନ୍‌ଲିଥିଗୋ ତାଙ୍କର ଭାରତରୁ ପ୍ରତ୍ୟାଗମନର ଛ'ଅ ମାସ ପୂର୍ବରୁ ଦୁର୍ଭିକ୍ଷର ସମସ୍ତ ସଙ୍କେତ ପାଇଥିଲେ ମଧ୍ୟ ବଙ୍ଗଦେଶକୁ ଦୁର୍ବିପାକରୁ ରକ୍ଷା କରିବା ପାଇଁ କୌଣସି ବ୍ୟବସ୍ଥା କରିନଥିଲେ ।

ଯାହାହେଉ ୱାଭେଲ୍ ଭାଇସ୍‌ରାୟ ଦାୟିତ୍ୱ ଗ୍ରହଣ କରିବାର ଛଅଦିନ ମଧ୍ୟରେ ବଙ୍ଗଳା ପରିସ୍ଥିତି ଅନୁଧ୍ୟାନ କରିବା ପାଇଁ କଲିକତା ଯାତ୍ରା କରିଥିଲେ । ସେ କେବଳ କଲିକତାର ଗଭର୍ଣ୍ଣରଙ୍କ ରାଜଭବନରେ ଆବଦ୍ଧ ନରହି ଦିନରାତି କଲିକତାର ଗଳିକନ୍ଦି ବୁଲି ନିରନ୍ନ ଓ ବୁଭୁକ୍ଷୁ ଲୋକଙ୍କର ଦୁର୍ଦ୍ଦଶା ଦେଖିଥିଲେ । ସେ ତୁରନ୍ତ ଏହି ବୁଭୁକ୍ଷୁ ଲୋକଙ୍କୁ ସ୍ୱତନ୍ତ୍ର ଶିବିରରେ ରଖାଇବା ପାଇଁ ନିର୍ଦ୍ଦେଶ ଦେଲେ ଏବଂ କଲିକତାବାସୀଙ୍କ

ଖାଦ୍ୟପେୟର ସୁବିଧା ପାଇଁ ସୁଷମ ବଣ୍ଟନ ବ୍ୟବସ୍ଥା ଚାଲୁ କରିବାକୁ ଓ ସେଥିପାଇଁ 'ପଡ଼ି' ବା 'ରେଶନ କାର୍ଡ଼' ପ୍ରଥା ପ୍ରଚଳନ କରିବାକୁ ନିର୍ଦ୍ଦେଶ ଦେଲେ । ଏହି ବଙ୍ଗଳା ଦୁର୍ଭିକ୍ଷରେ ପ୍ରାୟ ଦଶଲକ୍ଷ ଲୋକ ପ୍ରାଣ ହରାଇଥିବାର ଜଣାଯାଏ । ୱାଭେଲ୍ ଏହି ଦୁଃଖଦ ପରିସ୍ଥିତି ସମ୍ପର୍କରେ ଚର୍ଚ୍ଚିଲ୍‌ଙ୍କୁ ବ୍ୟକ୍ତିଗତ ଭାବରେ ପତ୍ର ଲେଖି ଜଣାଇଲେ, କିନ୍ତୁ ଚର୍ଚ୍ଚିଲ୍ ତା'ର କୌଣସି ଜବାବ ନ ଦେଇ ଗାନ୍ଧି କାହିଁକି ଏପର୍ଯ୍ୟନ୍ତ ମରିନାହାଁନ୍ତି, ସେ ସମ୍ପର୍କରେ ଉତ୍ତର ଚାହିଁଥିଲେ । ଚର୍ଚ୍ଚିଲ୍‌ଙ୍କ ଉତ୍ତରରେ ମର୍ମାହତ ହୋଇ "ୱାଭେଲ୍‌ସ ଜର୍ଣ୍ଣାଲ୍" ନାମରେ ଖ୍ୟାତ ତାଙ୍କ ଡାଏରିରେ ୧୯୪୪ ମସିହା ୫ ତାରିଖ ଜୁଲାଇରେ ଉଲ୍ଲେଖ କରିଛନ୍ତି–

"ଉଇନ୍‌ଷ୍ଟନ ମୋତେ ଏକ ବିରକ୍ତିକର ଉତ୍ତର ପଠାଇଥିଲେ । ସେଥିରେ ଲେଖାଥିଲା, ଗାନ୍ଧି କାହିଁକି ଏ ପର୍ଯ୍ୟନ୍ତ ମରିନାହାଁନ୍ତି ? ଅଥଚ ବଙ୍ଗଳାର ବୁଭୁକ୍ଷୁମାନଙ୍କ ପାଇଁ ଖାଦ୍ୟ ଯୋଗାଣ ସମ୍ପର୍କରେ ଏ ତାରବାର୍ତ୍ତାରେ ଧାଡ଼ିଟିଏ ଉତ୍ତର ନଥିଲା ।"

ଏହି ସମୟରେ ବଙ୍ଗଳାରେ ଏକ ଦୁର୍ବଳ ଓ ଅଯୋଗ୍ୟ ଲିଗ୍ ମନ୍ତ୍ରିମଣ୍ଡଳ ଶାସନ ଦାୟିତ୍ୱରେ ଥିଲା । ତା' ସାଙ୍ଗକୁ ବଙ୍ଗଳାର ଗଭର୍ଣ୍ଣର ହରବର୍ଟ ଥିଲେ ଜଣେ ଅକର୍ମଣ୍ୟଶୀଳ ଶାସକ । ଦଶଲକ୍ଷ ଲୋକ ରାସ୍ତାକଡ଼ରେ ପ୍ରାଣ ହରାଇଥିଲେ ମଧ୍ୟ ଏହା ତାଙ୍କୁ ବିଶେଷ ଭାବରେ ସ୍ପର୍ଶ କରିନଥିଲା । ୱାଭେଲ୍ ବ୍ରିଟିଶ ସରକାରଙ୍କୁ ଅନୁରୋଧ କରି ହରବର୍ଟଙ୍କ ସ୍ଥାନରେ ଜଣେ ନୂତନ ଗଭର୍ଣ୍ଣର ନିଯୁକ୍ତ କରାଇଲେ । ସେ ଥିଲେ ଅଷ୍ଟ୍ରେଲିଆର ବିଶିଷ୍ଟ ନେତା ଆର୍.ଜି. କ୍ୟାସେ ।

ରାଜନୈତିକ ଶିଥିଳତା ତାଙ୍କୁ ବିଚଳିତ କରୁଥିଲା । କିନ୍ତୁ ଚର୍ଚ୍ଚିଲ୍ ଓ ବ୍ରିଟିଶ ସରକାରଙ୍କର ମନୋଭାବ ଦେଖି ୱାଭେଲ୍ ବର୍ଷେକାଳ ଏ ସମ୍ପର୍କରେ ନୀରବ ରହିଲେ । ବର୍ଷକ ପରେ ସେ ବ୍ରିଟିଶ ସରକାରଙ୍କୁ ଏ ଅଚଳ ଅବସ୍ଥା ଦୂର କରିବା ପାଇଁ କେତେକ ପ୍ରସ୍ତାବ ଦେଲେ । କିନ୍ତୁ ତା'ର କୌଣସି ସନ୍ତୋଷଜନକ ଉତ୍ତର ମିଳିଲା ନାହିଁ । ୧୯୪୪ ମଇମାସରେ ଗାନ୍ଧିଜୀ ଆଗା ଖାଁ ପ୍ୟାଲେସ୍‌ରେ ବନ୍ଦୀ ଥିବା ବେଳେ ଦୁର୍ଦ୍ଦାନ୍ତ ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ ହେଲେ । ସେତେବେଳକୁ ଗାନ୍ଧିଜୀଙ୍କର ସହଧର୍ମିଣୀ କସ୍ତୁରବା ଗାନ୍ଧି ଓ ସେକ୍ରେଟେରୀ ମହାଦେବ ଦେଶାଇଙ୍କର ଦେହାନ୍ତ ହୋଇସାରିଥିଲା । ୱାଭେଲ୍ ବିଳମ୍ବ ନ କରି ଗାନ୍ଧିଜୀଙ୍କୁ ବିନା ସର୍ତ୍ତରେ ମୁକ୍ତି ଦେଲେ । ଗାନ୍ଧିଜୀ କାରାଗାରରୁ

ମୁକ୍ତ ହୋଇ ବମ୍ବେରେ ଅବସ୍ଥାନ କରୁଥିବା ସମୟରେ ୱାଭେଲ୍‌ଙ୍କୁ ଏକ ପତ୍ର ଲେଖି କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟମାନଙ୍କ ସହିତ ସାକ୍ଷାତ କରିବା ନିମନ୍ତେ ଅନୁରୋଧ କରିଥିଲେ । ଅବଶ୍ୟ ଗାନ୍ଧିଙ୍କ ପତ୍ରରେ ସେହି 'ପୂର୍ଣ୍ଣ ସ୍ୱାଧୀନତା' ଓ ଯୁଦ୍ଧ ଚାଲୁଥିବା ସମୟରେ କେନ୍ଦ୍ରରେ ଏକ ଜାତୀୟ ସରକାର ପ୍ରତିଷ୍ଠା ବିଷୟରେ ଉଲ୍ଲେଖ ଥିଲା । ଉଭୟ ୱାଭେଲ୍ ଓ ଲଣ୍ଡନ ସରକାର ଗାନ୍ଧିଙ୍କ ପତ୍ର ଆଲୋଚନାର ଭିତ୍ତି ହୋଇ ନପାରେ ବୋଲି ଏକମତ ଥିଲେ । କିନ୍ତୁ ବିବାଦ ଆରମ୍ଭ ହେଲା ୱାଭେଲ୍‌ଙ୍କ ପ୍ରତ୍ୟୁତ୍ତରର ଭାଷା ସଂପର୍କରେ । ୱାଭେଲ୍ ଯେଉଁ ପତ୍ରର ଚିଠା ପ୍ରସ୍ତୁତ କରିଥିଲେ, ତାହା ଥିଲା ଭଦ୍ର ଓ ସହାନୁଭୂତିଶୀଳ । କିନ୍ତୁ ଚର୍ଚ୍ଚିଲଙ୍କ ସରକାର ତାହା ମଞ୍ଜୁର କଲେନାହିଁ ଏବଂ ଅତି ତିକ୍ତ ଓ ଆକ୍ରମଣାତ୍ମକ ଭାଷାରେ ଉତ୍ତରର ଚିଠା ପଠାଇଲେ । ତଦନୁଯାୟୀ ୱାଭେଲ୍‌ଙ୍କୁ ପତ୍ର ଦେବାକୁ ପଡ଼ିଲା । ୱାଭେଲ୍ ଯାହା ଆଶଙ୍କା କରୁଥିଲେ ତାହାହିଁ ହେଲା । ଭାରତୀୟ ସମ୍ବାଦପତ୍ରମାନ ଏହି ପତ୍ର ଉପରେ କଠୋର ମନ୍ତବ୍ୟମାନ ପ୍ରକାଶ କରିଥିଲା ।

ଗାନ୍ଧିଜୀ ବମ୍ବେରେ ଥିବା ସମୟରେ ଜିନ୍ନାଙ୍କ ସହିତ ସାକ୍ଷାତ କରି ସାଂପ୍ରଦାୟିକ ମିଳାମିଶା ପାଇଁ ଉଦ୍ୟମ ଆରମ୍ଭ କରିଥିଲେ । କିନ୍ତୁ ଜିନ୍ନା ଏ ପ୍ରକାରର ମିଳାମିଶା ପାଇଁ କୌଣସି ପ୍ରକାରର ବ୍ୟଗ୍ରତା ଦେଖାଇ ନଥିଲେ । କିନ୍ତୁ ତାଙ୍କ ପାଇଁ ଖୁସି ହେବାର ଏକମାତ୍ର କାରଣ ଥିଲା, ଗାନ୍ଧିଜୀଙ୍କର ଜିନ୍ନାଙ୍କ ମାଲାବାର ପ୍ୟାଲେସ୍‌କୁ ଆଗମନ । ସେପ୍ଟେମ୍ବର ନ' ତାରିଖରୁ ୨୭ ତାରିଖ ପର୍ଯ୍ୟନ୍ତ ଆଲୋଚନା ଚାଲିଲା । କିନ୍ତୁ ସବୁଥିରେ ଜିନ୍ନା ନଛୋଡ଼ବନ୍ଦା । ତାଙ୍କର ଗୋଟିଏ ମାତ୍ର ଦାବି, ପ୍ରଥମେ 'ଭାରତ ବିଭାଜନ' । ଛ' ପ୍ରଦେଶକୁ ନେଇ ପାକିସ୍ଥାନ ଗଠନକୁ ନୀତିଗତ ଭାବେ ଗ୍ରହଣ କର, ତା'ପରେ ଯାହା କିଛି ଆଲୋଚନା ହେବ । ଗାନ୍ଧି-ଜିନ୍ନା ଆଲୋଚନା ବିଫଳ ହେଲା ।

ଗୋଟିଏ ବର୍ଷ ଭାରତରେ ହାତଗୋଡ଼ ବାନ୍ଧି ବସି ରହିବା ପରେ ୱାଭେଲ୍ ଅଚଳ ଅବସ୍ଥା ଅତିକ୍ରମ କରିବା ପାଇଁ ଉଦ୍ୟମ ଆରମ୍ଭ କଲେ । ସେପ୍ଟେମ୍ବର ୧୯୪୪ ମସିହାରେ ସେ ଲଣ୍ଡନକୁ ଗୋଟିଏ ପ୍ରସ୍ତାବ ପଠାଇଲେ ଯେ, ଭାରତରେ ଯୁଦ୍ଧ ସମୟରେ ଏକ ଅନ୍ତରୀଣ କେନ୍ଦ୍ର ସରକାର ପ୍ରତିଷ୍ଠା କରିବା ପାଇଁ ସେ ଉଦ୍ୟମ କରିବେ ଏବଂ ସେଥିପାଇଁ ଆବଶ୍ୟକ ହେଲେ ସେ ମୁଖ୍ୟ ରାଜନୈତିକ ଦଳଗୁଡ଼ିକର ଏକ କ୍ଷୁଦ୍ର

ସମ୍ମିଳନୀ ଡାକି ଏ ସମ୍ପର୍କରେ ଆଲୋଚ଼ନା କରିବେ । ସେ ପୁନଶ୍ଚ ସୂଚ଼ନା ଦେଇଥିଲେ ଯେ, ଭାଇସ୍‌ରାୟ ଓ କମାଣ୍ଡର-ଇନ୍-ଚିଫ୍‌ଙ୍କୁ ମିଶାଇ ଯେଉଁ ମଧ୍ୟବର୍ତ୍ତୀକାଳୀନ ସରକାର ପ୍ରତିଷ୍ଠିତ ହେବ, ସେଥିରେ ମୋଟ ଛଅଜଣ ହିନ୍ଦୁ, ଛଅଜଣ ମୁସଲ୍‌ମାନ୍, ଜଣେ ଶିଖ୍ ଓ ଜଣେ ଦଳିତ ଶ୍ରେଣୀର ପ୍ରତିନିଧି ରହିବେ ଏବଂ ଏହି ମଧ୍ୟବର୍ତ୍ତୀକାଳୀନ ସରକାର ଭବିଷ୍ୟତର ସମ୍ବିଧାନ ରଚ଼ନା କରାଇବା ପାଇଁ ଏକ ଗଣପରିଷଦ (କନ୍‌ଷ୍ଟିଚୁଏଣ୍ଟ୍ ଆସେମ୍ବ୍ଲି) ବା ଅନ୍ୟ କୌଣସି ସଂସ୍ଥା ଗଠନ କରିବେ । ଏହି ପ୍ରସ୍ତାବଟି ବିସ୍ତର କରିବା ପାଇଁ ଲଣ୍ଡନରେ ଦୀର୍ଘଦିନ ବିତିଗଲା । ଭାରତୀୟ ସଚ଼ିବ ଆମେରୀ ଯଦିଓ ୱାଭେଲ୍‌ଙ୍କ ସହିତ ଏକମତ ଥିଲେ, କିନ୍ତୁ ଚର୍ଚ୍ଚିଲ୍‌ଙ୍କର ଭାରତ ପ୍ରତି ବୈମାତୃକ ମନୋଭାବ ହେତୁ ଏହା ଉପରେ କୌଣସି ନିଷ୍ପତ୍ତି ନିଆଯାଇ ପାରିଲା ନାହିଁ । ଯାହାହେଉ ୧୯୪୫ ମସିହା ଏପ୍ରିଲ୍ ମାସରେ ଜର୍ମାନମାନେ ଆତ୍ମସମର୍ପଣ କଲେ । ଜର୍ମାନମାନଙ୍କର ପରାଜୟ ପରେ ଲଣ୍ଡନରେ ମିଳିତ ଜାତୀୟ ସରକାରକୁ ଭାଙ୍ଗିଦିଆଗଲା ଓ କଞ୍ଜରଭେଟିଭ୍ ଦଳ ଚର୍ଚ୍ଚିଲଙ୍କ ନେତୃତ୍ୱରେ ସରକାର ଗଠନ କଲେ । ୱାଭେଲ୍‌ଙ୍କୁ ବ୍ୟକ୍ତିଗତ ଭାବରେ ଶୁଣିବା ପରେ ନୂତନ ବ୍ରିଟିଶ୍ ମନ୍ତ୍ରିମଣ୍ଡଳ କେତେକ ପରିବର୍ତ୍ତନ ସହ ତାଙ୍କ ପ୍ରସ୍ତାବକୁ ଗ୍ରହଣ କଲେ ।

ଭାରତକୁ ଫେରି ୱାଭେଲ୍ ଏକ ବାର୍ତ୍ତାରେ ଘୋଷଣା କଲେ ଯେ, ସେ ଭାରତର ରାଜନୈତିକ ନେତାମାନଙ୍କୁ ଏକ ସମ୍ମିଳନୀକୁ ଆମନ୍ତ୍ରଣ କରି ନୂତନ ଜାତୀୟ ସରକାର ପ୍ରତିଷ୍ଠା ସମ୍ପର୍କରେ ସେମାନଙ୍କ ସହ ଆଲୋଚ଼ନା କରିବେ । ଜୁନ୍ ୨୫ ତାରିଖରେ କାରାରୁଦ୍ଧ କଂଗ୍ରେସ ନେତାମାନଙ୍କୁ ମୁକ୍ତ କରି ଦିଆଗଲା । ଗାନ୍ଧିଜୀ, ମହମ୍ମଦ ଅଲ୍ଲୀ ଜିନ୍ନା ଓ ଅନ୍ୟ କୋଡ଼ିଏ ଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ଆମନ୍ତ୍ରଣ କରାଗଲା । ମୋଟାମୋଟି କଂଗ୍ରେସ, ମୁସ୍‌ଲିମ୍ ଲିଗ୍ ଏବଂ କେନ୍ଦ୍ର ବିଧାନସଭାର ସଭ୍ୟବୃନ୍ଦ ଏବଂ ଦଳିତମାନଙ୍କ ପକ୍ଷରୁ ଜଣେ ଓ ଶିଖ୍ ସଂପ୍ରଦାୟରୁ ଜଣଙ୍କୁ ଆମନ୍ତ୍ରଣ ପତ୍ର ପଠାଯାଇଥିଲା । ଜିନ୍ନାଙ୍କୁ ସନ୍ତୁଷ୍ଟ କରିବା ପାଇଁ ୱାଭେଲ୍ କଂଗ୍ରେସ ସଭାପତି ମୌଲାନା ଆଜାଦ୍ ବା ଅନ୍ୟ କୌଣସି ନେତାଙ୍କୁ ସମ୍ମିଳନୀରେ ଯୋଗ ଦେବା ପାଇଁ ଅନୁରୋଧ କରିନଥିଲେ । ଗାନ୍ଧିଜୀ ୱାଭେଲ୍‌ଙ୍କର ଭିତିରି ମତଲବ ବେଶ୍ ବୁଝିପାରିଲେ ଏବଂ ୱାଭେଲ୍‌ଙ୍କୁ ଜଣାଇଦେଲେ ଯେ, ସେ କଂଗ୍ରେସର ସଭ୍ୟ ନୁହଁନ୍ତି କି କଂଗ୍ରେସର ପ୍ରତିନିଧିତ୍ୱ

କରୁନାହାଁନ୍ତି । ଏହାପରେ ୱାଭେଲ୍ ମୌଲାନା ଆଜାଦ୍‌ଙ୍କୁ ସିମଳା ସମ୍ମିଳନୀରେ ଯୋଗଦେବାକୁ ଅନୁରୋଧ କଲେ । କଂଗ୍ରେସ ନେତା ଜୱାହରଲାଲ୍ ନେହ୍ରୁ ଓ ସର୍ଦ୍ଦାର ପଟେଲ ମଧ୍ୟ ଆଜାଦଙ୍କୁ ପରାମର୍ଶ ଦେବାପାଇଁ ସିମଳାରେ ଉପସ୍ଥିତ ରହିଲେ । ସିମଳା ସମ୍ମିଳନୀରେ ଜିନ୍ନା ଦାବି କଲେ ଯେ, ମୁସ୍‌ଲିମ୍ ଲିଗ୍ ଭାରତର ଏକମାତ୍ର ଅନୁଷ୍ଠାନ ଯେ କି ସମସ୍ତ ମୁସଲ୍‌ମାନ୍‌ମାନଙ୍କର ପ୍ରତିନିଧିତ୍ୱ କରେ ଏବଂ ମୁସ୍‌ଲିମ୍ ଲିଗ୍ କେବଳ ନୂତନ ସରକାରର ମୁସ୍‌ଲିମ୍ ସଦସ୍ୟମାନଙ୍କୁ ମନୋନୀତ କରିପାରିବେ । ଭାରତରେ ମୁସଲ୍‌ମାନମାନେ ଯେ ଅର୍ଦ୍ଧାଧିକରୁ ଯଥେଷ୍ଟ କମ୍ ତାହା ବ୍ରିଟିଶ୍ ସରକାରଙ୍କୁ ଜଣାଥିଲା । ଜିନ୍ନାଙ୍କର ଏହି ଦାବି ଉପରେ ୱାଭେଲ୍ ପ୍ରସ୍ତାବ କରିଥିଲେ ଯେ, ଛଅଜଣ ମୁସଲମାନ ପ୍ରତିନିଧିଙ୍କ ମଧ୍ୟରୁ ପାଞ୍ଚଜଣଙ୍କୁ ଲିଗ୍ ମନୋନୀତ କରିବେ ଓ ଅନ୍ୟ ଜଣଙ୍କୁ ପଞ୍ଜାବ ପ୍ରଧାନମନ୍ତ୍ରୀ ଖିଜିର ହାୟତ ଖାଁ ତିୱାନା ମନୋନୀତ କରିବେ । ଏଥିରେ ଜିନ୍ନା ଉତ୍‌କ୍ଷିପ୍ତ ହେଲେ ଏବଂ ତାଙ୍କ ମୂଳଦାବିରେ ସେ ଅଟଳ ରହିଲେ । ସିମଳା ସମ୍ମିଳନୀ ବିଫଳ ହେଲା ।



# କ୍ୟାବିନେଟ୍ ମିଶନ୍

ସିମଳା ସମ୍ମିଳନୀ ପରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଲା । ଜୁଲାଇ ମାସରେ ଇଂଲଣ୍ଡର ସାଧାରଣ ନିର୍ବାଚନରେ ଚର୍ଚ୍ଚିଲଙ୍କର ପରାଜୟ ଓ ଅଟ୍‌ଲୀଙ୍କ ନେତୃତ୍ୱରେ ଶ୍ରମିକ ଦଳର ବିପୁଳ ବିଜୟ । ଅଟ୍‌ଲୀ ଗ୍ରେଟ୍ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ହେଲେ । ପରେ ପରେ ଅଗଷ୍ଟ ୧୪ ତାରିଖରେ ଅତି ଅପ୍ରତ୍ୟାଶିତ ଭାବରେ ଜାପାନର ଶୋଚନୀୟ ପରାଜୟ ଓ ଆତ୍ମସମର୍ପଣ । ଜାପାନର ହିରୋସୀମା ଓ ନାଗାସାକି ସହର ଉପରେ ଆମେରିକା ଦୁଇଟି ପରମାଣୁ ବୋମା ନିକ୍ଷେପ କରିଥିଲା । ଫଳରେ ଦୁଇଟିଯାକ ସହର ସମ୍ପୂର୍ଣ୍ଣ ରୂପେ ଧ୍ୱଂସ ପାଇଥିଲା, ହଜାର ହଜାର ଲୋକ ପ୍ରାଣ ହରାଇଥିଲେ ଏବଂ ବହୁଲୋକ ମଧ୍ୟ ଆହତ ହୋଇ ବିକଳାଙ୍ଗ ହୋଇପଡ଼ିଥିଲେ । ଜାପାନର ପ୍ରଧାନମନ୍ତ୍ରୀ ଟୋଜୋ ଓ ଅନ୍ୟ ଯୁଦ୍ଧଖୋର ନେତାମାନେ ଆତ୍ମସପର୍ମଣ କରିବାକୁ ବାଧ୍ୟ ହେଲେ ।

ସିମଳା ସମ୍ମିଳନୀର ବିଫଳତା ପରେ ଭାରତର ପରିସ୍ଥିତି ଥିଲା ଉତ୍ତେଜନାପୂର୍ଣ୍ଣ ଓ ଉଦ୍‌ବେଗଜନକ । ବିଶ୍ୱଯୁଦ୍ଧର ଅବସାନ ପରେ କାରାମୁକ୍ତ କଂଗ୍ରେସ ନେତାମାନେ ଭାରତର ସ୍ୱାଧୀନତା ଦାବି ସପକ୍ଷରେ ବିଶ୍ୱର ଜନମତକୁ ଜାଗ୍ରତ କରାଇବା ଓ ଭାରତର ଜନ ଆନ୍ଦୋଳନକୁ ପୁନଶ୍ଚ ସୁସଂଗଠିତ କରାଇବା ପାଇଁ ବଦ୍ଧପରିକର ଥିଲେ । ଏହି ସମୟରେ ଯେଉଁ ଭାରତୀୟ ସୈନ୍ୟମାନେ ସୁଭାଷ ବୋଷଙ୍କ ନେତୃତ୍ୱରେ ଗଠିତ “ଭାରତୀୟ ଜାତୀୟ ସୈନ୍ୟବାହିନୀ” ବା ଆଇ.ଏନ୍.ଏ.ରେ ଯୋଗ ଦେଇଥିଲେ, ଜାପାନର ଆତ୍ମସମର୍ପଣ ପରେ ରେଙ୍ଗୁନ୍ ଓ ସିଙ୍ଗାପୁରରେ ସେମାନଙ୍କୁ ଗିରଫ କରାଗଲା । କୋଡ଼ିଏ ହଜାର ବନ୍ଦୀ ସୈନ୍ୟଙ୍କୁ ଦିଲ୍ଲୀ ଆଣି କୋର୍ଟ ମାର୍ସାଲରେ ସେମାନଙ୍କର ବିଚାର କରି ଦଣ୍ଡ ଦେବାକୁ ଭାଇସ୍‌ରାୟ ନିଷ୍ପତ୍ତି କଲେ । ଦିଲ୍ଲୀ

ଲାଲ୍‌କିଲ୍ଲାରେ ନଭେମ୍ବର ୫ ତାରିଖରେ ସେମାନଙ୍କର କୋର୍ଟ ମାର୍ସିଆଲ୍ ବିଗ୍ୱର ହେବ ବୋଲି ଘୋଷଣା କରାଗଲା । ପ୍ରଥମ କୋର୍ଟ ମାର୍ସିଆଲ୍ ପ୍ରୋସିଡିଂ ଆରମ୍ଭ ହେଲା, ତିନିଜଣ ମୁଖ୍ୟ ଅଭିଯୁକ୍ତ କ୍ୟାପ୍‌ଟେନ୍ ସାହାନୱାଜ୍ ଖାଁ, କ୍ୟାପ୍‌ଟେନ୍ ସେଗଲ ଓ ଲେଫ୍‌ଟନାଣ୍ଟ ଜି. ଡି. ଧିଲନ୍‌ଙ୍କ ବିରୁଦ୍ଧରେ । ବନ୍ଦୀମାନଙ୍କର ସହାୟତା ପାଇଁ ଜୱାହରଲାଲ୍ ନେହୁରୁଙ୍କ ଉଦ୍ୟମରେ ଭାରତର ବିଶିଷ୍ଟ ଆଇନଜ୍ଞମାନଙ୍କୁ ନେଇ ଏକ ଡିଫେନ୍ସ କମିଟି ଗଠିତ ହେଲା । ବମ୍ବେର କଂଗ୍ରେସ ନେତା ପ୍ରଖ୍ୟାତ ଆଇନଜୀବୀ ଭୁଲାଭାଇ ଦେଶାଇ ଏହି ପ୍ରତିରକ୍ଷା ଗୋଷ୍ଠୀର ନେତୃତ୍ୱ ନେଲେ । ପଚିଶ ବର୍ଷ ପୂର୍ବେ କୋର୍ଟ ଓ ଗାଉନ୍ ପରିତ୍ୟାଗ କରି ଯେଉଁ ଜୱାହରଲାଲ୍ ନେହୁରୁ ଜନସେବାରେ ଆତ୍ମନିୟୋଗ କରିଥିଲେ, ସେ ମଧ୍ୟ ପୁନଶ୍ଚ କଳାକୋର୍ଟ ଓ ଗାଉନ୍ ପିନ୍ଧି ଲାଲ୍‌କିଲ୍ଲାରେ ଡିଫେନ୍ସ କାଉନ୍‌ସେଲ୍ ଭୂମିକାରେ ଅବତୀର୍ଣ୍ଣ ହେଲେ । ନଭେମ୍ବର ୩ ତାରିଖରେ ଜୱାହରଲାଲ୍ ଦିଲ୍ଲୀର ଏକ ସାଧାରଣସଭାରେ ଭାଷଣ ଦେଇ ଦାବି କଲେ, ଇଂରେଜ ସରକାର ତୁରନ୍ତ ଆଇ.ଏନ୍.ଏ. ସୈନ୍ୟମାନଙ୍କୁ ମୁକ୍ତ କରନ୍ତୁ ଓ ଭାରତ ପରିତ୍ୟାଗ କରନ୍ତୁ ।

ଲାଲ୍‌କିଲ୍ଲାରେ ଆଇ.ଏନ୍.ଏ. ସୈନ୍ୟଙ୍କ ବିଗ୍ୱର ନୁହେଁ, ଇଂଲଣ୍ଡ ଓ ଭାରତ ମଧ୍ୟରେ ପ୍ରଚଳିତ ସଂଘର୍ଷର ମୁକ୍ତ ପ୍ରଦର୍ଶନ ଚ୍ଲିଥିଲା । ଆଇ.ଏନ୍.ଏ. ବନ୍ଦୀମାନଙ୍କର ସମର୍ଥନରେ ଦେଶବ୍ୟାପୀ ବିକ୍ଷୋଭ ପ୍ରଦର୍ଶିତ ହେଲା । କଲିକତାରେ ଅନୁଷ୍ଠିତ ଜନବିକ୍ଷୋଭରେ ୩୦ ଜଣ ଲୋକ ପ୍ରାଣ ହରାଇଥିଲେ ଏବଂ ଶହଶହ ଲୋକ ଆହତ ହୋଇଥିଲେ । ଭାଇସ୍‌ରାୟ ଓ ତାଙ୍କର ସହକର୍ମୀମାନେ ଅନୁଭବ କଲେ ଯେ, ଏ ବିଗ୍ୱର ଏହିଭାବରେ ଆଉ ଆଗେଇବା ଉଚିତ ନୁହେଁ । ପଞ୍ଜାବ ସରକାର ଭାଇସ୍‌ରାୟଙ୍କୁ ପରାମର୍ଶ ଦେଲେ ଯେ, ଏହି ବିଗ୍ୱର ଫଳରେ ଦେଶବ୍ୟାପୀ ସଂଘର୍ଷ ବଢ଼ିବ ଏବଂ ତିନିଜଣ ପ୍ରଧାନ ଅଭିଯୁକ୍ତଙ୍କୁ ଯଦି ବିଗ୍ୱର ଶେଷରେ ଫାଶୀଦଣ୍ଡ ଦିଆଯାଏ, ତେବେ ତୁରନ୍ତ ସେମାନଙ୍କୁ ରାଜକ୍ଷମା ଦେବା ଉଚିତ ଏବଂ ଏ ପ୍ରହସନ ଅଧିକ ଦିନ ଚ୍ଲିବା ଉଚିତ ନୁହେଁ । ଏହି ସବୁ ପରାମର୍ଶ ଭାଇସ୍‌ରାୟ ଗ୍ରହଣ କଲେ ଏବଂ ବିଗ୍ୱରରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ।

ଦିଲ୍ଲୀ ଲାଲକିଲ୍ଲାରେ ଆଇ.ଏନ୍.ଏ. ଅଫିସରମାନଙ୍କର ଯେଉଁ ବିଗ୍ୱର ହେଲା, ତା'ର ସୁଦୂରପ୍ରସାରୀ ପ୍ରଭାବରୁ ସୈନ୍ୟବାହିନୀ ମୁକ୍ତ ରହିପାରିଲେ ନାହିଁ । ୧୯୪୬

ମସିହା ଫେବୃଆରୀ ୧୯ ତାରିଖରେ କେତେକ ସାମାନ୍ୟ କାରଣରୁ ବମ୍ବେ ନୌସେନା ବହରର ତିନିହଜାର ନୌସୈନ୍ୟ ବିଦ୍ରୋହ ଘୋଷଣା କଲେ । ଉପରିସ୍ଥ ବ୍ରିଟିଶ ଅଫିସରଙ୍କର ଦୁର୍ବ୍ୟବହାର ଏହାର ମୁଖ୍ୟ କାରଣ ଥିଲା । ସେମାନେ ୟୁନିଅନ୍ ଜ୍ୟାକ୍‌କୁ ଚିରି ଫୋପାଡ଼ି ଜାତୀୟ ତ୍ରିରଙ୍ଗ ପତାକା ଉତ୍ତୋଳନ କଲେ ଓ ବମ୍ବେ ନଗରୀର ରାସ୍ତାରେ ଅସ୍ତ୍ର ଧରି ଶୋଭାଯାତ୍ରା ଆରମ୍ଭ କଲେ । ଗୋରା ସୈନ୍ୟମାନେ ସେମାନଙ୍କ ଉପରକୁ ଗୁଳିବର୍ଷଣ କଲେ ସତ୍ୟ, କିନ୍ତୁ ଏ ବିଦ୍ରୋହକୁ ଦମନ କରିବା ସହଜସାଧ ନଥିଲା । ଏହାଥିଲା ଏକ ପ୍ରଚଣ୍ଡ ଦାବାନଳର ଏକ କ୍ଷୁଦ୍ର ଅଂଶ ମାତ୍ର । ମହାତ୍ମା ଗାନ୍ଧିଙ୍କ ହସ୍ତକ୍ଷେପ ଫଳରେ ଏ ବିଦ୍ରୋହ ମଶମିତ ହେଲା । ଗାନ୍ଧିଜୀ ଆଶଙ୍କା କରୁଥିଲେ ଯେ, ଏ ହିଂସାତ୍ମକ ଆନ୍ଦୋଳନ ଦେଶବ୍ୟାପୀ ପ୍ରସାରିତ ହେବ । ନେହରୁ ଗାନ୍ଧିଜୀଙ୍କ ସହ ପରାମର୍ଶ କରି, ନୌସେନାଙ୍କର ବିଦ୍ରୋହ ପ୍ରତି ସହାନୁଭୂତି ପ୍ରକାଶ କଲେ ମଧ, ସେମାନଙ୍କୁ ଶିବିରକୁ ପ୍ରତ୍ୟାବର୍ତ୍ତନ କରିବାପାଇଁ ଅନୁରୋଧ କଲେ ।

ଏହିସବୁ ଘଟଣାର ମର୍ମ ବୁଝିବାକୁ ବ୍ରଟିଶ ସରକାରଙ୍କୁ ସମୟ ଲାଗିଲା ନାହିଁ । ସାମରିକ ଶକ୍ତି ଓ ପୋଲିସ ଧମକରେ ଯେ ଆଉ ଭାରତ ଶାସନ ଚ୍ଲି ପାରିବନାହିଁ, ତାହା ସେମାନେ ଅନୁଭବ କଲେ । ଲଣ୍ଡନର ଶ୍ରମିକ ସରକାର ୱାଭେଲ୍‌ଙ୍କ ଉପରେ ଆସ୍ଥା ନରଖି ଭାରତୀୟ ସମସ୍ୟାର ଅନୁଧାନ ପାଇଁ ବ୍ରିଟିଶ ମନ୍ତ୍ରୀ ପରିଷଦର ତିନିଜଣ ସଭ୍ୟଙ୍କୁ ଭାରତକୁ ପଠାଇବେ ବୋଲି ଘୋଷଣା କଲେ । ତଦନୁଯାୟୀ ତିନିଜଣ କ୍ୟାବିନେଟ୍ ମନ୍ତ୍ରୀ ଲର୍ଡ଼ ପେଥିକ୍ ଲରେନ୍ସ, ସାର୍ ଷ୍ଟାଫୋର୍ଡ଼ କ୍ରିପ୍ସ ଓ ଏ.ଭି. ଆଲେକ୍‌ଜାଣ୍ଡାର ୧୯୪୬ ମସିହା ମାର୍ଚ୍ଚ ୨୩ ତାରିଖରେ କରାଚ଼ୀ ବିମାନଘାଟିରେ ଅବତରଣ କଲେ । ଏହି ତିନି ମନ୍ତ୍ରୀଙ୍କର ଭାରତଯାତ୍ରାକୁ "କ୍ୟାବିନେଟ୍ ମିଶନ୍" ବୋଲି କୁହାଯାଇଥାଏ ।

କ୍ୟାବିନେଟ୍ ମିଶନ୍ ଭାରତରେ ପହଞ୍ଚି ଅବିଳମ୍ବେ ବିଭିନ୍ନ ଦଳର ନେତାମାନଙ୍କ ସହ ଆଲୋଚ଼ନା ଆରମ୍ଭ କଲେ । ଦୁଇସପ୍ତାହ ଧରି ଏହି ଆଲୋଚ଼ନା ଚ୍ଲିଲେ ମଧ ଦୁଇ ପ୍ରଧାନ ରାଜନୈତିକ ଦଳ ଅର୍ଥାତ୍ କଂଗ୍ରେସ ଓ ଲିଗ୍ ମଧରେ କୌଣସି ମିଳିତ କାର୍ଯ୍ୟକ୍ରମର ସୂଚ଼ନା ମିଳିନଥିଲା । ଜିନ୍ନା ପୂର୍ବବତ୍ ମୁସଲ୍‌ମାନ୍‌ବହୁଳ ପ୍ରଦେଶଗୁଡ଼ିକୁ ନେଇ ପାକିସ୍ତାନ ଗଠନ କରିବା ଦାବିରେ ଦୃଢ଼ ରହିଥିଲେ ଏବଂ କଂଗ୍ରେସ ପକ୍ଷରେ ଏ ପ୍ରକାର ଭାରତ ବିଭାଜନ ଗ୍ରହଣୀୟ ନଥିଲା । ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଅଟ୍‌ଲୀ ଜିନ୍ନାଙ୍କ

ଜିଦ୍‌ଖୋର୍ ନୀତିକୁ ନାପସନ୍ଦ କରି ଏକ ବିବୃତି ଦେଇଥିଲେ, "ଆମେ ଭାରତରେ ଏକ ସଂଖ୍ୟାଲଘୁ ଗୋଷ୍ଠୀକୁ ସଂଖ୍ୟାଗରିଷ୍ଠ ସଂପ୍ରଦାୟର ଅଗ୍ରଗତିର ପ୍ରତିରୋଧ କରିବାରେ ସମ୍ମତ ହୋଇପାରିବୁ ନାହିଁ।"

ଏହି ସମୟରେ କଂଗ୍ରେସ ସଂଗଠନର ଏକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଲା । କ୍ୟାବିନେଟ୍ ମିଶନ୍ ସଭ୍ୟମାନଙ୍କ ସହିତ ଆଲୋଚ଼ନା କାଳରେ ଗାନ୍ଧିଜୀ ଉପଲବ୍ଧି କଲେ ଯେ, ବ୍ରିଟିଶ୍ ସରକାରଙ୍କ ସହ କ୍ଷମତା ହସ୍ତାନ୍ତର ସଂକ୍ରାନ୍ତୀୟ ବିଚ଼ାରବିମର୍ଶ ପାଇଁ ଜୱାହରଲାଲ୍‌ଙ୍କ ପରି ଜଣେ ଦକ୍ଷ ଓ ନିଷ୍ଠାବାନ୍ ବ୍ୟକ୍ତି ମୁଖ୍ୟ ଦାୟିତ୍ୱ ନେବା ଉଚିତ । ମୌଲାନା ଆଜାଦଙ୍କ ପ୍ରତି ଗାନ୍ଧିଜୀଙ୍କର ଯେ ଅସୂୟା, ଅନାସ୍ଥା ବା ଅସମ୍ମାନ ଥିଲା, ତା' ନୁହେଁ । ସେତେବେଳେ ସିମଳାରେ ଗାନ୍ଧିଜୀଙ୍କ ସମେତ ଅନ୍ୟ ସମସ୍ତ କାର୍ଯ୍ୟକାରୀ କମିଟିର ସଦସ୍ୟମାନେ ଉପସ୍ଥିତ । ୧୯୪୬ ଏପ୍ରିଲ୍ ୨୬ ତାରିଖରେ ମୌଲାନା ଆଜାଦ୍ ସଭାପତି ପଦରୁ ଇସ୍ତଫା ଦେଲେ ଓ ପରବର୍ତ୍ତୀ ସଭାପତି ପଦପାଇଁ ଜୱାହରଲାଲ୍ ନେହୁରୁଙ୍କ ନାମ ପ୍ରସ୍ତାବ କରିଥିଲେ । ମହାତ୍ମା ଗାନ୍ଧିଙ୍କ ସହିତ ଏକଘଣ୍ଟା ଆଲୋଚ଼ନା କରିବା ପରେ ଆଜାଦ୍ ଏ ନିଷ୍ପତ୍ତି ଘୋଷଣା କରିଥିଲେ । ଏଥିରୁ ସମସ୍ତଙ୍କର ଧାରଣା ହୋଇଥିଲା ଯେ, ଏ ନିଷ୍ପତ୍ତିର ମନ୍ତ୍ରଦାତା ଖୋଦ୍ ଗାନ୍ଧିଜୀ । ଜୱାହରଲାଲ୍ ନେହୁରୁ ନିର୍ଦ୍ୱନ୍ଦ୍ୱରେ ସଭାପତି ନିର୍ବାଚ଼ିତ ହେଲେ ଏବଂ କଂଗ୍ରେସର ପ୍ରତିନିଧି ଭାବରେ ଯେଉଁସବୁ ଦାବି ଜୱାହରଲାଲ୍ କ୍ୟାବିନେଟ୍ ମିଶନ୍ ଆଗରେ ପେସ୍ କରୁଥିଲେ, କଂଗ୍ରେସ ସଭାପତି ଭାବରେ ସେ ତାହା ଅଧିକ ଦୃଢ଼ତାର ସହ ଉପସ୍ଥାପିତ କଲେ ।

ଭାରତର ସାମ୍ବିଧାନିକ ଅଗ୍ରଗତି ସମ୍ପର୍କରେ ରାଜନୈତିକ ଦଳମାନଙ୍କ ମଧ୍ୟରେ ମତାନୈକ୍ୟ ହେତୁ କ୍ୟାବିନେଟ୍ ମିଶନ୍ ରାଜନୈତିକ ଦଳମାନଙ୍କ ସାମ୍ନାରେ ନିଜସ୍ୱ ପ୍ରସ୍ତାବ ଆଲୋଚ଼ନା ପାଇଁ ରଖିଥିଲେ । କ୍ୟାବିନେଟ୍ ମିଶନ୍ ପ୍ରସ୍ତାବରେ ମୁସ୍‌ଲିମ୍ ଲିଗ୍‌ର ଭାରତ ବିଭାଜନ ଓ ସାର୍ବଭୌମ ପାକିସ୍ତାନ ପ୍ରତିଷ୍ଠା ଦାବିକୁ ସମ୍ପୂର୍ଣ୍ଣ ରୂପେ ଅଗ୍ରାହ୍ୟ କରିଥିଲେ । ସେମାନଙ୍କ ମତରେ ଏପରି ବିଭାଜନ ପଞ୍ଜାବ ଓ ବଙ୍ଗଳା ଭଳି ପ୍ରଦେଶଗୁଡ଼ିକରେ ଅତି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବ । ପଞ୍ଜାବରେ ବାସ କରୁଥିବା ହିନ୍ଦୁ ଓ ଶିଖ୍‌ମାନଙ୍କୁ ଏବଂ ବଙ୍ଗଳାରେ ବସବାସ କରୁଥିବା ହିନ୍ଦୁ ବଙ୍ଗାଳୀମାନଙ୍କୁ ଜବରଦସ୍ତ ପାକିସ୍ତାନରେ ଅନ୍ତର୍ଭୁକ୍ତ କରାଯାଇପାରିବ ନାହିଁ । ବଙ୍ଗଳାର ଅଧିବାସୀ

ହିନ୍ଦୁ ଓ ମୁସଲ୍‌ମାନ୍‌ମାନେ ବଙ୍ଗଳାଭାଷା କହନ୍ତି ଓ ସେମାନଙ୍କର ସାମାଜିକ ଓ ସାଂସ୍କୃତିକ ଜୀବନ ପ୍ରାୟ ଏକପ୍ରକାରର । ସେହିପରି ପଞ୍ଜାବର ଶିଖ୍ ଓ ହିନ୍ଦୁମାନଙ୍କର ସଂସ୍କୃତି ଓ ପରମ୍ପରାରେ ଏକ ସ୍ୱାତନ୍ତ୍ର୍ୟ ଅଛି ଏବଂ ତାଙ୍କ ଇଚ୍ଛା ବିରୁଦ୍ଧରେ ସେମାନଙ୍କୁ ପାକିସ୍ତାନରେ ଛଡିଦେବା ନ୍ୟାୟସଂଗତ ନୁହେଁ । ପାକିସ୍ତାନ ଦାବିକୁ ଅଗ୍ରାହ୍ୟ କରି ମିଶନ୍ ପ୍ରସ୍ତାବରେ ଉଲ୍ଲେଖ ଥିଲା ଯେ, ଭାରତରେ ଏପରି ଏକ ଶାସନ ବ୍ୟବସ୍ଥା ପ୍ରତିଷ୍ଠିତ ହେବ, ଯେଉଁଠିକି କେନ୍ଦ୍ରରେ ହିନ୍ଦୁବହୁଳ ପ୍ରଦେଶମାନଙ୍କର ପ୍ରତିନିଧି ଓ ମୁସଲମାନବହୁଳ ପ୍ରତିନିଧି ସ୍ୱତନ୍ତ୍ର ଭାବରେ ସ୍ଥାନ ପାଇବେ ଏବଂ ଦେଶୀୟ ରାଜ୍ୟମାନେ ଏହି ରାଷ୍ଟ୍ରସଂଘର ତୃତୀୟ ଅଂଶୀଦାର ହେବେ । ଭାରତର ଭବିଷ୍ୟତ ଶାସନବିଧି କେବଳ ଭାରତବାସୀଙ୍କର ନିର୍ବାଚିତ ପ୍ରତିନିଧିମାନଙ୍କ ଦ୍ୱାରା ଗଠିତ 'ଗଣପରିଷଦ' ବା ସମ୍ବିଧାନ ପ୍ରଣୟନକାରୀ ସଂସ୍ଥା ଦ୍ୱାରା ପ୍ରଣୀତ ହେବ ।

ମୁସ୍‌ଲିମ୍ ଲିଗ୍ ନେତା ମହମ୍ମଦ ଅଲ୍ଲୀ ଜିନ୍ନା ଏହି ପ୍ରସ୍ତାବକୁ ଗ୍ରହଣ କରି ନଥିଲେ, କାରଣ ସାତୋଟି ପ୍ରଦେଶକୁ ନେଇ ସେ ଯେଉଁ ପାକିସ୍ତାନ ଗଠନର ସ୍ୱପ୍ନ ଦେଖୁଥିଲେ, ଏ ପ୍ରସ୍ତାବ ନିଶ୍ଚିତ ଭାବରେ ମୂଳ ପାକିସ୍ତାନ ଦାବିକୁ ପ୍ରତ୍ୟାଖ୍ୟାନ କରୁଥିଲା । କିନ୍ତୁ ସେ କେନ୍ଦ୍ରରେ ଏକ ଫେଡେରେସନ୍ ଗଠନ କରିବା ସଂପର୍କୀୟ ପ୍ରସ୍ତାବକୁ ସହାନୁଭୂତିର ସହ ବିଚାର କରିବେ ବୋଲି କ୍ୟାବିନେଟ୍ ମିଶନ୍‌କୁ ଆଶ୍ୱାସନା ଦେଇଥିଲେ । କ୍ୟାବିନେଟ୍ ମିଶନ୍‌ଙ୍କର ଉପରୋକ୍ତ ପ୍ରସ୍ତାବ ୧୬ ତାରିଖ ମେ' ମାସରେ ଘୋଷିତ ହୋଇଥିଲା ।

କ୍ୟାବିନେଟ୍ ମିଶନ୍ ସ୍ପଷ୍ଟୀକରଣ ଦେଲେ, ଏହି ୟୁନିଅନ୍ ସରକାର ପ୍ରଦେଶମାନଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ସମ୍ବିଧାନ ପ୍ରଣୟନକାରୀ ସଭା ବା ଗଣପରିଷଦ ଗଠନ ପାଇଁ ବ୍ୟବସ୍ଥା କରିବେ । ଗଣ ପରିଷଦକୁ ନିର୍ବାଚିତ ସଦସ୍ୟମାନଙ୍କୁ ତିନୋଟି ବିଭାଗ ବା ଗ୍ରୁପ୍‌ରେ ଅଙ୍ଗୀଭୂତ କରାଯିବ । ପ୍ରଥମ ଗ୍ରୁପ୍‌ରେ ରହିବେ ମାନ୍ଦ୍ରାସ, ବମ୍ବେ, ଯୁକ୍ତ ପ୍ରଦେଶ, କେନ୍ଦ୍ର ପ୍ରଦେଶ, ବିହାର ଓ ଓଡ଼ିଶାର ପ୍ରତିନିଧି; ଦ୍ୱିତୀୟ ଗ୍ରୁପ୍‌ରେ ରହିବେ, ପଞ୍ଜାବ, ସିନ୍ଧୁ ଓ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ପ୍ରତିନିଧି ଓ ତୃତୀୟ ଗ୍ରୁପ୍‌ରେ ରହିବେ ବଙ୍ଗଳା ଓ ଆସାମର ପ୍ରତିନିଧି । ବିଭିନ୍ନ ଗ୍ରୁପ୍‌ରେ ଅନ୍ତର୍ଭୁକ୍ତ ପ୍ରଦେଶମାନଙ୍କର ତାଲିକା ଅନୁଧ୍ୟାନ କଲେ ଦେଖାଯିବ, ପ୍ରଥମ ଗ୍ରୁପ୍‌ଟି ହିନ୍ଦୁବହୁଳ ପ୍ରଦେଶମାନଙ୍କୁ ନେଇ ଗଠିତ ହେବ ଏବଂ ଦ୍ୱିତୀୟ ଓ ତୃତୀୟ ଗ୍ରୁପ୍ ମୁସଲ୍‌ମାନ୍‌ବହୁଳ ପ୍ରଦେଶମାନଙ୍କୁ ନେଇ ଗଠିତ ହେବ । ଯେକୌଣସି ଗ୍ରୁପ୍

ବହୁମତରେ ନିଷ୍ପତ୍ତି କଲେ କେନ୍ଦ୍ରରୁ ବିଚ୍ଛିନ୍ନ ହୋଇ ପାରିବେ । କ୍ୟାବିନେଟ୍ ମିଶନ୍‌ଙ୍କର ଯୋଜନା ଥିଲା, କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍ ଉଭୟଙ୍କୁ ସନ୍ତୁଷ୍ଟ କରିବାର ଏକ ପ୍ରୟାସ । ଦେଶ ବିଭାଜନ ଦାବିକୁ ଅଗ୍ରାହ୍ୟ କରି ମିଶନ୍ କଂଗ୍ରେସ ଦୃଷ୍ଟିକୋଣକୁ ସମର୍ଥନ କରିଥିଲେ । ଅଥଚ୍ ପ୍ରଦେଶମାନଙ୍କର ଗ୍ରୁପ୍ ଗଠନ ଯୋଜନା ଦ୍ୱାରା ମୁସ୍‌ଲିମ୍ ଲିଗ୍‌ର ଆଭିମୁଖ୍ୟକୁ ସମର୍ଥନ ଦିଆଯାଇଥିଲା ।

ଜୁନ୍ ୬ ତାରିଖରେ ମୁସ୍‌ଲିମ୍ ଲିଗ୍ ଘୋଷଣା କଲେ, କ୍ୟାବିନେଟ୍ ଯୋଜନାରେ ସନ୍ନିହିତ ହିନ୍ଦୁବହୁଳ ଓ ମୁସଲ୍‌ମାନ୍‌ବହୁଳ ପ୍ରଦେଶକୁ ନେଇ ଗ୍ରୁପ୍ ଗଠନ ବ୍ୟବସ୍ଥା ଭବିଷ୍ୟତରେ ପାକିସ୍ତାନ ଗଠନର ସହାୟକ ଥିବା ଦୃଷ୍ଟିରୁ ଲିଗ୍ ଏହି ଯୋଜନାକୁ ଗ୍ରହଣ କରୁଅଛନ୍ତି । କଂଗ୍ରେସ୍‌କୁ ସନ୍ତୁଷ୍ଟ କରିବା ପାଇଁ ଭାଇସ୍‌ରାୟ ଜୁନ୍ ୧୫ ତାରିଖରେ ଏକ ଲିଖିତ ପତ୍ରରେ ଜଣାଇଲେ ଯେ, ଗ୍ରୁପ୍ ଗଠନ ବାଧ୍ୟତାମୂଳକ ନୁହେଁ । ଏହା ସଂପୃକ୍ତ ପ୍ରଦେଶର ପ୍ରତିନିଧିମାନଙ୍କର ନିଷ୍ପତ୍ତି ଉପରେ ନିର୍ଭର କରେ । ଏହାପରେ କଂଗ୍ରେସ କ୍ୟାବିନେଟ୍ ମିଶନ୍‌ର ମୂଳ ଯୋଜନାକୁ ଗ୍ରହଣ କଲେ । କିନ୍ତୁ ଗ୍ରୁପ୍ ଗଠନ ସଂକ୍ରାନ୍ତରେ ବିବାଦୀୟ ବ୍ୟବସ୍ଥା ଦୃଷ୍ଟିରୁ ମଧ୍ୟବର୍ତ୍ତୀକାଳୀନ ସରକାରରେ ଯୋଗଦେବା ସମ୍ପର୍କରେ ନିଷ୍ପତ୍ତି ନେଲେ ନାହିଁ । କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍‌ର ନିଷ୍ପତ୍ତିରେ କ୍ୟାବିନେଟ୍ ମିଶନ୍ ସନ୍ତୋଷ ପ୍ରକାଶ କରିଥିଲେ ଏବଂ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ନିମନ୍ତେ ବିଭିନ୍ନ ଦଳ ସହିତ ଆଲୋଚ଼ନା କରି ଅନ୍ତିମ ସମାଧାନ ପାଇଁ ୱାଭେଲ୍‌ଙ୍କୁ ଦାୟିତ୍ୱ ଅର୍ପଣ କରି ଜୁନ୍ ୨୯ ତାରିଖରେ ସେମାନେ ଭାରତରୁ ବିଦାୟ ନେଲେ ।



# ମଧ୍ୟବର୍ତ୍ତୀକାଳୀନ ସରକାର ଓ ମୁସଲିମ୍ ଲିଗ୍‌ର ଷଡ଼ଯନ୍ତ୍ର

କ୍ୟାବିନେଟ୍ ମିଶନ୍ ଉଭୟ ମୁସଲିମ୍ ଲିଗ୍ ଓ କଂଗ୍ରେସର ନିଷ୍ପତ୍ତିରେ ସନ୍ତୋଷ ପ୍ରକାଶ କରି ଭାରତରୁ ବିଦାୟ ନେଇଥିଲେ । କିନ୍ତୁ କାର୍ଯ୍ୟତଃ କୌଣସି ସମାଧାନ ହୋଇନଥିଲା । ଯଦିଓ କ୍ୟାବିନେଟ୍ ମିଶନ୍ ଯୋଜନାର ପ୍ରଥମ ଭାଗ କଂଗ୍ରେସ ଗ୍ରହଣ କରିଥିଲେ ଓ ଅନ୍ତରୀଣ ସରକାର ଗଠନ ନେଇ ଯୋଜନାର ଦ୍ୱିତୀୟ ଭାଗରେ ସନ୍ନିବିଷ୍ଟ ବ୍ୟବସ୍ଥାକୁ ମୁସଲିମ୍ ଲିଗ୍ ଗ୍ରହଣ କରିଥିଲେ, ଉଭୟ ଅନୁଷ୍ଠାନର ଦୃଷ୍ଟିକୋଣ ଥିଲା ସମ୍ପୂର୍ଣ୍ଣ ଭିନ୍ନ । କଂଗ୍ରେସ ଚାହୁଁଥିଲେ ଯେ, ଯୋଜନାର ପ୍ରଥମ ଭାଗରେ ଗଣ ପରିଷଦ ଗଠନର ଯେଉଁ ବ୍ୟବସ୍ଥା ରହିଛି, ତାକୁ କାର୍ଯ୍ୟକାରୀ କରି ଭାରତ ପାଇଁ ଏକ ସମ୍ବିଧାନ ପ୍ରଣୟନ କରିବେ । ପୂର୍ଣ୍ଣ ସ୍ୱାଧୀନତାର ସ୍ୱପ୍ନ କଂଗ୍ରେସକୁ ଏହି ବାଟରେ ଆଗେଇ ନେଇଥିଲା । କାର୍ଯ୍ୟତଃ ଜୁଲାଇ ୭ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ଯେଉଁ ଅଧିବେଶନ ବମ୍ବେ ନଗରୀରେ ଅନୁଷ୍ଠିତ ହୋଇଥିଲା, ସେଥିରେ କ୍ୟାବିନେଟ୍ ମିଶନର ଯୋଜନା ଗ୍ରହଣ କରିବାର ନିଷ୍ପତ୍ତିକୁ ଅନୁମୋଦନ କରାଯାଇଥିଲା । ଜୁଲାଇ ୧୦ ତାରିଖରେ ଅନୁଷ୍ଠିତ ଏକ ସାମ୍ବାଦିକ ସମ୍ମିଳନୀରେ କଂଗ୍ରେସ ସଭାପତି ପଣ୍ଡିତ ନେହୁରୁ କହିଥିଲେ–

"ସମ୍ବିଧାନ ପ୍ରଣୟନ ପାଇଁ ଗଣ ପରିଷଦ ଗଠନ ଯୋଜନାକୁ ଆମ୍ଭେମାନେ ସ୍ୱତଃ ଗ୍ରହଣ କରିଅଛୁ । ଗ୍ରୁପ୍ ଗଠନ ଆଦି କ୍ୟାବିନେଟ୍ ମିଶନର ଅନ୍ୟ କୌଣସି ସର୍ତ୍ତରେ ଆମ୍ଭେମାନେ ବାଧ ନୋହୁଁ ।" ଜୱାହରଲାଲଙ୍କ ବିବୃତିରେ କିଛି ନୂତନତ୍ୱ ନଥିଲା ଏବଂ ତାହା ଥିଲା କଂଗ୍ରେସର ପୂର୍ବ ଅନୁସୃତ ନୀତିର ପୁନରାବୃତ୍ତି ।

କିନ୍ତ ମହମ୍ମଦ ଅଲ୍ଲୀ ଜିନ୍ନା ଏ ବିବୃତିର ପୂର୍ଣ୍ଣ ସୁଯୋଗ ନେଇ ଆକ୍ଷେପ କଲେ ଯେ, କଂଗ୍ରେସ ବାସ୍ତବିକ ଏହି ଯୋଜନାକୁ ଭାଙ୍ଗିବାକୁ ଚାହେଁ । 'ଲଡ଼କେ ଲେଙ୍ଗେ ପାକିସ୍ତାନ' ଧ୍ୱନିରେ ବାୟୁମଣ୍ଡଳକୁ ବିଷାକ୍ତ କରିବା ପରେ କ୍ୟାବିନେଟ୍ ମିଶନ୍ ଯୋଜନାକୁ ଗ୍ରହଣ କରି ସେ ଅତ୍ୟନ୍ତ ଅନୁତପ୍ତ ଥିଲେ । ଜଓ୍ୱାହରଲାଲଙ୍କ ବିବୃତିର ସୁଯୋଗ ନେଇ ସେ ଘୋଷଣା କଲେ ଯେ, କଂଗ୍ରେସ ସଭାପତି କ୍ୟାବିନେଟ୍ ମିଶନ୍ ଯୋଜନାର ମୁଖ୍ୟ ଅଙ୍ଗ, ପ୍ରଦେଶଗୁଡ଼ିକୁ ନେଇ ଗ୍ରୁପ୍ ଗଠନକୁ ବିରୋଧ କରୁଥିବାରୁ ମୁସଲିମ୍ ଲିଗ୍ କ୍ୟାବିନେଟ୍ ମିଶନ୍ ଯୋଜନାକୁ ଗ୍ରହଣ କରିବ ନାହିଁ । ମହମ୍ମଦ ଅଲ୍ଲୀ ଜିନ୍ନାଙ୍କର ଏବଂ ସବୁ ସମ୍ପୃକ୍ତ ପକ୍ଷମାନଙ୍କର ଅବଗତି ପାଇଁ ଅଗଷ୍ଟ ଆଠ ତାରିଖରେ କଂଗ୍ରେସର କାର୍ଯ୍ୟକାରୀ କମିଟି ପୁନଶ୍ଚ ନିଖିଳ ଭାରତ କଂଗ୍ରେସ କମିଟିର ଗୃହୀତ ପ୍ରସ୍ତାବର ପୁନରାବୃତ୍ତି କରିଥିଲେ ଏବଂ କଂଗ୍ରେସ ଏ ଯୋଜନା ଗ୍ରହଣ କରିଛନ୍ତି ବୋଲି ସ୍ପଷ୍ଟ ଘୋଷଣା କଲେ ।

୧୯୪୬ ଅଗଷ୍ଟ ୬ ତାରିଖରେ କେନ୍ଦ୍ରରେ ଏକ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ପାଇଁ ନାମ ସୁପାରିଶ୍ କରିବା ନିମନ୍ତେ ଭାଇସରାୟ କଂଗ୍ରେସ ସଭାପତି ଜଓ୍ୱାହରଲାଲ ନେହ୍ରୁଙ୍କୁ ଅନୁରୋଧ କଲେ । ଭାଇସରାୟ ଏକଥା ମଧ୍ୟ ପ୍ରତିଶ୍ରୁତି ଦେଲେ ଯେ, ଜଣେ ସାମ୍ବିଧାନିକ ଭାଇସରାୟ ଭାବରେ ସେ କାର୍ଯ୍ୟ କରିବେ ଏବଂ ସରକାରଙ୍କ ଦୈନନ୍ଦିନ କାର୍ଯ୍ୟରେ ଯଥାସମ୍ଭବ ହସ୍ତକ୍ଷେପ କରିବେ ନାହିଁ । ଏକ୍‌ଜିକ୍ୟୁଟିଭ୍ କାଉନସିଲ ପାଇଁ ନାମ ତାଲିକା ଦେବା ପୂର୍ବରୁ ଜିନ୍ନାଙ୍କ ସହ ଆଲୋଚନା କରିବା ପାଇଁ ଓ୍ୱାଭେଲ୍ ଜଓ୍ୱାହରଲାଲଙ୍କୁ ଅନୁରୋଧ କରିଥିଲେ । କଂଗ୍ରେସ ସଭାପତି ଦାବି କଲେ ଯେ, ଭାଇସରାୟ ବିଧିବଦ୍ଧ ଭାବରେ ଓ ପ୍ରକାଶ୍ୟରେ ଏ ଆମନ୍ତ୍ରଣ ଘୋଷଣା କରନ୍ତୁ । ତାଙ୍କ ମତରେ ଭାଇସରାୟ ବିଧିବଦ୍ଧ ଘୋଷଣା କଲେ ଯଦି ମହମ୍ମଦ ଅଲ୍ଲୀ ଜିନ୍ନା ସହଯୋଗ କରିବାକୁ ଅନିଚ୍ଛୁକ ହୁଅନ୍ତି, ତା'ହେଲେ କଂଗ୍ରେସ କେନ୍ଦ୍ରରେ ସରକାର ଗଠନ ପାଇଁ ଆଗେଇ ଯାଇପାରିବ । କଂଗ୍ରେସର ଦାବି ଅନୁଯାୟୀ ଭାଇସରାୟଙ୍କ ଘୋଷଣା ପ୍ରକାଶିତ ହେବାପରେ ଜଓ୍ୱାହରଲାଲ ଜିନ୍ନାଙ୍କ ସହ ପତ୍ରାଳାପ କଲେ । କିନ୍ତୁ ଜିନ୍ନାଙ୍କ ମତିଗତିରେ କୌଣସି ପରିବର୍ତ୍ତନ ଘଟିନଥିଲା ।

ଜୁଲାଇ ୨୭ ତାରିଖରେ ମହମ୍ମଦ ଅଲ୍ଲୀ ଜିନ୍ନା ଏକ ବିବୃତିରେ କହିଥିଲେ, "ଯେପର୍ଯ୍ୟନ୍ତ କଂଗ୍ରେସ ଓ ମିଃ. ଗାନ୍ଧି ଭାବନ୍ତି ଯେ, ସେମାନେ ସାରା ଭାରତର

ପ୍ରତିନିଧି ଏବଂ ଯେପର୍ଯ୍ୟନ୍ତ ସେମାନେ ସ୍ୱୀକାର ନକରନ୍ତି ଯେ ମୁସଲିମ୍ ଲିଗ୍ ମୁସଲମାନମାନଙ୍କର ଏକମାତ୍ର ପ୍ରତିନିଧିମୂଳକ ଅନୁଷ୍ଠାନ, ସେପର୍ଯ୍ୟନ୍ତ ସ୍ୱାଧୀନତା ତ ଦୂରର କଥା, ସେମାନଙ୍କ ସହିତ ମିଳାମିଶାର କୌଣସି ସଂଭାବନା ନାହିଁ ।"

ୱାଭେଲ ତାଙ୍କୁ ସୂଚନା ଦେଇଥିଲେ ଯେ, ହୁଏତ ପଞ୍ଜାବର ଓ ବଙ୍ଗଳାର ମୁସଲିମ୍‌ବହୁଳ ଅଂଶକୁ ନେଇ ଏକ ବିଖଣ୍ଡିତ ପାକିସ୍ତାନ ଗଠନ ସମ୍ଭବ ହୋଇପାରେ, କିନ୍ତୁ ଛ'ଟି ପ୍ରଦେଶକୁ ନେଇ ଗଠିତ ଏକ ପୂର୍ଣ୍ଣାଙ୍ଗ ପାକିସ୍ତାନର ସ୍ୱପ୍ନ ସଫଳ ହେବନାହିଁ । ମାତ୍ର ଜିନ୍ନା ତାଙ୍କ ପୂର୍ବ ମତିଗତିରେ ଅଟଳ ରହିଥିଲେ । କାର୍ଯ୍ୟତଃ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନରେ ସହଯୋଗ କରିବା ପରିବର୍ତ୍ତେ, ୧୬ ଅଗଷ୍ଟକୁ 'ଡାଇରେକ୍ଟ ଆକ୍ସନ' ଦିବସ ରୂପେ ପାଳନ କରିବା ପାଇଁ ଜିନ୍ନା ଓ ମୁସଲିମ୍ ଲିଗ୍ ମୁସଲମାନମାନଙ୍କୁ ଆହ୍ୱାନ ଦେଇଥିଲେ । ସେଦିନ ହିଂସା ଆଚରଣ କରାଯିବ କି ନାହିଁ, ଏ ବିଷୟରେ ଜଣେ ସାମ୍ବାଦିକଙ୍କ ପ୍ରଶ୍ନର ଉତ୍ତରରେ ଜିନ୍ନା କହିଥିଲେ, "ସେ ନୀତିଶାସ୍ତ୍ର ଚର୍ଚ୍ଚା କରିବାକୁ ପ୍ରସ୍ତୁତ ନୁହଁନ୍ତି ।" ସତକୁ ସତ 'ଡାଇରେକ୍ଟ ଆକ୍ସନ' ଦିବସରେ ମୁସଲିମ୍ ଲିଗ୍‌ର ଆଚରଣରେ ହିଂସା, ଅହିଂସା ବା ନ୍ୟାୟ, ଅନ୍ୟାୟର କୌଣସି ସୀମା-ସରହଦ ରହିଲା ନାହିଁ ।

ଏ ମଧ୍ୟରେ ବଙ୍ଗଳାରେ ନାଜିମୁଦ୍ଦିନଙ୍କ ବଦଳରେ ଧୂର୍ତ୍ତ ଲିଗ୍ ନେତା ସୟଦ୍ ସୁରାବର୍ଦ୍ଦି ପ୍ରଧାନମନ୍ତ୍ରୀ ହୋଇଥାନ୍ତି । କଲିକତାରେ "ଡାଇରେକ୍ଟ ଆକ୍ସନ" ଆହ୍ୱାନ ଏକ ପ୍ରଳୟଙ୍କରୀ ରୂପ ନେଇଥିଲା । ୧୬ ତାରିଖ ଅଗଷ୍ଟ ପ୍ରଭାତରେ କଲିକତା ସହରରେ ସୂର୍ଯ୍ୟୋଦୟ ହେଲା ସନ୍ଦେହ, ଭୟ ଓ ଆତଙ୍କର କୁହେଳୀ ମଧ୍ୟରେ । ପ୍ରଧାନମନ୍ତ୍ରୀ ସୁରାବର୍ଦ୍ଦିଙ୍କ ଆଦେଶରେ ୧୬ ଅଗଷ୍ଟକୁ ଛୁଟି ଘୋଷଣା କରାଯାଇଥିଲା ଓ ସରକାରୀ ଅଫିସ ସବୁ ବନ୍ଦ ରହିଥିଲା । ସେଦିନ ସକାଳେ କଲିକତା ରାସ୍ତାରେ ପୋଲିସ୍, ଏପରିକି ଯାନବାହନ ନିୟନ୍ତ୍ରଣକାରୀ ଟ୍ରାଫିକ ପୋଲିସ ମଧ୍ୟ ନଥିଲେ । ବ୍ରିଟିଶ ବ୍ରିଗେଡ଼ିଅର ମ୍ୟାକ୍ କିନ୍‌ଲେ ସୈନ୍ୟବାହିନୀକୁ ବ୍ୟାରାକରେ ଆବଦ୍ଧ ରହିବାକୁ ନିର୍ଦ୍ଦେଶ ଦେଇଥିଲେ । ଆନ୍ଦୋଳନକାରୀମାନଙ୍କର ଘୋଷିତ କାର୍ଯ୍ୟକ୍ରମ ଥିଲା, ସେମାନେ ବିଭିନ୍ନ ଅଞ୍ଚଳରୁ ଶୋଭାଯାତ୍ରାରେ ଆସି ଚୌରଙ୍ଗୀ ସାମନା ଅକ୍ଟରଲୋନି ମନ୍ୟୁମେଣ୍ଟ ନିକଟରେ ଜମାଟ ବାନ୍ଧିବେ ଓ ଉପରବେଳା ସେଠାରେ ସୁରାବର୍ଦ୍ଦି ସାହେବ ସାଧାରଣ ସଭାରେ ଭାଷଣ ଦେବେ । କିନ୍ତୁ ସକାଳ ଆଠଟାରୁ ମାନିକ୍‌ତୋଲା ଅଞ୍ଚଳରୁ

ଆରମ୍ଭ ହେଲା ମୁସଲିମ୍ ଲିଗ୍ ପତାକାଧାରୀ ଉଦ୍‌ଭ୍ରାନ୍ତ ବିଶୃଙ୍ଖଳ ଜନତାର ନୃଶଂସ ଅଭିଯାନ– କଣ୍ଠରେ "ଲଡ଼କେ ଲେଙ୍ଗେ ପାକିସ୍ଥାନ" ଧ୍ୱନି, ରାସ୍ତାପାର୍ଶ୍ୱର ଦୋକାନ ବଜାର ଲୁଟ୍ ଓ ଅନ୍ୟ ସମ୍ପ୍ରଦାୟର ଲୋକଙ୍କର ଗଣହତ୍ୟା । ତା'ପରେ ଆରମ୍ଭ ହୋଇଗଲା ସହର ସାରା ପ୍ରଚଣ୍ଡ ସାମ୍ପ୍ରଦାୟିକ ଗଣ୍ଡଗୋଳ, ଲୁଟତରାଜ ଓ ହତ୍ୟାକାଣ୍ଡ । ରାସ୍ତାର ଗଳିକନ୍ଦିରେ ହଜାର ହଜାର ଶବ ପଡ଼ିରହିଲା । ହୁଗୁଳୀ ନଦୀ ସ୍ରୋତରେ ସହସ୍ର ଶବର ଭେଳା । ଏ ବିଭୀଷିକା କେବଳ କଲିକତା ସହରରେ ଆବଦ୍ଧ ରହିଲା ନାହିଁ, କ୍ଷିପ୍ରଗତିରେ ଏ ଭ୍ରାତୃହତ୍ୟା ବିଭିନ୍ନ ସହରକୁ ବ୍ୟାପିବାକୁ ଆରମ୍ଭ କଲା । ବଙ୍ଗଳାର ଗଭର୍ଣ୍ଣର ସାମରିକ ଶକ୍ତି ପ୍ରୟୋଗ କରି ଦଙ୍ଗା ଦମନ କରିବା ପରିବର୍ତ୍ତେ ନୀରବଦ୍ରଷ୍ଟା ସାଜି ଦଙ୍ଗାକାରୀମାନଙ୍କୁ ପ୍ରଚ୍ଛନ୍ନ ସମର୍ଥନ ଦେଉଥିଲେ ।

ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ଧମକ ଓ ତା'ର ରକ୍ତାକ୍ତ ପରିଣତି, ବଙ୍ଗଳାର ମୁସଲିମ୍ ଲିଗ୍ ସରକାରଙ୍କର ଏ ପରିଣତି ପ୍ରତି ନଗ୍ନ ପ୍ରୋତ୍ସାହନ ଓ ତତ୍‌ସହ ବଙ୍ଗଳା ଗଭର୍ଣ୍ଣରଙ୍କ ପ୍ରଚ୍ଛନ୍ନ ସମର୍ଥନରେ କଂଗ୍ରେସ ସଭାପତି ଓ ଅନ୍ୟ କଂଗ୍ରେସ ନେତାମାନେ ଆତଙ୍କିତ ହୋଇଉଠିଲେ । କଂଗ୍ରେସ ଅନୁଭବ କଲା ଯେ, ଏ ପରିସ୍ଥିତିରେ କେନ୍ଦ୍ରରେ କ୍ଷମତା ଗ୍ରହଣ ସାମ୍ପ୍ରଦାୟିକ ହତ୍ୟା ଓ ଗଣ୍ଡଗୋଳକୁ ରୋକିବାର ଏକମାତ୍ର ପଥ । ଏଣୁ ଗାନ୍ଧିଜୀଙ୍କ ସହିତ ପରାମର୍ଶ କରି ପରିଶେଷରେ ଅଗଷ୍ଟ ୨୦ ତାରିଖ ଦିନ ସଭାପତି ଜୱାହରଲାଲ ଭାଇସରାୟଙ୍କ ନିକଟକୁ ପ୍ରସ୍ତାବିତ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍ ସଦସ୍ୟମାନଙ୍କର ତାଲିକା ପଠାଇଲେ । ଏହି ତାଲିକାରେ ଅନ୍ତର୍ଭୁକ୍ତ ଥିଲେ ଭାଇସ୍‌ରାୟଙ୍କ ଏକ୍‌ଜିକ୍ୟୁଟିଭ୍ କାଉନସିଲର ଉପସଭାପତି ଜୱାହରଲାଲ ନେହରୁ ଓ କଂଗ୍ରେସ ଦଳର ଛଅଜଣ ସଦସ୍ୟ– ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ, ରାଜଗୋପାଳଚାରୀ, ଶରତ୍ ବୋଷ, ଜଗଜ୍ଜୀବନ ରାମ୍ ଓ ଆସଫ ଅଲ୍ଲୀ, ଖ୍ରୀଷ୍ଟିଆନ ସମ୍ପ୍ରଦାୟର ପ୍ରତିନିଧି ଜନ୍ ମାଥାଇ, ଶିଖ୍ ସମ୍ପ୍ରଦାୟର ସର୍ଦ୍ଦାର ବଳଦେବ ସିଂ, ପାର୍ସି ପ୍ରତିନିଧି କୁଭରଜୀ ଏଚ୍.ଭାବା, ସିହା ମୁସଲିମ୍ ସମ୍ପ୍ରଦାୟର ନେତା (କଂଗ୍ରେସ ସମର୍ଥନକାରୀ) ସର୍ଦ୍ଦାର ଅଲ୍ଲୀ ଜହୀର, ମାସକ ପୂର୍ବେ ମୁସଲିମ୍ ଲିଗ୍‌ରୁ ଇସ୍ତଫା ଦେଇଥିବା ସାର୍ ସରାଫତ୍ ଅହମ୍ମଦ ଖାଁ ଓ ବଙ୍ଗଳାର ପୂର୍ବତନ ପ୍ରଧାନମନ୍ତ୍ରୀ ଫଜଲ-ଉଲ୍-ହକ୍ । କିନ୍ତୁ ସରାଫତ ଅହମ୍ମଦ ଖାଁ ଦିନକ ପରେ ସିମଲାରେ ଦୁଇଜଣ ମୁସଲିମ ଲିଗ୍ କର୍ମୀଙ୍କ ଛୁରାମାଡ଼ରେ ଆହତ ହୋଇ ଶପଥ ଗ୍ରହଣ ଉତ୍ସବରୁ ବାଦ୍ ପଡ଼ିଥିଲେ ।

ଭାଇସରାୟ ପରାମର୍ଶ ଦେଲେ ଯେ, ବଙ୍ଗଳା ନେତା ଫଜଲ୍-ଉଲ୍-ହକ୍‌ଙ୍କୁ ସଦସ୍ୟ ଭାବେ ଗ୍ରହଣ କଲେ ମୁସଲିମ୍‌ଲିଗ୍ ଆହୁରି ଉତ୍କ୍ଷିପ୍ତ ହେବ, ତେଣୁ ତାଙ୍କ ନାମ ବାଦ୍ ଦିଆଗଲା । ସେପ୍ଟେମ୍ବର ୨ ତାରିଖରେ ନବଗଠିତ ମନ୍ତ୍ରିମଣ୍ଡଳର ସଦସ୍ୟମାନେ ଦିଲ୍ଲୀରେ ଶପଥ ଗ୍ରହଣ କଲେ । ସେପ୍ଟେମ୍ବର ୭ ତାରିଖରେ ଏହି ଅସ୍ଥାୟୀ ସରକାରର ନେତା ଜଓ୍ୱାହରଲାଲ ନେହୁରୁ ଏକ ବେତାର ଭାଷଣରେ କହିଥିଲେ, "ଦୀର୍ଘଦିନ ଧରି ଆମ୍ଭେମାନେ ବହୁ ଘଟଣା ପ୍ରବାହର ନୀରବଦ୍ରଷ୍ଟା ଭାବେ ରହିଆସିଛୁ । ଅନ୍ୟମାନଙ୍କର କ୍ରୀଡ଼ନକ ଭାବରେ ବ୍ୟବହୃତ ହୋଇଛୁ । ବର୍ତ୍ତମାନ ସବୁ ମହତ କାର୍ଯ୍ୟରେ ପ୍ରାରମ୍ଭିକ ପଦକ୍ଷେପ ନେବା ପାଇଁ ଆମ ଜନସାଧାରଣଙ୍କୁ ସୁଯୋଗ ମିଳିଛି । ଆମକୁ ଏବେ ଆମର ଅଭିରୁଚି ଅନୁଯାୟୀ ନୂତନ ଇତିହାସ ରଚନା କରିବାକୁ ହେବ ।"

ଜଓ୍ୱାହରଲାଲଙ୍କର ଏହି ନୂତନ ଇତିହାସ ରଚନାର ଆହ୍ୱାନକୁ ଖର୍ବ କରିବା ପାଇଁ ମୁସଲିମ୍ ଲିଗ୍ ଗଭୀର ଷଡ଼ଯନ୍ତ୍ର ଆରମ୍ଭ କରିଦେଲେ । କେନ୍ଦ୍ରରେ କ୍ଷମତା ଗ୍ରହଣର ଅଳ୍ପଦିନ ପରେ ଜଓ୍ୱାହରଲାଲ ସୀମାନ୍ତ ଗସ୍ତ କରି ସେଠାରେ ବାସ କରୁଥିବା ପାହାଡ଼ି ଉପଜାତିମାନଙ୍କ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ପାଇଁ ସ୍ଥିର କଲେ । କିନ୍ତୁ ମୁସଲିମ୍ ଲିଗ୍ ଜଓ୍ୱାହରଲାଲଙ୍କର ସୀମାନ୍ତ ଗସ୍ତର ବିରୋଧ କରୁଥିଲେ । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ଗଭର୍ଣ୍ଣର ସାର ଓଲାଫ୍ କ୍ୟାରୋ ଦିଲ୍ଲୀ ଆସି ଭାଇସରାୟଙ୍କ ଜରିଆରେ ନିରାପତ୍ତା ଦୃଷ୍ଟିରୁ ଏ ଗ୍ରସ୍ତରୁ ନିବୃତ୍ତ ହେବାପାଇଁ ଜଓ୍ୱାହରଲାଲଙ୍କୁ ଅନୁରୋଧ କଲେ । କିନ୍ତୁ ବ୍ରିଟିଶ ଅଫିସରମାନଙ୍କ ପରାମର୍ଶ ଦ୍ୱାରା ପରିଚାଳିତ ନହୋଇ ସେ ଅକ୍ଟୋବର ମଧ୍ୟଭାଗରେ ସୀମାନ୍ତ ପ୍ରଦେଶ ଯାତ୍ରା ଆରମ୍ଭ କଲେ । ନେହୁରୁଙ୍କ ସଭା, ଶୋଭାଯାତ୍ରା ଓ ସମ୍ବର୍ଦ୍ଧନାରେ ଟେକାମାଡ଼ ଓ ଗୁଳିବର୍ଷଣଠାରୁ ଆରମ୍ଭ କରି ସବୁ ପ୍ରକାରର ଗଣ୍ଡଗୋଳ କରାଗଲା । ଜଓ୍ୱାହରଲାଲ ଅବଶ୍ୟ ଅତି ସାହସର ସହ ନିଜର ସମସ୍ତ କାର୍ଯ୍ୟକ୍ରମ ପୂର୍ଣ୍ଣ କଲେ । କିନ୍ତୁ ବ୍ରିଟିଶ୍ ଅଫିସରମାନେ ଏ ବିଭ୍ରାଟ ଓ ଗଣ୍ଡଗୋଳକୁ ମୁସଲିମ୍‌ଲିଗ୍‌ର କ୍ରମବର୍ଦ୍ଧନଶୀଳ ପ୍ରତିପତ୍ତି ଭାବରେ ଚିତ୍ର କରିବାକୁ କୁଣ୍ଠିତ ହେଲେନାହିଁ । ବ୍ରିଟିଶ୍ ଅମଲାତନ୍ତ୍ର ଓ ମୁସଲିମ୍ ଲିଗ୍ ମଧ୍ୟରେ ଗଭୀର ସଂଯୋଗର ଏହା ଥିଲା ପ୍ରତ୍ୟକ୍ଷ ନିଦର୍ଶନ ।

ଏଣେ ଅସ୍ଥାୟୀ ସରକାରରେ କଂଗ୍ରେସ ଦଳର ପ୍ରତିଷ୍ଠା ଯେପରି ସୁଦୃଢ଼ ନହୁଏ, ସେଥିପାଇଁ ସରକାରରେ ଯୋଗଦେବା ନିମନ୍ତେ ମୁସଲିମ୍ ଲିଗ୍‌କୁ ପ୍ରଭାବିତ କରିବା

ପାଇଁ ଭାଇସରାୟଙ୍କର ଆକଣ୍ଠ ଉଦ୍ୟମ ଚାଲୁରହିଥିଲା । କଂଗ୍ରେସ ଉପରେ ଚାପ ପକାଇବା ପାଇଁ ୱାଭେଲ ସୂଚନା ଦେଲେ ଯେ, 'ଗଣ ପରିଷଦ' ବୈଠକ ଆହ୍ୱାନ କରିବାର କ୍ଷମତା ଭାଇସରାୟଙ୍କ ଉପରେ ନ୍ୟସ୍ତ । ଏଣୁ ମୁସଲିମ୍‌ଲିଗ୍ ସରକାରରେ ଯୋଗ ନଦେବା ପର୍ଯ୍ୟନ୍ତ ଗଣ ପରିଷଦର ଅଧିବେଶନ ଆହ୍ୱାନ କରିବା ନିରର୍ଥକ । କିନ୍ତୁ କଂଗ୍ରେସ ନେତାମାନେ ଅନୁଭବ କଲେ, ବ୍ରିଟେନର କର୍ତ୍ତୃତ୍ୱ ଭାଙ୍ଗିବା ପାଇଁ ଗଣ ପରିଷଦ ଏକ ଶକ୍ତିଶାଳୀ ଆୟୁଧ ଏବଂ ତା'ର ବୈଠକ ଆହ୍ୱାନ କରିବାରୁ କଂଗ୍ରେସ ବିରତ ହେବନାହିଁ । ଏଣେ କ୍ଷମତା ବଳୟରୁ ବାହାରେ ରହି ମୁସଲିମ୍ ଲିଗ୍ ଅସ୍ଥିର ଓ ଆତଙ୍କିତ ଥିଲେ । ଜିନ୍ନା ଆଶଙ୍କା କରୁଥିଲେ ଯେ, କେନ୍ଦ୍ର ସରକାରକୁ ଅକ୍ତିଆର କରି କଂଗ୍ରେସ ବିଧିସଙ୍ଗତ ଭାବରେ ତା'ର କର୍ତ୍ତୃତ୍ୱ ଜାହିର କରିପାରିବ । ମୁସଲିମ୍ ଲିଗ୍ କ୍ୟାବିନେଟ୍ ମିଶନ୍ ଯୋଜନାକୁ ସମ୍ପୂର୍ଣ୍ଣ ଅଗ୍ରାହ୍ୟ କରିଥିଲେ ମଧ୍ୟ ଭାଇସରାୟ ୱାଭେଲ ଲିଗ୍ ପ୍ରତିନିଧିମାନଙ୍କୁ ଅସ୍ଥାୟୀ ସରକାରରେ ଅନ୍ତର୍ଭୁକ୍ତ କରିବା ପାଇଁ ବ୍ୟାକୁଳ ଥିଲେ । ସେ ବୋଧହୁଏ ମନେ କରୁଥିଲେ, ଜିନ୍ନାଙ୍କ ସହାୟତା ବିନା ଜୱାହରଲାଲଙ୍କୁ ପ୍ରଧାନମନ୍ତ୍ରୀ କରି ତାଙ୍କ ପକ୍ଷରେ ସରକାର ଚଳାଇବା ସମ୍ଭବ ନୁହେଁ । ଯାହାହେଉ ଭାଇସରାୟ ଯେତେବେଳେ କେନ୍ଦ୍ର ସରକାରରେ ଯୋଗଦେବା ବିଷୟ ପୁନର୍ବିଚାର କରିବା ପାଇଁ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କୁ ଅନୁରୋଧ କଲେ, ଜିନ୍ନା ତାହା ଆଗ୍ରହର ସହ ଗ୍ରହଣ କରିନେଲେ । ବ୍ରିଟିଶ୍ ଷଡ଼ଯନ୍ତ୍ର ସଫଳ ହେଲା ।

ଜିନ୍ନା ମଧ୍ୟବର୍ତ୍ତୀକାଳୀନ ସରକାରରେ ଯୋଗଦେବା ପାଇଁ ନିଷ୍ପତ୍ତି ନେବା ପରେ ଲିଗ୍‌ର ପ୍ରାଧାନ୍ୟ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଆଉ ଏକ ଚାଲ୍ ଖେଳିଲେ । ସେ ଦାବି କଲେ ଯେ, ଏକ୍‌ଜିକ୍ୟୁଟିଭ୍ କାଉନସିଲର ମୁସଲମାନ ସଦସ୍ୟମାନଙ୍କୁ ଲିଗ୍ ମନୋନୀତ କରିବ ଏବଂ ଜାତୀୟବାଦୀ ମୁସଲମାନମାନେ ସରକାରରେ ରହିପାରିବେ ନାହିଁ । କିନ୍ତୁ ନେହରୁ ଏ ସର୍ତ୍ତ ଗ୍ରହଣ କରିବା ପରିବର୍ତ୍ତେ ଦୃଢ଼ ଭାବରେ ଘୋଷଣା କଲେ ଯେ, ଜାତୀୟବାଦୀ ମୁସଲମାନ ପ୍ରତିନିଧିମାନଙ୍କୁ ସରକାରରୁ ବିଦାୟ ଦିଆଯିବ ନାହିଁ । ଏହାପରେ ନୂଆ ଫିସାଦ ହେଲା, ପାଞ୍ଚଜଣ ମୁସଲିମ୍ ସଦସ୍ୟ ମଧ୍ୟରୁ ଚାରିଜଣ ହେବେ ମୁସଲିମ୍ ଲିଗ୍‌ର ସଭ୍ୟ ଏବଂ ଅନ୍ୟଜଣଙ୍କ ବଙ୍ଗଳାର ଦଳିତମାନଙ୍କର ଜଣେ ପ୍ରତିନିଧି । ଉଦ୍ଦେଶ୍ୟ ହେଲା ବଙ୍ଗଳାର ହିନ୍ଦୁ ଓ ଦଳିତମାନଙ୍କ ମଧ୍ୟରେ ବିବାଦର ସୂତ୍ରପାତ କରି ବଙ୍ଗଳାରେ ଅଧିକ ସମର୍ଥନ ଲାଭ କରିବା । ତଦନୁଯାୟୀ ଯୁକ୍ତ

ପ୍ରଦେଶର ଲିଆକତ୍ ଅଲ୍ଲୀ ଖାଁ, ପଞ୍ଜାବର ଗଜନଫର ଅଲ୍ଲୀ ଖାଁ ଏବଂ ଦଳିତ ପ୍ରତିନିଧି ଯୋଗେନ୍ଦ୍ରନାଥ ମଣ୍ଡଳଙ୍କ ସମେତ ଲିଗ୍ ମନୋନୀତ ପାଞ୍ଚଜଣ ସଦସ୍ୟ ଭାଇସରାୟଙ୍କ ଏକ୍‌ଜିକ୍ୟୁଟିଭ୍ କାଉନସିଲ୍‌ରେ ଯୋଗ ଦେଲେ । ଅକ୍ଟୋବର ୨୬ ତାରିଖରେ ମୁସଲିମ୍ ଲିଗ୍ ମନୋନୀତ ମନ୍ତ୍ରୀମାନେ ଶପଥ ନେଲେ । ନଭେମ୍ବର ୧୫ତାରିଖରେ ଦିଲ୍ଲୀରୁ ପ୍ରକାଶିତ ଲିଗ୍‌ର ମୁଖପତ୍ର 'ଡନ୍' କାଗଜରେ ବଡ଼ବଡ଼ ଅକ୍ଷରରେ ଏକ ସମ୍ବାଦ ପ୍ରକାଶିତ ହେଲା, "ପାକିସ୍ଥାନ ଗଠନ ଭାରତୀୟ ସମସ୍ୟାର ଏକମାତ୍ର ସମାଧାନ ।" ଏହି ଶିରୋନାମା ଥିଲା, କ୍ୱାଏଦୀ ଆଜାମ୍ ଜିନ୍ନାଙ୍କର ବିବୃତିର ଏକ ଅଂଶ ।

ମୁସଲିମ୍ ଲିଗ୍‌ର ପ୍ରତିନିଧିମାନେ ଭାଇସରାୟଙ୍କ ଏକ୍‌ଜିକ୍ୟୁଟିଭ୍ କାଉନସିଲରେ ଶାସନ ଚଳାଇବା ପାଇଁ ପ୍ରବେଶ କରିନଥିଲେ । ଆରମ୍ଭରୁ ଲିଗ୍‌ର ଉଦ୍ଦେଶ୍ୟ ଥିଲା, କାଉନସିଲରେ ପ୍ରବେଶ କରି କୌଣସି କାର୍ଯ୍ୟ କରାଇ ନଦେବା । କାଉନସିଲର ଉପସଭାପତିଙ୍କୁ ପ୍ରତି କଥାରେ ବିରୋଧ କରି ଶାସନକୁ ଅକାମୀ କରିବା ଥିଲା ସେମାନଙ୍କର କାର୍ଯ୍ୟକ୍ରମ । ସବୁଦିନ ସବୁକ୍ଷେତ୍ରରେ ବିବାଦ ସୃଷ୍ଟି କରିବା ହିଁ ଥିଲା ସେମାନଙ୍କର ଏକମାତ୍ର ଉଦ୍ଦେଶ୍ୟ । ଅକ୍ଟୋବର ୨୬ ତାରିଖରେ ଲିଗ୍ ସଦସ୍ୟମାନେ ଏକ୍‌ଜିକ୍ୟୁଟିଭ୍ କାଉନସିଲର୍ ଭାବେ ଶପଥ ନେଇ ପ୍ରଥମରୁ ବିଭାଗ ବଣ୍ଟନ ନେଇ ବିବାଦ ସୃଷ୍ଟି କଲେ । ଲିଗ୍ ୱାଭେଲଙ୍କ ନିକଟରେ ଦାବି କଲେ ଯେ, ଘରୋଇ ବିଭାଗର ଦାୟିତ୍ୱ ଜଣେ ମୁସଲିମ୍ ସଦସ୍ୟଙ୍କୁ ଦିଆଯାଉ । ସେତେବେଳେ ଗୃହ ବିଭାଗ ଥାଏ ସର୍ଦ୍ଦାର ପଟେଲଙ୍କ ଦାୟିତ୍ୱରେ । ଜୱାହରଲାଲ ନେହୁରୁ ଏ ପ୍ରସ୍ତାବର ପ୍ରତିରୋଧ କରି କହିଲେ ଯେ, ବିଭାଗ ବଣ୍ଟନ ପ୍ରଧାନମନ୍ତ୍ରୀଙ୍କ (କାଉନସିଲର ଉପ-ସଭାପତିଙ୍କ) ବିଶେଷ ଅଧିକାରଭୁକ୍ତ ଏବଂ ସେ ସର୍ଦ୍ଦାର ପଟେଲଙ୍କ ପରି ଜଣେ ଦକ୍ଷ ବ୍ୟକ୍ତିଙ୍କୁ ଘରୋଇ ବିଭାଗରୁ ବାଦ୍ ଦେବାକୁ ଚାହାଁନ୍ତି ନାହିଁ । ତା'ପରେ ଲିଗ୍‌ର ଦାବି ହେଲା, ଅର୍ଥ ବିଭାଗର ଦାୟିତ୍ୱ ସେମାନଙ୍କୁ ଦିଆଯାଉ । ବହୁ ବିଚାରବିମର୍ଶ ପରେ ଲିଆକତ୍ ଅଲ୍ଲୀ ଖାଁଙ୍କୁ ଅର୍ଥ ବିଭାଗ ଦିଆଗଲା ।

ଅର୍ଥ ବିଭାଗର ଦାୟିତ୍ୱ ନେଲାପରେ ସେ ବର୍ଷ ପାଇଁ ଯେଉଁ ବଜେଟ୍ ପ୍ରସ୍ତୁତ ହେଲା, ଜିନ୍ନାଙ୍କ ପ୍ରରୋଚନାରେ ସେ ବଜେଟ୍ ଥିଲା, ବମ୍ବେର ଶିଳ୍ପପତି ଗୋଷ୍ଠୀଙ୍କ ଗୋଛି କାଟିବାର ପ୍ରୟାସ । ଜନସାଧାରଣଙ୍କର ଉପକାର ପାଇଁ ବଜେଟ୍ ପ୍ରସ୍ତୁତ ହୋଇନଥିଲା । ବମ୍ବେର ଶିଳ୍ପପତିମାନେ ଥିଲେ ମୁଖ୍ୟତଃ କଂଗ୍ରେସ ସମର୍ଥକ, ଏଣୁ

ସେମାନଙ୍କୁ ଅସୁବିଧାରେ ପକାଇବା ପାଇଁ କେତେକ ବ୍ୟବସ୍ଥା ବଜେଟ୍‌ରେ ଖଞ୍ଜି ଦିଆଯାଇଥିଲା । ତା'ସତ୍ତ୍ୱେ ଜୱାହରଲାଲ ଏ ବଜେଟ୍‌କୁ ଗ୍ରହଣ କରିନେଲେ । ଏତିକିରେ ବିବାଦର ପରିସମାପ୍ତି ଘଟିଲା ନାହିଁ । ବହୁକ୍ଷେତ୍ରରେ ନିୟମ ଓ ପରମ୍ପରା ଅନୁଯାୟୀ କୌଣସି ସରକାରୀ କାର୍ଯ୍ୟ ବା ପ୍ରକଳ୍ପର କାର୍ଯ୍ୟକାରିତାର ଆର୍ଥିକ ବ୍ୟବସ୍ଥା ସହିତ ସମ୍ପୃକ୍ତ ଥିଲେ, ସେ ସଂକ୍ରାନ୍ତୀୟ ଫାଇଲ୍ ଅର୍ଥ ବିଭାଗକୁ ମତାମତ ପାଇଁ ପଠାଯାଇଥାଏ । କିନ୍ତୁ କଂଗ୍ରେସ ଦାୟିତ୍ୱରେ ଥିବା ବିଭାଗଗୁଡ଼ିକରୁ ଯେଉଁସବୁ ଫାଇଲ ମତାମତ ପାଇଁ ଆସିଲା, ଲିଆକତ୍ ହୁଏତ ତାକୁ ନାମଞ୍ଜୁର କଲେ କିମ୍ବା ଏପରି ମତଦେଲେ, ଯାହାଫଳରେ ପ୍ରସ୍ତାବିତ କାର୍ଯ୍ୟ ବା ପ୍ରକଳ୍ପ ଆଉ ଆଗେଇ ପାରିବ ନାହିଁ । କଂଗ୍ରେସ ଓ ଲିଗ୍ ମଧ୍ୟରେ କ୍ରମାଗତ ବିବାଦ ଫଳରେ ଶାସନ ପଙ୍ଗୁ ହେବାକୁ ଲାଗିଲା । ଲିଗ୍ ଯେ ସରକାରରେ ରହି ଭିତରୁ ସରକାରକୁ ଅଚଳ କରିବାକୁ ଉଦ୍ୟମ କରୁଛନ୍ତି, କ୍ରମେ ତାହା ଅଧିକ ସ୍ପଷ୍ଟ ହୋଇଉଠିଲା ।

ପୂର୍ବ ନିଷ୍ପତ୍ତି ଅନୁଯାୟୀ ୧୯୪୬ ପ୍ରଥମ ଭାଗରେ ବିଧାନସଭା ନିର୍ବାଚନ ଶେଷ ହୋଇଥାଏ ଏବଂ ବିଧାନସଭାର ସଦସ୍ୟମାନଙ୍କ ଦ୍ୱାରା ଗଣ ପରିଷଦର ସଭ୍ୟମାନଙ୍କର ନିର୍ବାଚନ ମଧ୍ୟ ସରିଥାଏ । କିନ୍ତୁ ମୁସଲିମ୍ ଲିଗ୍‌ର ବିରୋଧ ହେତୁ ଗଣ ପରିଷଦର ବୈଠକ ଡକାଗଲା ନାହିଁ । ମୁସଲିମ୍ ଲିଗ୍ ସରକାରରେ ଯୋଗଦେବା ପରେ ଜୱାହରଲାଲ ଗଣ ପରିଷଦର ବୈଠକ ଡାକିବା ପାଇଁ ଭାଇସରାୟଙ୍କ ନିକଟରେ ଦାବି କଲେ । ଭାଇସରାୟ ପ୍ରଥମରୁ ଏଥିରେ ସମ୍ମତି ଦେଉନଥିଲେ । କିନ୍ତୁ ନେହରୁଙ୍କ ଇସ୍ତଫା ଧମକ ଫଳରେ ଭାଇସରାୟ ଏଥିପାଇଁ ସମ୍ମତି ଦେଲେ ଓ ଡିସେମ୍ବର ୯ ତାରିଖରେ ଗଣ ପରିଷଦର ପ୍ରଥମ ଅଧିବେଶନ ଆହୂତ ହେଲା । ମୁସଲିମ୍ ଲିଗ୍ ଗଣ ପରିଷଦର ବୈଠକରେ ଯୋଗ ଦେବେନାହିଁ ବୋଲି ଘୋଷଣା କଲେ ।

କେବଳ କଂଗ୍ରେସ ଓ ତା'ର ସମର୍ଥନକାରୀ ଦଳମାନଙ୍କୁ ନେଇ ଗଠିତ 'ଗଣ ପରିଷଦ' ଭାରତର ଭବିଷ୍ୟତ ସମ୍ବିଧାନ ରଚନା କରୁ, ୱାଭେଲ ଏହା ଚାହୁଁ ନଥିଲେ । ତେଣୁ ସେ ଏ ବିଷୟରେ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କ ସହ ପରାମର୍ଶ କଲେ । ଅଟ୍‌ଲୀ ତାଙ୍କୁ ନିର୍ଦ୍ଦେଶ ଦେଲେ, କଂଗ୍ରେସ ଓ ମୁସଲିମ୍ ଲିଗ୍‌ର ଦୁଇଜଣ ଲେଖାଏଁ ପ୍ରତିନିଧି ସାଙ୍ଗରେ ଧରି ସେ ଶୀଘ୍ର ଲଣ୍ଡନ ଆସନ୍ତୁ । କଂଗ୍ରେସରୁ ଜୱାହରଲାଲ ନେହରୁ, ଲିଗ୍‌ର ମହମ୍ମଦ ଅଲ୍ଲୀ ଜିନ୍ନା ଓ ଲିଆକତ୍ ଅଲ୍ଲୀ ଖାଁ ଏବଂ ଶିଖ୍ ନେତା ସର୍ଦ୍ଦାର ବଳଦେବ ସିଂହଙ୍କ ସହିତ

ଓ୍ୱାଭେଲ ଲଣ୍ଡନରେ ପହଞ୍ଚିଲେ । ସେଠାରେ ଅଟ୍‌ଲୀ ଓ କ୍ୟାବିନେଟ୍ ମିଶନର ସଭ୍ୟମାନଙ୍କୁ ନେଇ ପ୍ରଦେଶ ଓ ଗ୍ରୁପ୍ ଗଠନ ବିବାଦ ସଂକ୍ରାନ୍ତରେ ଡିସେମ୍ବର ୩ ରୁ ୬ ତାରିଖ ପର୍ଯ୍ୟନ୍ତ ଆଲୋଚନା ହେଲା । କିନ୍ତୁ କୌଣସି ନିଷ୍ପତ୍ତିରେ ସେମାନେ ପହଞ୍ଚି ପାରିଲେ ନାହିଁ । ଡିସେମ୍ବର ୯ ତାରିଖରେ ଗଣ ପରିଷଦ ବୈଠକରେ ଯୋଗ ଦେବାପାଇଁ ନେହ୍ରୁ ଲଣ୍ଡନରୁ ଫେରି ଆସିଲେ ।

ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ଡିସେମ୍ବର ୯ ତାରିଖରେ ଗଣ ପରିଷଦର ବୈଠକ ବସିଲା । ମୁସଲିମ୍ ଲିଗ ନେତାମାନେ ଏଥିରେ ଯୋଗ ଦେଲେନାହିଁ । ନେହ୍ରୁ ଏକ ପ୍ରସ୍ତାବ ଆଗତ କରି ଭାରତକୁ "ପୂର୍ଣ୍ଣ ସ୍ୱାଧୀନ ଓ ସାର୍ବଭୌମ ରାଷ୍ଟ୍ର" ବୋଲି ଘୋଷଣା କଲେ । ଲିଗ୍ ପ୍ରତିନିଧିମାନେ ଯୋଗ ଦେଇ ନଥିବାରୁ ପରବର୍ତ୍ତୀ ବୈଠକ ପାଇଁ କେତେକ ପ୍ରାଥମିକ ନିଷ୍ପତ୍ତି ଗ୍ରହଣ କରି କାର୍ଯ୍ୟକ୍ରମ ମୁଲତବୀ ରହିଲା ।

ଏ ମଧ୍ୟରେ ମୁସଲିମ୍ ଲିଗ୍‌ର କ୍ରମାଗତ ସାମ୍ପ୍ରଦାୟିକ ବିଷୋଦ୍‌ଗାରଣ ଓ ପାକିସ୍ଥାନ ଗଠନ କରିବା ପାଇଁ କେନ୍ଦ୍ର ସରକାର ଓ ଗଣ ପରିଷଦକୁ ଅଚଳ କରିବାର ପ୍ରୟାସ ଜଓ୍ୱାହରଲାଲ ଓ ଅନ୍ୟ କଂଗ୍ରେସ ନେତାମାନଙ୍କ ପକ୍ଷରେ ଅସହନୀୟ ହେଲା । କଂଗ୍ରେସ ନେତାମାନେ ଏକମତ ହେଲେ, ଲିଗ୍‌ସହ ମିଳିତ ସରକାର ଚଳାଇବା ଆଉ ସମ୍ଭବ ନୁହେଁ । ୧୯୪୭ ଫେବୃଆରୀ ୫ ତାରିଖରେ ଲିଗ୍‌ଦ୍ୱାରା ମନୋନୀତ ପାଞ୍ଚଜଣ ସଦସ୍ୟଙ୍କୁ ବାଦ୍‌ଦେଇ ମଧ୍ୟବର୍ତ୍ତୀକାଳୀନ ସରକାରର ଅନ୍ୟ ନଅଜଣ ସଦସ୍ୟ ଭାଇସରାୟଙ୍କୁ ପ୍ରେରିତ ଏକ ମିଳିତ ପତ୍ରରେ ଦାବି କଲେ, ମୁସଲିମ୍ ଲିଗ୍ କ୍ୟାବିନେଟ୍ ମିଶନର ପ୍ରସ୍ତାବ ଅଗ୍ରାହ୍ୟ କରିଥିବା ଦୃଷ୍ଟିରୁ ଓ ସରକାରରେ ଯୋଗଦେବା ପରେ ଲିଗ୍ ସଦସ୍ୟଙ୍କ କାର୍ଯ୍ୟକଳାପ ଦୃଷ୍ଟିରୁ ଲିଗ୍ ପ୍ରତିନିଧିମାନଙ୍କୁ କେନ୍ଦ୍ର ସରକାରରୁ ବିଦାୟ ଦିଆଯାଉ । ସପ୍ତାହକ ପରେ ଏକ୍‌ଜିକ୍ୟୁଟିଭ କାଉନସିଲର ଉପସଭାପତି ଜଓ୍ୱାହରଲାଲ ନେହ୍ରୁ ଭାଇସରାୟଙ୍କୁ ଜଣାଇଦେଲେ ଯେ, ତୁରନ୍ତ ଏ ବିଷୟରେ ନିଷ୍ପତ୍ତି ନନେଲେ, ସେ ଓ ତାଙ୍କର ସହଯୋଗୀମାନେ କେନ୍ଦ୍ର ସରକାରରୁ ଇସ୍ତଫା ଦେବେ ।



# ଅଟ୍‌ଲୀଙ୍କ ବିଦାୟ ଘୋଷଣା

ଜୱାହରଲାଲଙ୍କ ଇସ୍ତଫା ଧମକର ଉତ୍ତର ଆସିଲା ଲଣ୍ଡନରୁ । ନେହରୁଙ୍କୁ କୁହାହେଲା ଯେ ବ୍ରିଟିଶ ସରକାର ଅତି ନିକଟରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଘୋଷଣା କରିବାକୁ ଯାଉଛନ୍ତି, ତେଣୁ ସେ ଇସ୍ତଫା ନଦେଇ ଟିକିଏ ଅପେକ୍ଷା କରନ୍ତୁ । କାର୍ଯ୍ୟତଃ ଗୋଟିଏ ସପ୍ତାହ ପରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଅଟ୍‌ଲୀ ୧୯୪୭ ମସିହା ଫେବୃଆରୀ ୨୦ ତାରିଖରେ 'ହାଉସ ଅଫ୍ କମନ୍‌ସ'ରେ ଘୋଷଣା କଲେ, ବ୍ରିଟିଶ ସରକାର ୧୯୪୮ ଜୁନ୍ ମଧ୍ୟରେ ଭାରତୀୟଙ୍କୁ ଶାସନ କ୍ଷମତା ହସ୍ତାନ୍ତର କରିବା ପାଇଁ ସମସ୍ତ ବ୍ୟବସ୍ଥା କରୁଛନ୍ତି । ଭାରତୀୟ ରାଜନୈତିକ ଦଳମାନେ ଭେଦଭାବ ଭୁଲି ଏପରି ଭାବରେ କାର୍ଯ୍ୟ କରନ୍ତୁ, ଯାହା ଫଳରେ କି ଏକ ସମ୍ମିଳିତ ସରକାରକୁ କ୍ଷମତା ହସ୍ତାନ୍ତର କରାଯାଇ ପାରିବ । କିନ୍ତୁ ମିଳିତ ଭାବରେ କାର୍ଯ୍ୟ କରିବାର କୌଣସି ବ୍ୟବସ୍ଥା ଗ୍ରହଣ ନକରି ପାରିଲେ ମଧ୍ୟ କ୍ଷମତା ହସ୍ତାନ୍ତରରେ କୌଣସି ବିଳମ୍ବ ହେବନାହିଁ । ନିର୍ଦ୍ଧାରିତ ଦିନ ମଧ୍ୟରେ କେନ୍ଦ୍ରରେ କୌଣସି ସରକାର ସୁପ୍ରତିଷ୍ଠିତ ହୋଇନଥିଲେ, ଆବଶ୍ୟକ ହେଲେ ବ୍ରିଟିଶ ସରକାର ପ୍ରଦେଶମାନଙ୍କୁ କିମ୍ବା ଅନ୍ୟ କେଉଁ ପ୍ରକାରେ କ୍ଷମତା ହସ୍ତାନ୍ତର କରି ଭାରତରୁ ବିଦାୟ ନେବେ ।

ସେ ପୁନଶ୍ଚ ଘୋଷଣା କଲେ ଯେ, ଭାରତରେ ଯୁଦ୍ଧକାଳୀନ ଭିତ୍ତିରେ ନିଯୁକ୍ତ ଭାଇସରାୟ ୱାଭେଲଙ୍କ ନିଯୁକ୍ତି ଏଥିସହିତ ରଦ୍ଦ କରାଯାଉଅଛି ଓ ତାଙ୍କ ସ୍ଥାନରେ ଲର୍ଡ୍ ମାଉଣ୍ଟ ବ୍ୟାଟେନ୍ ଭାରତର ପରବର୍ତ୍ତୀ ଭାଇସରାୟ ପଦରେ ନିଯୁକ୍ତ ହେବେ ।

ବ୍ରିଟିଶ ପ୍ରଧାନମନ୍ତ୍ରୀ ଅଟ୍‌ଲୀଙ୍କ ଘୋଷଣା ଭାରତରେ ବିଦ୍ୟୁତ୍ ବେଗରେ ପ୍ରଚାରିତ ହେଲା ଓ ସବୁ ରାଜନୈତିକ ଦଳମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କଲା । ଅନେକେ ଅନୁଭବ କଲେ ୱାଭେଲଙ୍କର ଅମଲାତାନ୍ତ୍ରିକ ମନୋଭାବ ଶ୍ରମିକ ଦଳ ସରକାର ଆଉ ବରଦାସ୍ତ କରିବାକୁ ପ୍ରସ୍ତୁତ ନୁହଁନ୍ତି । ସେଥିପାଇଁ ମାତ୍ର ଦେଢ଼ବର୍ଷ ମଧ୍ୟରେ କ୍ଷମତା ହସ୍ତାନ୍ତରର ଯୋଜନା ଥିଲେ ମଧ, ଭାଇସରାୟ ଗାଦିରେ ପରିବର୍ତ୍ତନ କରି ଲର୍ଡ୍ ମାଉଣ୍ଟ ବ୍ୟାଟେନଙ୍କୁ ଏହି ପଦରେ ନିଯୁକ୍ତ କରାଯାଇଛି । ମାର୍ଚ୍ଚ ୨୨ ତାରିଖରେ ମାଉଣ୍ଟବ୍ୟାଟେନ ନୂଆଦିଲ୍ଲୀରେ ପହଞ୍ଚି ୱାଭେଲଙ୍କଠାରୁ କାର୍ଯ୍ୟଭାର ଗ୍ରହଣ କଲେ ।

•

# ଭାରତ ବିଭାଜନ ଓ ମାଉଣ୍ଟ ବ୍ୟାଟେନ୍

ବ୍ରିଟିଶ ପାର୍ଲାମେଣ୍ଟରେ କ୍ଷମତା ହସ୍ତାନ୍ତର ସଂକ୍ରାନ୍ତୀୟ ପ୍ରଧାନମନ୍ତ୍ରୀ ଅଟ୍‌ଲୀଙ୍କ ଘୋଷଣା ଓ ଭାଇସରାୟ ଗାଦିରେ ପରିବର୍ତ୍ତନକୁ ଭାରତର ଜାତୀୟବାଦୀ ନେତାମାନେ ସ୍ୱାଗତ କରିଥିଲେ । ଏହି ପରିବର୍ତ୍ତନ ଥିଲା, ଭାରତୀୟ ସମସ୍ୟାର ସମାଧାନ ପାଇଁ ଅଟ୍‌ଲୀଙ୍କର ଏକ ବଳିଷ୍ଠ ପଦକ୍ଷେପ । ଦେଢ଼ବର୍ଷ ମଧ୍ୟରେ ଅର୍ଥାତ୍ ୧୯୪୮ ଜୁନ୍ ମଧ୍ୟରେ ସମସ୍ତ ଆନୁଷଙ୍ଗିକ ବ୍ୟବସ୍ଥା କରିବା ନିମନ୍ତେ ମାଉଣ୍ଟ ବ୍ୟାଟେନଙ୍କୁ ଦାୟିତ୍ୱ ଦିଆଯାଇଥିଲା ।

ମାଉଣ୍ଟ ବ୍ୟାଟେନଙ୍କୁ କ୍ଷମତା ହସ୍ତାନ୍ତର ସମ୍ପର୍କରେ ସବିଶେଷ ଅଧ୍ୟୟନ କରିବା ପାଇଁ ସମସ୍ତ ନଥିପତ୍ର ଯୋଗାଇ ଦିଆହେଲା । ତାଙ୍କୁ ନିର୍ଦ୍ଦେଶ ଦିଆଗଲା ଯେ, କ୍ୟାବିନେଟ୍ ମିଶନ ଯୋଜନାକୁ କାର୍ଯ୍ୟକାରୀ କରିବାର ସମ୍ଭାବନା ସମ୍ପର୍କରେ ସେ ଅନୁଧ୍ୟାନ କରିବେ ଏବଂ ଯଦି ତାଙ୍କ ମତରେ କଂଗ୍ରେସ ଓ ଲିଗ୍ ମଧ୍ୟରେ ମିଳାମିଶା ନହୋଇପାରିବା ଦୃଷ୍ଟିରୁ ଏ ଯୋଜନା କାର୍ଯ୍ୟକାରୀ କରିବାର ଆଉ ସମ୍ଭାବନା ନାହିଁ, ତେବେ କ୍ଷମତା ହସ୍ତାନ୍ତର ପାଇଁ କ'ଣ ବିକଳ୍ପ ପଦକ୍ଷେପ ନିଆଯାଇପାରେ, ତାହା ମଧ୍ୟ ବ୍ରିଟିଶ୍ ସରକାରଙ୍କୁ ଜଣାଇବେ ।

ମାଉଣ୍ଟ ବ୍ୟାଟେନ୍ ଇଂଲଣ୍ଡରୁ ଆସିବା ବେଳେ ଦୁଇଜଣ ସୁଦକ୍ଷ ସହଯୋଗୀଙ୍କୁ ସାଙ୍ଗରେ ଆଣିଥିଲେ ; ସେମାନେ ହେଲେ ଜେନେରାଲ ଲର୍ଡ୍ ଇସ୍‌ମେ ଓ ସାର୍ ଏରିକ୍ ମେଭିଲେ । ଏମାନଙ୍କର ଭାରତୀୟ ଶାସନ ସଂକ୍ରାନ୍ତରେ ପୂର୍ବ ଅଭିଜ୍ଞତା ଥିଲା । ଏତଦ୍ ବ୍ୟତୀତ ଓ୍ୱାଭେଲଙ୍କ ପୂର୍ବତନ ପ୍ରାଇଭେଟ୍ ସେକ୍ରେଟେରୀ ମିଃ. ଆବେଲ, ରିଫର୍ମସ କମିଶନର ଶ୍ରୀ ଭି.ପି. ମେନନ୍ ଏବଂ କେନ୍ଦ୍ର ସରକାରଙ୍କର କେତେକ ସୁଯୋଗ୍ୟ କର୍ମଚାରୀ ତାଙ୍କର ସାହାଯ୍ୟକାରୀ ଭାବରେ କାର୍ଯ୍ୟ କରୁଥିଲେ ।

ଆଲୋଚନାର ପ୍ରାରମ୍ଭରେ ମାଉଣ୍ଟ ବ୍ୟାଟେନ ସବୁ ଦଳର ପ୍ରତିନିଧିମାନଙ୍କୁ ସ୍ପଷ୍ଟ ଭାବରେ କହିଥିଲେ, ସେ କେନ୍ଦ୍ରରେ ଏକ ମିଳିତ ସରକାର ପ୍ରତିଷ୍ଠା କରି ତାହାକୁ

କ୍ଷମତା ହସ୍ତାନ୍ତର କରିବା ପାଇଁ ବିଭିନ୍ନ ରାଜନୈତିକ ଦଳମାନଙ୍କ ସହିତ ଆଲୋଚନା କରୁଛନ୍ତି । ଯଦି ଏ ଆଲୋଚନା ବଳରେ ଏକ ମିଳିତ ସରକାର ପ୍ରତିଷ୍ଠା ସମ୍ଭବ ନହୁଏ, ତାହାହେଲେ ସେ ଯାହା ଉଚିତ ବିଚାରିବେ, ତଦନୁଯାୟୀ ଏକ ଯୋଜନା ପ୍ରସ୍ତୁତ କରିବେ ଓ ସେହି ପର୍ଯ୍ୟାୟରେ ଗଠିତ ସରକାରଙ୍କୁ କ୍ଷମତା ହସ୍ତାନ୍ତର କରି ଭାରତରୁ ବିଦାୟ ନେବେ । ଯଦି ରାଜନୈତିକ ନେତାମାନେ କୌଣସି ନିର୍ଦ୍ଦିଷ୍ଟ ଯୋଜନାରେ ସହମତ ନହୁଅନ୍ତି, ତା'ହେଲେ ସ୍ୱୀୟ ବିଚାର ଅନୁଯାୟୀ କାର୍ଯ୍ୟ କରିବାକୁ ସେ କ୍ଷମତାପ୍ରାପ୍ତ । ସେ ନିଜ ବିବେକ ଅନୁଯାୟୀ କାର୍ଯ୍ୟ କରିବାକୁ ବାଧ ହେଲେ ସେଥିରେ ପୁନଶ୍ଚ ରାଜନୈତିକ ଦଳମାନଙ୍କର ସମ୍ମତି ଲୋଡ଼ାନାହିଁ ।

ମାଉଣ୍ଟ ବ୍ୟାଟେନଙ୍କର ଏହି ଘୋଷଣା ମୁସଲିମ୍ ଲିଗ୍ ନେତାମାନଙ୍କୁ ବିଚଳିତ କରିଥିଲା । ସେ ଯେତେବେଳେ ଜିନ୍ନାଙ୍କ ସହିତ ଆଲୋଚନା କଲେ, ଜିନ୍ନାଙ୍କର ଉତ୍ତର ସେହି ଗୋଟିଏ କଥାରେ – ସେ ଚାହାଁନ୍ତି ପାକିସ୍ଥାନ, ଛ'ଟି ପ୍ରଦେଶକୁ ନେଇ ଗଠିତ ଏକ ପୂର୍ଣ୍ଣାଙ୍ଗ ପାକିସ୍ଥାନ । ପଶ୍ଚିମ ବଙ୍ଗଳାରେ ହିନ୍ଦୁଙ୍କ ସଂଖ୍ୟା ଅଧିକ, ପଞ୍ଜାବରେ ହିନ୍ଦୁ ଓ ଶିଖ୍‌ଙ୍କ ସଂଖ୍ୟା ମୁସଲମାନଙ୍କଠାରୁ ବେଶି । ଏ ପରିସ୍ଥିତିରେ ଜିନ୍ନାଙ୍କ ପ୍ରସ୍ତାବ ମାଉଣ୍ଟ ବ୍ୟାଟେନଙ୍କ ପକ୍ଷରେ ଗ୍ରହଣୀୟ ନଥିଲା । ମାଉଣ୍ଟ ବ୍ୟାଟେନ୍ କହିଲେ, ଜିନ୍ନା ଯଦି ଦେଶ ବିଭାଜନ ପାଇଁ ଜିଦ୍ ଧରି ବସନ୍ତି, ତାହାହେଲେ ପଞ୍ଜାବ ଓ ବଙ୍ଗଳାର ମୁସଲିମ୍‌ବହୁଳ ଅଞ୍ଚଳ ତାଙ୍କୁ ଦିଆଯାଇପାରେ । ସେଥିପାଇଁ ସେ ଦୁଇଟି ପ୍ରଦେଶର ବିଭାଜନ ସୁନିଶ୍ଚିତ । ଜିନ୍ନା କୌଣସି ନିର୍ଦ୍ଦିଷ୍ଟ ଉତ୍ତର ନଦେଇ ମାଉଣ୍ଟ ବ୍ୟାଟେନଙ୍କୁ କହିଲେ, "ମୋତେ ବେଶି ଦିଅନ୍ତୁ ବା ଅଳ୍ପ ଦିଅନ୍ତୁ, କିନ୍ତୁ ଯାହା ଦେବେ, ତା' ଉପରେ ସମସ୍ତ ସାର୍ବଭୌମ ଅଧିକାର ପ୍ରଦାନ କରନ୍ତୁ ।" ଜିନ୍ନାଙ୍କର ଉତ୍ତର ଶୁଣି ଭାଇସରାୟଙ୍କର ଧାରଣା ହେଲା ଯେ ଆବଶ୍ୟକ ହେଲେ ସେ ବିଖଣ୍ଡିତ ପାକିସ୍ଥାନ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛନ୍ତି ।

ଜିନ୍ନାଙ୍କ ସହିତ ଆଲୋଚନା ପରେ ମାଉଣ୍ଟ ବ୍ୟାଟେନ୍ ଏପ୍ରିଲ ୧୦ ତାରିଖରେ ତାଙ୍କ ଡାଏରିରେ ଯେଉଁ ମନ୍ତବ୍ୟ ଲେଖିଥିଲେ, ତାହା ପ୍ରଣିଧାନ ଯୋଗ୍ୟ । ସେ ଲେଖିଥିଲେ –

"ମୁଁ ପାକିସ୍ଥାନ ଏବଂ ପଞ୍ଜାବ, ବଙ୍ଗଳା ଓ ଆସାମ ପ୍ରଦେଶର ବିଭାଜନ ସମ୍ପର୍କରେ ଜିନ୍ନାଙ୍କ ସହ ଆଲୋଚନା ଆରମ୍ଭ କଲି । ମୁଁ କହିଲି, ଭାରତୀୟ ନେତାମାନେ ଏପରି ଭାବବିହ୍ୱଳ ଅବସ୍ଥାରେ ଅଛନ୍ତି ଯେ ମୁଁ ଯଦି ସେମାନଙ୍କ ପାଇଁ ଆତ୍ମହତ୍ୟାର

(ସୁଇସାଇଡ୍) ଯୋଜନା କରେ, ସେମାନେ ବୋଧହୁଏ ସମ୍ମତ ହେବେ । ଜିନ୍ନା ମୁଣ୍ଡ ହଲାଇ ମୋ ସହିତ ସମ୍ମତ ହେଲେ । ମୁଁ ପୁନଶ୍ଚ କହିଲି, ମୁଁ ଯଦି ଭାରତର ଶତ୍ରୁ ହୋଇଥାଏ ଓ ଭାରତର ଭବିଷ୍ୟତ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ଥାଏ, ତା'ହେଲେ କେବଳ ଦେଶ ବିଭାଜନର ଯୋଜନା ପ୍ରସ୍ତୁତ କରି ମୁଁ ଭାରତରୁ ବିଦାୟ ନେଇପାରେ ।"

ତତ୍କାଳୀନ ରିଫର୍ମସ କମିଶନର ଭି.ପି. ମେନନ୍ ତାଙ୍କ ସମ୍ପାଦିତ 'ଟ୍ରାନ୍ସଫର ଅଫ୍ ପାୱାର' ପୁସ୍ତକରେ ଲେଖିଛନ୍ତି –

"ମାଉଣ୍ଟ ବ୍ୟାଟେନ୍ ଜିନ୍ନାଙ୍କୁ ପ୍ରଭାବିତ କରିବା ପାଇଁ ସବୁପ୍ରକାର ଯୁକ୍ତି ଉପସ୍ଥାପିତ କଲେ । କିନ୍ତୁ କୌଣସି ଯୁକ୍ତି ବା ଆବେଦନ ତାଙ୍କୁ କାଟୁ କରୁ ନଥିଲା । ମାଉଣ୍ଟ ବ୍ୟାଟେନ୍ ଯୁକ୍ତି କରିଥିଲେ, ସଂଯୁକ୍ତ ଭାରତ ଦିନେ ପୃଥିବୀର ଏକ ଶକ୍ତିଶାଳୀ ରାଷ୍ଟ୍ର ଓ ବିଶ୍ୱର ଅନ୍ୟ ରାଷ୍ଟ୍ରମାନଙ୍କ ସମତୁଲ୍ୟ ହୋଇପାରିବ । ଏପରି ଏକ ସୁଯୋଗରୁ ଭାରତକୁ ବଞ୍ଚିତ କରିବାକୁ ସେ କାହିଁକି ବ୍ୟାକୁଳ ? ଜିନ୍ନା ଏହାର କୌଣସି ଉତ୍ତର ଦେଇ ପାରିନଥିଲେ । ବରଂ ସେ ଏପରି ଛଳନା କରୁଥିଲେ, ଯେପରିକି ସେ କିଛି ଶୁଣିପାରୁନାହାନ୍ତି । ବସ୍ତୁତଃ ତାଙ୍କ ସହିତ ଆଲୋଚନା କରିବା ଅସମ୍ଭବ ... । ଜିନ୍ନାଙ୍କ ସହ ଆଲୋଚନା କଲେ ମନେହେବ, ତାଙ୍କର ଯେପରି ମାନସିକ ବିକାର ଘଟିଛି । ତାଙ୍କ ସହିତ ସାକ୍ଷାତ କରିବା ପୂର୍ବରୁ ମାଉଣ୍ଟ ବ୍ୟାଟେନ୍ଙ୍କର ଧାରଣା ନଥିଲା ଯେ, ତାଙ୍କ ପରି ଜଣେ ସାଧାରଣ ଜ୍ଞାନ ବିବର୍ଜିତ ବ୍ୟକ୍ତି, ଏତେ ବିପୁଳ କ୍ଷମତାର ଅଧିକାରୀ ହୋଇପାରନ୍ତି ।"

ମାଉଣ୍ଟ ବ୍ୟାଟେନ୍ଙ୍କ ସହକାରୀ ଲର୍ଡ଼ ଇସମେଙ୍କ ମତରେ ଜିନ୍ନାଙ୍କର ଚିନ୍ତାଧାରାର ମୁଖ୍ୟ ଆଧାର ଥିଲା, "ହିନ୍ଦୁମାନଙ୍କ ପ୍ରତି ଘୃଣା ଓ ତାଚ୍ଛଲ୍ୟ ।" ଏପ୍ରିଲ ୧୮ ତାରିଖରେ ମାଉଣ୍ଟ ବ୍ୟାଟେନ୍ ଦର୍ଶାଇଲେ, ଯଦି ଜିନ୍ନାଙ୍କ ପାକିସ୍ଥାନ ଦାବି ଗ୍ରହଣ କରାଯିବ, ତା'ହେଲେ ବଙ୍ଗଳା ଓ ପଞ୍ଜାବକୁ ବିଭାଜନ କରାଯିବ । ଏହାର ଉତ୍ତରରେ ଜିନ୍ନା ଯୁକ୍ତିର ସ୍ୱର ବଦଳାଇ କହୁଥିଲେ, ପଞ୍ଜାବ ଓ ବଙ୍ଗଳା ପରି ପ୍ରଦେଶ ବିଭାଜିତ ହେଲେ, ସେମାନଙ୍କର ଅର୍ଥନୈତିକ ଭାରସାମ୍ୟ ବିନଷ୍ଟ ହେବ । ଏଣୁ ସେ ଯେପରି ଚାହୁଁଛନ୍ତି, ଅର୍ଥାତ୍ ଛଅଟି ପ୍ରଦେଶକୁ ନେଇ ଏକ ସମ୍ପୂର୍ଣ୍ଣ ପାକିସ୍ଥାନ ଗଠନ କରାଯାଉ । ମାଉଣ୍ଟ ବ୍ୟାଟେନ୍ ବିଚାରିଲେ, ତାଙ୍କ ସହିତ ଅଧିକ ଆଲୋଚନା ନିରର୍ଥକ ।

ବିଭିନ୍ନ ଦଳର ନେତାମାନଙ୍କ ସହ ଆଲୋଚନା ପରେ ମାଉଣ୍ଟ ବ୍ୟାଟେନ୍ ଅନୁଭବ କରିଥିଲେ ଯେ, କଂଗ୍ରେସ ଭାରତର ସର୍ବବୃହତ୍ ରାଜନୈତିକ ଦଳ । କଂଗ୍ରେସ ନେତାମାନେ ବିଶେଷତଃ 'ସଭାପତି' ଜୱାହରଲାଲ ନେହୁରୁ ଅତି ବିଜ୍ଞ ଓ ପ୍ରଭାବଶାଳୀ ରାଜନୀତିଜ୍ଞ । ଏଣୁ ଜୱାହରଲାଲଙ୍କ ସମର୍ଥନ ବିନା କୌଣସି ଯୋଜନା କାର୍ଯ୍ୟକାରୀ ହେବା ସମ୍ଭବ ନୁହେଁ । ଅବଶ୍ୟ ସେ ତାଙ୍କୁ ଜଣେ ଦକ୍ଷ ପ୍ରତିଭାବାନ୍ ଦେଶପ୍ରେମୀ ଭାବରେ ପୂର୍ବରୁ ଜାଣିଥିଲେ ଓ ତାଙ୍କ ପ୍ରତି ମାଉଣ୍ଟ ବ୍ୟାଟେନ୍‌ଙ୍କର ଅସୀମ ଶ୍ରଦ୍ଧା ଓ ସମ୍ମାନ ଥିଲା । କିନ୍ତୁ ଜୱାହରଲାଲଙ୍କ ଦୋଷ ଓ ଦୁର୍ବଳତା ସମ୍ପର୍କରେ ସେ ଅଜ୍ଞ ନଥିଲେ । ସେ ଯେ ଟିକି ଟିକି କଥାରେ ହଠାତ୍ ରାଗିଯାଆନ୍ତି ଓ ଇସ୍ତଫା ଧମକ ଦିଅନ୍ତି, ଏ କଥା ତାଙ୍କୁ ଜଣାଥିଲା । ସେଥିପାଇଁ ନେହୁରୁଙ୍କ ସହିତ ମାଉଣ୍ଟ ବ୍ୟାଟେନ୍ ଜଗିରଖି ଅତି ସଂଭ୍ରମତାର ସହ ଆଲୋଚନା କରୁଥିଲେ । ଗାନ୍ଧିଜୀଙ୍କୁ ମାଉଣ୍ଟ ବ୍ୟାଟେନ୍ ଯେପରି ଭକ୍ତିପୂର୍ଣ୍ଣ ବ୍ୟବହାର ଏବଂ ଆଦର ଓ ସମ୍ମାନ ଦେଖାଉଥିଲେ, ତାହା ଥିଲା ଅକଳ୍ପନୀୟ । ଅନ୍ତତଃ ଉଇଲିଂଡନ୍ ଓ ଲିଂନ୍‌ଲିଥ୍‌ଗୋଙ୍କଠାରୁ ତାହା ଥିଲା ସମ୍ପୂର୍ଣ୍ଣ ଭିନ୍ନ ।

ମାଉଣ୍ଟ ବ୍ୟାଟେନ୍ ଆଶଙ୍କା କରୁଥିଲେ, ଯେକୌଣସି ସମୟରେ ଗାନ୍ଧିଜୀ ତାଙ୍କ ଯୋଜନାରୁ କଂଗ୍ରେସର ସମର୍ଥନ ପ୍ରତ୍ୟାହାର କରି ନେଇପାରନ୍ତି; ପୁଣିଥରେ ଆମରଣ ଅନଶନ ଆରମ୍ଭ କରିଦେଇ ପାରନ୍ତି ବା ସରକାରଙ୍କ ବିରୋଧରେ ବିକ୍ଷୋଭ ଆରମ୍ଭ କରି ଦେଇପାରନ୍ତି । ସେଥିପାଇଁ ଗାନ୍ଧିଜୀଙ୍କ ସହିତ ସେ ଅତି ନମ୍ରତାର ସହ କଥା କହୁଥିଲେ ଓ ତାଙ୍କୁ ସମ୍ମାନ ଦେଖାଉଥିଲେ । ମାଉଣ୍ଟ ବ୍ୟାଟେନଙ୍କର ମଧୁର କଥାରେ ଗାନ୍ଧିଜୀ ଥିଲେ ମୁଗ୍ଧ । ଅବଶ୍ୟ ଗାନ୍ଧିଜୀ ଏହି ସମୟରେ ସାମ୍ପ୍ରଦାୟିକ ଦଙ୍ଗାହଙ୍ଗାମା ହେତୁ ପୂର୍ବବଙ୍ଗର ନୂଆଖାଲି ଓ ବିହାରରେ ଅହିଂସାର ବାର୍ତ୍ତା ଧରି ଘୂରିବୁଲି ଶାନ୍ତି ପ୍ରକ୍ରିୟା ଫେରାଇ ଆଣିବାକୁ ଉଦ୍ୟମ କରୁଥିଲେ ଏବଂ ଭାରତର ଭବିଷ୍ୟତ ସମ୍ପର୍କରେ ନିଷ୍ପତ୍ତିର ଦାୟିତ୍ୱ ନେହୁରୁ ଓ ପଟେଲଙ୍କ ହାତରେ ନ୍ୟସ୍ତ କରି ଦେଇଥିଲେ । ଦିଲ୍ଲୀ ଆଲୋଚନାରେ ମଗ୍ନ ନରହି ଗାନ୍ଧିଜୀ ଦଙ୍ଗାଗ୍ରସ୍ତ ବିହାରକୁ ଫେରିଯାଇଥିଲେ ।

ପଞ୍ଜାବ ଓ ବଙ୍ଗଳାର ବିଭାଜନ ଉପରେ ପରିଗଠିତ ବିଖଣ୍ଡିତ ପାକିସ୍ଥାନ ସମ୍ପର୍କରେ ମାଉଣ୍ଟ ବ୍ୟାଟେନ୍ ସବୁ ଭାରତୀୟ ନେତାଙ୍କ ସହିତ ପୁଣିଥରେ ଆଲୋଚନା କଲେ । ଜିନ୍ନା ଅବଶ୍ୟ ଏହାର ବିରୋଧ କରୁଥିଲେ । କିନ୍ତୁ ମାଉଣ୍ଟ ବ୍ୟାଟେନ୍ ଯେତେବେଳେ ଏହି ପ୍ରସ୍ତାବର ଭିତ୍ତିଭୂମି ସମ୍ପର୍କରେ ଯୁକ୍ତି ବଖାଣିଲେ, ଜିନ୍ନା ପରୋକ୍ଷରେ କହିଲେ "ମୋର କଳ୍ପିତ ପାକିସ୍ଥାନ ଯଦି ମୋତେ ନଦିଆଯାଏ,

ତା'ହେଲେ ଯାହା ଦିଆଯିବ, ମୁଁ ଗ୍ରହଣ କରିବାକୁ ରାଜି ଅଛି ।" ଜୱାହରଲାଲ ନେହରୁ ମାଉଣ୍ଟ ବ୍ୟାଟେନଙ୍କୁ ଲିଖିତ ଏକ ପତ୍ରରେ ଜଣାଇଲେ, ଆମ୍ ନିୟନ୍ତ୍ରଣ ଅଧିକାର ଉପରେ ପର୍ଯ୍ୟବସିତ, ନିର୍ଦ୍ଦିଷ୍ଟ ଅଞ୍ଚଳକୁ ନେଇ ଗଠିତ ଏହି ଯୋଜନାକୁ କଂଗ୍ରେସ କାର୍ଯ୍ୟକାରୀ ସମିତି ଗ୍ରହଣ କରିବେ । ଏହାପରେ ଭାଇସରାୟ ସ୍ଥିର କଲେ ଯେ, ଜନସଂଖ୍ୟା ଦୃଷ୍ଟିରୁ ପଞ୍ଜାବ ଓ ବଙ୍ଗଳା ବିଭାଜିତ ହେବ ଓ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ଆସାମର ସିଲହଟ୍ ଜିଲ୍ଲାର ଭବିଷ୍ୟତ ନିର୍ବାଚନ ଜରିଆରେ ସ୍ଥିରୀକୃତ ହେବ । ନେହରୁ ପରାମର୍ଶ ଦେଲେ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ଆସାମର ସିଲହଟ୍ ଜିଲ୍ଲାର ଭବିଷ୍ୟତ ଏକ ପ୍ଲେବିସାଇଟ୍ ବା ଗଣଭୋଟ୍ ଜରିଆରେ ନିର୍ଣ୍ଣୟ କରାଯାଇପାରେ, ଏଥିପାଇଁ ନିର୍ବାଚନର ଆବଶ୍ୟକତା ନାହିଁ । ଭାଇସରାୟ ତାହା ଗ୍ରହଣ କରିନେଲେ ।

ସମସ୍ତ ପ୍ରାଥମିକ ଆଲୋଚନା ସମାପ୍ତ ହେବାପରେ, ପଞ୍ଜାବ ଓ ବଙ୍ଗଳାର ବିଭାଜନ ଭିତ୍ତିରେ ଏକ ଚିଠା ଯୋଜନା ପ୍ରସ୍ତୁତ କରାଗଲା । ସେହି ଚିଠା ଧରି ଜେନେରାଲ ଇସମେ ବ୍ରିଟିଶ ସରକାରଙ୍କ ସମ୍ମତି ପାଇଁ ଲଣ୍ଡନ ଯାତ୍ରା କଲେ । ଭାରତୀୟ ନେତାମାନଙ୍କ ସହିତ ଆଲୋଚନା ମଇ ୧୭ ତାରିଖକୁ ମୁଲତବୀ ରହିଲା ।

ଏହି ଅବସରରେ ଦିଲ୍ଲୀରେ ପ୍ରବଳ ଗ୍ରୀଷ୍ମ ପ୍ରବାହ ହେତୁ ମାଉଣ୍ଟ ବ୍ୟାଟେନ ସପରିବାର ସିମ୍ଲା ଯାତ୍ରା କଲେ । ନିଜର ବ୍ୟକ୍ତିଗତ ଅତିଥି ରୂପେ କିଛିଦିନ ସିମଳାରେ ବିଶ୍ରାମ ନେବା ପାଇଁ ସେ ଜୱାହରଲାଲ, କନ୍ୟା ଇନ୍ଦିରା ଗାନ୍ଧି ଓ ନେହରୁଙ୍କ ବ୍ୟକ୍ତିଗତ ବନ୍ଧୁ ବିଲାତର ଇଣ୍ଡିଆ ଲିଗ୍ ସଭାପତି ଭି.କେ. କୃଷ୍ଣମେନନ୍‌ଙ୍କୁ ମଧ୍ୟ ଆମନ୍ତ୍ରଣ କରିଥିଲେ । ମଇ ଆଠ ତାରିଖରେ ସେମାନେ ଭାଇସରାୟଙ୍କ ସିମଳା ଲଜ୍‌ରେ ଅତିଥି ହେଲେ । ସିମଳାରେ ଦୁଇ-ତିନିଦିନ ରହିବା ପରେ ଏପରି ଗୋଟିଏ ଘଟଣା ଘଟିଲା, ଯାହାକି ଭାରତର ଭାଗ୍ୟ ପରିବର୍ତ୍ତନର ଦ୍ୱାର ଉନ୍ମୁକ୍ତ କରିଦେଲା ।

ଜେନେରାଲ ଇସ୍‌ମେ ମାଉଣ୍ଟ ବ୍ୟାଟେନଙ୍କ ଯେଉଁ ଚିଠା ଯୋଜନା ନେଇ ଲଣ୍ଡନ ଯାଇଥିଲେ, ତାହାଥିଲା ଏକ ସମ୍ପୂର୍ଣ୍ଣ ଗୁପ୍ତ ଦଲିଲ । ଏଥିରେ ବ୍ୟବସ୍ଥା ଥିଲା ଯେ ଯଦି ଏକ ମିଳିତ କେନ୍ଦ୍ର ସରକାର ପ୍ରତିଷ୍ଠା ସମ୍ଭବ ନହୁଏ, ତାହାହେଲେ ପ୍ରତି ପ୍ରଦେଶକୁ ଓ ଦେଶୀୟ ରାଜ୍ୟମାନଙ୍କୁ ଏକ ସମୟରେ କ୍ଷମତା ହସ୍ତାନ୍ତର କରି ବ୍ରିଟିଶ ସରକାର ଭାରତରୁ ବିଦାୟ ନେବେ । ଏଣେ ସିମଳାରେ ମଇ ଦଶ ତାରିଖ ରାତ୍ରିଭୋଜନ ପରେ ଇଂରେଜ ପରମ୍ପରା ଅନୁଯାୟୀ ମାଉଣ୍ଟ ବ୍ୟାଟେନ୍ ଓ

ଜଓ୍ୱାହରଲାଲ ଭାଇସରାୟଙ୍କ ଅଧ୍ୟୟନ କୋଠରିରେ ବସି ଆଳାପ ଆଲୋଚନା କରୁଥିଲେ । ମାଉଣ୍ଟ ବ୍ୟାଟେନଙ୍କ ମନରେ କି ଖିଆଲ ଉଠିଲା କେଜାଣି ସେ ଏ ବିଷୟଟି ଉତ୍‌ଥାପନ କରି ନୂତନ ଯୋଜନା ସମ୍ବଳିତ ଫାଇଲ୍‌ଟି ତାଙ୍କୁ ପଢ଼ିବାକୁ ଦେଲେ । ସେଦିନ ରାତିରେ ଜଓ୍ୱାହରଲାଲ ନିଜ ଶୟନ କକ୍ଷରେ ଫାଇଲଟି ପାଠ କରି ସ୍ତମ୍ଭୀଭୂତ ହୋଇଗଲେ । ରାତି ଦୁଇଟା ସମୟରେ ସେ ପାର୍ଶ୍ୱ କୋଠରିରେ ରହୁଥିବା କୃଷ୍ଣମେନନଙ୍କୁ ନିଦରୁ ଉଠାଇ ଫାଇଲଟି ପଢ଼ିବାକୁ ଦେଲେ । ଉଭୟ ଆତଙ୍କିତ ହେଲେ ଯେ, ଭାରତକୁ ଚିରଦିନ ପାଇଁ 'ବଲ୍‌କାନାଇଜ୍'ବା ଖଣ୍ଡବିଖଣ୍ଡିତ କରିବାର ଯୋଜନା କରାଯାଇଛି ।

ପରଦିନ ସକାଳୁ ଉଠି ଜଓ୍ୱାହରଲାଲ ଖଣ୍ଡିଏ କ୍ଷୁଦ୍ର ଗୋପନୀୟ ପତ୍ର ମାଉଣ୍ଟ ବ୍ୟାଟେନଙ୍କୁ ପଠାଇଲେ । ଏ ଚିଠିରେ ଯେ ଏପରି ଗୋଟିଏ କ୍ଷୁଦ୍ର ବୋମା ଭରି ରହିଛି ତାହା ଭାଇସରାୟଙ୍କୁ ଜଣାନଥିଲା । ସେଥିରେ ଲେଖାଥିଲା –

"ନଥି ସମ୍ବଳିତ ଯୋଜନା ମୋ ମନରେ ମର୍ମନ୍ତୁଦ ପ୍ରତିକ୍ରିୟା ସୃଷ୍ଟି କରିଛି । ଏପର୍ଯ୍ୟନ୍ତ ଆମ୍ଭେମାନେ ଯେଉଁ ଧାରାରେ ଚିନ୍ତା କରି ଆସୁଛୁ ଓ ଯେଉଁ ସବୁ ପ୍ରସ୍ତାବ ବିଚାର କରିଛୁ, ମହାମାନ୍ୟ ସମ୍ରାଟଙ୍କ ସରକାରର ଏ ଯୋଜନା ତା'ଠାରୁ ସମ୍ପୂର୍ଣ୍ଣ ଭିନ୍ନ ଓ ଅଶୁଭ-ସୂଚକ । ପ୍ରସ୍ତାବଟି ଯେଉଁ ବିଖଣ୍ଡିତ ଭାରତ, ଅନ୍ତର୍ନିହିତ ସଂଘର୍ଷ ଓ ବିଶୃଙ୍ଖଳାର ଚିତ୍ର ଉପସ୍ଥାପିତ କରୁଛି, ମୁଁ ସେଥିରେ ଆତଙ୍କିତ । ଏ ପ୍ରସ୍ତାବରେ ମୁଁ ଏତେ ବିଚଳିତ ଯେ ଏ ସମ୍ପର୍କରେ ବିସ୍ତୃତ ମତାମତ ପ୍ରକାଶ କରିପାରୁନାହିଁ । କିନ୍ତୁ ଭାରତବାସୀ ଯେ ଏ ଯୋଜନାରେ ଅତ୍ୟନ୍ତ କ୍ଷୁବ୍ଧ ହେବେ ଓ ଏହାକୁ ଅଗ୍ରାହ୍ୟ କରିବେ, ଏ ବିଷୟରେ ମୁଁ ନିଃସନ୍ଦେହ ।"

ପରେ ସେ ଭାଇସରାୟଙ୍କୁ ଏକ ସୁଦୀର୍ଘ ପତ୍ର ଲେଖି ଅଭିଯୋଗ କରିଥିଲେ ଯେ ଭାରତକୁ ପ୍ରଦେଶ ଭିତ୍ତିରେ ଖଣ୍ଡବିଖଣ୍ଡିତ କରି କ୍ଷମତା ହସ୍ତାନ୍ତର ଯୋଜନା ଦ୍ୱାରା ବ୍ରିଟିଶ ସରକାର ତାଙ୍କର ସମସ୍ତ ପୂର୍ବ ପ୍ରତିଶ୍ରୁତି ଭଙ୍ଗ କରିଛନ୍ତି । ଏଣିକି ଗଣ-ପରିଷଦ ଭାରତ ପାଇଁ ଏକ ନୂତନ ସମ୍ବିଧାନ ରଚନା କରିବାର ଅଙ୍ଗୀକାର ବିଫଳ ହେବ । ଏହାଦ୍ୱାରା ପ୍ରଦେଶମାନଙ୍କ ମଧ୍ୟରେ ବିବାଦର ସୂତ୍ରପାତ ହେବ । ଏକ ସୁଦୃଢ଼ କେନ୍ଦ୍ର ସରକାର ଅଭାବରେ ନୂତନ ଭାରତ ଗଠନ କରିବାର ସମସ୍ତ କଳ୍ପନା ଜଳ୍ପନା ବ୍ୟର୍ଥ ହେବ ।

ମାଉଣ୍ଟ ବ୍ୟାଟେନ୍ ପତ୍ରଟି ପାଇ ବିଚଳିତ ହୋଇପଡ଼ିଲେ । ନେହୁରୁ କାହିଁକି ଏତେ ବିବ୍ରତ, ତାହାର କାରଣ ସେ ତାଙ୍କ ସହିତ ବ୍ୟକ୍ତିଗତ ଆଲୋଚନା କାଳରେ ଜାଣିବାକୁ ପାଇଲେ । କେନ୍ଦ୍ରରେ ଏକ ମିଳିତ ସରକାର ଗଠନ କରିବା ସମ୍ଭବ ନହେଲେ, ପ୍ରଦେଶମାନଙ୍କୁ ଓ ଦେଶୀୟ ରାଜ୍ୟମାନଙ୍କୁ କ୍ଷମତା ହସ୍ତାନ୍ତର କରିବାର ଯେଉଁ ବ୍ୟବସ୍ଥା କରାଯାଇଛି ଏବଂ ପ୍ରଦେଶମାନେ ସ୍ୱଇଚ୍ଛାରେ ନିଜକୁ ସ୍ୱାଧୀନ ଘୋଷଣା କରିବାର ଯେଉଁ ବ୍ୟବସ୍ଥା ଏହି ଯୋଜନାରେ ରହିଛି, ତାହାହିଁ ନେହୁରୁଙ୍କର ଏପ୍ରକାର ପ୍ରତିକ୍ରିୟାର କାରଣ । ନେହୁରୁ ଯଦି ବିରୋଧ କରନ୍ତି ତା'ହେଲେ କ୍ଷମତା ହସ୍ତାନ୍ତରର ଯେଉଁ ଦାୟିତ୍ୱ ତାଙ୍କୁ ଅର୍ପଣ କରାଯାଇଛି, ତାହା ବ୍ୟର୍ଥ ହେବ । ପ୍ରୌଢ଼ି ଓ ଆମ୍ଭବଡ଼ିମାର ଆବରଣ ଖୋଲି ସେ ବୁଝିପାରିଲେ, ପଞ୍ଜାବ ଓ ବଙ୍ଗଳାକୁ ବିଭାଜନ କରି ମୁସଲିମ୍‌ବହୁଳ ଅଞ୍ଚଳ, ସିନ୍ଧୁ ଓ ସୀମାନ୍ତ ପ୍ରଦେଶକୁ ନେଇ (ଗଣଭୋଟ୍‌ର ଫଳାଫଳ ସାପେକ୍ଷ) ଯଦି ପାକିସ୍ଥାନ ଗଠନ କରାଯାଏ ଓ ଭାରତର ବାକି ସବୁ ଅଞ୍ଚଳକୁ ନେଇ ଭାରତ ସରକାର ଗଠିତ ହୁଏ ଏବଂ ସମ୍ପୃକ୍ତ ପକ୍ଷମାନେ ଏଥିରେ ମୋଟାମୋଟି ସମ୍ମତ ଅଛନ୍ତି, ତା'ହେଲେ ପ୍ରଦେଶ ବା ଦେଶୀୟ ରାଜ୍ୟଗୁଡ଼ିକୁ କ୍ଷମତା ହସ୍ତାନ୍ତର କରିବାର ଆବଶ୍ୟକତା ଉଠିବ ନାହିଁ । ସେ ଅବିଳମ୍ୱେ ଲଣ୍ଡନକୁ ପ୍ରେରିତ ଯୋଜନାର ପରିବର୍ତ୍ତନ କରିବାକୁ ନିଷ୍ପତ୍ତି ନେଲେ ଏବଂ ଭବିଷ୍ୟତର ସମ୍ବିଧାନ ରଚନା କରିବା ପାଇଁ ନିର୍ବାଚିତ ଗଣ ପରିଷଦ ଯେଉଁ ଉଦ୍ୟମ ଆରମ୍ଭ କରିଛନ୍ତି, ତହିଁରେ ପ୍ରତିବନ୍ଧକ ରହିବା ଉଚିତ ନୁହେଁ ବୋଲି ମନସ୍ଥ କଲେ ।

ମଇ ୧୭ ତାରିଖକୁ ଧାର୍ଯ୍ୟ କରାଯାଇଥିବା ରାଜନୈତିକ ଦଳମାନଙ୍କ ସହ ପରବର୍ତ୍ତୀ ଆଲୋଚନା ମୁଲତବୀ ରହିଲା । ଦୁଇଦିନ ମଧ୍ୟରେ ମାଉଣ୍ଟ ବ୍ୟାଟେନ୍‌ଙ୍କ ନିର୍ଦ୍ଦେଶ ଅନୁଯାୟୀ ପୂର୍ବ ଯୋଜନାକୁ ପରିବର୍ତ୍ତିତ କରି ସେଥିରୁ ପ୍ରଦେଶ ଓ ଦେଶୀୟ ରାଜ୍ୟମାନଙ୍କୁ କ୍ଷମତା ହସ୍ତାନ୍ତର କରିବାର ସର୍ତ୍ତଗୁଡ଼ିକୁ ବାଦ୍ ଦିଆଗଲା । ନେହୁରୁଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏଥିରେ ସ୍ପଷ୍ଟ ଉଲ୍ଲେଖ ରହିଲା ଯେ ଗଣ ପରିଷଦ ଏ ମଧ୍ୟରେ ତା'ର କାର୍ଯ୍ୟ ଚାଲୁ ରଖିପାରିବେ । ପରିମାର୍ଜିତ ଯୋଜନା ସଂକ୍ରାନ୍ତୀୟ ସମସ୍ତ କାଗଜାତ୍ କ୍ୟାବିନେଟ୍‌କୁ ପଠାଇବା ପରେ, ମାଉଣ୍ଟ ବ୍ୟାଟେନ୍ ନିଜେ ଲଣ୍ଡନ ଯିବା ପାଇଁ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କଠାରୁ ଆମନ୍ତ୍ରଣ ଆସିଲା । ତଦନୁଯାୟୀ ସେ ଲଣ୍ଡନ ଯାତ୍ରା କଲେ । କିନ୍ତୁ ଯିବା ପୂର୍ବରୁ ବଙ୍ଗଳା ଓ ପଞ୍ଜାବର ବିଭାଜନ ଭିତ୍ତିରେ ପରିମାର୍ଜିତ ଯୋଜନାର ନକଲ ନେହୁରୁ, ଜିନ୍ନା ଓ ସର୍ଦ୍ଦାର ବଳଦେବ ସିଂହଙ୍କୁ ଦେଖାଇ ସେମାନଙ୍କର ସମ୍ମତି ଗ୍ରହଣ କରିଥିଲେ ।

ଲଣ୍ଡନରେ ରହିବା କାଳରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଓ ଅନ୍ୟ କ୍ୟାବିନେଟ୍ ମନ୍ତ୍ରୀମାନଙ୍କ ସହିତ ଭାଇସରାୟଙ୍କର ଦୀର୍ଘ ଆଲୋଚନା ହେଲା ଏବଂ ବ୍ରିଟିଶ ସରକାର କେତେକ ଗୌଣ ପରିବର୍ତ୍ତନ ସହ ଏହି ଯୋଜନାକୁ ଗ୍ରହଣ କଲେ । ଏକଥା ମଧ୍ୟ ସ୍ଥିର ହେଲା "ଡୋମିନିଅନ ଷ୍ଟାଟସ୍" ଭିତ୍ତିରେ ଏକ ବା ଦୁଇ ରାଜ୍ୟକୁ କ୍ଷମତା ହସ୍ତାନ୍ତର କରିବା ପାଇଁ ପାର୍ଲାମେଣ୍ଟରେ ଆଇନ ପ୍ରଣୟନ କରାଯିବ । ମାଉଣ୍ଟ ବ୍ୟାଟେନ୍ ପ୍ରସ୍ତାବ ଦେଲେ, ଯଦି ସମ୍ଭବ ହୁଏ, ତା'ହେଲେ ଜୁନ୍ ୧୯୪୮ ପୂର୍ବରୁ ମଧ୍ୟ କ୍ଷମତା ହସ୍ତାନ୍ତର କରାଯାଇପାରେ । ସେ ଆଶଙ୍କା କରୁଥିଲେ, ଥରେ ବିଭାଜନର ନିଷ୍ପତ୍ତି ଗୃହୀତ ହେଲେ, ତା'ପରେ କଂଗ୍ରେସ ଓ ଲିଗ୍ ଉଭୟଙ୍କୁ ଏକତ୍ର ରଖି ବର୍ଷାଧିକ କାଳ ମଧ୍ୟବର୍ତ୍ତୀକାଳୀନ ସରକାର ଚଳାଇବା ସମ୍ଭବ ହେବନାହିଁ । କେତେବେଳେ କେଉଁଠି ବିସ୍ଫୋରଣ ଘଟି ସମସ୍ତ ଯୋଜନା ପଣ୍ଡ ହୋଇଯାଇପାରେ । ବ୍ରିଟିଶ କ୍ୟାବିନେଟ୍ ମାଉଣ୍ଟ ବ୍ୟାଟେନଙ୍କ ପ୍ରସ୍ତାବରେ ସମ୍ମତି ଦେଲେ । ମଇ ମାସ ଶେଷ ଆଡ଼କୁ ଭାଇସରାୟ ଭାରତକୁ ଫେରିଆସିଲେ ।

ଅବିଳମ୍ବେ ରାଜନୈତିକ ଦଳର ନେତାମାନଙ୍କୁ ଆଲୋଚନା ପାଇଁ ଡକାହେଲା ଓ ଏହି ଆଲୋଚନା ହେଲା ଜୁନ୍ ୨ ତାରିଖରେ । କଂଗ୍ରେସ ଦଳରୁ ତିନିଜଣ, ମୁସଲିମ୍ ଲିଗ୍‌ରୁ ତିନିଜଣ ଓ ଶିଖ୍‌ମାନଙ୍କ ପକ୍ଷରୁ ବଳଦେବ ସିଂହ ଏହି ଆଲୋଚନାରେ ଯୋଗ ଦେଇଥିଲେ । ପ୍ରଥମ ଦିନର ଆଲୋଚନା ପରେ, ପରଦିନ ସକାଳେ ଭାଇସରାୟ ଏ ମିଳିତ ବୈଠକକୁ ଜଣାଇଲେ ଯେ ଏ ପ୍ରସ୍ତାବଟିକୁ ଗ୍ରହଣ କରିବା ପାଇଁ ସେ କଂଗ୍ରେସ ଓ ଶିଖ୍ ପ୍ରତିନିଧିମାନଙ୍କଠାରୁ ଲିଖିତ ସମ୍ମତି ପାଇଛନ୍ତି ଏବଂ ଜିନ୍ନା ତାଙ୍କର ମୌଖିକ ସମ୍ମତି ଦେଇଛନ୍ତି । ତିନି ତାରିଖ ଦିନ ସଂଧ୍ୟାରେ ମାଉଣ୍ଟ ବ୍ୟାଟେନ୍ ଦେଶ ବିଭାଜନର ନିଷ୍ପତ୍ତି ଆକାଶବାଣୀ ମାଧ୍ୟମରେ ଘୋଷଣା କଲେ ଏବଂ ପ୍ରଧାନମନ୍ତ୍ରୀ ଅଟ୍‌ଲୀ ମଧ୍ୟ ପାର୍ଲାମେଣ୍ଟରେ ଅନୁରୂପ ଘୋଷଣା କଲେ । ପରେ ପରେ ଜୱାହରଲାଲ ନେହୁରୁ, ମହମ୍ମଦ ଅଲ୍ଲୀ ଜିନ୍ନା ଓ ବଳଦେବ ସିଂହ ଏହାକୁ ଗ୍ରହଣ କରୁଛନ୍ତି ବୋଲି ଆକାଶବାଣୀରେ ନିଜନିଜର ବିବୃତି ପାଠ କଲେ । ସମସ୍ତଙ୍କର ସମ୍ମତି ଗ୍ରହଣ କରିବା ପରେ ମାଉଣ୍ଟ ବ୍ୟାଟେନ୍ ତାଙ୍କର ଅନ୍ୟ ଏକ ନିଷ୍ପତ୍ତି ଦେଶବାସୀଙ୍କ ଆଗରେ ଉପସ୍ଥାପିତ କଲେ ଏବଂ ତାହା ହେଲା ଯେ, ଜୁନ୍ ୧୯୪୮ ମସିହା ପର୍ଯ୍ୟନ୍ତ ଅପେକ୍ଷା ନକରି ଚଳିତ ବର୍ଷ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ବ୍ରିଟେନ୍ ଭାରତକୁ କ୍ଷମତା ହସ୍ତାନ୍ତର କରିବ । ଯେଉଁ କ୍ଷିପ୍ରଗତିରେ ମାଉଣ୍ଟ ବ୍ୟାଟେନ୍ ଆଗେଇ ଚାଲିଥିଲେ, ତାହା ସମସ୍ତଙ୍କୁ ଆଚମ୍ବିତ କରିଥିଲା ।

ଜୁନ୍ ୪ ତାରିଖ ଉପରବେଳା ଭାଇସରାୟ ଗାନ୍ଧିଜୀଙ୍କୁ ସାକ୍ଷାତ କଲେ ଓ ପରିସ୍ଥିତି ସମ୍ପର୍କରେ ତାଙ୍କ ସହିତ ଘଣ୍ଟାଏ କାଳ ଆଲୋଚନା କଲେ । ସେଦିନ ସଂଧ୍ୟାରେ ଗାନ୍ଧିଜୀ ତାଙ୍କ ପ୍ରାର୍ଥନା ସଭାରେ କହିଲେ, ସେ ପରାଜୟ ସ୍ୱୀକାର କରୁଛନ୍ତି । ଦେଶ ବିଭାଜନ ନିଷ୍ପତ୍ତିକୁ ମାନି ନେବାକୁ ହେବ । କିନ୍ତୁ ଏଥିପାଇଁ ମାଉଣ୍ଟ ବ୍ୟାଟେନଙ୍କୁ ଦୋଷାରୋପ କରିବା ଉଚିତ ହେବନାହିଁ । ଏହା ମୁସଲିମ୍ ଲିଗ୍ ଓ କଂଗ୍ରେସର ମିଳିତ ନିଷ୍ପତ୍ତି ।

ଏ ମଧ୍ୟରେ ମୁସଲିମ୍ ଲିଗ୍ କାଉନସିଲ ବୈଠକରେ ପଞ୍ଜାବ ଓ ବଙ୍ଗଳାର ବିଭାଜନ ଭିତ୍ତିରେ ପାକିସ୍ଥାନ ଗଠନ ନିଷ୍ପତ୍ତିକୁ ସ୍ୱାଗତ କରାଯାଇଥିଲା । ଜୁନ୍ ୧୪ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ଆହୂତ ହେଲା । ସେହି ସମୟରେ ଗୁଜବ ପ୍ରଚାର ହେଉଥାଏ ଯେ ସର୍ଦ୍ଦାର ପଟେଲ ଓ ଜଓ୍ୱାହରଲାଲଙ୍କ ସହ ଗାନ୍ଧିଙ୍କର ପ୍ରବଳ ମତଭେଦ ଓ ସେ କଂଗ୍ରେସ ଅନୁଷ୍ଠାନରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇଯିବେ । କିନ୍ତୁ ସବୁ ଗୁଜବ ମିଥ୍ୟା ପ୍ରମାଣିତ ହେଲା ଓ ଗାନ୍ଧିଜୀ ଏ ଅଧିବେଶନରେ ଯୋଗ ଦେଲେ । ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ଦେଶ ବିଭାଜନ ପ୍ରସ୍ତାବକୁ ଗ୍ରହଣ କରିବା ପାଇଁ ପ୍ରସ୍ତାବ ଆଗତ କଲେ ଓ ମୌଲାନା ଆଜାଦ୍ ତାହାକୁ ସମର୍ଥନ କରିଥିଲେ । ସର୍ଦ୍ଦାର ପଟେଲ୍, ଯେ କି ମାଉଣ୍ଟ ବ୍ୟାଟେନ୍‌ଙ୍କର ପୂର୍ବର 'ବଲ୍‌କାନାଇଜେସନ୍' ଯୋଜନା ବିଷୟରେ ସମ୍ପୂର୍ଣ୍ଣ ଅବଗତ ଥିଲେ, ସେ ଘୋଷଣା କଲେ ଯେ ପାକିସ୍ଥାନ ଗଠନ ପ୍ରସ୍ତାବକୁ ଗ୍ରହଣ କରିନଥିଲେ ଭାରତ ଖଣ୍ଡବିଖଣ୍ଡିତ ହୋଇଯାଇ ଥାଆନ୍ତା । ଜଓ୍ୱାହରଲାଲ କହିଥିଲେ, ଦେଶରେ ସାମ୍ପ୍ରଦାୟିକ ହିଂସାର ଯେଉଁ ପ୍ରବଳ ସ୍ରୋତ ପ୍ରବାହିତ, ସେ ଦୃଷ୍ଟିରୁ ଏ ପ୍ରସ୍ତାବକୁ ଗ୍ରହଣ କରିବା ବ୍ୟତୀତ ଅନ୍ୟ ଗତି ନାହିଁ । କଂଗ୍ରେସ ସଭାପତି କୃପାଳିନୀ ମଧ୍ୟ ସେହି ମର୍ମରେ ଭାଷଣ ଦେଇଥିଲେ । ମହାତ୍ମା ଗାନ୍ଧି ତାଙ୍କ ଅଭିଭାଷଣରେ କହିଥିଲେ, ସେ ବ୍ୟକ୍ତିଗତ ଭାବରେ ପାକିସ୍ଥାନ ଗଠନର ବିରୋଧୀ । କିନ୍ତୁ ଦେଶ ଯେଉଁ ପରିସ୍ଥିତିର ସମ୍ମୁଖୀନ, ସେ ଦୃଷ୍ଟିରୁ କାର୍ଯ୍ୟକାରୀ କମିଟିର ସୁପାରିଶକୁ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟମାନେ ଗ୍ରହଣ କରିନେବା ଉଚିତ । ଗାନ୍ଧିଜୀଙ୍କ ଭାଷଣ ପରେ ପ୍ରସ୍ତାବଟି ଗୃହୀତ ହୋଇଥିଲା ।

ଏଣେ ପଞ୍ଜାବରେ ଶିଖ୍ ନେତା ମାଷ୍ଟର ତାରା ସିଂହ ଲାହୋର ରାଜପଥରେ ଖଡ୍ଗ ଉତ୍ତୋଳନ କରି ଘୋଷଣା କଲେ ଯେ ସ୍ୱତନ୍ତ୍ର ଶିଖ୍‌ରାଜ୍ୟ ପ୍ରତିଷ୍ଠା ଦୃଷ୍ଟିରୁ ପଞ୍ଜାବ ବିଭାଜିତ ହେବା ଉଚିତ । ମାଷ୍ଟର ତାରା ସିଂହଙ୍କ ପରି ବଙ୍ଗ ପ୍ରଦେଶର ହିନ୍ଦୁ ମହାସଭାର

ନେତା ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀ ହିନ୍ଦୁ- ବହୁଳ ଅଞ୍ଚଳକୁ ସ୍ୱତନ୍ତ୍ର କରିବାକୁ ଆନ୍ଦୋଳନ ଆରମ୍ଭ କଲେ । ମହମ୍ମଦ ଅଲ୍ଲୀ ଜିନ୍ନା ଦାବି କଲେ, ପ୍ରସ୍ତାବିତ ପଶ୍ଚିମ-ପାକିସ୍ଥାନ ଓ ପୂର୍ବ-ପାକିସ୍ଥାନ ମଧ୍ୟରେ ଯାତାୟାତର ସୁବିଧା ପାଇଁ ହଜାର ମାଇଲ ଦୀର୍ଘ ଏକ ସଂଯୋଗକାରୀ ଅଞ୍ଚଳ ବା କରିଡ଼ର ଛାଡ଼ି ଦିଆଯିବା ଆବଶ୍ୟକ । ବିଚ୍ଛିନ୍ନତାର ଯେ ସୂତ୍ରଧର, ତାଙ୍କ କଣ୍ଠରେ ସଂଯୋଗର ଏ ବାର୍ତ୍ତା ଅତ୍ୟନ୍ତ ଶ୍ରୁତିକଟୁ ଥିଲା । ସ୍ୱଭାବତଃ ଜୱାହରଲାଲ ଓ ଅନ୍ୟ ସମସ୍ତ ନେତୃବୃନ୍ଦ ଏହାକୁ ସମସ୍ୱରରେ ପ୍ରତ୍ୟାଖ୍ୟାନ କରିଥିଲେ ।

ପଞ୍ଜାବ ଓ ବଙ୍ଗଳାର ବିଭାଜନ ସହଜସାଧ୍ୟ ଥିଲା, କାରଣ ଜିଲ୍ଲା ଭିତ୍ତିରେ ଏହି ବିଭାଜନ ନିର୍ଦ୍ଧାରିତ ହୋଇଥିଲା ଏବଂ ଯେଉଁ ଜିଲ୍ଲାଗୁଡ଼ିକରେ ମୁସଲମାନ ସଂଖ୍ୟା ଥିଲା ଅଧିକ, ସେହି ମୁସଲମାନବହୁଳ ଜିଲ୍ଲାକୁ ପାକିସ୍ଥାନରେ ଅନ୍ତର୍ଭୁକ୍ତ କରାଗଲା । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ଅବଦୁଲ ଗଫର ଖାଁ ଓ ତାଙ୍କ ଭାଇ ଖାଁ ସାହେବ ଲାଲକୁର୍ତ୍ତା ଦଳପକ୍ଷରୁ ଦାବି କଲେ ଯେ, ଭାରତ ଓ ପାକିସ୍ଥାନ ମଧ୍ୟରୁ କେଉଁ ଦେଶ ସହିତ ସେମାନେ ମିଶିବେ, ଏଥିସହିତ ସେମାନେ ସ୍ୱାଧୀନ ରହିପାରିବେ କି ନାହିଁ, ଏ ବିଷୟରେ ମଧ୍ୟ ସେହି ଗଣଭୋଟ ଜରିଆରେ ମତାମତ ନିଆଯିବା ଉଚିତ । ଅନ୍ୟ ସବୁ ଦଳ ଏହାର ବିରୋଧ କଲେ । ତେଣୁ ଖାଁ ଭାଇମାନେ ନିଷ୍ପତ୍ତି ନେଲେ ଯେ ସେମାନେ ଗଣଭୋଟରେ ଭାଗ ନେବେନାହିଁ । ପରିଶେଷରେ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ଯେଉଁ ଗଣଭୋଟ ହେଲା, ସେଥିରେ ମାତ୍ର ଅର୍ଦ୍ଧକରୁ ସାମାନ୍ୟ ଅଧିକ ଲୋକ ପାକିସ୍ଥାନ ସପକ୍ଷରେ ଭୋଟ ଦେଇଥିଲେ । କିନ୍ତୁ ସମୁଦାୟ ଭୋଟର ସଂଖ୍ୟାର ଅର୍ଦ୍ଧାଧିକ ଲୋକ ଗଣଭୋଟକୁ ବର୍ଜନ କରିଥିଲେ । ଖାଁ ଭାଇମାନେ ଭାରତ ସପକ୍ଷରେ ପ୍ରଚାର କରିଥିଲେ ଇତିହାସ ହୁଏତ ଅନ୍ୟ ରୂପ ନେଇଥାନ୍ତା । ଗଣଭୋଟରେ ଆସାମର ସିଲହଟ୍ ଜିଲ୍ଲାରେ ପାକିସ୍ଥାନକୁ ଅଧିକ ସମର୍ଥନ ମିଳିଥିଲା, ଏଣୁ ସିଲହଟ୍‌କୁ ପାକିସ୍ଥାନରେ ଅନ୍ତର୍ଭୁକ୍ତ କରିବା ପାଇଁ ନିଷ୍ପତ୍ତି ହେଲା ।

ରାଜ୍ୟଗୁଡ଼ିକର ସୀମା ନିର୍ଦ୍ଧାରଣ ପାଇଁ ଜଣେ ଖ୍ୟାତନାମା ବ୍ରିଟିଶ ଆଇନଜୀବୀ ସାର୍ ରାଡ୍‌କ୍ଲିଫ୍‌କୁ ଆର୍ବିଟ୍ରେଟର ନିଯୁକ୍ତ କରାଗଲା ଏବଂ ତାଙ୍କର ନିଷ୍ପତ୍ତି ସମସ୍ତେ ମାନିନେଲେ । ଏ ମଧ୍ୟରେ ମାଉଣ୍ଟ ବ୍ୟାଟେନ୍ ଭାରତର କର୍ମଚାରୀ ବୃନ୍ଦ, ସୈନ୍ୟବାହିନୀ ଓ ବ୍ରିଟିଶ ଅଫିସରମାନଙ୍କର କିପରି ବିଭାଜନ କରାଯିବ, ସେଥିପାଇଁ ବିଧିବଦ୍ଧ ଉଦ୍ୟମ ଆରମ୍ଭ କରିଦେଲେ । କର୍ମଚାରୀ ଓ ସୈନ୍ୟବାହିନୀଙ୍କର ବିଭାଜନ ମୁଖ୍ୟତଃ

ସେମାନଙ୍କର ସ୍ୱଇଚ୍ଛା ଅନୁଯାୟୀ ହୋଇଥିଲା । ହିନ୍ଦୁ, ଶିଖ୍ ଓ ଗୁର୍ଖା ସୈନ୍ୟମାନେ ଭାରତରେ ରହିବେ ବୋଲି ସ୍ଥିର କଲେ ଏବଂ ଯେଉଁ ମୁସଲିମ୍ ସୈନ୍ୟ ପାକିସ୍ଥାନ ଚାଲିଯିବାକୁ ଚାହାଁନ୍ତି, ସେମାନଙ୍କୁ ମଧ୍ୟ ଆବଶ୍ୟକ ସୁବିଧା ଯୋଗାଇ ଦିଆଯାଇଥିଲା । ବ୍ରିଟିଶ ଅଫିସରମାନେ ମୁଖ୍ୟତଃ ସ୍ୱଦେଶକୁ ଫେରିଯିବା ପାଇଁ ନିଷ୍ପତ୍ତି ନେଇଥିଲେ । ମାତ୍ର ଅଳ୍ପ କେତେଜଣ ବ୍ରିଟିଶ୍ ଅଫିସର ପାକିସ୍ଥାନ ଅଧୀନରେ କାର୍ଯ୍ୟ କରିବାକୁ ସ୍ୱୀକୃତି ଦେଲେ ।

ଭାରତର ଭବିଷ୍ୟତ ସମ୍ପର୍କୀୟ ଆଲୋଚନା କ୍ଷିପ୍ରଗତିରେ ଚାଲିଥିଲାବେଳେ ଦେଶୀୟ ରାଜର ଶାସକମାନେ ନୀରବରେ ବସି ରହିଥିଲେ । ଦେଶୀୟ ରାଜ୍ୟଗୁଡ଼ିକ ଉପରେ ବ୍ରିଟିଶ ସରକାର କୌଣସି ପାରାମାଉଣ୍ଟ କ୍ଷମତା ବା ସାର୍ବଭୌମ ଅଧିକାର ପ୍ରୟୋଗ କରିବେ ନାହିଁ ବୋଲି ବ୍ରିଟିଶ ସରକାର ଘୋଷଣା କରିବା ପରେ, ଅନେକ ବଡ଼ବଡ଼ ଦେଶୀୟ ରାଜ୍ୟର ରାଜା ମହାରାଜାମାନେ ନିଜକୁ ସ୍ୱାଧୀନ ଘୋଷଣା କରିବାକୁ ତତ୍ପର ହୋଇଉଠିଲେ । ଏପରିକି ତ୍ରାଭାଙ୍କୋରର ହିନ୍ଦୁରାଜା ତାଙ୍କ ମୁଖ୍ୟ ପରାମର୍ଶଦାତା ସାର୍ ରାମସ୍ୱାମୀ ଆୟାରଙ୍କ ପରାମର୍ଶରେ ପାକିସ୍ଥାନ ପାଇଁ ଜଣେ ରାଜଦୂତ ନିଯୁକ୍ତ କରିବାକୁ ଯୋଜନା କଲେ । ଏଣେ ରାଜାମାନଙ୍କର ଅତ୍ୟାଚାର ବିରୁଦ୍ଧରେ ଗଡ଼ଜାତରେ ଜନ-ଆନ୍ଦୋଳନ ଦିନକୁଦିନ ତୀବ୍ରତର ହେଉଥିଲା । ଜୱାହରଲାଲ ସ୍ପଷ୍ଟ ଘୋଷଣା କଲେ, ସ୍ୱାଧୀନ ଭାରତ ରାଜାମାନଙ୍କର ସ୍ୱାଧୀନ ସ୍ଥିତିକୁ କେବେ ସ୍ୱୀକୃତି ଦେବନାହିଁ । ନେହୁରୁ ସରକାରଙ୍କ ପରୋକ୍ଷ ଧମକ ଓ ଚାପ ଫଳରେ ରାଜାମାନଙ୍କର ସଦ୍‌ବୁଦ୍ଧି ହେଲା । ହାଇଦ୍ରାବାଦ, ଜୁନାଗଡ଼ ଓ କାଶ୍ମୀରକୁ ବାଦ୍‌ଦେଇ ଅନ୍ୟ ସମସ୍ତ ଦେଶୀୟ ରାଜ୍ୟ ୧୫ ଅଗଷ୍ଟ ପୂର୍ବରୁ ଭାରତ ରାଷ୍ଟ୍ରରେ ଅନ୍ତର୍ଭୁକ୍ତ ହେବାକୁ ଘୋଷଣା କଲେ । ଘରୋଇ ବିଭାଗ ଦାୟିତ୍ୱରେ ଥିବା ସୁଦକ୍ଷ ଗୃହମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ଭୂମିକା ଭାରତବାସୀଙ୍କ ପାଇଁ ଚିରସ୍ମରଣୀୟ ହୋଇରହିବ । ନେହୁରୁଙ୍କ ପ୍ରରୋଚନାରେ ଭାଇସରାୟ ମାଉଣ୍ଟ ବ୍ୟାଟେନ ମଧ୍ୟ ରାଜାମାନଙ୍କୁ ଏପରି ନିଷ୍ପତ୍ତି ନେବାପାଇଁ ବିଶେଷ ଭାବରେ ପ୍ରଭାବିତ କରିଥିଲେ ।

ଜୱାହରଲାଲ୍ ଚାହୁଁଥିଲେ, ଉଭୟ ରାଷ୍ଟ୍ର ମଧ୍ୟରେ ସଦିଚ୍ଛା ଓ ସଦ୍‌ଭାବନାର ପଥ ଉନ୍ମୁକ୍ତ ରଖିବା ନିମନ୍ତେ ଗୋଟିଏ ବର୍ଷ ପାଇଁ ଲର୍ଡ଼ ମାଉଣ୍ଟ୍ ବ୍ୟାଟେନ୍ ଭାରତ ଓ ପାକିସ୍ଥାନର ପ୍ରଥମ ଗଭର୍ଣ୍ଣର ଜେନେରାଲ୍ ରହନ୍ତୁ । କିନ୍ତୁ ଜିନ୍ନା ଏ ପ୍ରସ୍ତାବର ଘୋର ବିରୋଧ କଲେ । ଅସଲ କଥା ହେଲା, ଜିନ୍ନା ଭାବୁଥିଲେ ସେ ପାକିସ୍ଥାନ ରାଷ୍ଟ୍ରର

ସ୍ରଷ୍ଟା ଏବଂ ସେ ହେବେ ତା'ର ପ୍ରଥମ ରାଷ୍ଟ୍ରପତି, ଯଦିଓ ପାକିସ୍ଥାନର ସମ୍ବିଧାନ ପ୍ରସ୍ତୁତ ହୋଇନଥିଲା ବା ଏ ସମ୍ପର୍କରେ କୌଣସି ସାମ୍ବିଧାନିକ ବ୍ୟବସ୍ଥା ନଥିଲା । ଭାରତରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର ହେବା ବାହାନାରେ ସେ ଏ ପ୍ରସ୍ତାବର ବିରୋଧ କଲେ । ପରେ ନିଷ୍ପତ୍ତି ହେଲା, ମାଉଣ୍ଟ ବ୍ୟାଟେନ୍ କେବଳ ଗୋଟିଏ ବର୍ଷ ପାଇଁ, ବ୍ରିଟିଶ୍ ସମ୍ରାଟଙ୍କର ଭାଇସ୍‌ରାୟ ଭାବରେ ନୁହେଁ, କିନ୍ତୁ ଭାରତର ଗଭର୍ଣ୍ଣର ଜେନେରାଲ୍ ଭାବରେ କାର୍ଯ୍ୟ କରିବେ ।

ଜୁଲାଇ ମାସରେ ବ୍ରିଟିଶ୍ ପାର୍ଲାମେଣ୍ଟରେ ଭାରତୀୟ ସ୍ୱାଧୀନତା ବିଲ୍ ଗୃହୀତ ହେଲା ଓ ଜୁଲାଇ ୧୮ ତାରିଖରେ ଏହି ବିଲ୍ ରାଜକୀୟ ସ୍ୱୀକୃତି ପ୍ରାପ୍ତ ହେଲା । ଆଇନ୍‌ଗତ ଭାବରେ ଭାରତ ଓ ପାକିସ୍ଥାନକୁ ଡୋମିନିୟନ୍ ଷ୍ଟାଟସ୍ ଭିତ୍ତିରେ କ୍ଷମତା ହସ୍ତାନ୍ତର କରିବାର ପଥ ପରିଷ୍କୃତ ହେଲା ।

ମୋଗଲ ରାଜତ୍ୱର କ୍ଷୟକାଳ ସମୟରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତକୁ ବ୍ୟବସାୟ କରିବାକୁ ଆସି, ସମସ୍ତ ପ୍ରଚ଼ଳିତ ଆଇନ୍‌ର ଉଲ୍ଲଙ୍ଘନ କରି, କୂଟନୀତି, ଷଡ଼ଯନ୍ତ୍ର ଓ ଆଧୁନିକ ଅସ୍ତ୍ର ପ୍ରୟୋଗ ବଳରେ ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ସେହି କୂଟନୀତି ଓ ଧର୍ମଭିତ୍ତିକ ବିଭେଦ ଅସ୍ତ୍ର ଚ଼ାଳନା କରି ଦୁଇଶହ ବର୍ଷଧରି ଇଂରେଜମାନେ ଭାରତରେ ରାଜୁତି କଲେ । ଇତିହାସର କି ବିଡ଼ମ୍ବନା ! ୧୯୪୭ ମସିହାରେ ପାର୍ଲାମେଣ୍ଟରେ ଆଇନ୍ ପ୍ରଣୟନ କରି ସେମାନେ ଭାରତରୁ ବିଦାୟ ନେବାପାଇଁ ପ୍ରୟାସ କରୁଥିଲେ । ମହାଭାରତ ଯୁଦ୍ଧରେ କୌରବ ବଂଶକୁ ବିଧ୍ୱଂସ କରିଥିବା ମହାଶକ୍ତିଶାଳୀ ଅର୍ଜୁନ ଶେଷ ଜୀବନରେ ନିର୍ବଳ ହୋଇ ଆପଣାର ଧନୁ ଗାଣ୍ଡିବକୁ ମଧ୍ୟ ଉଠାଇବାକୁ ଅସମର୍ଥ ହୋଇଥିଲେ । ମହାପ୍ରତାପୀ ବ୍ରିଟିଶ ସରକାର ସେହିପରି ଦ୍ୱିତୀୟ ମହାଯୁଦ୍ଧରେ ଜୟଲାଭ କଲେ ମଧ୍ୟ ଏତେଦୂର ଶକ୍ତିହୀନ ହୋଇପଡ଼ିଥିଲେ ଯେ, ଭାରତର ନିରସ୍ତ୍ର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଅସ୍ତ୍ର ବଳରେ ଜବତ କରିବାକୁ ସେମାନଙ୍କର ଆଉ ସାମର୍ଥ୍ୟ ନଥିଲା ।



# ସ୍ୱାଧୀନତା

ମଇମାସରେ ଦେଶବିଭାଜନର ସମ୍ବାଦ ପ୍ରଚାରିତ ହେବାମାତ୍ରେ ପଞ୍ଜାବରେ ଦେଶାନ୍ତର ପ୍ରକ୍ରିୟା ଆରମ୍ଭ ହୋଇଗଲା । ଅବଶ୍ୟ ବଙ୍ଗଳାରେ ପ୍ରାଥମିକ ଅବସ୍ଥାରେ କେତେକ ବିସ୍ଫୋରଣ ଘଟିବା ପରେ ସେସବୁ କ୍ରମେ ମଉଳି ଯାଇଥିଲା । ଭିନ୍ନ କାରଣରୁ ବଙ୍ଗଳାର ପ୍ରଧାନମନ୍ତ୍ରୀ ଲିଗ୍ ନେତା ସୁରାବର୍ଦ୍ଦି ଯେ କି ବର୍ଷକ ପୂର୍ବେ 'ଲଡ଼୍‌କେ ଲେଙ୍ଗେ ପାକିସ୍ତାନ' ଧ୍ୱନି ଦେଇ କଲିକତା ହତ୍ୟାକାଣ୍ଡର ପୁରୋଧା ଥିଲେ, ସେ ସୁଭାଷ ବୋଷଙ୍କ ବଡ଼ଭାଇ ଶରତ ବୋଷଙ୍କ ସହ ମିଶି, ବଙ୍ଗଳାକୁ ଭାଗ ଭାଗ ନକରି ଏକ ସ୍ୱାଧୀନ ବଙ୍ଗ ପ୍ରତିଷ୍ଠା କରିବାକୁ ଉଦ୍ୟମ କଲେ । କିନ୍ତୁ ନେହେରୁ ଓ ସର୍ଦ୍ଦାର ପଟେଲ ବଙ୍ଗଳାର କଂଗ୍ରେସ ନେତାମାନଙ୍କୁ ସତର୍କ କରାଇଦେଲେ ଯେ, ଭାରତୀୟ ୟୁନିଅନ୍‌ରେ ମିଶିବା ପାଇଁ ଦୃଢ଼ ପ୍ରତିଶ୍ରୁତି ନଦେଲେ ସୁରାବର୍ଦ୍ଦିଙ୍କ ସହ ସହଯୋଗ କରିବା ଉଚିତ ହେବନାହିଁ । ଏଣେ ମହାତ୍ମା ଗାନ୍ଧି କଲିକତାରେ ପହଞ୍ଚି ଶାନ୍ତିର ବାର୍ତ୍ତା ପ୍ରଚାର କରିବାକୁ ଆରମ୍ଭ କଲେ । ମାଉଣ୍ଟ ବ୍ୟାଟେନ୍ ଗାନ୍ଧିଜୀଙ୍କୁ ପ୍ରଶଂସା କରି ମନ୍ତବ୍ୟ ଦେଲେ "ମିଷ୍ଟର ଗାନ୍ଧି ପୂର୍ବ ଓ ପଶ୍ଚିମ ବଙ୍ଗ ମଧ୍ୟରେ ଶାନ୍ତି ରକ୍ଷାକାରୀ ବାହିନୀର ଜଣିକିଆ ସଦସ୍ୟ" । କଲିକତାରୁ ଗାନ୍ଧିଜୀ ପୂର୍ବବଂଗର ନୂଆଖାଲି ଅଞ୍ଚଳକୁ ଯାତ୍ରା କଲେ । ଗାନ୍ଧିଜୀଙ୍କ ଉପସ୍ଥିତି ହେତୁ ପରିସ୍ଥିତି ଅନେକାଂଶରେ ସୁଧୁରିଗଲା ।

କିନ୍ତୁ ପଞ୍ଜାବର ପରିସ୍ଥିତି ଦିନକୁ ଦିନ ଅଧିକ ବିପଜ୍ଜନକ ପଥରେ ଗତି କରୁଥିଲା । ଯେତେବେଳେ ସ୍ପଷ୍ଟ ହେଲା ଯେ ବିଭାଜିତ ପାକିସ୍ଥାନର ଲାହୋର ଓ ତା'ର ପଶ୍ଚିମକୁ ଥିବା ଅଞ୍ଚଳ କେବଳ ପାକିସ୍ଥାନରେ ରହିବ ଓ ଅମୃତସର ଓ ତା'ର ପୂର୍ବକୁ ଥିବା ଅଞ୍ଚଳ ଭାରତ ସହିତ ରହିବ, ସେହିଦିନଠାରୁ ସବୁ ଦଙ୍ଗାହଙ୍ଗାମ, ହତ୍ୟା, ଲୁଟ୍ ଓ ଧର୍ଷଣର ମୁଖ୍ୟ ଆସନରେ ରହିଲେ ଲାହୋର ଓ ଅମୃତସରର ନିକଟବର୍ତ୍ତୀ ଅଞ୍ଚଳର ଧର୍ମାନ୍ଧ ଗୁଣ୍ଡାମାନେ । ପୂର୍ବ ପଞ୍ଜାବରୁ ପଳାତକ ମୁସଲମାନ୍‌ମାନଙ୍କୁ ରେଳପଥ

ଯୋଗେ ପଶ୍ଚିମକୁ ପଠାଯାଉଥିଲା । ରେଳଗାଡ଼ିରେ ରହି ମଧ୍ୟ ଜୀବନ ନଥିଲା ନିରାପଦ । ରାସ୍ତାରେ ଟ୍ରେନ୍ କୋଇଲା, ପାଣି ଓ ଯାତ୍ରୀ ନେବା ପାଇଁ କେଉଁ ଷ୍ଟେସନ୍‌ରେ ରହିଲେ ବା ଅନେକ ସ୍ଥଳରେ ଟ୍ରେନ୍‌କୁ ଜବରଦସ୍ତ ଅଟକାଇ, ଗୋଟିଏ ଧର୍ମର ଯାତ୍ରୀଙ୍କୁ ଅନ୍ୟ ଧର୍ମର ଲୋକେ ହତ୍ୟା କରୁଥିଲେ । ବେଳେ ବେଳେ ରେଳଗାଡ଼ି ଯାଇ ଯାତ୍ରାପଥର ଅନ୍ତିମ ଷ୍ଟେସନ୍‌ରେ ପହଞ୍ଚୁଲାବେଳେ ଦେଖାଯାଉଥିଲା, ଯେପରି ରେଳଡବାଗୁଡ଼ିକ କେବଳ ମୃତ ଲୋକଙ୍କ ଶବବାହନ କରିବା ପାଇଁ ଉଦ୍ଦିଷ୍ଟ । ବେଳେବେଳେ ତିନି ଚାରି ହଜାରରୁ ଅଧିକ ଲୋକ ହେଲେ ସେମାନେ ଆତ୍ମରକ୍ଷା ପାଇଁ ଏକତ୍ର ହୋଇ ଧାଡ଼ିବାନ୍ଧି ନାନା ଦୁଃଖକଷ୍ଟ ଓ ଭୋକ-ଉପାସରେ ସୀମାପାର ହେବା ପାଇଁ ଉଦ୍ୟମ କଲାବେଳେ ସେମାନଙ୍କ ଉପରେ ମଧ୍ୟ ଆକ୍ରମଣ ହେଉଥିଲା । ଏହି ପ୍ରକ୍ରିୟାରେ ପ୍ରାୟ ଏକ କୋଟିରୁ ଊର୍ଦ୍ଧ୍ୱ ହିନ୍ଦୁ, ଶିଖ୍ ଓ ମୁସଲ୍‌ମାନ୍ ନିଜର ଘରଦ୍ୱାର, ସମ୍ପତ୍ତିବାଡ଼ି ସବୁ ଛାଡ଼ି ଦେଶାନ୍ତରୀ ହୋଇଥିଲେ । ସେ ମଧ୍ୟରୁ ଆନୁମାନିକ ପାଞ୍ଚ ଲକ୍ଷ ଲୋକ ଅନ୍ୟ ଧର୍ମର ଆତତାୟୀଙ୍କ ଆକ୍ରମଣର ଶିକାର ହୋଇ ପ୍ରାଣ ହରାଇଥିଲେ । ହଜାର ହଜାର ଗୃହ ଜଳିପୋଡ଼ି ଧ୍ୱଂସ ହୋଇଯାଇଥିଲା । ସରକାରୀ କର୍ମଚାରୀଙ୍କ ମଧ୍ୟରେ ଚରମ ଧର୍ମାନ୍ଧତା, ବିଶୃଙ୍ଖଳା ଓ କର୍ତ୍ତବ୍ୟରେ ଅବହେଳା । ନା ପୋଲିସ୍ ନା ସୈନ୍ୟବାହିନୀ, କେହି ସେମାନଙ୍କୁ ଏ ଅକଳ୍ପିତ ଆକ୍ରମଣରୁ ରକ୍ଷା କରି ପାରିଲେ ନାହିଁ ।

ରକ୍ତର ଏହି ପ୍ଲାବନ ମଧ୍ୟରୁ ସ୍ୱାଧୀନତାର ସୂର୍ଯ୍ୟ ଉଦିତ ହେଲା । ୧୫ ଅଗଷ୍ଟ ପୂର୍ବରୁ ପାକିସ୍ଥାନର ପ୍ରସ୍ତାବିତ ରାଜଧାନୀ କରାଚୀ ଓ ଭାରତର ରାଜଧାନୀ ନୂଆଦିଲ୍ଲୀରେ ଉତ୍ସବର ପ୍ରସ୍ତୁତିପର୍ବ ଆରମ୍ଭ ହୋଇଗଲା । ସ୍ୱାଧୀନତା ଦିବସର ଦଶ ଦିନ ପୂର୍ବରୁ ଜୱାହରଲାଲ୍ ସ୍ୱାଧୀନ ଭାରତର ପ୍ରଥମ ମନ୍ତ୍ରିମଣ୍ଡଳର ପ୍ରାଥମିକ ତାଲିକା ଭାଇସ୍‌ରାୟଙ୍କୁ ପ୍ରଦାନ କରିଥିଲେ । ଏହି ତାଲିକାରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍‌ଙ୍କ ନାମ ସର୍ବୋପରି ଉଲ୍ଲିଖିତ ଥିଲା ଏବଂ ସେ ଚାହୁଁଥିଲେ, ସର୍ଦ୍ଦାର ପଟେଲ ଉପପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ ହେବେ । ଏଥିପାଇଁ ଅଗଷ୍ଟ ପହିଲାରେ ପଟେଲ୍‌ଙ୍କୁ ଲିଖିତ ଏକ ପତ୍ରରେ ନେହରୁ ତାଙ୍କୁ ମନ୍ତ୍ରୀପରିଷଦର ସବୁଠାରୁ ଶକ୍ତିଶାଳୀ ସ୍ତମ୍ଭରୂପେ ବର୍ଣ୍ଣନା କରି ଉପ-ପ୍ରଧାନମନ୍ତ୍ରୀ ପଦ ଗ୍ରହଣ କରିବାକୁ ଅନୁରୋଧ କରିଥିଲେ ।

ତା'ର ଉତ୍ତରରେ ସର୍ଦ୍ଦାର ପଟେଲ୍ ଲେଖିଥିଲେ-

"ଯେଉଁ ମହତ୍ ଆଦର୍ଶ ଓ ଲକ୍ଷ୍ୟ ସିଦ୍ଧି ପାଇଁ ତୁମେ ଅତୁଳନୀୟ ତ୍ୟାଗ ସ୍ୱୀକାର କରିଛ, ସେହି ଲକ୍ଷ୍ୟ ସାଧନ ନିମନ୍ତେ ମୋର ଏହି ଅନ୍ତିମ ଦିନଗୁଡ଼ିକରେ ତୁମେ ମୋର ବିଶ୍ୱସ୍ତ ଅନୁରକ୍ତି ଓ ଅକୁଣ୍ଠ ସହଯୋଗ ଲାଭ କରିବ । ଆମ୍ଭମାନଙ୍କର ସହଯୋଗ ଅପରିବର୍ତ୍ତନୀୟ ଓ ତାହାହିଁ ତା'ର ଦୃଢ଼ତା ।"

ମନ୍ତ୍ରୀପରିଷଦକୁ ଏକ ସୁଦୃଢ଼ ଓ ସର୍ବଦଳୀୟ ରୂପ ଦେବାପାଇଁ ଜଓ୍ୱାହରଲାଲ୍‌ଙ୍କର ଅଭିପ୍ରାୟ ଥିଲା । ସେଥିପାଇଁ ବିଶିଷ୍ଟ କଂଗ୍ରେସ ନେତାଙ୍କ ସମେତ ହିନ୍ଦୁ ମହାସଭାର ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀ ମଧ୍ୟ ମନ୍ତ୍ରୀ ପରିଷଦରେ ସ୍ଥାନ ପାଇଥିଲେ । ନେହୁରୁଙ୍କ ମନ୍ତ୍ରୀ ତାଲିକାରେ ଥିଲେ ସର୍ଦ୍ଦାର ପଟେଲ୍, ମୌଲାନା ଆଜାଦ୍, ରାଜେନ୍ଦ୍ର ପ୍ରସାଦ, ଡକ୍ଟର ଜନ୍ ମାଥାଇ, ଜଗଜ୍ଜୀବନ ରାମ, ବଳଦେବ ସିଂ, ସି.ଏଚ୍. ଭାବା, ରାଜକୁମାରୀ ଅମୃତ କାଉର୍, ରଫି ଅହମଦ୍ କିଦ୍‌ୱାଇ, ବି. ଆର୍. ଆମ୍ବେଦକର, ଏସ୍. ପି. ମୁଖାର୍ଜୀ, ସନ୍‌ମୁଖମ୍ ଚେଟ୍ଟି ଓ ଏନ୍. ଭି. ଗାଡ୍‌ଗିଲ୍ । ରାଜଗୋପାଳଚାରୀଙ୍କୁ ବଙ୍ଗଳାର ଗଭର୍ଣ୍ଣର ରୂପେ ମନୋନୀତ କରାଯାଇଥିଲା ।

ଅଗଷ୍ଟ ତେର ତାରିଖରେ ମାଉଣ୍ଟ୍ ବ୍ୟାଟେନ୍ କରାଚ଼ୀ ଯାତ୍ରା କରି ମହମ୍ମଦ ଅଲ୍ଲୀ ଜିନ୍ନାଙ୍କୁ ପାକିସ୍ଥାନର ରାଷ୍ଟ୍ରପତି ରୂପେ ଶପଥ ପ୍ରଦାନ କରିଥିଲେ । ପରଦିନ ପାକିସ୍ଥାନ ଗଣ ପରିଷଦର ପ୍ରଥମ ଅଧିବେଶନରେ ଭାଷଣ ଦେଇ ଦିଲ୍ଲୀ ଫେରି ଆସିଲେ । ଚ଼ଉଦ ଅଗଷ୍ଟ ଦିନ ଦିଲ୍ଲୀ ନଗରୀରେ ଆନନ୍ଦ ଉଲ୍ଲାସର ଲହରୀ ଛୁଟୁଥିଲା । ଯେଉଁ ସ୍ୱାଧୀନତା ହାସଲ କରିବା ପାଇଁ ଭାରତବାସୀ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ୧୯୨୧ ମସିହାରୁ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ମୁକ୍ତି ସଂଗ୍ରାମ ଆରମ୍ଭ କରି ଦେଇଥିଲେ, ଯେଉଁ ସ୍ୱରାଜ ପାଇଁ ୧୯୨୯ ମସିହାରେ ପଣ୍ଡିତ ଜଓ୍ୱାହରଲାଲ୍ ନେହୁରୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଲାହୋର୍ କଂଗ୍ରେସ ଅଧିବେଶନରେ "ପୂର୍ଣ୍ଣ ସ୍ୱରାଜ" ପ୍ରସ୍ତାବ ଗୃହୀତ ହୋଇଥିଲା, ସେହି ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତିର ଅବସରରେ ଦିଲ୍ଲୀର ଜନସାଧାରଣ ରାଜପଥରୁ ଆରମ୍ଭ କରି ଭାଇସ୍‌ରାୟ ଭବନ ଓ ପାର୍ଲିଆମେଣ୍ଟ ଭବନର ଚତୁଃପାର୍ଶ୍ୱରେ ଲକ୍ଷ ସଂଖ୍ୟାରେ ଜମାଟ ବାନ୍ଧିଥିଲେ ଓ "ମହାତ୍ମା ଗାନ୍ଧି କି ଜୟ" "ଜଓ୍ୱାହରଲାଲ୍ ନେହୁରୁ କି ଜୟ" ଧ୍ୱନିରେ ଗଗନପବନ ପ୍ରକଂପିତ କରୁଥିଲେ । ଅଗଷ୍ଟ ଚଉଦ ତାରିଖ ମଧ୍ୟରାତ୍ରିରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜଓ୍ୱାହରଲାଲ୍ ନେହୁରୁ ପାର୍ଲିଆମେଣ୍ଟ ଭବନରେ ଅନୁଷ୍ଠିତ ଗଣ ପରିଷଦ

ଅଧିବେଶନରେ ନବଲବ୍ଧ ସ୍ୱାଧୀନତାର ଆବାହନ କରି ତାଙ୍କର ଇତିହାସ ପ୍ରସିଦ୍ଧ "ଟ୍ରିଷ୍ଟ ଉଇଥ୍ ଡେଷ୍ଟିନୀ" ଭାଷଣରେ କହିଥିଲେ–

"ବହୁବର୍ଷ ପୂର୍ବେ ଆମ୍ଭେମାନେ ଭାଗ୍ୟ ସହିତ ଚୁକ୍ତିବଦ୍ଧ ହୋଇଥିଲୁ । ସେହି ଅଙ୍ଗୀକାର କାର୍ଯ୍ୟକାରୀ କରିବାର ଏବେ ସମୟ ଆସିଛି– ପୂର୍ଣ୍ଣ ଭାବରେ ବା ପୂରାମାତ୍ରାରେ ନହେଲେ ମଧ, ପର୍ଯ୍ୟାପ୍ତ ଭାବରେ । ମଧରାତ୍ରିର ଆବିର୍ଭାବରେ ସମଗ୍ର ପୃଥିବୀ ଯେତେବେଳେ ସୁପ୍ତ, ଭାରତ ନୂତନ ଜୀବନ ଓ ସ୍ୱାଧୀନତା ପଥରେ ଜାଗ୍ରତ । ଜୀବନରେ ଏପରି ଗୋଟିଏ ମୁହୂର୍ତ୍ତ ଆସେ ଏବଂ ଇତିହାସରେ ତା'ର ଆଗମନ ବିରଳ, ଯେତେବେଳେ ଆମ୍ଭେମାନେ ପୁରାତନ ଦୁନିଆରୁ ନିର୍ଗତ ହୋଇ ନୂତନ ଦୁନିଆରେ ପ୍ରବେଶ କରୁ, ଗୋଟିଏ ଯୁଗର ଅବସାନ ଘଟେ ଏବଂ ଦୀର୍ଘଦିନ ଧରି ନିଷ୍ପେଷିତ ଜାତିର ଆତ୍ମା ପୁନର୍ବାର ବିକଶି ଉଠେ । ଏଣୁ ଏହି ଶୁଭ ମୁହୂର୍ତ୍ତରେ ଆମ୍ଭେମାନେ ଭାରତ ଓ ଭାରତବାସୀଙ୍କ ସମେତ ସମଗ୍ର ମାନବ ଜାତିର ସେବାରେ ଆତ୍ମୋତ୍ସର୍ଗ କରିବା ପାଇଁ ଶପଥ ନେବା ।"

ଅଗଷ୍ଟ ପନ୍ଦର ଥିଲା ଆନନ୍ଦ ଓ କୋଳାହଳର ଦିନ । ସକାଳ ଆଠ ଘଣ୍ଟା ତିରିଶ ମିନିଟ୍ ସମୟରେ ଭାଇସ୍‌ରାୟ ନିବାସର "ଦରବାର ହଲ୍"ରେ ଭାରତର ନେତୃବୃନ୍ଦ, ସ୍ୱାଧୀନତା ସଂଗ୍ରାମୀ, ରାଜା ମହାରାଜା ଓ ବିଭିନ୍ନ ଦେଶର ରାଜଦୂତମାନଙ୍କ ଉପସ୍ଥିତିରେ ସ୍ୱାଧୀନ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ୍ ଭାବରେ ମାଉଣ୍ଟ୍ ବ୍ୟାଟେନ୍ ଶପଥ ଗ୍ରହଣ କରିଥିଲେ । ସେଠାରୁ ସେମାନେ ପାଞ୍ଚ ମିନିଟ୍‌ର ରାସ୍ତା ଅତିକ୍ରମ କରି ପାର୍ଲିଆମେଣ୍ଟ୍ ଭବନକୁ ଯାତ୍ରା କରିଥିଲେ ଓ କାଉନ୍‌ସିଲ୍ ପ୍ରକୋଷ୍ଠରେ ଜଓ୍ୱାହରଲାଲ୍ ନେହରୁ ପ୍ରଧାନମନ୍ତ୍ରୀ ଭାବରେ ଓ ଅନ୍ୟ ମନ୍ତ୍ରୀମାନେ ଶପଥ ନେଇଥିଲେ । ଏଣେ ପାର୍ଲିଆମେଣ୍ଟ ଓ ଗଭର୍ଣ୍ଣର ଜେନେରାଲ୍ ଭବନ ସମ୍ମୁଖରେ ଜନସ୍ରୋତ ଅବିଚ୍ଛିନ୍ନ ଭାବରେ ବଢ଼ିଚାଲିଥିଲା । ଜନସମାଗମ ଏତେ ପ୍ରବଳ ହେଲା ଯେ ଶପଥ ଗ୍ରହଣ ଉତ୍ସବ ପରେ ଚାରିଶହ ଅଙ୍ଗରକ୍ଷୀଙ୍କର ଆପ୍ରାଣ ଉଦ୍ୟମ ସତ୍ତ୍ୱେ ମାଉଣ୍ଟ୍ ବ୍ୟାଟେନ୍ ଓ ଲେଡି ମାଉଣ୍ଟ୍ ବ୍ୟାଟେନ୍‌ଙ୍କୁ ସେମାନଙ୍କର ପାରମ୍ପରିକ ଅଶ୍ୱଚାଳିତ ଯାନ ପର୍ଯ୍ୟନ୍ତ ଯିବା ସମ୍ଭବ ହେଲା ନାହିଁ । ଜଓ୍ୱାହରଲାଲ୍ ପାର୍ଲିଆମେଣ୍ଟ ଭବନ ଛାତ ଉପରକୁ ଯାଇ ଅବିଳମ୍ବେ ରାସ୍ତା ଅବରୋଧ ମୁକ୍ତ କରିବା ପାଇଁ ଆହ୍ୱାନ ଦେଲେ । ଜନତାଙ୍କ ପାଇଁ ତାଙ୍କର ଆହ୍ୱାନ ଥିଲା ଏକ ପ୍ରକାରର ଆଦେଶ । ମୁହୂର୍ତ୍ତକ ମଧରେ

ରାସ୍ତା ସାଫ୍ ହୋଇଗଲା ଓ ମାଉଣ୍ଟ୍ ବ୍ୟାଟେନ୍ ଦମ୍ପତି ତାଙ୍କର ବାସଭବନକୁ ଯିବାକୁ ସମର୍ଥ ହୋଇଥିଲେ ।

ସନ୍ଧ୍ୟା ଛ'ଟା ବେଳେ ଥିଲା ସ୍ୱାଧୀନତା ଦିବସର ମୁଖ୍ୟ କାର୍ଯ୍ୟକ୍ରମ । ଇଣ୍ଡିଆ ଗେଟ୍ ନିକଟରେ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ସ୍ୱାଧୀନ ଭାରତର ନୂତନ ପତାକାର ଉତ୍ତୋଳନ । ପୁରୁଣା ଦିଲ୍ଲୀର ଗଳିକନ୍ଦିରୁ, ନୂଆଦିଲ୍ଲୀର ସୌଖୀନ ଅଞ୍ଚଳରୁ, ପାଖଆଖ ଅଞ୍ଚଳ ଓ ଜନବସତିରୁ ଅଗଣିତ ଜନତା ଇଣ୍ଡିଆ ଗେଟ୍‌ରେ ରୁଣ୍ଡ ହୋଇଥିଲେ । ସ୍ୱାଧୀନ ଭାରତ ଓ ଜୱାହରଲାଲ୍‌ଙ୍କ ଜୟଧ୍ୱନି ମଧ୍ୟରେ ଜନସମାଗମ ପ୍ରବଳ ମାତ୍ରାରେ ବଢ଼ିଚାଲିଥିଲା । ଅବସ୍ଥା ସମ୍ଭାଳିବା ପାଇଁ ଦିଲ୍ଲୀ ସେନାବାହିନୀର କମାଣ୍ଡର ମେଜର୍ ଜେନେରାଲ୍ ରାଜେନ୍ଦ୍ର ସିଂ ଓ ଅନ୍ୟମାନଙ୍କ ପରାମର୍ଶକ୍ରମେ ସମସ୍ତ ଆନୁଷ୍ଠାନିକ ଓ ପାରମ୍ପରିକ କାର୍ଯ୍ୟକ୍ରମକୁ ବାଦ୍ ଦେଇ କେବଳ ତୋପ ଧ୍ୱନିରେ ଉତ୍ତୋଳିତ ପତାକାକୁ ସମ୍ମାନିତ କରାଯାଇଥିଲା । କିନ୍ତୁ ସେଦିନ ସନ୍ଧ୍ୟାରେ ସମସ୍ତେ ଜଣେ ଲୋକର ଉପସ୍ଥିତିର ଅଭାବ ଅନୁଭବ କରୁଥିଲେ, ସେ ଥିଲେ ମହାତ୍ମା ମୋହନ ଦାସ କରମଚାନ୍ଦ ଗାନ୍ଧି । ଭାରତର ସ୍ୱାଧୀନତା ସଂଗ୍ରାମର ପିତାମହ ମହାତ୍ମା ଗାନ୍ଧି ସେ ସମୟରେ କଲିକତାର ବସ୍ତି ଅଞ୍ଚଳରେ ରହି ସାମ୍ପ୍ରଦାୟିକ ସଦ୍‌ଭାବ ରକ୍ଷା ଉଦ୍ୟମରେ ନିମଜ୍ଜିତ ଥିଲେ । ଗାନ୍ଧିଜୀଙ୍କ ଅନୁପସ୍ଥିତି କଥା ମନେ ପକାଇ ପ୍ରଧାନମନ୍ତ୍ରୀ ଜୱାହରଲାଲ୍ ପତାକା ଉତ୍ତୋଳନ ସଭାରେ ଭାଷଣ ଦେଇ କହିଥିଲେ–

"ବିଧି ନିର୍ଦ୍ଧାରିତ ସେହି ଶୁଭଦିନ ଆଜି ଉପସ୍ଥିତ । ଦୀର୍ଘଦିନର ସୁପ୍ତି ଓ ସଂଗ୍ରାମ ପରେ ଭାରତ ଆଜି ଜାଗ୍ରତ, ମୁକ୍ତ ଓ ସ୍ୱାଧୀନ । ଆଜି ଦିନରେ ଆମେ ସ୍ମରଣ କରୁଛୁ ସ୍ୱାଧୀନତା ସଂଗ୍ରାମର ସଂସ୍ଥାପକ ଜାତିର ପିତାଙ୍କୁ, ଯିଏ ଭାରତର ଆତ୍ମାର ଆଧାର ରୂପେ ଆଲୋକର ବର୍ତ୍ତିକା ଧରି ଆମର ଚତୁଃପାର୍ଶ୍ୱରୁ ଅମା ଅନ୍ଧକାର ଦୂର କରିଅଛନ୍ତି । ଆମ୍ଭେମାନେ ବହୁ ସମୟରେ ତାଙ୍କର ଅଯୋଗ୍ୟ ଶିଷ୍ୟ ଭାବରେ ଆଚରଣ କରିଛୁ ଓ ତାଙ୍କ ନିର୍ଦ୍ଧାରିତ ପଥରୁ ବିଚ୍ୟୁତ ହୋଇଛୁ । କିନ୍ତୁ କେବଳ ଆମେ ନୁହେଁ, ଆମର ଭବିଷ୍ୟତ ବଂଶଧରମାନେ ମଧ୍ୟ ତାଙ୍କର ବାର୍ତ୍ତା ମନେ ରଖିବେ ଏବଂ ଆତ୍ମବିଶ୍ୱାସ, ଶକ୍ତି ସାହସ ଓ ବିନୟରେ ରଦ୍ଧିମନ୍ତ ଭାରତର ଏହି ମହାନ୍ ସନ୍ତାନଙ୍କର ବାଣୀ ହୃଦୟରେ ସାଇତି ରଖିବେ ।"





''ଭାରତରେ ବ୍ରିଟିଶ ରାଜ୍'' ପୁସ୍ତକର ଲେଖକ ଶ୍ରୀ ଗଂଗାଧର ରଥ ଜଣେ ପ୍ରଖ୍ୟାତ ଅଧିବକ୍ତା । ଛାତ୍ର ଜୀବନରୁ ସ୍ୱାଧୀନତା ସଂଗ୍ରାମ ଓ ସମାଜବାଦୀ ଆନ୍ଦୋଳନ ସହ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ । କର୍ମମୟଜୀବନ ଆରମ୍ଭ କରନ୍ତି ସାମ୍ବାଦିକ ରୂପେ, 'ସଂକେତ' ପତ୍ରିକାର ପ୍ରତିଷ୍ଠାତା ଓ ସଂପାଦକ ଭାବରେ । ସୁବକ୍ତା ଓ ସୁଲେଖକ ଶ୍ରୀଯୁକ୍ତ ରଥ ଆଇନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ହାଇକୋର୍ଟରେ ଓକିଲାତି ଆରମ୍ଭ କରନ୍ତି । ୧୯୭୨ ରୁ ୧୯୭୭ ଓ ୧୯୮୨ ମସିହାରୁ ୧୯୯୦ ପର୍ଯ୍ୟନ୍ତ ଦୀର୍ଘକାଳ ଧରି ସେ ଥିଲେ ଓଡ଼ିଶାର ଆଡ୍‌ଭୋକେଟ ଜେନେରାଲ୍ । ହାଇକୋର୍ଟ ଓ ସୁପ୍ରିମକୋର୍ଟରେ ବହୁ ଜଟିଳ ସାଂବିଧାନିକ ମୋକଦ୍ଦମା ସଫଳତାର ସହ ପରିଚାଳନା କରି ଅଶେଷ ଖ୍ୟାତି ଅର୍ଜନ କରିଅଛନ୍ତି । ୧୯୬୯ ରୁ ୧୯୭୪ ପର୍ଯ୍ୟନ୍ତ ସେ ବାର୍‌କାଉନ୍‌ସିଲ୍ ଅଫ୍ ଇଣ୍ଡିଆର ସଦସ୍ୟ, ୧୯୭୬ ରୁ ୧୯୭୭ ଓଡିଶା ବାର୍‌କାଉନସିଲର ଚେୟାରମ୍ୟାନ୍, ୧୯୮୧ ରୁ ୧୯୮୨ ନିଖିଳ ଉତ୍କଳ ଆଇନଜୀବୀ ସମ୍ମିଳନୀର ସଭାପତି ଓ ୧୯୯୮ ରୁ ୧୯୯୯ ପର୍ଯ୍ୟନ୍ତ ହାଇକୋର୍ଟ ବାର୍ ଆସୋସିଏସନ୍‌ର ସଭାପତି ଥିଲେ ।

ତାଙ୍କ ଲିଖିତ 'ସୋଭିଏତ୍ ସମାଜ', 'ଆମେରିକା ଯାତ୍ରୀ' ଓ 'ନ'ଟି ଗପ' ଶୀର୍ଷକ ପୁସ୍ତକ ପ୍ରାୟ ୫୭ ବର୍ଷ ପୂର୍ବେ ପ୍ରକାଶିତ ହୋଇଥିଲା ଏବଂ ନିକଟ ଅତୀତରେ ପ୍ରକାଶ ପାଇଛି, 'ଭାରତୀୟ ସଂବିଧାନ', ସ୍ମୃତିଲିପି 'ଭୁଲି ନାହିଁ' ଓ 'ଜନନାୟକ ଜୱାହରଲାଲ'। ତାଙ୍କର ସାହିତ୍ୟ କୃତି ପାଇଁ ଶତାବ୍ଦୀ ସମାରୋହ ଉପଲକ୍ଷେ ଉତ୍କଳ ସାହିତ୍ୟ ସମାଜ ତାଙ୍କୁ 'ଉତ୍କଳ ରତ୍ନ' ସମ୍ମାନ ପ୍ରଦାନ କରିଛନ୍ତି ।

ସୁପ୍ରସିଦ୍ଧ 'ଅଳକା ମହାବିଦ୍ୟାଳୟ'ର ସେ ପ୍ରତିଷ୍ଠାତା । 'ଶ୍ରୀ ଗଙ୍ଗାଧର ରଥ ଫାଉଣ୍ଡେସନ' ପକ୍ଷରୁ ଯଶସ୍ୱୀ ଓଡିଆ ସାହିତ୍ୟିକଙ୍କୁ ପ୍ରତିବର୍ଷ ଦେଢ଼ ଲକ୍ଷ ଟଙ୍କାର ଉପାୟନ ପ୍ରଦାନ, ଓଡ଼ିଆ ସାହିତ୍ୟର ବିକାଶ ପାଇଁ ତାଙ୍କର ଅବିସ୍ମରଣୀୟ ଅବଦାନ ।

ଫ୍ରେଣ୍ଡସ୍ ପବ୍ଲିଶର୍ସ

